**ଜନ୍ମାଷ୍ଟମୀ**

(ଉପନ୍ୟାସ)

ଲେଖକ : **ଯତୀନ୍ଦ୍ର ମୋହନ ମହାନ୍ତି**

ପ୍ରକାଶକ : **ବିଦ୍ୟା**
୧୫୭୩, ମଧୁବନ ସରଣୀ, ଭକ୍ତମଧୁ ନଗର,
ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧

ଅକ୍ଷର : **ଶାରଳା ଗ୍ରାଫିକ୍ସ,**
ନିକୋପାର୍କ ରୋଡ, ଭୁବନେଶ୍ୱର-୧୨

ପ୍ରଚ୍ଛଦ ଓ ମୁଦ୍ରଣ : **ପ୍ରିଣ୍ଟଟେକ୍ ଅଫସେଟ୍,** ଭୁବନେଶ୍ୱର-୨୪

ପ୍ରଥମ ସଂସ୍କରଣ : ୨୦୧୨

ମୂଲ୍ୟ : **୩୦୦ ଟଙ୍କା**

**Janmastami**
(Novel)

Author **Jatindra Mohan Mohanty**

Publisher : **Vidya**
1573, Madhuban Sarani,
Bhaktamadhu Nagar,
Bhubaneswar-751030
Ph.(0674)2350289 / 2350511

D.T.P : **Sarala Graphics**,
Nicco Park Road,
Bhubaneswar-12

Cover and Printed at : **Print-Tech Offset,**
Chandaka Industrial Area
Bhubaneswar-24

1st Edition-**2012**

Price : **Rs 300.00**




**ISBN : 978-81-903438-0-0**

# ଉତ୍ସର୍ଗ

ଜେଜେ ସୁନାକର ମହାନ୍ତି
ବାପା ଜଗମୋହନ ମହାନ୍ତି
ଯେଉଁମାନେ ଓଡ଼ିଆ ସାହିତ୍ୟକୁ ସମ୍ମାନ କରୁଥିଲେ
ଓ ଭଲ ପାଉଥିଲେ ।


Digitized by srujanika@gmail.com

# କୃତଜ୍ଞତା

ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି
ଶ୍ରୀ ବିଷ୍ଣୁ ପ୍ରସାଦ ମହାପାତ୍ର
ଶ୍ରୀ ବିଶ୍ୱରଂଜନ ନାୟକ
ଶ୍ରୀ ବୃନ୍ଦାବନ ବେହେରା
ସୁପ୍ରିୟା ଦାଶ


Digitized by srujanika@gmail.com

# ପୂର୍ବ ରାତି

ଦିନଯାକ ଆକାଶ ପରିଷ୍କାର ଥିଲା । ହୁଏତ କଦବା କ୍ୱଚିତ ଖଣ୍ଡେ ଅଧେ ବାଦଲ ଏଠି ସେଠି । ଖରା ଟାଣ । ପବନ ଦେଉଥିଲା ଠିକ୍ । କିନ୍ତୁ ପବନରେ ଖୁବ୍ ବେଶୀ ଜୋର ନ ଥିଲା । ଅଳ୍ପ ଅଳ୍ପ ପବନରେ ଯମୁନା କୂଳର ଗଛବୃକ୍ଷ ହଲିହଲି ଦୋହଲିଲା ପରି ଦିଶୁଥିଲା । କେବଳ କେତେବେଳେ କେମିତି ମଝିରେ ମଝିରେ ଗୋଟାଏ ଥମଥମ ଭାବ - ପବନ ଚୁପ୍‌ଚାପ୍, ଗଛବୃକ୍ଷ ଚୁପ୍‌ଚାପ୍, ଚଢ଼େଇର ରାବ ନାହିଁ, ଖରା ବି କେମିତି ଫିକା ପଡ଼ିଲା ପରି ମନେ ହେଉଥିଲା । ତେବେ ଖାଲି ଆଜି ନୁହେଁ । ଗତ କେତେଦିନ ହେବ ମଝିରେ ମଝିରେ ଅରିନ୍ଦମ ଏହିପରି ଲକ୍ଷ୍ୟ କରୁଛି । କେତେଦିନ ତଳେ ଦିନେ ସକାଳେ ସୂର୍ଯ୍ୟ ଉଠୁ ଉଠୁ ସୂର୍ଯ୍ୟକୁ ରାହୁ ଗ୍ରାସ କରିଥିଲା । ତା'ପରେ ହଠାତ୍ ସବୁ ଚୁପ୍‌ଚାପ୍ । ଗ୍ରାସରୁ ସୂର୍ଯ୍ୟ ମୁକ୍ତ ହେଲାପରେ ଗଛପତ୍ର ହଲିଲା, ଚଢ଼େଇମାନେ ଉଡ଼ି ବୁଲିଲେ, ଚାରିଆଡ଼େ ପାଟିଗୋଳ ଆରମ୍ଭ ହେଲା । ତେବେ ଆଜି ସେମିତି ନୁହେଁ । ତଥାପି, ସବୁ ଠିକ୍ ଅଛି,ସବୁ ଠିକ୍ ଚାଲିଛି - ପାଣି, ପବନ, ଆଲୁଅ । ହଠାତ୍ କିଛି ନାହିଁ । ଯେମିତି କିଛି କୋଉଠି ନାହିଁ । ସବୁ ଶୂନ୍ୟ । ଯମୁନାରେ ଲହଡ଼ି ନାହିଁ, ଗଛ ଅଗରେ ପବନ ନାହିଁ, ଚଢ଼େଇର ରାବ ନାହିଁ - ଗୋଟାଏ ନିଶ୍ଚଳ, ନିଶ୍ଚୁପ ଗାତ ଭିତରେ ପଶିଲା ପରି । ଯେପରି ଦେହଟାରେ ଆଉ ଓଜନ ନାହିଁ - ଗୋଟାଏ ଅଦ୍ଭୁତ, ଅଶୂନ୍ୟ ମନୋଭାବ ।

ଅରିନ୍ଦମ ଅନିକେତ ପରି ନୁହେଁ । ତା'ପାଇଁ ଯାହା ସେଇଆ । ମୋଟା କାମକୁ ସେ ମୋଟା ଭାବରେ ନିଏ । କାମ କାମ, ସେଥିରେ ପନ୍ଦରଟା ଅକାମ ଯୋଚିବା ତା'ର ପସନ୍ଦ ନୁହେଁ । ମନର ଯାହା ବିଶ୍ୱାସ ସେଥିରେ ସେ ଲାଖିହୋଇ ରହିଥାଏ । ସେହି ବିଶ୍ୱାସକୁ ଘୋଳି ବାଟି ଚନ୍ଦନ ପରି ସେ ଦେହରେ ବୋଳିହୁଏ । ପୁଣି ଦରକାର ହେଲେ ସେହି ବିଶ୍ୱାସକୁ ପଣାପରି କରି ଢକଢକ କରି ପିଇଯାଏ । ଏସବୁ ତା'ର ଅଭ୍ୟାସ, ଭାବିଚିନ୍ତି ଦଶପ୍ରକାର ସୂତାଖିଅ କାଢ଼ି, ପନ୍ଦର ପ୍ରକାର ମୂଷାଗାତ ସେ ଖୋଜି ବୁଲେ ନା । ସକାଳେ ସୂର୍ଯ୍ୟ ଉଠେ, ସନ୍ଧ୍ୟାରେ ସୂର୍ଯ୍ୟ ବୁଡ଼େ, ରାତିରେ ଜହ୍ନ ଆଲୁଅ ଦିଏ ବା ଅନ୍ଧାର ହୁଏ, ପବନ ବହେ, ବର୍ଷା ଆସେ, ଚଢ଼େଇ ଡାକନ୍ତି, ଯମୁନାରେ ପାଣି କେତେବେଳେ ସଫା ତ କେତେବେଳେ ଗୋଳିଆ, ପୁଣି ଯମୁନା ସେ ପାଖରେ କେତେ କେତେ ଗଛ, ଦିନରେ ବି ଅନ୍ଧାର ଦିଶେ, କେତେ ଜଣା ଅଜଣା ଡାକ


Digitized by srujanika@gmail.com

ଶୁଭେ, ଖରାଦିନ ଯାଏ, ଶୀତ ଆସେ, ଋତୁରାଜ ବସନ୍ତ, ନାଲିନେଲି ଶାଗୁଆ ଫୁଲର ଭିଡ଼, ମହୁଫେଣା ମହୁମାଛି, ଆକାଶରେ ଧାଡ଼ି ଧାଡ଼ି ଚଢ଼େଇ, ଯମୁନାରେ ପଟାଳି ପଟାଳି ମାଛ - ହଠାତ୍ ଅରିନ୍ଦମର ଚିନ୍ତା କଟିଗଲା । ଯମୁନା କୂଳରେ ତା ଘର । ସେ ଯମୁନା ଉପରକୁ ଚାହିଁ ରହିଲା । ଆଜି.... କୃଷ୍ଣପକ୍ଷ, ସପ୍ତମୀ, ଯମୁନା ଉପରେ ଥଳଥଳ ହୋଇ ଅନ୍ଧାର... ତଳେ ପାଣିର କଳ କଳ ଶବ୍ଦ, ମାଛ ପିଟି ହେଉଛି । ଦୂରରେ ଟେଁ ଟେଁଇଆଁ ଡାକୁଛି, ଆହୁରି ଦୂରରେ କିଏ କାହାକୁ ଡାକୁଛି ଏ... ଏ..., ଲହରେଇ ଲହରେଇ, ଉଠପଡ଼ ହେଇ ସେଇ ଡାକ ଭାସିଆସୁଛି । ପାଖରେ ତା' ଘରକୁ ଲାଗି ନଈର ଘାଟ, ଏତେ ରାତିରେ ବି କିଏ ଗାଧୋଉଛି । ଗଳା ଖଙ୍କାର ଶୁଭୁଛି, ପାଣି ଚବଚବ, ଫାଳେ ଫାଳେ ଗଙ୍ଗାସ୍ତବ । କିଏ ଗୀତ ଗାଉଛି । ବେଶ୍ ମିଠା ସ୍ୱର । ଅନ୍ଧାରକୁ ଚିରି ଚିରି ବଇଁଶୀ ସ୍ୱର ପରି । ବଣ ଜଙ୍ଗଲର କଥା, ଗାଈ ଡାକ, ଚଢ଼େଇ ଡାକ, ଆ... ଆ... ଅରିନ୍ଦମ କାନ ଡେରିଲା । ସେଇ ପିଲାଟା ବୋଧେ, ସେଇ ଯେ ଦିନରେ ପହଁରି ପହଁରି ଯମୁନା ସେ ପାଖକୁ ଚାଲିଯାଏ । ଗୋପ ଜଙ୍ଗଲରେ କଅଣ ସେ କରେ ? ଗାଈ ଚରାଏ ? ନାଁ ତ, ପିଲାଟା କେମିତିକା ନିଆରା, ବଂଶୀ ବଜାଏ । ନାଚୁଥାଏ, କୁଦୁଥାଏ, ସବୁବେଳେ ଏକା ଏକା । କଥା କହିଲେ ଉତ୍ତର ଦିଏ ନା, ହସେ, ଖାଇବାକୁ ଯାଚିଲେ ବି ସେଇ ଏକା କଥା, ଖାଲି ହସ । ଅରିନ୍ଦମ ଭାବିଲା, ପିଲାଟା କିଏ, କାହା ପୁଅ, ସବୁବେଳେ ତ ବୁଲୁଥାଏ, ରହେ କୋଉଠି, ଖାଏ କଅଣ ? କଂସ ସିପେଇ ବି ତାକୁ କିଛି କହନ୍ତିନି, ତାଙ୍କ ପାଖରେ ସେ ଗୋଡ଼ ଲମ୍ୱେଇ ବସେ, ଖଇନି ଦଳି ଦିଏ, ମଝିରେ ମଝିରେ ବଇଁଶୀ ବି ଫୁଁକେ, ନାଁ ନାଁ ସେ ମଥୁରା ପିଲା ନୁହେଁ, ଗୋପ ପିଲା । ହେଲେ ତା ବଇଁଶୀ ବଜାଟା ବଡ଼ ମିଠା । ଗୀତ ବନ୍ଦ ହେଲାଣି । ବଇଁଶୀ ବାଜୁଛି । ଅରିନ୍ଦମ ଚୁପ୍‌ଚାପ୍, ନିଶ୍ଚଳ ହୋଇ ମନ ଦେଲା । ସ୍ୱର ଆସ୍ତେ ଆସ୍ତେ ଅନ୍ଧାରକୁ ଯେମିତି ଆଉଁସି ଦେଉଛି, ଯମୁନା ପାଣି ସାଙ୍ଗରେ ଛଳ ଛଳ ହେଇ ଖେଳୁଛି, ଖରା ଦିନ ରାତିର ଝିଲ ଝିଲ ଥଣ୍ଡା ପବନ ପରି ଖୋଲା ଦେହଟାକୁ ଆସ୍ତେ ଆସ୍ତେ ସାଉଁଳୁଛି । ଅରିନ୍ଦମର ଆଖି ଅଧା ବୁଜି ଆସିଲା । ମନଟା ମଥୁରା ଛାଡ଼ି, ଯମୁନା ଛାଡ଼ି, ଯେମିତି ଗୋପ-ଜଙ୍ଗଲର ଗଛବୃକ୍ଷ ଭିତରେ ଉଡ଼ିବୁଲୁଛି । କେତେ ଚଢ଼େଇ, କେତେ ଫୁଲଫଳ, କେତେ ବାସ୍ନା । କିଏ ନାଚୁଛି, ଝୁଣ୍ଟିଆର ଝୁମଝୁମ ଶବ୍ଦ, କାହା ଗୀତ, କାନ ପାଖରେ ଗୁଣ ଗୁଣ ହେଇ ବାଜୁଛି, କିଏ ସବୁ ଟିପ ଅଗରେ ଭୂଇଁ ଛୁଇଁ ଛୁଇଁ ଉଡ଼ି ବୁଲୁଛନ୍ତି । ଗାଈ ଦୁହିଁବା ଶବ୍ଦ, ଫୁଟା ଦୁଧର ବାସ୍ନା, ସର ପରି ଚିକ୍କଣ, ମିଠା, ନା ଅନ୍ଧାର ନାହିଁ, କାନି ପରି ଅଂଧାର ଖୋଲି ଗଲାଣି, ଏ ଖାଲି ଗୋରା ତକ ତକ ଦେହ, ଚନ୍ଦନ ବାସ୍ନା,


Digitized by srujanika@gmail.com

ହଳଦୀ ବାସ୍ନା, ଗୋରା ତକ ତକ ଆଲୁଅ ଚାରିଆଡ଼େ ଫୁଲ ଫୁଟିଲା ପରି ଫୁଟି ଉଠିଲାଣି । ବଇଁଶୀ ବାଜୁଛି, ବୁଲିବୁଲି, ଖେଳିଖେଳି । ଗଛରୁ ଫୁଲ ଝଡୁଛି, ଫୁଲ ଉପରେ ଫୁଲ । ଏତେ ଫୁଲ ଆସିଲା କୋଉଠୁ ? ଫୁଲ ଉପରେ ପାଦ, ଫୁଲ ଉପରେ ଦେହ, ଲତା ପରି ଖାଲି ବେଢ଼ି ରହିଛି । କାହା କଥା, କାହା ହସ, ଆଖିରେ ଛୋଟ ପିଲାର ଦରୋଟି, ନିଅ... ନିଅ, ଆସ... ଆସ... ଆଲୁଅ, ବାସ୍ନା, ଗୀତ । ମଥୁରା, ଗୋପ, ଯମୁନା... କାହିଁସବୁ ?

ଅରିନ୍ଦମର ଆଚ୍ଛନ୍ନ ଭାବ କଟିଗଲା । ନାଁ, ଗାଧେଇବା ଲୋକ ଚାଲିଗଲାଣି । ଗୀତ ବନ୍ଦ ହୋଇଗଲାଣି । ଖାଲି ସୁ ସୁ ପବନ, ଖାଲି ଯମୁନାର ଶବ୍ଦ, ଦୂରରୁ ସିପେଇ ଡାକ ଭାସି ଆସୁଛି । ଦୂରରୁ ବନ୍ଦୀଶାଳାର ଘଣ୍ଟା ପିଟିବା ଶବ୍ଦ । କେତେ ରାତି ?

ଘରେ ସମସ୍ତେ ଶୋଇଲେଣି । ଏହି ସମୟରେ ବାପା ବି ଶୋଇଥାନ୍ତି । ତାଙ୍କର ନିଃଶ୍ୱାସ ପ୍ରଶ୍ୱାସ ଶବ୍ଦ ବାରି ହେଉଥାଏ । ତାଙ୍କର ନିଦ ଖୁବ୍ ହାଲ୍କା । କେତେବେଳେ ଶୁଅନ୍ତି ବୁଝି ହୁଏନା । ବାରମ୍ବାର ଉଠନ୍ତି । ବୋଉ ଗଲାପରେ ତାଙ୍କର କାମଦାମ କେମିତି ଅନ୍ୟ ପ୍ରକାର ହୋଇଯାଇଥାଏ । ସବୁ କଥା ବୁଝୁଥାନ୍ତି, କିନ୍ତୁ ମନ ଯେମିତି ନ ଥାଏ । କରିବାକୁ ହେବ, ତେଣୁ କରୁଥାନ୍ତି, ଠାକୁର ପୂଜାରୁ ଗାଈମାନଙ୍କ କଥା ବୁଝିବା ପର୍ଯ୍ୟନ୍ତ । ପୁଣି ରଜାଘର କାମ । ରଜାଘର କାମ ତ ବେଶ୍ ଗୋଳମାଳିଆ ହୋଇଯାଇଥାଏ । ଉଗ୍ରସେନ ବାପାଙ୍କର ସାଙ୍ଗ, ସେମାନଙ୍କର ଭାବନାବ ଅରିନ୍ଦମ ପିଲାଦିନରୁ ଦେଖି ଆସିଛି । ବାପା ତ ସବୁବେଳେ ଯାଆନ୍ତି । ଉଗ୍ରସେନ ବି କେତେବେଳେ କେମିତି ଚାଲି ଚାଲି ତାଙ୍କ ଘରକୁ ଚାଲି ଆସନ୍ତି । ବିଶେଷ କରି ବୋଉର ଦେବୀ ବନ୍ଦନା । ଶୁଣିଲା ଲୋକ ଆଖିରେ ପାଣି ଆସିଯିବ । ଶୁଣୁ ଶଣୁ ମନେହେବ ଯେମିତି ଦେବୀ ପ୍ରତିମା ଆଗରେ ଆସି ଛିଡ଼ା ହେଇଛନ୍ତି । କି ସୁନ୍ଦର, କି ଜ୍ୟୋତି । ଟହ ଟହ ହସୁଛନ୍ତି, ଆଖିରୁ ଖାଲି ଆନନ୍ଦର ଧାରା ଝର ଝର ଝରିପଡୁଚି । ହାତରେ ଅଭୟ ମୁଦ୍ରା । ପାଖରେ ଯେମିତି ବସିଛନ୍ତି, ହାତରେ ଆସ୍ତେ ଆସ୍ତେ ଆଉଁସି ଦେଉଛନ୍ତି, କହୁଛନ୍ତି ସ୍ଥିର ହୁଅ... ସ୍ଥିର ହୁଅ, ଭୟ କରନା । ବାପା ବହୁତ ଭୟ କରୁଥିଲେ, ନିଜ ପାଇଁ ନୁହେଁ, ଉଗ୍ରସେନଙ୍କ ପାଇଁ । ଉଗ୍ରସେନ ଭଲ ଲୋକ, ଛନ୍ଦକପଟରେ ପଶି ପାରନ୍ତି ନାହିଁ, ଦେବଦ୍ୱିଜରେ ଭକ୍ତି, ଗୋମାତାରେ ଭକ୍ତି, ମଥୁରା ଲୋକେ ଭଲରେ ନ ରହିଲେ ମୁଁ କି ରାଜା, ସବୁବେଳେ କହନ୍ତି । ବହୁତ ଦିନ ତଳର କଥା । ଅରିନ୍ଦମ ବାପାଙ୍କ ପାଖରୁ ଶୁଣିଛି ଉଗ୍ରସେନ ଯେତେବେଳେ ଜାଣିଲେ କଂସ ତାଙ୍କ ନିଜ ପୁଅ ନୁହେଁ, ବେଶ୍ ମନମାରି କିଛିଦିନ ରହିଲେ । ବାପା ତାଙ୍କୁ ଅନେକ ବୁଝେଇଥିଲେ । କହିଥିଲେ କିଏ କାହା ପୁଅ, ଏ ତ ଦେବତାଙ୍କ


Digitized by srujanika@gmail.com

କୂଟକପଟ କଥା । କିଏ ଜାଣେ କୋଉ କାମ କୋଉଠି ପାଇଁ ହେଉଛି । ତୁମର ପୁଅ ନ ଥିଲା, ପୁଅଟିଏ ହେଲା, ତମ ପରେ ତ ଜଣେ ରାଜା ହେବାକୁ ରହିଲା । ତାକୁ ଭଲ ଗୁରୁ ପାଖକୁ ପଠା, ସେ ଶିଖୁ, ଯୋଗ୍ୟ ହେଉ । ତମ କୀର୍ତ୍ତି କିଏ ରଖିବ । ଦେଖୁନା ମହାରାଜା ଶାନ୍ତନୁଙ୍କର କଅଣ ହେଲା । ଗଙ୍ଗାଙ୍କ ପରି ସ୍ତ୍ରୀ । ସେ ତ ପୁଣି ସବୁ ପିଲାଗୁଡ଼ାଙ୍କୁ ମାରି ପକେଇଲେ । ପୁଣି ଯେ ବି ରହିଲେ, ଦେବବ୍ରତ, ତାଙ୍କ ଭାଗ୍ୟ କଅଣ, ସାରା ଆର୍ଯ୍ୟାବର୍ତ୍ତରେ ଆଉ ଜଣେ କେହି ତାଙ୍କପରି ଅଛି କି ? ଛାଡ଼, ଛାଡ଼, ଏଇ ତୁମ ଭାଗ୍ୟ, ଗ୍ରହଣ କରି ନିଅ ।

ଉଗ୍ରସେନ ବାପାଙ୍କ କଥା ମାନିଥିଲେ । କଂସକୁ ନିଜ ପୁଅପରି ସବୁ ଆଦର ଯତ୍ନ କରିଥିଲେ । ଭଲ ଗୁରୁଙ୍କୁ ରଖିଥିଲେ । କଂସ ଆର୍ଯ୍ୟାବର୍ତ୍ତର ଜଣେ ଭଲ ଓ ବଡ଼ ରାଜା ହେଇ ବାହାରୁ ଏଇଆ ତାଙ୍କର ଇଚ୍ଛା ଥିଲା । କିନ୍ତୁ ହେଲାକି ? କଂସ ବଡ଼ ହେଲା ନିଶ୍ଚୟ । ଜରାସନ୍ଧ ଝିଅଙ୍କୁ ବିଭା ହେଲା । ନାଁ କଲା, ଲୋକେ ଡରିଲେ । ଆର୍ଯ୍ୟାବର୍ତ୍ତର ରାଜାମାନେ ବି ଡରିଲେ, ବାସ୍, ତା'ପରେ ? ଭଲ ହେଲା କି ? ...ସେଇ ଭୟଙ୍କର ଦିନ କଥା ଭାବିଲେ ଏବେ ବି ଦେହରେ ଝାଳ ଆସିଯାଏ । ବାପା ସକାଳ କାମଦାମ ସାରି ଯମୁନାରୁ ଗାଧୋଇ ଆସି ପୂଜାରେ ବସିଛନ୍ତି । ସେ ନିଜେ ଛାତ ଉପରେ ସିତାରରେ ଅଭ୍ୟାସ କରୁଛି । ହଠାତ୍ ରାଜା ନଅର ଆଡୁ ତିନି ଚାରିଜଣ ଲୋକ ଦଉଡ଼ି ଦଉଡ଼ି ଆସିଲେ । ବେଶଭୂଷାର ଠିକ୍ ନାହିଁ । ପାଗଳ ପରି ଦଉଡୁଛନ୍ତି । ମୁହଁରେ ଖାଲି ହାହ... ହାୟ... ଗଲା... ଗଲା । ରାସ୍ତାରେ ବେଶୀ ଚଳପ୍ରଚଳ ଆରମ୍ଭ ହୋଇନାହିଁ । ତଥାପି ଯେଉଁ କିଛି କିଛି ଲୋକ ଯମୁନାକୁ ବାହାରିଲେଣି ସେସବୁ କାବା ହେଇ ଚାହିଁଛନ୍ତି । କେତେଗୁରା ଘରର କବାଟ ଖୋଲି ଲୋକ ବାହାରି ଆସିଲେଣି । କଥା କଅଣ ? ଉତ୍ତର ଦେବାକୁ ସମୟ କାହିଁ । ସେମାନେ ଆସି ଲଥ ଲଥ ଘର ପିଣ୍ଡାରେ ବସି ପଡ଼ିଲେ । ସାଁ ସାଁ ହଉଛନ୍ତି, କିନ୍ତୁ ହାୟ... ହାୟ ପାଟିରୁ ଛାଡ଼ିନାହିଁ । ଅରିନ୍ଦମ ସିତାର ନେଇ ତଳକୁ ଓହ୍ଲେଇ ଆସିଲା । ବାପା ଧ୍ୟାନ ମଝିରେ ଥିଲେ । ତାଙ୍କର ଆସିବାକୁ ଟିକିଏ ଡେରି ହେଲା । ସେହି ପୂଜା ବେଶରେ ପାଟ ପିନ୍ଧି, ହାତରେ ରୁଦ୍ରାକ୍ଷ ଧରି ବାହାରକୁ ଆସିଲେ । ସେ ସହଜରେ ବିଚଳିତ ହୁଅନ୍ତି ନାହିଁ । ସେ ଦୁଇ ମୁହୂର୍ତ୍ତ ଚୁପ୍‌ହୋଇ ସେ ଲୋକମାନଙ୍କୁ ଚାହିଁ ରହିଲେ । ଯେମିତି ବୁଝିପାରିଲେ କ'ଣ ଘଟିଛି । କହିଲେ, ହଉ ସ୍ଥିର ହୁଅ, ମୁଁ ଆସୁଛି । ଲୋକମାନଙ୍କ ଭିତରୁ ଜଣେ ପାଟି କରି ଉଠିଲା, ଆଜ୍ଞା ସବୁ ସରିଗଲା । ବାପା ଆସ୍ତେ ହାତ ଟେକିଲେ, କହିଲେ, ଆଃ ଧୈର୍ଯ୍ୟଧର, ମୁଁ ଆସୁଛି । ସେ ଭିତରକୁ ଚାଲିଗଲେ । କିଛି ଲୋକ ବି ଆସି ଜମିଲେଣି, ଯମୁନାକୁ ଯାଉଥିବା ଓ ଫେରୁଥିବା ଲୋକେ । ଅରିନ୍ଦମ


Digitized by srujanika@gmail.com

ସିତାରଟା ଗୋଟାଏ କଣରେ ରଖି ଆଗେଇ ଆସିଲା – 'କିହୋ ଯଦୁ କକା, କଅଣ ହେଲା ? କାହାର କଅଣ ହେଲା ?' 'କଅଣ ହେବ', ଯଦୁ କହିଲା, 'ରାଜ୍ୟ ଚାଲିଗଲା' । ପୁଣି ହାୟ... ହାୟ... । ଅରିନ୍ଦମ କାବା । ରାଜ୍ୟ ଚାଲିଗଲା ! କାହା ରାଜ୍ୟ ? ଛିଡ଼ା ହୋଇଥିବା ଲୋକେ ବି ଏ ତାକୁ ସେ ତାକୁ ଚାହିଁଲେ । ବାପା ଘର ଭିତରୁ ବାହାରି ଆସିଲେ, ଯିବା ପାଇଁ ପ୍ରସ୍ତୁତ ହୋଇ ଆସିଛନ୍ତି । କହିଲେ – ଉଠ, ଚାଲ । ଅରିନ୍ଦମକୁ ଡାକିଲେ, ଆ ମୋ' ସାଙ୍ଗରେ । ଛିଡ଼ା ହୋଇଥିବା ଲୋକମାନେ ଉଠି ଫେରି ଚାଲିଲେ । ସାଙ୍ଗେ ସାଙ୍ଗେ ବାପା ଓ ଅରିନ୍ଦମ ।

ରଜାଙ୍କ ନଅର ବେଶୀ ବାଟ ନୁହେଁ । ମଥୁରା ଦାଣ୍ଡରେ ଗଲାବେଳେ ଅରିନ୍ଦମ ଲକ୍ଷ୍ୟ କଲା ଠିକ୍ ସବୁଦିନିଆ ସକାଳ ପରି ନୁହେଁ । କୋଉଠି ଯେମିତି କଅଣ ଗୋଳମାଳ ହେଇଛି । ଲୋକମାନେ ତରତର ହୋଇ ଚୁପ୍‌ଚାପ୍ ଚାଲିଯାଉଛନ୍ତି । ଘର କବାଟ ସବୁ ଅଧାମେଲା କରି ସ୍ତ୍ରୀ ଲୋକମାନେ ଜୁଳୁଜୁଳୁ କରି ଚାହୁଁଛନ୍ତି । କୋଉଠି କେମିତି ପିଲାମାନେ ଆସି ବାହାରେ ବୁଲିଲେଣି । କିଏ କାହାକୁ ପାଟିକରି ଡାକୁଛି । ସହର ମଝି ଈଶାନେଶ୍ୱରଙ୍କ ମନ୍ଦିରରେ ଘଣ୍ଟା ବାଜିଲାଣି, କିନ୍ତୁ ଯେମିତି ଠିକ୍ ଠିକ୍ ନୁହେଁ, କମ କମ ଲାଗୁଛି, ଯେମିତି ପବନର କେମିତି ଅନ୍ୟ ଢଙ୍ଗ, ଅନ୍ୟ ବାସ୍ନା । ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା, ରାସ୍ତାରେ ଏତେ ସିପେଇ କାହିଁକି ? ଯାଉଛନ୍ତି ଆସୁଚନ୍ତି, ସମସ୍ତଙ୍କ ହାତରେ ଖଣ୍ଡା । ହଠାତ୍ ଈଶାନେଶ୍ୱରଙ୍କ ଘଣ୍ଟା ବନ୍ଦ ହୋଇଗଲା । ରାସ୍ତାର କୁକୁର ସବୁ ବିକଳ ହୋଇ ଭୁକିବାକୁ ଆରମ୍ଭ କଲେ । ରାଜନଅର ସେ ପାଖରୁ କୋଉଠୁ ଯେମିତି କାନ୍ଦଣା ଶୁଭୁଛି । ରାସ୍ତା ତଳୁ ମାଲ୍ୟାଣୀ ବୁଢ଼ୀ ଘରୁ କିଏ ଯେମିତି ବାହୁନେଇ ବାହୁନେଇ କହୁଛି ହାୟ.. ହାୟ... ଏଇଆ ଥେଲା । ଅରିନ୍ଦମ ବାପାଙ୍କୁ ଚାହିଁଲା । ବାପାଙ୍କ ଆଖିଦି'ଟା ଅଙ୍ଗାର ପରି ଜଳୁଛି । କିନ୍ତୁ ମୁହଁଟା ଯେମିତି ଯାତ୍ରାର ମୁଖା, ତାଲା ପକେଇଲା ପରି ବନ୍ଦ ହେଇଯାଇଛି । ବାପାଙ୍କ ଦେହଟା ସବୁଦିନେ ସବଳ, ଶୋକଠୋକ୍ । ସେ କୁଆଡ଼କୁ ନ ଚାହିଁ ସିଧା ସିଧା ତର ତର ହେଇ ଚାଲିଛନ୍ତି । ବାପା ଉତ୍ତେଜିତ, ବୁଝି ହେଉଛି । ସେ ଏତେ ଜୋରରେ ଜୋରରେ କେବେ ଚାଲନ୍ତି ନାହିଁ । ଲୋକଗୁଡ଼ା ପଛରେ ଦଉଡ଼ୁଛନ୍ତି । ପାଦକୁ ପାଦ ମିଳେଇ ଅରିନ୍ଦମ ବାପାଙ୍କ ସାଙ୍ଗରେ ଚାଲିବାକୁ ଚେଷ୍ଟା କଲା । ତାକୁ ବି ଉତ୍ତେଜିତ ଲାଗୁଛି । ମଥୁରାକୁ କିଏ ଆକ୍ରମଣ କଲା କି ?

କିଏ କରିପାରେ ? ହସ୍ତିନାପୁର, ପାଞ୍ଚାଳ, ମଗଧ ? ବା ସିନ୍ଧୁ ସେ ପାଖରୁ କେହି ? କାଳଯବନ ? ବା ଗଙ୍ଗା ଦକ୍ଷିଣରୁ ? ବା କେହି ଅସୁର ରାଜା ? ନାଁ, ସମ୍ଭବ ନୁହେଁ । ଯାଦବମାନେ ଦୁର୍ବଳ ନୁହନ୍ତି । ଉଗ୍ରସେନ ଧୀର, ଶାନ୍ତ, କିନ୍ତୁ ସାହସୀ । ପୁଣି

କଂସ ଆହୁରି ସାହସୀ, ଅତି ଦୁର୍ଦ୍ଦାନ୍ତ, ଏଇ ବୟସରୁ ବି ତା ଭୟରେ ଲୋକେ ଥରହର । ଜରାସନ୍ଧ ଜୋଇଁ । ପାଖଆଖ ରାଜାମାନେ ତାକୁ ଆଡ଼େଇ ଆଡ଼େଇ ଚାଲନ୍ତି । ନାଁ ସମ୍ଭବ ନୁହେଁ । ସକାଳୁ ସକାଳୁ ମଥୁରା ଉପରେ ଆକ୍ରମଣ ! ହେଃ..। ତେବେ କଅଣ ? ବାପା ବି ଏତେ ଗମ୍ଭୀର କାହିଁକି ? ଲୋକମାନଙ୍କ ଢଙ୍ଗଢ଼ାଙ୍ଗ ବି ଠିକ୍ ନୁହେଁ । ଗୋଟାଏ କେମିତି ବ୍ୟସ୍ତବ୍ୟସ୍ତ ଭାବ, ପବନରେ ଯେମିତି କଅଣ ଭାସି ବୁଲୁଛି । ଯମୁନାର ସକାଳୁଆ, ମିଠା, ଶିତୁଳିଆ ପବନ ନୁହେଁ । ଗରମ ଗରମ ଲାଗୁଛି । ନିଃଶ୍ୱାସ ନେବାକୁ କଷ୍ଟ ହେଉଛି ।

ନଅର ପାଖେଇ ଆସିଲାଣି । ସିଂଦରଜା ସାମ୍ନାରେ ବେଶ୍ କିଛି ଲୋକ ଦିଶୁଛି । ବେଶ କିଛି ସିପେଇ ବି । ଏପାଖ ସେପାଖ ହେଉଛନ୍ତି । ଲୋକଙ୍କୁ ଆଡ଼େଇ ଆଡ଼େଇ ଠେଲୁଛନ୍ତି । ନାଁ, ନଅର ଭିତରକୁ କାହାକୁ ଛାଡୁନାହାନ୍ତି । ସବୁ ବାହାରେ । ଦରଜା ବି ପୂରା ଖୋଲା ନାହିଁ, ଅଳ୍ପ ମେଲା । ଆଠ ଦଶ ଜଣ ସିପେଇ ବାଟ ବନ୍ଦ କରି ଛିଡ଼ା ହେଇଛନ୍ତି । ସବୁ ଚୁପ୍‌ଚାପ୍ ।

ବାପା ସେମିତି ସିଧା ସିଧା ଚାଲିଛନ୍ତି । କୁଆଡ଼କୁ ନଜର ନାହିଁ, ନଜର ସିଂଦରଜା ଉପରେ । ବାପାଙ୍କୁ ଦେଖି ଲୋକମାନେ ଯେମିତି ହଲଚଲ ହେଲେ, ନିଜ ଭିତରେ ଚୁପଚାପ ହେଲେ । ଜଣେ ଅଧେ ଆଗେଇ ଆସି 'ପ୍ରଣାମ ଆଜ୍ଞା', 'ପ୍ରଣାମ ଆଜ୍ଞା' କହିବାକୁ ଚେଷ୍ଟା କଲେ । ସିପେହୀମାନେ ଲୋକଙ୍କୁ ପଛକୁ ପଛକୁ ଠେଲି ଧରିଲେ । ଜଣେ କିଏ ସିପେହୀ ପାଟି କଲା; 'ଚୁପ୍ ଚୁପ୍'... କିନ୍ତୁ ବାପାଙ୍କୁ କେହି ବନ୍ଦ କଲେନି । ଦରଜା ଅଧା ମେଲା କରି ସିପେହୀମାନେ ଆଡ଼େଇଗଲେ । ବାପାଙ୍କ ପଛେ ପଛେ ଅରିନ୍ଦମ ବି ନଅର ଭିତରକୁ ପଶିଲା ।

ଅରିନ୍ଦମ ଲକ୍ଷ୍ୟ କଲା ବାପା ଏକା ନୁହନ୍ତି । ବାପାଙ୍କ ଆଗେ ଆଗେ ଆଉ କିଛି ମୁଖିଆ ଲୋକେ ଦରବାର ଘର ଆଡ଼କୁ ଚାଲିଛନ୍ତି । କିନ୍ତୁ ନଅର ଭିତରେ ଏତେ ସିପେହୀ କାହିଁକି ? ବେଶ୍ କିଛି । ବାହାର ଠଉଁ ବି ବେଶି । ନଅରର ଏଠି ସେଠି, ଘାସ ପଡ଼ିଆ ଉପରେ, ଗଛ ମୂଳେ, ଘର ଚାରିପାଖ ପାଚିରି କରେ କରେ, ରାଜ ପରିବାରର ଲୋକମାନଙ୍କର ଘର ପାଖେ ପାଖେ, ଲାଗି ଲାଗି ଦରବାର ଘର ପର୍ଯ୍ୟନ୍ତ । ଅରିନ୍ଦମକୁ କେମିତି ଖଟକା ଲାଗିଲା । ଏ ନଅର ତା'ର ଅପରିଚିତ ନୁହେଁ । ସେ ଅନେକ ଥର ଆସିଛି । ବାପାଙ୍କ ସାଙ୍ଗରେ, ଏକା ଏକା ବି । ଉଗ୍ରସେନ ତାକୁ ସ୍ନେହ କରନ୍ତି, ଦେବକୀ, ବସୁଦେବ, ଅକ୍ରୁର, ସମସ୍ତେ । କଂସ ବି ଖୁବ୍ ଘନିଷ୍ଠ ନ ହେଲେ ବି, ବନ୍ଧୁ ପରି ବ୍ୟବହାର କରେ । ହେଇ ସେ ପାଖ ଗଛମୂଳେ ସେ ଅନେକ ସମୟରେ କଂସ ସାଙ୍ଗରେ ଏକାଠି ବସିଛି, କଥାବାର୍ତ୍ତା କରିଛି । କିନ୍ତୁ କଂସ ଯେପରି


Digitized by srujanika@gmail.com

ଲୋକ ସେ କାହାରି ସାଙ୍ଗରେ ବି ବନ୍ଧୁ ହୋଇପାରିବନି । ତା'ର ଉଚ୍ଚ ଆଶା ଅସମ୍ଭବ । ସେ ଆର୍ଯ୍ୟାବର୍ତ୍ତର ଏକାଙ୍ଗ ଚକ୍ରବର୍ତ୍ତୀ ହେବାକୁ ଚାହେଁ । ତା'ର କାହାରି ପ୍ରତି ଶ୍ରଦ୍ଧା ନାହିଁ - ବାପା, ଭାଇ, ବନ୍ଧୁ, କେହି ନୁହେଁ । ତା'ର ଦେବ ଦ୍ୱିଜରେ ଭକ୍ତି ନାହିଁ । ଦରକାର ହେଲେ ସେ ସହସ୍ର ଲୋକଙ୍କୁ ସମ୍ପୂର୍ଣ୍ଣ ସୁସ୍ଥ ମନରେ ହତ୍ୟା କରିପାରେ । ଦରକାର ହେଲେ ତା'ର ନିଜ ଲୋକ ଯାଦବମାନଙ୍କୁ ସେ ପିମ୍ପୁଡ଼ି ପରି ଗୋଡ଼ରେ ଦଳିଦେଇ ପାରେ । ଆଉ ତାକୁ ସାହଯ୍ୟ କରିବାକୁ ବି ସେମିତି ସେମିତି ଲୋକ, ସବୁ ମଥୁରା ବାହାରୁ । ସେ ମଥୁରା ଲୋକଙ୍କୁ ବିଶ୍ୱାସ କରେ ନା । ଅସୁର ପରି ଚେହେରା, ଅସୁର ପରି ବଳ, ଅସୁର ପରି ଢଙ୍ଗଢ଼ାଙ୍ଗ । କଂସ ଛଡ଼ା ସେମାନେ କାହାକୁ ମାନନ୍ତି ନି । କଂସ ଇସାରାରେ ଯାହାକୁ ନାଇଁ ତାକୁ, ହାଣକାଟ ଠାରୁ ଆରମ୍ଭ କରି, ଆଖି ପିଛୁଳାକେ, ବଂଶ ଲୋପ କରିଦେବେ । ଅରିନ୍ଦମ ଦେଖିଛି ସେମାନଙ୍କୁ ଧରି ମଝିରେ ମଝିରେ କଂସ ମଥୁରା ଦାଣ୍ଡରେ ବୁଲାବୁଲି କରେ । ତାଟିକବାଟ ପଡ଼ିଯାଏ । ଦାଣ୍ଡ ଶୂନ୍‌ଶାନ୍ ହୋଇଯାଏ । ବଡ଼ ତ ବଡ଼, ପିଲାମାନେ ବି ପଦାକୁ ବାହାରନ୍ତିନି । ଘରୁ ଘରୁ ବି ପାଟିଗୋଳ ଶୁଭେନା । ଚାରିଆଡ଼ ଗୁମ୍, ଚୁପ୍‌ଚାପ୍, ଖାଲି ସେଇ ଲୋକଙ୍କର ଚାଲିବାର ଧପଧପ ଶବ୍ଦ, ଠୋ ଠୋ ହସ । ଉଗ୍ରସେନ ରାଜା ଠିକ୍, କଂସ ଯୁବରାଜ, କିନ୍ତୁ କଂସ, କଂସ । ଲୋକଙ୍କର କଂସକୁ ଯମ ପରି ଡର । କଂସ ଅରିନ୍ଦମ ସାଙ୍ଗରେ କେବେ ଖରାପ ବ୍ୟବହାର କରିନି । ଦେଖାହେଲେ ହସିକରି କଥା କହେ । ବାପାଙ୍କୁ ବି ସେ ମାନ୍ୟ କରେ । କିନ୍ତୁ ଏ ଯମୁନାର ସ୍ଥିର, ନୀଳ ପାଣି ପରି । ମନେହେବ ଏ ଗୋଟାଏ ସୁନ୍ଦର ପଡ଼ିଆ କି ? କିନ୍ତୁ ଗୋଡ଼ ଦେଲେ କୋଉ ଅତଳ ଗଣ୍ଡରେ ଶେଷ ।

ଥରେ ସେ ବାପାଙ୍କୁ ପଚାରିଥିଲା- 'ବାପା, ଏ କେମିତି କଥା । ଉଗ୍ରସେନଙ୍କ ପୁଅ କଂସ ! ଏ କେମିତି ମିଶୁନି । ଏ କେମିତି ହେଲା ?' ବାପା ଖାଲି ହସିଥିଲେ । କହିଥିଲେ - 'ପ୍ରାରବ୍ଧ'। ବାସ୍ । ପ୍ରାରବ୍ଧ ! ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ଚାରି ପାଖରେ ଯାହା ଯାହା ଘଟିଯାଉଛି ସବୁ ପ୍ରାରବ୍ଧ ! ମଣିଷ ଯେମିତି ହେଉଛି, ଯାହା କରୁଛି, ଦେଶ ଦେଶ ଭିତରେ ଯେତେ କଥା, ଯେତେ ଭଲ ମନ୍ଦ । ସେ ପୁଣି ଥରେ ବାପାଙ୍କୁ ପଚାରିଥିଲା - 'ବାପା, ମଥୁରାର ପ୍ରାରବ୍ଧ କଅଣ କଂସ ? ତା'ପରେ ?' ବାପା ହସି ନ ଥିଲେ, ଅନେକ ସମୟ ଚୁପ୍ ହୋଇ ରହିଥିଲେ । ତା'ପରେ କହିଲେ, 'ନାଁ କଂସ ଶେଷ ନୁହେଁ, କଂସ ଆରମ୍ଭ । ଏ ପ୍ରାରବ୍ଧ ନୁହେଁ । ଏ ଭବିଷ୍ୟତ । ଖାଲି କଂସ କାହିଁକି ? ମଥୁରାକୁ ଦେଖ୍, ଏ ତ ନାଁକୁ ଯଦୁବଂଶ । ଚରିତ୍ର କାହିଁ ? ସାଧୁତା, ସତତା, ଏସବୁ ଆଉ ଅଛି ? କଂସ ରାଜା ହେବନି ତ ଆଉ କିଏ ହେବ ?' ବାପାଙ୍କ


Digitized by srujanika@gmail.com

କଥା ଠିକ୍, ମଥୁରାର ଆଉ ଚରିତ୍ର ନାହିଁ । ମଥୁରା ନର୍କକୁଣ୍ଡ ପରି ଉଛୁଳୁଛି । ତା'ହେଲେ ବାପା କାହିଁକି କହୁଛନ୍ତି ଏ ଆରମ୍ଭ । ଏ ତ ଶେଷ । ନର୍କ ପରେ କଅଣ ସ୍ୱର୍ଗ ? ବାପା କହିଥିଲେ, ଠିକ୍, ସ୍ୱର୍ଗ, ସେଇ ସ୍ୱର୍ଗକୁ ଅପେକ୍ଷା କରିବାକୁ ହେବ ।

ବାପା ଦରବାର ଘର ଆଡ଼କୁ ଆଗେଇ ଗଲେଣି । ଅରିନ୍ଦମ ପଛରେ ପଡ଼ିଯାଇଛି । ସେ ଚାରିପାଖକୁ ପୁଣି ଥରେ ଦେଖିଲା । ଏତେ ସିପେହୀ ! ଏତେ ସିପେହୀ ସେ ତ ଆଗରୁ କେବେ ଦେଖି ନ ଥିଲା । ଏତେ ସିପେହୀ ଆସିଲେ କୋଉଠୁ ? ମଥୁରାରେ ରାଜା ଥିଲେ ବି କିଛି ବିପଦ ଆପଦ ହେଲେ ସବୁ ମୁଖିଆମାନେ ବସି ବିଚାର କରନ୍ତି । ପ୍ରତି ମୁଖିଆଙ୍କର କିଛି କିଛି ଲୋକ ଅଛନ୍ତି । ଦରକାର ହେଲେ ସେମାନେ ରଜାଙ୍କର ସୈନ୍ୟସାମନ୍ତଙ୍କ ସାଙ୍ଗରେ ମିଶି ଯାଆନ୍ତି । ଉଗ୍ରସେନଙ୍କର ନିଜର ସିପେହୀ ଖୁବ୍ ବେଶୀ ନାହାନ୍ତି । ସେ ତ ଏକା ଏକା ସବୁ ଆଡ଼କୁ ଯାଆନ୍ତି । ତାଙ୍କ ରାଜ ନଅର, ରାଜ ଦରବାର ସବୁବେଳେ ଖୋଲା । କିନ୍ତୁ ଆଜି ଅନ୍ୟ ପ୍ରକାର ଲାଗୁଛି, ଅନ୍ୟ ଢଙ୍ଗ । ଲୋକମାନଙ୍କୁ ବନ୍ଦ କରାହେଉଛି । ଚାରିଆଡ଼େ ସିପେହୀ । ହାତରେ ଅସ୍ତ୍ର, ସତର୍କ, ସମସ୍ତଙ୍କ ଉପରେ ନଜର । କିଏ ଏମାନେ, ମଥୁରାରେ ତ ସେ ଏମାନଙ୍କୁ କେବେ ଦେଖିନି । ପୁଣି ଏତେ ସଂଖ୍ୟାରେ ! ହଠାତ୍ ରାଜ ନଅର ଭିତରେ ଜଗିବା କଅଣ ଦରକାର ହେଲା ? କାହାକୁ ଜଗିଛନ୍ତି ? ରାଜ ନଅର ଭିତରେ ତ ସେ ସିପେହୀ କେବେ ଦେଖିନି । ପୁଣି ଏତେ ସତର୍କ ! ଚୁପ୍‌ଚାପ୍, କିନ୍ତୁ ପ୍ରସ୍ତୁତ, ସାମାନ୍ୟ ଇଙ୍ଗିତରେ ଝାମ୍ପି ପଡ଼ିବେ । ଦେଖିଲେ ଭୟ ଲାଗେ । କି ଚେହେରା ! ଆଖି ଲାଲ ଲାଲ, ନଜରଟା ଯେମିତି ସାପ ପରି ଗୁଡ଼େଇ ଧରୁଛି । ଏଠିକାର ସିପେହୀ ହସନ୍ତି, ହସି କଥା କହନ୍ତି, ଅନେକ ବି ଚିହ୍ନା । ଏମାନଙ୍କର ପୋଷାକ ବି ଠିକ୍ ଏଠିକାର ପୋଷାକ ନୁହେଁ, ଅରିନ୍ଦମ ଲକ୍ଷ୍ୟ କଲା, ଫେର ଅଲଗା । ବାହାର, ବାହାର ଲୋକ, ଏମାନେ ବାହାର ଲୋକ । ଚକ୍ କରି ଅରିନ୍ଦମ ମନରେ ଗୋଟାଏ କଥା ଉଠି ମିଳେଇଗଲା । ମଗଧ... କଂସ ବିଭାଘର ସମୟରେ ତା ସାଙ୍ଗରେ ଯେଉଁ ସୈନ୍ୟସାମନ୍ତ ଆସିଥିଲେ ସେମାନେ ପ୍ରାୟ ଏଇମାନଙ୍କ ପରି, ମୋଟାସୋଟା, ଷଣ୍ଢ ଚେହେରା, ଅଭଦ୍ର । ମଥୁରା ଯେମିତି ତାଙ୍କ କରଦ ରାଜ୍ୟ, ବ୍ୟବହାର ସେମିତି । କିନ୍ତୁ ଆଜି ସକାଳୁ ସକାଳୁ ମଗଧ ସିପେହୀ କାହିଁକି ? ସେମାନେ କେବେ ଆସିଲେ ? କିଏ ଆଣିଲା ? କାହିଁକି ?

କଂସ, କଂସ ଛଡ଼ା ଆଉ କିଏ ଆଣିପାରେ, ସେ ଜରାସନ୍ଧ ଜୋଇଁ । ତେଣୁ ଖୁବ୍ ସମ୍ଭବ ସେହି ହିଁ ଏ ମଗଧ ସିପେହୀଙ୍କୁ ଆଣିଚି । କିନ୍ତୁ କାହିଁକି ? ମଥୁରାରେ ତ ସିପେହୀ ଅଛନ୍ତି, ସୈନ୍ୟସାମନ୍ତ ଅଛନ୍ତି । ହଠାତ୍ ଗୋଟାଏ ଘଟଣା ଅରିନ୍ଦମ


Digitized by srujanika@gmail.com

ମନରେ ଚେଇଁ ଉଠିଲା । ଠିକ୍, କଂସ ମଥୁରା ସିପେହୀଙ୍କୁ ବିଶ୍ୱାସ କରେନା, ସେମାନେ ବି କଂସ କଥା ପୂରା ଶୁଣନ୍ତିନି । ତା' ହୋଇଥିଲେ ସେଦିନ ଯମୁନା ପର୍ବରେ କଂସର ଯୋଉ ମାତଲାମି, କଅଣ ଯେ ହେଇଥାନ୍ତା ଠିକ୍ ନାହିଁ । ବଡ଼ ବଡ଼ ମଣିଷମାନେ ତ ସମସ୍ତେ କଂସକୁ ଡରି ଚୁପ୍ ରହିଲେ । ଅଧିକାଂଶ ସିପେହୀ ବି ମେଣ୍ଢାପରି ମାନିଗଲେ । କେବଳ ଥୋଡ଼ାଏ ଟୋକା ସିପେହୀ ତେଡ଼ି ବସିଲେ । ସେତିକିରେ ହିଁ ଅବସ୍ଥା ସମ୍ଭଳା ପଡ଼ିଗଲା । ନଚେତ ସେଦିନ କାହାର ମାନ ଇଜ୍ଜତ୍ ନ ଥାନ୍ତା, ଝିଅ ବୋହୂଙ୍କ ଅବସ୍ଥା ବାରଣ୍ଡା ଦି'କଡ଼ା ହେଇଥାନ୍ତା ।

ସିଂଦରଜା ଆଡୁ ପାଟିଗୋଳ ଶୁଭୁଛି, ଯୁକ୍ତିତର୍କ, ରାଗିକରି ହୁଂକାର ଦେଲାପରି ହୁଂକାରର ଶବ୍ଦ, ଅଭଦ୍ର ଭାଷାରେ ଗାଳି ଗୁଲଜ, ଅରିନ୍ଦମ ଛିଡ଼ା ହେଇ କାନ ଦେଲା । ସ୍ପଷ୍ଟ ବୁଝିହେଉନି । ମନେହେଲା କେଉଁମାନେ ଯେମିତି ଠେଲାପେଲା କରି ପଶିବାକୁ ଚେଷ୍ଟା କରୁଛନ୍ତି, ଅନ୍ୟମାନେ ବନ୍ଦ କରୁଛନ୍ତି, ତା'ପରେ ମାଡ଼ ଦେବାର ଶବ୍ଦ, କିଏ କାହାକୁ ପିଟୁଛି, 'ମରିଗଲି... ମରିଗଲି' ଅସ୍ପଷ୍ଟ ଚିତ୍କାର, ତା'ପରେ ସବୁ ଚୁପ । ଅରିନ୍ଦମ ଅପେକ୍ଷା କଲା । ନାଁ, ସବୁ ଚୁପଚାପ, ଆଉ ପାଟିଗୋଳ ନାହିଁ । ସେ ନଅର ଭିତରକୁ ଚାହିଁଲା । ସେଠି ବି ଚୁପ୍‌ଚାପ୍ । ଯୋଉଠିକା ସିପେହୀ ସେଇଠି, ସାମାନ୍ୟ ହଲଚଲ ନାହିଁ । ସିଂ ଦରଜାର ଗୋଳମାଳ ଯେମିତି କିଛି ନୁହେଁ, ଆସିଲା ଚାଲିଗଲା । ମଗଧର ସିପେହୀ ନିଷ୍ଠୁର, ଅଭଦ୍ର, କିନ୍ତୁ ଶୃଙ୍ଖଳା ଅଛି, ଅରିନ୍ଦମ ଭାବିଲା । କଂସର ସେମାନେ ବେଶ୍ ଅନୁଗତ, ଏଥିରେ ଭୁଲ ନାହିଁ । ସେମାନଙ୍କ ଉପରେ ନିର୍ଭର କରି ହେବ । ଗୋଟାଏ ସନ୍ଦେହ ଅରିନ୍ଦମ ମନରେ ବାରମ୍ବାର ଉଠି ମିଳେଇ ଯାଉଥାଏ । ଏ କଂସ । କଂସର କାରବାର ! କିନ୍ତୁ କଅଣ ?

କଂସକୁ କେତେ ବୟସ ହେବ ? ତା'ଠାରୁ ସେ ଅଳ୍ପ ସାନ, ୧୯-୨୦ ହବ । କିନ୍ତୁ ଏଇ ବୟସରୁ ବି ଲୋକଙ୍କର ତା ପ୍ରତି କି ଡର ! ତା'ର ବିଚାର ନାହିଁ, ଯା' ସ୍ଥିର କଲା ସେଇ ବିଚାର । ସେ ଉଗ୍ରସେନଙ୍କୁ ମାନେନା, କାହାରିକୁ ମାନେନା । ସେ ଯାହା କହିବ ତାକୁ ମାନିବାକୁ ହେବ । ତା'କଥା ଉପରେ କଥା ନାହିଁ । କେହି ବି ତାକୁ ବିରକ୍ତ କରିବାକୁ ଚାହାନ୍ତି ନାହିଁ, ସମସ୍ତେ ମନେ ମନେ ତାକୁ ଆଡ଼େଇ ଯିବାକୁ ଚାହାନ୍ତି । ଅନେକ ଘଟଣା ଅରିନ୍ଦମ ମନରେ ଉଠି ମିଳେଇ ଯାଉଥାଏ । ଏ କେବଳ ଯମୁନା ପର୍ବ କଥା ନୁହେଁ । ଯମୁନା ପର୍ବ ତ ଏଠିକାର ଘଟଣା । ବହୁ ଆଗରୁ, ପ୍ରାୟ ପିଲାଦିନରୁ, କଂସର ଢଙ୍ଗଢ଼ାଙ୍ଗରେ ସବୁ ଗୁରୁଜନମାନେ ବିରକ୍ତ ହୋଇ ଉଠିଥିଲେ । କାହାରି ପ୍ରତି ସମ୍ମାନ ନାହିଁ, କଥା କହିବା ଅତ୍ୟନ୍ତ ଅସଂଯତ, କାମଦାମ ବି ସେମିତି, ଶାଳୀନତା ନାହିଁ । ଉଗ୍ରସେନଙ୍କ ପୁଅ, ଭବିଷ୍ୟତରେ ମଥୁରାର ରାଜା

ହେବ, ଯାଦବମାନଙ୍କର ରାଜା । କିନ୍ତୁ ରଜାପୁଅର କୌଣସି ଗୁଣ ନାହିଁ, ସ୍ୱାର୍ଥପର, ଅହଂକାରୀ, ଚରିତ୍ରହୀନ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେହର ଶକ୍ତି ବଢ଼ିଲା । ପ୍ରଥମେ ପ୍ରଥମେ ମଥୁରାର ମଲ୍ଲଯୋଦ୍ଧାମାନଙ୍କ ସାଙ୍ଗରେ ସେ ଲଢୁଥିଲା । ପରେ ତା' ସହିତ ଟକ୍କର ଦେବା ପାଇଁ, ତା' ସମକକ୍ଷ ମଥୁରାରେ କେହି ରହିଲା ନାହିଁ । ସେ ଅନ୍ୟ ରାଜ୍ୟରେ ଖୋଜି ବୁଲିଲା କିଏ ତା' ସହିତ ଲଢ଼ିପାରିବ, ତା'ର ସମକକ୍ଷ କିଏ ? ଲୋକେ ପ୍ରଥମେ ପ୍ରଥମେ ଅବହେଳା କରୁଥିଲେ, ପରେ ସମୀହ କଲେ, ପରେ ଭୟ କଲେ । ଖୁବ୍ ଦରକାର ନ ହଲେ କେହି ତା'ର ମୁହାଁମୁହିଁ ହବାକୁ ଚାହିଁଲେନି ।... ଜରାସନ୍ଧ ଦରବାର କଥା ଅରିନ୍ଦମର ମନେ ଅଛି । ମଲ୍ଲ ଯୁଦ୍ଧର ପ୍ରତିଯୋଗିତା ଚାଲିଥାଏ । ବହୁ ପ୍ରତିଯୋଗୀ, ବହୁ ବିଭିନ୍ନ ରାଜ୍ୟରୁ ଆସିଥାନ୍ତି । ଜରାସନ୍ଧ ନିଜେ ପ୍ରଚଣ୍ଡ ଯୋଦ୍ଧା । ତା'ପରି ଯୋଦ୍ଧା ସାରା ଆର୍ଯ୍ୟାବର୍ତ୍ତରେ କେହି ନାହିଁ । ପ୍ରତିଯୋଗିତା ପାଞ୍ଚଦିନ ଧରି ଚାଲିଲା । ଲୋକେ କୁହାକୁହି ହେଉଥାନ୍ତି, ଜରାସନ୍ଧ ଏ ପ୍ରତିଯୋଗିତାରୁ ନିଜ ଦି' ଝିଅପାଇଁ ଜୋଇଁ ବାଛିବାକୁ ଚାହେଁ । ସେଇଆ ବି ହେଲା, ପ୍ରତିଯୋଗିତା ପରେ ଜରାସନ୍ଧ କଂସକୁ ନିଜ ଜୋଇଁ ଭାବରେ ଠିକ୍ କଲା... ।

କିନ୍ତୁ କି ନିଷ୍ଠୁର ପ୍ରତିଯୋଗିତା ! ଜରାସନ୍ଧର ବିଶେଷ ନିମନ୍ତ୍ରଣ ପାଇ କଂସ ଯାଇଥାଏ । କଂସ ଗହଣରେ ଅରିନ୍ଦମ । ପ୍ରତିଯୋଗିତା ଆରମ୍ଭ ହବାର ଯଥେଷ୍ଟ ଆଗରୁ ସେମାନେ ମଗଧରେ ପହଞ୍ଚିଥାନ୍ତି ଓ ଜରାସନ୍ଧର ବିଶାଳ ରାଜନଅର ଭିତରେ ସେମାନଙ୍କ ପାଇଁ ଶିବିର ଠିକ୍ ହୋଇଥାଏ । ଅଦ୍ଭୁତ ବିରାଟ ଆୟୋଜନ, ଭୂରି ଭୋଜନ, ନୃତ୍ୟଗୀତ, ଅସଂଖ୍ୟ ସୁନ୍ଦରୀ ପରିଚାରିକା, ଅପର୍ଯ୍ୟାପ୍ତ ପାନୀୟ । ଜରାସନ୍ଧର ପୁଅମାନେ ବାରମ୍ବାର ଶିବିରରୁ ଶିବିର ବୁଲୁଥାନ୍ତି । ସବୁବେଳେ ପ୍ରଶ୍ନ, ଆଉ କଅଣ ଦରକାର, ଆଉ କଅଣ ଦରକାର । ସତେ ଯେମିତି କିଛି ନ କହିଲେ ସେମାନଙ୍କର ବେଶି କଷ୍ଟ, ବେଶି ଦୁଃଖ । ପାଚକମାନେ ଠିକ୍ ସମୟରେ ଖାଇବା ଦଉଛନ୍ତି ତ ? ପରିଚାରିକାମାନେ ଠିକ୍ ସମୟରେ ଆସୁଛନ୍ତି ତ ? ମଲ୍ଲଯୋଦ୍ଧାମାନଙ୍କର ଅଭ୍ୟାସ କରିବାରେ ଅସୁବିଧା ନାହିଁ ତ ? ଇତ୍ୟାଦି । ଅରିନ୍ଦମ ବିଭିନ୍ନ ଶିବିରକୁ ଯାଇଛି । ସହର ବୁଲି ଦେଖିଛି । କୋଉଠି ନାଚଗୀତ ତ କୋଉଠି ଖେଳ କସରତ । କୋଉଠି ଖାଦ୍ୟ ତ କୋଉଠି ପାନୀୟ । ଆଉ ସବୁଆଡ଼େ ସୁନ୍ଦରୀ ସୁନ୍ଦରୀ ଝିଅମାନେ ମେଳା ମେଳା । ଆଉ ସବୁଆଡ଼େ ଜରାସନ୍ଧର ଜୟଜୟକାର–ଦାନୀ, ଜ୍ଞାନୀ, ଯୋଦ୍ଧା, ଆର୍ଯ୍ୟାବର୍ତ୍ତରେ ଏପରି ସମ୍ରାଟ ନାହାନ୍ତି । ଏପରି ଆଡ଼ମ୍ବର କିଏ କରିପାରେ ? ଏପରି ଆତିଥେୟତା ପାଇଁ କିଏ ସମର୍ଥ ? କିନ୍ତୁ କେତେଗୁଡ଼ା


Digitized by srujanika@gmail.com

କଥାରେ ଅରିନ୍ଦମକୁ ଖଟକା ଲାଗିଥିଲା । ଆଉ ସେ ଯେତେ ଭାବିଲା ଖଟକାଟା ବେଶି ବେଶି ବଢ଼ିଲା । ଯେମିତି, ଜରାସନ୍ଧ ଦିନେ କେବେ କୌଣସି ଶିବିରକୁ ଆସିନାହିଁ । ସବୁଆଡ଼େ ତା'ରି ନାଁ, ତାରି ଚର୍ଚ୍ଚା, କିନ୍ତୁ ତାକୁ ପାଖରେ ବା ଆଖିରେ କିଏ ଦେଖିଛି ? ଖୁବ୍ କମ । ଥରେ ସେ ଜରାସନ୍ଧର ଜଣେ ଲୋକକୁ ପଚାରିଥିଲା, 'ଆଚ୍ଛା, ଜରାସନ୍ଧ କାଇଁ ଆସୁନାହାନ୍ତି ? କେବେ ଆସିବେ ?' ଲୋକଟା ଟିକେ ତେଢ଼ା ଆଖିରେ ଅରିନ୍ଦମକୁ ଚାହିଁଲା । ଉତ୍ତର ଦେଲା ନାହିଁ । ସେ ଚାଲିଯାଉଛି, ଅରିନ୍ଦମ ତା' ପାଖକୁ ଲାଗିଗଲା । ପୁଣି ପଚାରିଲା, 'ଆଚ୍ଛା, ଜରାସନ୍ଧ କାଇଁ ଆସୁନାହାନ୍ତି ? କେବେ ଆସିବେ ?'

ଲୋକଟି ଛିଡ଼ାହେଲା, ଆଖି ଜଳୁଥାଏ । ତତଲା ଆଖିରେ ଅତ୍ୟନ୍ତ ରୁକ୍ଷ ସ୍ୱରରେ ପଚାରିଲା, 'ତୁମେ କିଏ ? ସମ୍ରାଟଙ୍କ ପାଖରେ ତୁମର କାମ କ'ଣ ?' ଓହୋ, ଅରିନ୍ଦମ ଭୁଲି ଯାଇଥିଲା । ସମ୍ରାଟ – ସେ ବିନୀତ ହୋଇ କହିଲା, 'ନାଁ, ନାଁ, କାମ କିଛି ନାହିଁ । ସମସ୍ତେ ସମ୍ରାଟଙ୍କ କଥା କହୁଛନ୍ତି । ଏତେ ବିରାଟ ଆୟୋଜନ । ସମ୍ରାଟ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଯୋଦ୍ଧା । ଟିକିଏ ଖାଲି ଦେଖିବାକୁ ଇଚ୍ଛା । ଆଉ କିଛି ନୁହେଁ ।' ଲୋକଟାର ରାଗ ସାମାନ୍ୟ କମି ଆସିଲା । ସେ ଅରିନ୍ଦମକୁ କିଛି ସମୟ ନିରୀକ୍ଷଣ କଲା । ଅରିନ୍ଦମର ଭଲ ସ୍ୱାସ୍ଥ୍ୟ, କିନ୍ତୁ ସେ ମଲ୍ଲ ଯୋଦ୍ଧା ନୁହେଁ । ଚେହେରାରେ ସ୍ତ୍ରୀସୁଲଭ କମନୀୟତା ଓ ମୁହଁରେ ବାଳକସୁଲଭ ସରଳତା, ଦେଖିଲେ ରାଗ ନ ଆସି ସ୍ନେହ ଆସିବ । ଲୋକଟି ପଚାରିଲା, 'ତୁମେ କିଏ ? କୋଉଠୁ ଆସିଛ ? କାହା ସାଙ୍ଗରେ ?' ଅରିନ୍ଦମ ସେହିପରି ବିନୀତ ଭାବରେ କହିଲା, 'ମୋ ନାଁ ଅରିନ୍ଦମ । ମୁଁ ମଥୁରାରୁ ଆସିଛି କଂସ ସାଙ୍ଗରେ ।'

ଲୋକଟିର ରାଗ ପ୍ରାୟ କମି ଆସିଲା । ମୁହଁରେ ସାଧାରଣ ସ୍ୱଭାବିକତା । କହିଲା, 'ହୁଁ, ତୁମର ବୟସ ବେଶୀ ନୁହେଁ । ତୁମେ କଂସ ସାଙ୍ଗରେ ଆସିଛ । କିନ୍ତୁ ଏପରି ପ୍ରଶ୍ନ ଆଉ କାହାକୁ ପଚାରିବନି ।' ହଠାତ୍ ସେ ଚୁପ୍ କରିଗଲା । ସତର୍କ ହୋଇ ଚାରିପାଖକୁ ଚାହିଁଲା । ପୁଣି କହିଲା, 'ଏପରି ପ୍ରଶ୍ନ ଏଠି କେହି ପଚାରନ୍ତିନି । ସମ୍ରାଟ କୋଉଠିକି ଆସନ୍ତିନି । ତୁମେ ତାଙ୍କୁ ଦେଖିବାକୁ ଚାହୁଁଛ ଏକଥା ଜଣାଗଲେ ତୁମର କ୍ଷତି । ଖାଅ, ପିଅ, ନାଚ । ତୁମ ବୟସର ବହୁତ ଝିଅ ଅଛନ୍ତି । ଦେଖ, ସହର ବୁଲିବାକୁ ଚାହୁଁଛ, ଯାଅ, କିନ୍ତୁ ଅଚିହ୍ନା ଲୋକଙ୍କ ସାଙ୍ଗରେ ମିଶ ନା, ଯେତେ ପାରୁଛ ନିଜ ଲୋକଙ୍କ ପାଖରେ ରୁହ । ଆଉ ଦି'ଦିନ ପରେ ଆଖଡ଼ା ଆରମ୍ଭ ହବ । ସାବଧାନ, ଯଦି କାହାର ଜୟଜୟକାର କରିବ ତ ସମ୍ରାଟଙ୍କର, ଆଉ କାହାର ନୁହେଁ ।'

'ସମ୍ରାଟ ! ସମ୍ରାଟ କଅଣ ଲଢ଼ିବେ ?' ଅରିନ୍ଦମର ସ୍ୱରରେ ଆଗ୍ରହ । 'ନାଁ ବୋଧେ ନୁହେଁ, କିନ୍ତୁ ଜୟଜୟକାରର ଲଢ଼ିବା ସାଙ୍ଗରେ କଅଣ ସମ୍ପର୍କ ଅଛି ?' ଲୋକଟି କଥା କହୁ କହୁ ହଠାତ୍ ଚୁପ କରିଗଲା, ଆଗପରି ସତର୍କ ହୋଇ ଚାରିଆଡ଼କୁ ଚାହିଁଲା, ତା'ପରେ ଅରିନ୍ଦମକୁ ସମ୍ପୂର୍ଣ୍ଣ ଅବହେଳା କରି ସିଧା ସିଧା ଯୁଆଡ଼େ ଯାଉଥିଲା ଚାଲିଗଲା ।

ଅରିନ୍ଦମକୁ ଟିକେ କେମିତି ଲାଗିଲା । ଏ ତ ଅନ୍ୟ ଢଙ୍ଗର କଥା । ଲୋକଟି ଅଚିହ୍ନା, ଠିକ୍, ଜରାସନ୍ଧର ଲୋକ, ତା ବି ଠିକ୍ । କିନ୍ତୁ କଥାଟାତ ଠିକ୍ ହେଲାନି । ପ୍ରଥମେ ସେ ରାଗିଗଲା । ଅରିନ୍ଦମର ମନେହେଲା ଠିକ୍ କଥା, ଅରିନ୍ଦମର ଭୁଲ୍ । କିନ୍ତୁ ତା' ପରେ ? ଏ ତ ରାଗିବା କଥା ନୁହେଁ, ଡରିବା କଥା । ତା'ର ସତର୍କତା, ତା'ର ଉପଦେଶ । କାହାକୁ ଡର ? ଜରାସନ୍ଧକୁ ? ଲୋକଟିତ ରାଜାରାଜୁଡ଼ା ନୁହେଁ, ସାଧାରଣ ଲୋକ । ସାଧାରଣ ଲୋକର ଡର କାହିଁକି ? ସେ ତ ଖୁସିହେବା କଥା । କେତେଆଡୁ କେତେ ଲୋକ ଆସିଛନ୍ତି । ଦି'ଦିନ ପରେ ଆଖଡ଼ା । ସାରା ସହର ଉଠୁଚି ପଡୁଚି । ନାଁ ନାଁ, ଏ ଗୋଳମାଳିଆ କଥା । ଉପରକୁ ଠିକ୍‌ଠାକ୍, ଖାଇବା ପିଇବା, ଲୋକ କୋଳାହଳ, ଆନନ୍ଦ ଉଲ୍ଲାସ । କିନ୍ତୁ ଭିତରେ ଭିତରେ କେମିତି ଗୋଟାଏ ଡର, ଛାଇଛାଇକା, ଭୂତ ପରି ।

ଅରିନ୍ଦମ ଭାବିଲା ଲୋକଟିର ଉପଦେଶ ମାନିବା ଭଲ । କଅଣ ଦରକାର ଗୋଳମାଳକୁ ପଶିବା । ଚାରିପାଖରେ ଲୋକ ଭିଡ଼ । ନାଚ ହେଉଛି । ବାଜା ବାଜୁଛି । ଶିବିରରେ ସବୁ ମଶାଲ ଜଳିଲାଣି । ଖିଆପିଆର ବନ୍ଦୋବସ୍ତ ହେବ । ଭାବିଲା କଂସ କଅଣ କରୁଛି ? ଦେଖାକରି ଆସିଲେ ହେବ, ନାଃ, ଥାଉ, ମନରୁ ଚିନ୍ତାଟା ଛାଡୁନି । କାହିଁକି ଏ ଭୟ ? କାହିଁକି ? କଂସ ବି କଅଣ ଏମିତି ଡରୁଛି ? ଆଉ ଯେତେ ଆସିଛନ୍ତି ସମସ୍ତେ ? ଜରାସନ୍ଧର ପୁଅମାନେ କାହିଁକି ସବୁଆଡ଼େ ବୁଲୁଛନ୍ତି, ସମସ୍ତଙ୍କ କଥା ବୁଝୁଛନ୍ତି ? ସେ ବି କଅଣ ଡରରେ ? ଯୋଉ ଲୋକ ରାଜନଅର ଭିତରୁ ବାହାରକୁ ବାହାରୁ ନାହିଁ ତାକୁ ଏତେ ଡର ! ନାଁ, ଆଉ କଅଣ ?

ଅରିନ୍ଦମ ଦୋ ଦୋ ପାଞ୍ଚ ହେଲା । ନିଜ ଶିବିରକୁ ନ ଫେରି ପାଖ ପାଞ୍ଚାଳ ଶିବିରକୁ ଚାଲିଲା । ପାଞ୍ଚାଳ ଶିବିରରେ ଦି'ତିନିଜଣଙ୍କ ସାଙ୍ଗରେ ଚିହ୍ନାଜଣା ହୋଇଛି । ବେଶ୍ ଚଟପଟ ଲୋକ, ଅନେକ ଖବର ସେମାନଙ୍କ ପାଖରେ, ଜରାସନ୍ଧ ବିଷୟରେ ବେଶ୍ ଖୋଲାଖୋଲି ସେମାନେ ଗପନ୍ତି । ଦେଖାଯାଉ । କିନ୍ତୁ ବେଶି ବାଟ ଯିବାକୁ ହେଲାନାହିଁ । ପାଞ୍ଚାଳ ଶିବିର ଆଗରୁ ତାକୁ ଦି'ଜଣ ସିପାହୀ ଧରିଲେ । 'ଶୁଣ', 'ଶୁଣ' । ଅରିନ୍ଦମ ଛିଡ଼ା ହେଲା । ବୁଝିପାରିଲା ସିପାହୀ । ସେମାନଙ୍କ ପୋଷାକରେ

ଫରକ ନାହିଁ । କିନ୍ତୁ କମରରେ ଗୋଟାଏ ଲାଲ ପଟି ଭିଡ଼ା ହୋଇଛି ଓ ମୁଣ୍ଡରେ ଗୋଟାଏ ଛୋଟ ଲାଲ ପଗଡ଼ି । ମୁହଁର ଚେହେରା ଖୁବ୍ ସୁଖକର ନୁହେଁ ଓ ଆଖିଗୁଡ଼ା ସନ୍ଦିଗ୍ଧ ।

'ତୁମେ କିଏ ? କାହା ଲୋକ ?' ଜଣେ ପଚାରିଲା ।

ଅରିନ୍ଦମ ମନେ ମନେ ସତର୍କ ହେଇଗଲା ।

'ଆଜ୍ଞା, ଯୁବରାଜ କଂସଙ୍କ ଲୋକ, ମୋ ନାଁ ଅରିନ୍ଦମ ।'

'ହୁଁ । ସେ ଯୋଉ ଲୋକଟା ଗପୁଥିଲା, ସେ କିଏ ?'

'ଆଜ୍ଞା, ଜାଣେ ନା, ଏଇଠି ଦି'ତିନି ଥର ଦେଖିଛି । ତେବେ ଲୋକଟା ଭଲ ନୁହେଁ, ବଦମାସ ।'

'କାହିଁକି, କାହିଁକି ?' ଏକାସାଙ୍ଗରେ ଦି'ଜଣ ଯାକ ପଚାରିଲେ ।

'ବଦମାସ କାହିଁକି ? ତୁମକୁ ମାରଧର କଲା ?'

'ନାଁ, ନାଁ, ତା ନୁହେଁ । ମତେ ଦି'ଦିନ ତଳେ ଯୋଉକଥା ପଚାରୁଥିଲା, ଆଜି ପୁଣି ସେଇକଥା, ମୁଁ ଆଜି ମୁହେଁ ମୁହେଁ କହିଦେଲି –

ଯା, ଯା, ବାଟ ଦେଖ । କିଏରେ ତୁ ?

ସିପେହୀ ଦି'ଜଣ ଚୁପ ହୋଇ ଅରିନ୍ଦମକୁ ଚାହିଁଲେ । ଜଣେ ପଚାରିଲା,

'କୋଉ କଥା ?'

'ଯୁବରାଜ କଂସଙ୍କ କଥା । ବୟସ କେତେ ? ଦେଖିବାକୁ କେମିତି ? ସମ୍ରାଟଙ୍କ ସାଙ୍ଗରେ ସମ୍ପର୍କ କଅଣ ? କେବେ ରାଜା ହେବେ...'

'ଥାଉ, ଥାଉ', ଜଣେ ସିପେହୀ ବନ୍ଦ କଲା । 'ତାହେଲେ ଠିକ୍ କହୁଛ । ତୁମେ ସେ ଲୋକକୁ ଚିହ୍ନ ନା ?'

ଅରିନ୍ଦମ ମନେ ମନେ ଆତଙ୍କିତ ହୋଇ ଉଠିଲା । ଏମାନେ ତାକୁ ବିଶ୍ୱାସ କରୁନାହାନ୍ତି, ବୁଝି ହେଉଛି । ମିଛ କହିବାରେ ତ ଅଭ୍ୟାସ ନାହିଁ । ଭାବିଲା ସତ ସତ କହି ଦବ କି ? କହିଲା, 'ନାଁ, ମୁଁ ତାକୁ ଚିହ୍ନେ ନା ।'

'ସେ ସମ୍ରାଟଙ୍କ ବିଷୟରେ କଅଣ କହୁଥିଲା ?'

'କିଛି ନାହିଁ । ଖାଲି ପଚାରିଲା ମୁଁ ସମ୍ରାଟଙ୍କୁ ଦେଖିଛି କି ?'

'ତୁମେ ଦେଖିଛ ?'

'ନାଁ ।'

'ଦେଖିବାକୁ ଚାହଁ କି ?'

ଅରିନ୍ଦମ ମନେହେଲା କଥାରେ ଗୋଟାଏ ଫାଶ ଅଛି । ସାଙ୍ଗେ ସାଙ୍ଗେ ଉତ୍ତର


Digitized by srujanika@gmail.com

ଦେଲା 'ନାଁ' ।

'କାହିଁକି ?'

'ସମ୍ରାଟ କେଡ଼େ ବିରାଟ ଲୋକ, ମୁଁ କି ତୁଚ୍ଛ । ଆଉ ଦି'ଦିନ ପରେ ତ ଆଖଡ଼ା ଆରମ୍ଭ ହେବ । ସମ୍ରାଟ ଯେତେବେଳେ ଆଖଡ଼ାକୁ ଆସିବେ, ସମସ୍ତଙ୍କ ସାଙ୍ଗରେ ଦେଖିବି ।'

'ସମ୍ରାଟଙ୍କ ନାଁ ଆଗରୁ ଶୁଣିଛ ?'

'ଆଜ୍ଞା' ।

'ଜାଣ, ଯୁବରାଜ କଂସ ସମ୍ରାଟଙ୍କର ଖୁବ୍ ପାଖ ଲୋକ ।'

ଅରିନ୍ଦମର ମନେ ହେଲା ଏ ପୁଣି ଖସଡ଼ା ରାସ୍ତା । କହିଲା, 'ନାଁ' ।

'ହଁ, ଯୁବରାଜ କଂସ ଖୁବ୍ ପାଖର ।' ଜଣେ ସିପେହୀ କହିଲା । 'ଠିକ୍ ଅଛି, ତୁମେ ଯାଅ । ତୁମେ ଭଲଲୋକ ପରି ମନେ ହେଉଛ । କିନ୍ତୁ ସାବଧାନ, ଅଚିହ୍ନା ଲୋକ ସାଙ୍ଗରେ ମିଶିବନି କି ଅଚିହ୍ନା ଲୋକ ସାଙ୍ଗରେ କଥାବାର୍ତ୍ତା ହେବନି ।'

ସିପେହୀ ଦି'ଜଣ ଅରିନ୍ଦମକୁ ଛାଡ଼ି ଆଗେଇଗଲେ । ଅରିନ୍ଦମ ଭାବୁଛି କଅଣ କରିବ । ହଠାତ୍ ଜଣେ ସିପେହୀ ପଛକୁ ଫେରି ଚାହିଁଲା । କହିଲା, 'କି ହୋ ସେଆଡ଼େ କୁଆଡ଼େ ଯାଉଚ । ଯୁବରାଜ କଂସଙ୍କ ଶିବିର ତ ଏ ପାଖରେ ।'

'ନାଇଁ, ପାଞ୍ଚାଳ ଶିବିରକୁ ଯିବାକୁ ଭାବୁଛି ।' ଅରିନ୍ଦମ କହିଲା ।

'କାହିଁକି ? ସେଠି କି କାମ ?' ସିପେହୀର ସ୍ୱର କେମିତି କଠୋର ଶୁଭିଲା ।

'ସେଠି ଜଣେ ସାଙ୍ଗ ଲୋକ ଅଛି ତା ପାଖକୁ ।' ଅରିନ୍ଦମ ଉତ୍ତର ଦେଲା ।

ପଚାରୁଥିବା ସିପେହୀଜଣକ ଅରିନ୍ଦମ ଆଡ଼କୁ ଦି'ପାଦ ଆଗେଇ ଆସିଲା । ମନେହେଲା କଅଣ କହିବ । କିନ୍ତୁ ଆର ସିପେହୀ ତା' ହାତକୁ ଟାଣି ଧରିଲା । କହିଲା 'ଆଃ, ଛାଡ଼ । ଗୋଳମାଳ କଲେ ଧରିବାକୁ ବେଶି ସମୟ ଲାଗିବନି । ଆସ, ଆସ, ସନ୍ଧ୍ୟା ହେଲା, ଯୁବରାଜ ଅପେକ୍ଷା କରିଥିବେ ।' ଉଭୟ ଫେରିପଡ଼ି ଚାଲିଗଲେ ।

ଅରିନ୍ଦମ ଯେମିତି ଜାଲରୁ ଖସି ଆସିଲା । ଛାତିଟା ଧଡ଼ପଡ଼ ହେଉଛି, ଦେହସାରା ଗୋଟାଏ ଅସ୍ୱସ୍ତିକର ଉତ୍ତେଜନା । ଏ କଅଣ ! ସିପେହୀଙ୍କୁ ସେ ପ୍ରାୟ ସବୁଆଡ଼େ ଦେଖୁଛି । ରାଜନଅର ଭିତରେ, ବାହାରେ, ସବୁ ଶିବିରରେ, ସାରା ସହରରେ । ଦିନରେ, ରାତିରେ ବି । କିନ୍ତୁ ଆର ଗୋଟାଏ କିଛି ଗୂଢ଼ ଅର୍ଥ ଥାଇପାରେ ଏକଥା ସେ ଭାବିନି । ଏତେ ବଡ଼ ଆୟୋଜନ, ସାରା ଆର୍ଯ୍ୟାବର୍ତ୍ତରୁ ଲୋକ ଆସିଛନ୍ତି, କେତେ କେତେ ଲୋକ, କେତେପ୍ରକାର, ରାଜା ମହାରାଜା,


Digitized by srujanika@gmail.com

ସୈନ୍ୟସାମନ୍ତ, ସାଧୁସନ୍ଥ, ପୁଣି ଚୋର ତସ୍କର ବି । ତେଣୁ ସିପେହୀ ତ ରହିବେ, ଯଥେଷ୍ଟ ଯଥେଷ୍ଟ ସିପେହୀ । ତା' ନ ହେଲେ ଶାନ୍ତିଶୃଙ୍ଖଳା ରହିବନି । ଏ ବିଷୟରେ ଜରାସନ୍ଧଙ୍କର କାର୍ପଣ୍ୟ ନାହିଁ । ଆନନ୍ଦ ଉଲ୍ଲାସ, ଭୂରିଭୋଜନ ସହିତ ଶାନ୍ତିଶୃଙ୍ଖଳା ଠିକ ଗଣ୍ଡି ପଡ଼ିଲା ପରି ରହିଛି । ଅରିନ୍ଦମ ନିଜେ ମଥୁରାରେ ବଢ଼ିଛି । ମଥୁରାରେ ସବୁ ଖୋଲାମେଲା । ରାଜା ଉଗ୍ରସେନ ଯେମିତି ଥିଲା ସମସ୍ତେ ସେମିତି । ତେଣୁ ଏଠି, ରାଜଧାନୀ ରାଜଗିରିରେ, ସମ୍ରାଟ ଜରାସନ୍ଧଙ୍କର ଶୃଙ୍ଖଳା ଅନ୍ୟପ୍ରକାର ଲାଗିଲେ ବି, ଅରିନ୍ଦମକୁ ପ୍ରଥମେ ଭଲ ଲାଗିଥିଲା । ଏ ନୂଆ ପ୍ରକାର ଢଙ୍ଗ, କିନ୍ତୁ ଏ ଢଙ୍ଗରେ କାମ ହୁଏ ସେ ଭାବିଥିଲା । ବିଶେଷକରି ଏ ଯେଉଁ ବିରାଟ ଆୟୋଜନ, ଶୃଙ୍ଖଳା ନ ରହିଲେ, ସବୁକୁ ଠିକ୍ ଭାବରେ ହେପାଜତରେ ନ ରଖିଲେ କେମିତି ହେବ । ଏକଥା ଠିକ୍ ସମସ୍ତେ ହେପାଜତରେ ଥିଲେ । ଜରାସନ୍ଧ ନିଜେ କୋଉଠିକି ନ ଆସିଲେ ବି ତାଙ୍କର ଛାଇ ଯେମିତି ସବୁଆଡ଼କୁ ଘୋଡ଼େଇ ରଖିଥିଲା । ତେଣୁ କିଏ ଆସିଲା, କିଏ ଗଲା, କୋଉଠି ରହିଲେ, କଅଣ ଦରକାର ସାଙ୍ଗରେ ଦି'ଦିନ ପରେ ହବାକୁ ଥିବା ବିରାଟ ଆଖଡ଼ାର ଆୟୋଜନ ସବୁ ଠିକ୍ ଠିକ୍ ଚାଲିଥିଲା । କିନ୍ତୁ ଏ କଅଣ ? ଏ ତ ଅନ୍ୟ ପ୍ରକାର କଥା ।

ଅରିନ୍ଦମର ଛାତିଟା ଏବେ ବି ଧଡ଼ପଡ଼ ହେଉଛି । ମନେହେଲା ସେ ଅଳ୍ପକେ ଖସିଗଲା । ଏ ପ୍ରକାର ଅଭିଜ୍ଞତାକୁ କେମିତି ମୁକାବିଲା କରିବାକୁ ହେବ ତାକୁ ଜଣାନାହିଁ । ସିପେହୀ ଦି'ଜଣ ଚାଲିଗଲେଣି । ସେ ଲୋକଟାବି ବହୁତ ବେଳୁ ଚାଲିଗଲାଣି । ତେବେ ଆହୁରି ଆହୁରି ସିପେହୀ ଚାରିପାଖରେ ଦେଖା ଯାଉଛନ୍ତି । ଲୋକଗହଳି ଲାଗିଛି, ଆଲୁଅସବୁ ଶିବିରରେ ଜଳିଲାଣି । ଦୂରରେ ସମ୍ରାଟଙ୍କ ପ୍ରାସାଦ ଚାରିପାଖରେ ସୈନ୍ୟ ଜଗି ରହିଛନ୍ତି, ବହୁତ ଆଲୁଅ ଜଳୁଛି । ରାଜ ନଅରର ବିସ୍ତୀର୍ଣ୍ଣ ଭୂମିରେ ବି ଏଠି ସେଠି ଅନେକ ମଶାଲ । ଅରିନ୍ଦମ ଉପକୁ ଚାହିଁଲା । ତରା ଦିଶିଲାଣି । ଆଶ୍ୱିନର ପରିଷ୍କାର ଆକାଶ, ଅଳ୍ପ ଅଳ୍ପ ପବନ ବହୁଛି । ପବନରେ ଅଳ୍ପ ଅଳ୍ପ ଥଣ୍ଡାର ଆମେଜ । ପାଞ୍ଚାଳ ଶିବିରକୁ ଯିବ କି, ସେ ଭାବିଲା । ଶିବିରରେ ଖାଇବା ପିଇବାର ଆୟୋଜନ ହେଲାଣି, କୋଳାହଳ ଶୁଭୁଛି । ନାଁ ଥାଉ । ସେ ନିଜ ଶିବିରକୁ ଫେରିଲା ।

ଏ ବିଷୟରେ କାହା ସହିତ ଆଲୋଚନା କରିବ କି, ଅରିନ୍ଦମ ଚିନ୍ତାକଲା । କିନ୍ତୁ କଅଣ ଆଲୋଚନା କରିବ ? ସିପେହୀମାନେ ତାକୁ ପଚରାଉଚରା କରୁଥିଲେ, ବା ସେ ଜରାସନ୍ଧ ବିଷୟରେ ପଚରାପଚରି କରୁଥିଲା । ଏକଥା କଂସ କାନକୁ ଗଲେ ସେ ବିରକ୍ତ ହେବ । କଂସ କଅଣ କରୁଛି ନ କରୁଛି ସେକଥା କେହି ଜାଣନ୍ତିନି ।

ସେ ନିଜ ନିଷ୍ପତ୍ତି ନିଜେ ନିଏ ଓ ଖୁବ୍ କମ୍ ଲୋକଙ୍କୁ ବିଶ୍ୱାସ କରେ । କିନ୍ତୁ ତା ଲୋକମାନେ ମଗଧ ଆସି ଗୋଟାଏ କିଛି ଗୋଳମାଳରେ ପଡ଼ନ୍ତୁ, କି ଏପରି କିଛି କାମ କରନ୍ତୁ ଯାହାକି ଜରାସନ୍ଧଙ୍କର ପସନ୍ଦ ହେବନି ଏହା ସେ ଚାହେଁ ନା । ସେ ଯେ ଆଖଡ଼ାରେ ସମସ୍ତଙ୍କୁ ଜିତିବାକୁ ଚାହେଁ । କେବଳ ସେତିକି ନୁହେଁ । ସେ ଜରାସନ୍ଧଙ୍କୁ ଖୁସି ରଖିବାକୁ ଚାହେଁ । ତା'ର ଆଶା ବହୁତ । ସେ କେବଳ ମଥୁରାରେ ରହିବାକୁ ଚାହେଁ ନା । ନାଁ, କାହା ସହିତ ଆଲୋଚନା ନ କରିବା ଭଲ, ଅରିନ୍ଦମ ସ୍ଥିର କଲା ।

ତେବେ ଗୋଟାଏ କଥା । ଏତେ ସତର୍କତା, ଏତେ ସନ୍ଦେହ, ଅବିଶ୍ୱାସ କାହିଁକି ? କାହାକୁ ? ଜରାସନ୍ଧ ତ ସମସ୍ତଙ୍କୁ ନିମନ୍ତ୍ରଣ କରିଛନ୍ତି । ସମସ୍ତେ ତାଙ୍କ ଅତିଥି । ଆତିଥେୟତାରେ କୌଣସି ତ୍ରୁଟି ନାହିଁ । ଆଦର୍ଶ ଆତିଥେୟତା କୁହାଯାଇପାରେ । ଆୟୋଜନରେ ତ୍ରୁଟି ରହିଲା କି ନାହିଁ ସେ ବିଷୟରେ ତ ନଜର ରହିବ । କିନ୍ତୁ ଆୟୋଜନ ବାହାରେ ଅତିଥିଙ୍କ ଉପରେ ବି ନଜର ! ଯେମିତି ଦିନରାତି କାହାର ଦି'ଆଖି ତୁମକୁ ଚାହିଁ ରହିଛି ! ତୁମେ କଅଣ କଲ ନ କଲ, କଅଣ କହିଲ ନ କହିଲ, କୋଉଠିକି ଗଲ ନ ଗଲ, ସବୁ ଉପରେ ନଜର । ସାବଧାନ, ତୁମ ସୀମା ଭିତରେ ରୁହ, ଏପାଖ ସେପାଖ ହୁଅନା । ହେଲେ ବିପଦ ତୁମର । ଅରିନ୍ଦମ ଭାବିଲା । ଅଚିହ୍ନା ଲୋକ ସାଙ୍ଗରେ ମିଶିବନି, ଅଚିହ୍ନା ଲୋକ ସାଙ୍ଗରେ କଥା ହେବନି, ଜରାସନ୍ଧଙ୍କ ବିଷୟରେ କଥାବାର୍ତ୍ତା ନାହିଁ । କଥାବାର୍ତ୍ତା ହେଲେ କେବଳ ପ୍ରଶଂସା, ଜୟଜୟକାର । ଖାଅ, ପିଅ, ଆରାମ କର, ବାସ୍ । ଆଶ୍ଚର୍ଯ୍ୟ ! ଖିଆପିଆ ସରିଗଲେ, ଖିଆପିଆ ପରେ କିଛି ସମୟ ନାଚଗୀତ ହୁଏ । ତା ବି ହେଲା । କଂସ ନାହିଁ । ଦିନ ଦି'ପହରୁ ସେ ଶିବିରକୁ ଫେରିନି । ହୁଏତ କୋଉଠି ମଲ୍ଲକୁସ୍ତି ଅଭ୍ୟାସ କରୁଥିବ । ବା ହୁଏତ କୋଉଠି... ନାଁ, ଛାଡ଼ । କଂସ ସହିତ ତା'ର ସମ୍ପର୍କ ଭଲ । ସବୁଠାରୁ ଭଲ ତା ବିଷୟରେ ମୁଣ୍ଡ ନ ଖେଳେଇବା । କଂସ ପସନ୍ଦ କରେ ନା । ଅରିନ୍ଦମ ଚୁପ୍ ହେଇ ବସି ନାଚ ଦେଖିଲା । ଦି'ଜଣ ନର୍ତ୍ତକୀ ନୃତ୍ୟ କରୁଛନ୍ତି । ଉଭୟ ଦେଖିବାକୁ ଭଲ, ନାଚ ବି ଭଲ । କିନ୍ତୁ ଅରିନ୍ଦମକୁ ଅସ୍ଥିର ଲାଗୁଥାଏ । କଅଣ ଯେମିତି କୋଉଠି କଟି ଯାଇଛି । ସେ ଚେଷ୍ଟାକଲେ ବି ଯୋଡ଼ି ପାରୁନି । ନାଚ ପାଖରେ ଉଜ୍ଜ୍ୱଳ ଆଲୋକ । ଲୋକ ଘେରି ବସିଛନ୍ତି । ମଥୁରାରେ ଏସବୁ ଖୁବ୍ ବେଶି ନାହିଁ । ତେଣୁ ଲୋକଙ୍କର ଅଧିକା ଆଗ୍ରହ । ଅରିନ୍ଦମ ଲକ୍ଷ୍ୟ କଲା ଖାଲି ମଥୁରା ଲୋକ ନୁହନ୍ତି । ମଥୁରାରୁ ଯେତେ ଲୋକ ଆସିଛନ୍ତି ସେ ପ୍ରାୟ ସମସ୍ତଙ୍କୁ ଜାଣେ । କିନ୍ତୁ ତାଙ୍କ ଭିତରେ ଆଉ ସବୁ କିଛି କିଛି ବାହାର ଲୋକ । ଅନ୍ୟ ଶିବିର ? ନା,

ତା'ଛଡ଼ା ସବୁ ଶିବିରରେ ତ ନାଚ ଚାଲିଛି । ସିପେହୀ ? ନାଁ, ପୋଷାକ ତ ନାହିଁ । ବାହାର ଲୋକେ ଏଠିକି କାହିଁକି ଆସିବେ । ଆଜି ସେ ପ୍ରଥମ ଦେଖୁଛି । ନାଁ, ଆଗରୁ ସେ କେବେ ଲକ୍ଷ୍ୟ କରିନି । ଆଜି ବି ଲକ୍ଷ୍ୟ କରିଥାନ୍ତା କି ନାହିଁ ସନ୍ଦେହ । କିନ୍ତୁ ସନ୍ଧ୍ୟାର ଘଟଣା ପରେ...।

ଅରିନ୍ଦମ ବିଶେଷ କରି ତା ଡାହାଣ ପାଖରେ ବସିଥିବା ଦି'ଜଣ ଲୋକଙ୍କୁ ଲକ୍ଷ୍ୟ କଲା । ପତଳା ପତଳା ଲୋକ । ମୁହଁ ଲମ୍ବା ଲମ୍ବା । ପୋଷାକରେ ପରିପାଟି ନାହିଁ । ଚେହେରା ବି ମଇଳା ମଇଳା । ମନେହେବ ନାଚରେ ମନ । କିନ୍ତୁ ନାଁ । ଆଖି ଚାରିଆଡ଼େ ବୁଲୁଛି । ଉଭୟ ପାଖାପାଖି ବସିଛନ୍ତି, ମଝିରେ ମଝିରେ କଅଣ ଫୁସ୍‌ଫୁସ୍ ହଉଛନ୍ତି । ହଠାତ୍ ଅରିନ୍ଦମର ମନେହେଲା ଯେଉଁମାନେ ନାଚୁଛନ୍ତି ତାଙ୍କ ଆଖିରେ ଏମାନଙ୍କ ଆଖି ମିଶୁଛି । ସତେ ଯେପରି ଆଖିରେ ଆଖିରେ କଥାବାର୍ତ୍ତା । ଏ କେବଳ ବିଜୁଳି ମାରିଲା ପରି ଅନୁଭୂତି । ଅରିନ୍ଦମର ସନ୍ଦେହ ହେଲା ସେ ଠିକ୍ ଦେଖୁଛି ତ !

ନାଚ ଚାଲିଚି, ଲୋକ ଦି'ଜଣ ହଠାତ୍ ଛିଡ଼ାହେଲେ । ବସିଥିବା ଲୋକଙ୍କୁ କଟେଇ ସେମାନେ ଆସ୍ତେ ଆସ୍ତେ ଶିବିର ବାହାରକୁ ବାହାରି ଆସିଲେ । ଅରିନ୍ଦମ ବି ଉଠିପଡ଼ିଲା । ନିର୍ଦ୍ଦିଷ୍ଟ କିଛି କଥା ଭାବିବା ଆଗରୁ ସେ ବି ଶିବିରରୁ ବାହାରି ଆସିଲା । ବାହାରେ ଖୋଲା ପଡିଆ । ଅଳ୍ପ ଦୂରରେ ଛାଇ ଛାଇ ଗଛ ସବୁ, ଛାଡ଼ି ଛାଡ଼ି ଆଲୁଅ ସବୁ ଜଳୁଛି । ଲୋକ ବି ଯିବା ଆସିବା କରୁଛନ୍ତି । ବିଭିନ୍ନ ଶିବିରରୁ କୋଳାହଳ ଶୁଭୁଛି, ଗୀତ ବାଜା ଶୁଭୁଛି । ଅରିନ୍ଦମ ଦେଖିଲା ସେ ଲୋକ ଦି'ଜଣ କିଛି ଦୂରକୁ ଚାଲିଗଲେଣି । ସେ ତରତର ହୋଇ ସେମାନଙ୍କ ପଛେ ପଛେ ଚାଲିଲା ।

ପରେ ଅରିନ୍ଦମ ଅନେକ ଥର ଏକଥା ଭାବିଛି । ସେମାନେ ତ ଗଲେ । ସେମାନଙ୍କ ପଛେ ପଛେ ସେ କାହିଁକି ଭୂତ ଲାଗିଲାପରି ଉଠି ପଡ଼ିଲା ? ସେ ଯେ ହୁଅନ୍ତୁ, ସେମାନଙ୍କ ପାଇଁ ଅରିନ୍ଦମର ଦାୟିତ୍ୱ କଅଣ ? ବାହାର ଲୋକ କଅଣ ଶିବିରକୁ ଆସିବେ ନାହିଁ ? ଆଉ ସେ ଯେ ଚିହ୍ନିବ ଜାଣିବ ଏମିତି କଅଣ କଥା ଅଛି ? କିନ୍ତୁ ସେହି ମୁହୂର୍ତ୍ତରେ ସେ ଏତେ କଥା ଭାବୁ ନ ଥିଲା । ଗୋଟାଏ ଅଦମ୍ୟ ଆଗ୍ରହରେ ସେ ଦି'ଜଣଙ୍କ ପଛେ ପଛେ ଚାଲିଲା ।

ରାଜନଅରର ପରିସରରେ ମଥୁରା ଶିବିର । ପାଖାପାଖି ଆହୁରି ଅନେକ ଶିବିର ବି। ରାଜନଅରର ପରିସର ଖୁବ୍ ବିସ୍ତୀର୍ଣ୍ଣ । କିଛି ଦୂରରେ ରାଜଗିରି ପାହାଡ଼ । ପାହାଡ଼ ତଳେ ତଳେ, ଗଛବୃକ୍ଷ ତଳେ ଘୋଡ଼େଇ ହେଇ, ବିସ୍ତୀର୍ଣ୍ଣ ରାଜପ୍ରାସାଦ । ଚାରିପାଖରେ ଉଜ୍ଜ୍ୱଳ ଆଲୋକ, ଅସଂଖ୍ୟ ପତାକା, ନହବତର ଗୁଞ୍ଜରଣ ଅନ୍ଧାର ଓ

ଆଲୁଅ ଭିତର ଦେଇ ଚାରିପାଖରେ ଖେଳେଇ ଯାଉଛି । କିନ୍ତୁ ସେ ଲୋକ ଦି'ଜଣ କୌଣସି ଶିବିର ଆଡ଼କୁ ଗଲେ ନାହିଁ । ରାଜପ୍ରାସାଦ ଆଡ଼କୁ ବି ନୁହେଁ । ଅନେକ ସମୟ ଅରିନ୍ଦମ ବୁଝିପାରିଲା ନାହିଁ ସେମାନେ କୁଆଡ଼େ ଯାଉଛନ୍ତି । ସିଧା ସିଧା ଖୋଲା ରାସ୍ତାରେ ନୁହେଁ । ପଡ଼ିଆ ଭିତର ଦେଇ, ବୁଦବୁଦକିଆ ଜଙ୍ଗଲ କରେ କରେ, ଉଭୟ ଆଲୁଅ ଓ ଅନ୍ଧାରରେ - ସେମାନଙ୍କ ଉପରେ ନଜର ରଖିବା ଅରିନ୍ଦମକୁ ବେଶ ଅସୁବିଧା ହେଉଥାଏ । ପୁଣି ଧରାପଡ଼ିଯିବାର ଆଶଙ୍କା । ସେମାନେ ହୁଏତ ଜାଣିପାରନ୍ତି, ସନ୍ଦେହ କରିପାରନ୍ତି । ଲୋକ ଦି'ଜଣ ସତର୍କ ହେଇ ଯାଉଥାଆନ୍ତି । ଅରିନ୍ଦମ ବି ସତର୍କ ହେଇଗଲା ।

ହଠାତ୍ ଅରିନ୍ଦମର ମନେ ହେଲା, ସେମାନେ ରାଜନଅରର ପରିସର ଭିତରୁ ବାହାରକୁ ଯାଉଛନ୍ତି । ଆରେ ! ଏ ତ ଗୋଳମାଳିଆ କଥା, ଅରିନ୍ଦମ ମୁହୂର୍ତ୍ତେ ଛିଡ଼ାହେଲା । ସେ ଆଉ ଯିବ କି ? ରାତି ବଢ଼ୁଛି । ରାଜନଅରର ପରିସର ନିରାପଦ । କିନ୍ତୁ ବାହାରେ ? ବାହାରର ସହର ସହିତ ସେ ପରିଚିତ ନୁହେଁ । ସହର ବି ଚୁପ୍‌ଚାପ୍ ହେଇ ଆସିଲାଣି । ସହରରେ ବି ଯଥେଷ୍ଟ ଆଲୁଅ ନାହିଁ । କୋଉଠି କେମିତି । ବିଦେଶୀମାନେ ପ୍ରାୟ ଯେ ଯା' ଶିବିରକୁ ଫେରିଗଲେଣି । ଧରାପଡ଼ିଯିବାର ଭୟ ବି ଅଛି । ଅରିନ୍ଦମ ଲକ୍ଷ୍ୟ କଲା ସେ ସହରକୁ ଯେତେ ଚୁପ୍‌ଚାପ୍ ଭାବୁଛି ସେତେ ଚୁପ୍‌ଚାପ୍ ନୁହେଁ । କିଛି ଲୋକ ଯିବା ଆସିବା କରୁଛନ୍ତି । ବିଶେଷ କରି ସିପାହୀମାନେ ବୁଲୁଛନ୍ତି, ବେଶ କିଛି ସିପାହୀ, ଆଉ ମନେହେଉଛି ବେଶ ସତର୍କ ବି, ସେମାନେ ଯଦି ପୁଣି ଧରନ୍ତି, ପୁଣି ସେଇ ହଇରାଣ, ସନ୍ଧ୍ୟାବେଳ କଥା ଅଲଗା, କିନ୍ତୁ ରାତିରେ ? ସେ କଅଣ କହି ବୁଝେଇବ ? ସେ ଚୋର ତସ୍କର ନୁହେଁ, ଠିକ୍, ତା'ର କୌଣସି ଖରାପ ମତଲବ ନାହିଁ, ତା ବି ଠିକ୍ । କିନ୍ତୁ ଏ ରାତିରେ ସେ ଶିବିର ଛାଡ଼ି କାହିଁକି ବୁଲୁଛି ? କଅଣ ଦରକାର ? ନାଁ, ଛାଡ଼, ଜଞ୍ଜାଳକୁ ଯାଇ ଲାଭ ନାହିଁ । କିନ୍ତୁ ମନଟା ଖଚଖଚ ହେଉଛି । କଅଣ ତାକୁ ଏ ପର୍ଯ୍ୟନ୍ତ ଟାଣି ଆଣିଲା ? ଖାଲି ଆଗ୍ରହ ? ଅରିନ୍ଦମ ଦୋ ଦୋ ପାଞ୍ଚ ହେଲା, ଭାବୁଛି ଫେରିଯିବ କି ? ଆଉ ଠିକ୍ ସେତିକି ବେଳେ ତା ସାମ୍ନାରେ ସେ ଅଘଟଣ ଘଟିଗଲା ।

ସେ ନଅରର ପାଚିରି ଛାଡ଼ି ସହର ଭିତରକୁ ବେଶ କିଛି ବାଟ ଆଗେଇ ଆସିଲାଣି । ସେ ତିନିଚାରିଟା ଜାକିଜୁକି ହୋଇ ରହିଥିବା ଗଛମୂଳେ ଛିଡ଼ା ହେଇଛି । ସେ ଲୋକ ଦି'ଜଣ କିଛି ଦୂରରେ । ଛାଇଛାଇ ଅନ୍ଧାରରେ ସେମାନଙ୍କ ଚେହେରା ମୋଟାମୋଟି ବାରି ହଉଛି । ରାଜନଅର ଭିତରେ ସେମାନେ ଯୋଉଁ ସତର୍କତାରେ ଆସୁଥିଲେ ବୋଲି ମନେ ହେଉଥିଲା ସେ ସତର୍କତା କମିଯାଇଛି । ଚାଲି କିଛି ଖୋଲା

ଖୋଲା, ବୋଧହୁଏ କିଛି କଥାବାର୍ତ୍ତା ହେଉଛନ୍ତି । ହଠାତ୍ ପାଖ ଅନ୍ଧାରୁଆ ଗଳିରୁ ଆଉ ଦି'ଜଣ ଲୋକ ଆସି ସେମାନଙ୍କ ସାଙ୍ଗରେ ମିଶିଗଲେ । ସମସ୍ତେ ସେଇ ଗଳିମୁଣ୍ଡ ଅନ୍ଧାରରେ କିଛି ସମୟ ଛିଡ଼ାହେଲେ । କିଛି କଥାବାର୍ତ୍ତା ହେଲେ ବୋଧହୁଏ । ଅତି ଅସ୍ପଷ୍ଟ ସ୍ୱର ଶୁଭୁଥାଏ । ହଠାତ୍ ନିକଟରେ ଗୋଟାଏ କୁକୁର କୋଉଠି ଭୁକି ଉଠିଲା, ତା'ପରେ ଆଉ ଗୋଟାଏ, ତାପରେ ଆଉ ଗୋଟାଏ, ତା' ସାଙ୍ଗରେ ଗୋଟାଏ ରାତି ଚଢ଼େଇର ଅଦ୍ଭୁତ ହୁଇସିଲ ମାରିଲା ପରି ଶବ୍ଦ । ତାପରେ ସବୁ ଚୁପ୍‌ଚାପ୍ । ଅରିନ୍ଦମ ଦେଖିଲା ସେଇ ଅନ୍ଧାରୁଆ ଗଳି ମୁଣ୍ଡରେ ସେଇ ଚାରିଟା ଲୋକ ନିଶ୍ଚଳ ହୋଇ ଛିଡ଼ା ହୋଇଛନ୍ତି । ଯେମିତି ସତର୍କ, ପ୍ରସ୍ତୁତ । ହଠାତ୍ ରାସ୍ତାର ଦି'ମୁଣ୍ଡରୁ, ଅନ୍ଧାର ଭିତରୁ, ଦି'ଦଳ ଲୋକ ଧସି ଆସିଲେ ଓ ଏମାନଙ୍କ ଉପରକୁ ଝାମ୍ପି ପଡ଼ିଲେ । ବାସ୍ । ତା'ପରେ କଅଣ କେତେ ସମୟ ଧରି ହେଲା ଅରିନ୍ଦମର ହୋସ ଆସିବା ଆଗରୁ ଯାହା ଘଟିବା କଥା ଘଟିଯାଇଛି । ଏ ଯେମିତି ଗୋଟାଏ ପ୍ରଚଣ୍ଡ ଘୂର୍ଣ୍ଣି, ସୋର ଶବ୍ଦ ନାହିଁ, ହଇହଲ୍ଲା ନାହିଁ, ଆସିଲା ଚାଲିଗଲା । ସେଇ ଗଛମୂଳେ, ଅନ୍ଧାର ଭିତରେ, ନିର୍ବୋଧଙ୍କ ପରି ଛିଡ଼ା ହେଇ ଅରିନ୍ଦମ ଚାହିଁ ଦେଖିଲା, ତା ସାମ୍ନାରେ, ରାସ୍ତାର ଅଧା ଅନ୍ଧାରରେ ପାୟ ପାଞ୍ଚ ଛଅଟା ଲୋକ ଲମ୍ୱହେଇ ପଡ଼ିଛନ୍ତି । ପଡ଼ିବା ଅବସ୍ଥାରୁ ମନେ ହେଉଛି କାହାରି ଦେହରେ ପ୍ରାଣ ନାହିଁ । ଚାରିଆଡ଼ ଚୁପଚାପ, ଗୋଟାଏ ଅଦ୍ଭୁତ ଭୌତିକ ପରିବେଶ । କେତେ ସମୟ ଅରିନ୍ଦମ ସେମିତି ଛିଡ଼ା ହେଇଥିଲା ତା'ର ମନେ ନାହିଁ । କିଏ ଯେମିତି ତାକୁ ଝାଙ୍କିଲା ପରି ଝାଙ୍କିଦେଲା । କିଏ ଯେମିତି କହିଦେଲା, ଏଠୁ ଶୀଘ୍ର ପଳା । ସେ ତତ୍‌କ୍ଷଣାତ୍ ଫେରିପଡ଼ି, ଯେତେଶୀଘ୍ର ସମ୍ଭବ ନିଜ ଶିବିରକୁ ଫେରି ଆସିଲା ।

ରାତିରେ ଅରିନ୍ଦମକୁ ଭଲ ନିଦ ହେଲାନି । ଗୋଟାଏ କେମିତି ସ୍ୱପ୍ନ ଓ ଜାଗରଣର ମଝାମଝି ଅବସ୍ଥା । ନାନା ଅସଂଗତ, ବିଚ୍ଛିନ୍ନ ରୂପ ସବୁ ମନର ପରିସରରେ ଉଠି ମିଳେଇ ଯାଉଥାଏ । ଗୋଟାଏ କେମିତି ଅସ୍ଥିର ଅନୁଭୂତି ଓ ଏହି ଭାବରେ ହୁଏତ ସକାଳ ପର୍ଯ୍ୟନ୍ତ ରାତିଟା କଟି ଯାଇଥାନ୍ତା । କିନ୍ତୁ ରାତିର ଶେଷ ପ୍ରହରକୁ, ଅରିନ୍ଦମର ମନେନାହିଁ ଠିକ୍ କେତେ ରାତିହେବ, ତେବେ ନିଶ୍ଚୟ ରାତି ସରି ଆସୁଥାଏ, ତା ନିଦ ସମ୍ପୂର୍ଣ୍ଣ ଭାଙ୍ଗିଗଲା । ଶିବିରର ସମସ୍ତେ ଶୋଇଛନ୍ତି । ଏପରିକି ଶିବିରର ଜଗୁଆଳମାନେ ବି ପ୍ରାୟ ଅଧା ଶୋଇଗଲେଣି । ଚାରିଆଡ଼ ଚୁପଚାପ୍, ଏଠୁସେଠୁ ଘୁଙ୍ଗୁଡ଼ି ମାରିବା ଶବ୍ଦ, ଛୋପଛୋପ ଅନ୍ଧାର ଭାସି ବୁଲୁଛି, କାହାରି ସୋର ଶବ୍ଦ ନାହିଁ । ଅରିନ୍ଦମର ମନେ ହେଲା କୋଉଠି କଅଣ ଯେପରି ଶୁଣିକରି ତା ନିଦ ଭାଙ୍ଗିଗଲା । ପାଖରେ ଛାଡ଼ିଛାଡ଼ି ସାଙ୍ଗମାନେ ଶୋଇଛନ୍ତି । ସବୁ ଚୁପ, କଅଣ ସେ

ଶୁଣିଲା ? ସ୍ୱପ୍ନରେ ? ସତ ନୁହେଁ ? ନାଁ, ନାଁ, କଅଣ ଗୋଟାଏ ଶବ୍ଦ ହେଲା । ସେ କାନ ଡେରିଲା । ଗୋଟା କେମିତି ଟାଣି ଟାଣି କାନ୍ଦିଲା ପରି ଶବ୍ଦ । ଖୁବ୍ ସ୍ପଷ୍ଟ ନୁହେଁ । କିନ୍ତୁ ବୁଝିହେଉଛି । ମନେହେଉଛି ଏଇ ପାଖରେ କେଉଁଠି । ଅରିନ୍ଦମର ନିଦ ନିଦ ଭାବ ସମ୍ପୂର୍ଣ୍ଣ କଟିଗଲାଣି । ସେ ଆସ୍ତେ ଉଠି ଶୁଣିଲା ଶିବିରର ପୂର୍ବ ପାଖରୁ ଶବ୍ଦ ଆସୁଛି । ସେ ପାଖରେ ବାହାରକୁ ଯିବାର ଦରଜା, ଦି'ଜଣ ଜଗୁଆଳ । ଦରଜା ବାହାରେ ମଶାଲ ବୋଧହୁଏ ଲିଭିଗଲାଣି, ଅନ୍ଧାର । ଦୂରରେ ରାଜନଅରର ଘଣ୍ଟା ବାଜିଲା । ହଁ, ରାତି ସରି ଆସୁଛି । ଅରିନ୍ଦମ ଉଠି ଛିଡ଼ାହେଲା, ଶୋଇଥିବା ଲୋକମାନଙ୍କୁ ସାବଧାନରେ ଆଡ଼େଇ ଆଡ଼େଇ ପୂର୍ବ ଦରଜା ପାଖକୁ ଗଲା ।

ଶିବିର ବାହାରୁ, ଦରଜା ସେ ପାଖରୁ ଶବ୍ଦ ଆସୁଛି । ଅନୁଚ୍ଚ ସ୍ୱରରେ କିଏ କାନ୍ଦୁଛି ଓ ରହି ରହି କଥା କହୁଛି । ନାରୀ ସ୍ୱର, ଅନ୍ୟଟି ପୁରୁଷ ସ୍ୱର । ଆଶ୍ୱାସନା ଦେଉଛି, ଅନ୍ୟକଥା ବି କହୁଛି । ଅରିନ୍ଦମ ସ୍ଥିର ହେଇ ଛିଡ଼ା ହେଲା –

'ଶୁଣ, ସମସ୍ତେ ତ ଗଲେ, ଆଉ କାହିଁକି ଲାଗିଛ ? ତାଙ୍କ ପାଖରେ ଟଙ୍କା, ପଇସା, ଜୋର, ସବୁ, ତୁମେ କଅଣ ପାଇବ ? ଆସ, ଏ ଦେଶ ଛାଡ଼ି ଚାଲିଯିବା ।'

'ନାଁ, ତୁମ ଭାଇ ଅବନ୍ତୀରେ ଅଛି, ତୁମେ ଚାଲି ଯା, ମୁଁ ଏ ଧୂର୍ତ୍ତ, ବଦମାସ୍‌କୁ ଶେଷ କରିବି, ନଚେତ୍ ନିଜେ ଶେଷ ହେବି । ମହାକାଳଙ୍କ ଇଚ୍ଛା ପୂର୍ଣ୍ଣ ହେବ ।'

'ଶେଷ ହେବ ! ଆଉ କଅଣ ଶେଷ ହେବାକୁ ଅଛି ? ଝିଅକୁ ନେଲେ । ପୁଅକୁ ମାଇଲେ । ଘର ଭାଙ୍ଗିଲେ । ତମର ଆଉ ତମ ସାଙ୍ଗପାଙ୍ଗ ସମସ୍ତଙ୍କର । ମତେ ଯେ କଅଣ କରିବେ ଠିକ୍ ନାହିଁ । ଏଇ ଆଖଡ଼ା ସଇଲା ପରେ ତମ ସମସ୍ତଙ୍କୁ ଶେଷ କରିବେ ।'

'ଜାଣେ, ତୁମେ ଭାବୁଛ ମୋ' ମନରେ ଦୁଃଖ ନାହିଁ । ବହୁତ ଦୁଃଖ । ମୋ' ପରିବାର ତ ଗଲା । ଆମ ସମସ୍ତଙ୍କର ବି ଯିବ । ଏ ଧୂର୍ତ୍ତ, ଅତ୍ୟାଚାରୀ, ପାଷାଣ୍ଡ ରାଜ୍ୟରେ ମୋର ବଞ୍ଚିବାର ଇଚ୍ଛା ନାହିଁ । କିନ୍ତୁ ମୁଁ ଏଇଠି ମରିବି । ମୋ' ବାପା, ଅଜାଙ୍କ ଜାଗା ଛାଡ଼ି ମୁଁ ଯିବିନି, ତୁମେ ଯାଅ, ତୁମ ପେଟରେ ଆମ ଭବିଷ୍ୟତ । ତାକୁ ବଢ଼ା । ଆଜି ନ ହେଲେ ବି କୋଡ଼ିଏ ବର୍ଷ ପରେ ସେଇ ଛିଡ଼ା ହେବ । ଆମ ଦୁଃଖର, ଆମ ଅପମାନର ପ୍ରତିଶୋଧ ନେବ, ଚାଲ, ଆଉ ସମୟ ନାହିଁ, ଯିଏ ଆସୁଛି ତାକୁ ରକ୍ଷା କର, ଚାଲ ।' ତା'ପରେ ଚୁପ୍‌ଚାପ୍ । ଅରିନ୍ଦମ ଶିବିର ବାହାରକୁ ଆସିଲା । ଲକ୍ଷ୍ୟ କଲା, ଛାଇ ଛାଇ ଅନ୍ଧାରରେ, ଲୁଗାପଟା ଘୋଡ଼ି ହେଇ, ଦୁଇଟି ମୂର୍ତ୍ତି ଦୂରକୁ ଦୂରକୁ ଚାଲିଯାଉଛନ୍ତି । ବୁଝି ହେଉଛି ଜଣେ ଏ ଶିବିରର ଜଗୁଆଳ, ଅନ୍ୟଟି ତା' ସ୍ତ୍ରୀ । କିନ୍ତୁ କାହିଁକି ? ବିଜୁଳି ପରି ଗତରାତିର ଘଟଣାସବୁ ଅରିନ୍ଦମ


Digitized by srujanika@gmail.com

ମନରେ ଖେଳିଗଲା । ଏସବୁ ଭିତରେ ନିଶ୍ଚୟ କିଛି ସମ୍ପର୍କ ଅଛି । ନାଁ, ସେ ବାହାର ଲୋକ । ଏସବୁ ବିଷୟରେ କାହାକୁ କିଛି କହିବା ବିପଜ୍ଜନକ । ସେ ସ୍ଥିର କଲା ନିଜ ଚେଷ୍ଟାରେ ସେ ଯେତିକି ପାରିବ ବୁଝିବାକୁ ଚେଷ୍ଟା କରିବ । ପାହାନ୍ତା ହେଇ ଆସିଲାଣି । ଚାରିପାଖରେ ଅଳ୍ପ ଅଳ୍ପ କୁହୁଡ଼ି । ଏଠି ସେଠି ଜଣେ ଅଧେ ଲୋକ ଉଠିଲେଣି । ସେ ଆଉ ଶିବିର ଭିତରକୁ ଫେରିଲା ନାହିଁ । କାନ୍ଧରେ ପଡ଼ିଥିବା ଚଦରଟା ଦେହରେ ଘୋଡ଼େଇ ନେଲା ଓ ସକାଳେ ବୁଲିଲା ପରି, ଆସ୍ତେ ଆସ୍ତେ, ନଅରର ପରିସର ଛାଡ଼ି ସହର ଆଡ଼କୁ ଚାଲିଲା ।

ଚାଲି ଯାଉଥିବା ମୂର୍ତ୍ତି ଦି'ଜଣକ ଏବେ ବି ଦୂରରୁ ବାରି ହେଉଛି । ଅରିନ୍ଦମ ସେଇମାନଙ୍କ ଉପରେ ନଜର ରଖିଲା ଓ ଆଗେଇଲା । ଆଗରୁ ଅରିନ୍ଦମ ସହରର କିଛି କିଛି ଅଞ୍ଚଳ ବୁଲି ଦେଖିଛି । ବିଶେଷ କରି ସହର ମଝାମଝି ଜନଗହଳି, ବିପଣୀ ଅଞ୍ଚଳ । କିନ୍ତୁ ଏ ଦି'ଜଣ ସେଆଡ଼କୁ ନ ଯାଇ ବାଁ ପାଖକୁ ମୋଡ଼ ନେଲେ । ଏ ଅଞ୍ଚଳ ଅରିନ୍ଦମର ଅପରିଚିତ । ଛାଡ଼ି ଛାଡ଼ି ସାନସାନ ଘରସବୁ । ମଝିରେ ଗଛବୃକ୍ଷ, ବଗିଚା । ଏତେ ସକାଳୁ ଲୋକବାକ ଚଳପ୍ରଚଳ ପ୍ରାୟ ନାହିଁ । ଘରସବୁର କବାଟ ଝରକା, ହତାର ଫାଟକ ବନ୍ଦ । କୋଉଠି କେମିତି ଗୋଟାଏ ଅଧେ କୁକୁର ଏପାଖ ସେପାଖ ହେଉଛନ୍ତି । ବାଶ୍ । ଅରିନ୍ଦମ ଟିକେ ଭାବିଲା । ସେମାନେ ସେମିତି ଚାଲିଛନ୍ତି । କଥାବାର୍ତ୍ତା ଶୁଭୁନି । ବୋଧେ କଥାବାର୍ତ୍ତା ନାହିଁ । ଚୁପ୍‌ଚାପ୍ କିନ୍ତୁ କୁଆଡ଼େ ଚାଲିଛନ୍ତି ? ସହର ପ୍ରାୟ ସରି ଆସିଲା । ଘରସବୁ କମି ଆସିଲାଣି । ଆଉ ତ ବେଶି ଦୂର ଯାଇ ହବନି । ସେମାନେ ସନ୍ଦେହ କରି ପାରନ୍ତି । ଅରିନ୍ଦମ ଛିଡ଼ା ହେଲା ।

କିନ୍ତୁ ବେଶି ସମୟ ନୁହେଁ । ଗୋଟିଏ ଗଛକୁ ଆଉଜି ସେ ଛିଡ଼ା ହେଇଥିଲା । ପାହାନ୍ତାରୁ ଉଠି ଏତେଗୁଡ଼ା ବାଟ ଚାଲି ଆସିଲାରୁ ଟିକେ ଟିକେ କ୍ଳାନ୍ତି ଲାଗୁଥିଲା, ଆଖି ବି ଅଳ୍ପ ଅଳ୍ପ ଝାଙ୍କୁଥିଲା । ବାହାରର ଶିତୁଳିଆ ପବନ, ଚଦର ଭିତରର ଉଷ୍ଣମ, ହଠାତ୍ ନିଦ ଭାଙ୍ଗିଯିବାର କ୍ଳାନ୍ତି, ଏସବୁ ମିଶି ଅରିନ୍ଦମକୁ ବୋଧେ ତନ୍ଦ୍ରା ଆସି ଯାଇଥିଲା । ଗୋଟାଏ ତୀବ୍ର ଚିତ୍କାରରେ ତା'ର ନିଦୁଆ ନିଦୁଆ ଭାବ ଖଣ୍ଡ ଖଣ୍ଡ ହେଇ ଭାଙ୍ଗିଗଲା । ହଠାତ୍ ସଜାଗ ହେଇ ତା'ର ମନେହେଲା ତା' କାନ ପାଖରେ ଯେପରି କିଏ ଚିତ୍କାର କଲା । ସାମାନ୍ୟ ଦୂରରେ ରାସ୍ତା ଉପରେ କିଏ ପଡ଼ିଛି । ଆଉ ଦୂରକୁ ଦୂରକୁ ଚଟପଟ ଚାଲିଯାଉଥିବା ଘୋଡ଼ା ଟାପୁର ଶବ୍ଦ ।

ଏ ପୁଣି ଥରେ ସେଇ ସନ୍ଧ୍ୟାର ଅଘଟଣ । ସେ ଭାବୁଥିଲା ସେ ଏକା ଏକା, ତା ନୁହେଁ । ଆଉ କେଉଁମାନେ ନିଶ୍ଚୟ ଥିଲେ । ହୁଏତ ସେମାନେ ସେଇ ଶିବିର ପାଖରୁ ନଜର ରଖି ରଖି ଆସୁଥିଲେ । କିନ୍ତୁ ତାକୁ କିଛି କଲେ ନାହିଁ କାହିଁକି ? ହଠାତ୍

ପାଖରୁ କିଛି ଅସ୍ୱାଭାବିକ ଶବ୍ଦ ଶୁଣି ଅରିନ୍ଦମ ବୁଲି ପଡ଼ିଲା । ଦିନ ଆଲୁଅ ଅଳ୍ପ ଅଳ୍ପ ଆସିଲାଣି । ସେଇ ଆଲୁଅରେ ଅରିନ୍ଦମ ଦେଖିଲା ଅଳ୍ପ ଦୂରରେ ଗୋଟାଏ ଗଛ ମୂଳରେ ଜାକିଜୁକି ହେଇ କିଏ ଜଣେ ଛିଡ଼ା ହେଇଛି । ଅରିନ୍ଦମ ପାଖକୁ ଗଲା ନାହିଁ । ସେଇଠି ଛିଡ଼ା ହେଇ ଲକ୍ଷ୍ୟ କଲା, ମନେହେଲା ଜଣେ ସ୍ତ୍ରୀଲୋକ । ସେଇଠି ଛିଡ଼ା ହେଇ ଟିକେ ଜୋର୍‌ରେ ସେ ପଚାରିଲା 'କିଏ ତୁମେ ?'

ଉତ୍ତର ନାହିଁ ।

'କିଏ ତୁମେ ? କୁହ ? କଅଣ ହେଲା ?'

କିଛି ଉତ୍ତର ନାହିଁ ।

ଅରିନ୍ଦମ ଭାବିଲା ଅଚିହ୍ନା ଜାଗାରେ ତା'ର ଏ ଆଗ୍ରହ ଭଲ ନୁହେଁ । ଘୋଡ଼ା ଟାପୁର ଶବ୍ଦ ଏବେ ବି ଶୁଭୁଛି । ଯେ କୌଣସି ସମୟରେ ଫେରିପାରେ । ତା'ର ଶିବିରକୁ ଫେରିଯିବା ଭଲ । କିନ୍ତୁ ଗୋଟାଏ ଅଦମ୍ୟ କୌତୂହଳ ତାକୁ ଟାଣି ଧରିଲା । ସେ ଦି'ପାଦ ସେଇ ସ୍ତ୍ରୀ ଲୋକଟି ଆଡ଼କୁ ଆଗେଇ ଗଲା । ଦିନ ଆଲୁଅ ସ୍ପଷ୍ଟ ହେଲାଣି । ସେଇ ଆଲୁଅରେ ସ୍ତ୍ରୀଲୋକଟିର ମୁହଁକୁ ଦେଖି ସେ ଚମକି ଉଠିଲା । ସାରା ମୁହଁ ରକ୍ତରେ ଜୁତୁବୁତୁ, କିନ୍ତୁ ସେଇ ରକ୍ତ ଭିତରୁ ଆଖି ଦି'ଟା ରଡ଼ ନିଆଁ ପରି ଜଳୁଛି । ମୁହଁରେ ଭୟର ଚିହ୍ନ ମାତ୍ର ତ ନାହିଁ । ବରଂ ଗୋଟାଏ ଅଦ୍ଭୁତ ବେପରୁଆ ଭାବ, ଅଦ୍ଭୁତ ଦମ୍ଭର ଠାଣି । ଅରିନ୍ଦମକୁ କିଏ ଚାପଡ଼ା ଦେଲାପରି ଲାଗିଲା । କିଏ ଯେପରି କହୁଛି ଯା ଯା, ତୋ କାମରେ ଯା । ଆଶ୍ଚର୍ଯ୍ୟ, ଏଇ ସ୍ତ୍ରୀଲୋକଟି କଅଣ କାଲି ରାତିରେ କାନ୍ଦୁଥିଲା ! ଅରିନ୍ଦମ ଚୁପ ହେଇ ଛିଡ଼ା ହୋଇଛି । ତା ପାଟିରେ କଥା ନାହିଁ । ମନେ ହେଉଛି ସ୍ତ୍ରୀଲୋକଟି ତାକୁ ନିରୀକ୍ଷଣ କରୁଛି । କେତେ ସମୟ ଗଲା ତା ବି ମନେ ନାହିଁ । ହଠାତ୍ ମନେହେଲା ସ୍ତ୍ରୀଲୋକଟି କଥା କହୁଛି – ତୀବ୍ର ଘୃଣାର ସ୍ୱର, ଦୁଃଖର ବି !

'ହୁଁ, ତୁମେ ମଥୁରାରୁ ଆସିଛ । ଯାଅ, ତୁମର ବି ଆମ ପରି ଅବସ୍ଥା ହେବ । ଡେରି ନାହିଁ ।'

କ'ଣ ଆ ମାନେ ? କି ପ୍ରହେଳିକା ? ଅରିନ୍ଦମ ମୁହଁ ଟେକି ଚାହିଁଲା ବେଳକୁ ସ୍ତ୍ରୀ ଲୋକଟି ସେଠି ନାହିଁ । ସାରା ଦେହ ଘୋଡ଼େଇ ହେଇ ସେ ଦୂରକୁ ଦୂରକୁ ଚାଲିଯାଉଛି । ଅରିନ୍ଦମ ମୁହଁ ବୁଲେଇ ଚାହିଁଲା । ରାସ୍ତା ଉପରେ ସେ ଲୋକଟି ଆଗପରି ପଡ଼ିଛି । ସ୍ୱାମୀ ! ଦିନ ହେଲାଣି, କିନ୍ତୁ ରାସ୍ତା ଚୁପଚାପ, ନିଶୂନ । ଅରିନ୍ଦମ ଶିବିରକୁ ଫେରିଲା । ସ୍ତ୍ରୀ ଲୋକଟି କୁଆଡ଼େ ଗଲା ? ଅବନ୍ତୀ ? ଶିବିରରେ ଲୋକସବୁ ଉଠିଲେଣି । ସକାଳର କାମଦାମ ସାରୁଛନ୍ତି । ଦି' ତିନିଜଣ ପଚାରିଲା


Digitized by srujanika@gmail.com

ଆଖିରେ ଅରିନ୍ଦମକୁ ଚାହିଁଲେ । ଅରିନ୍ଦମ ଉତ୍ତର ଦେଲା ନାହିଁ । ଚୁପ୍ କରି ଯାଇ ନିଜ ବିଛଣାରେ ଶୋଇଲା ।

...ଆଜି ସେସବୁ ପଛକଥା ଭାବିଲେ ଅରିନ୍ଦମକୁ ବିଚିତ୍ର ଲାଗୁଛି । କିନ୍ତୁ ସେତେବେଳେ ସେ ହତଚକିତ ହୋଇଯାଇଥିଲା । କଅଣ ଆ ମାନେ, କଅଣ ଏସବୁ ? ଅଦ୍ଭୁତ ନିଶ୍ଚୟ, ସନ୍ଦେହ ନାହିଁ । ଜରାସନ୍ଧଙ୍କ ରାଜ୍ୟରେ କଅଣ ଏସବୁ ? କିନ୍ତୁ ସେତେବେଳେ ସେ ଜାଣି ନ ଥିଲା ତା' ପରଦିନକୁ ଆହୁରି ବିଚିତ୍ର ଅଭିଜ୍ଞତା ତା ପାଇଁ ଅପେକ୍ଷା କରି ରହିଥିଲା...।

ସେଦିନ ମଲ୍ଲକୁସ୍ତି ଆରମ୍ଭ ହବା ଆଗ ଦିନ । ସକାଳୁ ବେଶ୍ ଗହଳ ଚହଳ ଲାଗିଯାଇଥାଏ । ମଲ୍ଲକୁସ୍ତି ହବା ଜାଗା ସଜାସଜି ହୋଇ ଇନ୍ଦ୍ରଭୁବନ ପରି ଦିଶୁଥାଏ । କୁସ୍ତି ହେବାପାଇଁ ସ୍ଥିର ହୋଇଥିବା ପ୍ରଶସ୍ତ ପ୍ରାଙ୍ଗଣରେ ଅନେକ ପ୍ରତିଯୋଗୀ ଆସି ଅଭ୍ୟାସ କରୁଥାନ୍ତି । ସେମାନଙ୍କ ଲୋକମାନେ, ସମ୍ରାଟଙ୍କ ସିପାହୀ, ତତ୍ତ୍ୱବଧାରକ - ଚାରିଆଡ଼େ ଭୂରି ଭୂରି ଲୋକେ, ସମସ୍ତେ କର୍ମଚଞ୍ଚଳ । ଅରିନ୍ଦମ ସକାଳୁ ସାଙ୍ଗମାନଙ୍କ ସାଙ୍ଗରେ ଯାଇ କୁସ୍ତିହେବା ଜାଗା ବୁଲାବୁଲି କରି ଆସିଥିଲା । ଆୟୋଜନରେ କୌଣସି ତ୍ରୁଟି ନାହିଁ । ବସିବା ପାଇଁ ଜାଗା, ସମସ୍ତେ ଯେପରି ସୁବିଧାରେ କୁସ୍ତି ଦେଖିପାରିବେ ସେଥିପାଇଁ ସୁବନ୍ଦୋବସ୍ତ । କିଏ କହିଲା ଆଜି ସମ୍ରାଟ ନିଜେ ଆୟୋଜନ ଦେଖିବାକୁ ଆସିବେ । ଅରିନ୍ଦମର ଇଚ୍ଛା ଥିଲା ଯେଉଁ ଲୋକଟି କଥା ସେ ସବୁଆଡ଼େ ଶୁଣୁଛି, ତାକୁ ଦେଖିବ । ସେ ପୁଣି ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ମଲ୍ଲଯୋଦ୍ଧା ଓ ତାରି ବଳରେ ମଗଧ ଆଜି ଅନ୍ୟତମ ଶ୍ରେଷ୍ଠ ରାଜ୍ୟ । କନ୍ତୁ ସମ୍ରାଟ ଆସିଲେ ନାହିଁ । ତାଙ୍କ ପକ୍ଷରୁ ଯୁବରାଜ ଆସି ଘୋଷଣା କରି ଦେଇଗଲେ । ସକାଳ ତମାମ ପ୍ରତିଯୋଗୀମାନେ କୁସ୍ତି ଅଭ୍ୟାସ କରୁଥିଲେ । ସୂର୍ଯ୍ୟଦେବ ମୁଣ୍ଡ ଉପରକୁ ଆସିଲା ବେଳକୁ କୁସ୍ତି ପ୍ରାୟ ବନ୍ଦ ହୋଇ ଯାଇଥିଲା । ଅପରାହ୍ଣବେଳକୁ ଅରିନ୍ଦମ ଭାବିଲା ସହରର ଦୋକାନ ବଜାର ଆଡ଼େ ଯାଇ ବୁଲି ଆସିଲେ ହବ । ସେ ଏକା ଏକା ଦେହରେ ଚଦରଟା ବେଢ଼େଇ ନେଇ ଶିବିର ବାହାରକୁ ବାହାରି ଆସିଲା । ଚାରି ପାଖରେ ଗଛର ଛାଇ ଲମ୍ୱା ହୋଇ ଆସିଲାଣି । ଗଛ, ପଡ଼ିଆ, ଦୂରର ରାଜପ୍ରାସାଦ ଓ ପାହାଡ଼ ଉପରେ ଚିକ୍କଣ, ହାଲ୍‌କା ସୂର୍ଯ୍ୟ କିରଣ । ଆଶ୍ୱିନର ଆକାଶ ନୀଳ ଓ ପରିଷ୍କାର । ଚଢ଼େଇମାନେ ଡେଉଁଛନ୍ତି, ଉଡ଼ି ବୁଲୁଛନ୍ତି । ଦୂରରେ କେଉଁଠି ଅନେକ ଘୋଡ଼ା ଏପାଖ ସେପାଖ ହେଉଛନ୍ତି, ସେମାନଙ୍କର ଟାପୁର ଶବ୍ଦ । ଅରିନ୍ଦମ ଆସ୍ତେ ଆସ୍ତେ ନଅର ଅଞ୍ଚଳ ଛାଡ଼ି, ସହର ଆଡ଼କୁ ମୁହେଁଇଲା । ରାସ୍ତାରେ ଏପାଖ ସେପାଖ ଅନେକ ଲୋକ ଚାଲିଛନ୍ତି । ମଗଧର ବିପଣୀ ଆର୍ଯ୍ୟାବର୍ତ୍ତରେ ପ୍ରସିଦ୍ଧ ଓ ମଗଧର


Digitized by srujanika@gmail.com

ଅତ୍ୟନ୍ତ ସୁବେଶା, ସୁଠାମ, ଓ ପ୍ରଗଲ୍ଭା ନାରୀମାନେ ବି ।

ହଠାତ୍ ଅରିନ୍ଦମର ମନେହେଲା ତା ପାଖଦେଇ ଚାଲିଯାଉଥିବା ଲୋକଟି ତାକୁ ଯେପରି କ'ଣ କହିଲା । ସେ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ଲୋକଟି କିଛି ବାଟ ଆଗେଇ ଗଲାଣି । ଡେଙ୍ଗା ସବଳ ଲୋକ । ଚୁପ୍‌ଚାପ୍ ଚାଲିଚି । ନାଁ, ନାଁ, ତାରି ଭୁଲ, ଅରିନ୍ଦମ ଭାବିଲା । ତଥାପି ମନରୁ ସନ୍ଦେହ ଯାଉନି । ସେ ସାମାନ୍ୟ ପଛେଇ ଗଲା । ଦେଖାଯାଉ । ସେ ଲକ୍ଷ୍ୟ କଲା ଲୋକଟି କିଛି ବାଟ ଆଗେଇ ଯାଇ ବାଟଭାଙ୍ଗି ପୁଣି ପଛକୁ ଫେରିଲା । ଶୀଘ୍ର ଶୀଘ୍ର ଫେରୁଛି, ଯେପରି କ'ଣ ଛାଡ଼ିଦେଇ ଯାଇଛି । ଅରିନ୍ଦମ ପାଖଦେଇ ଫେରିବା ସମୟରେ ଅରିନ୍ଦମର ମନେହେଲା ଲୋକଟି କ'ଣ କହୁଛି । ସଂକ୍ଷିପ୍ତ ଓ ସ୍ପଷ୍ଟ – 'ମୋ ପଛେ ପଛେ ଆସ', ବାସ୍ ।

ଅରିନ୍ଦମ ଚମକି ଉଠିଲା । କିଏ ଏ ? ଏ କଅଣ କହୁଛି ? ବିପଦ ନାହିଁ ତ ? ଅନେଇଲା ବେଳକୁ ଲୋକଟି ଅନେକ ଦୂର ଆଗେଇ ଗଲାଣି । ଯେପରି ଅରିନ୍ଦମ ସାଙ୍ଗରେ କିଛି ସମ୍ପର୍କ ନାହିଁ, ସେ ତାକୁ ଚିହ୍ନେନା । ଅରିନ୍ଦମ ଦେଖିଲା ଭାବିବାକୁ ସମୟ ନାହିଁ । ଆଉ ଅଳ୍ପ ସମୟ ପରେ ଗହଳି ଭିତରେ ଲୋକଟି କେଉଁଠି ମିଶିଯିବ । ଜୟ ମହାକାଳ ! ଯା ଥିବ, ଲୋକଟି ଉପରେ ଦୂରରୁ ନଜର ରଖି ଅରିନ୍ଦମ ତା' ପଛେ ପଛେ ଚାଲିଲା ।

ରାସ୍ତା ପରେ ରାସ୍ତା, ଗଳି ପରେ ଗଳି । ଏପାଖ ସେପାଖ । ଅରିନ୍ଦମର ସନ୍ଦେହ ହେଲା ଲୋକଟି କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏପାଖ ସେପାଖ ହେଉଛି । ଯେପରି ମନେହେବ ବହୁତ ବାଟ । ଦୋକାନ ବଜାର ସରି ଆସିଲାଣି । ଛୋଟ ଛୋଟ ଲାଗି ଲାଗି ଘରସବୁ । ସନ୍ଧ୍ୟାର ଅନ୍ଧାର ପ୍ରାୟ ଆସିଲା ଆସିଲା । ଅରିନ୍ଦମ ମନେ ମନେ ବିରକ୍ତ ହେଲାଣି । ସେ ଆଉ ବେଶୀ ସମୟ ଏ ଲୋକଟା ପଛରେ ଘୂରିପାରିବ ନାହିଁ । ଅଚିହ୍ନା ଲୋକ, ଭଲ ମନ୍ଦ କିଏ କହିବ ? ହଠାତ୍ ଗୋଟାଏ ଗଳି ଭିତରେ ପଶି, ପୁଣି ବାହାରି, ଲୋକଟି ଗୋଟାଏ ଘର ଭିତରକୁ ପଶିଗଲା । ଅରିନ୍ଦମ ଚୁପ୍ ହେଇ ଛିଡ଼ାହେଲା ଓ ଘରକୁ ଲକ୍ଷ୍ୟ କଲା । କିନ୍ତୁ ବେଶୀ ସମୟ ନୁହେଁ । ତା'ର ମନେହେଲା କିଏ ଯେପରି କବାଟ ଫାଙ୍କା କରି ତାକୁ ହାତ ହଲେଇ ଡାକୁଛି । ସେ ଆଉ କାଳବିଳମ୍ବ ନ କରି, ପିଣ୍ଡା ଉପରକୁ ଉଠି, ଦରଆଉଜା କବାଟ ଭିତର ଦେଇ ଘର ଭିତରକୁ ପଶିଗଲା । ସାଙ୍ଗେ ସାଙ୍ଗେ ତା ପଛରେ କିଏ କବାଟ ବନ୍ଦ କରିଦେଲା । ଘର ଭିତର ଅନ୍ଧାର । ମନେହେଲା ଯେମିତି କେତେଟା ଛାଇ ଏପାଖ ସେପାଖ ହଲଚଲ ହେଉଛି ।

ଅରିନ୍ଦମ ଡରି ଯାଇଥିଲା ନିଶ୍ଚୟ, ସନ୍ଦେହ ନାହିଁ । କିଏ ଯେମିତି ଜାଣିଲା ପରି

ପାଖରେ କହିଲା, 'ଭୟ କରନା, ବସ!' ସଙ୍ଗେ ସଙ୍ଗେ ଆଉ ଜଣେ କିଏ କହି ଉଠିଲା, 'ଆଃ, ଗୋଟା ଆଲୁଅ ଆଣନା ।' 'କୋଉଠି ବସିବ ?' 'ଆଣୁଛି, ଆଣୁଛି' ଆଉ ଜଣେ କିଏ ଯେମିତି କହିଲା । ତାପର ସବୁ ଚୁପ୍, ଝାପସା ଝାପସା ଅନ୍ଧାର ଓ ଛାଇ । ତାପର ଗୋଟାଏ କଣରେ ଗୋଟା ଉଜ୍ଜ୍ୱଳ ଦୀପଶିଖା ଜଳି ଉଠିଲା । ଆଲୁଅରେ ଅରିନ୍ଦମ ଦେଖିଲା ତାକୁ ଛାଡ଼ି ଘରେ ଆଉ ତିନିଜଣ ଲୋକ । ଘରଟି ପ୍ରଶସ୍ତ । ତଳେ ଗଦି, ଗଦି ଉପରେ, ଗୋଟା ପାଖ କାନ୍ଥକୁ ଆଉଜି, ତିନିଜଣ ଲୋକ ବସିଛନ୍ତି । କିନ୍ତୁ ଯାହା ପଛେ ପଛେ ସେ ଆସିଲା ସେ ନାହିଁ । ଏମାନେ ଅନ୍ୟ କିଏ । ଜଣେ ବୟସ ହେଲାପରି ଦିଶୁଛି । କିନ୍ତୁ ଅନ୍ୟ ଦି'ଜଣ କମ ବୟସର । ସ୍ୱାସ୍ଥ୍ୟବାନ, ପୋଷାକପତ୍ର ପରିଷ୍କାର ପରିଚ୍ଛନ୍ନ, ମନେହେଉଛି, ସାଧାରଣ ଲୋକଠାରୁ ଅଲଗା, ଟିକେ ଉପର ସ୍ତରର । ମୁହଁ ଶାନ୍ତ, ନିରୁଦବିଗ୍ନ । ବସିବା ଠାଣିରୁ ମନେହେଉଛି ଏମାନେ ସହଜେ ବିଚଳିତ ହେବାର ଲୋକ ନୁହନ୍ତି ।

'ବାସ, ଏଇ ପାଖକୁ ଆସ', ବୟସ୍କ ଜଣକ କହିଲେ ।

ଅରିନ୍ଦମ ପାଖକୁ ଯାଇ ସେମାନଙ୍କ ପାଖରେ ବସି ପଡ଼ିଲା ।

'ତୁମ ନାଁ କ'ଣ ?' ବୟସ୍କ ଜଣକ ପୁଣି ପଚାରିଲେ ।

'ଅରିନ୍ଦମ', ଅରିନ୍ଦମ ଉତ୍ତର ଦେଲା ।

'ତୁମେ ମଥୁରାରୁ ଆସିଛ ?...

'ମୁଁ ମଥୁରାରେ କିଛିଦିନ ଥିଲି ।' ବୟସ୍କଙ୍କ ସ୍ୱରରେ ସାମାନ୍ୟ ଦୂର ଦୂର ଉଦାସ ଭାବ ଫୁଟି ଉଠିଲା । 'କି ସୁନ୍ଦର ଜାଗା । ଯମୁନା କୂଳରେ । ଦେବୀ ଯମୁନାଙ୍କର ଅଶେଷ ଦୟା । ଆଃ, ଆଉ କି ହୁଏ ?' ବୟସ୍କ କିଛି ସମୟ ଚୁପ କରିଗଲେ । 'ଆଚ୍ଛା ତୁମ ଗୋଷ୍ଠୀ ଓ ବାପାଙ୍କ ନାଁ ?'

ଅରିନ୍ଦମ ନିଜ ଗୋଷ୍ଠୀ କଥା, ଓ ବାପାଙ୍କ ନାଁ କହିଲା ।

'ହଁ, ଜାଣେ । ଲୋକେ ବେଶ୍ ମାନନ୍ତି । ରାଜା ବି । ଜ୍ଞାନୀ, ଋଷି ପ୍ରତିମ ।'

ଅରିନ୍ଦମ ଉତ୍ତର ନ ଦେଇ ଚୁପ୍ ହେଇ ରହିଲା ।

'ଭଲହେଲା', ବୟସ୍କ ପୁଣି କହିଲେ ଓ ସାମାନ୍ୟ ହସିଲେ, 'ତୁମେ ଆଶ୍ଚର୍ଯ୍ୟ ହଉଥିବ ତୁମର ଏଠି କାମ କଅଣ, ଆମେ ତୁମକୁ କେମିତି ଜାଣିଲୁ, କାହିଁକି ତୁମେ ଆସିଲ ।'

ଅରିନ୍ଦମ ଉତ୍ତର ଦେଲା ନାହିଁ । ଚୁପ୍ ହୋଇ ଅପେକ୍ଷା କଲା ।

'ନା, କାଲି ରାତି ଆଗରୁ ତୁମକୁ ଆମେ ଜାଣି ନ ଥିଲୁ । କିନ୍ତୁ କାଲି ରାତିର ଘଟଣା ପରଠୁଁ ଆମେ ତୁମ ଉପରେ ନଜର ରଖିଛୁ । ନା, ନା, ଭୟ କରନା । ତୁମର


Digitized by srujanika@gmail.com

କିଛି କ୍ଷତି ହବନି । ଆଚ୍ଛା, ତୁମେ ଦେଖ ତ । ଯାଙ୍କୁ ତୁମେ ଚିହ୍ନ କି ନା ? ଗୋପା... ଗୋପା...' ବୟସ୍କ ଜଣଙ୍କ ଅନୁଚ୍ଚ ସ୍ୱରରେ ଡାକିଲେ ।

ଘର ଭିତରକୁ ଯିଏ ଆସିଲେ ସେଇ ଛାଇଛାଇଆ ଅନ୍ଧାରରେ ବି ତାଙ୍କୁ ଦେଖି ଅରିନ୍ଦମ ଚମକି ଉଠିଲା । ଏତ ସେଇ ଗତ ରାତିର ସ୍ତ୍ରୀଲୋକ, ଯାହାଙ୍କ ମୁହଁ ରକ୍ତରେ ଜୁଡୁବୁଡୁ ହେଇ ଯାଇଥିଲା ଓ ଯିଏ ତିରସ୍କାର କଲା ପରି ଅଦ୍ଭୁତ, ପ୍ରହେଳିକା ପରି କଥା କହି ଚାଲିଯାଇ ଥିଲା । କିନ୍ତୁ ଆଜି ତାଙ୍କଠାରେ ଗତ ରାତିର ଘଟଣାର କୌଣସି ସୂଚନା ନାହିଁ । ପୋଷାକ ପରିଷ୍କାର ପରିଚ୍ଛନ୍ନ । ମୁହଁ ଶାନ୍ତ ସଂଯତ । ଗତ ରାତିର ବେପରୁଆ ମନୋଭାବ ନୁହେଁ, ଗୋଟାଏ ସହଜ, ସ୍ୱାଭାବିକତା, ଯେପରି ବନ୍ଧୁମାନଙ୍କ ସାଙ୍ଗରେ ଅଛନ୍ତି, ଗୋଟାଏ ସହଜ ପ୍ରୀତିର ମନୋଭାବ । କିନ୍ତୁ ଆଖି ଦିଓଟି ସ୍ଥିର, ନିଷ୍ପଲକ – ସତର୍କତା ଓ ଦୃଢ଼ତା ବୁଝିହୁଏ । ସେ ଚୁପ୍‌ହେଇ ଛିଡ଼ା ହେଲେ ।

ବୟସ୍କ ଜଣଙ୍କ ଅରିନ୍ଦମକୁ ପୁଣି ପଚାରିଲେ – 'ଚିହ୍ନୁଚ ?'

'ହଁ, କାଲି ରାତିରେ ଦେଖିଛି ।' ଅରିନ୍ଦମ ଟିକେ ରହି ହଠାତ୍ କହି ଉଠିଲା, 'କିନ୍ତୁ ଆଙ୍କ ସ୍ୱାମୀ ?'

ବୟସ୍କ ସାମାନ୍ୟ ହସିଲେ । ଅନ୍ୟମାନେ ଚୁପ, ସ୍ତ୍ରୀଲୋକଟିର ମୁହଁରେ କୌଣସି ଭାବାନ୍ତର ନାହିଁ । ବୟସ୍କଙ୍କ ନିର୍ଦ୍ଦେଶରେ ସେ ପାଖରେ ବସିଲା । 'ଛାଡ଼ ସେ କଥା', ବୟସ୍କ କହିଲେ, 'ଶୁଣ, କାଲିଠାରୁ କୁସ୍ତି ପ୍ରତିଯୋଗିତା ଆରମ୍ଭ ହେବ । ସେଥିରେ କିଏ ଜିତିବ ଜାଣ ?'

ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, 'ଆଗରୁ କେମିତି ଜାଣିବି ?'

'କିଏ ଜିତିବ ମୁଁ କହୁଛି ଶୁଣ', ବୟସ୍କ କହିଲେ – 'କଂସ' ।

'କଂସ' !

'ହଁ କଂସ, ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ସେସବୁ ଆଗରୁ ବନ୍ଦୋବସ୍ତ ହୋଇଛି । ମୂର୍ଖମାନେ କୁସ୍ତି ଲଢ଼ିବାକୁ ଆସିଛନ୍ତି । କିଛି ମୂର୍ଖ ଶେଷ ପାଇଯିବେ, କଂସ ଜରାସନ୍ଧର ଦି' ଝିଅଙ୍କୁ ବିଭା ହେବ ।'

ଏ ଠିକ୍ ଭବିଷ୍ୟତ ଦେଖିଲା ପରି କହି ଯାଉଛନ୍ତି । କିନ୍ତୁ କହିବାଟା ଏତେ ସ୍ୱାଭାବିକ ଯେ ଅବିଶ୍ୱାସ କରିବାକୁ ଇଚ୍ଛା ହେଉନି, ତଥାପି ଅରିନ୍ଦମର ଆଶ୍ଚର୍ଯ୍ୟଭାବ ଗଲାନି ।

'କିନ୍ତୁ କାହିଁକି ? କଂସ କ'ଣ ଏତେ ବଡ଼ ?'

'ନାଁ, କଂସ ନୁହେଁ, ଜରାସନ୍ଧ । ଜରାସନ୍ଧ ପଶାପାଲିରେ କଂସ ଗୋଟି । କିନ୍ତୁ ସେ ଗୋଟିକୁ ଠିକ୍ ଭାବରେ ବ୍ୟବହାର କଲେ ସେ ସମସ୍ତଙ୍କୁ ମାରି ଶେଷ କରିବ ।

ଆଉ ଜରାସନ୍ଧ ଠିକ୍ ସେଇଆ ଚାହେଁ । ତା'ର ଭୟଙ୍କର ଯୋଜନା । ସେ ଆର୍ଯ୍ୟାବର୍ତ୍ତର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ ହେବାକୁ ଚାହେଁ । ଅମର ହେବାକୁ ଚାହେଁ । ଆଉ ସେଥିପାଇଁ ସେ ଆର୍ଯ୍ୟାବର୍ତ୍ତର ଶହେଜଣ ରାଜାଙ୍କୁ ମହାକାଳଙ୍କ ପାଖରେ ବଳି ଦେବ ।'

ଅରିନ୍ଦମ ସ୍ତବ୍ଧ ହୋଇଗଲା । ଏ ତ ରାଜନୀତିର ପ୍ରହେଳିକା । ଆଉ ଭୟଙ୍କର ରାଜନୀତି । ଅରିନ୍ଦମର ହଠାତ୍ ମନେହେଲା ସେମାନେ ଆସିବା ଦିନଠାରୁ କଂସ ନିଜ ଶିବିରରେ କେବେ ରହୁନି । ସବୁବେଳେ ରାଜ ନଅରରେ । ଏହାହିଁ କ'ଣ କାରଣ ? କଂସ ବିଷୟରେ କଥା ଉଠିଲେ ସମସ୍ତେ ସାବଧାନ, ସତର୍କ ହୋଇ କଥା କହୁଛନ୍ତି । ମନେହେଉଛି ଯେପରି ସେ ମଥୁରାର ଯୁବରାଜ ନୁହେଁ, ମଗଧର ଯୁବରାଜ ।

ବୟସ୍କ ଯେପରି ଅରିନ୍ଦମର ଚିନ୍ତାର ଧାରା ବୁଝି ପାରିଲେ । କହିଲେ, 'ଠିକ୍, କଂସ ମଗଧର ଯୁବରାଜ, କିନ୍ତୁ ସେ ଯୁବରାଜଠାରୁ ବି ବେଶି । ଜରାସନ୍ଧ ନିଜ ପୁଅମାନଙ୍କୁ ବିଶ୍ୱାସ କରେନା, କିନ୍ତୁ କଂସ ଉପରେ ତା'ର ପ୍ରଚଣ୍ଡ ବିଶ୍ୱାସ । କଂସ ଏକମାତ୍ର ଲୋକ ଯେ କି ତା ସାଙ୍ଗରେ  ନିଭୃତରେ ବସି ଆଳାପ ଆଲୋଚନା କରେ । ଆଉ ଏ କୁସ୍ତି ପ୍ରତିଯୋଗିତାର ଗୋଟାଏ ଉଦ୍ଦେଶ୍ୟ କଂସର ପ୍ରଚାର ।' ଶୁଣୁ ଶୁଣୁ ଗୋଟାଏ କଥା ଅରିନ୍ଦମ ମୁଣ୍ଡରେ ଖଚଖଚ କରୁଥିଲା- ଏମାନେ କିଏ ? ଏମାନେ ଏତେକଥା ତାକୁ କାହିଁକି କହୁଛନ୍ତି ? ଏମାନେ କଅଣ ରାଜନୀତିର ଲୋକ ? କୌଣସି ଦେଶର ରାଜାରାଜୁଡ଼ା ? ଏମାନଙ୍କୁ ସେ କଅଣ ସାହାଯ୍ୟ କରି ପାରିବ ? ସେ ସାହସ କରି କହିଲା, 'ଗୋଟାଏ କଥା ପଚାରିବି ?'

'ହଁ, କୁହ ।'

'ଜରାସନ୍ଧ କଥା ମାନିଲି । କିନ୍ତୁ ଆପଣମାନେ ଜରାସନ୍ଧର ଏତେ ବିରୋଧୀ କାହିଁକି ? ଆପଣମାନେ ଏତେ ସାବଧାନ, ସତର୍କ କାହିଁକି ? କାଲି ରାତିରେ ଯୋଉ ହାଣକାଟ ଦେଖିଲି ସେ କ'ଣ ?'

ପ୍ରଶ୍ନ ପଚାରି ଅରିନ୍ଦମ ମନେ ମନେ ଭୟ ପାଇଗଲା । କହି ତ ଦେଲା, ଏମାନେ ଯଦି ରାଗି କିଛି କ୍ଷତି କରନ୍ତି ।

'ନାଁ । ସମସ୍ତେ ଚୁପ୍, ବୟସ୍କ ବି କିଛି କହୁନାହାନ୍ତି । ସେଇ ସ୍ତ୍ରୀଲୋକଟି, ଯା ନା ଗୋପା, ସେଇ କହିଲା, 'କାଲି ରାତିରେ ଯା କହିଥିଲି, ମନେ ଅଛି ?'

ହଁ, ମୁଁ ଏବେ ବି ଭାବୁଛି, ତା'ର ମାନେ କଅଣ ?'

'ମାନେ ସହଜ ।' ବୟସ୍କ କହିଲେ - 'ତୁମେ ତ ଏଠି ଆସି ଆଠ, ଦଶଦିନ ରହିଲଣି । ତୁମକୁ ସବୁ ଠିକ୍ ଠିକ୍ ଲାଗୁଛି ?'


Digitized by srujanika@gmail.com

ଅରିନ୍ଦମ ଟିକେ ଚୁପ ହୋଇ ଭାବିଲା । ତା' ମନରେ ହାବୁକା ପରି ଯା ଉଠି ଆସୁଥିଲା ଶେଷକୁ ସେ ସେଇଆ ହିଁ କହିଲା ।

'ଚାରିଆଡ଼େ ଏତେ ସିପାହୀ କାହିଁକି ? ଦିନରାତି ସବୁଆଡ଼େ ସେମାନେ ଘେରିକରି ରହିଛନ୍ତି । ସମସ୍ତଙ୍କ ଉପରେ ନଜର । ଯେମିତି କା ସାଙ୍ଗରେ ଯୁଦ୍ଧ ହବାକୁ ଯାଉଛି ।'

'ତୁମ ମଥୁରାରେ ସିପାହୀ ଅଛନ୍ତି ?' ବୟସ୍କ ପଚାରିଲେ ।

'ନାଁ, ନାଁ, ମଥୁରାରେ ସିପାହୀ ନାହାନ୍ତି । ସେଠି ସବୁ ଖୋଲାମେଲା । ଅଲଗା ଅଲଗା ଲୋକଙ୍କର ଅଲଗା ଅଲଗା ମତ ।'

'ଠିକ୍, ମଗଧର ସିପାହୀ ଆଜି ନୁହେଁ ।' ବୟସ୍କ ଆସ୍ତେ ଆସ୍ତେ, ପ୍ରତି ଶବ୍ଦ ଉପରେ ଗୁରୁତ୍ୱ ଦେଇ କହିଲା ପରି କହିଲେ, 'ଜରାସନ୍ଧ ରାଜା ହେବା ଦିନଠାରୁ ଏ ବ୍ୟବସ୍ଥା । ଏଠି ଆମର ସ୍ୱାଧୀନତା ନାହିଁ । ଆମେ ନିଜେ ପସନ୍ଦ କଲାପରି କଥା ବା କାମ କରିପାରିବୁ ନାହିଁ । ଏଠି ଜରାସନ୍ଧ ଯା ଚାହିଁବେ ସେଇଆ ହିଁ କରିବାକୁ ହେବ । ଏଠି ପରିବାରର ସୁରକ୍ଷା ନାହିଁ, ଜୀବନର ସୁରକ୍ଷା ନାହିଁ, ଗୋଟାଏ ଘୃଣ୍ୟ, ନାରକୀୟ ଶାସନ, ଆଉ ଜରାସନ୍ଧ ଏଇ ଶାସନର ମୁଖ୍ୟ ।'

'କିନ୍ତୁ ଆପଣମାନେ... ?' ଅରିନ୍ଦମ ରହି ରହି ପଚାରିଲା ।

'ହଁ ଆମେ', ବୟସ୍କଙ୍କର ଶାନ୍ତ, ସଂଯତ ସ୍ୱର ହଠାତ୍ ଉତ୍ତେଜିତ ହୋଇ ଉଠିଲା, 'ଆମେ ଏହାର ପ୍ରତିବାଦ କରୁଛୁ । ଏ ନାରକୀୟ ଶାସନ ଆମେ ଚୁପ୍‌ଚାପ୍ ମାନି ନବୁ ନାହିଁ । ଆମେ ଜାଣୁ ଜରାସନ୍ଧ ଆମକୁ ଶେଷ କରିଦବ । କିନ୍ତୁ ଆମେ ଗଲେ ଅନ୍ୟଲୋକ ଆସିବେ । ଆସୁଛନ୍ତି ବି । ଜରାସନ୍ଧ ଜାଣୁ ମଗଧରେ ଜୀଅନ୍ତା ଲୋକ ଅଛନ୍ତି, ମଲା ଲୋକ ନୁହେଁ ।' ବୟସ୍କ ଚୁପ୍ କରିଗଲେ, ତାଙ୍କ ଆଖି ଦି'ଟା ରଡ଼ ନିଆଁ ପରି ଜଳୁଥାଏ । କହିଲେ, 'ଅରିନ୍ଦମ, ଏ ଅତ୍ୟାଚାର ଚାଲିବ, ଆମେ ଜାଣୁ, ଆମେ ବି ସେଥିପାଇଁ ପ୍ରସ୍ତୁତ । ଦୀର୍ଘଦିନ ଧରି ଚାଲିବ । କିନ୍ତୁ ମହାକାଳଙ୍କ ନିର୍ଦ୍ଦେଶ କେବେ ଭୁଲ ହେବନାହିଁ । ତ୍ରାଣକର୍ତ୍ତା ଆସିବେ ହିଁ ଆସିବେ ।' ବୟସ୍କ ଚୁପ୍ କଲେ ଓ ଗୋପାଙ୍କୁ ଚାହିଁଲେ । କହିଲେ, 'ଗୋପାଙ୍କ କଥା ତୁମକୁ ପ୍ରହେଳିକା ପରି ମନେ ହେଉଥିଲା । ପ୍ରହେଳିକା ନୁହେଁ, ଭବିଷ୍ୟତ । କଂସ ଜରାସନ୍ଧର ସବୁଠାରୁ ବିଶ୍ୱସ୍ତ ଲୋକ । ମଗଧର ଏ ନାରକୀୟ ଶାସନ ମଥୁରାକୁ ଯିବ । ଖୁବ୍ ବେଶୀ ଡେରି ନାହିଁ । ଦେଖ, ଉଗ୍ରସେନ କେତେଦିନ ରାଜା ହେଇ ରହୁଛନ୍ତି ।'

ସେଦିନ ସେମାନଙ୍କ ପାଖରୁ ଅରିନ୍ଦମ ଫେରିଲାବେଳକୁ ରାତି ହୋଇ ଯାଇଥିଲା । ଆଗ ପରି, ଅତି ସାବଧାନରେ, ଦି'ଜଣ ଲୋକ ଆଣି ତାକୁ

ରାଜରାସ୍ତାରେ ଛାଡ଼ିଦେଇ ଗଲେ । ଅରିନ୍ଦମ ଏକା ଏକା, ଚୁପ୍‌ଚାପ୍ ନଅର ପରିସରକୁ ଫେରି ଆସିଲା ଓ ଶିବିରକୁ ଗଲା ।

ରାତି ଯେ ଖୁବ୍ ବେଶୀ ହୋଇଥିଲା ତା ନୁହେଁ । କିନ୍ତୁ ଶିବିରରେ ପ୍ରାୟ ସନ୍ଧ୍ୟା ସନ୍ଧ୍ୟା ଖିଆପିଆ ସରିଯାଏ । ତାପରେ କିଛି ଲୋକ ବିଶ୍ରାମ ନିଅନ୍ତି, କିଛି ଲୋକ ନାଚଗୀତ ହେଲେ ସେଥିରେ ଯୋଗ ଦିଅନ୍ତି । ସେଦିନ ଖିଆପିଆ ପ୍ରାୟ ସରି ଆସିଥିଲା । ଅରିନ୍ଦମ ଖାଇନେଲା । ଖାଉଖାଉ ସେ ଲକ୍ଷ୍ୟ କଲା ଶିବିରରେ କେମିତି ଗୋଟାଏ ଚାପା ଉତ୍ତେଜନା । କେହି କିଛି ଖୋଲାଖୋଲି କହୁନାହାନ୍ତି । କିନ୍ତୁ ଅନେକ ଫୁସଫୁସ ହଉଛନ୍ତି । ଖାଇସାରି ଅରିନ୍ଦମ କଥାବାର୍ତ୍ତା କରୁଥିବା କିଛି ଲୋକଙ୍କ ପାଖରେ ଯାଇ ବସିଲା । ଜଣେ ଦି'ଜଣ ତା' ଆଡ଼କୁ ଚାହିଁଲେ । ଜଣେ ପଚାରିଲା 'ଅରିନ୍ଦମ, ତୁମ ମତ କଅଣ ?' 'କୋଉ କଥା ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

'ଏଁ, ତୁମେ ଜାଣନା !' ସେହି ଲୋକଟି କହିଲା ।

'ନାଁ ।'

'ହେଇରେ ! ତୁମେ ପରା କଂସର ସାଙ୍ଗ, ଜାଣନା କେମିତି ? ସାରା ମଗଧ ସମସ୍ତେ ଜାଣିଲେଣି ।'

'କଂସ ଜରାସନ୍ଧର ଦି'ଝିଅଙ୍କୁ ବିଭା ହେଉଛି, ଶୁଣି ନା ?' ଆଉ ଜଣେ କହିଲା ।

ଅରିନ୍ଦମ କିଛି ସମୟ ଚୁପ୍ ରହିଲା ।

କହିଲା, 'ଠିକ୍ ତ, ଖରାପ କଅଣ ହେଲା ?'

'ଏଁ, ଏଁ, କଅଣ କହିଲ ? କଅଣ କହିଲ ? ଖରାପ କଅଣ ହେଲା ।' ଏକା ସାଙ୍ଗରେ ତିନି ଚାରିଜଣ ପାଟି କରି ଉଠିଲେ । 'କିହୋ, ଆମେ ଯଦୁବଂଶୀ, ହସ୍ତିନାପୁରରେ ଆମର ବନ୍ଧୁବାନ୍ଧବ । ଆର୍ଯ୍ୟାବର୍ତ୍ତରେ ଆମେ ଶ୍ରେଷ୍ଠ ଜାତି । ଆମ ଯୁବରାଜ ବିଭା ହବ ଜରାସନ୍ଧ ଘରେ । ଜରାସନ୍ଧ କଅଣ କି ? କଅଣ ତା ଜାତି ପତି ।'

'ଚୁପ, ଚୁପ୍', ଅରିନ୍ଦମ କହିଲା ।

'କାହିଁକି ଚୁପ ଚୁପ ?' ଯେଉଁମାନେ ପାଟି କରୁଥିଲେ ସେମାନେ ଅହୁରି ଜୋରରେ ପାଟିକରି ଉଠିଲେ । ଆହୁରି କିଛି ଲୋକ ଆସି ଜମିଲେଣି ।

'ଶୁଣ, ଶୁଣ ଏ କଅଣ କହୁଛି । ଠିକ୍ । କେମିତି ଠିକ୍ ? ଆଜି ଜରାସନ୍ଧ ସମ୍ରାଟ ବୋଲାଉଛି ବୋଲି କଅଣ ତା' ଜାତିପତି ବଢ଼ିଗଲା । ଆମ ସାଙ୍ଗରେ ସମ୍ବନ୍ଧ ! ନାଁ, ନାଁ, ଉଗ୍ରସେନଙ୍କୁ ଖବର ଦିଅ, ମୁଖିଆମାନଙ୍କୁ ଖବର ଦିଅ ।' ବେଶ

ଯୁକ୍ତିତର୍କ, କଥା କଟାକଟି ଆରମ୍ଭ ହେଇଗଲା । ଏପର୍ଯ୍ୟନ୍ତ ଯୋଉ ଉତ୍ତେଜନା ଚୁପ୍‌ଚୁପ୍ ଥିଲା ସେ ସ୍ୱଚ୍ଛାର ହୋଇ ଉଠିଲା । ଏ ଯେମିତି କଂସ ବିଭା ହେବନି, ଏ ସମସ୍ତେ ବିଭା ହେବେ, ହଠାତ୍ ଯଦୁବଂଶୀଙ୍କର ମାନସମ୍ମାନରେ ଆଘାତ ଲାଗିଛି । କିନ୍ତୁ କ୍ଷମତା ଆଗରେ, ଉଚ୍ଚାଶା ଆଗରେ ମାନସମ୍ମାନ କଅଣ ? ଅରିନ୍ଦମର ଜ୍ଞାନଚକ୍ଷୁ ଖୋଲିଯାଇଛି । ଏଣିକି ନୂଆ ଢଙ୍ଗରେ ମାନ ସମ୍ମାନର ବିଚାର ହେବ, ନୂଆ ଭାବରେ ଜାତିପତିର ହିସାବ ହେବ । ସେ ଯୁକ୍ତିତର୍କରେ ଯୋଗ ଦେଲା ନାହିଁ । ନିରର୍ଥକ । ସେ ଜାଣେ କଂସ ନିଶ୍ଚୟ ବିଭା ହେବ । ଏ ବିଭା ହେବାଟା କେବଳ ବିଭାହେବା ପାଇଁ ନୁହେଁ । ଗୋଟାଏ ଅନ୍ଧାରିଆ ଘର ଓ ସେଇ ଅଳ୍ପ କେତୋଟି ଲୋକଙ୍କର ଛବି ଭାସି ଉଠିଲା, ଯେଉଁମାନଙ୍କର ଆଖିରେ ଅଗ୍ନିର ସ୍ଫୁଲିଙ୍ଗ ଓ କଥାରେ ଖଣ୍ଡାପରି ଧାର ଓ ଯେଉଁମାନେ କେବଳ କାଲି ପହରଦିନ ନୁହେଁ, ଆହୁରି ଆଗକୁ ଆଗକୁ କଅଣ ଘଟିବ ସ୍ପଷ୍ଟ ଭାବରେ ଦେଖି ପାରୁଛନ୍ତି । ତା' ମୁଣ୍ଡରେ ବୟସ୍କଙ୍କର ଗୋଟାଏ କଥା ଗୁଣୁ ଗୁଣୁ କରି ଉଠିଲା – 'ଅପେକ୍ଷା କର । ମଥୁରାର ପାଳି ଆସିବ'। ଅରିନ୍ଦମ ଉଠି ନିଜ ବିଛଣାକୁ ଗଲା ।' ସାରାଦିନ ପାଇଁ ଏ ଅଭିଜ୍ଞତା ଯଥେଷ୍ଟ ।

ତା' ପରଦିନ, ଅର୍ଥାତ୍ ଯେଉଁଦିନ ମଲ୍ଲକୁସ୍ତି ଆରମ୍ଭ ଦିନ, ଅରିନ୍ଦମର ନିଦ ଭାଙ୍ଗିଲାବେଳକୁ ଶିବିର ପ୍ରାୟ ଖାଲି ହୋଇଗଲାଣି । ସେପାଖରୁ ଜଣେ କିଏ ପାଟି କରୁଛି 'ଉଠ, ଉଠ, କାମ ସାର ଶୀଘ୍ର'। ଅରିନ୍ଦମ ଅନେଇ ଦେଖିଲା, ନାଁ, ଏ ତ ମଥୁରା ଲୋକ ନୁହେଁ । ଏ କିଏ ? ଚାରି ପାଖକୁ ଚାହିଁ ଦେଖିଲା, ଲୋକ ପ୍ରାୟ ନାହାନ୍ତି, ଜଣେ ଅଧେ ଏଠି ସେଠି । ଖୁବ୍ ସକାଳୁ କୁସ୍ତି ଆରମ୍ଭ ହବା କଥା । ମହାକାଳ ମନ୍ଦିରରୁ ବି ପୂଜା ଫୁଲ ଆସି ଯାଇଥିବ । ସେ ଶୀଘ୍ର ଶୀଘ୍ର କାମ ସାରି ପ୍ରସ୍ତୁତ ହେବାକୁ ଲାଗିଲା । କାଲି ଶିବିରରେ କୁହାକୋହି ହେଉଥିଲେ କଂସକୁ ଏ ପ୍ରତିଯୋଗିତାର ପ୍ରଧାନ ଯୋଦ୍ଧା ଭାବରେ ବଛା ଯାଇଛି । ସେ ଆଜି ପ୍ରଥମେ ଲଢ଼ିବ । ଜରାସନ୍ଧ ବି ଆଖଡ଼ା ଜାଗାକୁ ଆସିବ । ହୁଏତ ଲଢ଼ିପାରେ । କାମ ସାରି ପ୍ରସ୍ତୁତ ହୋଇ ଅରିନ୍ଦମ ଶିବିରରୁ ବାହାରିଲା ବେଳକୁ ଦେଖିଲା ଶିବିରର ବାହାର ପାଖରେ ଗୋଟାଏ ଲୋକ ଚୁପ ହୋଇ ବସିଛି । କେହି କୁଆଡ଼େ କାହାନ୍ତି । ହଠାତ୍ ତା'ର ମନେହେଲା ଏଇ ଲୋକଟା ହିଁ ପାଟି କରୁଥିଲା ନାଁ କଅଣ ! ସେ ମୁହୂର୍ତ୍ତେ ଛିଡ଼ାହୋଇ ଲୋକଟାକୁ ଚାହିଁଲା । ଲୋକଟା ସେମିତି ବସି ରହିଛି, ଆଉ ହାତରେ କଅଣ ଦଳୁଛି । ସେ ଅରିନ୍ଦମକୁ ଚାହିଁଲା ବି ନାହିଁ । କିନ୍ତୁ ଅରିନ୍ଦମ ଶୁଣିଲା ପରି କହିଲା, 'ପୂର୍ବଦ୍ୱାର ଦେଇ ଆଖଡ଼ା ଘରକୁ ଯିବ ।' ଅରିନ୍ଦମ ସାମାନ୍ୟ ଚମକି ଉଠିଲା । ତାକୁ କହୁଛି ? ଲୋକଟି ପୁଣି କହିଲା, 'ରାତିରେ ଖାଇସାରି ଶିବିର

ବାହାରେ ଅପେକ୍ଷା କରିବ ।' ଅରିନ୍ଦମ ଚାରିପାଖକୁ ଚାହିଁ ଦେଖିଲା । ନାଁ, କେହି ନାହାନ୍ତି । ସେ ତାକୁହିଁ କହୁଛି ନିଶ୍ଚୟ । ଭାବିଲା ପଚାରିବ । କିନ୍ତୁ ଲୋକଟାର ଯେପରି କୌଣସି ଆଗ୍ରହ ନାହିଁ । ସେ ଆଗପରି ଅନ୍ୟ ଆଡ଼କୁ ଚାହିଁ ବସିଛି ଓ ଗୁଣ ଗୁଣ କରି କଅଣ ଗୀତ ଗାଇଲାଣି । ଅରିନ୍ଦମ ଆଉ ଛିଡ଼ା ହେଲା ନାହିଁ । ଶିବିରରୁ ବାହାରି ଆଖଡ଼ା ଜାଗା ଆଡ଼କୁ ଚାଲିଲା । ଆଖଡ଼ା ଜାଗା ରାଜନଅର ବାହାରେ, କିଛି ଦୂରରେ, ମହାକାଳଙ୍କ ମନ୍ଦିରର ପାଖାପାଖି ଜାଗାରେ । ବେଶ୍ ପ୍ରଶସ୍ତ ଜାଗା, ଚାରିପାଖରେ ଗଛବୃକ୍ଷ, ଗଛ ସେ ପାଖକୁ ଛୋଟ ନଈପରି ଗୋଟିଏ ସ୍ରୋତସ୍ୱତୀ, ପାଣି ବେଶୀ ନାହିଁ, କିନ୍ତୁ ସ୍ୱଚ୍ଛ, ନିର୍ମଳ ଜଳ ଅହରହ ବହି ଚାଲିଚି । ଅଳ୍ପ ଦୂରରେ, ଆକାଶରେ ନେସି ହେଲାପରି ଛୋଟ ଛୋଟ ପାହାଡ଼, ପାଖକୁ ପାଖ ଲାଗିକରି ରହିଛି ଓ ଦୂରକୁ ଦୂରକୁ ଆହୁରି ଆହୁରି ଉଚ୍ଚା ହୋଇ ଲମ୍ବି ଯାଇଛି । ଗଛବୃକ୍ଷରେ ଭରା, ଆକାଶର ନୀଳିମା ସାଙ୍ଗରେ ପାହାଡ଼ର ସବୁଜିମା ଏକାଠି ଏକାକାର ହେଇ ମିଶିଯାଇଛି । ଭଲ କରି ଲକ୍ଷ୍ୟ କଲେ ପାହାଡ଼ ପାହାଡ଼ ମିଶିବା ଜାଗାରେ କେତେଗୁଡ଼ିଏ ଖୋଲ ବାରିହୁଏ । ଏହିପରି ଗୋଟିଏ ଖୋଲରେ ମହାକାଳଙ୍କ ମନ୍ଦିର । ସାଧାରଣ ଲୋକ ସେଠିକି ଯିବାର ଅନୁମତି ନାହିଁ । ଶୁଣାଯାଏ ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରୁ ସମ୍ରାଟ ଜରାସନ୍ଧ ସେଠାକୁ ପୂଜାଅର୍ଚ୍ଚନା କରିବାକୁ ଯାଆନ୍ତି ଓ ମଝିରେ ମଝିରେ, କୋଉ କୋଉ ନିର୍ଦ୍ଦିଷ୍ଟ ଦିନ, ଅଧରାତିରେ, ସେଠାରେ ବଳି ଦିଆଯାଏ ।

ଅରିନ୍ଦମ ଏସବୁ ଶୁଣିଛି । ସମ୍ରାଟ ଜରାସନ୍ଧଙ୍କ ବିଷୟରେ ମଗଧର ଲୋକେ ଅତ୍ୟନ୍ତ ଭୟଭୀତ, ଏଥିରେ ସନ୍ଦେହ ନାହିଁ । ବାହାରୁ ମଗଧ ଶାନ୍ତ, ସ୍ଥିର, ଶୃଙ୍ଖଳିତ, କିନ୍ତୁ ତଳେ ତଳେ ଏକ ତୀବ୍ର ଭୟର ସ୍ତର ବୁଝିବାକୁ କଷ୍ଟ ହୁଏନା । ଜରାସନ୍ଧ କ୍ୱଚିତ୍ ବାହାରକୁ ବାହାରନ୍ତି, କ୍ୱଚିତ୍ ଲୋକଙ୍କୁ ଦେଖାଦିଅନ୍ତି । କିନ୍ତୁ ତାଙ୍କର ଅଦୃଶ୍ୟ ପ୍ରଭାବ ସବୁଆଡ଼େ । ପବନରେ ଗନ୍ଧ ଆସିଲା ପରି ତାଙ୍କର ଗନ୍ଧ ବାରିହୁଏ - ତୀବ୍ର, କାଳକୂଟର ବିଷ ପରି ଗନ୍ଧ । ଅନେକ ସମୟରେ ଗନ୍ଧ ବି ବାରିହୁଏ ନା, ନୀରବରେ ସାରା ଦେହରେ ବିଷ ସଂଚରି ଯାଏ । ଅରିନ୍ଦମ ଭାବିଲା । ଯେଉଁ ହଳାହଳ ପାଣି ମାଡ଼ିଲା ପରି ଚାରିଆଡ଼େ ମାଡ଼ିଯାଉଛି, ତାକୁ ସେ ଗତ ରାତିର ଅଳ୍ପ କେତୋଟି ଲୋକ ବନ୍ଦ କରି ପାରିବେ କି ? କିଏ ପାରିବ ? ଆଜି ମଗଧ, କାଲି ମଥୁରା, ତା ପରେ ? ସେ ପଛକୁ ଚାହିଁ ଦେଖିଲା, ଶିବିର ଆଗରେ ବସିଥିବା ସେଇ ଲୋକଟି ଉଠି ଛିଡ଼ା ହେଲାଣି, ବୋଧହୁଏ ତା ପଛେ ପଛେ ଆସିବ । ସେ ଆଉ ପଛକୁ ନ ଚାହିଁ, ଆଗକୁ ଆଗକୁ ଚାଲିଲା ।

ରାଜନଅରର ଚୌହଦି ଭିତରୁ ବାହାରି ଆସିଲା ପରେ ଲୋକ ଗହଳି ବୁଝି


Digitized by srujanika@gmail.com

ହେଲା । ଧାଡ଼ି ଧାଡ଼ି ଲୋକ ଚାଲିଛନ୍ତି । ପୁରୁଷ, ସ୍ତ୍ରୀ, ପିଲା, ବୁଢ଼ା ସମସ୍ତେ । ପରିଷ୍କାର ପରିଚ୍ଛନ୍ନ, ନୂଆ ନୂଆ ପୋଷାକ । ଯେପରି କୌଣସି ବଡ଼ ପର୍ବ, ସମସ୍ତେ ଠାକୁର ମନ୍ଦରିକୁ ଯାଉଛନ୍ତି, ସେଇ ଭାବ । କିନ୍ତୁ ଆଶ୍ଚର୍ଯ୍ୟ ! ସୋରଗୋଳ ନାହିଁ, ଚୁପ୍‌ଚାପ୍, ଯାହା ବା କଥାବାର୍ତ୍ତା ଆସ୍ତେ ଆସ୍ତେ, ଫୁସ୍‌ଫୁସ୍‌ରେ । ଏପରିକି ପିଲାଙ୍କର ବି ଖଜବଜ ନାହିଁ, ମାଆଙ୍କର କାନି ଧରି ପାଖେ ପାଖେ ଚାଲିଛନ୍ତି । ଆଉ ଏଠି ସେଠି, ଲୋକଙ୍କ ସାଙ୍ଗରେ ମିଳିମିଶି, ଅରିନ୍ଦମ ଲକ୍ଷ୍ୟ କଲା, ସାଙ୍ଗେ ସାଙ୍ଗେ ବୁଝି ନହେଲେ ବି, ମନେ ହେଉଛି ସିପେହୀ ସବୁ ଚାଲିଛନ୍ତି । ସେମାନଙ୍କର ଅଲଗା ପୋଷାକ ନାହିଁ, ଅନ୍ୟମାନଙ୍କ ପରି ପୋଷାକ, କିନ୍ତୁ ଚାଲିରୁ, ସତର୍କତାରୁ, ଆଖିର ନଜରରୁ, ସିପେହୀ ବୋଲି ବୁଝିବାକୁ କଷ୍ଟ ହୁଏନା । ଲୋକମାନେ ହୁଏତ ଜାଣନ୍ତି, କିନ୍ତୁ ନ ଜାଣିଲା ପରି, ନ ଦେଖିଲା ପରି ସେମାନେ ଚାଲିଛନ୍ତି । ହୁଏତ ଜାଣନ୍ତିନି ଯେ ସେମାନଙ୍କ ଭିତରେ ଭିତରେ ସିପେହୀ, ସେମାନେ ସତର୍କ, ସେମାନଙ୍କ ନଜର ସମସ୍ତଙ୍କ ଉପରେ । ଅରିନ୍ଦମ ଭାବିଲା ଏ ଗୋଟାଏ ଭୟ, ଚାରିଆଡ଼େ ଖେଳେଇ ହୋଇ ରହିଛି । ପବନର ଥଣ୍ଡା ବା ଗରମ ପରି, ଘରୁ ବାହାରକୁ ବାହାରି ଆସିଲେ ହିଁ ତମକୁ ଚାପି ଧରେ, ଠିକ୍ ପାଣିରେ ବୁଡ଼ିଗଲା ପରି । ଯେ ଜରାସନ୍ଧ ନଜର ରଖିଛନ୍ତି, ତାଙ୍କର ଆଖି ସବୁଆଡ଼େ । ତେଣୁ ଲୋକମାନେ ଚୁପ୍‌ଚାପ୍, ପିଲାମାନେ କି ଚୁପ୍‌ଚାପ୍ । ମନେହୁଏନା ଲୋକମାନେ ଖୁସିରେ ଖେଳ କସରତ ଦେଖିବାକୁ ଚାଲିଛନ୍ତି । ଚାଲିଛନ୍ତି, ଧାଡ଼ି ଧାଡ଼ି, ଯେମିତି କିଏ ଅଡ଼େଇ ନେଉଛି । ଅରିନ୍ଦମର ମନେହେଲା ନିଛାଟିଆ ରାତି ଅଧର ଡାକ ଶୁଣି ଲୋକ ଯେମିତି ଘରୁ ଉଠି ବାହାରକୁ ଚାଲିଯାଏ, ଚୁପଚୁପ, ନିଦରେ ଶୋଇଲା ପରି । କିନ୍ତୁ କାହିଁକି, ଅରିନ୍ଦମ ପୁଣି ଭାବିଲା, ଲୋକେ ତ ଭୟଭୀତ, ଠିକ୍ । କିନ୍ତୁ ଜରାସନ୍ଧ ତ କମ ନୁହେଁ । ଜରାସନ୍ଧର ଲୋକଙ୍କୁ ତ କମ ଡର ନୁହେଁ । ତା ନ ହେଲେ ଏତେ ସିପେହୀ କାହିଁକି ? ଏତେ ସାବଧାନ, ଏତେ ସତର୍କ ? ଅରିନ୍ଦମ ଅନ୍ୟମନସ୍କ ହୋଇ ବୋଧହୁଏ କିଛି ପଛେଇ ଯାଇଥିଲା । ତା'ର ମନେହେଲା ତା' ପାଖଦେଇ ଜଣେ କିଏ ଯେମିତି ଘସିହେଇ ଚାଲିଗଲା, ଅସ୍ପଷ୍ଟ ସ୍ୱରରେ ଶୁଭିଲା 'ସାବଧାନ'। ଧକ୍କା ଦେଲା ପରି ଅରିନ୍ଦମ ଚେଇଁ ଉଠିଲା । ଚାରିପାଖକୁ ଚାହିଁ ଦେଖିଲା, ମେଳା ମେଳା ଲୋକ ଚାଲିଛନ୍ତି । କିଏ କହିଲା ? ନାଁ ତା'ର ଶୁଣିବାରେ ଭୁଲ ? ରାଜନଅରର ଚୌହଦି ସେ ଅନେକବେଳୁ ଟପି ଆସିଲାଣି । ଦୂରରେ ପାହାଡ଼, ପାହାଡ଼ ଉପରର ସବୁଜିମା ଆଉ ସବୁଜିମା ନାହିଁ, ଜଙ୍ଗଲ ବୁଝି ହେଉଛି । ଆଖଡ଼ା ଜାଗାର ତୋରଣ, ପତାକା ଦିଶିଲାଣି । ବାଜା ବି ଶୁଭୁଛି । ସେ ଚଦରଟାକୁ ଦେହରେ ଭଲକରି ବେଢ଼େଇ ନେଲା । ଚାରିପାଖକୁ

ଚାହିଁଲା । ମଥୁରା ଲୋକେ କାହାନ୍ତି ? କୁଆଡ଼େ ଗଲେ ? ମନେପଡ଼ିଲା ତାକୁ ପୂର୍ବ ଦ୍ୱାରକୁ ଯିବାକୁ ହେବ । ସେ ପୂର୍ବଦ୍ୱାରକୁ ଚାଲିଲା ।

ଆଖଡ଼ାଜାଗା ବେଶ୍ ପ୍ରଶସ୍ତ । ଚାରିପାଖ ଘେରା ହେଇଛି । ଚାରିପାଖରେ ଧାଡ଼ି ଧାଡ଼ି ସିପେହୀ, ଜଗି ରହିଛନ୍ତି, ହାତରେ ବର୍ଚ୍ଛା । ମଝିରେ ମଝିରେ ଭିତରକୁ ଯିବାକୁ ବାଟ । ଲୋକେ ଚାଲିଛନ୍ତି । ପୂର୍ବଦ୍ୱାର କେଉଁଟା ? ସେ କିଛି ଭାବି, କାହାକୁ ପଚାରିବା ଆଗରୁ, ମନେହେଲା ତା କାନ ପାଖରେ କିଏ ଯେମିତି କହିଦେଲା– 'ଡାହାଣ ପାଖକୁ ତିନିଟା ଦ୍ୱାର ଛାଡ଼ି ।' ଅରିନ୍ଦମର ଦେହ ସାମାନ୍ୟ ସିରସିରେଇ ଉଠିଲା । କିଏ ଏମିତି କହୁଛି ? କେହି ତ ନାହିଁ ପାଖରେ ? ସେ ଆଉ ବିଳମ୍ବ ନ କରି, ଦ୍ୱାର ଗଣି ଗଣି ଡାହାଣ ପାଖକୁ ଚାଲିଲା ।

ପୂର୍ବଦ୍ୱାରର ବିଶେଷତ୍ୱ କଅଣ ? କାଇଁ, କିଛି ନାହିଁତ । ଠିକ୍ ଅନ୍ୟାନ୍ୟ ଦ୍ୱାର ପରି । ସାମାନ୍ୟ ଛୋଟ ବରଂ । ଲୋକ ଯାଉଛନ୍ତି, କିଛି କିଛି ବାହାରକୁ ବି ଆସୁଛନ୍ତି । ହଠାତ୍ ତାର ମନେହେଲା ସତେ ତ, ଏ କଅଣ ! ଏ ଦ୍ୱାରରେ ସିପେହୀ ନାହାନ୍ତି । ଜଣେ ଅଧେ ଦୂରରେ, ବିରକ୍ତ ହେଲାପରି ଛିଡ଼ା ହେଇଛନ୍ତି । କିନ୍ତୁ ଅନ୍ୟଦ୍ୱାରରେ ଯେମିତି, କାନ୍ଧକୁ କାନ୍ଧ, ଆଖି ବାତଚକ୍ର ପରି ଘୁରୁଛି, ନଜର ସବୁଆଡ଼କୁ, ନା ନା, ସତେତ ଆଶ୍ଚର୍ଯ୍ୟ କଥା । ଏ କଅଣ ଯେଉଁମାନେ ଆୟୋଜନ କରିଛନ୍ତି ଭୁଲିଗଲେ କି ? ନା ଅନ୍ୟ କିଛି କାରଣ ? ଏ କେମିତି କଥା ! ସିପେହୀ ସବୁଆଡ଼େ ଖେଦିକରି ରହିଛନ୍ତି, ଦିନରାତି, ଶୋଇବା ଜାଗା, ଖାଇବା ଜାଗା, ସାରା ସହରରେ, ସବୁଠି, ସେମାନେ ନ ଜାଣି କିଛି ହେବା ସମ୍ଭବ ନୁହେଁ । ପାଦୁକ ପାଇଲା ପରି ଯେଉଁ କେତୋଟି ସିପେହୀ, ଅରିନ୍ଦମ ସେମାନଙ୍କୁ ଲକ୍ଷ୍ୟ କଲା । ପୋଷାକ ପିନ୍ଧିଛନ୍ତି, ଠିକ୍, ବର୍ଚ୍ଛାବି ଧରିଛନ୍ତି, ମୁଣ୍ଡରେ ପଗଡ଼ି, ଦେହ ସୁସ୍ଥ, ସବଳ, ତାଗଡ଼ା, ତାଗଡ଼ା, କିନ୍ତୁ ସେମାନେ ଚାହିଁଛନ୍ତି କୁଆଡ଼େ ? ଲୋକଙ୍କ ଉପରେ ତ ନଜର ନାହିଁ । ଆଖି କୁଅଡ଼େ କେଉଁ ଦୂରରେ, ସତେ ଯେପରି ଧ୍ୟାନ କରୁଛନ୍ତି, ଦେଖି ନ ଦେଖିଲା ପରି । ଯେଉଁ ଲୋକେ ବି ପୂର୍ବଦ୍ୱାର ଦେଇ ଭିତରକୁ ଯାଉଛନ୍ତି, ବା ଜଣେ ଅଧେ ବାହାରକୁ ଆସୁଛନ୍ତି, ଅରିନ୍ଦମର ମନେହେଲା, ସେମାନେ ବି କେମିତି ସହରର ସାଧାରଣ ଲୋକଙ୍କଠାରୁ ଅଲଗା । ରାସ୍ତା ଲୋକଙ୍କର ପୋଷାକପତ୍ର ଏମାନଙ୍କର ନାହିଁ । ଏମାନଙ୍କର ଯିବା ଆସିବା ଢଙ୍ଗ ବହୁତ ସ୍ୱାଭାବିକ । ସେଠି ଲୋକମାନେ ଯେମିତି ଡରିଡ଼ରି, ସଂକୁଚିତ ହୋଇ ଚାଲୁଛନ୍ତି... ନାଁ, ନାଁ, ଏମାନେ ନିଶ୍ଚିତ ଅଲଗା । ପାଣି ଭିତରର ସୁଅ ପରି, ଅରିନ୍ଦମ ଭାବିଲା । ଉପରେ ଉପରେ ଚୁପ୍‌ଚାପ୍, ଅନ୍ୟମାନଙ୍କ ପରି, କିନ୍ତୁ ଭିତରେ ଭିତରେ କଳକଳ ହୋଇ ସୁଅ ଚାଲିଛି, ଏଠିକି


Digitized by srujanika@gmail.com

ଆସିଲେ ବୁଝିହେବ, ବାହାରୁ ନୁହେଁ । ମୁହୂର୍ତ୍ତକ ପାଇଁ ମନେହେଲା ମଥୁରାରେ ଯଦି ଏ କୁସ୍ତି କସରତ ହଉଥାଆନ୍ତା ଯେମିତି ହବା କଥା ସେମିତି । ସେ ଚାରିଆଡ଼କୁ ଚାହିଁଲା । ନାଁ ଚିହ୍ନା ଲୋକ କେହି ନାହାନ୍ତି । ହଠାତ୍ ମନେହେଲା ଦ୍ୱାର ପାଖକୁ ଲାଗି ଛିଡ଼ା ହୋଇଥିବା ସିପେହୀ ଜଣଙ୍କ ତାକୁ ଯେମିତି ଇସାରାରେ କ'ଣ କହୁଛି । ସେ ଭଲକରି ଚାହିଁଲା । ମୁଣ୍ଡ ସାମାନ୍ୟ ହଲୁଛି, ଆଖିର ଡୋଳା ଏପାଖ ସେପାଖ ହେଉଛି, ସତେ ଯେପରି ତାକୁ ସଂକେତ ଦଉଚି, ଭିତରକୁ ଯା । ସେ ସଂକେତ ଦେଉ କି ନ ଦେଉ, ଅରିନ୍ଦମ ଆଉ ଏଆଡ଼େ ସେଆଡ଼େ ନ ଚାହିଁ ଭିତରକୁ ପଶିଲା ।

ଆଗ ଦିନଠାରୁ ଆଜି ସଜାସଜିର ଆଡ଼ମ୍ବର ବହୁତ ବେଶୀ । ବିଭିନ୍ନ ଦ୍ୱାର ଦେଇ ଲୋକମାନେ ଭିତରକୁ ପଶୁଛନ୍ତି । ପ୍ରଶସ୍ତ ପ୍ରାଙ୍ଗଣର ଚାରିପାଖରେ ଅଲଗା ଅଲଗା ଜାଗାରେ ସେମାନଙ୍କ ପାଇଁ ବସିବାର ଜାଗା । ଅଳ୍ପ ଦୂରରେ, ପୂର୍ବ ଦ୍ୱାରକୁ ପ୍ରାୟ ଲାଗିକରି ରାଜପୁରୁଷମାନଙ୍କ ପାଇଁ ଅତ୍ୟନ୍ତ ସୁଦୃଶ୍ୟ, ଆରାମଦାୟକ ଆସନ ସବୁ । ନାଁ, ସମ୍ରାଟ ଆସିନାହାନ୍ତି । କିନ୍ତୁ ପ୍ରତିଯୋଗୀମାନେ ଆସିଗଲେଣି । ଅରିନ୍ଦମ ଦୂରରୁ କଂସକୁ ଲକ୍ଷ୍ୟ କଲା । କଅଣ କାହାକୁ କହୁଛି । ଏପାଖ ସେପାଖ ହେଉଛି । ନିଜର ଶକ୍ତିରେ ସେ ସୂର୍ଯ୍ୟପରି ଯେମିତି ଜଳୁଛି । ସବୁଆଡ଼େ ଲୋକ ପୂରିକରି ରହିଛନ୍ତି, କେବଳ ପୂର୍ବଦ୍ୱାର ପାଖରେ ଏତେ ଭିଡ଼ ନାହିଁ । ଛାଡ଼ି ଛାଡ଼ି ଲୋକ ବସିଛନ୍ତି । ଏମାନଙ୍କ ଢଙ୍ଗଢ଼ାଙ୍ଗ ବି କେମିତି ଅଲଗା ଅଲଗା । ଅରିନ୍ଦମ ଚୁପ୍‌ଚାପ୍ ଗୋଟାଏ ପାଖରେ ବସିଲା । ଦୂରରୁ କଂସକୁ ଦେଖିବା ଛଡ଼ା ସେ ନିଜ ଅଞ୍ଚଳ ଲୋକ କାହାକୁ ଦେଖୁନି । ସେପରି ଚିହ୍ନା ପରିଚୟ ଲୋକ ବି କେହି ଦିଶୁନାହାନ୍ତି । ହଠାତ୍ ମନେହେଲା ଗତ ରାତିର ସେ ଲୋକମାନେ କାହାନ୍ତି ? ଆଜି ସକାଳୁ ଶିବିରରୁ ଆସିବା ପରଠୁଁ ସେ ଅନୁଭବ କରୁଛି ସେମାନେ ଯେମିତି ତା ଉପରେ ସବୁବେଳେ ନଜର ରଖିଛନ୍ତି । କିନ୍ତୁ କାହିଁକି ? କଅଣ ସେ ସେମାନଙ୍କର କରିପାରେ ? କି ସାହଯ୍ୟ ? ଆଉ ପାଞ୍ଚ ସାତ ଦିନ ପରେ ତ ସେ କଂସ ସାଙ୍ଗରେ ମଥୁରାକୁ ଫେରିଯିବ । ତେବେ ଗୋଟିଏ କଥା ସେ ବେଶ୍ ବୁଝିପାରୁଛି, ଏମାନେ ଜରାସନ୍ଧ ବିରୁଦ୍ଧରେ । ସୁବିଧା ହେଲେ ଏମାନେ ଜରାସନ୍ଧକୁ ଆଘାତ କରିବାକୁ ପଛେଇବେ ନି । ଆଉ ଜରାସନ୍ଧ, ମନେହେଉଛି, ସେକଥା ଜାଣେ । ସେଥିପାଇଁ ଏତେ ସତର୍କ, ଏତେ ସାବଧାନ । କିନ୍ତୁ, ପୁଣି ସେହି ପ୍ରଶ୍ନ, କାହିଁକି ? ଏମାନେ ଜରାସନ୍ଧର କ'ଣ କରିପାରିବେ ? ଜରାସନ୍ଧର ଅପରିମିତ ଶକ୍ତି, ଜରାସନ୍ଧ ଅତ୍ୟନ୍ତ ନିଷ୍ଠୁର, ଆର୍ଯ୍ୟାବର୍ତ୍ତର ଶକ୍ତିଶାଳୀ ରାଜାମାନେ ବି ଜରାସନ୍ଧର ଭୟରେ ଭୟଭୀତ । ଆଉ ଏମାନେ – କ'ଣ ବା ଏମାନଙ୍କର ଶକ୍ତି । ଦି'ଦିନ ତଳର ରାସ୍ତା ଉପରର ସେଇ ଦୃଶ୍ୟ ! ଯେପରି

ବିଭତ୍ସ, ସେହିପରି ନାରକୀୟ ! ଲୋକ ଜନ୍ଦା ପିମ୍ପୁଡ଼ିକୁ ଚିପିଦେଲା ପରି ଜରାସନ୍ଧ ତ କୌଣ ମୁହୂର୍ତ୍ତରେ ଏମାନଙ୍କୁ ଚିପି ମାରିଦେବ ।

'ନାଁ'-

ଅରିନ୍ଦମ ଚମକି ଉଠି କଡ଼କୁ ଚାହିଲା । ତା' ପାଖରେ, ତା'ର ଲକ୍ଷ୍ୟ ନାହିଁ, ଜଣେ କିଏ ଆସି ଚୁପ୍‌ଚାପ୍ ବସିଛି । ଅରିନ୍ଦମ ଚାହିଁ ଦେଖିଲା । ଠିକ୍ ବୁଝି ନ ହେଲେ ବି ମନେ ହେଉଛି ଆଗ ରାତିର ସେଇ ବୟସ୍କ ଲୋକ । ବେଶଭୂଷା ଅଲଗା ହେଲେ ବି ବୋଧେ ସେଇ ।

'ହଁ, ସେଇ । ମୋ' ଆଡ଼କୁ ଚାହିଁବା ଦରକାର ନାହିଁ । ଯେମିତି ବସିଛ ସେମିତି ବସ । ସାମ୍ନାକୁ ଚାହିଁ ଦେଖ । କୁସ୍ତି ଆରମ୍ଭ ହବାକୁ ଡେରି ନାହିଁ । ଜରାସନ୍ଧ ଆସିଲେ ଆରମ୍ଭ ହେବ । କଂସକୁ ଲକ୍ଷ୍ୟ ରଖିଥା ।' ଆଶ୍ଚର୍ଯ୍ୟ ! ଏ ଲୋକଟି ତା'ର ମନର କଥା ଏତେ ସ୍ପଷ୍ଟ ବୁଝିପାରିଲା କେମିତି । ଅରିନ୍ଦମ ବିସ୍ମିତ ଓ ଭୀତ ବି ହେଲା । ଲୋକଟା କ'ଣ ଯାଦୁକର ? ଅରିନ୍ଦମ ସାମ୍ନାକୁ ଚାହିଁ ବସି ରହିଲା । କିନ୍ତୁ ତା ମନର ସନ୍ଦେହ କୁହୁଡ଼ି ପରି ଘେରି ରହିଲା । କିଏ ଏମାନେ ? ଏମାନଙ୍କର ଉଦ୍ଦେଶ୍ୟ କଅଣ ? ତା' ପ୍ରତି ଏମାନଙ୍କର ଏତେ ଆଗ୍ରହ କାହିଁକି ? ଜରାସନ୍ଧ ତ ସମ୍ରାଟ । ତା'ର ରାଜନୀତି ତ ସମ୍ରାଟର ରାଜନୀତି, ଆର୍ଯ୍ୟାବର୍ତ୍ତର ରାଜାମାନଙ୍କର ଚିରାଚରିତ ରାଜନୀତି, ସେଥିରେ ସାଧାରଣ ପ୍ରଜାମାନଙ୍କର ସମ୍ପର୍କ କ'ଣ ? ହଠାତ୍ ବିଜୁଳି ପରି ତା ମନରେ ଗୋଟାଏ କଥା ଖେଳିଗଲା । ଏମାନେ ଜରାସନ୍ଧର ନିଜ ଲୋକ ନୁହନ୍ତି ତ ? ଲୋକମାନଙ୍କୁ ଭୟଭୀତ କରିବା ପାଇଁ ଏ ଜରାସନ୍ଧର ନିଜସ୍ୱ ଖେଳ ନୁହେଁ ତ ? କିନ୍ତୁ ସେ କ'ଣ କରିପାରେ ? ସେ ତ ଅତି ସାମାନ୍ୟ । ସେ ଆସିଛି କଂସ ସାଙ୍ଗରେ, କଂସ ସାଙ୍ଗରେ ଫେରିଯିବ । ଜରାସନ୍ଧର ରାଜନୀତିରେ ସେ କାହିଁକି ବ୍ୟସ୍ତ ହେବ । ମଗଧରୁ ମଥୁରା ତ ବହୁତ ଦୂର ।

ଅରିନ୍ଦମ ବାହୁରେ ମୃଦୁ ସ୍ପର୍ଶ । ସେ ସାମାନ୍ୟ ଚମକି ଉଠିଲା । କିନ୍ତୁ ମୁହଁ ଫେରେଇଲା ନାହିଁ ଓ ଠିକ୍ ପରେ ପରେ ସେ ଶୁଣିଲା, ଖୁବ୍ ସ୍ପଷ୍ଟ ଓ ପରିଷ୍କାର ସ୍ୱର, କିନ୍ତୁ ଆସ୍ତେ ଆସ୍ତେ - 'ନାଁ, ଭୁଲ୍ । ମଗଧରୁ ମଥୁରା ଦୂର ନୁହେଁ । ଆଜି ଯାହା ମଗଧରେ କାଲି ତାହା ମଥୁରାରେ । ଏ ଖାଲି ରାଜନୀତିର ଖେଳ ନୁହେଁ । ଏ ଖେଳର ପରିଣତି ଭୟଙ୍କର । ଆମେ ଜାଣୁଛୁ, ବୁଝୁଛୁ ପ୍ରତିବାଦ କରୁଛୁ । ତୁମେ ଆଜି କରୁନା କାଲି କରିବ । ଜରାସନ୍ଧ ଆମକୁ ଶେଷ କରିଦେବ, ମୁଁ ଜାଣେ । ତୁମକୁ ବି କଂସ ଶେଷ କରିଦେବ ।'

ସ୍ୱର ବନ୍ଦ ହେଲା । ଅରିନ୍ଦମର ମନେହେଲା ସେ ଯେମିତି ଶୂନ୍ୟରେ ଶୂନ୍ୟରେ

ଭାସି ବୁଲୁଥିଲା, ଚାରିପାଖରେ ପ୍ରବଳ ଉତ୍ତାପ, ପ୍ରବଳ ବାୟୁସ୍ରୋତ, ଆଉ ହଠାତ୍ ସବୁ ବନ୍ଦ ହୋଇଗଲା, ବର୍ତ୍ତମାନ ଚାରିପାଖରେ ଗୁମ୍‌ସୁମ୍, ଭୟଙ୍କର ଗୁଲୁଗୁଳି ପରି । ତା' ଦେହ ଝାଳେଇ ଉଠିଲା । ସେ କ'ଣ କହିବ ବା ନ କହିବ ଭାବିବା ଆଗରୁ ସେ ଅନୁଭବ କଲା ତା ଦେହ ଶିରଶିରେଇ ଉଠୁଛି । ଏ ଠିକ୍ ପାହାନ୍ତା ପହରରେ ସମ୍ପୂର୍ଣ୍ଣ ଅଜଣା, ଅଚିହ୍ନା ବିଷୟରେ ସ୍ୱପ୍ନ ଦେଖି ଉଠି ପଡ଼ିଲେ ଯେମିତି ଲାଗେ । ସେ ସାମ୍ନାକୁ ଚାହିଁ ରହିଲା, ସବୁ ଝାପ୍ସା ଝାପ୍ସା ଦିଶୁଛି । ତା'ର ମନେହେଲା ସାପ ପରି ଗୋଟାଏ ଥଣ୍ଡା, ମସୃଣ ଜିନିଷ ତା ଉପର ଦେଇ ଚାଲିଯାଉଛି । ନିଜ ଅଜାଣତରେ ସେ ଥରିଉଠିଲା । ସେ ଶୁଣିଲା ପାଖରେ କିଏ ଆସ୍ତେ ଆସ୍ତେ ହସୁଛି । ସେ ଅନୁଭବ କଲା ତା ହାତକୁ କିଏ ଶକ୍ତ ମୁଠାରେ ଚାପି ଧରିଛି । ପୁଣି ଥରେ ସେଇ ଆଗର ସ୍ୱର, କିନ୍ତୁ ସ୍ୱରରେ ତୀକ୍ଷ୍ଣତା ନାହିଁ, ଅଛି ଆଶା, ଆଶ୍ୱାସନା ।

'ଭୟ କରନା, ଅରିନ୍ଦମ । ଆମେ ବି ପ୍ରଥମେ ପ୍ରଥମେ ଭୟ କରୁଥିଲୁ । କିନ୍ତୁ ମନେରଖ, ଥରେ ଅନ୍ଧାରରେ ପଶିଗଲେ, ଆଉ ଅନ୍ଧାର ଅନ୍ଧାର ପରି ମନେ ହେବ ନାହିଁ । ଆମେ ଦେଖିପାରୁଚୁ, ତୁମେ ବି ପାରିବ । ମୋର ଇଚ୍ଛା ତୁମେ ଦେଖ, ବୁଝ, କି ଭୟଙ୍କର ଦୁର୍ଯୋଗ ଘୋଟି ଆସୁଛି । ଏ ଖାଲି ଆଜି ମଗଧ, କାଲି ମଥୁରା ନୁହେଁ, ସାରା ଆର୍ଯ୍ୟାବର୍ତ୍ତର କଥା । ଏ ଖାଲି ଜଣେ ଜରାସନ୍ଧ କଥା ନୁହଁ । ସାରା ଆର୍ଯ୍ୟାବର୍ତ୍ତରେ ବର୍ତ୍ତମାନ ଅସଂଖ୍ୟ ଜରାସନ୍ଧ ଛାଇ ହେଇ ଗଲେଣି ।'

'କିନ୍ତୁ ଆମେ କ'ଣ କରିପାରିବା ? ଆମର କେତେ ଶକ୍ତି...' ଅରିନ୍ଦମର ମନେହେଲା ସେ ଯେମିତି ଗୋଟାଏ ପ୍ରବଳ ସୁଅକୁ ଠେଲି ଧରିବାକୁ ଚେଷ୍ଟା କରୁଛି... 'କିନ୍ତୁ ମୋର କେତେ ଜୋର, ମୁଁ କ'ଣ କରିପାରିବି ।' ଅରିନ୍ଦମର ସନ୍ଦେହ ହେଲା ସେ କ'ଣ କହୁଛି କି ?

'ତୁମେ ଜାଣିବ, ବୁଝିବ', ପୁଣି ସେହି ସ୍ୱର, ସାହସ ଓ ଦମ୍ଭର ସ୍ୱର । 'କ'ଣ ଘଟିବାକୁ ଯାଉଛି ବୁଝିବାହିଁ ଶକ୍ତି । ତୁମେ ଦେଖ, ବୁଝ, ତା ହେଲେ ଠିକ୍ ରାସ୍ତା ଦେଖିପାରିବ । ଜରାସନ୍ଧକୁ ଆମେ ବନ୍ଦ କରିପାରିବୁନି, କଂସକୁ ତୁମେ ବି ପାରିବନି । ସେମାନଙ୍କୁ ବାଧା ଦେବାପାଇଁ ବଡ଼ ଶକ୍ତି ଦରକାର । ଆମଠାରୁ ବହୁତ ବଡ଼ । ତୁମ୍ଭମାନଙ୍କର ସାହସ, ଦମ୍ଭ ଭିତର ଦେଇ ସେ ଶକ୍ତି ଆସିବ ।'

ଅରିନ୍ଦମର ମନେହେଲା ଅନ୍ଧାର ନୁହେଁ, ଆଲୋକର ଘୂର୍ଣ୍ଣି ଭିତରେ ସେ ଏପାଖ ସେପାଖ ହେଉଛି । ପ୍ରଚଣ୍ଡ, ପ୍ରବଳ ଆଲୋକ । ଆଲୋକର ବନ୍ୟାରେ ଦୂର ଦିଗବଳୟ ଉଦ୍ଭାସିତ, ଅପୂର୍ବ ବର୍ଣ୍ଣରେ ରଂଜିତ ।

ସେଦିନ ଆଉ କ'ଣ କ'ଣ ଘଟିଲା- ଅରିନ୍ଦମର ସବୁ ମନେ ନାହିଁ । ତେବେ


Digitized by srujanika@gmail.com

ଅନେକ କିଛି ଘଟିଲା । ପ୍ରଥମ କଥା, ଅରିନ୍ଦମର ଦେହ, ମନ ସବୁ ଖୋଲା ମେଲା ହେଇଗଲା । ସେ ସକାଳୁ ଶିବିରରୁ ଆସିବା ପରଠାରୁ ଯେଉଁ ଉଦ୍‌ବେଗ, ସଂକୋଚ ସଂକୋଚ ଭାବ, କିଏ କେଉଁଠି ତାକୁ ଟାଣି ଟାଣି ଧରୁଛି, ସେ ଭାବ ଚାଲିଗଲା । ସବୁ ହଠାତ୍ ସ୍ୱାଭାବିକ ହେଇଗଲା - ଯିବା ଆସିବା, ଗହଳ ଚହଳ, ଲୋକ, ସିପେହୀ, ମଲ୍ଲମାନଙ୍କର ବାହାସ୍ଫୋଟ, ହୋ ହୋ ହସ, ଦୂରରୁ ଭାସି ଆସୁଥିବା ନହବତର ଧ୍ୱନି, ସକାଳର ଖରା । ମନେହେଲା ମଗଧ ନୁହେଁ, ଗିରିବ୍ରଜ ନୁହେଁ, ସେ ଯେମିତି ମଥୁରାରେ ବସିଛି, ଚାରିପାଖରେ ତା'ର ସାଙ୍ଗମାନେ, ସବୁଆଡ଼େ ଚିହ୍ନା ଲୋକ, ହସଖୁସି, ଥଟ୍ଟାତାମସା, ଏଇ ବାଜା ବାଜିଲାଣି, ପର୍ବର ନାଚଗୀତ ଆରମ୍ଭ ହେବ, ସେ ସମସ୍ତଙ୍କ ଭିତରୁ ଜଣେ, ଏ ତା'ର ପର୍ବ, ଅତି ସହଜ, ଅତି ସ୍ୱଚ୍ଛ । ଅରିନ୍ଦମର ମନ କେତେ ସମୟ ଏହିପରି ଆଚ୍ଛନ୍ନ ହୋଇ ରହିଥିଲା ସେ ଜାଣେନା । ହଠାତ୍ ସେ ଅନୁଭବ କଲା ଆଗପରି ବାହୁରେ ମୃଦୁସ୍ପର୍ଶ, ଆଗପରି ପାଖରୁ ସେହି ଅତ୍ୟନ୍ତ ବନ୍ଧୁତ୍ୱପୂର୍ଣ୍ଣ ସ୍ୱର - 'ଅରିନ୍ଦମ, ଦେଖ । ବାଜା ଶୁଭୁଛି ? ଜରାସନ୍ଧ ଆସିଲେଣି ।'

ଅରିନ୍ଦମ ଯାହା ଏ ପର୍ଯ୍ୟନ୍ତ ଲକ୍ଷ୍ୟ କରି ନ ଥିଲା ସେ ହେଲା ଲୋକଙ୍କ ଗହଳି । ଚାରିପାଖରେ ଲୋକାରଣ୍ୟ ହେଇଗଲାଣି । ଏପରିକି ପୂର୍ବପାଖରେ ବି ଆଉ ଖାଲି ଜାଗା ନାହିଁ । ଲୋକ ଠେସାଠେସି ହେଇ ବସିଛନ୍ତି । ଖାଲି ଗିରିବ୍ରଜ ବା ମଗଧର ଲୋକ ନୁହେଁ, ବାହାରୁ ବାହାରୁ ଅନେକ ଲୋକ ଆସିଛନ୍ତି । ନାନା ପ୍ରକାର ପୋଷାକ, ନାନା ବୟସର, ସ୍ତ୍ରୀଲୋକ ବି ଅନେକ । ଜରାସନ୍ଧର ଆୟୋଜନ ନିଖୁଣ, ମଲ୍ଲକୁସ୍ତିରେ ଯା' ହେଲେ ବି, ଜରାସନ୍ଧ ସମସ୍ତଙ୍କ ଉପରେ, ସବୁଆଡ଼େ ତା'ର ଜୟଜୟକାର । ଅରିନ୍ଦମର ମନେହେଲା କଂସ ପାଇଁ ବି ପରମ ସୁଯୋଗ । ଯାହା ମଥୁରାରେ ସମ୍ଭବ ନ ଥିଲା ଏଠି ତା ହେବ । ଏଇ ଗୋଟିଏ ସୁଯୋଗରେ ସେ ସମଗ୍ର ଆର୍ଯ୍ୟାବର୍ତ୍ତରେ ପ୍ରତିଷ୍ଠିତ ହୋଇପାରିବ । 'ଠିକ୍', ପାଖରୁ ସେଇ ବନ୍ଧୁତ୍ୱପୂର୍ଣ୍ଣ ସ୍ୱର, 'ଏ ଜରାସନ୍ଧ ପାଇଁ ଯେତେ ନୁହେଁ, କଂସ ପାଇଁ ବେଶୀ । ଜରାସନ୍ଧର କଂସକୁ ଦରକାର ।'

ବାଜା ପାଖେଇ ଆସିଲାଣି । ଯୁଦ୍ଧ ବାଜା, ତାଳ ଲୟରେ ସାରା ଅଞ୍ଚଳ କମ୍ପି ଉଠୁଥାଏ । ପଛକୁ ପଛ ଦି'ଧାଡ଼ିରେ ଅଶ୍ୱାରୋହୀ ଓ ସଭା ଶେଷକୁ ଗୋଟିଏ ଅତ୍ୟନ୍ତ ସୁଦୃଶ୍ୟ ଓ ବିରାଟ ରଥରେ ଜରାସନ୍ଧ ନିଜେ । ଚାରିଆଡ଼େ ଶହ ଶହ ଶିଙ୍ଗାର ଶବ୍ଦ, ସହସ୍ର କଣ୍ଠରେ 'ଜୟ ସମ୍ରାଟ ଜରାସନ୍ଧ ଜୟ' ଧ୍ୱନି । ମୁହୂର୍ତ୍ତକ ପାଇଁ ଅରିନ୍ଦମକୁ ଆଖିରେ ଝାପ୍ସା ଦିଶିଲା, ମନେହେଲା ନିଃଶ୍ୱାସ ବନ୍ଦ ହେଇଯିବ କି ? ତା' ନିଜ


Digitized by srujanika@gmail.com

ମନର ଭୟ, ଆଶଙ୍କା, ସନ୍ଦେହ ସବୁ ଯେପରି ସେହି ମୁହୂର୍ତ୍ତରେ କୁଆଡ଼େ ଚାଲିଗଲା । ଉପରର ମେଘମୁକ୍ତ ଆକାଶ ତଳେ ଆନନ୍ଦ ଉଲ୍ଲାସର ବିରାଟ ଆୟୋଜନ । ଚାରିଆଡ଼େ ପତାକା, ଚାରିଆଡ଼େ ବାଜା, ଚାରିଆଡ଼େ ବିଭିନ୍ନ ରଙ୍ଗର ସମାରୋହ । ଭାଟମାନେ ମାଙ୍ଗଳିକ ଗାନ କରୁଛନ୍ତି, ବ୍ରାହ୍ମଣମାନେ ମନ୍ତ୍ରପାଠ କରୁଛନ୍ତି, ଆଉ ରହି ରହି କୁସ୍ତୀ ପ୍ରାଙ୍ଗଣରୁ ମଲ୍ଲମାନଙ୍କର କୁହାଟ । ଏସବୁ ମିଳିମିଶି ଏକ ଅଦ୍ଭୁତ ସମାରୋହ ।

ଆଉ ସବୁ ଉପରେ ଜରାସନ୍ଧ, ସମସ୍ତଙ୍କ ଆଖି ଜରାସନ୍ଧ ଉପରେ । ଅରିନ୍ଦମ ବି ସ୍ଥିର, ନିଶ୍ଚଳ ହୋଇ ଜରାସନ୍ଧକୁ ଚାହିଁ ରହିଲା । ବିଶାଳ ବ୍ୟକ୍ତିତ୍ୱ, ସୁଗଠିତ, ଶକ୍ତିଶାଳୀ ଦେହ ଚନ୍ଦନ ଚର୍ଚ୍ଚିତ, ମଥାରେ ତିଳକ, ଆଜାନୁଲମ୍ବିତ ଦୁଇ ବାହୁରେ ସୁବର୍ଣ୍ଣ କଙ୍କଣ, ଅତ୍ୟନ୍ତ ମୂଲ୍ୟବାନ, ଅତ୍ୟନ୍ତ ସୂକ୍ଷ୍ମ ପାଛୁଡ଼ାରେ ଦେହ ଆବୃତ । କର୍ଣ୍ଣରେ କୁଣ୍ଡଳ, ଅଣ୍ଟା ଚାରିପାଖରେ ଉଜ୍ଜ୍ୱଳ ମଣିହାର, ତୀବ୍ର ଆଲୋକ ଛଟାରେ ଉଦ୍ଭାସିତ । କେଶରେ ଏକ ଅଦ୍ଭୁତ, ବିରାଟ ରତ୍ନ, ରଡ଼ ନିଆଁ ପରି ଦାଉ ଦାଉ ହେଇ ଜଳୁଛି । ଅରିନ୍ଦମ ସମ୍ମୋହିତ ହୋଇ ଚାହିଁ ରହିଲା । ଜରାସନ୍ଧ ରଥରେ ଛିଡ଼ା ହୋଇଛନ୍ତି । ତାଙ୍କର ଦୀର୍ଘ ବିଶାଳ ବ୍ୟକ୍ତିତ୍ୱ ମନେହେଉଛି ରଥର ଚଉହଦିକୁ ଠେଲିପେଲି ବାହାରକୁ ଫିଟି ଆସୁଛି । ଯେପରି କୌଣସି ଐଶ୍ୱରୀକ ଶକ୍ତି ଓ ସେହିପରି ତେଜ । ଆଖିରେ ଅସମ୍ଭବ ଗଭୀରତା, ଓ ଅସମ୍ଭବ ଆତ୍ମପ୍ରତ୍ୟୟ । ସାରା ଦେହକୁ ଘେରି ଏକ ଅପରିମିତ ଶକ୍ତି ଓ କର୍ତ୍ତୃତ୍ୱ । 'ବାବା', ଛାଁ ଛାଁ ଅରିନ୍ଦମ ପାଟିରୁ ବାହାରି ଆସିଲା । ତା'ର ମନେହେଲା ମଗଧର ସର୍ବଶ୍ରେଷ୍ଠ ଦର୍ଶନୀୟ ବସ୍ତୁ ଜରାସନ୍ଧ ନିଜେ । ଜରାସନ୍ଧଙ୍କୁ ନ ଦେଖି ଫେରିଯାଇଥିଲେ ବୋଧହୁଏ ସେ ମଗଧର କିଛି ଦେଖି ନ ଥାନ୍ତା ।

'ଦେଖା ସଇଲା କି ?' ବାହୁରେ ମୃଦୁ ସ୍ପର୍ଶ ଓ ସେହି ପରିଚିତ ସ୍ୱର – 'ପୃଥିବୀର ସବୁ ପାପାତ୍ମା ଅପରିମିତ ବଳଶାଳୀ, ଅପରିମିତ ଶକ୍ତିର ଅଧିକାରୀ । ସେହିଯୋଗୁଁ ଅବତାରମାନେ ଆସନ୍ତି ।'

ଅରିନ୍ଦମର ଆଚ୍ଛନ୍ନଭାବ କଟି ଆସୁଥାଏ । ଜରାସନ୍ଧଙ୍କ ରଥ ଆସି କୁସ୍ତି ପ୍ରାଙ୍ଗଣ ପାଖରେ ପହଞ୍ଚିଗଲାଣି । ବାଦ୍ୟରୋଳର ପ୍ରଚଣ୍ଡତା ବଢ଼ିଯାଉଛି, ଲୋକଙ୍କର ଚିତ୍କାର ବି । ଜୟଜୟକାରର ସମୁଦ୍ର ଉପରେ ଆସ୍ତେ ଆସ୍ତେ ଗୋଡ଼ ରଖି ଜରାସନ୍ଧ ଓହ୍ଲାଉଛନ୍ତି । ଚାରିପାଖରେ ଉତ୍ତାଳ ଲହରୀର ନିନାଦ । ମନେହେଲା ସମ୍ରାଟ ଉତ୍ତାଳ ତରଙ୍ଗରେ ବୁଡ଼ିଗଲେକି ? ନାଁ । ଉଠି ଛିଡ଼ା ହେଲେଣି । ଚାରିପାଖକୁ ଚାହୁଁଛନ୍ତି । ଆଖିରେ ଆଗର ଗାମ୍ଭୀର୍ଯ୍ୟ ନାହିଁ । ଆଖି ଚଞ୍ଚଳ, ସତର୍କ । ପାଖରେ, ଦୂରରେ ମଲ୍ଲମାନେ ନଇଁ ସମ୍ରାଟଙ୍କୁ ସମ୍ମାନ ଜଣଉଛନ୍ତି । ଆଗର ବିଶାଳତା ବିଶାଳତର

ହୋଇଛି । ଦେହର ତେଜ ଆହୁରି ତେଜସ୍କ୍ରିୟ । ସମ୍ରାଟଙ୍କର କର୍ତ୍ତୃତ୍ୱ ଅଦୃଶ୍ୟ ଶକ୍ତି ପରି ସମସ୍ତଙ୍କୁ ଠେଲି ଧରିଛି ।

ପ୍ରାଙ୍ଗଣର ଗୋଟିଏ ଦିଗରେ ସୁଶୋଭିତ ଚନ୍ଦ୍ରାତପ ତଳେ ଅତ୍ୟନ୍ତ ସୁସଜ୍ଜିତ ସିଂହାସନ । ପାଖକୁ ଲାଗି ମହାକାଳଙ୍କର ବିଜେ ପ୍ରତିମା ଓ ଯଜ୍ଞବେଦୀ । ପାଖକୁ ପାଖ ଲାଗି ଲାଗି ବିଭିନ୍ନ ଆସନ । ବେଦୀ ଚାରିପାଖରେ ବ୍ରାହ୍ମଣମାନେ ବସିଛନ୍ତି । ବିଭିନ୍ନ ଆସନରେ ମଲ୍ଲମାନେ । ଅରିନ୍ଦମ ଲକ୍ଷ୍ୟକଲା ଜରାସନ୍ଧ ଆସି ସିଂହାସନରେ ବସିଲେ । ବ୍ରାହ୍ମଣମାନେ ମନ୍ତ୍ର ପାଠ କରି ବେଦୀରେ ଆହୁତି ଦେଲେ । ମହାକାଳଙ୍କର ବିଜେ ପ୍ରତିମା ପାଖରେ ପୂଜା ଅର୍ଚ୍ଚନା ହେଲା । ହଁ, ପୂଜକମାନେ ପୂଜା ଫୁଲ ନେଇ ଜରାସନ୍ଧଙ୍କୁ ଦେଲେ । ଜରାସନ୍ଧ ପ୍ରଣାମ କଲେ, ଓ ପଛେ ପଛେ ତୀବ୍ର ସ୍ୱରରେ ଶଙ୍ଖ ବାଜି ଉଠିଲା । ଗୋଟାଏ, ଜୋଡ଼ାଏ... ଏକା ସାଙ୍ଗରେ ପଚାଶ ଶଙ୍ଖ, ସାରା କୁସ୍ତି ପ୍ରାଙ୍ଗଣ ତୀବ୍ର ଶଙ୍ଖଧ୍ୱନିରେ ନିନାଦିତ ହୋଇ ଉଠିଲା ।

ଶଙ୍ଖଧ୍ୱନି ନୀରବ ହେବା ସାଙ୍ଗେ ସାଙ୍ଗେ ଶୁଣାଗଲା ଘୋଷକର ଉଚ୍ଚ ଚିତ୍କାର – 'ମହାମହିମ ଦିଗ୍‌ବିଜୟୀ ସମ୍ରାଟ ଜରାସନ୍ଧ ଆଜିକାର ମୁଖ୍ୟଯୋଦ୍ଧାଙ୍କୁ ବରଣ କରିବେ ।' ପାଖରୁ ମୃଦୁ ହସର ଧ୍ୱନୀ – 'ଭଲକରି ଦେଖ ମୁଖ୍ୟ ଯୋଦ୍ଧା କିଏ ।' ଯୋଦ୍ଧାମାନେ ଉଠି ଛିଡ଼ା ହେଲେଣି । ଜରାସନ୍ଧ ହାତରେ ପୂଜା ଫୁଲ ଧରି ସିଂହାସନରୁ ଓହ୍ଲେଇ ଆସିଲେଣି । ତାଙ୍କ ସାଙ୍ଗରେ ପୁରୋହିତ, ରାଜପୁତ୍ରମାନେ । ଜରାସନ୍ଧ ଆସ୍ତେ ଆସ୍ତେ ମଲ୍ଲମାନଙ୍କ ପାଖଦେଇ ଯାଉଛନ୍ତି । ସମସ୍ତେ ଉତ୍ତେଜିତ । ସମସ୍ତେ ଅପେକ୍ଷା କରିଛନ୍ତି । ମୁଖ୍ୟ ଯୋଦ୍ଧା କୁସ୍ତି ପରିଚାଳନା କରିବେ । ବିଜେତାମାନଙ୍କୁ ତାଙ୍କ ସହିତ ଲଢ଼ିବାକୁ ପଡ଼ିବ । କିଏ ଏହି ମହାଶକ୍ତିଧର ? ଜରାସନ୍ଧଙ୍କର ଆଖିର ଦୃଷ୍ଟି ତୀବ୍ର, ଅରିନ୍ଦମର ମନେହେଲା ଅତ୍ୟନ୍ତ ସନ୍ଧାନୀ ଓ ସତର୍କ । ହଠାତ୍... ଏ କ'ଣ... ଏ କ'ଣ !... ଜରାସନ୍ଧ କଂସକୁ ବରଣ କଲେ । ଆଶ୍ଚର୍ଯ୍ୟ ! ମନେହେଲା ଯୋଦ୍ଧାମାନଙ୍କ ଭିତରେ ଯେମିତି ହଇଚଇ ପଡ଼ିଗଲା । ସାଙ୍ଗେ ସାଙ୍ଗେ ପ୍ରଚଣ୍ଡ ଶବ୍ଦରେ ପଚାଶଟା ଶଙ୍ଖ ବାଜି ଉଠିଲା । ପଛେ ପଛେ ଦାମାମା । ଶବ୍ଦର ପ୍ରଚଣ୍ଡ ଆଘାତରେ ସାରା କୁସ୍ତିପ୍ରାଙ୍ଗଣ ଥରଥର ହୋଇ ଥରୁଥାଏ । ଅଦ୍ଭୁତ ! ବିଶ୍ୱାସ ହେଉନି । କଂସର ବୟସ ବା କେତେ ! ସେ ଆଜିର ପ୍ରମୁଖ ଯୋଦ୍ଧା ! ସେ ଏହିସବୁ ମହା ମହା ମଲ୍ଲମାନଙ୍କୁ ପାରିବ ତ ?

ପୁଣି ପାଖରୁ ସେହି ମୃଦୁହସ – 'ଅରିନ୍ଦମ, ଏସବୁ ରାଜନୀତି, ଏ ସାରା କୁସ୍ତି ପ୍ରତିଯୋଗିତାଟାହିଁ ରାଜନୀତି । ତମେ ଭାବୁଛ ବିନା ଉଦ୍ଦେଶ୍ୟରେ ଜରାସନ୍ଧ ଏସବୁ ଏତେ ଆୟୋଜନ କରିଛି ? ନାଁ ଆଜି ଏଠିକି ଯେତେ ରାଜା ଓ ରାଜପୁତ୍ରମାନେ

ଆସିଛନ୍ତି, ଅନେକ କଂସଠାରୁ ବହୁତ ବଡ଼, ଏକଥା କ'ଣ ସେ ଜାଣେନା । ସେ ବେଶ୍ ଜାଣେ । କିନ୍ତୁ ତା'ର ଲୋକ ଦରକାର, ଏମିତି ଲୋକ ଯେ କି ତା' ସାଙ୍ଗରେ କାନ୍ଧକୁ କାନ୍ଧ ମିଳେଇ ଛିଡ଼ା ହେବ ଓ ସଂପୂର୍ଣ୍ଣ ଭାବରେ ତା'ରି କଥା ମାନିନେବ । ସେ ଯେତିକି ନିଷ୍ଠୁର, ସେତିକି ନିଷ୍ଠୁର ଲୋକ ତା'ର ଦରକାର । ସେ ଆର୍ଯ୍ୟାବର୍ତ୍ତର ଏକମାତ୍ର ସମ୍ରାଟ ହେବ, ସେଇଟା ହିଁ ଲକ୍ଷ୍ୟ ।'

'କିନ୍ତୁ କଂସ ! କଂସ ବଦମାସ୍, ଅତି ନିଷ୍ଠୁର, ତା'ର ଏତେ ଶକ୍ତି ହେବ ?' ଅରିନ୍ଦମ ଆସ୍ତେ ଆସ୍ତେ କହିଲା ।

'ଦେଖ, ଆଜି କ'ଣ ଘଟୁଛି । ଜରାସନ୍ଧ ଯା'ହେଉ, ମୂର୍ଖ ନୁହେଁ । ଅତ୍ୟନ୍ତ ଚତୁର । ସେ ଜାଣେ କିଏ କ'ଣ । ଆଜିକାର ସବୁ କୁସ୍ତି କେବଳ ଜଣକ ପାଇଁ - କଂସ ।'

କୁସ୍ତି ଆରମ୍ଭ ହେଲା । ପ୍ରଶସ୍ତ ପ୍ରାଙ୍ଗଣର ଚାରିପାଖରେ ମଲ୍ଲମାନେ ବିଭିନ୍ନ ଆସନରେ ରହିଛନ୍ତି । ଅନତିଦୂରରେ ସମ୍ରାଟଙ୍କ ନିକଟରେ କଂସ - ଆଉ ଗୋଟିଏ ଅତ୍ୟନ୍ତ ସୁଦୃଶ୍ୟ ଆସନରେ । କଂସର ପରିପୁଷ୍ଟ, ଶକ୍ତିଶାଳୀ ଦେହ - ତୈଳସିକ୍ତ ଦେହରେ ସକାଳର ଖରାପଡ଼ି ବୈଦୁର୍ଯ୍ୟ ପରି ଚକଚକ କରୁଛି । ଗଳାରେ ସ୍ୱର୍ଣ୍ଣହାର, ବାହୁରେ ସୁବର୍ଣ୍ଣର ପଟି, ଅଣ୍ଟାରେ ସୂର୍ଯ୍ୟପରି ଉଜ୍ଜ୍ୱଳ ମଣିମୁକ୍ତାର ବେଢ଼ଣୀ । ଅରିନ୍ଦମର ମନେହେଲା କଂସ ଜାଣେ କ'ଣ ହେବାକୁ ଯାଉଛି । ତା'ମୁହଁରେ ଆତ୍ମସନ୍ତୋଷର ଭାବ, ଦି' ଆଖିରେ ତା'ର ସ୍ୱାଭାବିକ ଅସ୍ଥିରତା ନାହିଁ । ଆଖି ସ୍ଥିର, ନିଶ୍ଚଳ, ନିଜ ଭିତରେ ସମାହିତ, ଓଠରେ ସାମାନ୍ୟ ହସିଲା ପରି ଭଙ୍ଗୀ । ତା' ବସିବା ଭଙ୍ଗୀରେ ବି ଯେଉଁ ଆତ୍ମବଡ଼ିମା ଓ ଅନ୍ୟମାନଙ୍କ ପ୍ରତି ତାଚ୍ଛଲ୍ୟ ପ୍ରକାଶ ପାଏ ତା ନାହିଁ । ଆଉ ଜରାସନ୍ଧଙ୍କ ପାଖରେ ବସିଲେ ବି ଜରାସନ୍ଧଙ୍କ ସାଙ୍ଗରେ ସମ୍ପର୍କ ନାହିଁ । ନଜର କୁସ୍ତି ଉପରେ, ସତେ ଯେପରି ଯେଉଁମାନେ କୁସ୍ତିର ପ୍ରତିଯୋଗିତା କରୁଛନ୍ତି ସେମାନଙ୍କ ଭୁଲ ତ୍ରୁଟି ସେ ଅଭ୍ୟସ୍ତ ଆଖିରେ ନିରୀକ୍ଷଣ କରୁଛି, ତୁଳନା କରି ଦେଖୁଛି ସେ ନିଜେ କ'ଣ କରିପାରିବ । ଏ ଯେପରି ଅଲଗା କଂସ । ଦେଖିଲେ ଆଶ୍ଚର୍ଯ୍ୟ ଲାଗିବ ଏ କ'ଣ ସେହି ଦୁର୍ବିନୀତ, ଅତ୍ୟାଚାରୀ, ଅସଂସ୍କୃତ ତରୁଣ ଯା'ର ଭବିଷ୍ୟତ ରାଜତ୍ୱ କଥା ଭାବି ସମଗ୍ର ମଥୁରା ଆତଙ୍କିତ । ଅରିନ୍ଦମର ମନେହେଲା ସେ ଯେପରି ଗୋଟାଏ ପ୍ରଚଣ୍ଡ ଶକ୍ତିର ଉତ୍ସକୁ ନିରୀକ୍ଷଣ କରୁଛି । ହଁ, ଶାରୀରିକ ଶକ୍ତି ନିଶ୍ଚିତ, ତା' ପଛରେ ଅନ୍ୟ କିଛି ଶକ୍ତି ବି ରହିଛି । କାହାର ଶକ୍ତି, କିପରି ଶକ୍ତି, କଂସ ପରି ଲୋକଠାରୁ କ'ଣ ଆଶା କରାଯାଇ ପାରେ ? ଭଲ ନିଶ୍ଚୟ ନୁହେଁ । ଅରିନ୍ଦମର ମନେହେଲା ତା'ର ବୟସ୍କ ବନ୍ଧୁ କ'ଣ କହିଲେ । ନାଁ, କିଛି ନାହିଁ । ସବୁ ଚୁପଚାପ୍, କେବଳ ମୃଦୁ ମୃଦୁ

ହସର ଶବ୍ଦ ।

ତିନିଯୋଡ଼ା ମଲ୍ଲଙ୍କର କୁସ୍ତି ଚାଲିଛି । ପ୍ରତ୍ୟେକ ମଲ୍ଲ ପାଖରେ ସେମାନଙ୍କୁ ଉତ୍ସାହିତ କରିବା ପାଇଁ ନିଜର ଲୋକ । ଚାରିପାଖରେ ସାଧାରଣ ଲୋକଙ୍କର ବି ଯଥେଷ୍ଟ ଉତ୍ସାହ । ପାଟିଗୋଳ, ହୋହୋ, ବାଜା ବି ବାଜୁଛି । କେବଳ ଦୁଇଜଣ ଲୋକ ଚୁପ୍‌ଚାପ୍ - ଜରାସନ୍ଧ ଓ କଂସ । କଂସ ସମାହିତ । କିନ୍ତୁ ଜରାସନ୍ଧଙ୍କ ଆଖିରେ ଅପର୍ଯ୍ୟାପ୍ତ କୌତୁକ । ମୂର୍ଖମାନେ କିଛି ସମୟ ଲମ୍ଫଝମ୍ପ କରନ୍ତୁ, ଯେପରି ଏହି ମନୋଭାବ । ହଠାତ୍ ଘୋଷକର ସ୍ୱର ଶୁଣାଗଲା । କୁସ୍ତୀର ପ୍ରଥମ ପର୍ଯ୍ୟାୟ ସରିଲା । ବର୍ତ୍ତମାନ ଦ୍ୱିତୀୟ ପଯ୍ୟାୟ, ଆଉ ତିନି ଯୋଡ଼ା ମଲ୍ଲଙ୍କର କୁସ୍ତୀ ଆରମ୍ଭ ହେବ । 'ଏ ଏମିତି ଚାଲିବ', ପାଖରୁ ପୂର୍ବର ସ୍ୱର' 'ମଧ୍ୟାହ୍ନ ପରେ ଅସଲ କୁସ୍ତି ଆରମ୍ଭ ହେବ । କଂସକୁ ଲକ୍ଷ୍ୟ ରଖ ।' ଅରିନ୍ଦମ ସ୍ଥିର ହୋଇ ଚାହିଁ ରହିଲା । ଦ୍ୱିତୀୟ ପର୍ଯ୍ୟାୟ କୁସ୍ତିରେ ପୂର୍ବପରି ଉତ୍ସାହ, ହଟ୍ଟଗୋଳ, ଉଦ୍ଦୀପନା ।

ପୂର୍ବପରି କଂସ ସମାହିତ । କିନ୍ତୁ ତା'ର ସାରା ଦେହ କଠିନ ହୋଇ ଆସିଲାଣି, ଏ ଯେପରି ଶିକାର ଉପରେ ଲମ୍ଫ ଦେବା ଆଗର ପ୍ରସ୍ତୁତି । ତା'ର ଦି' ଆଖି ସ୍ଥିର, ରଡ଼ନିଆଁ ପରି ଜକଜକ କରୁଛି, ଆଖିର ତେଜ ଅରିନ୍ଦମର ମନେହେଲା ଦୂରରୁ ବି ବାରି ହୋଇ ପଡୁଛି । କିନ୍ତୁ ଜରାସନ୍ଧର କୌତୁକଭାବ ଯେପରି କଟି ଆସିଲାଣି । ଆଖିର ଦୃଷ୍ଟି ସତର୍କ, ଚାରିଆଡ଼େ ଘୂରି ବୁଲୁଛି ଓ କାହାକୁ ଯେପରି କଅଣ ନିର୍ଦ୍ଦେଶ ଦେଉଛି । ଦିନ ବଢୁଛି । ବେଶି ବେଶି ଯୋଦ୍ଧା କୁସ୍ତି ଲଢ଼ିଲେଣି । ଲୋକଙ୍କର ହଟ୍ଟଗୋଳ ଓ ଉତ୍ତେଜନା ବି ବଢୁଛି । ହଠାତ୍ ଅରିନ୍ଦମର ମନେହେଲା ଏ ଉତ୍ତେଜନା ଯେମିତି ସ୍ୱାଭାବିକ ନୁହେଁ, କେମିତି କେମିତି ଖାପଛଡ଼ା ଲାଗୁଛି, ହଠାତ୍ ନଈର ବନ୍ଧ ଭାଙ୍ଗିଗଲା ପରି, ପାଣିର ତୋଡ଼ ଅନ୍ୟପ୍ରକାର । 'ଡାହାଣ ପାଖୁ ଦେଖ'- ବନ୍ଧୁଙ୍କର ସ୍ୱର । ଅରିନ୍ଦମ ଡାହାଣ ପାଖକୁ ଭଲକରି ନିରୀକ୍ଷଣ କଲା । ସତେତ ! କୁସ୍ତି ଚାଲିଛି, କିନ୍ତୁ ଜଣେ କିଏ ଉଠି ଛିଡ଼ାହୋଇ କଅଣ କହୁଛି, ଦୀର୍ଘ, ବଳବାନ ଶରୀର । ଅଣ୍ଟା ଚାରିପାଖରେ ଉଜ୍ଜ୍ୱଳ ମଣିରତ୍ନର ପଟି । ତା ଚାରିପାଖରେ ବେଶ କିଛି ଲୋକ ଛିଡ଼ା ହୋଇଛନ୍ତି । ସମସ୍ତେ ଉତ୍ତେଜିତ । ସମସ୍ତେ ଜରାସନ୍ଧଙ୍କୁ ଚାହିଁଛନ୍ତି, କଥାର ଧକ୍କାରେ କ୍ରୋଧ, ବିରକ୍ତି ।

ଜରାସନ୍ଧ ଉଠି ଛିଡ଼ା ହେଲେଣି । ତାଙ୍କର କେଶର ବିରାଟ ରତ୍ନ ଦପଦପ ହୋଇ ଜଳୁଛି । ତାଙ୍କର ଦୀର୍ଘ, ବଳବାନ ଶରୀର ସ୍ଥିର, ନିଶ୍ଚଳ । ଆଖିରେ ଅପରିସୀମ ତାଚ୍ଛଲ୍ୟ । ସେ କଂସକୁ ଚାହିଁଲେ, କଅଣ କହିଲେ ବୋଧେ, ତାପରେ ନିଜ ଆସନରେ ବସିଲେ । ଦେହର ପେଶୀ ସବୁ ସ୍ୱାଭାବିକ ହୋଇ ଆସିଲା, ଆଖିରେ


Digitized by srujanika@gmail.com

ସେଇ ଆଗର କୌତୁକ ଭାବ ପୁଣି ଥରେ ଫେରି ଆସିଲା ।

କଂସ ଉଠି ଛିଡ଼ା ହେଲାଣି, ତା'ର ସେ ଆଗର ସମାହିତ ଭାବ ନାହିଁ । ସାରା ଦେହ ଲକଲକ କରୁଛି । ଆଖିର ଦୃଷ୍ଟି ପଥର ପରି ଟାଣ । କେହି କିଛି ବୁଝିବା ଆଗରୁ, ଗର୍ଜନ କରି, ଏକ ବିରାଟ ଲମ୍ଫଦେଇ ସେ ସେହି ଦୀର୍ଘ, ବଳବାନ ଯୋଦ୍ଧାଙ୍କ ଉପରକୁ କୁଦିପଡ଼ିଲା ।

ହଠାତ୍ କବାଟ ପଡ଼ିଲା ପରି ସେଇ ବିରାଟ ପ୍ରାଙ୍ଗଣରେ ସବୁ ବନ୍ଦ ହୋଇଗଲା – ସବୁ ହୋ ହୋ, ହଟ୍ଟଗୋଳ, ଉତ୍ତେଜନା । ସବୁ ଚୁପ୍‌ଚାପ୍ । କେବଳ ଆକାଶରେ ଉଡ଼ି ବୁଲୁଥିବା ଚଢ଼େଇଙ୍କ ଶବ୍ଦ, ଦୂର ମହାକାଳ ମନ୍ଦିରର ଘଣ୍ଟାଧ୍ୱନି, ଆଉ ଝଞ୍ଜୀରର ଶବ୍ଦ ପରି ଜରାସନ୍ଧର ହସର ଶବ୍ଦ ।

ଆଜି ଏତେଦିନ ପରେ ସେକଥା ଚିନ୍ତା କରି ଏଇ ରାତିରେ ବି ଅରିନ୍ଦମର ଦେହ ଝାଳେଇ ଉଠୁଛି । ସେ ଭାବି ନ ଥିଲା ଏମିତି ଗୋଟାଏ ଅଭାବିତ ଘଟିବ ବୋଲି । ଗିରିବ୍ରଜରେ ସବୁଆଡ଼େ ଭୟ, ସବୁଆଡ଼େ ସତର୍କତା । ଗୋଟାଏ ଅତିକାୟ ଅଶରୀରୀ ପରି ଜରାସନ୍ଧ ସବୁଆଡ଼େ ଘୋଟି କରି ରହିଥିଲା । ତା' ସତ୍ତ୍ୱେ କୁସ୍ତିର ଆୟୋଜନ ବା ଜରାସନ୍ଧର ବିରାଟ ସମାରୋହରେ ଫାଟ ନ ଥିଲା । ସ୍ୱାଭାବିକ ଭାବରେ କୁସ୍ତିର ସମାରୋହ ଆରମ୍ଭ ହୋଇଥିଲା, ସ୍ୱାଭାବିକ ଭାବରେ ସବୁ ଭୟ ସତ୍ତ୍ୱେ ବି ଲୋକମାନେ ଆସିଥିଲେ, ହୋ ହୋ ଉତ୍ତେଜନାରେ ସାମିଲ ହୋଇଥିଲେ । ସେ ବି ମଥୁରା ଦଳରେ କଂସ ସାଙ୍ଗରେ ଆସିଲାବେଳେ ଗୋଟାଏ କିଛି ଅଘଟଣ ଘଟିବ ଏକଥା ଭାବି ନଥିଲା । ଆଉ କଂସ ବି, ଖୁବ୍ ସୁଧାର ନହେଲେ ବି, ଗୋଟାଏ କିଛି କରି ବସିବ ଏକଥା ସେ ଭାବିବ ବା କାହିଁକି ? କଂସ ତ ଯୁଦ୍ଧ କରିବାକୁ ଯାଇ ନ ଥିଲା, ଜରାସନ୍ଧଙ୍କ ନିମନ୍ତ୍ରଣରେ ମହାକାଳଙ୍କ ଉତ୍ସବରେ ଯୋଗ ଦେବାକୁ ଯାଇଥିଲା । କିନ୍ତୁ ହଠାତ୍ ...ଯିବା ସମୟରେ ବାପାଙ୍କ କଥା ମନେପଡ଼ିଲା – 'ଦେଖ, କଂସ ଠିକଣା ଲୋକ ନୁହେଁ । ଦରକାର ହେଲେ ତମକୁ ସବୁ ଯମୁନାରେ ବୁଡ଼େଇ ଦବ । ସାବଧାନ... ।'

ପାଖରୁ ବୟସ୍କ – ବନ୍ଧୁଙ୍କର ମୃଦୁହସ ବି ଆଉ ଶୁଣାଯାଉନି, କିନ୍ତୁ ସେ ବସିଛନ୍ତି । ନିଷ୍ପଳ ! କଂସର ସେ ଅନ୍ୟ ଯୋଦ୍ଧାଟି ସହ କୁସ୍ତି ଆରମ୍ଭ ହୋଇଯାଇଛି । କିନ୍ତୁ ସେ କୁସ୍ତି ତ ନୁହେଁ, କୁସ୍ତିର କୌଣସି ନିୟମ ସେଥିରେ ନାହିଁ । ଯୁଦ୍ଧ । ଜଣେ ହେଲେ କିଏ ଶେଷ ହେବ । ସାରା ପ୍ରାଙ୍ଗଣ ଚୁପ୍ । ସମସ୍ତଙ୍କ କୁସ୍ତି ବନ୍ଦ ହୋଇଯାଇଛି । ସମସ୍ତଙ୍କ ଆଖି ସେହି ଦିହିଁଙ୍କ ଉପରେ । ଜରାସନ୍ଧଙ୍କର ଆଖିରେ କ୍ରୂର ଇଙ୍ଗିତ । କିଛି ଦୂରରେ ତାଙ୍କର ଲୋକମାନେ ପ୍ରସ୍ତୁତ ହେଇ ରହିଛନ୍ତି । ଶେଷ ଯେ


Digitized by srujanika@gmail.com

କ'ଣ ହେବ ସେକଥା ସ୍ପଷ୍ଟ ।

କୁସ୍ତି ଚାଲିଛି । ମନେହେଉଛି କଂସ ସେ ଦୀର୍ଘ, ବଳବାନ ଯୋଦ୍ଧାର ସମତୁଲ ନୁହେଁ । ସେ ବାରମ୍ବାର କଂସକୁ ଉଠେଇ ଫୋପାଡ଼ି ଦେଉଛି । କିନ୍ତୁ କଂସ ବାରମ୍ବାର ଉଠୁଛି । ପ୍ରତିଥର ସେ ଦି'ଗୁଣ ବଳରେ ସେହି ଯୋଦ୍ଧାକୁ ଆକ୍ରମଣ କରୁଛି । ତା'ର ସାରା ଦେହ ମସୃଣ, ପିଚ୍ଛିଳ, ତା'ର ହୁଙ୍କାରରେ ଭୟଙ୍କର କ୍ରୋଧ, ଆକ୍ରୋଶ – ରାତି ଅଧର ବାଘ ଗର୍ଜନ ପରି, ଶୁଣିଲେ ଦେହ ଶୀତଳ ହୋଇଯିବ । କିନ୍ତୁ ସେ ଯୋଦ୍ଧା ସ୍ଥିର, ନିଶ୍ଚଳ । ଯେପରି କଂସ ପରି ଯୋଦ୍ଧା ସହ ଲଢ଼ିବାରେ ସେ ଅଭ୍ୟସ୍ତ । ଯେପରି ସେ ଜରାସନ୍ଧ ସହ ଲଢ଼ିବାକୁ ଚାହେଁ, କଂସ ନୁହେଁ । ସେ ଯେମିତି ଅତିଥି କଂସ ସେମିତି ଅତିଥି । ଆଉ ଜଣେ ଅତିଥି ସହ ଯୁଦ୍ଧ କରିବାକୁ ସେ ଚାହେଁ ନା ।

'ସେ ପାଞ୍ଚାଳ ରାଜବଂଶୀୟ'– ପାଖରୁ ଶୁଣାଗଲା – 'ବିଖ୍ୟାତ ମଲ୍ଲ ସୂର୍ଯ୍ୟସଂକାଶ । କିନ୍ତୁ ସେ ମରିବ ।'

ମରିବ !... ଅରିନ୍ଦମ ଆଉ କିଛି ଭାବିବା ଆଗରୁ ହଠାତ୍ ପ୍ରଚଣ୍ଡ ଶବ୍ଦରେ ଦଶଟା ଶଙ୍ଖ ବାଜି ଉଠିଲା । ଶୁଣାଗଲା ଜରାସନ୍ଧର ପ୍ରଚଣ୍ଡ କୁହାଟ – 'କଂସ' । ଆଉ ସାଙ୍ଗେ ସାଙ୍ଗେ ଲଢ଼େଇର ଗତି ବଦଳିଗଲା । ଅରିନ୍ଦମ ଦେଖିଲା ଗୋଟାଏ ବିରାଟ ଅଜଗର ସାପ ପରି କଂସ ସୂର୍ଯ୍ୟସଂକାଶକୁ ବେଢ଼ି ଧରିଛି । ଘନ ଘନ ବିଦ୍ୟୁତ୍ସ୍ଫୁରଣ ପରି ପ୍ରବଳ ଆଲୋକର ବନ୍ୟା । ପ୍ରବଳ ହଟ୍ଟଗୋଳ । ମନେହେଉଚି ସାରା ପ୍ରାଙ୍ଗଣର ଯୋଦ୍ଧାମାନେ ସେଇଠି ବେଢ଼ିଗଲେଣି । ଚାରିପାଖରୁ ରଡ଼ି – 'ଉଠ, ଉଠ', 'ବସ, ବସ...'। ଜରାସନ୍ଧଙ୍କର ସୈନ୍ୟମାନେ ସବୁଆଡ଼େ ଖେଦିଗଲେଣି । ଅରିନ୍ଦମ ଅତ୍ୟନ୍ତ ଉତ୍ତେଜନାରେ ଛିଡ଼ା ହୋଇ ପଡ଼ିଲା । ବୟସ୍କ ବନ୍ଧୁଙ୍କର ଆଦେଶ ଶୁଣାଗଲା – 'ବସ, ଆହୁରି ଅନେକ ଅଛି ।'

ଅରିନ୍ଦମ ବସିଲା । କିନ୍ତୁ ନିଜର ପ୍ରବଳ ଉତ୍ତେଜନାରେ ସେ ଅସ୍ଥିର ହୋଇ ଉଠିଲାଣି । ଏ ବଡ଼ ଆଶ୍ଚର୍ଯ୍ୟ ! କଂସ ଏ ଜଞ୍ଜାଳରେ ପଶିଲା କାହିଁକି । ଏ କି ରାଜନୀତି ! ଜରାସନ୍ଧଙ୍କର ଉଦ୍ଦେଶ୍ୟ କ'ଣ ? ଆଜି ଯଦି କଂସର କିଛି ହୋଇଯାଏ ! ସେ କଂସର ସାଥୀ, କଂସ ମଥୁରାର ଯୁବରାଜ । କଂସର କିଛି ନ ହେବା ତ ପୂରା ଦଳର ଦାୟିତ୍ୱ, ତା'ର ନିଜର ଦାୟିତ୍ୱ । ସେମାନେ ରାଜା ଉଗ୍ରସେନଙ୍କୁ କ'ଣ କହିବେ ? ସଭା ପରିଷଦକୁ କ'ଣ କହିବେ ? ଜରାସନ୍ଧ କଂସକୁ ବରଣ କଲା କାହିଁକି ? ସେ କ'ଣ ଶ୍ରେଷ୍ଠ ଯୋଦ୍ଧା ? କେବେ ନୁହେଁ, ନାଁ, ନାଁ, ତାକୁ କିଛି କରିବାକୁ ହେବ । ମଥୁରାର ଅନ୍ୟମାନେ କାହାନ୍ତି ? ସେ ଚାରିଆଡ଼କୁ ଚାହିଁଲା ।


Digitized by srujanika@gmail.com

'ମଥୁରାର ଅନ୍ୟମାନେ ତୁମପରି ଏତେ ନିର୍ବୋଧ ନୁହନ୍ତି ।' ପାଖରୁ ଶୁଭିଲା, 'ତୁମେ କ'ଣ କରିପାରିବ ? ଲଢ଼େଇ କରିବ ? ଏ ଲଢ଼େଇକି ବନ୍ଦ କରିବ ? ବସ । ଆଜିକାର ଘଟଣା ତୁମ ଉପରେ ନିର୍ଭର କରୁନି । ଜରାସନ୍ଧକୁ ଦେଖ ।'

ଅରିନ୍ଦମର ମନେହେଲା ସତେ ଯେପରି କିଏ ହଠାତ୍ ଶୀତ ସକାଳେ ଥଣ୍ଡା ଯମୁନା ପାଣିକି ତାକୁ ଠେଲିଦେଲା । ସତେତ, ସେ କ'ଣ କରିପାରିବ ! ଯୋଉ ମୁହୂର୍ତ୍ତରେ ସେ ଉଠି ସାମ୍ନାକୁ ଯିବ ଜରାସନ୍ଧର ଶହ ଶହ ଲୋକ ତାକୁ ଧରିନେବେ । ତଥାପି ତାକୁ ଅସ୍ଥିର ଲାଗୁଛି । ତା'ର କିଛି କରିବା ଉଚିତ । ଅନ୍ତତଃ ପାଟି କରିବା ଉଚିତ, ଅନ୍ତତଃ କଂସ ତ ଶୁଣିପାରିବ ।

'ଚୁପ୍‌କର ।' ପାଖରୁ ଆଦେଶ ଆସିଲା, 'ତୁମେ ବର୍ତ୍ତମାନ ଗୋଳମାଳ କଲେ କଂସ ତୁମକୁ କେବେହେଲେ କ୍ଷମା ଦବନି । ତୁମେ ଯିଏ ହୁଅନା କାହିଁକି । ଦେଖ, ଜରାସନ୍ଧକୁ ଦେଖ ।'

ଅରିନ୍ଦମ ଚାହିଁ ଦେଖିଲା । ଜରାସନ୍ଧ ଚୁପ୍ । ସମ୍ପୂର୍ଣ୍ଣ ଭାବରେ ଏ ଯେମିତି କିଛି କଥା ନୁହେଁ ସେମିତି ବସିଛି । ସାରା ମୁହଁରେ ଅବହେଳାର ଭାବ । ଆଖି ଦି'ଟା କେଉଁ ଦୂରକୁ ଚାହିଁ ରହିଛି, ସତେ ଯେମିତି ସବୁ ମୀମାଂସା ହୋଇଗଲା, ଆଉ କିଛି କରିବାକୁ ନାହିଁ । କେବଳ... ହଁ, ବୋଧହୁଏ ଓଠ ଦି'ଟା ମଝିରେ ମଝିରେ ସାମାନ୍ୟ ବାଙ୍କି ଯାଉଛି - ବାସ୍ ।

ଅରିନ୍ଦମ ଚାରିଆଡ଼କୁ ଚାହିଁଲା, ପାଟିଗୋଳ ଆଉ ବିଶେଷ ନାହିଁ, ଲୋକମାନେ ନିଜ ନିଜ ଭିତରେ ଫୁସ୍‌ଫୁସ୍ କରି କଥାବାର୍ତ୍ତା କରୁଛନ୍ତି । କିନ୍ତୁ ଅଧିକାଂଶ ଯେ ଉତ୍ତେଜିତ ଏକଥା ବୁଝିହେଉଛି । ସେମାନେ ଉଠୁଛନ୍ତି ବସୁଛନ୍ତି, ନିଜ ନିଜ ଭିତରେ ଠେଲାପେଲା କରୁଛନ୍ତି । ଏପରିକି ଚାରିପାଖରେ ଜଗି ରହିଥିବା ଜରାସନ୍ଧର ସିପେହୀମାନଙ୍କର ନାଲିଆଖି ବି ବିଶେଷ କାମ କରୁନାହିଁ । ତା'ଛଡ଼ା ମନେହେଉଛି ସିପେହୀମାନେ ଯେମିତି ଆଗପରି ଏତେ ଟାଣ ନୁହନ୍ତି । ବେଶ୍ ହୁଗୁଳା ଲୋକଙ୍କ ଉପରେ ଏତେ ନଜର ନାହିଁ । ନଜର ଜରାସନ୍ଧ ଉପରେ, କଂସର ଲଢ଼େଇ ଉପରେ । ଆଉ ସେ ଲଢ଼େଇ ପାଖରେ ଏମାନେ ସବୁ କିଏ ? ଅରିନ୍ଦମକୁ କିଛି ଆଶ୍ଚର୍ଯ୍ୟ ଲାଗିଲା । ଏତେ ଲୋକ ତ ସେଠି ନ ଥିଲେ ! ବିଶେଷ କରି ଏମାନେ ତ ଅଲଗା । ଜରାସନ୍ଧଙ୍କର ସିପେହୀଙ୍କ ପରି ତ ନୁହନ୍ତି । ଅରିନ୍ଦମକୁ ଖୁଁତ ଖୁଁତ ଲାଗିଲା । ଏ ଚେହେରା ଠିକଣା ନୁହେଁ - ଲମ୍ବା ଲମ୍ବା ଷଣ୍ଢା ଷଣ୍ଢା ଚେହେରା । ବାଳ ସବୁ ଛୋଟ ଛୋଟ କଟା ହୋଇଛି, ଆଖି ଲାଲ ଲାଲ, ଦୃଷ୍ଟି କ୍ରୂର, ଅତ୍ୟନ୍ତ କ୍ରୂର । ଆଶ୍ଚର୍ଯ୍ୟ, ଚେହେରା ସବୁ ପ୍ରାୟ ଏକା ପରି - ତିରିଶ ଚାଳିଶ ଲୋକ, ଜକାଜକି

ପାଖାପାଖି ଛିଡ଼ା ହେଇଛନ୍ତି, ଜରାସନ୍ଧର ବସିଥିବା ଜାଗାକୁ ଲାଗିଲାଗି । ଯେମିତି କୋଦଲା କୋଦଲା ପଲେ ହାତି, ଗୋଟା ଶକ୍ତ ଦଉଡ଼ିରେ କିଏ ବାନ୍ଧି ରଖିଚି, ଦଉଡ଼ି ସାମାନ୍ୟ ହୁଗୁଳା କରିଦେଲେ ହୁହା ମାଡ଼ି ଆସିବେ । ଯେମିତି ଗୋଟାଏ ଗୋଡ଼ ଟେକି ବାଘ ଚାହିଁଲା ପରି ଚାହିଁ ରହିଛନ୍ତି, ଧ କହିଲେ ଝାମ୍ପି ପଡ଼ିବେ, ଖିନ୍‌ଭିନ୍ କରି ପକେଇବେ । ଅରିନ୍ଦମକୁ ଭୟ ଲାଗିଲା । ବଶ କଲା ପରି ଆଖି ସେଆଡ଼କୁ ଛାଁ ଛାଁ ଟାଣି ହେଇଯାଉଛି । ମନେ ହେଉଛି ସେ ନିଜେ ବି ଟାଣି ହେଇଯିବ । ଏମାନେ କିଏ, ଥିଲେ କୋଉଠି ? ସେ ସବୁଦିନେ ଜରାସନ୍ଧର ସିପେହୀଙ୍କୁ ଦେଖୁଛି । ଏମାନେ ତ ସେ ସିପେହୀ ନୁହନ୍ତି ।

ହଠାତ୍ ଅରିନ୍ଦମର ମନେହେଲା ଏଇମାନେ ସେଇ ଲୋକ ନୁହନ୍ତି ତ, ସେଦିନ ରାତି ଅଧରେ ସେ ଯେଉଁ ଭୟଙ୍କର ଦୁଃସ୍ୱପ୍ନ ଦେଖିଥିଲା । ଆଜି ଏମାନଙ୍କୁ ଦେଖିଲା ପରେ ତା'ର ମନେହେଉଛି ସେ କ'ଣ ସତରେ ସ୍ୱପ୍ନ ! ହଠାତ୍ ତା'ର ନିଦ ଭାଙ୍ଗି ଯାଇଥିଲା । ଶିବିରରେ ସମସ୍ତେ ଶୋଇଛନ୍ତି । ଗୋଟାଏ କଣକୁ ଗୋଟାଏ ବଡ଼ ଦୀପରେ ଗୋଟାଏ ଛୋଟ ଆଲୋକ ଶିଖା । ସେ ବି ନିଭିନିଭି ଆସିଲାଣି । ଚାରିଆଡ଼େ ଲମ୍ବା ଲମ୍ବା ଛାଇ ନାଚୁଛି, ମୋଟାମୋଟି ଅନ୍ଧାର, ଅରିନ୍ଦମ କାନ ଡେରିଲା । ବାହାରର ଚୁପ୍‌ଚାପ୍ ଅନ୍ଧାର ଭିତରୁ ଗୋଟାଏ କି ଅଦ୍ଭୁତ ଶବ୍ଦ ଝାଇଁଝାଇଁ ଆସି କାନରେ ବାଜୁଛି । ଶଙ୍ଖ, ଘଣ୍ଟା, ଦାମାମା, ସବୁ ଯେମିତି ଏକାଠି ବାଜୁଛି, ଆଉ ତା' ସାଙ୍ଗରେ ଯେମିତି ଶହ ଶହ ଘୋଡ଼ା ଖୁରାର ଖଟଖଟ ଶବ୍ଦ କରି ପ୍ରବଳ ବେଗରେ ଧାଇଁ ଯାଉଛନ୍ତି । ଆଉ ତା' ସହିତ କୋଉ ଅଜଣା ପକ୍ଷୀର ତୀବ୍ର କୁହାଟ, ଆଉ ଶହ ଶହ କଣ୍ଠର ତୀବ୍ର ଅଟ୍ଟହାସ୍ୟ । ଏସବୁ ମିଶି ଗୋଟାଏ ଅଦ୍ଭୁତ ଶବ୍ଦ । ଘୂର୍ଣ୍ଣି ପରି ସେ ଶବ୍ଦର ତୋଡ଼ରେ ତା'ର ନିଦ ହଠାତ୍ ଭାଙ୍ଗିଯାଇଥାଏ । ତା'ର ମୁଣ୍ଡ ଗୋଳମାଳ ହେଇ ଯାଉଥାଏ । ସେ ଚେଇଁଛି କି ଶୋଇଛି ବୁଝିପାରୁ ନ ଥାଏ । ତା'ର ମନେହେଲା ସେ ବାହାରକୁ ଯିବ । ଶୋଇବା ଲୋକଙ୍କୁ କଟେଇ ସେ ଶିବିର ବାହାରକୁ ବାହାରି ଆସିଲା । ବାହାରେ ଅନ୍ଧାର ରାତି । ଏଠି ସେଠି ବିଭିନ୍ନ ଶିବିର ପାଖରେ ଜଳୁଥିବା ମଶାଲସବୁ ନିଭିଗଲାଣି । ଜଗୁଆଳମାନେ ବି ଶୋଇ ଯାଇଛନ୍ତି । ଏପରିକି ଶିବିର ସବୁର ସେ ମୁଣ୍ଡକୁ ବିରାଟ ରାଜପ୍ରାସାଦ ଚୁପଚାପ, ନିଶ୍ଚଳ, ଛେଲାଏ ଅନ୍ଧାର ପରି ଦିଶୁଛି, ଯେମିତି କଳା କଳା ଛାଇର ଗୋଟାଏ ଛୋଟ ପାହାଡ଼ । କିନ୍ତୁ ସେ ଶବ୍ଦ ? ମଥୁରା ଶିବିର ରାଜପ୍ରାସାଦକୁ ଲାଗିଥିବା ପ୍ରଶସ୍ତ ପଡ଼ିଆର ଗୋଟାଏ କଡ଼କୁ । ଅଳ୍ପ ଦୂରରେ ରାଜପ୍ରାସାଦ ଓ ପଛପାଖକୁ ଜଙ୍ଗଲ ଓ ଗିରିବ୍ରଜ ପାହାଡ଼ । ଶବ୍ଦ ସେଇ ପାହାଡ଼ ଆଡୁ ଆସୁଛି । ଅରିନ୍ଦମ ଶବ୍ଦ ବାରି ଆଗେଇଲା । ବେଶି ବାଟ ଯିବାକୁ

ହେଲାନାହିଁ, ବେଶି ବାଟ ଯିବାକୁ ସାହସ ବି ହେଲାନାହିଁ, ଗୋଟାଏ ଗଛ ମୂଳେ, ଅନ୍ଧାର ଭିତରେ, ପ୍ରାୟ ଅଧା ଚେଇଁବା ଅଧା ଶୋଇବା ଅବସ୍ଥାରେ, ଭୂତ ଦେଖିଲା ପରି ସେ ପାହାଡ଼ ଆଡ଼କୁ ଚାହିଁ ଛିଡ଼ା ହୋଇ ରହିଲା ।

ବର୍ତ୍ତମାନ ଏତେ ଦିନପରେ ଅରିନ୍ଦମ ନିରପେକ୍ଷ ଭାବରେ ସେ ରାତିର ଘଟଣା କଥା ଭାବିପାରୁଛି । କିନ୍ତୁ ସେତେବେଳେ ତା'ର ଚେତନା ଥିଲା କି ନାହିଁ ସନ୍ଦେହ । କ'ଣ ଯେପରି ତାକୁ ଆଚ୍ଛନ୍ନ କରି ରଖିଥିଲା । ସେ ସତରେ ଦେଖୁଥିଲା କି ମନେମନେ ଭାବୁଥିଲା ସେ ଦେଖୁଛି ତା ବି କହିବା ସମ୍ଭବ ନୁହେଁ । ଅନ୍ଧାର ଭିତରୁ ସାପପରି ସୁ ସୁ ଶବ୍ଦ କରି ପବନ ବହୁଥିଲା । ପାଖରେ ଦୂରରେ କ'ଣ ସବୁ ନାନା ପ୍ରକାର ଶବ୍ଦ କରି ଦୌଡ଼ି ପଳଉଥିଲେ । ଉପରେ ଗଛ ଡାଳରେ ବାଦୁଡ଼ିର ଫଡ଼ଫଡ଼ ଶବ୍ଦ । ଚାରିପାଖରେ ନାନା ପ୍ରକାର ଚିଁ ଚାଁ ମେ ମାଁ । ହଠାତ୍ ଡାହାଣ ପାଖ ବୁଦାମୂଳରୁ ବିଲୁଆଟାଏ ଡାକି ଉଠିଲା । କିଛି ଦୂରରେ ମନେହେଲା ହେଟା ବାଘର ଡାକ - ରହିରହି ଲହରେଇ ଲହରେଇ ଅନ୍ଧାରକୁ ଛିନ୍ନଭିନ୍ନ କରି ଭାସି ଆସୁଛି । ଅରିନ୍ଦମ ସବୁକିଛି ବୁଝିପାରିବା ଅବସ୍ଥାରେ ନ ଥିଲା । ଚାରିପାଖର ଅନ୍ଧାର, ଅନ୍ଧାର ରାତିର ଡାକହାକ ତା'ର ଚେତନାକୁ କେବଳ ଛୁଇଁ ଯାଉଥିଲା । କିନ୍ତୁ ସେ ଏକ ଲୟରେ ଚାହିଁ ରହିଥିଲା ପାହାଡ଼ ଆଡ଼କୁ ଯେଉଁଠୁ ସେହି ଅଦ୍ଭୁତ ବିକଟାଳ ଶବ୍ଦର ଲେଲିହାନ ଶିଖାରେ ତା'ର ସାରା ଦେହ ଶିଝିଗଲା ପରି ଲାଗୁଥାଏ ।

'ଅରିନ୍ଦମ, କ'ଣ ଭାବୁଛ ? ଚାହିଁ ଦେଖ, ଲଢ଼େଇ ପ୍ରାୟ ସରିଆସିଲା ।' ଝିଙ୍କିଦେଲା ପରି ଅରିନ୍ଦମ ଚେଇଁ ଉଠିଲା । ସତେ ତ ! ସେ ଥିଲା କୋଉଠି ? ଚାରିପାଖରେ ଝିକ୍‌ଝିକ୍ ଖରା, ଦିନ ଗରମ ହେଇ ଆସିଲାଣି । ହେଇତ ଜରାସନ୍ଧ - ଠିକ୍ ଆଗପରି ତାଙ୍କର ସିଂହାସନରେ ଡଳିକରି ବସିଛନ୍ତି । ଆଗପରି ମୁହଁରେ ସ୍ମିତ ହସ, ଦୃଷ୍ଟି କେଉଁ ଦୂରକୁ ଲମ୍ବିଯାଇଛି, ଆଗପରି ସମ୍ପୂର୍ଣ୍ଣ ନିଃସ୍ପୃହ । ଲୋକମାନେ ପୁଣି ଥରେ ଉତ୍ତେଜିତ ହୋଇ ଉଠିଲେଣି । ପାଟିଗୋଳ ବଢ଼ୁଛି । 'ମାର', 'ମାର', ଚାରିଆଡୁ ଚିତ୍କାର, ହଠାତ୍ - ଶହ ଶହ ଶଙ୍ଖ ଏକାସାଙ୍ଗରେ ବାଜି ଉଠିଲା । ତା' ସାଙ୍ଗରେ ଦାମାମା । ଲୋକ, ସିପେହୀ, ମନେହେଲା ସମସ୍ତେ, ଏକାସାଙ୍ଗରେ ରଡ଼ି କଲେ - 'ମାର', 'ମାର' । କ'ଣ ଘଟୁଛି କିଛି ବୁଝିବା ଆଗରୁ ଅରିନ୍ଦମ ପ୍ରବଳ ଉତ୍ତେଜନାରେ ଛିଡ଼ା ହୋଇପଡ଼ିଲା । କେବଳ ଶୁଣିଲା, ବନ୍ଧୁ କହୁଛନ୍ତି, ଦୁଃଖପୂର୍ଣ୍ଣ ସ୍ୱର - 'ଆହା, ବିଚରା ସୂର୍ଯ୍ୟସଂକାଶ !'

ଠିକ୍, ବିଚରା ସୂର୍ଯ୍ୟସଂକାଶ ! କଂସ ସାଙ୍ଗରେ ଲଢ଼େଇରେ ସୂର୍ଯ୍ୟସଂକାଶ ହାରିଗଲା । କିନ୍ତୁ ସେ କ'ଣ ସତରେ ହାରିବା ? ଅରିନ୍ଦମ ପରେ ଶୁଣିଥିଲା


Digitized by srujanika@gmail.com

ସୂର୍ଯ୍ୟସଂକାଶ ପାଞ୍ଚାଳର ପ୍ରସିଦ୍ଧ ଯୋଦ୍ଧା । ସମଗ୍ର ଆର୍ଯ୍ୟାବର୍ତ୍ତରେ ତା'ପରି ଯୋଦ୍ଧା ବିରଳ, ବିଶେଷ କରି ମଲ୍ଲ କୁସ୍ତିରେ । ଏକମାତ୍ର ତା'ର ସମକକ୍ଷ ଜରାସନ୍ଧ, କଂସ ନୁହେଁ । ତେଣୁ ଜରାସନ୍ଧ କଂସକୁ ବରଣ କଲାବେଳେ ତା'ର ଆପତ୍ତି, ପ୍ରତିବାଦ । ସେସବୁ ଠିକ୍ । କିନ୍ତୁ ସେସବୁ ଯୁକ୍ତି । ଜରାସନ୍ଧ ଯୁକ୍ତି ମାନିବା ପାଇଁ ଏ ବିରାଟ ସମାରୋହ କରି ନ ଥିଲା, ସାରା ଆର୍ଯ୍ୟାବର୍ତ୍ତରୁ ଏତେ ଏତେ ଯୋଦ୍ଧାଙ୍କୁ ଡାକି ନ ଥିଲା । ଏ ବିରାଟ ରାଜନୀତି - କ୍ଷମତା, ଶକ୍ତି, ଆଧିପତ୍ୟର ରାଜନୀତି । ସେଠି ସୂର୍ଯ୍ୟସଂକାଶ ତୁଚ୍ଛ । ସୂର୍ଯ୍ୟସଂକାଶ ପରି ଯେତେ ସମସ୍ତେ ତୁଚ୍ଛ । ସେମାନଙ୍କର ପ୍ରତିବାଦ ମୂର୍ଖର ପ୍ରତିବାଦ, ଯେଉଁ ମୂର୍ଖମାନେ ଭାବନ୍ତି ଯେ ସବୁକଥା ସିଧା ସିଧା ଚାଲେ ଓ କ୍ଷମତାର କର୍ତ୍ତାମାନେ ସବୁବେଳେ ସିଧା ରାସ୍ତାରେ ଯାଆନ୍ତି । ତେଣୁ ସୂର୍ଯ୍ୟସଂକାଶକୁ ଜୀବନ ଦେବାକୁ ହେଲା ।

ହଁ, ସୂର୍ଯ୍ୟସଂକାଶ ଲଢ଼େଇରେ ହାରିଲା ନାହିଁ । ତାକୁ ମାରି ଦିଆଗଲା । ଜରାସନ୍ଧର ଯବନ ଦେହରକ୍ଷୀ ତାକୁ କୁକୁଡ଼ା କାଟିଲା ପରି ଖିନ୍‌ଭିନ୍ କରି ମାରିଦେଲେ ଓ ତା'ର ସୁସ୍ଥ ସବଳ ବିଶାଳ ଦେହଟାକୁ ଚୋଟ ଚୋଟ କରି ହାଣି ବାଘ ମଣିଷ ମାଂସ ଖାଇଲା ପରି ରଡ଼ମଡ଼ କରି ଖାଇଗଲେ ।

ନାଁ, କଥା ସେତିକିରେ ସରିଲା ନାହିଁ । ଅରିନ୍ଦମର ମନେଅଛି ତା' ଆଖି ଆଗରେ ଯେପରି ଝିଲ୍‌ଝିଲ୍ ହୋଇ କୁହୁଡ଼ି ଘୋଟିଗଲା । ଜରାସନ୍ଧ, କଂସ, ସେଇ ଯବନ ଦେହରକ୍ଷୀ, ଯେତେ ଲୋକ, ସବୁ ଯେପରି ଗୋଳେଇ ଘାଣ୍ଟି ହୋଇ ଖାଲି ଛାଇ ଛାଇ, କିଛି ସ୍ପଷ୍ଟ ବୁଝିହେଉ ନାହିଁ, କ'ଣ ଘଟୁଛି, ସେ କେଉଁଠି, ଖାଲି ଦଲକା ଦଲକା ଅନ୍ଧାର, ଅନ୍ଧାର ଅନ୍ଧାରକୁ ଠେଲି ପେଲି ଭାସି ବୁଲୁଚି, ସେ ଯେମିତି ଆଉ ନାହିଁ, ଖାଲି ଉଡ଼ି ଉଡ଼ି ବୁଲୁଛି, ସବୁ ଫେଣ୍ଟାଫେଣ୍ଟି ହୋଇଗଲାଣି, ଆଃ, କି ଆରାମ ! ହଠାତ୍ ସାପପରି ଥଣ୍ଡା କ'ଣ ଗୋଟାଏ ତା' ଉପର ଦେଇ ଯେମିତି ଚାଲିଗଲା । ମୁଣ୍ଡଟା ବୁଲଉଛି, ଆଖି ଦି'ଟା ଛାଁ ଛାଁ ବୁଜି ଆସୁଛି । ତା'ର ମନେ ହେଲା ଶଣ୍ଢୁଆସି ପରି କ'ଣ ତାକୁ ଜୋରରେ ଧରି ତଳକୁ ଟାଣି ନଉଛି । ସେ ଲଥକିନା ବସିପଡ଼ିଲା ଓ ସାଙ୍ଗେ ସାଙ୍ଗେ ଆଖି ଦି'ଟା ବୁଜି ହୋଇଗଲା ।

ନାଁ, ବୋଧେ ବେଶି ସମୟ ନୁହେଁ । ସେ ପୁଣି ଥରେ ଆଖି ଖୋଲିଲା ବେଳକୁ ମନେହେଲା ମୁଣ୍ଡଟା ଅନେକ ସଫା ହୋଇଗଲାଣି । ସେ ଚାରିପାଖକୁ ଚାହିଁ ଦେଖିଲା, ଲୋକମାନେ ଆଗପରି ଭର୍ତ୍ତି ହୋଇଛନ୍ତି, ଆଗପରି ପାଟିଗୋଳ ଚାଲିଛି, ଆଗପରି ଜରାସନ୍ଧଙ୍କର ଜୟଜୟକାର, ଆଗପରି ଶଙ୍ଖ ଫୁଙ୍କା ଚାଲିଛି, ଆଗପରି ଖରା ଲହଡ଼ି ମାରୁଛି । ସେ ଭଲକରି ଲକ୍ଷ୍ୟ କଲା । କାହିଁ, କିଛି ଆଗରୁ ଯେ ଗୋଟାଏ


Digitized by srujanika@gmail.com

ଅତ୍ୟନ୍ତ ନାରକୀୟ କାଣ୍ଡ ଘଟିଗଲା ତା'ର ଚିହ୍ନବର୍ଣ୍ଣ କିଛି ନାହିଁ । ଜରାସନ୍ଧ ତାଙ୍କ ସିଂହାସନରେ ଆଉଜି କରି ବସିଛନ୍ତି, ମୁହଁରେ ଏକ ପ୍ରଶାନ୍ତି, ଉଦାରତାର ମନୋଭାବ । ଯେପରି ଏହି କୁସ୍ତି ପ୍ରତିଯୋଗିତାରେ ତାଙ୍କର ନିଜର କୌଣସି ସ୍ୱାର୍ଥ ନାହିଁ, ସେ କେବଳ ଜଣେ ନିରପେକ୍ଷ ଦର୍ଶକ, ଯାହା ହେବ ସେ ତାକୁ ଆନନ୍ଦରେ ମାନିନେବେ । ତାଙ୍କର ମୁଣ୍ଡର ରତ୍ନ ନିଆଁପରି ଜଳୁଛି । ଆଖି ଦି'ଟା ବି ଜଳୁଛି । କିନ୍ତୁ ସେ ଜଳିବାରେ ଉତ୍ତାପ ଓ କ୍ରୋଧ ନାହିଁ । କେବଳ ଏକ ପ୍ରଚଣ୍ଡ ତେଜ ଓ ସେ ତେଜ ସାରା ଆଖଡ଼ା ଜାଗାର ହଜାର ହଜାର ଲୋକଙ୍କ ଉପର ଦେଇ ହାବୁକା ମାରିଲା ପରି ଦୂରକୁ ଦୂରକୁ ଲମ୍ବି ଯାଇଛି । ମୁହଁରେ ଅଳ୍ପ ଅଳ୍ପ ହସ, ଆଉ ଦୀର୍ଘ, ବିଶାଳ ଦେହଟା ଗୋଟାଏ ବିରାଟ ବଟ ବୃକ୍ଷ ପରି ଝାଙ୍କିକରି ରହିଛି, ଗୋଟାଏ ବିରାଟ ଦୀର୍ଘ ଦେହୀ ଅଜଗର ପରି ସ୍ଥିର, ନିଶ୍ଚଳ । କଂସ ? ଅରିନ୍ଦମର ଆଖି କଂସକୁ ଖୋଜି ବୁଲିଲା । ହଁ, କଂସ । ମଲ୍ଲମାନଙ୍କର ଆସରକୁ ଚାହିଁ ସେ ଛିଡ଼ା ହୋଇ ରହିଛି । ଆଖି ଦି'ଟାର ନଜର ମଲ୍ଲମାନଙ୍କର ଉପରେ ଘୂରି ବୁଲୁଛି । ମୁହଁରେ ସମ୍ପୂର୍ଣ୍ଣ ଉପେକ୍ଷାର ଭାବ ଓ ତା'ର ଶକ୍ତିଶାଳୀ ଦେହଟାରେ କୌଣସି ଉତ୍ତେଜନା ନାହିଁ, ଯେପରି ସବୁ କିଛିର ମୀମାଂସା ହୋଇଗଲା ଏହି ମନେଭାବ ।

...ହଁ ଜରାସନ୍ଧର ସେହି ବିରାଟ ସମାରୋହରେ କଂସ ବିଜୟୀ ହେଲା, ବା ତାକୁ ବିଜୟୀ ବୋଲି ଘୋଷଣା କରାଗଲା । ସୂର୍ଯ୍ୟ ଆଲୋକ ତଳେ ଦୀର୍ଘଦେହୀ କଂସର ସେହି ଛିଡ଼ା ହେବାର ଠାଣି ଓ ତା'ର ପ୍ରଚଣ୍ଡ ଉପେକ୍ଷା ଭାବ ଅରିନ୍ଦମ ଆଉ ଥରେ ମନେ ପକାଇବାକୁ ଚେଷ୍ଟା କଲା । ଜରାସନ୍ଧ ସାମ୍ନାରେ କୁସ୍ତି ଲଢ଼ା ହେଉଥିବା ପ୍ରାଙ୍ଗଣରେ କଂସ ଏକାକୀ ଛିଡ଼ା ହୋଇଛି । ତା'ର ଫୁଙ୍ଗୁଳା, ତୈଳାକ୍ତ, ପେଶୀଯୁକ୍ତ ଦେହ ଖରାରେ ଝିଲମିଲ୍ କରୁଛି । ମୁହଁରେ ତାରୁଣ୍ୟର ପ୍ରୌଢ଼ୀ, ରାଜକୀୟ ଗର୍ବ ଓ ଅନ୍ୟମାନଙ୍କ ପ୍ରତି ତୀବ୍ର, ତାଚ୍ଛଲ୍ୟ ଭାବ । ଶୁଣିଲା, ଘୋଷକ ଡାକୁଛି- କିଏ ଯୁବରାଜ କଂସଙ୍କ ସହିତ ଲଢ଼ିବାକୁ ଚାହାନ୍ତି ଆସ । ଶକ୍ତି, ତାରୁଣ୍ୟ, ଆଗ୍ରହ ଯେପରି ଲହଡ଼ି ମାରୁଛି । କିନ୍ତୁ କାହିଁ, କେହିତ ଆସିଲେ ନାହିଁ । ସମସ୍ତେ ଚୁପ୍, ଯେପରି ହଠାତ୍ ଅନ୍ଧକାର ଘୋଟି ଆସିଛି । ଆଲୋକ ନାହିଁ, ଶବ୍ଦ ନାହିଁ, ପବନ ନାହିଁ । ଘୋଷକ କ'ଣ କହୁଛି ? କଂସ କିଏ ? କିଏ ଏମାନେ ? ସମସ୍ତଙ୍କ ଆଖି ତଳକୁ, ସମସ୍ତଙ୍କର ନିଃଶ୍ୱାସ ପ୍ରଶ୍ୱାସ ଯେପରି ତଳକୁ ତଳକୁ ବହୁତ ତଳକୁ ଚାଲିଯାଉଛି । ଘୋଷକ ପୁଣି ଡାକିଲେ କିଏ ଅଛ, ଉଠ, ଆସ । ଡାକ ସବୁ ଦିଗକୁ ଖେଳିଗଲା, ଆକାଶକୁ ଉଠିଗଲା, ମନେହେଲା ଗୋଟାଏ ପ୍ରଚଣ୍ଡ ଝଡ଼ ଉଠି ଆସୁଛି । ନାଁ କେହି ନାହିଁ । ସମସ୍ତେ ଚୁପ୍, ସ୍ତବ୍ଧ । ଜରାସନ୍ଧଙ୍କ ହାତ ଉପରକୁ ଉଠିଗଲା । ବାସ୍, ଚାରିପାଖରେ

ଦାମାମା ବାଜି ଉଠିଲା, ଶହ ଶହ ଶଙ୍ଖ । କି ବିକଟାଳ! କି ବିଭ୍ରମ ! କାଚଖଣ୍ଡ ଭାଙ୍ଗିଲା ପରି ଶହ ଶହ ଶବ୍ଦ ଅରିନ୍ଦମ ଚାରିପାଖରେ ଭାଙ୍ଗି ପଡ଼ିଲା, ବିଞ୍ଚି ହୋଇଗଲା । ସେ ଶୁଣିଲା, ଯେପରି ବହୁତ ଦୂରରୁ ଶୁଣୁଛି ... ଯୁବରାଜ କଂସ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଯୋଦ୍ଧା, ଶ୍ରେଷ୍ଠ ଯୋଦ୍ଧା...

....ସେଦିନ ସକାଳେ ଗିରିବ୍ରଜରେ, ସେହି ଅଭିଜ୍ଞତା, ଅରିନ୍ଦମ ମନରେ ଲେସି ହୋଇ ରହିଛି । ବେଶ କିଛି ବର୍ଷ ହୋଇଗଲାଣି । କିନ୍ତୁ ଦିନ ରାତି ଆଖି ବୁଜିଲେ ହିଁ, କିଛି ନ ଭାବି ଚୁପ୍‌ଚାପ୍ ବସି ରହିଥିଲା ବେଳେ ବି, ଏପରିକି, ରାତି ମଝିରେ ସ୍ୱପ୍ନରେ ବି, ସେଦିନ ସକାଳର ସେହି ଛବିଟା ହଠାତ୍ ଉଙ୍କିମାରି ଉଠି ଆସେ - କଂସ, ସୂର୍ଯ୍ୟସଂକାଶ, ଜରାସନ୍ଧ, ଅସଂଖ୍ୟ ଲୋକଙ୍କର ଟୁଁ ଟାଁ ଶବ୍ଦଟା ବି ନାହିଁ, ଆଉ ଜରାସନ୍ଧର ସେହି ସବୁ ରକ୍ଷକ ଯେଉଁମାନେ ବିନା ଦ୍ୱିଧାରେ ରଡ଼ମଡ଼ କରି କଞ୍ଚା ମଣିଷ ମାଂସ ଖାଇଯାଆନ୍ତି । ତା'ପରେ ପ୍ରାଙ୍ଗଣରେ ଅରିନ୍ଦମ ପୂରା ସମୟ ଥିଲା । ସେ ଯେ ଚାଲି ଆସିବାକୁ ନ ଭାବିଛି ତା ନୁହେଁ । କିନ୍ତୁ ଯେତେବେଳେ ସେ ଭାବିଛି ଉଠିବ, ତା'ର ମନକଥା ଜାଣିଲା ପରି ପାଖରୁ ସେହି ସତର୍କବାଣୀ, ନାଁ ବସି ରୁହ । ସେ ବସି ରହିଛି, ପୂରା ସମୟ, ଯେତେବେଳେ ସମସ୍ତେ ଉଠିଛନ୍ତି ସେ ଉଠିଛି । ସେତେବେଳକୁ ଜରାସନ୍ଧ ଫେରି ଯାଇଛନ୍ତି, କଂସ ବି, ଆଉ ସେ ରାକ୍ଷସମାନେ ବି । କିନ୍ତୁ ତା'ପରେ କ'ଣ ସେ ଦେଖିଲା ? ଅନେକଥର ସେ ମନେ ପକେଇବାକୁ ଚେଷ୍ଟା କରିଛି । କିନ୍ତୁ ମନରେ ସବୁ ଗୋଳେଇ, ଫେଣ୍ଟି ହୋଇ ଯାଇଛି । କେବଳ ଯାହା ମନେ ଅଛି ସେ ଜରାସନ୍ଧଙ୍କର ଶାନ୍ତ, ସମାହିତ ଭାବ, ଯେପରି ଚାରିପାଖରେ ଘଟିଯାଉଥିବା କୌଣସି କଥା ପାଇଁ ଆଗ୍ରହ ନାହିଁ, କେବଳ ମୁକୁଟର ରତ୍ନସବୁ ସୂର୍ଯ୍ୟପରି ଦୀପ୍ତିମାନ ଓ ଲେଲିହାନ ଅଗ୍ନିଶିଖା ପରି ଜ୍ୱଳାମୟୀ । ଆଉ କଂସର ତୀବ୍ର, ଔଦ୍ଧତ୍ୟପୂର୍ଣ୍ଣ ଠାଣି ।...

ସେଦିନ ମଥୁରା ଶିବିରରେ ଉତ୍ତାଳ ତରଙ୍ଗ ପରି କୋଳାହଳ । ଖାଇବା ସମୟ । କିନ୍ତୁ ଖାଇବାରେ କାହାରି ଆଗ୍ରହ ନାହିଁ । ସମସ୍ତେ ଏକା ସାଙ୍ଗରେ କଥା କହୁଛନ୍ତି । କ'ଣ ଦେଖିଲେ ସେହିକଥା, ବାରମ୍ବାର ସେହିକଥା କୁହା ଚାଲିଚି । କଂସ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଯୋଦ୍ଧା, କଂସହିଁ ଜରାସନ୍ଧର ଭବିଷ୍ୟତ ଜାମାତା । ସମସ୍ତଙ୍କ କଥାରେ ଉତ୍ତେଜନା, ଗର୍ବ । ଜରାସନ୍ଧଙ୍କର କିଛି ସିପାହୀ ଆସି ଶିବିରର ଲୋକଙ୍କ ସାଙ୍ଗରେ ମିଶିଯାଇଛନ୍ତି । ଆଉ ମଥୁରା ଶିବିର ଅଲଗା ନୁହେଁ, ଜରାସନ୍ଧର ନିଜ ଶିବିର । ଏ ଶିବିରର ଲୋକମାନେ ଅନ୍ୟ ଶିବିରର ଲୋକମାନଙ୍କ ପରି ନୁହନ୍ତି । ଏମାନେ ନିଆରା, କଂସର ଲୋକ, ଏମାନଙ୍କୁ ଖୁସି ରଖିବାକୁ ପଡ଼ିବ ।


Digitized by srujanika@gmail.com

ଅରିନ୍ଦମ ଗୋଟାଏ ପାଖରେ ଚୁପଚାପ ଛିଡ଼ାହେଲା । ଚାରିପାଖରୁ ପାଟିଗୋଳ ଠେଲିଠେଲି ପେଲିପେଲି ଆସୁଛି । ଆଉ ସବୁ ଉପରେ ଗୋଟିଏ ଶବ୍ଦ - କଂସ, କଂସ, କଂସ... ହଁ, କଂସ ଜରାସନ୍ଧଙ୍କର ଦି'ଝିଅଙ୍କୁ ବିଭା ହେଲା । ସେ ମଥୁରାରୁ ରାଜା ଉଗ୍ରସେନଙ୍କର ନିର୍ଦ୍ଦେଶ ପାଇ ଜଣେ ସାଧାରଣ ରାଜପୁତ୍ର ପରି ଆସିଥିଲା । କିନ୍ତୁ ଫେରିଲା ଜଣେ ବିରାଟ ରାଜା ପରି, ମହାପ୍ରତାପୀ ସମ୍ରାଟ ଜରାସନ୍ଧଙ୍କର କ୍ଷମତା ଓ ଦମ୍ଭ ଉପରେ ଛିଡ଼ା ହୋଇ । ସେତିକିବେଳେ ହିଁ ଅରିନ୍ଦମର ମନେ ହୋଇଥିଲା, ଏ ବେଶୀଦିନ କଥା ନୁହେଁ, ଉଗ୍ରସେନଙ୍କୁ ରାଜଗାଦୀ ଛାଡ଼ିବାକୁ ହିଁ ପଡ଼ିବ । ସେ ଘରକୁ ଫେରି ବାପାଙ୍କୁ ସବୁକଥା କହିଥିଲା, ତା ମନର ସନ୍ଦେହ କଥା ବି କହିଥିଲା । ବାପା ତାକୁ କିଛି କହି ନ ଥିଲେ । କିନ୍ତୁ ତିନିଦିନ ପରେ, ସକାଳେ, ସେ ଠାକୁର ପୂଜା କରୁଥିବା ସମୟରେ, ଅରିନ୍ଦମକୁ ଠାକୁର ଘରକୁ ଡାକି ପଠେଇଲେ । ବାପାଙ୍କ ଠାକୁର ଘରକୁ ଅରିନ୍ଦମ ଅନେକ ସମୟରେ ଯାଇଛି । ବେଶ୍ ବଡ଼ ଘର । କିନ୍ତୁ ଘରେ କିଛି ନାହିଁ । କେବଳ ମଝିରେ ମହାକାଳଙ୍କର ମୂର୍ତ୍ତି, ଚାରିପାଖରେ ଉଜ୍ଜ୍ୱଳ ଦୀପଶିଖା ଓ ଫୁଲର ଆସ୍ତରଣ । ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ବାପା ପୂଜା କରନ୍ତି । ପୂଜା ମାନେ ବାପା ଧ୍ୟାନରେ ବସନ୍ତି । ସେତେବେଳେ ତାଙ୍କ ପାଖକୁ କେହି ଯିବା ମନା । କେବଳ ମଝିରେ ମଝିରେ ସେ ଅରିନ୍ଦମକୁ ଡାକନ୍ତି, ସ୍ତୋତ୍ର ବୋଲିବା ପାଇଁ । ସେତେବେଳେ ବାପାଙ୍କର ଚେହେରା ଅରିନ୍ଦମ ଦେଖିଛି, ଗଭୀର ପ୍ରଶାନ୍ତିର ଚେହେରା, ସତେ ଯେପରି ପୃଥିବୀର କିଛି ତାଙ୍କୁ ଛୁଇଁ ନାହିଁ କି ଛୁଇଁ ପାରିବ ନାହିଁ । କିନ୍ତୁ ସେଦିନ ବାପାଙ୍କୁ ଦେଖି ଅରିନ୍ଦମ ଚମକି ପଡ଼ିଲା । ବାପାଙ୍କର ଦି'ଆଖିରେ ତୀବ୍ର ଜ୍ୟୋତି, ସାରା ଚେହେରାରେ ତାଙ୍କ ଚିରାଚରିତ ପ୍ରଶାନ୍ତି ଭାବ ନାହିଁ, ଗଭୀର ଅସ୍ଥିରତା, ଯେପରି ଗୋଟାଏ ପ୍ରବଳ ଆବେଗକୁ ପ୍ରବଳ ପବନ ପରି ବାପା ବନ୍ଦ କରି ରଖିଛନ୍ତି । ଅରିନ୍ଦମ ଚୁପଚାପ ବସି ରହିଲା, ମହାକାଳଙ୍କର ଚାରିପାଖରେ ଉଜ୍ଜ୍ୱଳ ଦୀପଶିଖା, ହାବୁକା ଦେଲାପରି ସାରା ଘରେ ଅପୂର୍ବ ସୁଗନ୍ଧି ଭାସି ବୁଲୁଛି । ମହାକାଳ ବି ଯେପରି ଆଜି ଜୀବନ୍ତ । କ'ଣ କହିବାକୁ ଚାହୁଁଛନ୍ତି, ଯେପରି ଏଇ ମାତ୍ର କହିଦେବେ । ଅନେକ ସମୟ ଚାଲିଗଲା । ହଠାତ୍ ଅରିନ୍ଦମର ମନେହେଲା ବାପା ଯେପରି କ'ଣ କହୁଛନ୍ତି । ତାଙ୍କର ସ୍ୱର ଯେପରି ବହୁତ ଦୂରରୁ ଭାସି ଆସୁଛି... ଆସ୍ତେ ଆସ୍ତେ... କିନ୍ତୁ ପ୍ରତ୍ୟେକ ଶବ୍ଦ ବାଲିଗରଡ଼ା ପରି ଠକଠକ ହୋଇ ବାଜୁଛି । ବାପା କହୁଛନ୍ତି- ହଁ ଅରିନ୍ଦମ ତୋ ସନ୍ଦେହ ଠିକ୍ । ଏ କେବଳ ଆରମ୍ଭ ହେଲା । ଆହୁରି ଅନେକ ଅଛି । ମୁଁ ଥିବି କି ନାହିଁ, ତୁ ଥିବୁ, ସାବଧାନରେ ରହିବୁ, ମହାକାଳ ତତେ ରକ୍ଷା କରିବେ- ବାପା ଚୁପ କରିଗଲେ । ଅରିନ୍ଦମ ବାପାଙ୍କ ଆଖିକୁ ଚାହିଁଲା । ତାଙ୍କ ଆଖି

କୋଉ ଦୂରକୁ ଦୂରକୁ ଲମ୍ବି ଯାଇଛି । ପୁଣି ତାଙ୍କର ସ୍ୱର ଶୁଭିଲା, ଫିସ ଫିସ କରି - ତୁ ଭାଗ୍ୟବାନ, ସେହି ମହାନ୍ ରୂପକୁ ତୁ ଦେଖିବୁ, ଜାଣିବୁ- । ତା'ପରେ ଚୁପ୍, ଅରିନ୍ଦମ ଦେଖିଲା ବାପାଙ୍କର ଆଖି ଆସ୍ତେ ଆସ୍ତେ ବୁଜି ହୋଇ ଆସିଲା । ସେ ଧ୍ୟାନରେ ବସିଲେ । ସେ ଉଠି ଆସିଲା... 'ମହାନ୍ ରୂପ...' 'ମହାନ୍ ରୂପ...' ଅନେକ ଦିନ ଧରି ଅରିନ୍ଦମ ମନରେ ସେଇକଥା ଉଙ୍କି ମାରୁଥାଏ । ତା'ମାନେ କ'ଣ ? କ'ଣ ସେ ? ବାପା କ'ଣ ଦେଖିଲେ ? ବାପାଙ୍କୁ ପଚାରିବ ପଚାରିବ ଭାବି, ସେ କେବେ ପଚାରିବାକୁ ସାହସ କରିନାହିଁ ।

ହଁ, ସେଦିନ ମଥୁରା ଶିବିରରେ ବହୁ ଆଡ଼ମ୍ବର, ବହୁ କୋଳାହଳ, ସତେ ଯେପରି ଯମୁନା କୂଳ ଟପି ଚାରିପାଖକୁ ମାଡ଼ି ଯାଉଛି । ମଥୁରା ଲୋକଙ୍କ ସାଙ୍ଗରେ ସିପାହୀମାନେ ତ ଆସି ମିଶିଚନ୍ତି, ଆହୁରି ଆହୁରି ଅନେକ ଲୋକ, କୋଉଠୁ ଆସିଛନ୍ତି କେଜାଣି । ଅରିନ୍ଦମ ଚୁପ୍ ହୋଇ ଛିଡ଼ା ହୋଇଥିଲା । କିଏ ଯେପରି ତା କାନ ପାଖରେ ହଠାତ୍ କହିଲା - ଏଠି କାହିଁକି ଛିଡ଼ା ହେଇଛ, ବାହାରି ଆସ, କଥା ଅଛି । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଚାରିପାଖକୁ ଚାହିଁଲା । କେହି ନାହିଁ । ସେ ବୟସ୍କ ଲୋକଙ୍କ ସ୍ୱର ତ ଏ ନୁହେଁ । ଆଉ କିଏ । କିଏ ? ଆଶ୍ଚର୍ଯ୍ୟ ଏମାନେ । ସବୁବେଳେ ପବନ ପରି ତା' ପାଖେ ପାଖେ ଲାଗି ରହିଛନ୍ତି । ସେ ଚାରିଆଡ଼କୁ ଚାହିଁ ଶିବିର ବାହାରକୁ ଚାଲିଆସିଲା । ଶିବିର ବାହାରେ ବି ସେମିତି ପାଟିଗୋଳ, ହୋ ହଲ୍ଲା, ସମସ୍ତେ ଏକା ସାଙ୍ଗରେ କଥା କହୁଛନ୍ତି । ଝିଅ ଗୁଡ଼ାଏ ବି ବାହାରେ ବୁଲୁଛନ୍ତି । ବେଶ୍ ସୁନ୍ଦର, ସୁଠାମ । ଦେହରେ ପୋଷାକପତ୍ର ପ୍ରାୟ ନାହିଁ କହିଲେ ଚଳେ । ବାହାରି ତ ଆସିଲା, ତା'ପରେ ? ପୁଣି ସେହି ସ୍ୱର - ଦକ୍ଷିଣ ପାଖ ଦେଇ ବାହାରି ଯାଅ । ନଈକୂଳ, ତୋଟା ତଳକୁ ଯାଅ ନା, ସେଠି ବିଭସ୍ୱ କାଣ୍ଡ, ମନ୍ଦିର ଆଡ଼କୁ ଆସ, ସାବଧାନ, କାହାରି ସାଙ୍ଗରେ କଥା ହୁଅନା ।

ଅରିନ୍ଦମ ଆସ୍ତେ ଆସ୍ତେ ଚାଲିଲା । ମଥୁରା ଶିବିର ପାଖରେ, କିଛି ଦୂରରେ, ଗୋଟିଏ ଛୋଟ ନଈ ଧାର । କୂଳରେ, ବେଶ କିଛି ଜାଗାରେ ଅନେକ ଗଛ, ତୋଟା ପରି । ଆଉ ଟିକିଏ ତଳକୁ ନଈ ବାଙ୍କି ଯାଇଛି, ଛୋଟ ଛୋଟ ବୁଦା, କିଛି କିଛି ଗଛ, ତା'ରି ଭିତରେ ଆଙ୍କି ବାଙ୍କି ଚଲା ରାସ୍ତା, ମନେହୁଏ ଅନେକ ଦୂରକୁ ଯାଇଛି । ଆହୁରି ତଳକୁ ମନ୍ଦିର । ଦିନର ଆଲୁଅ କମି ଆସିଲାଣି । ତଥାପି ମନ୍ଦିରର ପତାକା ଦିଶୁଛି, ଶଙ୍ଖ ଘଣ୍ଟା ଶୁଭୁଛି । ଅରିନ୍ଦମ ଆଗରୁ ଥରେ ସେ ମନ୍ଦିରକୁ ଯାଇଥିଲା - ଗୌରୀ ମା'ଙ୍କ ମନ୍ଦିର । ଅରିନ୍ଦମ ସେହି ଅଧା ଅନ୍ଧାର ବୁଦା ଭିତରେ ବୁଲି ବୁଲି ମନ୍ଦିରକୁ ଚାଲିଲା ।


Digitized by srujanika@gmail.com

ନାଁ, କେହି କୁଆଡ଼େ ନାହାନ୍ତି । ଚାରିଆଡ଼ ଚୁପ୍‌ଚାପ୍, କେବଳ ଚଢ଼େଇର ଚେଁ ଚାଁ, ଦୂରରୁ ମନ୍ଦିରର ଘଣ୍ଟା ଶବ୍ଦ, ଆହୁରି ଦୂରରୁ ହୁଏତ ବାଘର ହେନ୍ତାଳ । ସେ ଚୁପ ହେଇ ଛିଡ଼ା ହେଲା । କିଛି ସମୟ ଆଗର କାନ ତାବ୍‌ଦା କରି ସେ ଯେଉଁ ଶବ୍ଦ, ଯେଉଁ ହୋ ହଲ୍ଲା ସେସବୁ କିଛି ନାହିଁ । ସାରା ଦିନର ଯେଉଁ ଭୟଙ୍କର ବିଭତ୍ସତା ତାକୁ ଭୂତପରି ମାଡ଼ି ବସିଥିଲା, ମନେହେଲା ସେ ଆସ୍ତେ ଆସ୍ତେ କମିଯାଉଛି, ମୁଣ୍ଡ ହାଲ୍‌କା ହେଇ ଆସୁଛି... ଜରାସନ୍ଧ, କଂସ... କଂସ, ଜରାସନ୍ଧ... ସେସବୁ ଯେମିତି ବହୁତ ଦୂରକୁ ଚାଲିଯାଉଛି... ଯେପରି ଗୋଟାଏ ନୀରବତାର ପାଣି ସୁଅ ଭିତରେ ସେ ବୁଡ଼ି ଯାଉଛି... ଆଃ, କି ଆନନ୍ଦ, କି ତୃପ୍ତି ! ନାଁ, ଛିଡ଼ା ହୁଅନା, ଆସ – ଧକ୍କାଦେଲା ପରି ଅରିନ୍ଦମ ଚମକି ଉଠିଲା । ଆରେ କିଏ ଏମାନେ ? ଭୂତ ନା ପିଶାଚ ? ସବୁବେଳେ ତା ଉପରେ ନିଜର ରଖିଛନ୍ତି । ବୁଦା ଭିତର ଦେଇ, ବୁଲି ବୁଲି ଅରିନ୍ଦମ ଆଗକୁ ଚାଲିଲା ।

ବେଶି ବାଟ ତାକୁ ଯିବାକୁ ହେଲାନାହିଁ । ଏ ମନ୍ଦିର ସେ ଆଗରୁ ଦେଖିଛି । କିନ୍ତୁ ଅଧା ଆଲୁଅ ଅଧା ଛାଇରେ ତା'ର ମନେହେଲା ଏ ମନ୍ଦିରର ପରିବେଶ ଆଜି ଯେପରି ଅଲଗା । ଚାରିପାଖରେ ତ ବଣ, ଗଛବୃକ୍ଷ ମନ୍ଦିର ବେଢ଼ାକୁ ଲାଗି ଆସିଛି । କିନ୍ତୁ ଆଜି ଯେପରି ସେଇ ବଣର ମନ୍ଦିରକୁ ଲାଗି ଗୋଟାଏ ଅଂଶ ପରିଷ୍କାର ପରିଚ୍ଛନ୍ନ ହୋଇଛି । କ'ଣ ଯେପରି କାମ ହୋଇଛି । ମନେହେଉଛି କିଛି ଲୋକ ବି ବୋଧେ ଥିଲେ । ଅରିନ୍ଦମ ବେଢ଼ା ଟପି ମନ୍ଦିର ମଣ୍ଡପକୁ ଉଠିଗଲା । ଛୋଟ ମଣ୍ଡପ । ମଣ୍ଡପ ଭିତରୁ ଚାହିଁଲେ ଗୋଟିଏ ଛୋଟ ଘରେ ସିଂହବାହିନୀ ମା' । ଦୀପ ଜଳୁଛି, ମା'ଙ୍କ ବେକରେ ଫୁଲହାର, ଚାରିପାଖରେ ସୁନ୍ଦର ବାସନା, କିନ୍ତୁ କେହି ନାହାନ୍ତି । ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ଅରିନ୍ଦମ ଚାରିଆଡ଼କୁ ଚାହିଁଲା । ଏଇଠାକୁ ଆସିବାକୁ ତ ତାକୁ କୁହାଗଲା । ସେ ଆଉ ବିଶେଷ ନ ଭାବି, ମା'ଙ୍କୁ ପ୍ରଣାମ କରି, ମଣ୍ଡପର ଗୋଟିଏ କଣକୁ ବସିଲା । ଅନ୍ତତଃ ଦିନଯାକର ସେ ଅଦ୍ଭୁତ ବିଭତ୍ସତା ଓ ଭୟ ତ ନାହିଁ ।

ପାଖରୁ ମୃଦୁ ହସ ଶୁଭିଲା ଓ ସ୍ୱର- 'ହଁ, ନାହିଁ ଠିକ୍ । କିନ୍ତୁ ଆରମ୍ଭ ହେଲା ।' ଅରିନ୍ଦମ ଚମକି ଛିଡ଼ା ହୋଇପଡ଼ିଲା । ଅନ୍ଧାର ପ୍ରାୟ ଲାଗି ଆସିଲାଣି । ସେ ଛାଇ ଅନ୍ଧାରରେ ଅରିନ୍ଦମ ଦେଖିଲା ଜଣେ ଦୀର୍ଘଦେହୀ ପୁରୁଷ । ସେ କୁସ୍ତି ପ୍ରାଙ୍ଗଣରେ ଦେଖିଥିବା ବୋଧେ ସେହି ବ୍ୟକ୍ତି । ତାଙ୍କ ପାଖରେ ଆଉ ଜଣେ, ସମାନ ଦୀର୍ଘଦେହୀ, -'ବସ' । ସେ ବସିଲା । ସେ ଉଭୟ ବି ବସିଲେ । 'ଅରିନ୍ଦମ, ଡର ନା' ଦୀର୍ଘଦେହୀ କହିଲେ, 'ଆମେ ତୁମର ବନ୍ଧୁ । ଅନ୍ତତଃ ଆଜି ରାତିରେ କିଛି ଭୟ ନାହିଁ, ସମସ୍ତେ ଆଜି ଉଚ୍ଛୃଙ୍ଖଳ, ନିଶାଗ୍ରସ୍ତ । ତୁମେ ବସ, ମା'ଙ୍କର ଆଳତି ହେବ । ଆଳତି

ପରେ ତୁମେ ଆମ ସାଙ୍ଗରେ ପ୍ରସାଦ ଖାଇବ । ପରେ ଆମେ ତୁମକୁ ତୁମ ଶିବିରରେ ଛାଡ଼ିଦେଇ ଆସିବୁ ।' ଅଦ୍ଭୁତ ! ପରେ ଅରିନ୍ଦମ ଅନେକଥର ଭାବିଛି । କିନ୍ତୁ ସେ ସନ୍ଧ୍ୟାର ସେ ଅପୂର୍ବ ଅନୁଭୂତି ଆଉ ଫେରିଆସି ନାହିଁ । କୁସ୍ତି-ପ୍ରାଙ୍ଗଣର ସେ ବିଭତ୍ସ ଉତ୍ତାପ ପରେ ତା ଦେହରେ ଯେପରି କିଏ ସାରି ସାରି ଚନ୍ଦନ ଲେସି ଦେଇଗଲା । ତା'ର ମନେହେଲା ଯେପରି ତା'ର ଜ୍ଞାନଚକ୍ଷୁ ଖୋଲିଗଲା । ସେଦିନ ଅନେକ ସମୟ କଥାବାର୍ତ୍ତା ହେଲା । ଦୀର୍ଘଦେହୀ ବ୍ୟକ୍ତି ଭାନୁପ୍ରକାଶ, ତାଙ୍କର ସାଥୀ ଭାନୁପ୍ରିୟ । ଅରିନ୍ଦମର ମନେ ହେଲା ଏ ତାଙ୍କର ନିଜର ନାମ ନୁହେଁ, ଛଦ୍ମନାମ । ସ୍ୱାଭାବିକ ଭାବରେ ସେମାନେ ସତର୍କ ହେଉଛନ୍ତି । କିନ୍ତୁ କଥାବାର୍ତ୍ତା ବହୁତ ଖୋଲାରେ ହେଲା । ସନ୍ଧ୍ୟା ଆସ୍ତେ ଆସ୍ତେ ପାଖେଇ ଆସୁଥିଲା । ସନ୍ଧ୍ୟା ଟପିଗଲା । କ୍ରମେ ରାତି ହେଲା, ରାତି ଗଭୀର ହେଲା । ସେ ଯେ ନିଜ ଶିବିର ବାହାରେ ରହିଛି, ଏ ଅଚିହ୍ନା ଜାଗା, ହୁଏତ ଅସୁବିଧା ହୋଇପାରେ, ଅରିନ୍ଦମର ସେସବୁ ମନେ ନ ଥିଲା । ଭାନୁପ୍ରକାଶ ଜାଣିଲା ପରି କହିଲେ, 'ଅରିନ୍ଦମ ବ୍ୟସ୍ତ ହୁଅନା, ତମ ଶିବିରରେ ବର୍ତ୍ତମାନ ହରିଲୁଟ୍ ଅବସ୍ଥା, କାହାରି ଚେତା ନାହିଁ । ପାନୀୟ ତ ପାନୀୟ, ବାରାଙ୍ଗନାମାନଙ୍କୁ ତୁମ ସାରା ଶିବିରରେ ଛାଡ଼ିଦିଆ ଯାଇଛି, ସ୍ୱୟଂ କଂସର ଆଦେଶ, ତୁମେ କାଲି ସକାଳ ପର୍ଯ୍ୟନ୍ତ ବିନା ଚିନ୍ତାରେ ଏଠି ରହିପାର ।'

ସେମାନେ ମିଶି ଦେବୀଙ୍କ ପ୍ରସାଦ ଖାଇଲେ । କୁସ୍ତିପ୍ରାଙ୍ଗଣର ଅନୁଭୂତି ପରେ ଅରିନ୍ଦମର ମନେହେଲା ଏ ଗୋଟାଏ ସମ୍ପୂର୍ଣ୍ଣ ନୂତନ ଅନୁଭବ । ଶାନ୍ତ, ସମାହିତ । ଦେବୀଙ୍କ ଧୂପର ସୁଗନ୍ଧିରେ ଚତୁର୍ଦ୍ଦିଗ ଆମୋଦିତ, ଅଳ୍ପ ଅଳ୍ପ ପବନ ଦେଉଛି । ଚାରିପାଖରୁ ରାତିର ଚଢ଼େଇମାନଙ୍କର ଶବ୍ଦ । ଦେବୀଙ୍କର ଦୀପ ଏକମାତ୍ର ଆଲୁଅ । ସେଇ ଅଧା ଆଲୁଅ ଅଧା ଛାଇରେ ଅରିନ୍ଦମ ବୁଝିପାରିଲା ନାହିଁ କୋଉଟା ସତ, ଦିନ ଯାକର ସେ ଭୟଙ୍କର ଅନୁଭବ ନା ଏ ଶାନ୍ତି, ସ୍ଥିରତା ।

ଭାନୁପ୍ରକାଶ ଅଳ୍ପ ହସି କହିଲେ - 'ଅରିନ୍ଦମ ତୁମର କିଛି ଅସୁବିଧା ହେବନି । କଂସ ତୁମକୁ ବିଶ୍ୱାସ କରେ । କିନ୍ତୁ ସତର୍କ ରହିବ । କଂସ ସିଧା ଲୋକ ନୁହେଁ । ଆମ ସାଙ୍ଗରେ ତୁମର ସମ୍ପର୍କ ଯେପରି ଆଉ କେହି ନ ଜାଣନ୍ତି । ଜାଣିଲେ ତୁମ ପାଇଁ ବିପଦ ।'

ତାପରେ ଅନେକ କଥା ହେଲା । ଅରିନ୍ଦମ ପ୍ରଥମ ଥର ପାଇଁ ଜାଣିଲା କଂସ ଜରାସନ୍ଧର ସମ୍ପର୍କ । କଂସ ନୁହେଁ, ଜରାସନ୍ଧ ହିଁ ମୁଖ୍ୟ ନାୟକ । ତା'ର ପ୍ରକୃତି ଭୟାନକ, ପୈଶାଚିକ । କିନ୍ତୁ ସେ ଦୂରଦୃଷ୍ଟିସମ୍ପନ୍ନ, ଅତ୍ୟନ୍ତ ଚତୁର, ଅତ୍ୟନ୍ତ ଉଚ୍ଚାଭିଳାଷୀ । ସେ ସମଗ୍ର ଆର୍ଯ୍ୟାବର୍ତ୍ତର ସମ୍ରାଟ ହେବାକୁ ଚାହେଁ, ଏସବୁ ତା'ର


Digitized by srujanika@gmail.com

ଆୟୋଜନ । ନିଜ ରାଜ୍ୟ ମଗଧକୁ ସେ ଭୟଭୀତ କରି ରଖିଛି । ଏଠାରେ ଲୋକଙ୍କର କିଛି କହିବାର ବା କରିବାର ସ୍ୱାଧୀନତା ନାହିଁ । ମଗଧକୁ ଯେଉଁମାନେ ଶାସନ କରୁଛନ୍ତି ସେମାନେ କେହି ମଗଧର ଲୋକ ନୁହନ୍ତି, ବାହାରର ଲୋକ । ତାହାର ମୁଖ୍ୟ ସୈନ୍ୟ ସାମନ୍ତ ବି ବାହାରର ରାକ୍ଷସ ଗୋଷ୍ଠୀର ଲୋକ । ମଣିଷକୁ ସାମାନ୍ୟ ଇସାରାରେ ମାରିଦବାରେ ବା ମଣିଷ ମାଂସ ଖାଦ୍ୟପରି ଖାଇବାରେ ସେମାନଙ୍କର ସାମାନ୍ୟ ଦ୍ୱିଧା ନାହିଁ । ଶୁଣାଯାଏ ମହାକାଳଙ୍କର ନିର୍ଦ୍ଦେଶ ଶହେ ରାଜାଙ୍କୁ ବଳି ଦେଲେ ଜରାସନ୍ଧ ଆର୍ଯ୍ୟାବର୍ତ୍ତର ସମ୍ରାଟ ହୋଇପାରିବ । ସେ କଂସ ଓ ମଥୁରା ବିଷୟରେ ସବୁ ଖବର ଜାଣେ, ଜାଣେ ଯେ କଂସ ଉଗ୍ରସେନର ଔରସଜାତ ପୁତ୍ର ନୁହେଁ । ସେ ସମାନ ପୈଶାଚିକ ପ୍ରବୃତ୍ତିର, ସମାନ ଉଚ୍ଚାଭିଳାଷୀ । ଜରାସନ୍ଧର ଏ ଯେଉଁ ଗୋଟି ଚାଳନା ସେଥିରେ କଂସ ପ୍ରଥମ ଗୋଟି । ତେଣୁ ଏସବୁ ଆଡ଼ମ୍ବର, ଏତେ ଆୟୋଜନ । ସୂର୍ଯ୍ୟପ୍ରକାଶ ମୂର୍ଖ, ତେଣୁ ସେ କଂସ ସାଙ୍ଗରେ ଲଢ଼ିବାକୁ ଗଲା । କଂସ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଯୋଦ୍ଧା, ଏ ଘୋଷଣା ଆଗରୁ ସ୍ଥିର ହୋଇଥିଲା ।'

'କିନ୍ତୁ କଂସର ଲାଭ ?' ଅରିନ୍ଦମ ପଚାରିଥିଲା ।

ଭାନୁପ୍ରକାଶ ହସିଲେ - 'କଂସ ରାଜ୍ୟ ଜୟ କରିବାକୁ ଚାହେଁ । ପ୍ରବଳ ପ୍ରତାପୀ ରାଜା ଭାବରେ ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ । ହସ୍ତିନା, ପାଞ୍ଚାଳ, ବିଦର୍ଭ, କାଶୀ, ଚେଦୀ ଏସବୁ କଂସକୁ ଗ୍ରହଣ କରିବେ ନାହିଁ । କିନ୍ତୁ ଜରାସନ୍ଧ କଲା, ନିଜର ଜାମାତା କଲା । କଂସ ଜନ୍ମର ଅପବାଦକୁ ତୁଚ୍ଛ କରିଦେଲା । ଏ କମ୍ କଥା ନୁହେଁ । କଂସର ସଂଭ୍ରମ ବଢ଼ିଗଲା । ସେ ଆଉ ଏକା ନୁହେଁ, ତା ପଛରେ ଜରାସନ୍ଧର ଶକ୍ତି ଓ ଐଶ୍ୱର୍ଯ୍ୟ, ଜରାସନ୍ଧର ପ୍ରତାପ ।' ଅରିନ୍ଦମ କିଛି ସମୟ ଭାବିଲା- 'କିନ୍ତୁ କଂସ ତ ରାଜା ନୁହେଁ । ଉଗ୍ରସେନ ଥାଉଁ ଥାଉଁ ମଥୁରାର ଲୋକେ ତାକୁ ରାଜା ବୋଲି ବା କାହିଁକି ମାନିବେ ।' ଭାନୁପ୍ରକାଶ ପୁଣି ହସିଲେ- 'ମାନିବେ । ଯା ପାଖରେ ଜୋର ଅଛି ତାକୁ ସମସ୍ତେ ମାନିବେ । ଏଠି ଜରାସନ୍ଧକୁ କ'ଣ ସମସ୍ତେ ପସନ୍ଦ କରୁଛନ୍ତି । ତା' ନୁହେଁ । କିନ୍ତୁ ସମସ୍ତେ ମାନୁଛନ୍ତି, ନିଜ ପ୍ରାଣଦାୟରେ ମାନୁଛନ୍ତି । ନ ମାନିଲେ କ'ଣ ହେବ ପରିଣତି - ମୃତ୍ୟୁ । ମରିବାକୁ ହେବ । ତେଣୁ ସମସ୍ତେ ମାନନ୍ତି, ଇଚ୍ଛା ଥାଉ କି ନ ଥାଉ । ଅତ୍ୟାଚାରୀ ରାଜାମାନଙ୍କର ସେଇଟାହିଁ ପ୍ରଧାନ ଶକ୍ତି, ଲୋକମାନଙ୍କର ମୃତ୍ୟୁଭୟ । ଆଉ ରାଜା ଉଗ୍ରସେନଙ୍କ କଥା କହୁଚ । ସେ ବେଶିଦିନ ରାଜା ରହି ପାରିବେ ନାହିଁ । ଦେଖିବ ଶୀଘ୍ର କ'ଣ ହେବ ।'

ଅରିନ୍ଦମ ଚମକି ଉଠିଥିଲା, 'ମାନେ, ରାଜା ଉଗ୍ରସେନଙ୍କୁ କଂସ ମାରିଦବ ?'

'ମାରିବା କ'ଣ ଦରକାର ଅଛି । ରାଜଗାଦୀରୁ ବାହାର କରିଦେବ । ନିଜେ

ରାଜା ହେବ, ଏଇଟା ହିଁ ସ୍ଥିର ।' ଭାନୁପ୍ରକାଶ କହିଲେ ।

'ମଥୁରା ?'

'ମଥୁରା କ'ଣ ହେବ? ଯେମିତି ଅଛି ସେମିତି ରହିବ । ସମସ୍ତେ କଂସକୁ ମାନିନେବେ । ରାଜାଧିରାଜ ବୋଲି ବନ୍ଦନା କରିବେ । ଆଉ ଜଣେ ଅଧେ ଯେ ଏପାଖ ସେପାଖ ହେବେ, ଯେମିତି ତୁମ ବାପା । କିନ୍ତୁ ସେ ବା କେତେଦିନ । କିନ୍ତୁ ତୁମର ବାପା ଜ୍ଞାନୀ, ଦିବ୍ୟଦ୍ରଷ୍ଟା । ସେ ଜାଣନ୍ତି ଯାହା ଯାହା ଘଟିବ ବା ଘଟିବାକୁ ଯାଉଛି । ସେ ଚୁପ ରହିବେ ।'

ଅନେକ କଥା ଅରିନ୍ଦମ ଧରିପାରୁ ନ ଥାଏ । ଜରାସନ୍ଧଙ୍କୁ ଯେ ସମସ୍ତେ ପ୍ରଚଣ୍ଡ ଭୟ କରନ୍ତି ଏକଥା ସେ କିଛି କିଛି ବୁଝିପାରୁଥାଏ । ତା'ର ନମୁନା ସେ ଦେଖିଛି । କିନ୍ତୁ ଏମାନେ ତ ଭୟ କରନ୍ତି ନାହିଁ । ଗତ କିଛିଦିନରେ ସେ ଯାହା ଦେଖିଛି ସେ ଭାବୁଥାଏ ଏମାନେ କିଏ ? କଅଣ ଏମାନେ ଚାହାନ୍ତି ? ଏମାନେ ଖୁବ୍ ସତର୍କ ! ଲୁଚି ଛପି ରହିଛନ୍ତି । ପ୍ରାୟ ଅନେକ କଥା ଜାଣନ୍ତି, ଏମାନେ କ'ଣ ଜରାସନ୍ଧଙ୍କର ଶତ୍ରୁ । କିନ୍ତୁ କାହିଁକି? ଏମାନେ ଜରାସନ୍ଧଙ୍କର କ'ଣ କରିପାରିବେ ? ଏମାନେ କ'ଣ ନିଜେ ରାଜା ହେବାକୁ ଚାହାନ୍ତି ? ସମ୍ରାଟ ହେବାକୁ ଚାହାନ୍ତି ? ସେମାନେ ଯେଉଁ ଆର୍ଯ୍ୟାବର୍ତ୍ତ କଥା କହନ୍ତି ସେ ତ ବହୁତ ବଡ଼ ଦେଶ । ବାପା ବି ଅନେକ ସମୟରେ ଆର୍ଯ୍ୟାବର୍ତ୍ତ କଥା କହନ୍ତି । ସେ ତ ମୁନିଋଷିଙ୍କର ଦେଶ, ଦେବତା ବ୍ରାହ୍ମଣଙ୍କର ଦେଶ, ଆମ ସମସ୍ତଙ୍କର ପୂର୍ବପୁରୁଷର ଦେଶ । ବିଶେଷ କରି ତା' ସହିତ ଏମାନଙ୍କର ସମ୍ପର୍କ କ'ଣ? ତା' ବିଷୟରେ ଏମାନେ ଏତେ ଆଗ୍ରହୀ କାହିଁକି ? ସେ ତ ମଥୁରାରେ ଭଲରେ ଅଛି, ଆର୍ଯ୍ୟାବର୍ତ୍ତ କଥା ଭାବିବ କାହିଁକି ?- ବୋଧହୁଏ ଏହିସବୁ କଥା ଭାବି ଅରିନ୍ଦମ ଅନେକ ସମୟ ଚୁପ୍‌ଚାପ୍ ଥିଲା । ତା'ର ଯେତେବେଳେ ଚେତା ହେଲା ସେ ଦେଖିଲା ଉଭୟ ଭାନୁପ୍ରକାଶ ଓ ଭାନୁପ୍ରିୟ ତା' ମୁହଁକୁ ଚାହିଁ ଅଳ୍ପ ଅଳ୍ପ ହସୁଛନ୍ତି । ତା'ର ସାମାନ୍ୟ ସଂକୋଚ ହେଲା । କହିଲା, 'ନାଇଁ ମୁଁ ଏମିତି ଭାବୁଥିଲି...।'

'ତୁମେ କ'ଣ ଭାବୁଛ ଆମେ ଜାଣୁ ।' ଭାନୁପ୍ରକାଶ କହିଲେ, 'ତୁମେ ସେପରି ଭାବିବା ତ ଠିକ୍ । ତୁମେ ମଥୁରାରୁ ଆସିଛ, କଂସର ଶିବିରର ଲୋକ, କଂସର ବନ୍ଧୁ ନ ହେଲେବି ପ୍ରାୟ ବନ୍ଧୁ, ତା' ବିରୁଦ୍ଧରେ ତୁମର କିଛି କହିବାର ନାହିଁ । ଏପରିକି ଜରାସନ୍ଧଙ୍କ ବିରୁଦ୍ଧରେ ମଧ୍ୟ କିଛି ନାହିଁ । ଆଉ କଂସ ଜରାସନ୍ଧଙ୍କର ଜାମାତା ହେଲେ ତ ଆନନ୍ଦର କଥା । ରାଜଗିରିର ପ୍ରବଳ ଶକ୍ତି ମଥୁରା ପଛରେ ଛିଡ଼ା ହେବ । ଆଉ ମଥୁରା ବି ଗୋଟାଏ ଶକ୍ତିଶାଳୀ ରାଜ୍ୟ ଭାବରେ ଛିଡ଼ା ହେବ । ନୁହେଁ ?'

'ବୋଧେ ସେଇଆ ।' ଅରିନ୍ଦମ କହିଲା- 'କିନ୍ତୁ ମୁଁ ଏତେ ସ୍ପଷ୍ଟ ଭାବରେ


Digitized by srujanika@gmail.com

ଭାବିନାହିଁ । ତେବେ ମୁଁ ଆଉ ଗୋଟିଏ କଥା ଭାବୁଛି । ଆପଣମାନଙ୍କର ଜରାସନ୍ଧ ପ୍ରତି ଏତେ କ୍ରୋଧ କାହିଁକି ?' 'ଠିକ୍ ପ୍ରଶ୍ନ', ଭାନୁପ୍ରକାଶ ନୁହେଁ, ଭାନୁପ୍ରିୟ କହିଲେ – 'ଏ କ୍ରୋଧ, ଜରାସନ୍ଧ ପ୍ରତି ତୀବ୍ର କ୍ରୋଧ । କିନ୍ତୁ ଏ କ୍ରୋଧ ଜଣେ ବ୍ୟକ୍ତିର ଆଉ ଜଣେ ବ୍ୟକ୍ତି ପ୍ରତି ନୁହେଁ । ଏ କ୍ରୋଧ ଯେ ଅତ୍ୟାଚାର କରୁଛି ତା ପ୍ରତି ଅତ୍ୟାଚାରିତର କ୍ରୋଧ । ଜରାସନ୍ଧ ନରହନ୍ତା, ପିଶାଚ । ସେ ଆର୍ଯ୍ୟ ରାଜାମାନଙ୍କର କୌଣସି ନୀତି ନିୟମ ପାଳନ କରେନା । ସେ ଶୋଷକ, ଆର୍ଯ୍ୟ ଧର୍ମର ସମ୍ପୂର୍ଣ୍ଣ ବିରୋଧୀ । ଖାଲି ସେତିକି ନୁହେଁ । ସେ ପବିତ୍ର ଆର୍ଯ୍ୟାବର୍ତ୍ତରୁ ଯେପରି ଭାବରେ ଆର୍ଯ୍ୟ ଧର୍ମର ଲୋପ କରିଦେବାକୁ ବସିଛି ତା'ର ପ୍ରତିବାଦ ହେବା ଦରକାର, ପ୍ରତିରୋଧ ହେବା ଦରକାର । ଆମେ ସେହି ପ୍ରତିରୋଧ କରୁଛୁ ।'

'ଏ କିପରି ପ୍ରତିରୋଧ', ଅରିନ୍ଦମ ନ ପଚାରି ରହିପାରିଲାନି, 'ଆପଣମାନେ ତ ଲୁଚି ଲୁଚି ବୁଲୁଛନ୍ତି ।'

'ଠିକ୍', ଭାନୁପ୍ରିୟ କହିଲେ, 'କିନ୍ତୁ ଆମେ ଲୁଚି ଲୁଚି ବୁଲୁଛୁ ଏ ପୂରା କଥା ନୁହେଁ । ଆମେ ଲୋକଙ୍କ ଭିତରେ କାମ କରୁଛୁ । ଲୋକଙ୍କୁ ଜରାସନ୍ଧର ଅତ୍ୟାଚାର ବିଷୟରେ କହୁଛୁ । ଜରାସନ୍ଧ ଅଧର୍ମ, ତା'ର ଶାସନ ଅଧର୍ମ, ଲୋକଙ୍କୁ ଏକଥା ବୁଝଉଛୁ । ସୈନ୍ୟସାମନ୍ତ ଏକମାତ୍ର ବଳ ନୁହେଁ, ମନର ବଳ ହିଁ ଅସଲ ବଳ, ଏକଥା କହୁଛୁ । ଦରକାର ପଡ଼ିଲେ ଏକାଠି ହୁଅ, ମନ ଦମ୍ଭ କର, ଏକଥା ବି କହୁଛୁ ।'

'ଜରାସନ୍ଧ ଏକଥା ଜାଣନ୍ତି ?' ପଚାରିଲା ଅରିନ୍ଦମ ।

'ଜାଣେ', କହିଲେ ଭାନୁପ୍ରକାଶ, 'ଧରିଲେ ସେ ଆମକୁ ଶେଷ କରିଦେବ । ସେଇଯୋଗୁଁ ଆମେ ଲୁଚି ଲୁଚି ରହୁଛୁ, ସତର୍କ ହୋଇ ରହିଛୁ ।'

ଅରିନ୍ଦମ ଚୁପ୍ ରହିଥିଲା । ଭାବିଲା ଏସବୁ ସମ୍ପୂର୍ଣ୍ଣ ନୂଆ କଥା । ବାପା ମଝିରେ ମଝିରେ ସେକଥା କହୁଥିଲେ, ଯେ ପାପର ମାତ୍ରା ପୂର୍ଣ୍ଣ ହେଲେ ପରିବର୍ତ୍ତନ ଆସିବ । ଏ କ'ଣ ସେହି ପରିବର୍ତ୍ତନ । ବାପା କ'ଣ ଏହିପରି କଥା ଭାବୁଥିଲେ । ଅରିନ୍ଦମ ପୁଣି ପଚାରିଲା, 'ଲୋକେ ଜାଣୁଛନ୍ତି, ବୁଝୁଛନ୍ତି, ତେବେ ଆପଣମାନେ ତାଙ୍କୁ ଖୋଲାଖୋଲି ନେତୃତ୍ୱ ଦେଉନାହାନ୍ତି କାହିଁକି ?'

'ନାଁ, ସମ୍ଭବ ନୁହେ', ଭାନୁପ୍ରିୟ ପୁଣି କହିଲେ, 'ଆମେ ସେ ଲୋକ ନୁହଁ । ଆମର ସେ ଯୋଗ୍ୟତା ନାହିଁ । ଆମେ କେବଳ ଲୋକଶକ୍ତିକୁ ଜାଗ୍ରତ କରୁଛୁ, ସଚେତ କରି ରଖୁଛୁ । ସେଇ ଯାହା କୁହାଯାଏ ଆମେ କେବଳ ଜମିକୁ ପ୍ରସ୍ତୁତ କରି ରଖୁଛୁ । କିନ୍ତୁ ଜମିରେ ବୀଜ ବୁଣି ଫସଲ ଫଳେଇବା ଲୋକ ଅନ୍ୟ ଜଣେ । ଆମେ ତାକୁ ଅପେକ୍ଷା କରୁଛୁ । ତୁମେ ଆମ ସାଙ୍ଗରେ ମିଶି, ଆମ କାମରେ ଭାଗୀ ହେଲେ

ତୁମେ ବି ଆମପରି ସେହି ଲୋକକୁ ଅପେକ୍ଷା କରିବ ।'

ଅରିନ୍ଦମ ଯେମିତି ଗୋଟାଏ ଚକଚକ ନୂଆ ଆଲୁଅ ଅନୁଭବ କଲା । କିନ୍ତୁ ଏ ବି ରହସ୍ୟମୟ । ଏମାନେ ଜମି ପ୍ରସ୍ତୁତ କରି ରଖୁଛନ୍ତି, ଅନ୍ୟ ଲୋକ ବୀଜ ବପନ କରିବ, ଶସ୍ୟ ଫଳେଇବ । ସେ ଲୋକ କିଏ ? ବାପା ହୁଏତ ଜାଣିଥିବେ, କିନ୍ତୁ କେବେ କହନ୍ତିନି, ବା ଯେବେ କହନ୍ତି ଅତ୍ୟନ୍ତ ସଂକ୍ଷେପରେ, ନିଜକୁ ନିଜେ, ସ୍ୱଗୋତକ୍ତି କଲାପରି, ଧ୍ୟାନ କଲାପରି, ଯେପରି କୌଣସି ଅକଳ୍ପିତ, ଅଭାବିତ ଶକ୍ତିକୁ ଦେଖିପାରୁଛନ୍ତି, ପ୍ରାର୍ଥନା କରୁଛନ୍ତି ଆସ । ରହସ୍ୟପୂର୍ଣ୍ଣ । ଅରିନ୍ଦମ ଅନୁଭବ କରିଛି, କିନ୍ତୁ ସ୍ପଷ୍ଟ ବୁଝିପାରି ନାହିଁ । ଆଜି ବି ସେଇକଥା ।

ଅରିନ୍ଦମ କେତେ ସମୟ ଚୁପ ଥିଲା ଜାଣେନା । ତା କାନ୍ଧରେ ଭାନୁପ୍ରକାଶଙ୍କର ହାତର ସ୍ପର୍ଶ ପାଇ ଚମକି ଉଠିଲା । ଭାନୁପ୍ରକାଶଙ୍କ ମୁହଁ ଆଗପରି ହସହସ, ସେ ଯେପରି ଅରିନ୍ଦମର ଦି' ଆଖିକି ଚାହିଁ କ'ଣ ବୁଝିଛନ୍ତି ବା ବୁଝିବାକୁ ଚେଷ୍ଟା କରୁଛନ୍ତି । ସେ କହିଲେ, 'ଅରିନ୍ଦମ, ଆମେ ଜାଣୁ ତୁମେ କ'ଣ ଭାବୁଛ । ତୁମ ପାଇଁ ଏସବୁ ବଡ଼ ରହସ୍ୟମୟ, ଠିକ୍ । କିନ୍ତୁ ଗୋଟିଏ କଥା ଭାବିଦେଖ, ଯେ କୌଣସି ରାଜାର ଅତ୍ୟାଚାର ତୁମେ ସହ୍ୟ କରିପାରିବ ତ, ବା ବାହାରେ ସହ୍ୟ କଲେ ବି ମନେମନେ ତୁମେ ସ୍ଥିର ହୋଇ ରହିପାରିବ କି ? ରହି ନ ପାରିଲେ କ'ଣ କରିବ ? ଆମର ସେହି ଅବସ୍ଥା । ଆମେ ଜାଣୁ ଆମେ ଜରାସନ୍ଧର ଖୋଲାଖୋଲି ପ୍ରତିରୋଧ କରିପାରିବୁ ନାହିଁ । ଆମର ସେ ଶକ୍ତି ନାହିଁ । କିନ୍ତୁ ସାମାନ୍ୟ ମୂଷାଟାବି ଘରେ କଣାକରି ବଡ଼ ବଡ଼ ଗାତ କରିଦେଇପାରେ, ଯା'ହେଲେ ଘରଟା ଶେଷକୁ ଭାଙ୍ଗିଯାଇ ପାରେ । ଆମେ ସେହି କାମ କରୁଛୁ । ଘରେ ଗାତ କରୁଛୁ । କିନ୍ତୁ ପ୍ରଚଣ୍ଡ ଧକ୍କା ଦେଇ ଘରଟାକୁ ଭାଙ୍ଗିଦେବା କ୍ଷମତା ଆମର ନାହିଁ ।

ଅସ୍ପଷ୍ଟ ଭାବରେ ହେଲେ ବି ଅରିନ୍ଦମର ମନେହେଲା ସେ କିଛି କିଛି ବୁଝୁଛି । ଖାଲି ରାଜା ହୋଇ ରାଜତ୍ୱ କରିବା ଏକମାତ୍ର କଥା ନୁହେଁ । ଶହ ଶହ ରାଜ୍ୟ, ଶହ ଶହ ରାଜା । ରାଜ୍ୟ ହେବ, ରାଜା ରହିବେ, ରାଜତ୍ୱ ବି ହେବ । ଏ ତ ସବୁଦିନିଆ କଥା । କିନ୍ତୁ ରାଜା କେମିତି ଶାସନ କରିବେ ସେଇଟାହିଁ ବଡ଼କଥା, ଓ ସେଇଟାହିଁ ଅସଲ କଥା । ରାଜା ଧର୍ମ ମାନିବେ କି ନାହିଁ, ନୀତି-ନିୟମ ମାନିବେ କି ନାହିଁ । ଲୋକଙ୍କ ସାଙ୍ଗରେ ସମ୍ପର୍କ କ'ଣ ? ଲୋକଙ୍କ ସହିତ ଏକ ହୋଇ ଚଳିବେ କି ନାହିଁ ? ଭୀଷ୍ମ ରାଜ୍ୟ ଶାସନ କରୁଛନ୍ତି, ଦ୍ରୁପଦ ରାଜ୍ୟ ଶାସନ କରୁଛନ୍ତି, ଜରାସନ୍ଧ ବି । ଏ କ'ଣ ଏକା ପ୍ରକାର ଶାସନ । ନାଁ ଏକାପ୍ରକାର ନୁହେଁ । ଅରିନ୍ଦମର ମନେହେଲା ଏ ଲୋକମାନେ ସେଇ ପ୍ରଭେଦ କଥା କହୁଛନ୍ତି । ଲୋକଙ୍କୁ ଛାଡ଼ି

ଶାସନ ଚାଲିପାରେ ନା, ଏହାହିଁ ସେମାନଙ୍କର ମତ ।

'ନାଁ, ଖାଲି ସେତିକି ନୁହେଁ ।' ଭାନୁପ୍ରକାଶ କହିଲେ - ଯେମିତି ସେ ଠିକ୍ ଠିକ୍ ଅରିନ୍ଦମର ଚିନ୍ତାଧାରା ବୁଝିପାରିଛନ୍ତି । ଅଦ୍ଭୁତ, ଏମାନେ ଯେ କେବଳ ନୂଆ କଥା କହୁଛନ୍ତି ସେତିକି ନୁହେଁ । ଏମାନଙ୍କର ସାହସ, ଚିନ୍ତାଧାରା, କାମ କରିବାର ଶକ୍ତି ବି ଅଦ୍ଭୁତ । 'ନାଁ, ସେତିକି ନୁହେଁ' ଭାନୁପ୍ରକାଶ କହିଲେ, 'ତୁମେ ଭାବ ଲୋକଶକ୍ତି ବି ସ୍ୱେଚ୍ଛାଚାରୀ ହୋଇପାରେ । ଲୋକଶକ୍ତି ନାଁରେ କିଛି ଲୋକେ ସବୁ କ୍ଷମତା ମାଡ଼ିବସି କଳେବଳେ କୌଶଳେ ଅତ୍ୟାଚାରୀ ରାଜାଙ୍କୁ ବି ଟପିଯାଇ ପାରନ୍ତି । ସେତେବେଳେ ଲୋକଶକ୍ତିଟା ହେବ କେବଳ ଆବରଣ । ଲୋକଶକ୍ତି ନାଁରେ, ଲୋକଙ୍କ ନାଁରେ ପ୍ରଚାର ହେବ । କୁହାଯିବ ଯାହା ହେଉଛି ସେ ଲୋକଙ୍କ ପାଇଁ ହେଉଛି, ଲୋକଙ୍କ ଦ୍ୱାରା ହେଉଛି, ଲୋକଙ୍କ ଭଲପାଇଁ ହେଉଛି । ଏ ପ୍ରଚାର ଯେତେ ଯେତେ କରାଯିବ, ଯେତେ ଜୋରରେ କରାଯିବ, ଲୋକମାନେ ସେଇଟାକୁହିଁ ବିଶ୍ୱାସ କରିବେ, ଭାବିବେ ସେଇଟାହିଁ ହିଁ ସତ, ଖୁସି ହେବେ, ସତରେ ସେମାନଙ୍କ ପାଇଁ କିଛି ହେଉଛି । ଯେଉଁମାନେ ଏସବୁ କଥା କହୁଥିବେ ସେମାନଙ୍କୁ ବିଶ୍ୱାସ କରିବେ, ଭାବିବେ ସେହିମାନେ ହିଁ ଠିକ୍, ସେଇମାନଙ୍କ କଥା ମାନିବେ ।' ଭାନୁପ୍ରକାଶ ଚୁପ୍ କରିଗଲେ । ଭାନୁପ୍ରିୟ ବି ଚୁପ୍ । ମଣ୍ଡପରେ ଦୀପ ଜଳୁଚି । ଚାରିପାଖରେ ଆଲୁଅ ଅନ୍ଧାର ଗୋଳିହୋଇ ରହିଛି । ଚାରିପାଖରୁ ରାତି ଚଢ଼େଇମାନଙ୍କର ଡାକ, ଦୂରରୁ ଶିବିରମାନଙ୍କର ମିଳିତ ଶବ୍ଦ କ୍ଷୀଣ ଭାବରେ ଭାସି ଆସୁଛି । ଭାନୁପ୍ରକାଶ ପୁଣି କହିଲେ, 'ଅରିନ୍ଦମ, ଏ ଦୀପକୁ ଦେଖ । ଚାରିପାଖର ଅନ୍ଧାରକୁ ଦେଖ । ଦୀପ ଜଳୁଚି ବୋଲି ଅନ୍ଧାର ଅନ୍ଧାର ପରି ଲାଗୁନାହିଁ । ଆମକୁ ସହଜ ଲାଗୁଛି, ଦମ୍ଭ ଲାଗୁଛି, ଆମେ ଅନ୍ଧାର କଥା ଭାବୁନାହୁଁ, ଆଲୁଅ କଥାହିଁ ଭାବୁଛୁ । କିନ୍ତୁ ଯଦି ଦୀପଟି ହଠାତ୍ ଲିଭିଯାଏ, ବା ଲିଭେଇ ଦିଆଯାଏ, କ'ଣ ହେବ ? ଅନ୍ଧାର, ଅନ୍ଧାର ଆମକୁ ଗ୍ରାସ କରିବ । ଆମର ସାହସ, ଦମ୍ଭ, ଆମେ ନିଜେ ନିଜେ, କିଛି ରହିବକି ? ଏ ଠିକ୍ ସେହିକଥା । ଆମେ ଅନ୍ଧାର ବିରୁଦ୍ଧରେ ଲଢୁଛେ । ଆମ କାମ ଦୀପ ଜଳେଇ ରଖିବା, ଅନ୍ତତଃ ବଡ଼ ଆଲୁଅ ଆସିବା ଯାକେ ଏ ଦୀପ ଜଳେଇ ରଖିବାକୁ ହେବ ।'

'କିନ୍ତୁ ଏ କାମରେ ତ ବହୁତ ବିପଦ', ଅରିନ୍ଦମ ସାହସ କରି କହିଲା - 'ବିପଦ ନିଶ୍ଚୟ', ଭାନୁପ୍ରିୟ କହିଲେ, 'ବିପଦର ଝୁଙ୍କି ନ ନେଲେ କୌଣସି ଭଲ କାମ ହବ କି ? ତା' ନ ହେଲେ ଆମେ ଆଜି ଏଠି କାହିଁକି ବସିବା । ତମ ଶିବିରର ଅନ୍ୟ ଲୋକମାନଙ୍କ ସାଙ୍ଗରେ ହୋ ହଲ୍ଲାରେ ତ ଆମେ ଗଡୁଥାନ୍ତେ । ସେ ତ

ସହଜ । କିଛି ଭାବିବାକୁ ନାହିଁ, କେହି କିଛି କହିବାକୁ ନାହିଁ, ମନ ଇଚ୍ଛା ଯା' ପାରୁଛ କର । ଜରାସନ୍ଧ ସେଇଆ ଚାହେଁ, କଂସ ସେଇଆ ଚାହେଁ । ଅସୁବିଧା କଥା କୁହ ନାହିଁ, ଅସୁବିଧା କାମ କର ନାହିଁ, ସେଇଟା ହିଁ ଅସୁବିଧା ।'

ଜଣେ ଲୋକ ମନ୍ଦିର ଭିତରୁ ବାହାରି ଆସିଲା, କହିଲା - 'ପ୍ରସାଦର ବନ୍ଦୋବସ୍ତ କରିବା ।' ଭାନୁପ୍ରକାଶ କହିଲେ, 'କର' ।

ସେମାନେ ଖାଉ ଖାଉ ଅରିନ୍ଦମ ଗୋଟାଏ କଥା ବାରମ୍ବାର ଭାବି ଆଶ୍ଚର୍ଯ୍ୟ ହେଉଥିଲା, ଯେ ଏମାନଙ୍କର ସାହସ କିଛି କମ୍ ନୁହେଁ । ଏମାନେ ଯାହା କହୁଛନ୍ତି ସେ ତ ଖାଲି ଆଦର୍ଶ, ଗୋଟାଏ ନିର୍ଦ୍ଦିଷ୍ଟ ଅବସ୍ଥାର ନିର୍ଦ୍ଦିଷ୍ଟ ଭାବରେ ବିରୋଧ କରିବା । ଏମାନଙ୍କର ସଂଖ୍ୟା କେତେ ? ସେ ସେହିକଥା ପଚାରିଲା - 'ଆପଣଙ୍କ ସାଙ୍ଗରେ ତ ଅନେକ ଲୋକ ଥିବେ ?' 'ନାଁ', ଭାନୁପ୍ରିୟ କହିଲେ - 'ତୁମେ ଯାହା ଭାବୁଛ ଏ ଆଦର୍ଶର କଥା, ଠିକ୍ । ଆଦର୍ଶ ହିଁ ଉଦ୍ଦେଶ୍ୟ । ଆଦର୍ଶ ନ ଥିଲେ କୌଣସି କାମ ଠିକ୍ ହେବନାହିଁ । ହୁଏତ ଭବିଷ୍ୟତରେ ବହୁତ ଲୋକ ଆମ ସାଙ୍ଗକୁ ଆସିପାରନ୍ତି । କିନ୍ତୁ ଏବେ ନୁହେଁ । ଏବେ ଆମ ସଂଖ୍ୟା ଅଳ୍ପ । କିନ୍ତୁ ଅଳ୍ପ ହେଲେ ବି ଆମେ କ'ଣ କରିବାକୁ ଚାହୁଁ ସେହି ସ୍ପଷ୍ଟତା ହିଁ ଆମର ଶକ୍ତି । ଜରାସନ୍ଧ ଏକଥା ଜାଣେ । ସେ ଜାଣେ ମରିବାଟା ଆମ ପାଇଁ କିଛି ନୁହେଁ । ସେଇଥିପାଇଁ ତା'ର ଡର ।'

ଖାଇବା ସରିଗଲା । ଖାଇବାରେ ପରିପାଟୀ ନାହିଁ । କିନ୍ତୁ ଅତ୍ୟନ୍ତ ସ୍ୱାଦିଷ୍ଟ । ରାତି ଆହୁରି କିଛି ବଢ଼ିଛି । ଦୂର ଶିବିର ଓ ରାଜ ନଅରର ଶବ୍ଦ ସବୁ କମି ଆସିଲାଣି । ମନ୍ଦିରକୁ ଲାଗି ଲାଗି କିଛି ଅଞ୍ଚଳକୁ ପରିଷ୍କାର କରାଯାଇଥିଲେ ବି, ଅଳ୍ପ ଦୂରରେ ଜଙ୍ଗଲର ପରିସର । ରାତି ଜଙ୍ଗଲର ବିଭିନ୍ନ ଶବ୍ଦ ଆହୁରି ପରିଷ୍କାର ଭାବରେ ବୁଝି ହେଉଛି । ସେମାନେ ଯାଇ ମଣ୍ଡପର ଗୋଟାଏ କଣକୁ ବସିଲେ । ଭାନୁପ୍ରକାଶ, ଭାନୁପ୍ରିୟ, ସେ ଓ ଆହୁରି ତିନିଜଣ ଲୋକ । ଭାନୁପ୍ରକାଶ କହିଲେ - 'ଅରିନ୍ଦମ, ତୁମେ ସବୁ ଶୀଘ୍ର ମଥୁରାକୁ ଫେରିଯିବ । ତୁମେ ମଥୁରାକୁ ଗଲାପରେ ଆମେ ତୁମ ସହିତ ସମ୍ପର୍କ ରଖିବୁ ।' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା - 'ଆପଣମାନେ ମଥୁରା ଆସିବେ ?' 'ହଁ', ଭାନୁପ୍ରକାଶ କହିଲେ - 'ଜରାସନ୍ଧର ଯୋଜନା ସ୍ପଷ୍ଟ । ସେ ଆପଣାର କାମର ଧାରା ରାଜଗିରିରୁ ମଥୁରାକୁ ଘୁଞ୍ଚେଇ ନେବ । ମଗଧ ଆର୍ଯ୍ୟାବର୍ତ୍ତର କେନ୍ଦ୍ରରେ ନୁହେଁ, କେନ୍ଦ୍ରଠାରୁ ବହୁତ ଦୂରରେ । ମଥୁରା କେନ୍ଦ୍ରରେ । ସେଠାରୁ ସେ ସହଜରେ ଭୀଷ୍ମ ଓ ଦ୍ରୁପଦଙ୍କ ଉପରେ ନଜର ରଖିପାରିବ । ସେ ଉଭୟଙ୍କୁ ଭୟ କରେ । କିନ୍ତୁ ଆହୁରି ବଡ଼କଥା ମହର୍ଷି ବ୍ୟାସଦେବଙ୍କ ଉପରେ ମଧ ସେ ନଜର ରଖିପାରିବ ।' 'ମହର୍ଷି ବ୍ୟାସଦେବ ? ସେ ତ ମହର୍ଷି । ଜରାସନ୍ଧର ସେ କ'ଣ

କରିପାରିବେ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ପଚାରିଲା । 'ହଁ, ସେ ମହର୍ଷି, ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ମହର୍ଷି', ଭାନୁପ୍ରକାଶ କହିଲେ – 'ସେଇଟାହିଁ ଜରାସନ୍ଧର ଭୟ । ତାଙ୍କର କିଛି ନାହିଁ, ସେ ସମ୍ପୂର୍ଣ୍ଣ ନିଃସ୍ୱ । ଯାହା ଅଛି ତାଙ୍କର ବିଶ୍ୱାସ, ଚରିତ୍ର, ଧର୍ମ ଓ ସେହି ଧର୍ମର ଶକ୍ତିହିଁ ଆର୍ଯ୍ୟାବର୍ତ୍ତର ଶକ୍ତି । ଆର୍ଯ୍ୟାବର୍ତ୍ତର ସମଗ୍ର ସଂଗଠନ ତାଙ୍କରି ନିର୍ଦ୍ଦେଶରେ ହିଁ ଗଢ଼ିଉଠିଛି । ଜରାସନ୍ଧର ପ୍ରଧାନ ଭୟ ବ୍ୟାସଦେବଙ୍କୁ, ବ୍ୟାସଦେବଙ୍କର ଧର୍ମକୁ ।'

ଅରିନ୍ଦମର ମନେହେଲା ବାପା ଅନେକ ସମୟରେ ମହର୍ଷି ବ୍ୟାସଙ୍କ କଥା କହନ୍ତି । ବିଶେଷ କରି ମହର୍ଷି ବ୍ୟାସ ଓ ଭୀଷ୍ମ ଉଭୟଙ୍କ କଥା । ଉଭୟ ଦୁଇଭାଇ । ଜଣେ ସମ୍ରାଟ ଶାନ୍ତନୁ ଓ ଗଙ୍ଗାଙ୍କର ପୁଅ । ଅନ୍ୟ ଜଣେ ମହାରାଣୀ ସତ୍ୟବତୀ ଓ ମହାନ୍ ଋଷି ପରାଶରଙ୍କ ପୁଅ । ଏହି ଉଭୟ ଆର୍ଯ୍ୟାବର୍ତ୍ତରେ, ଆର୍ଯ୍ୟ ଧର୍ମର ମହାନ ଶକ୍ତି ।

'ଠିକ୍ ଭାବୁଛ', ଭାନୁପ୍ରକାଶ କହିଲେ, 'ତୁମ ବାପା ଠିକ୍ ଜାଣନ୍ତି । ଭୀଷ୍ମ ଅତ୍ୟନ୍ତ ଦୃଢ଼ ପ୍ରତିଜ୍ଞ, ଭଗବାନ ପର୍ଶୁରାମଙ୍କର ଶିଷ୍ୟ । ତାଙ୍କର ଶକ୍ତି, ସାହସ, ଧର୍ମ ପ୍ରତି ଆନୁଗତ୍ୟ ଅତୁଳନୀୟ । ତାଙ୍କ ପରି ଯୋଦ୍ଧା ଆର୍ଯ୍ୟାବର୍ତ୍ତରେ ଆଉ କେହି ନାହିଁ । ଭଗବାନ ପର୍ଶୁରାମ ମଧ୍ୟ ନିଜେ ତାଙ୍କର ସମକକ୍ଷ ନୁହନ୍ତି । ବ୍ୟାସଦେବ ଅନ୍ୟ ଭାବରେ ଶକ୍ତିଶାଳୀ – ଚରିତ୍ର, ବିଶ୍ୱାସ, ଧର୍ମଭାବ । ସେ ଆର୍ଯ୍ୟ ଧର୍ମର ରକ୍ଷକ, ଗୁରୁ । ଜରାସନ୍ଧ ସେସବୁ ଜାଣେ । ସେ ଜାଣେ ସେ ଏମାନଙ୍କର ସମକକ୍ଷ ନୁହେଁ । ତା'ର ଉଚ୍ଚାକାଂକ୍ଷାର ଏମାନେ ପ୍ରଧାନ ଅନ୍ତରାୟ । ଏମାନଙ୍କୁ ସେ କୌଣସି ଭାବରେ ପରାସ୍ତ କରିପାରିବ ନାହିଁ । ଏମାନଙ୍କର ସେ ଯଦି କିଛି କ୍ଷତି କରେ ସମଗ୍ର ଆର୍ଯ୍ୟାବର୍ତ୍ତ ଓ ଆର୍ଯ୍ୟାବର୍ତ୍ତର ସବୁ ରାଜାମାନେ ତା'ବିରୁଦ୍ଧରେ ଛିଡ଼ା ହେବେ । ସେଇଥିପାଇଁ କଂସର ଯୋଜନା । କଂସ ସହିତ ତା'ର ଦି' ଝିଅର ବିଭାଘର କେବଳ ବିଭାଘର ନୁହେଁ, ଏ ରାଜନୈତିକ ଖେଳ । କଂସ ନିର୍ଦ୍ଦୟ, ସାହସୀ, ନିଜେ ଉଠିବାକୁ ଚାହେଁ, ଅନ୍ୟମାନଙ୍କ ଉପରେ ଆଧିପତ୍ୟ କରିବାକୁ ଚାହେଁ । ତା'ର ବିଚାର ବୁଦ୍ଧି କମ୍, ତା'ର ଉଚ୍ଚାଭିଳାଷ ଅଛି । କିନ୍ତୁ ସେ ସମଗ୍ର ଆର୍ଯ୍ୟାବର୍ତ୍ତ ସମ୍ପର୍କରେ ନୁହେଁ, କି ଜରାସନ୍ଧ ପରି ଆର୍ଯ୍ୟାବର୍ତ୍ତର ସଂଗଠନ ସମ୍ପର୍କରେ ତା'ର ବିଶେଷ ଜ୍ଞାନ ନାହିଁ । ସେ ଯାହା କିଛି କରିବାକୁ ଚାହେଁ କେବଳ ନିଜ ସମ୍ପର୍କରେ । ସେ ପୃଷ୍ଠପୋଷକ ଚାହେଁ, ଯାହା ସାହାଯ୍ୟରେ ସେ ଉଠି ପାରିବ । ଜରାସନ୍ଧ ଏସବୁ ଜାଣେ ଓ ସେଇଥିପାଇଁ ସେ କଂସକୁ ସେହି ଭାବରେ ତିଆରି କରିବାକୁ ଚାହେଁ । ମଥୁରା ସେହି ପାପ, ଅଧର୍ମର କେନ୍ଦ୍ର ହେବ ଯାହା ସମଗ୍ର ଆର୍ଯ୍ୟଧର୍ମ ଓ ଆର୍ଯ୍ୟ ଜୀବନକୁ ନଷ୍ଟ କରିଦେଇ ପାରିବ ।'


Digitized by srujanika@gmail.com

ଅରିନ୍ଦମ ଭାବୁଥିଲା । ଆର୍ଯ୍ୟ ଧର୍ମ ତା' ପକ୍ଷରେ କିଛି ନୂଆ କଥା ନୁହେଁ । ବାପାଙ୍କ ଠାରୁ ସେ ବିଷୟରେ ସେ ଶୁଣିଛି । ବିଶେଷ କରି ଗଙ୍ଗା ଯମୁନା ଅଞ୍ଚଳରେ ଆର୍ଯ୍ୟମାନେ ବସବାସ କରି ଓ ରାଜ୍ୟ ସ୍ଥାପନା କରି ରହିବାପରେ ବ୍ୟବହାର, ନୀତିନିୟମ ପ୍ରଭୃତିର ଦରକାର ଥିଲା ଓ ମୁନିଋଷିମାନେ ଧର୍ମରାଜ୍ୟର ଆଦର୍ଶ କଥା ଚିନ୍ତା କଲେ । ସେ କହିଲା, 'ମୁଁ ବାପାଙ୍କଠାରୁ ଆର୍ଯ୍ୟଧର୍ମ କଥା ଶୁଣିଛି । ସେ ତ ଚରିତ୍ରର କଥା, ବିଶ୍ୱାସର କଥା । ସେ କ'ଣ ଏତେ ସହଜେ ଭାଙ୍ଗିଯିବା ପରି ବସ୍ତୁ ଯେ ଜରାସନ୍ଧ ଓ କଂସ ତାକୁ ଭାଙ୍ଗିଦେଇ ପାରିବେ ?'

'ନାଁ, ସହଜେ ପାରିବେ ନାହିଁ', ଭାନୁପ୍ରକାଶ କହିଲେ, 'କିନ୍ତୁ ପାରିବେ । ତଛନଛ କରିଦେଇ ପାରିବେ । ମଣିଷ ଚରିତ୍ର ସବୁବେଳେ ତଳକୁ ଯିବାକୁ ଚାହେଁ । ସେମାନେ ତା'ର ସୁଯୋଗ ନେବେ । ସମସ୍ତଙ୍କୁ ଭୟଭୀତ କରି, ଅତ୍ୟାଚାର କରି, ହତ୍ୟା କରି ସେମାନେ ଭୟଙ୍କର ଭୟର ହାୱା ଖେଳାଇ ଦେଇ ପାରିବେ । ଏଇ ମଗଧ ତ ଦେଖୁଛ । ହଜାର ହଜାର ଲୋକ । କାହାର କିଛି କହିବାକୁ ସାହସ ଅଛି । ସମସ୍ତେ ଚୁପ୍ । ଜରାସନ୍ଧ ଯାହା କହିଲା, ଯାହା କଲା ସମସ୍ତେ ମାନି ନଉଛନ୍ତି । ମଥୁରାରେ ବି ତାହାହିଁ ହେବ । ସେହି ଭୟ, ସେହି ଅତ୍ୟାଚାର ।'

ଆହୁରି ଆହୁରି କଥାବାର୍ତ୍ତା ହେଲା । ଆର୍ଯ୍ୟ ଧର୍ମକଥା, ଆର୍ଯ୍ୟ ବସତି କଥା । ଲୋକଧର୍ମ, ଲୋକ ଚରିତ୍ର, ଲୋକଙ୍କର ସାହସ ଓ ନିଷ୍ଠା କଥା । ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ଆଜି ଏସବୁର ବିଚାର କରିବା ଦରକାର ଅଛି । ଜରାସନ୍ଧ ଆର୍ଯ୍ୟ ନୁହେଁ । ଆର୍ଯ୍ୟମାନଙ୍କର ସେ ପ୍ରବଳ ବିରୋଧୀ ଓ ଆର୍ଯ୍ୟମାନଙ୍କର ନୀତି, ନିୟମ, ଧର୍ମ ଓ ବିଚାର ପ୍ରତି ତା'ର ତୀବ୍ର ଘୃଣା । ତଥାପି ତାକୁ ସହ୍ୟ କରି ହୁଅନ୍ତା । କିନ୍ତୁ ବଡ଼ କଥା ସେ ନିଜେ ଅଧର୍ମ । ଅଧର୍ମର ପ୍ରବଳ ତାଡ଼ନାରେ ଧର୍ମ ଲୋପ ପାଇବାକୁ ବସିଛି । କେବଳ ସେ ବା ଖାଲି କଂସ ନୁହେଁ, ଆହୁରି ଅନେକ ଅନେକ ଅଛନ୍ତି । ଅଧର୍ମର ରାସ୍ତା ସହଜ, ଅତ୍ୟନ୍ତ ଲୋଭନୀୟ । କିନ୍ତୁ ଧର୍ମ ନ ରହିଲେ ଆର୍ଯ୍ୟ ଜାତି ବି ରହିବ ନାହିଁ । ଆମେ ଲଢ଼ୁଛୁ ଠିକ୍ । ଆମେ କେତେଦୂର ସଫଳ ହେବୁ ଆମେ ଜାଣୁନା । କିନ୍ତୁ ଲଢ଼ିବାକୁ ହେବ, ଲୋକଙ୍କୁ ସଚେତ କରିବାକୁ ହେବ । ଏହାହିଁ କାମ ।'

ସେଦିନର ଛାଇ ଅନ୍ଧାର ଭିତରେ, ଗୌରୀ ମା'ଙ୍କର ଅଭୟ ଆଶ୍ରୟରେ, ଅରିନ୍ଦମର ମନେ ହେଲା ସେ ଯେପରି ନୂତନ ଜୀବନ ପାଉଛି । ତା'ର ମନ ସହଜ ହୋଇ ଆସୁଛି, ଭୟ ଭାଙ୍ଗି ଭାଙ୍ଗି ଯାଉଛି, ଏମାନଙ୍କର ଦୃଢ଼ତା ଗୋଟାଏ ଅପୂର୍ବ ସୁଗନ୍ଧି ପରି ତା'ର ସାରା ଦେହକୁ ଆଚ୍ଛନ୍ନ କରି ରଖୁଛି । ସେ ଭୁଲିଗଲା ଯେ

ଏମାନଙ୍କର ସାଙ୍ଗରେ ତା'ର ମାତ୍ର ଦୁଇ ତିନି ଦିନର ପରିଚୟ । ଆଉ ସେ ପରିଚୟ ସହଜ, ସ୍ୱାଭାବିକ ଭାବରେ ନୁହେଁ, ହତ୍ୟା ଭୟ ଭିତର ଦେଇ । ଏମାନେ ସାବଧାନ, ସତର୍କ, କିନ୍ତୁ ନିର୍ଭୀକ । କ'ଣ କରିବାକୁ ହେବ, କ'ଣ କହିବାକୁ ହେବ ଏମାନେ ସ୍ପଷ୍ଟ ଭାବରେ ଜାଣନ୍ତି । ସେ ସେମାନଙ୍କୁ ଚାହିଁଲା - ଭାନୁପ୍ରକାଶ, ଭାନୁପ୍ରିୟ ଓ ଆଉ ଦି' ତିନିଜଣ । ଏମାନେ କେଉଁ ରାଜ୍ୟର ଲୋକ, କେଉଁ ଗୋଷ୍ଠୀର ? ଏମାନଙ୍କର ନିଜ ଲୋକ, ପରିବାର ? ତାର ମନେହେଲା ଏସବୁ ଅବାନ୍ତର । ଏମାନେ ସେହି ଲୋକ ଯେଉଁମାନେ ଯୁଗେ ଯୁଗେ ନୂତନ ଜୀବନର ଚିନ୍ତା କରିଛନ୍ତି, ନୂତନ ଜୀବନର ସ୍ୱପ୍ନ ଦେଖିଛନ୍ତି । ସେଥିପାଇଁ କଷ୍ଟ ସହିଛନ୍ତି, ପ୍ରାଣ ବି ଦେଇଛନ୍ତି, କିନ୍ତୁ ଶେଷକୁ ଜିତିଛନ୍ତି ।

ଭାନୁପ୍ରକାଶ ଆସ୍ତେ ଆସ୍ତେ ହସୁଥାଆନ୍ତି । କହିଲେ, 'ଅରିନ୍ଦମ ତୁମେ ଯାହା ଭାବୁଛ ଆମେ ଜାଣୁ । ଆମେ ଯାହା କରୁଛୁ ବା କରିବାକୁ ଚାହୁଁଛୁ ସେ ନିଶ୍ଚୟ କଠିନ, କିନ୍ତୁ ଆଜି ଯଦି ଆମେ କଠିନ କାମ ଭାବି ଡରିଯିବା ତେବେ ଭବିଷ୍ୟତରେ ସେ କାମ କେମିତି ସହଜ ହେବ ? ଆଉ ଭାବ ନା ଆମେ ଖାଲି ଜରାସନ୍ଧକୁ ଭୟ କରୁଚୁ । ସେ ବି ଆମକୁ ଭୟ କରେ । ସେଥିପାଇଁ ତା'ର ଏତେ ଆୟୋଜନ, ସତର୍କତା । ଏ ଖାଲି ଆମ କଥା ନୁହେଁ । ଲୋକମାନଙ୍କର ସାହସ, ଦମ୍ଭ ।'

'ଜରାସନ୍ଧ ବିରୁଦ୍ଧରେ ଛିଡ଼ା ହେବା ପାଇଁ ଲୋକମାନଙ୍କର ଦମ୍ଭ, ସାହସ ହବ କି ?' ଅରିନ୍ଦମ ପଚାରିଲା ।

'ହଁ, ନିଶ୍ଚୟ ହେବ ।' ଭାନୁପ୍ରକାଶ କହିଲେ, 'ଆଜି ଜରାସନ୍ଧ ବିରୁଦ୍ଧରେ, କାଲି କଂସ ବିରୁଦ୍ଧରେ, ଦିନେ ନା ଦିନେ ସବୁ ଅତ୍ୟାଚାରୀ ରାଜାଙ୍କ ବିରୁଦ୍ଧରେ, ସବୁ ଅତ୍ୟାଚାର ବିରୁଦ୍ଧରେ ।'

ଅରିନ୍ଦମ ଭାନୁପ୍ରକାଶଙ୍କର ସ୍ୱରର ଦୃଢ଼ତାରେ ଚମକି ଉଠିଲା । ଏ କୌଣସି ସାଧାରଣ ଲୋକର କଥା ନୁହେଁ, ଦୃଢ଼ଚେତା ଲୋକର କଥା । ଯେଉଁ ଲୋକ ଭବିଷ୍ୟତ ଦେଖିପାରେ । ଯା'ର ଭବିଷ୍ୟତର ଆହ୍ୱାନକୁ ମୁହାଁମୁହିଁ ହବାର ଦମ୍ଭ ଅଛି । ତା' ମନରେ ଆଉ ଗୋଟାଏ କଥା ଉଙ୍କି ମାରୁଥିଲା । ସେ ସେଇକଥା ପଚାରିଲା, 'ଆଚ୍ଛା, ମୋତେ ଆପଣମାନେ ବାଛିଲେ କାହିଁକି ? ହଠାତ୍...'

'ନାଁ, ହଠାତ୍ ନୁହେଁ', ଭାନୁପ୍ରକାଶ କହିଲେ, 'ଆମେ କଂସ କଥା ଶୁଣିଥିଲୁ । ମଥୁରାରେ କିଛି କାମ କରିବା ପାଇଁ ଆମର ଯୋଜନା ଥିଲା । ତା' ପରେ ଜରାସନ୍ଧର ଆୟୋଜନରେ ଆମର ଆଉ ସନ୍ଦେହ ରହିଲା ନାହିଁ ଯେ ଜରାସନ୍ଧ ନିଶ୍ଚୟ କଂସକୁ ତା' କାମ ପାଇଁ ବାଛିବ । ଆମେ ଉଭୟ ଜରାସନ୍ଧ ଓ କଂସ ଉପରେ ନଜର ରଖିଲୁ ।

ତା' ସାଙ୍ଗରେ ଯେତେ ଲୋକ କଂସ ସାଙ୍ଗରେ ଆସିଲେ ସମସ୍ତଙ୍କ ଉପରେ ବି । ତୁମର ମଥୁରା ଶିବିରରେ ଆମର ବହୁତ ଲୋକ ଅଛନ୍ତି । ତେଣୁ ତୁମେ ଯାହା ଭାବୁଛ ହଠାତ୍, ତା' ନୁହେଁ । ଆମେ ଆରମ୍ଭରୁ ତୁମ ଉପରେ ନଜର ରଖିଛୁ । ଆମର ବିଶ୍ୱାସ ତୁମେ ଆମ ସାଙ୍ଗରେ ମିଶିବ । ଆମେ ଯେଉଁ ଶକ୍ତିକୁ ଅପେକ୍ଷା କରି ରହିଛୁ, ତୁମେ ବି ସେହି ଶକ୍ତିକୁ ଅପେକ୍ଷା କରିବ । ଆଉ ସେହି ଶକ୍ତି ମଥୁରାରେ ହିଁ ଆସିବ ।'

'ଆପଣମାନେ କ'ଣ ମଥୁରାକୁ ଯିବେ ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ, 'ତୁମମାନଙ୍କ ସାଙ୍ଗରେ ନୁହେଁ । ତୁମେମାନେ ତ ଏଠୁ ଜରାସନ୍ଧ ସବୁ ବନ୍ଦୋବସ୍ତ କରିବା ସାଙ୍ଗେ ସାଙ୍ଗେ ଫେରିଯିବ । ଆମେ ତା' ପରେ ପରେ ଯିବୁ । ଜରାସନ୍ଧ କଂସକୁ ବେଶୀଦିନ ଯୁବରାଜ ହୋଇ ରହିବାକୁ ପସନ୍ଦ କରିବନି, କଂସ ରାଜା ହେବ । ଖୁବ୍ ଶୀଘ୍ର... ।'

'କିନ୍ତୁ ଉଗ୍ରସେନ... ?' ଅରିନ୍ଦମ ପଚାରିଲା ।

'ଉଗ୍ରସେନଙ୍କୁ ରାଜଗାଦୀ ଛାଡ଼ିବାକୁ ହେବ । କଂସ ଜରାସନ୍ଧର ଜାମାତା ହେବାପରେ ଉଗ୍ରସେନଙ୍କର ମୂଲ୍ୟ କିଛି ନାହିଁ ।' ଭାନୁପ୍ରକାଶ କହିଲେ – 'ଏ ଖାଲି ସମୟର କଥା । କଂସର ଦେବଦ୍ୱିଜରେ ଭକ୍ତି ନାହିଁ । ସେ ପିତାମାତା, ଗୁରୁଜନ କାହାରିକୁ ଖାତିର କରେନା । ତା'ର କୌଣସି କାର୍ଯ୍ୟକୁ ସଂକୋଚ ନାହିଁ । ମଥୁରାର ଲୋକମାନେ ତା ପାଖରେ ନଗଣ୍ୟ । ସେ ମଥୁରାର ରାଜପୁରୁଷ, ସୈନ୍ୟସାମନ୍ତ କାହାରିକୁ ବିଶ୍ୱାସ କରେନା । ଜରାସନ୍ଧର ସୈନ୍ୟସାମନ୍ତ ହିଁ ମଥୁରାକୁ ଯିବେ, ତାକୁ ସାହାଯ୍ୟ କରିବେ । ଅରିନ୍ଦମ, ତୁମକୁ, ତୁମ ବାପାଙ୍କୁ, ଅତି ସାବଧାନରେ ଚଳିବାକୁ ହେବ । ତୁମ ବାପା ଜ୍ଞାନୀ ଲୋକ, ଋଷି ପ୍ରତିମ । ସେ ନିଜକୁ ଠିକ୍ କରିନେବେ । କିନ୍ତୁ ତୁମେ ସତର୍କ ରହିବ । କଂସ ସପକ୍ଷରେ ଆଗ୍ରହୀ ହେବା ଓ ନ ହେବା ଉଭୟ ବିପଦଜନକ । ଆମର ଇଚ୍ଛା ତୁମେ କୌଣସି ଗୋଳମାଳରେ ନ ପଶିବା ଭଲ । ଆମେ ଚାହୁଁ ତୁମେ ସ୍ଥିର ଭାବରେ ଧୈର୍ଯ୍ୟ ଧରି ରହିବା ଦରକାର । ମନେରଖ, ଜରାସନ୍ଧର ରାଜତ୍ୱଠାରୁ କଂସର ରାଜତ୍ୱ ଆହୁରି ବିଭତ୍ସ ହେବ । କାରଣ ଜରାସନ୍ଧ ବୟସ୍କ ଲୋକ, ସାବଧାନ, ସତର୍କ । ଆର୍ଯ୍ୟ ରାଜାମାନଙ୍କ ସମ୍ପର୍କରେ ସେ ହୁ ହା କିଛି କରିବାକୁ ଚାହେଁ ନା । କିନ୍ତୁ କଂସ ବୟସରେ କମ୍ । ଅତ୍ୟନ୍ତ ଉଚ୍ଚାଭିଳାଷୀ । ନିଜ ଛଡ଼ା ସେ କାହାରିକୁ ଗୁରୁତ୍ୱ ଦିଏନା । ତା'ର କୌଣସି ନୀତିନିୟମ ନାହିଁ । ବର୍ତ୍ତମାନ ଜରାସନ୍ଧର ସାହାଯ୍ୟ ପାଇ ସେ ସବୁ ପ୍ରକାର ଅନୀତି କରିବାକୁ ଚେଷ୍ଟା କରିବ ।'

ରାତି ଆହୁରି ବଢ଼ିଗଲାଣି, ସନ୍ଧ୍ୟାର ଗାଢ଼ ଅନ୍ଧାର ଟିକେ ଟିକେ ପରିଷ୍କାର ହୋଇ ଆସୁଛି । ଶିବିରମାନଙ୍କର ଗୋଳମାଳର ଶବ୍ଦ ବି ଆଉ ବିଶେଷ ଶୁଭୁନାହିଁ ।


Digitized by srujanika@gmail.com

ଗୌରୀମା'ଙ୍କର ପହଡ଼ ପଡ଼ିବ । ମନ୍ଦିରର ଦୀପଶିଖା ପୂର୍ବପରି ଉଜ୍ଜ୍ୱଳ ହୋଇ ଜଳୁଛି । ଚାରିପାଖର ଜଙ୍ଗଲରେ ପୂର୍ବପରି ରାତି ଚଢ଼େଇ ଓ ଜୀବଜନ୍ତୁଙ୍କର ଡାକ । ଭାନୁପ୍ରକାଶ କହିଲେ – 'ଅରିନ୍ଦମ, ତୁମେ ବର୍ତ୍ତମାନ ଶିବିରକୁ ଫେରିବା ଦରକାର ନାହିଁ । ବର୍ତ୍ତମାନ ଏଇଠି ରୁହ । ଆମେ ସମସ୍ତେ ଅଛୁ । ପାହାନ୍ତା ଆଗରୁ ଆମେ ଶିବିରରେ ଛାଡ଼ିଦେଇ ଆସିବୁ । କିଛି ଅସୁବିଧା ହେବନାହିଁ ।'

...ଅରିନ୍ଦମର ମନ ମଥୁରାର ରାଜନଅର ଭିତରକୁ ପୁଣି ଥରେ ଫେରିଆସିଲା । ନଅରର ସିଂଦରଜା ପାଖରେ ସିପେହୀ ଜଗିଛନ୍ତି । କାହାରିକୁ ଛାଡୁନାହାନ୍ତି । ସେ ଓ ବାପା ସିଂଦରଜା ଟପି ନଅର ଭିତରକୁ ପଶି ଆସିଲେ । କିନ୍ତୁ ଏତେ ସକାଳୁ ବି ସେଠି ଅନେକ ଲୋକ ଆସି ଜମିଲେଣି । ପାଟିଗୋଳ ହେଉଛି । ଲୋକେ ଧସେଇ ପଶିବାକୁ ଚାହୁଁଛନ୍ତି । ସିପେହୀମାନେ ଠେଲାପେଲା କରୁଛନ୍ତି । ମଝିରେ ମଝିରେ ପିଟାପିଟି ବି ବୋଧେ କରୁଛନ୍ତି । ବାପା ଦରବାର ଭବନ ଭିତରକୁ ପଶିଗଲେଣି । ତା'ର ବି ଯିବାକୁ ଇଚ୍ଛା ଥିଲା । କିନ୍ତୁ ସିପେହୀମାନେ ବାଧା ଦେଲେ । ବାପା ବି ମନା କଲେ । ସେ ବାହାରେ ଛିଡ଼ା ହୋଇ ଚାରିପାଖକୁ ଚାହିଁଲା । ରାଜନଅର ହତା ଖୁବ୍ ବଡ଼ ନ ହେଲେ ବି ବେଶ୍ ବଡ଼ । ମଝିରେ ମଝିରେ ଗଛ ବୃକ୍ଷ, ବସିବାକୁ ଜାଗା, ପ୍ରଶସ୍ତ ପରିଷ୍କାର ଘାସ ପଡ଼ିଆ । ପିଲାଦିନେ ସେ, କଂସ ଓ ଆହୁରି ଅନେକ ଏଇଠି ଆସି ଖେଳାଖେଳି କରୁଥିଲେ । ଏଇଠି କଂସ ଘୋଡ଼ାଚଢ଼ି ଶିଖିଛି । ଗୋଟାଏ ପାଖକୁ କୁସ୍ତି ଘର, କଂସ କୁସ୍ତି ଶିଖେ, ସେମାନେ ବି କିଛି କିଛି ଶିଖିଚନ୍ତି । କିନ୍ତୁ ବଡ଼ ହେଲାପରେ ସେମାନେ ସବୁ ରାଜନଅର ହତା ଭିତରକୁ ଖୁବ୍ ବେଶୀ ଆସନ୍ତିନି । କଂସ ତା'ର ଏକା ଏକା କ'ଣ ସବୁ କରେ । ସେଦିନ ସେହି ପ୍ରଶସ୍ତ ଜାଗାଟାରେ ଏଠି ସେଠି ଅନେକ ସିପେହୀ । ଖେଳାମେଳା ହୋଇ ନୁହେଁ । ପ୍ରସ୍ତୁତ ହେଲାପରି, ହାତରେ ଅସ୍ତ୍ରଶସ୍ତ୍ର ଧରି, ଧାଡ଼ି ଧାଡ଼ି ହୋଇ ଛିଡ଼ା ହୋଇଛନ୍ତି – ସାବଧାନ, ସତର୍କ, ଯେପରି କାହାକୁ ଜଗି ରହିଛନ୍ତି, ସାମାନ୍ୟ ଇଙ୍ଗିତରେ ଯାହା କରିବା କଥା କରିବେ । ବିଶେଷ କରି ମଗଧର ସେହି ଅଦ୍ଭୁତ, ଭୟଙ୍କର ସିପେହୀ ସବୁ, ଯେଉଁମାନଙ୍କୁ ସେ କଂସ ସୂର୍ଯ୍ୟସଂକାଶ କୁସ୍ତିବେଳେ ପ୍ରଥମେ ଦେଖିଥିଲା । ଲମ୍ବା ଲମ୍ବା, ମୋଟା ମୋଟା, ହାତରେ ଖଣ୍ଡାସବୁ ଚକ ଚକ କରୁଛି । ଆଖି ଲାଲ ଲାଲ, ବଡ଼ ବଡ଼, ଚକ ପରି ବୁଲୁଚି, ପ୍ରଚୁର ମଦ ପିଇଛନ୍ତି ବୋଧେ, କୁହାଟ ମାରିବା ବେଳେ ଦୁର୍ଗନ୍ଧ ଚାରିଆଡ଼କୁ ଖେଳିଯାଉଛି । ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ମଗଧର ଏହି ରାକ୍ଷସ

ସିପେହୀମାନଙ୍କୁ କାହିଁକି ଅଣାଯାଇଛି । କଂସ ନିଶ୍ଚୟ ଆଣିଛି । କିନ୍ତୁ କାହିଁକି ? ଏଇ କିଛିଦିନ ତଳେ କଂସ ନିଜର ଶଶୁର ଜରାସନ୍ଧଙ୍କ ପାଖକୁ ଯାଇଥିଲା । ସିଧାସିଧା ଯାଇ ସିଧାସିଧା ଆସିଲା । ସେତେବେଳେ ଏମାନେ ବି ନ ଥିଲେ । ଏମାନେ ଜରାସନ୍ଧଙ୍କର ସମ୍ପୂର୍ଣ୍ଣ ଭାବରେ ବ୍ୟକ୍ତିଗତ ସିପେହୀ । ଏମାନେ ଆସିବା କଥା ନୁହେଁ । ଅରିନ୍ଦମ ଚାରିଆଡ଼କୁ ଚାହିଁଲା । ସେମାନେ ବେଶ୍ କିଛି ଆସିଛନ୍ତି । ସେମାନେ ମଗଧର ସିପେହୀଙ୍କ ପରି ଚୁପ୍‌ଚାପ୍ ଛିଡ଼ା ହୋଇନାହାନ୍ତି । ତିନି ଚାରି ଏକାଠି ହୋଇ ଘୂରି ବୁଲୁଛନ୍ତି । ମଗଧର ସିପେହୀମାନଙ୍କ ସାଙ୍ଗରେ କଥାବାର୍ତ୍ତା ନାହିଁ, ସେମାନଙ୍କ ପ୍ରତି ସମ୍ପୂର୍ଣ୍ଣ ଅବହେଳାର ଭାବ । ତିନିଚାରି ଜଣ ତା ପାଖକୁ ଲାଗି ଆସିଲେ, କିଛି ସମୟ ତାକୁ ଚାହିଁଲେ, ତା'ପରେ ଚାଲିଗଲେ । ଅରିନ୍ଦମ ପରେ ଶୁଣିଛି ଏମାନେ ମଗଧର ସାଧାରଣ ସିପେହୀମାନଙ୍କଠାରୁ ବି ଅଲଗା । ଏମାନେ କିଛି ନୀତିନିୟମ ମାନନ୍ତି ନାହିଁ, ଅତ୍ୟନ୍ତ ନୃଶଂସ, ଏକମାତ୍ର ଜରାସନ୍ଧଙ୍କର ଆଦେଶରେ ହିଁ ଯାହା କରିବା କଥା କରନ୍ତି । ମଗଧର ଲୋକମାନେ ବି ସେମାନଙ୍କୁ ଯମ ପରି ଭୟ କରନ୍ତି । ଏମାନେ ଆଜି ଏଠି କାହିଁକି ? ମନେହେଲା ଏ କେବଳ କଂସ ନୁହେଁ, ଆ ପଛରେ ଜରାସନ୍ଧଙ୍କର କିଛି ଯୋଜନା ଅଛି । ମନ ପୁଣି ଭାନୁପ୍ରକାଶଙ୍କ ପାଖକୁ ଫେରିଗଲା । ସେ କହିଥିଲେ କଂସ ଶୀଘ୍ର ରାଜା ହେବ । ଏ ସେପରି କିଛି ନୁହେଁ ତ ? ଦିନ ବଢ଼ିବା ସାଙ୍ଗେ ସାଙ୍ଗେ ପାଟିଗୋଳ ବି ବଢ଼ିବାକୁ ଆରମ୍ଭ କଲାଣି । ନଅର ହତା ବାହାରୁ ବେଶୀ ବେଶୀ ପାଟିଗୋଳ ଶୁଭୁଛି । ନଅର ଭିତରେ ସିପେହୀମାନେ, ବିଶେଷ କରି ଜରାସନ୍ଧଙ୍କର ସେହି ଲୋକମାନେ ଯେପରି ଆହୁରି ସତର୍କ, ସାବଧାନ ହୋଇ ଉଠିଛନ୍ତି । ସେ ଚୁପ୍ କରି ଗୋଟିଏ ଗଛ ମୂଳେ ଛିଡ଼ା ହେଲା । ସେ ଦରବାର ଭବନ ଭିତରକୁ ପଶିଯାଇଥିଲେ ଯାଇଥାନ୍ତା । କିନ୍ତୁ ଏଠି ଏ ଖୋଲା ପଡ଼ିଆରେ ଏପାଖ ସେପାଖ ହେବା ଦରକାର ନାହିଁ । ଜରାସନ୍ଧଙ୍କର ଏ ଲୋକଗୁଡ଼ାଙ୍କୁ ବିଶ୍ୱାସ ନାହିଁ ।

ଅରିନ୍ଦମ ଚୁପଚାପ ଛିଡ଼ା ହୋଇ ରହିଲା । ଚାରିପାଖକୁ ଦେଖୁଥାଏ । ଚାରିପାଖରେ ପବନ ଗୁମ୍‌ସୁମ୍ । କିଛି ଯେପରି ଘଟୁଛି, ଏହିପରି ଅନୁଭବ । ଲକ୍ଷ୍ୟ କଲା ଦରବାର ଭବନ ଭିତରୁ ଜଣେ ଜଣେ ଦି ଦି ଜଣ ବାହାରି ଆସୁଛନ୍ତି । କଥାବାର୍ତ୍ତା ନାହିଁ, ଚୁପଚାପ । ସମସ୍ତେ ଆସ୍ତେ ଆସ୍ତେ ଫାଟକ ଆଡ଼କୁ ଚାଲିଯାଉଛନ୍ତି । ହଁ, କିଛି ଲୋକେ ଚିହ୍ନା, ବିଶେଷ କରି ମୁଖିଆମାନଙ୍କୁ ସେ ଦୂରରୁ ଦେଖିଛି । କିନ୍ତୁ କାହାରି ମୁହଁରେ ସକାଳର ଖୋଲାମେଲା ଭାବ ନାହିଁ । ମୁହଁ ଶୁଖିଯାଇଛି । ଆଖି ସହଜ ନୁହେଁ, ଡରଡ଼ର ଭାବ । ଅରିନ୍ଦମ ବୁଝିପାରିଲା ନାହିଁ,


Digitized by srujanika@gmail.com

କଅଣ ଘଟିଲା । ବାପା ବି ବାହାରି ନାହାନ୍ତି । ସେ ଭାବିଲା ଭିତରକୁ ଯିବ କି ? ମନେହେଲା ଜଣେ ଲୋକ ତା ପାଖକୁ ଲାଗି ଆସୁଛି । ଦୋ ଦୋ ଚିହ୍ନା ଲାଗିଲା । 'ଏଠି କାହିଁକି ଛିଡ଼ା ହୋଇଛ ?' - ସେ ଚମକି ଉଠିଲା ? ଏ ସ୍ୱର ତ ଚିହ୍ନା ଚିହ୍ନା । ସେ ବୁଲି ଚାହିଁବା ବେଳକୁ ଲୋକଟି ତାକୁ ଛାଡ଼ି ଆଗେଇଗଲାଣି । ଅରିନ୍ଦମ ବୁଝିପାରିଲା ନାହିଁ । ଏ ଲୋକଟି କହିଲା ନାଁ ତା ନିଜର ଭାବନା ମନ ଭିତରୁ ବାହାରି ପଡ଼ିଲା । କିନ୍ତୁ ତା'ର ବାରମ୍ବାର ମନେହେଲା ଏ ସ୍ୱର ତା'ର ଚିହ୍ନାସ୍ୱର । ସେହି ଗୌରୀ ମା'ଙ୍କ ମନ୍ଦିର, ଅଧା ଛାଇ ଅଧା ଆଲୁଅ, ରାତି ଅଧିଆ ସେହି ଆଲୋଚନା, ବିଚାର । ସେ ରାତିରେ ମନ୍ଦିରରେ ହିଁ ରହିଥିଲା । କେହି ଶୋଇ ନ ଥିଲେ । ସେମାନଙ୍କର କଥାବାର୍ତ୍ତାରୁ ତା'ର ତରୁଣ ମନରେ ଯାହା କ୍ରମଶଃ ସ୍ପଷ୍ଟହୋଇ ଉଠୁଥିଲା ସେ ସମଗ୍ର ଆର୍ଯ୍ୟ ଜୀବନର ଚିତ୍ର, ସମଗ୍ର ଆର୍ଯ୍ୟାବର୍ତ୍ତର କଥା । ସେ ବାପାଙ୍କ ଠାରୁ କିଛି କିଛି ଶୁଣିଥିଲା । ସେ ନିଜେ ଆର୍ଯ୍ୟ । ମୁନିଋଷିମାନଙ୍କର ନିଷ୍ଠା, ପବିତ୍ରତାରୁ ତା'ର ଜନ୍ମ, ବାପା ଏକଥା ବାରମ୍ବାର କହୁଥିଲେ । କିନ୍ତୁ ଏମାନଙ୍କର ଦୃଷ୍ଟି ବ୍ୟାପକତର, ବହୁତ ବହୁତ ଦୂରକୁ ଲମ୍ବି ଯାଇଛି । କେବଳ ଆର୍ଯ୍ୟ ହେବା ଯଥେଷ୍ଟ ନୁହେଁ । ଆର୍ଯ୍ୟର ଧର୍ମ ରକ୍ଷା କରିବା କର୍ତ୍ତବ୍ୟ, ଆର୍ଯ୍ୟ ଭାବରେ ବଞ୍ଚିରହିବା ହିଁ ବଡ଼ କଥା । ଏ କେବଳ ଧର୍ମର କଥା ନୁହେଁ, ଚରିତ୍ରର କଥା, ନିଷ୍ଠା, ସତତା, ଆନ୍ତରିକତାର କଥା । ବାରମ୍ବାର ଏଥିରେ ବ୍ୟାଘାତ ଘଟିଛି, ମୁନିଋଷିମାନଙ୍କୁ ମାରି ଦିଆଯାଇଛି । ଯାହା ଅନ୍ଧାର ପରି ବାରମ୍ବାର ଘୋଟି ଆସିଛି ସେ ସ୍ୱାର୍ଥ, ଲୋଭ, ମୋହ, ଅସଚ୍ଚରିତ୍ର, ଆଧିପତ୍ୟ କରିବାର ମନୋଭାବ । ସେଦିନ ରାତି ଅଧରେ ଏସବୁ ଶୁଣୁ ଶୁଣୁ ଅରିନ୍ଦମର ଯେପରି ଅ ଆ କ ଖ ପଢ଼ିଲା ପରି ପାଠ ପଢ଼ିବା ଆରମ୍ଭ ହେଲା । ସେ ବୁଝିଲା ଏ କେବଳ ଧର୍ମ ଅଧର୍ମ, ଚରିତ୍ର ଚରିତ୍ରହୀନତା ବା ସ୍ୱାର୍ଥ, ଲୋଭ ମୋହର କଥା ନୁହେଁ, ଯଦିଚ ଏସବୁ ଯେ କୌଣସି ବିଚାରର ମୂଳକଥା । ବର୍ତ୍ତମାନ ସାରା ଆର୍ଯ୍ୟାବର୍ତ୍ତକୁ ରାକ୍ଷସର ଆଁ ପରି ଯାହା ଗିଳିଦେବାକୁ ବସିଲାଣି ସେ ଭୟଙ୍କର ରାଜନୀତି, ରାଜ୍ୟ ଓ ରାଜତ୍ୱର ଲୋଭ, ଧର୍ମର ବିଚାର ନୁହେଁ ଅଧର୍ମର ବିଚାର ହିଁ ମୁଖ୍ୟ, ଓ ଏହି ଅଧର୍ମର ମୂଳ ପିଣ୍ଡ ଜରାସନ୍ଧ ଓ ତା'ର ସୃଷ୍ଟି କଂସ । ପର୍ଶୁରାମ ଏହି ଅଧର୍ମ ବିରୁଦ୍ଧରେ ଯୁଦ୍ଧ କରିଥିଲେ, ଧର୍ମ ସଂସ୍ଥାପନା ପାଇଁ ନେତୃତ୍ୱ ଦେଇଥିଲେ । କିନ୍ତୁ ସେ ଆଜି ଶକ୍ତିହୀନ । ଆଜି ଆର୍ଯ୍ୟାବର୍ତ୍ତକୁ ଅଧର୍ମ ଓ ଭୟର ପ୍ରବଳ ଘୂର୍ଣ୍ଣିରୁ ରକ୍ଷା କରିବା ପାଇଁ ଆଉ ଗୋଟାଏ ଶକ୍ତି ଦରକାର ।

ଅରିନ୍ଦମ ଏହିପରି ଭାବରେ କେତେ ସମୟ ଛିଡ଼ା ହୋଇ ରହିଥିଲା ତା'ର ମନେ ନାହିଁ । ତେବେ ଗୋଟାଏ କଥା ତା'ର କ୍ରମେ ମନେହେଲା । ତା'ର ସେପରି

ଭାବରେ ଛିଡ଼ା ହୋଇ ରହିଥିବା କେତେକ ଲୋକ ଦେଖିଲେଣି । ସିପେହୀମାନେ ମଝିରେ ମଝିରେ ତା' ଆଡ଼କୁ ଚାହୁଁଛନ୍ତି । ବିଶେଷ କରି ସେଇ ଯେ ରାକ୍ଷସ ପରି ଜରାସନ୍ଧର ସିପେହୀମାନେ ଯେ ଦି'ଜଣ ତିନିଜଣ ଏଠି ସେଠି ବୁଲୁଛନ୍ତି ସେମାନେ ବି ନଜର ଦେଲେଣି । ଏହିପରି ଭାବରେ ଛିଡ଼ା ହୋଇ ରହିବାଟା ନିରାପଦ ନୁହେଁ, ସେ ବୁଝିଲା । ତା' ଛଡ଼ା ବାପା ବି କାହିଁ ଦରବାର ଘର ଭିତରୁ ବାହାରୁ ନାହାନ୍ତି । ଆଉ କ'ଣ ବା ଏମିତି ଭୟଙ୍କର ଘଟିପାରେ ସେ ଭାବି ପାରିଲା ନାହିଁ । ସକାଳର ଛାଇଛାଇଆ ଅନ୍ଧାର କଟିଗଲାଣି । ଦିନ ସ୍ପଷ୍ଟ ହେଲାଣି । ଅଳ୍ପ ଅଳ୍ପ ପବନ ଦେଉଛି । ଚଢ଼େଇମାନେ ଡିଆଁଡ଼େଇଁ ଆରମ୍ଭ କଲେଣି । ଗୋଟାଏ ପାଖ କରମଳା ଗଛର ସବୁଜ ପତ୍ର ଭିତରେ ନେସି ହୋଇଯାଇ ଦଳେ ଶୁଆ ଟପଟପ କରି କରମଳା ଫଳ ଖାଉଛନ୍ତି ଓ ତଳକୁ ଫିଙ୍ଗୁଛନ୍ତି । ଟିକିଏ ଦୂର ତାଳ ଗଛ ଆଗରେ ସୂର୍ଯ୍ୟକିରଣ ଲାଗିଲାଣି । ଆକାଶ ଉଜ୍ଜ୍ୱଳ । ଦୂର ଗଛ ଗହଳର କୁହୁଡ଼ି ବି କଟିଗଲାଣି । ସେ ଭାବିଲା ନାଁ ଏପରି ଭାବରେ ଛିଡ଼ା ହୋଇ ରହିବା ଠିକ୍ ନୁହେଁ । ସେ ଦରବାର ଘର ଆଡ଼କୁ ଆସ୍ତେ ଆସ୍ତେ ଆଗେଇଲା । ବେଶୀ ବାଟ ଯିବାକୁ ହେଲା ନାହିଁ । ଦେଖିଲା ଦି'ଜଣ କିଏ ନିଜ ଭିତରେ କଥାବାର୍ତ୍ତା କରି ଆଗେଇ ଆସୁଛନ୍ତି । ସେମାନେ ପାଖ ହେଲେ । ମନେହେଲା ଚିହ୍ନା ଚିହ୍ନା । ସେ ଛିଡ଼ା ହୋଇଗଲା । ସେମାନେ ବି ଛିଡ଼ା ହେଲେ । ଅରିନ୍ଦମକୁ ଚାହିଁଲେ । ପଚାରିଲେ, 'କୁଆଡ଼େ ଯାଉଛ ? ଦରବାର ଘର ଭିତରକୁ ନ ଯିବା ଭଲ, ଘରକୁ ଫେରିଯାଅ ।' 'କିନ୍ତୁ ବାପା ଯେ ଭିତରେ ଅଛନ୍ତି ।' ସେ କହିଲା । 'ଥାଆନ୍ତୁ', ଜଣେ କହିଲେ, 'ବାପା ଉଗ୍ରସେନଙ୍କ ପାଖରେ ରହିବା ଭଲ । ରାଜା କଂସ ସେଇଆ ଚାହାନ୍ତି ।' 'ରାଜା କଂସ !' ଅରିନ୍ଦମ ଚମକି ପଡ଼ିଲା । 'ହଁ, ରାଜା କଂସ, ଉଗ୍ରସେନ ଆଉ ରାଜା ନୁହନ୍ତି । ରାଜା କଂସ ।' ସେମାନେ ଚାଲିଗଲେ । କେବଳ ପୁଣି ଥରେ କହିଲେ, 'ଘରକୁ ଫେରି ଯାଅ, ଚୁପ ରୁହ, ବାପା ଠିକ୍ ସମୟରେ ଘରକୁ ଫେରିବେ ।'

ଚକଚକ ହୋଇ ସବୁକଥା ଅରିନ୍ଦମ ମନରେ ଖେଳିଗଲା । ଆଶ୍ଚର୍ଯ୍ୟ, କେତେ ସ୍ପଷ୍ଟ ଭାବରେ, ସବୁ କଥା ଜାଣିଲା ପରି, ମଗଧର ତା'ର ବନ୍ଧୁମାନେ ତାକୁ ଏକଥା କହିଥିଲେ । 'ଖୁବ୍ ଶୀଘ୍ର ଉଗ୍ରସେନଙ୍କୁ କାଢ଼ିଦେଇ କଂସ ମଥୁରାର ରାଜା ହେବ । ଏହାହିଁ ଖେଳ । ଖେଳ ଆରମ୍ଭ ହୋଇଗଲା ।' ଭାନୁପ୍ରକାଶ କହିଥିଲେ - 'ତୁମେ ଭାବୁଛ ବିନା ସ୍ୱାର୍ଥରେ ଜରାସନ୍ଧ ତା'ର ଦି'ଝିଅଙ୍କୁ କଂସକୁ ବିଭା ଦେଉଛି । କଂସ କିଏ କି ? ଆଉ ମନେରଖ, ବିଭସ୍ତତାରେ କଂସ ଜରାସନ୍ଧକୁ ଟପିଯିବ । ଜରାସନ୍ଧ ଗୋଟାଏ ଢାଲ ଚାହେଁ । କଂସ ସେହି ଢାଲ । ସେ ଢାଲ ଥିବା ପର୍ଯ୍ୟନ୍ତ ସେ


Digitized by srujanika@gmail.com

ନିରାପଦ ।’ ‘ଖାଲି ସେତିକି ନୁହେଁ ।’ ଭାନୁପ୍ରିୟ ଭାନୁପ୍ରକାଶଙ୍କ ସାଙ୍ଗରେ କଥା ମିଶେଇ ଥିଲେ, ‘କଥା ସେତିକିରେ ରହିବ ନାହିଁ । ଆହୁରି ଆଗକୁ ଆଗକୁ ଘଟଣା ଘଟିବ ।’ ଭାନୁପ୍ରକାଶ ପୁଣି କହିଥିଲେ, ‘ଏ ଜଣେ ନୁହେଁ, ଉଭୟ, କଂସ ଓ ଜରାସନ୍ଧ, ଉଭୟ ଧର୍ମର ପ୍ରଧାନ ଶତ୍ରୁ । ଉଭୟ ଭୟଙ୍କର ଚତୁର, ଉଭୟଙ୍କର ଭୟଙ୍କର ଉଚ୍ଚାକାଂକ୍ଷା । ଆମେ ଜଣକ ବିରୁଦ୍ଧରେ ଲଢୁଥିଲୁ । ବର୍ତ୍ତମାନ ଦୁହିଁଙ୍କ ବିରୁଦ୍ଧରେ ଲଢ଼ିବାକୁ ପଡ଼ିବ ।’

କିନ୍ତୁ ଅରିନ୍ଦମ ଘରକୁ ଫେରିଲା ନାହିଁ । ଦରବାର ଘର ଭିତରକୁ ବି ଗଲା ନାହିଁ । ସେ ସେହିପରି ନ ଯିବା ନ ରହିବା ଅବସ୍ଥାରେ ସେଇଠାରେ ଛିଡ଼ା ହୋଇ ରହିଲା । ସେ ସ୍ପଷ୍ଟ ଭାବରେ ଭାବି ପାରୁନାହିଁ । ଏ ଗୋଟାଏ ଅଭାବିତ ଘଟଣା । ଯେତେ ଆଗରୁ ଆଶଙ୍କା କରୁଥିଲେ ବି ସହଜରେ ଗ୍ରହଣ କରି ହେବନାହିଁ । ଏ କେମିତି କଥା । ଉଗ୍ରସେନ ବୟସ୍କ ଲୋକ, ଗୁରୁଜନ, ପିତା, ଅତ୍ୟନ୍ତ ସମ୍ମାନନୀୟ । ଏ ତ ତାଙ୍କ ସମାଜର ଚଳଣି ନୁହେଁ । ବାପା ଥାଉଁ ଥାଉଁ ପୁଅ ତାଙ୍କୁ ବାହାର କରି ନିଜେ ଗାଦି ମାଡ଼ି ବସିବ । ସେ ତ ଦିନେ ରାଜା ହୋଇଥାନ୍ତା । ସେ ତ ବର୍ତ୍ତମାନ ଯୁବରାଜ । ହଠାତ୍ ତା’ର ଗୋଟାଏ କଥା ମନେହେଲା । ଉଗ୍ରସେନ ନିଜେ ଗାଦି ଛାଡ଼ିଦେଇ ନାହାନ୍ତି ତ ! କିନ୍ତୁ ତା ହୋଇଥିଲେ ସେ ତ ଖୋଲାଖୋଲି ହୋଇଥାନ୍ତା । ସମସ୍ତେ ଜାଣିଥାନ୍ତେ, ସମସ୍ତେ ଆସିଥାନ୍ତେ । ଏତେ ସିପେହୀର ଦରକାର କ’ଣ ? ପୁଣି ଜରାସନ୍ଧର ସେ ରାକ୍ଷସ ସିପେହୀ ! ଲୋକଙ୍କୁ ସିଂହ ଦରଜାରୁ ପିଟି ତଡ଼ି ଦିଆଯାଉଛି କାହିଁକି ? ଚାରିଆଡ଼େ ନାଲି ଆଖି ଦେଖାଇବାର ଭାବ, ଭୟ, ଯେପରି କିଛି ଗୋଟାଏ ଜବରଦସ୍ତ କରାଯାଉଛି । ଯାହା ହବାର କଥା ନୁହେଁ ସେଇକଥା ଘଟୁଛି । ଅରିନ୍ଦମର ଚିନ୍ତା ଗୋଳିଆମିଶା ହୋଇଗଲା । ବାପା ଏତେ ସମୟ କ’ଣ କରୁଛନ୍ତି ? ସେ ସ୍ଥିର କଲା ଦରବାର ଘର ଭିତରକୁ ଯିବ । ଦେଖିଲା ଆଉ ଦି’ଜଣ କିଏ ବାହାରି ଆସୁଛନ୍ତି । କଥାବାର୍ତ୍ତା ନାହିଁ, ଚୁପ୍‌ଚାପ୍, ମୁହଁ ଗମ୍ଭୀର ଦିଶୁଛି । ସେ ଚିହ୍ନିଲା, ଦୁଇଜଣ ମୁଖିଆ । ସେ ପାଖକୁ ଲାଗିଗଲା । ସେମାନେ ବି ଅରିନ୍ଦମକୁ ଦେଖିଲେ, ଛିଡ଼ା ହେଲେ । ଅରିନ୍ଦମ ନମସ୍କାର କଲା । ଜଣେ କହିଲେ, ‘ଅରିନ୍ଦମ, କୁଆଡ଼େ ଯାଉଛ ? ତମ ସାଙ୍ଗର କୀର୍ତ୍ତି ଦେଖିବାକୁ ?’ ଅରିନ୍ଦମ କିଛି ନ କହି ଚୁପ୍ ରହିଲା । ଅନ୍ୟ ଜଣକ କହିଲେ, ‘ଅରିନ୍ଦମ କ’ଣ କରିବ ? ତା’ର କି ଚାରା ଅଛି ? ସେ ତ ଆମ ପରି, ଆମେ ସବୁ ନପୁଂସକ, ଆମେ ଯଦି ସମସ୍ତେ ଏକାଠି ଛିଡ଼ା ହୋଇଥାନ୍ତେ, କହିଥାନ୍ତେ ଏ ହେବ ନାହିଁ–’... ‘କ’ଣ ହେଇଥାନ୍ତା ? ଆମ ସମସ୍ତଙ୍କୁ ଡରି ଯାଇଥାଆନ୍ତା ? ନୁହେଁ ? ତା’ହେଲେ ଏତେ ଦିନ ଏ ଦୁର୍ବିନୀତ ଲୋକଟାକୁ

ସହ୍ୟ କରିଥିଲ କାହିଁକି ? ଆଉ ଆଜି ଆମ ଭିତରୁ ଏତେ ଲୋକ ତାକୁ ଘେରି ବସିଛନ୍ତି କାହିଁକି ? ଡରେଇବାକୁ ନାଁ ଖୋସାମତି କରିବାକୁ ? କଂସ ଠିକ୍ ଜାଣିଛି । ଏ ଜରାସନ୍ଧ ରାକ୍ଷସଗୁଡ଼ାଙ୍କୁ ଦେଖ । ଆମର କ'ଣ ସିପେହୀ ନାହାନ୍ତି ? ସେଗୁଡ଼ା କ'ଣ କରୁଛନ୍ତି ଏଠି ? ସେ ଜାଣେ ଆମର ପିଉ ନାହିଁ । ସେ ଠିକ୍ କାମ କଲା ।'

ଅରିନ୍ଦମ ଡରି ଡରି ପଚାରିଲା, 'ଉଗ୍ରସେନ ଠିକ୍ ଅଛନ୍ତି ତ ? ସେ କ'ଣ ଛାଆଁ ଛାଆଁ ଗାଦି ଛାଡ଼ିଦେଲେ ?' 'ଆରେ ଛାଆଁ କ'ଣ, ଅଛାଆଁ କ'ଣ ? କେହି କ'ଣ ଗାଦି ଛାଆଁ ଛାଆଁ ଛାଡ଼େ ? ଆଉ ସେ ଗାଦି ଛାଡ଼ିବେ କାହିଁକି ? ସେ ତ ରାଜା । ସୁସ୍ଥ ସବଳ ଅଛନ୍ତି । ଯେତେବେଳେ ସେ ସମୟ ଆସି ପହଞ୍ଚିବ ସେ ଅନ୍ୟକଥା'– ମୁଖିଆ ଜଣକ କିଛି ସମୟ ଚୁପ୍ ରହି ପୁଣି କହିଲେ – 'କଥା ସେଠି ନୁହେଁ । କଂସ ରାଜା ହେବାରେ ଆପତ୍ତି ନାହିଁ । ସେ ତ ଯୁବରାଜ । ଦିନେ ନା ଦିନେ ରାଜା ହେବ । କିନ୍ତୁ ସବୁ କଥାର ସମୟ ଅଛି । ସବୁ କଥାର ଧାରା ଅଛି । ଆମେ ତ ଆଉ ଅନାର୍ଯ୍ୟ ଜାତି ହୋଇନାହୁଁ । ଆମର ହିସାବ କିତାବ ଅଛି, ନିୟମକାନୁନ ଅଛି । ଏ ଠିକ୍ ହେଲାନି ।'

ମୁଖିଆମାନେ ଯେ ଯାହା ଘଟିଲା ତାକୁ ପସନ୍ଦ କରୁନାହାନ୍ତି, ବିରକ୍ତ, ଅରିନ୍ଦମ ବୁଝି ପାରୁଥାଏ । କଂସ ରାଜା ହେଲା ଏକଥା ବି ବୁଝି ହେଉଥାଏ । କିନ୍ତୁ ଏ ହଠାତ୍ କାହିଁକି ହେଲା, କିପରି ହେଲା – କାହିଁକି, ଏକଥା ସେ ଠିକ୍ ବୁଝିପାରୁ ନଥାଏ । 'ଆପଣମାନେ ପ୍ରତିବାଦ କଲେନି । ଆପଣମାନଙ୍କ କଥା କଂସ ନିଶ୍ଚୟ ମାନିଥାନ୍ତା ।' ସେ ଆସ୍ତେ ଆସ୍ତେ କହିଲା ।

'ଅରିନ୍ଦମ, ତୁ ପାଗଳା କିରେ ।' ଜଣେ ମୁଖିଆ କହିଲେ, 'କିଏ ପ୍ରତିବାଦ କରିବ । ମୁଣ୍ଡଟା କଟିଯିବା ପାଇଁ । ଦେଖୁନୁ, ଏ ରାକ୍ଷସଗୁଡ଼ା କେମିତି ହାତରେ ଖଣ୍ଡା ଧରି ବୁଲୁଛନ୍ତି । ତୁ କ'ଣ କଂସକୁ ଜାଣିନାହୁଁ । ସେ ଠିକ୍ କଲା ରାଜା ହେବ । ବାସ୍ ରାଜା ହେଲା । ଉଗ୍ରସେନ ତା' ଆଗରେ ତୁଚ୍ଛ । ସେ ଉଗ୍ରସେନଙ୍କୁ ବାପ ବୋଲି ମାନେ କି ? ଆମେ କି ତୁଚ୍ଛ ।'

'ନାଇଁ ନାଇଁ, ଆ ପଛରେ ସେଇ ବଦମାସ ଜରାସନ୍ଧ । ଯୋଉଦିନ ଠଉଁ ସେ ଜରାସନ୍ଧର ଦି'ଝିଅକୁ ବିଭା ହେଲା ଆମେ ଜାଣୁ ଏମିତି କିଛି ଅଘଟଣ ଘଟିବ । କଂସ ଏକେ ତ ବଦମାସ । ହେଲେ ସେ ଏତେ ସାହସ କରି ନ ଥାନ୍ତା । ଏ ଜରାସନ୍ଧ ।' ଅନ୍ୟ ଜଣକ କହିଲେ ।

'ଛାଡ଼ ଚାଡ଼, ମଥୁରା ଗଲା, ନିଜ ନିଜ କଥା ଚିନ୍ତା କର ।' ଦିହେଁଯାକ ସିଂଦରଜା ଆଡ଼କୁ ଚାଲିଗଲେ ।


Digitized by srujanika@gmail.com

ଅରିନ୍ଦମ ତଟସ୍ଥ ହୋଇ ଛିଡ଼ା ହେଲା । 'ମଥୁରା ଗଲା' କଥାଟା ଘିର୍ ଘିର୍ ହେଇ ତା ମୁଣ୍ଡରେ ଘୂରୁଥାଏ । ଗୋଟାଏ କଥା ବୁଝି ହେଉନାହିଁ । ଉଗ୍ରସେନ ଛାଁ ଛାଁ ନିଜ ଇଚ୍ଛାରେ ଗାଦି ଛାଡ଼ିଦେଲେ ନା କଂସର ଧମକରେ ଛାଡ଼ିଲେ । ଭାବିଲା, ଯା ହେଲେ ବି ପ୍ରଭେଦ କ'ଣ ? କଂସ ନିଶ୍ଚୟ ଚାହିଁଥିବ । ତା' ନ ହେଲେ ଏତେ ଯୋଗାଡ଼ ଯନ୍ତ୍ରର କିଛି ଅର୍ଥ ନାହିଁ । ତାହାହିଁ ନିଶ୍ଚୟ ହେବ । କଂସ ସବୁପ୍ରକାର ସମ୍ଭାବନାକୁ ଆଖି ଆଗରେ ରଖିଛି । ସେଥିପାଇଁ ଏସବୁର ଆୟୋଜନ । ଉଗ୍ରସେନଙ୍କର ଇଚ୍ଛା ଅନିଚ୍ଛା ମୂଲ୍ୟହୀନ । କଂସ ରାଜା, ଉଗ୍ରସେନ ନୁହନ୍ତି, ଏହି ସହଜ କଥାଟା ସମସ୍ତଙ୍କୁ ମାନିନେବାକୁ ହେବ । ଏମିତି ଘଟିବ, ଭାନୁପ୍ରକାଶ କହିଥିଲେ । କିନ୍ତୁ ଏତେ ଶୀଘ୍ର, ଏପରି ଭାବରେ ଘଟିବ ବୋଲି ସେ ଭାବି ନ ଥିଲା । କିନ୍ତୁ ଆଶ୍ଚର୍ଯ୍ୟ, ମଥୁରା ଏତେ ଚୁପ୍‌ଚାପ କାହିଁକି । କିଛି ତ ପ୍ରତିବାଦ ହୁଅନ୍ତା । କଂସ କ'ଣ ମୁଖିଆମାନଙ୍କର ସଭା ଡାକିଛି । ନାଁ, ତା ତ ମନେ ହୁଏନା । କେତେକ ନିଜେ ନିଜେ ଆସିଛନ୍ତି । ଅନେକ ତ ବାହାରି ଚାଲିଗଲେଣି । ଏଇତ ଯେ ଦି'ଜଣ ଗଲେ, ସେମାନେ ବିବ୍ରତ ନିଶ୍ଚୟ, ବିରକ୍ତ ବି । କିନ୍ତୁ ସେମାନଙ୍କ ଠାରେ ଗୋଟାଏ ଦମ୍ଭ ବା ସାହସ ତ ସେ ଦେଖିଲାନି । ଯେ ଏପରି ଗୋଟାଏ ଅନ୍ୟାୟ କାର୍ଯ୍ୟକୁ ସେମାନେ ପ୍ରତିବାଦ କରି ପାରିବେ । ଯାହା ଦେଖିଲା ସେ ହତାଶା, ଭୟ । ସେ ଆସିଲାବେଳେ ରାସ୍ତାରେ କିଛି ଲୋକ ଦୌଡ଼ାଦୌଡ଼ି କରିବା ସେ ଦେଖିଛି । ହଁ, କିଛି କିଛି ଉତ୍ତେଜନା ନିଶ୍ଚୟ । ଏପରି କାହିଁକି ଘଟିଲା, ଏପରି ଘଟିବା ଠିକ୍ ନୁହେଁ । ଉଗ୍ରସେନ ଥାଉଁ ଥାଉଁ କଂସ ରାଜା ! ଏ ଠିକ୍ ନୁହେଁ । ଏ କଂସର ଜବରଦସ୍ତି, ଏହିପରି ଗୋଟାଏ ମନୋଭାବ । କିନ୍ତୁ ପ୍ରତିବାଦ ଅଛି କି ? ଅରିନ୍ଦମର ମନେହେଲା ନାହିଁ । ଯାହା ସେ ଅନୁଭବ କରୁଛି, କଂସର ସିପେହୀଙ୍କ ଭୟ, ଜରାସନ୍ଧର ରାକ୍ଷସଗୁଡ଼ାଙ୍କୁ ଭୟ । ଲୋକେ ଖାଲି ନିଜ ଭିତରେ ଯାହା ଚୁପଚୁପ କଥାବାର୍ତ୍ତା ହେଉଛନ୍ତି, ସେତିକି । ନାଁ, ମଥୁରାରୁ ପ୍ରତିବାଦ ନାହିଁ, ପ୍ରତିବାଦ ହେବ ବୋଲି ସେ ଭାବୁନାହିଁ । କଂସ ନିଶ୍ଚୟ ଏ ବିଷୟରେ ବିଚାର କରିଛି, ସେ ମୂର୍ଖ ନୁହେଁ ।

ସେ ଦେଖିଲା ବେଶ୍ ଖରା ଉଠିଆସିଲାଣି । ଚାରିପାଖର ପଡ଼ିଆ, ଗଛ ବୃକ୍ଷ ଉପରେ ଖରା ପଡ଼ିଲାଣି । ଲୋକ ଗହଳି ବି କମି ଆସିଲାଣି । ସିଂହଦରଜା ପାଖରେ ପ୍ରାୟ ଲୋକ ନାହାନ୍ତି କହିଲେ ଚଳେ । ଦି' ତିନିଟା ସିପେହୀ ଟହଲ ମାରୁଛନ୍ତି । କିନ୍ତୁ ନଅର ହତା ଭିତରୁ ସିପେହୀ କମି ନାହାନ୍ତି । ଯିଏ ଯେଉଁଠି ଥିଲେ ସେଇଠି ଅଛନ୍ତି । ଖାଲି ଆଗର ଯାହା ସାବଧାନ ସତର୍କ ଭାବ କିଛି କମି ଆସିଛି । ଜରାସନ୍ଧର ସିପେହୀ ବି ବୁଲୁଛନ୍ତି । କିନ୍ତୁ ସେମାନଙ୍କର ବି କିଛି କିଛି ଢିଲାଢ଼ିଲା ଭାବ । ଅରିନ୍ଦମ

ଚାରିଆଡ଼କୁ ଚାହିଁଲା । ଗୋଟାଏ ସାଧାରଣ, ସବୁଦିନିଆ ସକାଳ । ଖରା ପଡ଼ିଛି, ପବନ ଦଉଛି, ଚଢ଼େଇମାନେ ଡିଆଁଡ଼େଇଁ କରୁଛନ୍ତି । ମନେ ହେଉନି କିଛି ଗୋଟାଏ ଘଟିଛି । ଦୋ ଦୋ ପାଞ୍ଚ ହୋଇ ସେ ଦରବାର ଘର ଭିତରକୁ ପଶିଲା ।

ଦରବାର ଘର ବଡ଼ ଘର । ଉଗ୍ରସେନ ଏଇଠି ମୁଖିଆମାନଙ୍କର ସଭାସମିତି ଡାକନ୍ତି, ଲୋକମାନଙ୍କୁ ଭେଟନ୍ତି । ତାଙ୍କ ପାଖକୁ ଯେ କୌଣସି ଲୋକ ଯେ କୌଣସି ସମୟରେ ଯିବାରେ ବାଧା ନାହିଁ । ଲୋକେ ବି ଯାଆନ୍ତି । ସେ ସବୁବେଳେ ହସ ହସ, ସବୁବେଳେ ଲୋକଙ୍କ ସାଙ୍ଗରେ ମିଳାମିଶା ଭାବ । ସାରା ମଥୁରା ସହରଟା ଯେପରି ଗୋଟାଏ ବଡ଼ ପରିବାର, ଆଉ ସେ ଏହି ପରିବାରର ମୁଖିଆ । ସମସ୍ତଙ୍କୁ ଦେଖାଶୁଣା କରିବା ଯେପରି ତାଙ୍କର କାମ । ନାଁ, କଂସ ତା କରିବ ନାହିଁ । ସେ ଦୁର୍ବିନୀତ, ଅତ୍ୟାଚାରୀ, ଅତ୍ୟନ୍ତ କ୍ରୋଧୀ, ତା'ର ଲଘୁଗୁରୁ ଜ୍ଞାନ ନାହିଁ । ସେ ଆଚାର ବ୍ୟବହାର ଜାଣେନା, ବା ସେସବୁକୁ ଗୁରୁତ୍ୱ ଦେବାକୁ ଚାହେଁ ନା । ନିଜର ସ୍ୱାର୍ଥ ପାଇଁ ସେ ଦରକାର ହେଲେ ସମସ୍ତଙ୍କୁ ଟିକି ଟିକି କରି କାଟିଦେବ ।

ଅରିନ୍ଦମ ଦରବାର ଘର ଭିତରକୁ ପଶିଲା । ଦରବାର ଘର ଭିତରେ ଆସନ ସବୁ ସୁସଜ୍ଜିତ ହୋଇ ରହିଛି, ଏଠି ସେଠି କିଛି କିଛି ଲୋକ ବସିଛନ୍ତି । ଦରବାର ଘର ଭିତରେ ଆଲୁଅ ନାହିଁ । ବାହାରୁ ଯା ଆଲୁଅ ଆସି ପଡ଼ିଛି ସେତିକି । ଘର ଭିତରେ ଛାଇଛାଇଆ ଅନ୍ଧାର । ସ୍ପଷ୍ଟ ଦିଶୁନି କିଏ କେଉଁଠି ବସିଛି । ସେ ନିରିଖି ନିରିଖି ଚାହିଁଲା । ମନେହେଲା କିଛି ଦୂରରେ ଗୋଟାଏ କଣକୁ ଉଗ୍ରସେନ, ବାପା ଓ ଆଉ କିଛି ଲୋକେ ବସିଛନ୍ତି । ନାଁ କଂସ ନାହିଁ । ସିପେହୀମାନେ ବି ନାହାନ୍ତି । ମନେହେଉଛି ବାପା, ଉଗ୍ରସେନ ଓ ଅନ୍ୟମାନେ ଚୁପଚୁପ ବସିନାହାନ୍ତି । କଥାବାର୍ତ୍ତା କରୁଛନ୍ତି । ସେ ସେ ଆଡ଼କୁ ଗଲା । ଖୁବ୍ ବେଶୀ ଲୋକ ନୁହନ୍ତି । ସେମାନଙ୍କ ଭିତରେ ବୋଧହୁଏ ବସୁଦେବ ଅଛନ୍ତି । ତାଙ୍କ ଗୋଷ୍ଠୀରେ ସେ ଖୁବ୍ ସମ୍ମାନିତ ଲୋକ ଓ କଂସ ସହିତ ତାଙ୍କର ବେଶ୍ ସଦ୍‌ଭାବ । ସେମାନେ ବି ଅରିନ୍ଦମକୁ ଦେଖିଲେ । ଅରିନ୍ଦମ ପାଖ ହେଲାରୁ, ଉଗ୍ରସେନ ତାକୁ ଚାହିଁ ସାମାନ୍ୟ ହସିଲେ ଓ କହିଲେ, 'ଅରିନ୍ଦମ, ଆସିଲ ଭଲ କଲ । ବସ', ଅରିନ୍ଦମ ବସିଲା । ସେ ଲକ୍ଷ୍ୟ କଲା ସମସ୍ତେ ବାପାଙ୍କ ଆଡ଼କୁ ଚାହିଁଛନ୍ତି । ବାପା ଯେପରି କ'ଣ କିଛି କହୁଥିଲେ, ହଠାତ୍ ଚୁପ୍ କରି ଯାଇଛନ୍ତି । ବାପା ପୁଣି କହିଲେ, 'ଆପଣମାନେ ଯାହା ଭାବୁଛନ୍ତି ଠିକ୍ । କିନ୍ତୁ ପ୍ରାରବ୍ଧକୁ ଆପଣ କ'ଣ କରିବେ । ଯାହା ଘଟିବାର କଥା ଘଟିବ । କଂସ କେବଳ ଗୋଟିଏ ଉଦାହରଣ ନୁହେଁ । ଅତୀତରେ ଏପରି ଉଦାହରଣ ଅନେକ ଅଛି । କଂସ ତ ଆମ ଲୋକ ନୁହେଁ । କିନ୍ତୁ ତାକୁ ଗ୍ରହଣ କରିନେବାକୁ ହେବ । ଏହାହିଁ ପ୍ରାରବ୍ଧ ।'

'କିନ୍ତୁ ଯେଉଁଭାବରେ ସେ ମହାରାଜ ଉଗ୍ରସେନଙ୍କ ପାଖରୁ ରାଜ୍ୟ ଛଡ଼େଇ ନେଲା ଏ ଠିକ୍ ବାପ ପୁଅର ସମ୍ପର୍କ ନୁହେଁ-' ଜଣେ ମୁଖିଆ କହିଲେ । 'ମାନିଲେ ସମ୍ପର୍କ ରହେ । ନ ମାନିଲେ ସମ୍ପର୍କ ରହେନା । ସେ ବାପ ପୁଅ ହେଉ, ସ୍ୱାମୀ ସ୍ତ୍ରୀ ହେଉ ବା ଭାଇ ଭାଇ ହେଉ, ବା ଏପରିକି ରାଜା ପ୍ରଜା ହେଉ,' ବାପା କହିଲେ ।

'କଂସ କିନ୍ତୁ ସମ୍ପର୍କ ରଖିଛି - ଜରାସନ୍ଧ ସାଙ୍ଗରେ ।'

'ସେ ସ୍ୱାର୍ଥର ସମ୍ପର୍କ, କ୍ଷମତାର ସମ୍ପର୍କ, ଜରାସନ୍ଧର ସ୍ୱାର୍ଥ, କଂସର ବି । ସେ ଆର୍ଯ୍ୟ ଧର୍ମର ସମ୍ପର୍କ ନୁହେଁ ।' ବାପା କହିଲେ ।

ସମସ୍ତେ ଚୁପ୍ କରିଗଲେ । ଉଗ୍ରସେନଙ୍କ ମୁହଁ ଶୁଖିଲା ଦିଶୁଛି । ବସୁଦେବ ସୁଖି ନୁହନ୍ତି, ମନେହେଲା ଖୁବ୍ ଦୁଃଖିତ ବି ନୁହନ୍ତି । ଅନ୍ୟମାନଙ୍କର ମନୋଭାବ ଅସ୍ଥିର - ଏ ଏପରି ଗୋଟାଏ ଅବସ୍ଥା ଯାହାକୁ କି ସହଜେ ଗ୍ରହଣ କରି ହେବନାହିଁ । କେବଳ ବାପା ସ୍ଥିର, ମୁହଁରେ ବା କଥାବାର୍ତ୍ତାରେ କୌଣସି ଉଦ୍‌ବେଗ ନାହିଁ, ଯେପରି ସେ ଜାଣନ୍ତି ଏପରି ସବୁ ଘଟିବ । ଅରିନ୍ଦମର ମନେହେଲା ସେ ବର୍ତ୍ତମାନ ମୋଟାମୋଟି ଅବସ୍ଥାଟା ବୁଝି ପାରିଛି । କଂସ ମହାରାଜା ଉଗ୍ରସେନଙ୍କ ପାଖରୁ ରାଜଗାଦୀ ଓ ରାଜତ୍ୱ କାଢ଼ି ନେଇଛି । ନାଁ, ବଳ ପ୍ରୟୋଗ କରି ନୁହେଁ, ଦରକାର ପଡ଼ିଲେ ବଳ ପ୍ରୟୋଗ କରାଯିବ, ଏକଥା ସ୍ପଷ୍ଟ ବୁଝେଇ ଦେଇଛି । ଉଗ୍ରସେନଙ୍କର ବା ଅନ୍ୟ କାହାରି ଇଚ୍ଛା ଅନିଚ୍ଛାର ମୂଲ୍ୟ ନାହିଁ । ସେମାନେ ବସି ଯେତେ ଯାହା ଆଲୋଚନା କରନ୍ତୁ ଉଗ୍ରସେନ ଆଉ ମହାରାଜ ନୁହନ୍ତି, କଂସ ହିଁ ମହାରାଜ । ତା'ରି ଚରମାନେ ସବୁଆଡ଼େ ଘୂରି ବୁଲୁଛନ୍ତି, ତା'ରି ସିପେହୀମାନେ ସବୁଆଡ଼େ ଜଗି ରହିଛନ୍ତି । ମୁଖିଆମାନେ କ'ଣ ଭାବୁଛନ୍ତି, ଲୋକମାନେ କ'ଣ କହୁଛନ୍ତି, ସେସବୁ ଅବାନ୍ତର । ରାଜା ସେ, କ୍ଷମତା ତା' ପାଖରେ, ସେହି ହିଁ ମଥୁରାର ମହାରାଜା, ଏକଥା ସମସ୍ତଙ୍କୁ ମାନିବାକୁ ହେବ ।

ଉଗ୍ରସେନଙ୍କୁ ବାହାର କରି ଦିଆଗଲା, ସେଥିପାଇଁ ନୁହେଁ । କଂସ ରାଜତ୍ୱ କଥା ଭାବି ଅରିନ୍ଦମର ଦେହ ଥରି ଉଠିଲା । କଂସକୁ ସେ ପିଲାଦିନରୁ ଦେଖି ଆସୁଛି । ସେ କେବଳ ଦୁର୍ବିନୀତ, ସ୍ୱାର୍ଥପର ନୁହେଁ, ଭୟଙ୍କର ଅତ୍ୟାଚାରୀ, ବିଭତ୍ସ । ଜରାସନ୍ଧ କଥା ସେ ଶୁଣୁଛି, କିନ୍ତୁ କଂସକୁ ସେ ଜାଣେ । ଅଧର୍ମ କଥା ନୁହେଁ, ସେ ନିଜେ ହିଁ ଅଧର୍ମ । ସେ ମଥୁରାର ରାଜା, ମଥୁରାର ଅବସ୍ଥା କ'ଣ ହେବ ? ସେ ଭାବି ପାରିଲା ନାହିଁ । ତା'ର ଆଖି ବୁଜି ହୋଇ ଆସିଲା । ତା'ର ବାରମ୍ବାର ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା - 'ଜରାସନ୍ଧ ତ ଜରାସନ୍ଧ, ମଥୁରାରେ ଆହୁରି ଭୟଙ୍କର ବିପଦ ତମକୁ ଅପେକ୍ଷା କରି ରହିଛି ।'

'ମୁଁ ତା'ହେଲେ କ'ଣ କରିବି ?' ସେ ଶୁଣିଲା ଉଗ୍ରସେନ ଧୀରେ ଧୀରେ କହୁଛନ୍ତି । 'ନାଁ, ଏ ଅନ୍ୟାୟ, ଅଧର୍ମ, ଆପଣ ମାନନ୍ତୁ ନାହିଁ', ଜଣେ କିଏ କହିଲେ ।

'ତା'ପର-' ଉଗ୍ରସେନ ସେହିପରି ଧୀର ଭାବରେ ପଚାରିଲେ ।

'ଆପଣ ପ୍ରତିବାଦ କରନ୍ତୁ, ଦରକାର ହେଲେ ଆମେ ଆପଣଙ୍କ ପାଖରେ ଛିଡ଼ା ହେବୁ ।' - ମୁଖିଆ କହିଲେ ।

'କ'ଣ ହେବ ?' ବସୁଦେବ କହିଲେ, 'ଘଟଣା ବଦଳି ଯିବ ? ଏଠିକି ତ ଅନେକ ଆସିଥିଲେ, ସମସ୍ତେ ତ ଜୋରଜାରରେ କହିଲେ । ତା'ପର ? ଜଣେ ଜଣେ କରି ଅଧିକାଂଶ ଚାଲିଗଲେଣି । ତମେ କ'ଣ ଭାବୁଛ କଂସ ଏକଥା ଭାବି ନାହିଁ । ଚାରିପାଖର ସିପେହୀଙ୍କୁ ଦେଖ, ରାକ୍ଷସଗୁଡ଼ାଙ୍କୁ ଦେଖ ।' 'ତା ଛଡ଼ା ଆମେ କ'ଣ କରିପାରିବା ? ଡର ଭୟ ସମସ୍ତଙ୍କୁ ଗ୍ରାସୀ ଗଲାଣି ।' ଆଉ ଜଣେ କହିଲେ- 'ମଥୁରା କ'ଣ ଆଉ ଗୋଟାଏ ହୋଇ ଅଛି । କମ ବୟସର ମୁଖିଆମାନେ, ଲୋକମାନେ, ସମସ୍ତେ କଂସ ଆଡ଼େ । ସମସ୍ତେ ରାଜ୍ୟ ଜୟ କରିବାକୁ ବ୍ୟସ୍ତ, ଯୁଦ୍ଧ କରିବାକୁ ବ୍ୟସ୍ତ, ଲୋଭ ଲାଳସା ସମସ୍ତଙ୍କୁ ଘେରିଗଲାଣି । ସମସ୍ତେ ଭାବୁଛନ୍ତି ଏକମାତ୍ର କଂସ ହିଁ ତାଙ୍କୁ ସେସବୁ ଦେଇପାରିବ ।'

'କଂସ ଅତ୍ୟନ୍ତ ଦୁର୍ଦ୍ଧାନ୍ତ ସନ୍ଦେହ ନାହିଁ', ବସୁଦେବ କହିଲେ, 'କିନ୍ତୁ ଚତୁର । ସେ ମଥୁରା ଲୋକମାନଙ୍କୁ ଜାଣେ, ସେମାନଙ୍କର ସବୁ ଖବର ରଖିଛି । ସେ ଖରାପ, ଲୋକମାନେ ଭଲ, ତା ନୁହେଁ । ଲୋକମାନେ ସମାନ ସ୍ୱାର୍ଥପର, ସମାନ ଲୋଭୀ । ଅନେକ ଭାବନ୍ତି କଂସ ପରି ଶାସକ ସେମାନଙ୍କ ପାଇଁ ଭଲ ।'

ବାପା ବସୁଦେବଙ୍କୁ ସମର୍ଥନ କଲେ । କହିଲେ, 'ବସୁଦେବ ଠିକ୍ କହୁଛନ୍ତି । ଲୋକଙ୍କୁ ଛାଡ଼ି ରାଜା ହୁଏ ନା । କଂସ ଲୋକଙ୍କର ଦୁର୍ବଳତାର ସୁଯୋଗ ନେଉଛି । ଏ କେବଳ ମହାରାଜା ଉଗ୍ରସେନଙ୍କ କଥା ନୁହେଁ । ଲୋକଙ୍କର ମନୋଭାବର କଥା । ଅଧର୍ମ ଖାଲି କଂସ ପାଖରେ ନାହିଁ, ଲୋକଙ୍କ ପାଖରେ ବି । ଆମେ କଂସକୁ ସହି ଆସିଛେ, ସହିବୁ ବି ।'

'ମୁଁ ତା'ହେଲେ କ'ଣ କରିବି ?' ଉଗ୍ରସେନ ବାପାଙ୍କ ମୁହଁକୁ ଚାହିଁ ପୁଣି ଥରେ ତାଙ୍କ ପ୍ରଶ୍ନ ପଚାରିଲେ ।

ସମସ୍ତେ ଚୁପ୍, ବାପା ବି । ଅରିନ୍ଦମର ମନେହେଲା ଏ ଯେପରି ଥଳକୂଳ ନ ଥିବା ଗୋଟାଏ ଘୂର୍ଣ୍ଣି ଓ ଏ ଘୂର୍ଣ୍ଣିର ଆରମ୍ଭ, ଆହୁରି ଅଛି, ଆହୁରି ଅଛି । ଅରିନ୍ଦମ ସମସ୍ତଙ୍କୁ ଚାହିଁଲା । ସମସ୍ତେ ତା'ଠାରୁ ବୟସରେ ଯଥେଷ୍ଟ ବଡ଼ । ତା'ର କଂସ ପ୍ରତି ଦୁର୍ବଳତା ଥିଲା । ବର୍ତ୍ତମାନ ନାହିଁ । ଏ ଯା ଆରମ୍ଭ ହେବାକୁ ଯାଉଛି ଏ କେବଳ

ରାଜ୍ୟର କଥା ନୁହେଁ । ଚରିତ୍ରର କଥା, ମଣିଷ ଜୀବନର କଥା, ମଣିଷ କିପରି ବଞ୍ଚିବ ସେ କଥା । ଏଥିରେ ଆର୍ଯ୍ୟ ଅନାର୍ଯ୍ୟର କଥା ନାହିଁ । ଏ ମଣିଷ କିପରି ନିଜକୁ ସଂଯତ କରି, ନିୟନ୍ତ୍ରିତ କରି ଚଳି ପାରିବ । ଆର୍ଯ୍ୟମାନଙ୍କର ଯେପରି ଚଳିବାର ଧାରା ଅଛି, ଅନାର୍ଯ୍ୟମାନଙ୍କର ମଧ୍ୟ ସେହିପରି ଅଛି । ଉଦ୍ଦେଶ୍ୟ ଗୋଟାଏ – ମଣିଷ କିପରି ନିଜେ ନିଜେ, ଅନ୍ୟମାନଙ୍କ ସହିତ ମିଶି ଭଲରେ ଭଲରେ ଚଳିପାରିବ ।

ସମସ୍ତେ ଚୁପ୍‌ଚାପ୍ ବସିଛନ୍ତି । ଦଶ ବାର ଜଣ ଲୋକ । ସମସ୍ତେ ବୟସ୍କ, ଗୁରୁଜନ ସ୍ଥାନୀୟ । ପ୍ରତ୍ୟେକ ସେମାନଙ୍କର ଗୋଷ୍ଠୀର ମୁଖ୍ୟ ଲୋକ, ସେମାନଙ୍କର ପ୍ରଥମ ଆନୁଗତ୍ୟ ମହାରାଜା ଉଗ୍ରସେନଙ୍କ ପ୍ରତି । ଦରକାର ହେଲେ ସେମାନେ ଓ ସେମାନଙ୍କର ଗୋଷ୍ଠୀର ସମସ୍ତେ ମହାରାଜା ଉଗ୍ରସେନଙ୍କ ପାଇଁ ଯୁଦ୍ଧ କରିବେ । ସେମାନଙ୍କର ଗର୍ବ ସେମାନେ ଆର୍ଯ୍ୟ, ମଥୁରାର ସମ୍ମାନ ସେମାନଙ୍କର ସମ୍ମାନ । ସେହିମାନଙ୍କର ପୂର୍ବପୁରୁଷମାନେ ହିଁ ଗଙ୍ଗା ଅତିକ୍ରମ କରି ଯମୁନା କୂଳରେ ଆର୍ଯ୍ୟ ବସତି ସ୍ଥାପନ କରିଥିଲେ, ସେମାନେ ଚାହାନ୍ତି ନାହିଁ ଆର୍ଯ୍ୟମାନଙ୍କର ଆଚାର ବ୍ୟବହାର, ରୀତିନୀତି, ଧର୍ମ ବିପର୍ଯ୍ୟସ୍ତ ହେଇଯାଉ । ଆଜି ତାହାହିଁ ଘଟିବାକୁ ଯାଉଛି । ତାଙ୍କରି ଭିତରୁ ଜଣେ, ଯେ ତାଙ୍କରି ଭିତରେ ବଢ଼ି ଉଠିଛି, ଯେ ଦିନେ ନିୟମ ମାଫିକ ରାଜା ହୋଇଥାନ୍ତା, ସେଇହିଁ ଦାୟୀ ।

ଦରବାର ଘରର କିଛି କିଛି ଝରକା ପରିଚାରମାନେ ଆସି ଖୋଲିଦେଲେଣି । ବାହାରର ଆଲୁଅ ଆସୁଛି । ଘରର ଅନ୍ଧାର କଣ ସବୁ କିଛି କିଛି ସଫା ହେଲାଣି । ଶରତ ଋତୁର ପରିଷ୍କାର ସକାଳ । ଅରିନ୍ଦମ ବାହାରକୁ ଚାହିଁଲା । ଗଛ, ଚଢ଼େଇ, ବାହାରର ଘାସ ପଡ଼ିଆ, ଦୂର ଆକାଶ – ସବୁ ଆଖିରେ ପଡୁଛି । ସିପେହୀମାନେ ବି ଏପାଖ ସେପାଖ ବୁଲୁଛନ୍ତି । ରାଜାଙ୍କ ଘରକୁ ଲୋକଙ୍କର ଯିବା ଆସିବା ଲାଗିଲାଣି । ରାଜ ନଅର ଭିତର ମନ୍ଦିରରୁ ଘଣ୍ଟାର ଶବ୍ଦ ଶୁଭୁଛି । ଅରିନ୍ଦମ ବାପାଙ୍କ କଥା ଭାବୁଥିଲା । ସେ ତ ତାଙ୍କର ସକାଳର ପୂଜା ଅଧାରୁ ଉଠି ଆସିଛନ୍ତି । ବାପା ପ୍ରାୟ ଉତ୍ତେଜିତ ହୁଅନ୍ତି ନାହିଁ । କିନ୍ତୁ ଆଜି ସେ ବେଶ୍ ଉତ୍ତେଜିତ ଦିଶୁଥିଲେ । ବର୍ତ୍ତମାନ ବି ବାପାଙ୍କୁ ଚାହିଁଲେ ମନେହେବ ତାଙ୍କର ମନର ଆବେଗ କମିନାହିଁ । ତାଙ୍କର ଉତ୍ତେଜନା, ଅସ୍ଥିରତା ବୁଝି ହେଉଛି । କିନ୍ତୁ ବାହାରକୁ ସେ ସ୍ଥିର, ଚୁପ୍‌ଚାପ । ସେହିପରି ବସୁଦେବ ବି ଚୁପଚାପ ଲୋକ । ସେ ବିଶେଷ ଗୋଳମାଳ ଭିତରକୁ ପଶିବାକୁ ପସନ୍ଦ କରନ୍ତି ନାହିଁ । ସେ ଉଗ୍ରସେନଙ୍କୁ ସମ୍ମାନ କରନ୍ତି । ବାପାଙ୍କ ପରି ସେ ବି ଆର୍ଯ୍ୟମାନଙ୍କର ରୀତିନୀତି, ଆଚାର ବ୍ୟବହାର ଓ ଧର୍ମ ବିଷୟରେ ଖୁବ୍ ସଚେତ । ସେ କଂସର ବିରୋଧୀ ନୁହନ୍ତି । ସେ ବି କେତେଥର ବାପାଙ୍କ ସାଙ୍ଗରେ

କଂସକୁ ଯୁବରାଜ ନୁହେଁ ରାଜା କରିଦେବା ସମ୍ପର୍କରେ କଥାବାର୍ତ୍ତା କରିବା ଅରିନ୍ଦମ ଶୁଣିଛି । କଂସର ଢଙ୍ଗଢ଼ାଙ୍ଗ ବିଷୟରେ ବାପାଙ୍କ ପରି ସେ ବି ସୁଖୀ ନୁହନ୍ତି । କିନ୍ତୁ କଂସ ରାଜା ହେଲେ ତାର ଅଧିକ ଦାୟିତ୍ୱ ଆସିଯିବ । ହୁଏତ ତା ଢଙ୍ଗଢ଼ାଙ୍ଗ ବଦଳିଯାଇ ପାରେ, ଏହିପରି ସେ ଭାବୁଥିଲେ । ତା'ଛଡ଼ା ବସୁଦେବଙ୍କ ବିଷୟରେ ସେ ଆଉ ଗୋଟାଏ କଥା ବାପାଙ୍କ ଠାରୁ ଶୁଣିଛି । ବାପା ଯେ ନିର୍ଦ୍ଦିଷ୍ଟ ଭାବରେ ତାକୁ କିଛି କଥା କହିଛନ୍ତି ତା ନୁହେଁ । କିନ୍ତୁ କେବେ କେବେ ସକାଳ ପୂଜା ଓ ଧ୍ୟାନରୁ ଉଠିଲା ପରେ ବାପା ବେଶ୍ ଚିନ୍ତିତ ଦେଖାଯାନ୍ତି । ସେ ତାକୁ ଡାକି ପାଖରେ ବସାନ୍ତି ଓ ଏପରି କିଛି କିଛି କଥା କୁହନ୍ତି ଯା' ଅରିନ୍ଦମକୁ ଖୁବ୍ ରହସ୍ୟମୟ ବୋଧହୁଏ । ଏହିପରି ଦିନେ, ସେ ସେତେବେଳକୁ ମଗଧରୁ ଫେରି ଆସିଲାଣି ଓ କଂସର ବିଭାଘରର ଆଡ଼ମ୍ବର ସରିଗଲାଣି, ବାପା ତାକୁ ପୂଜା ଘରକୁ ଡାକିଲେ । ଅରିନ୍ଦମ ସେତେବେଳକୁ ଯମୁନାରେ ଗାଧୁଆ ସାରି ନିଜର ପୂଜା ଅର୍ଚ୍ଚନା କରିବାକୁ ଯାଉଥାଏ । ସେ ବାପାଙ୍କର ପୂଜା ଘରକୁ ଗଲା । ପୂଜା ଘରେ ଉଜ୍ଜ୍ୱଳ ହୋଇ ଦୀପ ଜଳୁଥାଏ । ଚନ୍ଦନ, ଅଗୁରୁ ଓ ପୁଷ୍ପ ବାସନାରେ ସାରା ଘର ପୂର୍ଣ୍ଣ । ମହାକାଳଙ୍କ ମୂର୍ତ୍ତିରୁ ଯେପରି ତୀବ୍ର ଦୀପ୍ତି ବାହାରୁଥାଏ । ବାପା କିଛି କହିଲେ ନାହିଁ, କେବଳ ବସିବା ପାଇଁ ଇଙ୍ଗିତ କଲେ । ସେ ନିଜେ ଧୀରେ ଧୀରେ କ'ଣ ମନ୍ତ୍ର ପଢୁଥାନ୍ତି । ତାଙ୍କର ଆଖି ଦି'ଟା ଅଧା ବନ୍ଦ । ସାରା ଦେହ ନିରବ, ନିଶ୍ଚଳ । ମେରୁଦଣ୍ଡ ଗଛ ପରି ସିଧା । ଅରିନ୍ଦମ ସଂକୁଚିତ ହୋଇ ବାପାଙ୍କର ପଛକୁ ଗୋଟାଏ କଡ଼କୁ ବସିଲା । ବାପା ଇଙ୍ଗିତ କଲେ ତାଙ୍କ ପାଖକୁ ଲାଗି ବସିବା ପାଇଁ । ସେ ସ୍ଥିର, ନିରବରେ ଧ୍ୟାନ ମନ୍ତ୍ର ପଢୁ ଥାଆନ୍ତି । ଅରିନ୍ଦମ ମହାକାଳଙ୍କୁ ନତ ହୋଇ ବସିଲା । ଚୁପ୍‌ଚାପ୍ । କିଛି ସମୟ ପରେ ବାପା ଧୀରେ ଧୀରେ, କିନ୍ତୁ ସ୍ପଷ୍ଟ ଭାବରେ କହିଲେ – 'ମଥୁରାର ଦୁଃଖର ସମୟ ଆସୁଛି, ବହୁତ ଦୁଃଖ ।' ସେ ଚୁପ କରିଗଲେ । କିଛି ସମୟ ପରେ ପୁଣି କହିଲେ- 'ଆହା ହା, ବସୁଦେବ ସବୁଠାରୁ ବଡ଼ ଦୁଃଖୀ ।' ପୁଣି ଚୁପ୍ । କିନ୍ତୁ କିଛି ସମୟ ପରେ ନିଦରେ କହିଲା ପରି ସେ ହଠାତ୍ କହି ଉଠିଲେ, ଆହୁରି ସ୍ପଷ୍ଟ ଭାବରେ । ତାଙ୍କର ସାରା ମୁହଁ ପ୍ରଚଣ୍ଡ ଉତ୍ତେଜନାରେ ଜଳୁଥାଏ । ସ୍ୱର ଧୀର ଶାନ୍ତ ନୁହେଁ, ଅତ୍ୟନ୍ତ ଉତ୍ତେଜିତ – 'ଅରିନ୍ଦମ ଏ କ'ଣ, ଏ କ'ଣ ? କ'ଣ ମୁଁ ଦେଖୁଛି ? ମହାକାଳ, ମହାକାଳ, ତମରି ଲୀଳା । ଆହା ହା, ବସୁଦେବ ମହା ପୁଣ୍ୟବାନ... ମହା ପୁଣ୍ୟବାନ ।' ବାପା ଚୁପ୍ କରିଗଲେ । ପୂର୍ବପରି ନିରବ, ନିଶ୍ଚଳ । ପୂଜା ଘରେ ପୂର୍ବପରି ଆଲୋକ, ସୁଗନ୍ଧି । ପୂର୍ବପରି ମହାକାଳଙ୍କ ହସ୍ତର ସୂଚନାରେ ବରାଭୟ, ମୁହଁରେ ଗଭୀର ପ୍ରଶାନ୍ତି ଓ ଆଶ୍ୱାସନା । ଅରିନ୍ଦମ ଟିକେ ଘୁଞ୍ଚିଗଲା । ବାପାଙ୍କ ପଛରେ ସେହିପରି ବସି ରହିଲା ।

ଏ କି କଥା ! ବାପା କ'ଣ ଦେଖିଲେ ? ମଥୁରାର 'ଘୋର ଦୁଃଖ –' କିନ୍ତୁ ବସୁଦେବ 'ମହାପୁଣ୍ୟବାନ' । କାହିଁକି ?

ଅରିନ୍ଦମ ବସୁଦେବଙ୍କ ମୁହଁକୁ ଅନେକ ସମୟ ଧରି ଚାହିଁ ରହିଲା । ବାପା କହିଥିବା 'ମହା ପୁଣ୍ୟବାନ' କଥାଟା ତା ମନରେ ଘୂରି ଘୂରି ବୁଲୁଥାଏ । ତା ସାଙ୍ଗରେ ବସୁଦେବଙ୍କର ଦୁଃଖ କଥା ବି । ଏ କି ପ୍ରକାର ସଂଯୋଗ । କିନ୍ତୁ ବାପାଙ୍କୁ ଦେଖିଲେ ମନେହେବ ଯେପରି ତାଙ୍କର କିଛି ଭାବାନ୍ତର ନାହିଁ, ସେ ଯେପରି କେବଳ ଉଗ୍ରସେନଙ୍କ କଥା ହିଁ ଭାବୁଛନ୍ତି । ବାପାଙ୍କ ସେ ପାଖକୁ ଅକ୍ରୂର ବସିଥାନ୍ତି । ସେ ବି ବସୁଦେବଙ୍କ ପରି ଗୋଟିଏ ଗୋଷ୍ଠୀର ମୁଖ୍ୟ । ବାପା ତାଙ୍କୁ ଅନେଇ ପଚାରିଲେ, 'ଅକ୍ରୂର, ତୁମେ ତ ଏସବୁ କଥା ଭଲ ବୁଝ । କଂସ ବି ତୁମକୁ ବିଶ୍ୱାସ କରେ । ସେ ତ ଦିନେ ହେଲେ ରାଜା ହୋଇଥାନ୍ତା । ଆଜି ହଠାତ୍ କାହିଁକି ?' ବସୁଦେବ ବାପାଙ୍କ କଥା ଆଉଡ଼େଇଲେ, 'ହଁ, ମୁଁ ବି ସେଇଆ ଭାବୁଛି । ଏ ହଠାତ୍ କାହିଁକି ?' 'ହଠାତ୍ ନୁହେଁ', ଅକ୍ରୂର କହିଲେ, 'କଂସ କିଛିଦିନ ହେବ ଏଇ ଯୋଜନା କରୁଥିଲା । ବିଶେଷ କରି ସେ ଜରାସନ୍ଧଙ୍କର ଝିଅଙ୍କୁ ବିଭାହେଲା ପରେ । ସେ ଯେ ଆଗରୁ ଏକଥା ଭାବୁ ନ ଥିଲା ତା ନୁହେଁ । ସେ ଉଗ୍ରସେନଙ୍କୁ ମାନିବାକୁ ଚାହୁଁ ନ ଥିଲା, ସେ କାହାରିକୁ ମାନିବାକୁ ଚାହୁଁ ନ ଥିଲା । କିନ୍ତୁ ଏପରି କିଛି କରିବାକୁ ସେ ସାହସ କରିପାରୁ ନ ଥିଲା । ସେ ଜାଣିଥିଲା ମଥୁରା ଲୋକେ ଓ ଯାଦବଙ୍କର ଅନେକ ଗୋଷ୍ଠୀ ତାକୁ ମାନିବେନି, ବେଶ୍ ଗୋଳମାଳ ହେବ । କିନ୍ତୁ ଜରାସନ୍ଧଙ୍କର ସାହାଯ୍ୟ ପାଇଲା ପରେ ତା'ର ଏ ମନୋଭାବ ଭାଙ୍ଗିଗଲା । ଆଜି ସେ ଯାହା କରୁଛି ତା' ପଛରେ ଜରାସନ୍ଧ । ଯା' କରିବ ତା' ପଛରେ ବି ଜରାସନ୍ଧ । କଂସ ନିଷ୍ଠୁର, କିନ୍ତୁ ସାହସୀ । ସେ ଜରାସନ୍ଧଙ୍କ ପାଇଁ ରାଜ୍ୟ ଜୟ କରିବ । କିନ୍ତୁ କେବଳ ରାଜ୍ୟ ଜୟ କରିବା ତା'ର ଇଚ୍ଛା ନୁହେଁ । ସେ ଜରାସନ୍ଧଙ୍କ ପରି ଆର୍ଯ୍ୟାବର୍ତ୍ତର ଏକାନ୍ନ ଚକ୍ରବର୍ତ୍ତୀ ହେବାକୁ ଚାହେଁ । ଏହାହିଁ ତା'ର ଲକ୍ଷ୍ୟ । ଦରକାର ହେଲେ ସେ ଜରାସନ୍ଧଙ୍କୁ ବି ଠୋକର ଦେବ ।'

ହଠାତ୍ ଯେପରି କ'ଣ ଭାବି ଅକ୍ରୂର ଚୁପ୍ କରିଗଲେ । ସାମାନ୍ୟ ଭୀତ ହେଲା ପରି ସେ ଏପାଖ ସେପାଖ ଚାହିଁଲେ । କହିଲେ, 'ନାଁ, ନାଁ, ଏସବୁ ଯେ ଠିକ୍ ସେକଥା ମୁଁ କହୁନାହିଁ । ମୁଁ ଖାଲି ଭାବୁଛି, ଏମିତି ହୋଇପାରେ ।' ବାପା ସାମାନ୍ୟ ହସିଲେ, କିନ୍ତୁ କିଛି କହିଲେ ନାହିଁ । ବସୁଦେବ କହିଲେ, 'ନାଁ, ନାଁ, ଅକ୍ରୂର ତୁମେ ଠିକ୍ କହିଛ, କଂସ କଥା କିଏ ନ ଜାଣେ । ଜରାସନ୍ଧ ପାଇଁ ସେ ଯେମିତି ଦରକାର, ତା ପାଇଁ ଜରାସନ୍ଧ ବି ସେମିତି ଦରକାର । ସେ ଜରାସନ୍ଧର ଝିଅଙ୍କୁ ବିଭାହେବା

ଦିନଠାରୁ ଏହିପରି କିଛି ଘଟିବ ବୋଲି ଆମେ ଆଶଙ୍କା କରୁଥିଲୁ । ଏ ଖାଲି ସମୟର କଥା, ଆଗ ବା ପଛ । ଜରାସନ୍ଧ ଅତ୍ୟନ୍ତ ଭୟଙ୍କର ଲୋକ । ସେ ସମଗ୍ର ଆର୍ଯ୍ୟାବର୍ତ୍ତ ପାଇଁ ସମସ୍ୟା । ଆମ ପାଇଁ ତ ନିଶ୍ଚୟ । କଂସ ରାଜା ହେବା ମାନେ ଜରାସନ୍ଧ ହିଁ ରାଜା ହେବ । ଆମର ସ୍ୱାଧୀନତା ଚାଲିଯିବ ।'

'ତା' ଠିକ୍', ସେଠାରେ ଥିବା ଆଉ ଜଣେ ଗୋଷ୍ଠୀମୁଖ୍ୟ କହିଲେ, 'ମଥୁରା ଆଉ ମଥୁରା ହୋଇ ରହବନି । କଂସର ଅତ୍ୟାଚାର ବ୍ୟାପିଯିବ ।' 'କିନ୍ତୁ ଆମେ କ'ଣ କରିପାରିବା ? କଂସକୁ କ'ଣ ଆମେ ବନ୍ଦ କରି ପାରିବା କି ? ସେ ତ ପ୍ରସ୍ତୁତ ହୋଇ ରହିଛି । ସାମାନ୍ୟ ପ୍ରତିରୋଧକୁ ତ ସେ ଦଳି ଦେବ ।' ବସୁଦେବ କହିଲେ । 'କୋଉଟା ଆମ ପାଇଁ ବଡ଼ କଥା ।' ଗୋଷ୍ଠୀ ମୁଖ୍ୟ ପୁଣି ଥରେ କହିଲେ, 'ଆମେ ଆଗ ପରି ସ୍ୱାଧୀନ ଭାବରେ ଚଳିବା ନା ଗୋଟାଏ ଅତ୍ୟାଚାରୀ ଶାସକ କଥାରେ ଉଠବସ ହେବା । ତାକୁ ଡରିମରି କୁକୁର ପରି ଲାଙ୍ଗୁଡ଼ ଜାକି ରହିବା ନା ଛିଡ଼ା ହେବା ଦମ୍ଭରେ । କହିବା, ନାଁ ଆମେ ତମକୁ ମାନିବୁ ନାହିଁ, ଯା ହେଉଛି ହଉ । ଭାବ, କଂସ ଅମଳରେ ଆମ ସ୍ତ୍ରୀ ପିଲାଙ୍କ ଇଜ୍ଜତ ରହିବ ଟି ?'

'ତୁମ କଥା ଠିକ୍', ଅକ୍ରୁର କହିଲେ, ଆମର କାହାରି ଇଜ୍ଜତ ରହିବ ନାହିଁ । କଂସ ଇଜ୍ଜତ ଦେବା ଲୋକ ନୁହେଁ । କଂସ ରାଜା ହେବା ମାନେ ଆମକୁ ଦିନରାତି ଜଗିରଖି ଚଳିବାକୁ ପଡ଼ିବ, ଯେପରି ସାମାନ୍ୟ ଏପାଖ ସେପାଖ ନ ହୁଏ । ତା ଅମଳରେ କାହାର ଯେ କେତେବେଳେ କ'ଣ ହେବ ତା' କହିବା ସମ୍ଭବ ନୁହେଁ । ତା' ପାଖରେ ଭାଇ ବନ୍ଧୁ ବାପା ମା' କିଛି ନୁହେଁ । ସେ ନିଜେ ହିଁ ସବୁ, ନିଜେ ହିଁ ସର୍ବେସର୍ବା ।'

ବସୁଦେବ କଅଣ କହିବାକୁ ଯାଉଥିଲେ । ବାପା ହାତ ଟେକି ବନ୍ଦ କଲେ, ବସୁଦେବ ସାଧାରଣ ଭାବରେ ଶାନ୍ତ ପ୍ରକୃତିର ଲୋକ । କଂସର ସେ ପାଖ ଲୋକ । କଂସକୁ ଅନ୍ୟମାନେ ନିନ୍ଦା କରିବା ସମୟରେ, ସେ କଂସକୁ ସମର୍ଥନ କରି ଯେ କଥା କହନ୍ତି ତା ନୁହେଁ । କିନ୍ତୁ ସବୁ ସତ୍ତ୍ୱେ କଂସ ପ୍ରତି ଯେ ତାଙ୍କର କିଛି କିଛି ଦୁର୍ବଳତା ଅଛି ତା ବୁଝିହୁଏ । ଯେପରି ସେ ନିଜେ ଅରିନ୍ଦମ, ବା ସେଠି ବସିଥିବା ଅଧିକାଂଶ ଲୋକ । କଂସ ଯେ ଗୋଟାଏ ଦୁର୍ଦ୍ଦାନ୍ତ ଅତ୍ୟାଚାରୀ ଶାସକ ହେବ ଏକଥା ପ୍ରାୟ ସମସ୍ତେ ମନେ ମନେ ବୁଝୁଛନ୍ତି । ତଥାପି... ତଥାପି... ଆଶା, ହୁଏତ ଅଲଗା ହୋଇପାରେ । ଟୋକାମାନେ ଯେମିତି ଭାବୁଛନ୍ତି ଯେ କଂସ ନେତୃତ୍ୱରେ ମଥୁରା ଉପରକୁ ଉଠିଯିବ, ଅନ୍ୟ ରାଜ୍ୟମାନେ ମଥୁରାକୁ ଡରିବେ । ଜଣେ ତ କହିଲା କଂସ ରାଜା ହେଲେ ଯାଦବମାନଙ୍କର ଗୌରବର ଦିନ ଆରମ୍ଭ ହେବ - ଆଶ୍ଚର୍ଯ୍ୟ !

ବାପା କହୁଥାନ୍ତି – 'ତୁମେ ସବୁ ଯାହା ଭାବୁଛ, ଯାହା କହୁଛ ଠିକ୍ । ସବୁ କଥାର ଦି'ଟା ଦିଗ ଥାଏ, ଭଲ ମନ୍ଦ । କଂସର ଯାହା ଚରିତ୍ର, ବ୍ୟବହାର ଆମେ ଦେଖିଛେ ସେଥିରେ ତ ଭୟ କରିବା କଥା । ସେଥିରେ ଜରାସନ୍ଧ ପରି ଗୋଟାଏ ଅତ୍ୟନ୍ତ ରାକ୍ଷସ-ପ୍ରକୃତିର ଲୋକ ତା' ପଛରେ । ସେ ଯେପରି ବାଘ ଝାମ୍ପିଲା ପରି ଉଗ୍ରସେନଙ୍କ ପାଖରୁ ରାଜଗାଦି କାଢ଼ିନେଲା, ଏପରି ହେବ ବୋଲି ଆମେ କେହି ଭାବି ନ ଥିଲେ । କିନ୍ତୁ ହେଲା । ତେବେ ଆଉ ଗୋଟାଏ କଥା ଅଛି । ମହାକାଳଙ୍କର ଇଚ୍ଛା ପୂର୍ଣ୍ଣ ହେବହିଁ ହେବ । ଆମେ କ୍ଷୁଦ୍ର ମଣିଷ କେତେ ବା ବୁଝୁ । କେଉଁ ଘଟଣାରୁ କି ଫଳ ହେବ ସେ କେବଳ ତାଙ୍କର ବିଚାର, ଆମର ନୁହେଁ । ମୁଁ ତ ଦେଖୁଚି ଚାରିପାଖରେ ଘୋର ଅନ୍ଧାର । ବୋଧେ ଏହାହିଁ ମହାକାଳଙ୍କର ଇଚ୍ଛା । ଅନ୍ଧାର ନ ଥିଲେ ଆଲୁଅ ଆସିବ କେମିତି ? ସେଇ ଆଲୁଅ କଥା ଭାବ, ତା'ହେଲେ ଅନ୍ଧାର ସହି ହେବ ।'

ବାପା ଚୁପ୍ କରିଗଲେ । ଅନ୍ୟମାନେ ବି ଚୁପ୍ । ଉଗ୍ରସେନ, ବସୁଦେବ, ଅକ୍ରୂର ଓ ଅନ୍ୟମାନେ ସମସ୍ତେ ବାପାଙ୍କୁ ସମ୍ମାନ କରନ୍ତି । ସମସ୍ତେ ଜାଣନ୍ତି ବାପା ଦିବ୍ୟଦ୍ରଷ୍ଟା । ସେ ବେଶି କଥା କହନ୍ତି ନାହିଁ । କିନ୍ତୁ ଯାହା କହନ୍ତି ସେ କଥାର ମାନେ ଥାଏ । ଅରିନ୍ଦମ ମନରେ ଦି'ଟା କଥା ଘୂରୁଥାଏ – ବସୁଦେବଙ୍କର 'ଦୁଃଖ' ଓ 'ପୁଣ୍ୟ' । ବାପା ବର୍ତ୍ତମାନ ବି ଅନ୍ଧାର ଆଲୁଅ କଥା କହୁଛନ୍ତି । କ'ଣ ଏ ଅନ୍ଧାର ଆଲୁଅ, ପାପ ପୁଣ୍ୟ, ଆଉ ବସୁଦେବ କାହିଁକି ? ଅରିନ୍ଦମର ତା'ର ମଗଧର ବନ୍ଧୁମାନଙ୍କ କଥା ମନେ ପଡ଼ିଲା । ସେମାନେ ବି ଏହିପରି ବୁଝି ନ ପାରିବା ଭାଷାରେ କଥା କହୁଥିଲେ । କିନ୍ତୁ ସେମାନେ ତ ବାପାଙ୍କ ପରି ଦିବ୍ୟଦ୍ରଷ୍ଟା ନୁହନ୍ତି ।

....ଅରିନ୍ଦମର ମନ ବର୍ତ୍ତମାନ ସ୍ଥିତିକୁ ଫେରି ଆସିଲା । ରାତି ଆଗଉଛି । ଯମୁନା କୂଳରୁ କୋଳାହଳ ବହୁତ କମିଗଲାଣି । ଏପରିକି ଗାଧୋଇବା ଲୋକଙ୍କ ଶବ୍ଦ ବି ଆଉ ବିଶେଷ ଶୁଣାଯାଉନି । ଚାରିଆଡ଼ ଚୁପ୍‌ଚାପ ହୋଇ ଆସୁଛି । ଅରିନ୍ଦମ ଆକାଶକୁ ଚାହିଁଲା । ଆକାଶରେ ମେଘ ରହିଛି । ଅନ୍ଧାର । ଏଠି ସେଠି ଗୋଟା ଅଧେ ତାରା । ସେ ମନେ ପକେଇବାକୁ ଚେଷ୍ଟା କଲା । ଆଜି ସପ୍ତମୀ, ଭାଦ୍ରବ ମାସ । ବାପା କହିଛନ୍ତି ଆସନ୍ତା କାଲି, ଅଷ୍ଟମୀରେ, କିଛି ଘଟିବ । ସେ ଜାଣେନା କ'ଣ ଘଟିବ । କିନ୍ତୁ ବାପା ଏଆଡୁ ସେଆଡୁ କଥା କହନ୍ତି ନାହିଁ । ସେ ନିଶ୍ଚୟ କ'ଣ ଭାବି କହିଛନ୍ତି । ଅରିନ୍ଦମ ପୁଣି ବାହାରକୁ ଚାହିଁଲା । ଇଚ୍ଛା ହେଲା ଘରୁ ବାହାରି ଯମୁନା କୂଳରେ ଟିକେ ବୁଲି ଆସିବ । ବାପାଙ୍କ କଥା ପୁଣି ମନେ ପଡ଼ିଲା । ବାପା କହନ୍ତି ଆର୍ଯ୍ୟମାନଙ୍କର ବସତି ସରସ୍ୱତୀ କୂଳରୁ ଗଙ୍ଗା, ଓ ଗଙ୍ଗା କୂଳରୁ ଯମୁନାକୂଳକୁ କ୍ରମଶଃ

ଲାଗି ଆସିଛି । ସମୟ ଆସିବ ଯେତେବେଳେ ଆର୍ଯ୍ୟମାନେ ସମସ୍ତ ଗଙ୍ଗା ଅବବାହିକାରେ ବ୍ୟାପିଯିବେ । ଗଙ୍ଗା ମାତୃରୂପିଣୀ, ଦେବୀ, ଯମୁନା ବି । ସେମାନଙ୍କର କରୁଣାରେ ଦେଶ ଶସ୍ୟଶାଳୀ, ଆର୍ଯ୍ୟମାନେ ବିତ୍ତଶାଳୀ । କିନ୍ତୁ ମଥୁରାର ଏ କି ଦୂରବସ୍ଥା । ଦୁଃସ୍ୱପ୍ନ ପରି ଲାଗୁଛି । ସେଇ କଂସ ଜରାସନ୍ଧର କନ୍ୟାଙ୍କୁ ବିଭା ହେବା ଓ ପରେ ପରେ ମଥୁରାର ରାଜସିଂହାସନକୁ ନିଜ ବାହୁ ବଳରେ ଅଧିକାର କରିବା – କେତେଦିନ ହେବ ? ଦଶ ବର୍ଷରୁ ଅଧିକ ଚାଲିଗଲାଣି । ଦଶ ଗ୍ରୀଷ୍ମ, ଦଶ ବର୍ଷା, ଦଶ ଶରତ, ଆଜି ଆଉ କ'ଣ ନୂଆ ଘଟିବ, ଅରିନ୍ଦମ ଭାବିଲା । ମା' ଯମୁନା ଦଶଥର ସ୍ଫୀତ ହୋଇ କୂଳ ଲଂଘି ଆସିଲେଣି । କିନ୍ତୁ ମଥୁରାର ନିରବଚ୍ଛିନ୍ନ ଦୁର୍ଯୋଗ, ନିରବଚ୍ଛିନ୍ନ ଭୟ । ମଥୁରାରେ ମଣିଷ ଜୀବନର ମୂଲ୍ୟ ନାହିଁ, ସବୁ କଂସର ଦୟା ।

....ସେଦିନର ସକାଳ କଥା ପୁଣି ଅରିନ୍ଦମ ମନରେ ଭାସି ଉଠିଲା । ଖବର ପାଇ ସାଙ୍ଗେ ସାଙ୍ଗେ ପୂଜା ଅଧାରୁ ଉଠି ବାପା ଯାଇଥିଲେ । ଅନ୍ୟାନ୍ୟ କେତେକ ମଧ୍ୟ ଆସିଥିଲେ । ସାରା ମଥୁରାର ଲୋକେ ବି ଜାଣିଗଲେ । କଂସର କାମକୁ ଯେ ସମସ୍ତେ ପସନ୍ଦ କଲେ ତା ନୁହେଁ । ଅଳ୍ପ କିଛି ଏଠି ସେଠି ଲୋକଙ୍କୁ ଛାଡ଼ିଦେଲେ ଅଧିକାଂଶ ନାପସନ୍ଦ କଲେ । ଉଗ୍ରସେନଙ୍କ ପ୍ରତି ସମସ୍ତଙ୍କର ସ୍ନେହ ଓ ଶ୍ରଦ୍ଧା ଥିଲା । ସେଦିନ ଦରବାର ଭବନରେ ବାପା ସମସ୍ତଙ୍କୁ ଏଇକଥା ବୁଝେଇ ଦେଇଥିଲେ । ଯେ ଯାହା ଘଟିଲା ମାନି ନିଅ । କଂସ ତରୁଣ ଲୋକ, ଖରାପ ହେବ ବୋଲି କାହିଁକି ଭାବୁଛ । କଂସ ଶକ୍ତିଶାଳୀ, ଉଚ୍ଚାଭିଳାଷୀ । ଜରାସନ୍ଧଙ୍କ ସମର୍ଥନରେ ସେ ମଥୁରାକୁ ଗୌରବ ଆଣିଦେବ ଅନ୍ତତଃ ଏଇଆ ଆଶା କରାଯାଉ । ଉଗ୍ରସେନଙ୍କୁ ସେ ଅନ୍ୟ କଥା କହିଥିଲେ । ସେ ଉଗ୍ରସେନଙ୍କୁ ସାନ୍ତ୍ୱନା ଦେଲେ ନାହିଁ । କେବଳ କହିଲେ, 'ଏହାହିଁ ତୁମର ପ୍ରାରବ୍ଧ । ଆହୁରି ଦୁଃଖ ଭୋଗିବାକୁ ଅଛି । ଧୈର୍ଯ୍ୟଧର । ଏ ଦୁଃଖ କଟିଯିବ ।' ଉଗ୍ରସେନ ବାପାଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିଲେ । ସେ ଖାଲି କହିଲେ – 'ମୋ କର୍ତ୍ତବ୍ୟ କ'ଣ ?' ବାପା କହିଥିଲେ – 'କିଛି ନାହିଁ । କଂସ ଯାହା ଜବରଦସ୍ତ କାଢ଼ି ନେବାକୁ ଚାହୁଁଛି, ଜବରଦସ୍ତ କ'ଣ ଦରକାର ? ସେ ତ ପୁଅ, ବାପ ପୁଅକୁ ଦେବାରେ ଆପତ୍ତି କାହିଁକି ? ତୁମେ ଖୁସି ମନରେ ତାକୁ ରାଜଗାଦୀ ଛାଡ଼ିଦିଅ । ସିପେହୀ ସୈନ୍ୟସାମନ୍ତର କ'ଣ ଦରକାର ?'

ଉଗ୍ରସେନ ବାପାଙ୍କ କଥା ମାନି ନେଇଥିଲେ । ସେ ନିଜେ ହିଁ କଂସକୁ 'ମହାରାଜ କଂସ' ଭାବରେ ଅଭିଷିକ୍ତ କରିଥିଲେ । କଂସ ଉଗ୍ରସେନଙ୍କ ରହିବା ପାଇଁ ଅନ୍ୟ ଉଆସର ବନ୍ଦୋବସ୍ତ କରିଥିଲା । ତାଙ୍କର ସେବା ପାଇଁ ଯଥେଷ୍ଟ ପରିଚାରକ ନିଯୁକ୍ତ କରିଥିଲା । ତା'ର ଆୟୋଜନରେ ତ୍ରୁଟି ନ ଥିଲା । କିନ୍ତୁ ସେ ଚାହୁଁ ନ ଥିଲା

ଉଗ୍ରସେନ ତା'ର କୌଣସି କାର୍ଯ୍ୟରେ ବାଧା ଦିଅନ୍ତୁ । ଏକଥା ସେ ସ୍ପଷ୍ଟ ଭାବରେ ବୁଝେଇ ଦେଇଥିଲା । ବାପା ବି ଉଗ୍ରସେନଙ୍କୁ ସେହିକଥା କହିଥିଲେ । ସେ କହିଥିଲେ, 'ତୁମେ କଂସଠାରୁ ଦୂରେଇ ରୁହ, ତା'ର କୌଣସି କାମରେ, ଏବେ ବା ଭବିଷ୍ୟତରେ, ମତାମତ ଦିଅନା ବା ପ୍ରତିବାଦ କରନା, ମାନି ନିଅ । ଅସୁବିଧା ହେଲେ ବି ମାନିନିଅ ।' ଉଗ୍ରସେନ ସେଇଆ ହିଁ କରିଥିଲେ । ଗତ ଦଶବର୍ଷରେ ସେ କଂସର କୌଣସି କାମରେ ପ୍ରତିବାଦ କରି ନାହାନ୍ତି । ମଝିରେ ମଝିରେ ଖୁବ୍ ଦୁଃଖ ହେଲେ ସେ ବାପାଙ୍କ ପାଖକୁ ଆସିଛନ୍ତି । ବାପାଙ୍କର ସେହି ଗୋଟାଏ କଥା - 'ସହିନିଅ, ଏ ଦୁଃଖ କଟିଯିବ ।'

କିନ୍ତୁ ବସୁଦେବ ଓ ଅକ୍ରୂରଙ୍କ ପ୍ରତି ତାଙ୍କର ଉପଦେଶ ଏତେ ସ୍ପଷ୍ଟ ନ ଥିଲା । ସେମାନେ ବି ଚାହିଁଥିଲେ ବାପାଙ୍କର ମତାମତ, ଏ ଘଟଣାରେ ବାପାଙ୍କର ଉପଦେଶ, ସେମାନଙ୍କର କର୍ତ୍ତବ୍ୟ କ'ଣ । ବାପା ଅନ୍ୟମାନଙ୍କୁ ଯାହା କହିଥିଲେ, ସେମାନଙ୍କୁ ବି ସେଇଆ କହିଥିଲେ - 'ଯାହା ଘଟୁଛି ତାହା ଘଟିବ । ଗ୍ରହଣ କରିନିଅ । ଏ ସମୟ ପରିବର୍ତ୍ତନର କଥା ।' ସେ ଅକ୍ରୂରଙ୍କୁ ଚାହିଁ ସାମାନ୍ୟ ହସିଲେ, କହିଥିଲେ, 'ଅକ୍ରୂର ତୁମେ ଠିକ୍ ଅଛ । କିନ୍ତୁ ସାବଧାନରେ ରହିବ ।' କିନ୍ତୁ ବସୁଦେବଙ୍କୁ ଚାହିଁ ତାଙ୍କର ମୁହଁର ଭାବ ବଦଳି ଯାଇଥିଲା । ମୁହଁରେ ହସ ନ ଥିଲା । ମୁହଁ ଗମ୍ଭୀର, ଦି ଆଖିରେ ଅଶେଷ ସହାନୁଭୂତି, ସ୍ୱର ମଧ୍ୟ ଶାନ୍ତ ଧୀର । କହିଥିଲେ, 'ବସୁଦେବ, ତୁମର କର୍ତ୍ତବ୍ୟ କ'ଣ ମୁଁ ଜାଣେନା, ମୁଁ କି ଉପଦେଶ ଦେବି । ତୁମେ ତୁମର କର୍ତ୍ତବ୍ୟ ଠିକ୍ କରିବ । ତେବେ ଗୋଟିଏ କଥା ମନେ ରଖ । ଅଶେଷ ଦୁଃଖରେ ବି ଯାହା ମଣିଷକୁ ବଞ୍ଚେଇ ରଖେ ସେ ତା'ର ଧୈର୍ଯ୍ୟ, ସହିଷ୍ଣୁତା ଓ ସବୁଠାରୁ ବଡ଼ ତା' ନିଜର ବିଶ୍ୱାସ । ନିଜର ବିଶ୍ୱାସ ଉପରେ ଆସ୍ଥା ରଖ ।' ମନେ ହୋଇଥିଲା ବାପାଙ୍କ କଥାରେ ବସୁଦେବ ଯେପରି ବିଚଳିତ ହୋଇ ଉଠିଥିଲେ । ବାପାଙ୍କ କଥାର ସ୍ୱର - ଯେପରି ଏପରି କିଛି କଥା କୁହାଯାଉଚି ଯାହା ସେ ଠିକ୍ ବୁଝି ପାରୁ ନାହାନ୍ତି । ବସୁଦେବ ଶାନ୍ତଶିଷ୍ଟ ସିଧା ସିଧା ଲୋକ । କଂସ ସହିତ ତାଙ୍କର ସମ୍ପର୍କ ମୋଟାମୋଟି ଭଲ । କାହାରି ବିରୁଦ୍ଧରେ ସେ ବିଶେଷ କିଛି ଭାବି ପାରନ୍ତି ନାହିଁ, କି କହନ୍ତି ନାହିଁ । ସେ ବାପାଙ୍କୁ ପଚାରିଲେ, 'ବିଶ୍ୱାସର କଥା କାହିଁକି କହୁଚନ୍ତି ? ନିଜ ଉପରେ ବିଶ୍ୱାସ ନ ରହିଲେ କ'ଣ ଆମେ ବଞ୍ଚି ପାରିବା ?' 'ନାଁ, ପାରିବା ନାହିଁ,' ବାପା କହିଥିଲେ, 'ମୁଁ ସେଇଆହିଁ କହୁଛି । ଯାହା ଘଟୁ ନିଜ ଉପରେ ବିଶ୍ୱାସ ରଖିଲେ ହିଁ ଆମେ ବଞ୍ଚି ପାରିବା ।'

ଦଶ ବର୍ଷ ତଳର ସେହି କଥା ଅରିନ୍ଦମର ଆଜି ଗୋଟି ଗୋଟି କରି ମନେ ପଡୁଛି । ଖୁବ୍ ଗୋଳମାଳ ହୋଇ ପାରିଥାନ୍ତା । ସେଥିପାଇଁ କଂସ ପ୍ରସ୍ତୁତ ଥିଲା ।


Digitized by srujanika@gmail.com

ଜରାସନ୍ଧର ସିପେହୀମାନେ ତ ରକ୍ତମୁହାଁ ହୋଇ ରହିଥିଲେ । ଶାନ୍ତଶିଷ୍ଟ ମଥୁରା ସହରରେ ଯେ କ'ଣ ହୋଇଥାନ୍ତା ସେକଥା କହିବା ସମ୍ଭବ ନୁହେଁ । କିନ୍ତୁ କିଛି ହେଲା ନାହିଁ । ଭଲରେ ଭଲରେ ମେଣ୍ଟିଗଲା । ସକାଳୁ ଯା' କିଛି ଉତ୍ତେଜନା ମନେ ହେଉଥିଲା, ଦିନ ବଢ଼ିବା ସଙ୍ଗେ ସଙ୍ଗେ ସେ ଉତ୍ତେଜନା କମିଗଲା । ସହରର ଜୀବନ ଯାତ୍ରା ପୁଣି ଆଗପରି ଚାଲିଲା । କିଛି କିଛି ମୁଖିଆ ଯେ ଅସ୍ଥିର ହେଉଥିଲେ ସେମାନେ ବି ଚୁପ୍ କରିଗଲେ । ବିଶେଷ କରି ଉଗ୍ରସେନ ଚାହିଁଲେ ନାହିଁ ଯେ କିଛି ଗୋଳମାଳ ହେଉ । ବସୁଦେବ ବି, ଅକ୍ରୂର ବି, ଅନ୍ୟମାନେ ବି । ବାପାଙ୍କର ପ୍ରଭାବ ଯେ ଅନେକ କାମ କରିଥିଲା ସନ୍ଦେହ ନାହିଁ । ପରେ ଅରିନ୍ଦମ ଭାବିଛି ବାପା ଠିକ୍ କାମ କଲେ କି ? ସେ କଂସର ଜବରଦସ୍ତ ଅନ୍ୟାୟ କାମ କାହିଁକି ମାନିନେବାକୁ କହିଲେ । କଂସକୁ ତ ସେ କିଛି କହିଲେ ନାହିଁ । କଂସ ଯେ ତାଙ୍କୁ ଅସମ୍ମାନ କରେ ତା ନୁହେଁ । କିନ୍ତୁ ସେ ହୁଏତ ତାଙ୍କ କଥା ଶୁଣି ନ ଥାନ୍ତା । ମୁହଁ ହୁଡ଼ି କଥା କହିଥାନ୍ତା । ନିଶ୍ଚୟ । ତା ସତ୍ତ୍ୱେ କିଛି କହିବା ହୁଏତ ଉଚିତ ଥିଲା, କିଛି ପ୍ରତିବାଦ, ଯେ ଯାହା କରୁଛ ତା ଠିକ୍ ନୁହେଁ, ଅନ୍ୟାୟ, ତୁମେ ତ ଦିନେ ରାଜା ହେବ, ତରବର କାହିଁକି ? ସେଦିନ ଦରବାର ଭବନରେ ମୁଖିଆମାନଙ୍କର ଆଲୋଚନା ବେଳେ ସେ ଭାବିଥିଲା କିଛି କହିବ । କିନ୍ତୁ ଗୁରୁଜନମାନଙ୍କର ଆଲୋଚନା ବେଳେ, ସେମାନଙ୍କର କଥାବାର୍ତ୍ତା ବେଳେ, ଉପରେ ପଡ଼ି କଥା କହିବା ଅସୁନ୍ଦର, ଆର୍ଯ୍ୟ ରୀତି ନୁହେଁ । ସେ ଚୁପ ରହିଥିଲା । କିନ୍ତୁ ଗୋଟାଏ କଥା ତାକୁ କିଛି ଆଶ୍ଚର୍ଯ୍ୟ ଲାଗିଥିଲା । ବାପା ଦୁର୍ବଳ ନୁହନ୍ତି । କୌଣସି କଥା ତାଙ୍କୁ ବେଠିକ୍ ମନେହେଲେ ସେ ଅଲଗା ହୋଇ ରହନ୍ତି, ନିଜର ଯାହା କ୍ଷତି ହେଲେ ବି ସାଲିସ କରନ୍ତି ନାହିଁ । ସେ ସବୁବେଳେ ନିଜ ସମ୍ମାନ ଜଗି ଚଳି ଆସିଛନ୍ତି । କିନ୍ତୁ ସେଦିନ କ'ଣ ହେଲା ? ସେ ନିଜେ ତ କିଛି ପ୍ରତିବାଦର କଥା କହିଲେ ନାହିଁ, ଅନ୍ୟମାନଙ୍କୁ ଶାନ୍ତ ଭାବରେ ଯାହା ଘଟିବାକୁ ଯାଉଛି ତାକୁ ମାନିନେବାକୁ କହିଲେ । କାହିଁକି ?

ମନେହେଲା ବାପା ବିଶେଷ କରି ତିନିଜଣଙ୍କ ବିଷୟରେ ବେଶୀ ଚିନ୍ତିତ ଥିଲେ - ଉଗ୍ରସେନ, ବସୁଦେବ, ଅକ୍ରୂର । ଉଗ୍ରସେନଙ୍କୁ ତ ସେ ସାନ୍ତ୍ୱନା ଦେଲେ । ସମସ୍ତେ ଗଲାପରେ ସେ ଅନେକ ସମୟ ଏକା ଏକା ଉଗ୍ରସେନଙ୍କ ପାଖରେ ବସି ରହିଥିଲେ - ଉଗ୍ରସେନ, ବାପା ଓ ଅରିନ୍ଦମ ନିଜେ । ବାପା ପୁରୁଣା କଥା ସବୁ ଉଗ୍ରସେନଙ୍କ ସହିତ ଗପୁଥିଲେ, ତା ସହିତ ଆର୍ଯ୍ୟମାନଙ୍କର ରାଜ୍ୟ, ରାଜ୍ୟ ଜୟ, ନୂଆ ନୂଆ ବସତି ବିଷୟରେ, ପର୍ଶୁରାମ, ଶ୍ରୀରାମଚନ୍ଦ୍ରଙ୍କ ପରି ଶ୍ରେଷ୍ଠ ଆର୍ଯ୍ୟମାନଙ୍କ ବିଷୟରେ, ବଶିଷ୍ଠ, ବିଶ୍ୱାମିତ୍ର, ବ୍ୟାସଦେବଙ୍କ ପରି ଶ୍ରେଷ୍ଠ ଋଷିମାନଙ୍କ ବିଷୟରେ ।

କିପରି ଦୁଷ୍ଟମାନଙ୍କୁ ଦମନ କରାଯାଇଥିଲା, କିପରି ଦେଶରେ ଶାନ୍ତି ଓ ଧର୍ମର ରାଜ୍ୟ ପ୍ରତିଷ୍ଠା କରାଯାଇଥିଲା । ଏକ ସମୟରେ ବାପା କହୁଥାନ୍ତି – 'ଉଗ୍ରସେନ, ଆଜି ଯାହା ଘଟିଲା, ତାକୁ ଗୋଟିକିଆ ଘଟଣା ବୋଲି ଭାବନା । ଏହିପରି ଘଟଣା ଅତୀତରେ ଅନେକ ଥର ଘଟିଛି । ଏ ତ ଦୁଷ୍ଟ ଓ ଶିଷ୍ଟମାନଙ୍କ କଥା । ଦୁଷ୍ଟମାନେ କ'ଣ କେବେ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଯିବେ ? ନାଁ । ସେମାନେ ଲୋପ ପାଆନ୍ତି ନାହିଁ । ସେମାନେ ସବୁ ସମୟରେ ରହିଛନ୍ତି । ସେମାନଙ୍କୁ ବାନ୍ଧି ରଖିବାକୁ ପଡ଼େ, ଦମନ କରିବାକୁ ପଡ଼େ । ଧୈର୍ଯ୍ୟ ଦରକାର, ପ୍ରଚୁର ଧୈର୍ଯ୍ୟ । ଆଉ ଆତ୍ମବିଶ୍ୱାସ । ରାମଚନ୍ଦ୍ରଙ୍କ କଥା ଭାବ – ତାଙ୍କର ଧୈର୍ଯ୍ୟ, ତାଙ୍କର ଆତ୍ମବିଶ୍ୱାସ । ଏ ସମୟ ବଦଳିଯିବ । ଆଜି କଂସ ଯାହା ଆରମ୍ଭ କଲା, ଏ କେବଳ ଆରମ୍ଭ ନୁହେଁ, ଶେଷର ଆରମ୍ଭ ।' ଅରିନ୍ଦମ ଲକ୍ଷ୍ୟ କରୁଥିଲା ବାପାଙ୍କର ଆଖିର ଦୃଷ୍ଟି ଯେପରି କେଉଁ କେଉଁ ଦୂରକୁ ଚାଲିଯାଉଥିଲା । କିନ୍ତୁ ସେ ବେଶି ସମୟ ନୁହେଁ । ସେ ପୁଣି କହିଥିଲେ – 'ନାଁ, ତୁମେ ବ୍ୟସ୍ତ ହୁଅନା ଉଗ୍ରସେନ । ଏ ଯାହା ହେଲା ଭଲ ହେଲା । ସେ ଜୋର ଜବରଦସ୍ତ ନ କରି ତୁମକୁ ରାଜଗାଦି ଛାଡ଼ିଦେବାକୁ ଅନୁରୋଧ କରିଛି । ତୁମେ ସେଇଆ କର । କଂସ ରାଜା ହେଉ ?

କିନ୍ତୁ ବସୁଦେବଙ୍କ ପାଇଁ ବାପାଙ୍କ କଥା ଅନ୍ୟପ୍ରକାର ଥିଲା । ଖୁବ୍ ସ୍ପଷ୍ଟ ନୁହେଁ, କିଛି କିଛି ନ ବୁଝି ପାରିବାର କଥା । କିନ୍ତୁ ସ୍ୱରରେ ଉତ୍ତେଜନା ବା ଉପଦେଶ ନାହିଁ, ସମୀହ, ସମ୍ମାନ । ବସୁଦେବଙ୍କୁ ସେ ଯେପରି ଅଲଗା କରି ଦେଖୁଥିଲେ । ସେ କହିଥିଲେ – 'ବସୁଦେବ, ତୁମେ ପୁଣ୍ୟବାନ, ତୁମେ ହିଁ ଆମ ସମସ୍ତଙ୍କୁ ରକ୍ଷା କରିବ ।' ଅରିନ୍ଦମ ହିଁ ସବୁଠୁ ବେଶି ଆଶ୍ଚର୍ଯ୍ୟ ହୋଇଥିଲା । ଏ କ'ଣ ବାପା କହୁଛନ୍ତି ? ବାପା କ'ଣ ଦେଖୁଛନ୍ତି ଯାହା କି ସେମାନେ କେହି ଦେଖିପାରୁ ନାହାନ୍ତି ? ସେ ବାପାଙ୍କୁ ପଚାରିଥିଲା । ବାପା କେବଳ ହସିଥିଲେ । କହିଥିଲେ, ଆଉ କିଛିଦିନ ଯାଉ ତୁ ସବୁ ବୁଝିପାରିବୁ । ନାଁ, ସେ ଆଜି ପର୍ଯ୍ୟନ୍ତ ବି ବୁଝି ପାରିନାହିଁ । ଯେତେବେଳେ ସେ ଭାବେ ତା' ଚିନ୍ତା ଅଧାବାଟରେ ରହିଯାଏ । ସବୁ ଗୋଳିଆମିଶା ହୋଇଯାଏ । ଆଜିକି ଦଶ ବର୍ଷରୁ ଅଧିକା ହେଲାଣି କଂସର ରାଜତ୍ୱ ଚାଲିଚି । ଏ ରାଜତ୍ୱରେ ଆନନ୍ଦ ନାହିଁ, ଶାନ୍ତି ନାହିଁ – ଭୟ, ପ୍ରଚଣ୍ଡ ଭୟ ସବୁଆଡ଼େ । ସାରା ମଥୁରାକୁ ଗୋଟାଏ ବିରାଟ ଅଜଗର ସାପ ପରି କଂସ ଗୁଡ଼େଇତୁଡ଼େଇ ରଖିଛି, ଅଣନିଃଶ୍ୱାସୀ କରି ସାରିଲାଣି । ଏ ତ ମଣିଷ ପରି ବଞ୍ଚିରହିବା କଥା ନୁହେଁ, ମରିଯିବା କଥା, ଏକମାତ୍ର ଜଣେ ଲୋକ ସବୁ, ସେ କଂସ । ବାପା ବି କିଛି କହୁ ନାହାନ୍ତି । ମନେହେବ ତାଙ୍କର କିଛି ପ୍ରତିକ୍ରିୟା ନାହିଁ । ନିଜର ପୂଜା ଅର୍ଚ୍ଚନାରେ ସେ ସବୁବେଳେ


Digitized by srujanika@gmail.com

ବୁଡ଼ି ରହୁଛନ୍ତି । ଉଗ୍ରସେନଙ୍କ ସହିତ ତାଙ୍କର ଦେଖାସାକ୍ଷାତ ପ୍ରାୟ ନାହିଁ । କାହାରି ସହିତ ବି ତାଙ୍କର ସମ୍ପର୍କ ନାହିଁ । କଂସ ଦରବାରକୁ ସେ କେବେ ଯାଆନ୍ତି ନାହିଁ । କଦବା କ୍ୱଚିତ କଂସ ଡକେଇ ପଠେଇଲେ ଯାଆନ୍ତି । ସଂକ୍ଷେପରେ ଯାହା କହିବା କଥା କହି ଶୀଘ୍ର ଫେରି ଆସନ୍ତି । କେବେ ପଚାରିଲେ ତାଙ୍କର ଗୋଟିଏ କଥା – 'ଅପେକ୍ଷା କର ।' ଏ କି ଭୟଙ୍କର ଅପେକ୍ଷା ! ଅରିନ୍ଦମର ମନେହେଲା ଏ ଯେପରି ଶ୍ମଶାନରେ ଅପେକ୍ଷା କରି ରହିବା କଥା । ସେଇ ଛାଇଛାଇଆ ଅନ୍ଧାର, ରାତି ପକ୍ଷୀମାନଙ୍କର ଭୟ ପାଇଲା ପରି ଡାକ, ଯମୁନା ପାଣିର ଛଳ ଛଳ ଶବ୍ଦ ଭିତରେ ତା'ମନ ପୁଣିଥରେ ତା'ର ମଗଧର ବନ୍ଧୁମାନଙ୍କ ପାଖକୁ ଫେରିଗଲା । ହଁ, ସେମାନେ ଏଇକଥା କହିଥିଲେ – 'ମଥୁରାକୁ ଘେନି ତୁମେ ଗର୍ବ କରୁଛ । ଅପେକ୍ଷା କର । ମଥୁରା ଶ୍ମଶାନ ହୋଇଯିବ ।'

....ସେଦିନ, ସେଇ ରାତିରେ, ଆଜିପରି ଅନ୍ଧାର ଓ ରାତି ପକ୍ଷୀମାନଙ୍କର ଡାକ ଭିତରେ, ଗୌରୀମା'ଙ୍କ ମନ୍ଦିରରେ, ସତେ ଯେପରି ସେ ଜୀବନର ଅ ଆ ପଢ଼ିବାକୁ ଶିଖିଲା । ଏ ଜୀବନର ଯେ ଗୋଟାଏ ଦିଗ ଯେଉଁଠି ଭୟ, ଡର ସହିତ ଦମ୍ଭ, ସାହସ ମିଶିକରି ରହିଛି ଏ ଧାରଣା ତା'ର ଆଗରୁ ନ ଥିଲା । ମଥୁରାରେ ଉଗ୍ରସେନ ରାଜା, କିନ୍ତୁ ଅନ୍ୟମାନେ ଯେମିତି ଜଣେ ଜଣେ ସେ ବି ଜଣେ । ରାଜାଙ୍କ ଉଆସ ଯେପରି ସମସ୍ତଙ୍କ ଘର । ସବୁବେଳେ ଯିବା ଆସିବା ଲାଗି ରହିଥିଲା । ଦାଣ୍ଡରେ ଘାଟରେ, ନଈ କୂଳରେ, ପର୍ବପର୍ବାଣୀ ଭିତରେ, ଖେଳ ମଇଦାନରେ, ସବୁଆଡ଼େ ଉଗ୍ରସେନ, ସମସ୍ତଙ୍କ ଭିତରେ ଜଣେ । ବାପା ବି ଏତେ ମିଳାମିଶା କରୁଥିଲେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏ ଯେପରି ମଥୁରା ଗୋଟାଏ ରାଜ୍ୟ ନୁହେଁ, ଗୋଟାଏ ଘର । ସବୁ ଖୋଲାମେଲା, ଯମୁନାର ପାଣିପରି କଳକଳ ଛଳଛଳ ହୋଇ ବହିଯାଉଛି । ବୟସ୍କ ଲୋକମାନଙ୍କର ସ୍ୱଚ୍ଛନ୍ଦରେ ନିଜ ଭିତରେ ମିଳାମିଶା, ସ୍ତ୍ରୀ ଲୋକମାନଙ୍କର ଦିନରାତି ଯେ କୌଣସି ସମୟରେ ବି ଯେ କୌଣସି ଜାଗାକୁ ଯିବା ଆସିବା, ପିଲାମାନଙ୍କର ଡିଆଁଡ଼େଇଁ – ଖୋଲା, ସହଜ । ବ୍ରାହ୍ମଣମାନଙ୍କର ପୂଜା ଅର୍ଚ୍ଚନା, ବେଦ ପାଠ, କ୍ଷତ୍ରିୟମାନଙ୍କର ଖେଳ, କସରତ, ବିପଦଆପଦ ପାଇଁ ପ୍ରସ୍ତୁତି, ବ୍ୟବସାୟ, ବାଣିଜ୍ୟ, ଅତିଥି ଅଭ୍ୟାଗତ, ମୁନିଋଷିମାନଙ୍କର ଯିବା ଆସିବା – ଅରିନ୍ଦମର ଚିନ୍ତାଧାରା ବନ୍ଦ ହୋଇଗଲା । ବାସ୍ତବିକ ମଥୁରା କଥା ଭାବିଲେ ତାକୁ ଆଶ୍ଚର୍ଯ୍ୟ ଲାଗେ । କି ସୁନ୍ଦର ଜାଗା, ଦୁଃଖ ନାହିଁ, ଶୋକ ନାହିଁ । ଯମୁନା କୂଳେ କୂଳେ ଆର୍ଯ୍ୟ ବସତି, ଯମୁନା ଆର କୂଳରୁ ଅପର୍ଯ୍ୟାପ୍ତ ଜମି, ଅପରୂପ ବନସ୍ଥଳୀ, ଗୋପ, ବୃନ୍ଦାବନ, ସ୍ୱର୍ଗରାଜ୍ୟ ପରି । ଅବନ୍ତୀ, ଅଯୋଧ୍ୟା, କୁରୁ, ପାଞ୍ଚାଳ, ସବୁ ରାଜ୍ୟମାନଙ୍କର ମଥୁରା ମଥାମଣି,


Digitized by srujanika@gmail.com

ସମସ୍ତେ ମଥୁରା ଆସିବାକୁ ଚାହାନ୍ତି, ବନ୍ଧୁବାନ୍ଧବ କରିବାକୁ ଚାହାନ୍ତି । ଅରିନ୍ଦମ ଭାବିପାରିଲା ନାହିଁ । ସେହି ଗୋଟାଏ ଦିନ, ଗୋଟାଏ ଲୋକ, ଉଗ୍ରସେନଙ୍କୁ ଜବରଦସ୍ତ ଗାଦିରୁ ବାହାର କରି ଦିଆଗଲା, କଂସ ରାଜା ହେଲା । ବାସ୍, ସବୁ ବଦଳି ଯିବାକୁ ଆରମ୍ଭ କଲା । ଏ ଯେପରି ସ୍ୱର୍ଗରୁ ଦେବତାମାନଙ୍କୁ ବାହାର କରି ରାକ୍ଷସମାନେ ରାଜା ହେଲେ । ହଁ, ଏ ଠିକ୍ ସେଇଆ । ରାକ୍ଷସ ଜନ୍ମ ହୁଏନା, ତିଆରି ହୁଏନା, ମଣିଷ ନିଜ ବ୍ୟବହାରରେ ରାକ୍ଷସ ହୋଇଯାଏ । କଂସ ରାକ୍ଷସ, ଜରାସନ୍ଧ ରାକ୍ଷସ । ସେଇ ଦିନଠୁ ଆରମ୍ଭ, ଡର ଭୟରେ ଚାପିହୋଇ ମଥୁରା ବଦଳି ଯିବାକୁ ଆରମ୍ଭ କଲା । ଗୋଟାଏ ଖୋଲାମେଲା, ମୁକ୍ତ ସ୍ୱଚ୍ଛଳ ଜାତି ତେଲୁଣୀ ପୋକ ପରି ଜାକିଜୁକି ହୋଇଗଲା । କାରଣ ଲୋଭ ମୋହ ଗୋଟାଏ ଲୋକର ପ୍ରଚଣ୍ଡ ଉଚ୍ଚାକାଂକ୍ଷା, ସ୍ୱାର୍ଥ, ନିଷ୍ଠୁରତା ।

ଭାନୁପ୍ରକାଶ ଏହି କଥା କହିଥିଲେ, ଯେ ଏ କେବଳ ସମୟର ପରିବର୍ତ୍ତନ ନୁହେଁ, ମଣିଷ ଚରିତ୍ରର ପରିବର୍ତ୍ତନ, ଲୋଭ ଓ ସ୍ୱାର୍ଥର ପରିଣତି । ନଚେତ, ମଗଧରେ ଜରାସନ୍ଧର କ'ଣ ଅସୁବିଧା ଥିଲା । ସେ ସାହସୀ, ଯୋଦ୍ଧା, ମଗଧରେ ସେ ଆର୍ଯ୍ୟ ରାଜ୍ୟମାନଙ୍କ ପାଖରୁ ବହୁତ ଦୂରରେ । ଜଣେ ନ୍ୟାୟପରାୟଣ, ଧାର୍ମିକ ପ୍ରଜାବତ୍ସଳ ରାଜା ହେବାରେ ତା'ର ଅସୁବିଧା କେଉଁଠି ? ନାଁ, ସେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ନିଜ ଅଧୀନରେ ଆଣିବାକୁ ଚାହେଁ । ସେଥିପାଇଁ କେବଳ ବାହୁବଳ ନୁହେଁ । ସବୁପ୍ରକାର ଅନୀତି ସେ କରିବା ପାଇଁ ପ୍ରସ୍ତୁତ । ସେଥିପାଇଁ ଦେବଦେବ ମହାକାଳଙ୍କୁ ଉପଲକ୍ଷ୍ୟ କରି ସେ ଶହେ ଜଣ ନିର୍ଦ୍ଦୋଷ ରାଜାଙ୍କର ମୁଣ୍ଡକାଟ କରିବ, ନିଜର ନିର୍ଦ୍ଦୋଷ ସରଳ ପ୍ରଜାମାନଙ୍କୁ ଅବିଚାରିତ ଭାବରେ ହତ୍ୟା କରିବ । ଉଦ୍ଦେଶ୍ୟ ସେ ଯାହା ସ୍ଥିର କରିବ, ସେଇଟା ହିଁ ଶେଷ କଥା । ତା'ର କାମ ଓ କଥାର ପ୍ରତିବାଦ ନାହିଁ, ପ୍ରତିବାଦ କଲେ ତାକୁ ଟିକ୍ ଟିକ୍ କରି ଶେଷ କରିଦିଆଯିବ, ଯେମିତି କୁସ୍ତି ବେଳେ ସୂର୍ଯ୍ୟସଂକାଶକୁ ମାରି ଦିଆଗଲା । ଏ ଚରିତ୍ରର କଥା, ମଣିଷ କିପରି ଭାବରେ ନିଜକୁ ଗଢୁଛି, ସେ କଥା । କଂସ ଓ ଜରାସନ୍ଧର ପ୍ରଭେଦ ନାହିଁ । ଜରାସନ୍ଧ ସେକଥା ଜାଣେ । ସେଇଥିପାଇଁ ସେ କଂସକୁ ନିଜର ଜାମାତା କରିନେଲା । ସେ ତା'ରି ପରି ନିଷ୍ଠୁର, ନିର୍ଦ୍ଦୟ, ସ୍ୱାର୍ଥପର । ଆମେ ଚାହୁଁ ତୁମେ ଏ ବିଷୟରେ ସ୍ପଷ୍ଟ ଭାବରେ ଚିନ୍ତା କର- ଭାନୁପ୍ରକାଶ କହିଥିଲେ ।

ଅରିନ୍ଦମ କ'ଣ ବା ଚିନ୍ତା କରିବ, ସେ କ'ଣ ବା କରିପାରେ ? ଏ ତ ଖାଲି ନିଷ୍ଠୁରତା, ସ୍ୱାର୍ଥପରତାର କଥା ନୁହେଁ, ରାଜନୀତିର କଥା ବି । ଗୋଟାଏ ଅତ୍ୟାଚାରୀ ଶାସକ, ଓ ଖାଲି ଶାସକ ନୁହେଁ ଶାସନ ବି- ତାକୁ କିପରି ବନ୍ଦ କରିବ ?

ସେଦିନ ସାରା ରାତି ଅରିନ୍ଦମ ଗୌରୀମା'ଙ୍କ ମନ୍ଦିରରେ ଥିଲା । ସେ ଶୋଇ ନାହିଁ । ଅନ୍ୟମାନେ ବି କେହି ଶୋଇ ନାହାନ୍ତି । ବହୁ କଥା ତା ମୁଣ୍ଡରେ ଗୋଳେଇ ଫେଣ୍ଟି ହୋଇ ଯାଉଥିଲା । ଜରାସନ୍ଧ, କଂସ, କଂସର ବିବାହ ଠାରୁ ଆରମ୍ଭ କରି ଭାନୁପ୍ରକାଶ ପ୍ରଭୃତିଙ୍କର ଗୋପନୀୟ ସଂଗ୍ରାମ ଓ ଆର୍ଯ୍ୟାବର୍ତ୍ତର ଭବିଷ୍ୟତ କଥା । ଏସବୁକୁ ଏକାଠି କରି ଭାବିବା ଅରିନ୍ଦମର କେବେ ଅଭ୍ୟାସ ନ ଥିଲା । ମଥୁରାର ଶାନ୍ତ ଶିଷ୍ଟ ସହଜ ପରିବେଶରେ ସେ ବଢ଼ି ଉଠିଥିଲା । ବାପାଙ୍କଠାରୁ ସେ ଶିକ୍ଷା ନେଇଥିଲା, ଶାସ୍ତ୍ର ପଢ଼ିଥିଲା, ଜ୍ଞାନୀ ଧାର୍ମିକ ସ୍ୱାଭିମାନୀ ଭଲ ମଣିଷ ହୋଇ କିପରି ବଢ଼ି ଉଠିବାକୁ ହେବ ବାପା ତାକୁ ଶିଖେଇ ଥିଲେ ଓ ସେ ସେହିପରି ବଢ଼ି ଉଠିଥିଲା । କଂସ ସହିତ ତା'ର ବନ୍ଧୁତା ଥିଲା । ସେ ବନ୍ଧୁତା ଅନ୍ତରଙ୍ଗ ବନ୍ଧୁତା ନୁହେଁ । ତଥାପି ସେ କଂସକୁ ସମୀହ କରି ଚଳୁଥିଲା । କିନ୍ତୁ ସେ ଦେଖୁଥିଲା କଂସ ଲଗାମଛଡ଼ା ହୋଇ ବଢ଼ି ଉଠୁଛି । କାହାକୁ ସେ ସମ୍ମାନ କରୁ ନ ଥିଲା । ଉଗ୍ରସେନଙ୍କୁ ବି ନୁହଁ । କେବଳ ବାପାଙ୍କୁ ସେ କିଛି କିଛି ମାନୁଥିଲା, ତାଙ୍କ ଠାରୁ ଦୂରେଇ ରହୁଥିଲା । ବାପା ବି ତାକୁ କିଛି କହୁ ନ ଥିଲେ, କି ତା ବିଷୟରେ କାହାକୁ କିଛି କହୁ ନ ଥିଲେ । କେବଳ ମଝିରେ ମଝିରେ କିଛି ଘଟଣା ଘଟିଲେ ଖାଲି କହୁଥିଲେ – 'ହଁ, ଏହାହିଁ ହବ, ଏହାହିଁ ଘଟିବ । ମାନିନିଅ ।' ସେଦିନ ଦରବାର ଭବନରେ ବି ବାପା ଉଗ୍ରସେନଙ୍କୁ ସେହିକଥା କହିଥିଲେ – 'ମାନିନିଅ' । କିନ୍ତୁ କାହିଁକି ? ବାପା କାହିଁକି ମାନିନେବା କଥା ବାରମ୍ବାର କହୁଛନ୍ତି ? ସେଦିନ ତା' ମନରେ ପ୍ରତିବାଦର ସ୍ୱର ଆସିଥିଲା । ଆଜି ବି ସେ ପ୍ରତିବାଦର ସ୍ୱର ସମ୍ପୂର୍ଣ୍ଣ ଲିଭିନାହିଁ । କାହିଁକି ସେ ଅନ୍ୟାୟକୁ ମାନିନେବ ? ସେ ବାପାଙ୍କୁ ପଚାରିଥିଲା । ବାପା କହିଥିଲେ – 'ଅନ୍ୟାୟକୁ ପ୍ରତିରୋଧ କରିବା ସମୟ ଆସିନାହିଁ । ଆସିବ ।'

ଅରିନ୍ଦମ ବୁଝୁଛି ଏ ପ୍ରତିବାଦର ମନୋଭାବ ତା'ର ନିଜର ନୁହେଁ । ତା'ର ଶିକ୍ଷାରେ ଆରମ୍ଭରୁ ନ ଥିଲା । ଏ ଭାନୁପ୍ରକାଶ ପ୍ରଭୃତିଙ୍କ ଶିକ୍ଷା । ଭାନୁପ୍ରକାଶ କହନ୍ତି ଅନ୍ୟାୟର ପ୍ରତିରୋଧ କରିବାର ନିର୍ଦ୍ଦିଷ୍ଟ ସମୟ ନାହିଁ । ଅନ୍ୟାୟ ଅଧର୍ମକୁ ସବୁ ସମୟରେ ପ୍ରତିରୋଧ କରିବା ଉଚିତ । ଆଉ ସେ ଅନ୍ୟାୟ ଅଧର୍ମ ବିଭିନ୍ନ ଭାବରେ ଆସିପାରେ । ସେ ଉଦାହରଣ ଦିଅନ୍ତି, କହନ୍ତି, ପର୍ଶୁରାମ ଯେତେବେଳେ ଆର୍ଯ୍ୟାବର୍ତ୍ତର କ୍ଷତ୍ରିୟ ରାଜାମାନଙ୍କୁ ନିପାତ କଲେ ସେ ଠିକ୍ କାମ କରିଥିଲେ । ରାଜାମାନେ ନିଜର କ୍ଷମତା ଓ ବିଳାସିତାରେ ଅତ୍ୟନ୍ତ ଦୁରାଚାରୀ ହୋଇ ଉଠିଥିଲେ । ନ୍ୟାୟ, ଧର୍ମ ପ୍ରଭୃତି କିଛି ସେମାନେ ମାନୁ ନ ଥିଲେ । ଆଉ ପର୍ଶୁରାମଙ୍କର ନିଜର କୌଣସି ସ୍ୱାର୍ଥ ନ ଥିଲା । ସେ ସମ୍ପୂର୍ଣ୍ଣ ନିଃସ୍ୱାର୍ଥ ଭାବରେ ଧର୍ମ ଓ ନ୍ୟାୟର ପ୍ରତିଷ୍ଠା ପାଇଁ ଯେତିକି ସମ୍ଭବ

ସେତିକି କଲେ । କିନ୍ତୁ ଗଙ୍ଗାପୁତ୍ର ଭୀଷ୍ମ ସେତିକି କରିପାରିଲେ ନାହିଁ । ତାଙ୍କ ପରି ଧର୍ମପ୍ରାଣ, ସତ୍ୟନିଷ୍ଠ, ଯୋଦ୍ଧା କ୍ୱଚିତ ଅଛନ୍ତି । ସମଗ୍ର ଆର୍ଯ୍ୟାବର୍ତ୍ତରେ ସେ ଅତୁଳନୀୟ । ସେ ରାଜା ହୋଇଥିଲେ ଭରତଙ୍କ ପରି ଚକ୍ରବର୍ତ୍ତୀ ହୋଇଥାନ୍ତେ । ଆଉ ଆଜି ଜରାସନ୍ଧର ଏ ଦୌରାତ୍ମ୍ୟ ନ ଥାନ୍ତା । କିନ୍ତୁ ସେ କଲେ କ'ଣ ? ଜାଣି ଜାଣି ପିତାଙ୍କର ସମ୍ପୂର୍ଣ୍ଣ ଅନ୍ୟାୟ ଅନୁରୋଧକୁ ମାନିନେଲେ, ତାଙ୍କର ଅତ୍ୟନ୍ତ ସ୍ୱାର୍ଥପର କାମଜ ଲାଳସାକୁ ଗ୍ରହଣ କରିନେଲେ । ତେଣୁ ଅନ୍ୟାୟ ଅଧର୍ମର ପ୍ରତିବାଦ କେବଳ ବାହାରର କଥା ନୁହେଁ, ନିଜର ଭିତରର କଥା ବି । ପ୍ରତିଦିନ ପ୍ରତି କଥାରେ ସଜାଗ ରହିବାକୁ ପଡ଼ିବ, ଦରକାର ହେଲେ ପ୍ରତିରୋଧ କରିବାକୁ ପଡ଼ିବ ।

ତା'ପରେ ସେ ନିଜେ ନିଜେ ହସିଥିଲେ । ଅରିନ୍ଦମକୁ ଲକ୍ଷ୍ୟ କରି କହିଥିଲେ - ତୁମେ ହୁଏତ ଭାବୁଛ ଏ କେମିତିକା ଲୋକ ହୋ । ଶୁଖିଲାରେ ବାଳିଆ ପିଟୁଛନ୍ତି । ଆର୍ଯ୍ୟାବର୍ତ୍ତ ଆର୍ଯ୍ୟ ବସତି କ'ଣ କାଲିକାର କଥା । ସେଇ କୋଉ ହଜାର ବର୍ଷ ତଳୁ, ଭାବିଲେ ଓର ପାଇବ ନାହିଁ, ସରସ୍ୱତୀ କୂଳରୁ ଆର୍ଯ୍ୟବସତି ଆରମ୍ଭ ହୋଇଥିଲା । ଆଜି ସାରା ଆର୍ଯ୍ୟାବର୍ତ୍ତ ଆର୍ଯ୍ୟମାନଙ୍କର ବସତି । ଶହ ଶହ ରାଜ୍ୟ, ହଜାର ହଜାର ବସତି । ଏ ସମସ୍ତେ କ'ଣ ଗୋଟାଏ ପ୍ରକାର ହେବେ, ଗୋଟାଏ ଢଙ୍ଗର ହେବେ ? ଏମାନେ କାହିଁକି ଏତେ ବିବ୍ରତ । ଏମାନେ କ'ଣ ସବୁ ଆର୍ଯ୍ୟଙ୍କୁ ଠିକ୍ କରିଦେବେ । ଏ ତ କୁକୁରର ଲାଙ୍ଗୁଡ଼କୁ ସିଧା କରିବା କଥା ।

ଅରିନ୍ଦମ ଯେ ଏପରି ଭାବୁଥିଲା, ତା ନୁହେଁ । କିନ୍ତୁ ତା' ମନରେ ନିଶ୍ଚୟ ସନ୍ଦେହ ଥିଲା । ସେ ଗତ କିଛିଦିନ ହେଲା ଏମାନଙ୍କୁ ଦେଖି ଆସୁଛି, ଏମାନଙ୍କ କାମ ଦେଖୁଛି, ଏମାନଙ୍କ କଥା ଶୁଣୁଚି, ଏମାନଙ୍କ ସାଙ୍ଗରେ ମିଶୁଛି । କୁହାଯାଇପାରେ ସେ ଏମାନଙ୍କର ପ୍ରାୟ ବନ୍ଧୁ ହୋଇଗଲାଣି, ନିଜର ଅଜାଣତରେ ତା ମନରେ ଏମାନଙ୍କ ପ୍ରତି ଗୋଟାଏ ସମ୍ମାନବୋଧ ଆସିଲାଣି । ସେ ଗୋଟାଏ କଥା ଦେଖୁଛି, ଏମାନଙ୍କ ମନରେ ଭୟ ନାହିଁ । ଏମାନେ ଅତ୍ୟନ୍ତ ବୁଦ୍ଧିମାନ, କୋଉ କାମ କେମିତି ହେବା ଉଚିତ ଓ କୋଉ କାମ କାହା ପରେ, ଏମାନଙ୍କର ସ୍ୱଷ୍ଟ ଚିନ୍ତା ରହିଛି, ସ୍ୱଷ୍ଟ ଯୋଜନା ରହିଛି । ଆଉ ଗୋଟାଏ କଥା । ଏମାନେ ଯୋଉ କାମ କରୁଛନ୍ତି ସେଥିପ୍ରତି ଶହେରୁ ଶହେ ଆନ୍ତରିକତା । ଜୀବନ ଚାଲିଯାଇପାରେ, କିନ୍ତୁ କାମ ଯେପରି ସମ୍ପୂର୍ଣ୍ଣ ସଫଳ ହେବ ସେଥିପାଇଁ ଚେଷ୍ଟା । ତା'ର ମନେ ହୋଇଥିଲା ଏଇ ଆନ୍ତରିକତା ହିଁ ଏମାନଙ୍କର ଶକ୍ତି ।

ତଥାପି ସେ ପୁଣି ପଚାରିଥିଲା - 'ଆପଣ କେତେଦିନ ଏ କାମ ଚଳେଇ ରଖିବେ ? ଫଳ କ'ଣ ହେବ ? ଆପଣ ତ ଏତେ କମ ଲୋକ ?'

ଭାନୁପ୍ରକାଶ ଉତ୍ତର ଦେଇଥିଲେ – 'ତୁମ ଶେଷ ପ୍ରଶ୍ନର ଆଗ ଉତ୍ତର ଦିଏ । ଆମେ ଅଳ୍ପ କେତେ ଲୋକଙ୍କୁ ତୁମେ ଏଠି ଦେଖୁଛ । ଆମେ ଅଳ୍ପ ନୋହୁ । ଏହି ମଧ୍ୟରେ ବି ଆମେ ଅନେକ ଅଛୁ । ତୁମର ମନେଥିବ ବିଭିନ୍ନ ସମୟରେ ତୁମକୁ ସାବଧାନ କରି ଦିଆଯାଇଛି । ତୁମେ ଆଶ୍ଚର୍ଯ୍ୟ ହୋଇଛ, ଭାବିଛ, ଏ କେମିତି କଥା, ଯେମିତି ପବନରେ କିଏ କଥା କହୁଛି । ନାଁ, ସେ ସବୁ, ସବୁ ସମୟରେ, ଆମ ଲୋକ । ସେମାନେ ସେମିତି କାମ କରିବାକୁ ଶିଖିଛନ୍ତି । ତୁମ ଶିବିରରେ ଆମର ବେଶ କିଛି ଲୋକ ଅଛନ୍ତି । ତୁମ ବିଷୟରେ ଆମେ ଏତେ ଖବର କେମିତି ପାଇଲୁ ? ଏକଥା କେବେ ଭାବିଚ ? ତୁମ ବିଷୟରେ ସବୁ ଖବର ପାଇସାରିଲା ପରେ ଆମେ ତୁମ ବିଷୟରେ ସ୍ଥିର ନିଷ୍ପତ୍ତି ନେଲୁ । ଜରାସନ୍ଧ କଥା ବି ଭାବ । ତାଙ୍କ ବିଷୟରେ ଯେତେ ଯେତେ ଖବର ତୁମକୁ ଦିଆଯାଇଛି ଠିକ୍ କି ଭୁଲ କୁହ । ଜରାସନ୍ଧର ଦି ଝିଅ କଂସକୁ ବିଭା ହେବେ ଏ ଖବର ଆମେ ତମକୁ ଦେଇଥିଲୁ, ମନେ ନାହିଁ ? କଂସ ବିଷୟରେ ଜରାସନ୍ଧଙ୍କର ଯେତେ ଯୋଜନା ଆମେ କେମିତି ଜାଣିଲୁ ? ଆମର କୋଉ ଖବର ଭୁଲ ହୋଇଛି କୁହ ? ଆମର ସବୁଆଡ଼େ ଲୋକ ଅଛନ୍ତି । କିନ୍ତୁ ଏ କେବଳ ଲୋକ ରହିବା କଥା ନୁହେଁ । ଆମେ ବହୁତ ଖବର ପାଉ, କିନ୍ତୁ ସବୁ ଖବର ଠିକ୍ ନୁହେଁ । ଆମେ ଖବର ସବୁକୁ ଆଲୋଚନା କରୁ, ବିଶ୍ଳେଷଣ କରୁ, ଅନେକ କଥା ଆମେ ଦେଖିପାରୁ ଯାହାକି ଖବର ଭିତରେ ଘୋଡ଼େଇ ହୋଇ ରହିଥାଏ । ସେଇଟାହିଁ ଅସଲ । ଲୋକର ଉଦ୍ଦେଶ୍ୟ କ'ଣ ନ ବୁଝିଲେ କାମ କ'ଣ ବା କିପରି ହେବ ଠିକ୍ ଠିକ୍ ଧରି ହେବନି । ଆମ ପାଇଁ ଯେତେ ଲୋକ କାମ କରନ୍ତି ସମସ୍ତେ ଏକଥା ଭାବି ପାରନ୍ତି ନାହିଁ । ଏସବୁ ଭାବିବା ବି ତାଙ୍କର କାମ ନୁହେଁ । ତାଙ୍କୁ ଯାହା କରିବାକୁ ହେବ ସ୍ପଷ୍ଟ ଭାବରେ, ନିର୍ଦ୍ଦିଷ୍ଟ ଭାବରେ କହିବାକୁ ହେବ । ତା'ହେଲେ କାମ ଠିକ୍ ହେବ, ଖବର ଠିକ୍ ଆସିବ ।'

ଭାନୁପ୍ରକାଶ ଚୁପକରି ଯାଇଥିଲେ, ହସିଥିଲେ, ଅରିନ୍ଦମକୁ ଚାହିଁ ପୁଣି କହିଥିଲେ – 'ଅରିନ୍ଦମ, ଏ ଖାଲି ଦଉଡ଼ା ଧାପଡ଼ା କଥା ନୁହେଁ, ନିଜର ଜୋର ଦେଖେଇବା କଥା ନୁହେଁ । ଏ ନିଜର ବିଶ୍ୱାସର କଥା, ଦମ୍ଭର କଥା, ବୁଦ୍ଧିର ଖେଳ । ଜରାସନ୍ଧ ଏକଥା ଜାଣନ୍ତି । ସେଇଥିପାଇଁ ତାଙ୍କର ଆମଙ୍କୁ ଏତେ ଭୟ । ତୁମେତ ଦେଖୁଛ ଜରାସନ୍ଧଙ୍କର ସିପେହୀ ସବୁଆଡ଼େ ଭର୍ତ୍ତି ହୋଇ ରହିଛନ୍ତି । ସବୁ କଥାକୁ ନଜର କରୁଛନ୍ତି । ତୁମେ ଟିକେ ଏପାଖ ସେପାଖ ହେଲେ ଘୋର ବିପଦ । ସେଦିନ ସକାଳେ ସେମାନେ ରାସ୍ତା ଉପରେ କେମିତି ହାଣି ପକେଇଲେ ଦେଖିଛ । ସେମାନଙ୍କର କାହାପାଇଁ ଏତେ ଡର ? ସହରର ସାଧାରଣ ଲୋକଙ୍କୁ ଭୟଭୀତ କରି

ରଖିବା ଗୋଟାଏ ଉଦ୍ଦେଶ୍ୟ ସନ୍ଦେହ ନାହିଁ । କିନ୍ତୁ ଅସଲ ଆମ ଭୟ । ସେମାନେ ଜାଣନ୍ତି ଆମେ ତାଙ୍କର ସବୁ ଖବର ଜାଣୁ, ଅଥଚ ଆମକୁ ପାଇବା ସହଜ ନୁହେଁ । ଏଇଟା ହିଁ ଭୟ । ତେଣୁ ଯେଉଁଟା ସବୁଠାରୁ ସହଜ ସେହି କାମ କରନ୍ତି - ଲୋକଙ୍କୁ ଧମକଚମକ ଦେବା, ପିଟିବା, ହାଣିଦେବା, ଯେମିତି ଲୋକେ ଡରିକରି ରହିବେ ସେଇକଥା । ମନେରଖ, ଲୋକଙ୍କୁ ଡରେଇକରି ରଖିବା ହିଁ ଜରାସନ୍ଧଙ୍କର ଶକ୍ତି । ଆଉ ଶହେରୁ ଶହେ ଲୋକ ଡରି ଯାଆନ୍ତି, ଚୁପ୍‌ଚାପ ରହନ୍ତି ।'

ଭାନୁପ୍ରକାଶ ପୁଣି ଚୁପ୍ କଲେ, ପରେ ଆସ୍ତେ ଆସ୍ତେ କହିଲେ - 'ଦେଖ, ଆମେ କେତେ ଲୋକ ସେଟା ବଡ଼ କଥା ନୁହେଁ । ଆମର ଆଗ୍ରହ କେତେ, ଆମର ଆନ୍ତରିକତା କେତେ ସେଇଟାହିଁ ବଡ଼ କଥା । ଜରାସନ୍ଧର ସିପେହୀ କ'ଣ ଆମ ଲୋକଙ୍କୁ ମାରୁନାହାନ୍ତି । ବେଶ ମାରୁଛନ୍ତି । ତଥାପି ଲୋକ ଆମ ସାଙ୍ଗକୁ ଆସୁଛନ୍ତି । ସେମାନେ ଜୀବନରୁ ପାଣି ଛଡ଼େଇ ଦେଇ ଆସୁଛନ୍ତି । କାହିଁକି ? ଭାବିଛ କେବେ ? ଜରାସନ୍ଧର ନିର୍ଦ୍ଦୟତା ଗୋଟାଏ କାରଣ ନିଶ୍ଚୟ । ଲୋକମାନେ ଜରାସନ୍ଧର ନିର୍ଦ୍ଦୟତା ପସନ୍ଦ କରୁନାହାନ୍ତି । ଯେତେ ଡରିକରି ରହିଲେ ବି ମନ ଭିତରେ ଗୋଟାଏ ଚିନ୍ତା ରହିଛି ଯେ ଏ ଠିକ୍ ନୁହେଁ । ଜରାସନ୍ଧ ରାଜା । ସେ ରାଜାଙ୍କ ପରି ବ୍ୟବହାର କରିବା ଦରକାର । ଲୋକଙ୍କୁ ହାଣି କାଟି, ଦିନ ରାତି ଡରେଇ ଥରେଇ କେହି ରାଜା ହୁଏନା । ତେଣୁ ଯେତେ ଭିତରେ ଭିତରେ ହେଲେ ବି ଗୋଟାଏ ପ୍ରତିବାଦ ସବୁବେଳେ ମନରେ ରହିଛି । ଜରାସନ୍ଧ ଯେ ରାଜାମାନଙ୍କୁ ଆଣି ବନ୍ଦୀ କରି ରଖିଛି ଏ କ'ଣ ଲୁଚାଛପା କଥା, ସମସ୍ତେ ଜାଣନ୍ତି । ତା'ର ଉଦ୍ଦେଶ୍ୟ ଖରାପ ଏ କଥା ବି ସମସ୍ତେ ଜାଣନ୍ତି । କିନ୍ତୁ ଖୋଲାଖୋଲି ପ୍ରତିବାଦ କରିବା ସମ୍ଭବ ନୁହେଁ । ଜରାସନ୍ଧ ଅତ୍ୟନ୍ତ ସ୍ୱେଚ୍ଛାଚାରୀ, ତା'ର ଧର୍ମଅଧର୍ମ ଜ୍ଞାନ ନାହିଁ । ସେ ରାଜା, କିନ୍ତୁ ସମ୍ପୂର୍ଣ୍ଣ ପ୍ରଜାବିରୋଧୀ । ତା' ଆଗରେ ପ୍ରଜାମାନେ ଗୋଡ଼ିମାଟି ପରି । ସାମାନ୍ୟ କାରଣରେ ପ୍ରଜାମାନଙ୍କୁ ସେ ପିମ୍ପୁଡ଼ି ପରି ଦଳିଦିଏ । ତା'ର ନିର୍ଦ୍ଦୟତା ପଛରେ କୌଣସି ଯୁକ୍ତିନାହିଁ । ନିର୍ଦ୍ଦୟତା କେବଳ ନିର୍ଦ୍ଦୟତା ପାଇଁ । ଏ ଚରିତ୍ରଗତ । ସବୁ ସ୍ୱେଚ୍ଛାଚାରୀ ରାଜାଙ୍କର ଏହାହିଁ ଚରିତ୍ର । ଆମେ ଆଜି ମଗଧରେ ଏ ଦଶା ଭୋଗୁଛୁ, ତୁମେ କାଲି ମଥୁରାରେ ଭୋଗିବ । କଂସ ଜରାସନ୍ଧକୁ ଟପିଯିବ, ଏ ବିଷୟରେ କୌଣସି ସନ୍ଦେହ ନାହିଁ ।'

'ଜରାସନ୍ଧ, କଂସ ପରି କ'ଣ ଆର୍ଯ୍ୟାବର୍ତ୍ତରେ ଅନ୍ୟ ରାଜା ନାହାନ୍ତି ?' ଅରିନ୍ଦମ ପଚାରିଥିଲା ।

'ଅଛନ୍ତି, ଅନେକ ଅଛନ୍ତି ।' ଭାନୁପ୍ରକାଶ କହିଥିଲେ, 'ଲୋକ କ୍ଷମତାକୁ


Digitized by srujanika@gmail.com

ଆସିଲେ ମୁଣ୍ଡ ଠିକ୍ ରହେନା । କ୍ଷମତାଟା ହିଁ ଗୋଟାଏ ବିଷ ପରି । ବୁଦ୍ଧି ଭ୍ରଂସ ହୁଏ, ଚରିତ୍ର ଭ୍ରଂସ ହୁଏ । ସେ ବିଷର ପ୍ରକୋପରେ ପୂରା ମଣିଷଟାହିଁ ନଷ୍ଟ ହୋଇଯାଏ । ରାଜ୍ୟ ନଷ୍ଟ ହୁଏ ।'

'ଏହାହିଁ ସମଗ୍ର ଆର୍ଯ୍ୟାବର୍ତ୍ତର ଅବସ୍ଥା', ଭାନୁପ୍ରିୟ ଆଲୋଚନାରେ ଯୋଗ ଦେଇଥିଲେ, 'ଏକଥା ବାରମ୍ବାର ଘଟିଛି । ଆର୍ଯ୍ୟମାନଙ୍କର ବସତି ବଢ଼ିବା ସାଙ୍ଗେ ସାଙ୍ଗେ ଅଧିକରୁ ଅଧିକ ଜନପଦ ତିଆରି ହୋଇଛି, ରାଜ୍ୟ ବଢ଼ି ଉଠିଛି, ରାଜା ବି, ଓ କ୍ଷମତା ଆସିବା ସାଙ୍ଗେ ସାଙ୍ଗେ ରାଜାମାନେ ଅଧିକରୁ ଅଧିକ ସ୍ୱେଚ୍ଛାଚାରୀ ହୋଇଛନ୍ତି ।'

'ତା' ହେଲେ...', ଅରିନ୍ଦମ କହିଥିଲା ।

'ତା' ହେଲେ କିଛି ନାହିଁ ।' ଭାନୁପ୍ରିୟ ପୁଣି କହିଥିଲେ, 'ଏ ଗୋଟାଏ ସ୍ଥିତି, ଏକଥା ବର୍ତ୍ତମାନ ଘଟୁଛି । ରାଜ୍ୟ ବିସ୍ତାର ସାଙ୍ଗେ ସାଙ୍ଗେ, କ୍ଷମତା ଆସିବା ସାଙ୍ଗେ ସାଙ୍ଗେ ବାରମ୍ବାର ଘଟିବ । ରାଜ୍ୟଟା ଯେ କେବଳ ନିର୍ଦ୍ଦିଷ୍ଟ ରାଜାମାନଙ୍କ ପାଇଁ ନୁହେଁ, ଲୋକମାନଙ୍କ ପାଇଁ, ଏକଥା ବାରମ୍ବାର କହିବାକୁ ପଡ଼ିବ ।'

'ହଁ, ଖାଲି କହିବା କଥା ନୁହେଁ', ଭାନୁପ୍ରକାଶ ଯୋଗ ଦେଲେ, 'ପ୍ରତିବାଦ କରିବାକୁ ହେବ । ଦରକାର ହେଲେ ସଶସ୍ତ୍ର ପ୍ରତିବାଦ ବି । ବଡ଼ କଥା ଲୋକମାନେ ସବୁବେଳେ ସଜାଗ ହୋଇ ରହିବା ଦରକାର । ତା'ହେଲେ ନିଜର ଧର୍ମ, ନୀତି ଠିକ୍ ରହିବ, ସ୍ୱାଧୀନତା ବି ଠିକ୍ ରହିବ ।'

'କିନ୍ତୁ ଅସୁବିଧା କ'ଣ ଜାଣ ?' ଭାନୁପ୍ରିୟ କହିଥିଲେ, 'ସାଧାରଣ ଲୋକେ ଏ କଥା ଠିକ୍ ଭାବି ପାରନ୍ତି ନାହିଁ । ସେମାନେ ନିଜ ନିଜ ଗୋଷ୍ଠୀରେ ବାନ୍ଧି ହୋଇ ରହିଥାନ୍ତି । ସେମାନଙ୍କୁ ବୁଝେଇବାକୁ ପଡ଼େ, ଦରକାର ହେଲେ କାମ କରି ଦେଖେଇ ଦବାକୁ ପଡ଼େ । ସେମାନେ ନିର୍ଦ୍ଦିଷ୍ଟ କାମ ଦେଖିଲେ ଭୟ ଭାଙ୍ଗେ, ବିଶ୍ୱାସ କରନ୍ତି ।'

'ପର୍ଶୁରାମ ଏ କାମ କରିଥିଲେ । ତେଣୁ ଲୋକମାନେ ତାଙ୍କୁ ଭକ୍ତି କରନ୍ତି, ପୂଜା କରନ୍ତି, ଭଗବାନ ପର୍ଶୁରାମ ବୋଲି ମାନନ୍ତି ।' ଭାନୁପ୍ରକାଶ କହିଥିଲେ । 'ଏ କଥା କ'ଣ ପୁଣିଥରେ ଘଟିବ ?' ଅରିନ୍ଦମ ପଚାରିଥିଲା । 'ଘଟିପାରେ', ଭାନୁପ୍ରକାଶ କହିଥିଲେ – 'ଯେତେବେଳେ ଅଧର୍ମ, ଅନ୍ୟାୟ ପୁଞ୍ଜିଭୂତ ହୋଇଉଠେ, ଲୋକ ଜୀବନ ଛିନ୍ନଛତ୍ର ହୋଇଯାଏ, ସେତେବେଳେ କିଛି ନା କିଛି ଶକ୍ତି ଆସିବା ଖୁବ୍ ସମ୍ଭବ, ଯାହାକି ଏସବୁକୁ ପ୍ରତିହତ କରିପାରିବ, ଧର୍ମ ପ୍ରତିଷ୍ଠା କରିବ । ଆମର ତ ସେଇ ବିଶ୍ୱାସ, ସେଇ ବିଶ୍ୱାସରେ ଆମେ କାମ କରୁଛୁ ।'

'ମନେରଖ, ଅରିନ୍ଦମ', କହିଥିଲେ ଭାନୁପ୍ରିୟ, 'ଏ କେବଳ ବିଶ୍ୱାସ ନୁହେଁ,

ଦୃଢ଼ ବିଶ୍ୱାସ । ଏ ଶକ୍ତି ଆସିବ ହିଁ ଆସିବ । କିନ୍ତୁ ଏ ଶକ୍ତି କିପରି ଭାବରେ, କୋଉ ଧାରାରେ ଆସିବ, ସେକଥା ବର୍ତ୍ତମାନ କହିବା ସମ୍ଭବ ନୁହେଁ । ଆମେ ଆମ ଭାବରେ ଚେଷ୍ଟା କରୁଛୁ । ସେହି ଶକ୍ତିକୁ ଅପେକ୍ଷା କରି ରହିଛୁ ।'

ଅରିନ୍ଦମର ବାପାଙ୍କ କଥା ବାରମ୍ବାର ମନେ ପଡୁଥିଲା । ବାପା ଏହିପରି କଥା କହୁଥିଲେ । କହୁଥିଲେ ଧୈର୍ଯ୍ୟଧର, ଅପେକ୍ଷା କର । କଂସର ଅଧର୍ମ ଶେଷକଥା ନୁହେଁ । ଅଧର୍ମଠାରୁ ଧର୍ମର ଜୋର ବେଶି । ଧର୍ମ ନିଶ୍ଚୟ ଆସିବ ।

...ସେଦିନ ସେହି ରାତିରେ ସମସ୍ତେ ଖାଡ଼ାଖାଡ଼ ବସି ରହିଥିଲେ । ଗୌରୀ ମା'ଙ୍କର ଅନେକ ବେଳୁ ପହଡ଼ ପଡ଼ିଗଲାଣି । ଏମାନଙ୍କର କାହାରି ଆଖିରେ ନିଦ ନାହିଁ । ପବନ ଧୀରେ ଧୀରେ ବହୁଥାଏ । ବୋଧହୁଏ ପାହାନ୍ତା ହୋଇଆସିଲା । ଚାରିପାଖର ଗଛ ତଳେ ଅନ୍ଧାର ଥିଲେ ବି, ଗଛ ଉପରେ ଆକାଶ ଟିକେ ଟିକେ ସଫା ହେଲାଣି । ତାରାମାନେ କିଛି କିଛି ମଳିନ ପଡ଼ି ଆସିଲେଣି । ଚଢ଼େଇମାନଙ୍କର ଡାକରେ ବି ଗଭୀର ରାତିର ସ୍ୱର କମିଗଲାଣି, କିଛି କିଛି ଖୋଲାମେଲା ଚେଇଁ ଉଠିବାର ସ୍ୱର । ଅରିନ୍ଦମ ଉଠି ଛିଡ଼ା ହେଲା – ଯିବ କି ? 'ନାଁ, ଅରିନ୍ଦମ, ବସ ।' ଭାନୁପ୍ରକାଶ କହିଥିଲେ, 'ସକାଳ ହେଉ । ବର୍ତ୍ତମାନ ଗଲେ କେହି ଦେଖିଲେ ସନ୍ଦେହ କରିପାରେ । ତେବେ ସେ ଭୟ ବି ଖୁବ୍ ବେଶି ଆଜି ନାହଁ । ସାରା ରାତି ତୁମ ଶିବିରରେ ମଦ ଆଉ ସ୍ତ୍ରୀ ଲୋକ । ସବୁ ଶିବିରରେ ସମାନ ଅବସ୍ଥା । ଜରାସନ୍ଧଙ୍କର ଏ ବିଷୟରେ କିଛି ବାଛବିଚାର ନାହିଁ । କେବଳ ବାହାର ଲୋକ ନୁହେଁ । ତାଙ୍କର ନିଜର ଲୋକମାନେ ବି । ସବୁ ସିପେହୀ, ସବୁ ଅତିଥି ।' 'ଜରାସନ୍ଧ ନିଜେ ବି ?' ଅରିନ୍ଦମ ପଚାରିଥିଲା ।

'ନାଁ', ଭାନୁପ୍ରକାଶ କହିଥିଲେ, 'ଜରାସନ୍ଧ ଚତୁର, ସାବଧାନ, ସତର୍କ । ଆଉ ତାଙ୍କର ରାକ୍ଷସ ସିପେହୀ ମାନେ ବି – ସାବଧାନ, ସତର୍କ । ମଦ ଆଉ ସ୍ତ୍ରୀ ଲୋକ ଗୋଟାଏ ଲୋଭ – ଭୟଙ୍କର ଲୋଭ । ଶହେରୁ ଶହେ ଲୋକ ଏ ଲୋଭରେ ପଡ଼ିଯାଆନ୍ତି । ସବୁ ଅତ୍ୟାଚାରୀ ଶାସକମାନଙ୍କର ଏ ଗୋଟାଏ ଅସ୍ତ୍ର, ବେଶ୍ ଧାରୁଆ ଅସ୍ତ୍ର । କଂସକୁ ଲୋକେ ମାନିନବା ଦରକାର । ଏ ଅବସ୍ଥା ଆହୁରି ଦୁଇ ତିନି ଦିନ ଚାଲିବ । ଜରାସନ୍ଧଙ୍କର ଦି'ଝିଅଙ୍କୁ କଂସ ବିଭା ହେବ । ତା'ପରେ ତୁମ୍ଭେମାନେ ଫେରିବ ।'

....ଆଜି ରାତିରେ, ଯମୁନା କୂଳରେ, ନିଜ ଘରେ ବସି ରହି ଅରିନ୍ଦମର ମନରେ ସେଦିନର କଥାସବୁ ବାରମ୍ବାର ଚେଇଁ ଉଠୁଛି । ସେ ପୁରୁଣା ଭୟ,

ଉଦ୍‌ବେଗ, ଉତ୍ତେଜନା ସେ ପୁଣି ଥରେ ଅନୁଭବ କରୁଛି । ସେଦିନ ସେ ଯେଉଁ ସମ୍ପର୍କ ଆରମ୍ଭ ହେଲା, ସେ ସମ୍ପର୍କ ଟାଣ ଗଣ୍ଠିପରି ତାକୁ ଆଜି ବି ବାନ୍ଧିକରି ରଖିଛି । ସେ ଆଜି ଅଲଗା ନୁହେଁ । ସେ ଭାନୁପ୍ରକାଶ, ଭାନୁପ୍ରିୟ ପ୍ରଭୃତିଙ୍କ ଭିତରୁ ଜଣେ । ସେମାନଙ୍କର ଦମ୍ଭ, ସାହସ, ବିଶ୍ୱାସ, ତା'ର ନିଜର ଦମ୍ଭ, ସାହସ, ବିଶ୍ୱାସ । କିନ୍ତୁ ସେ ଯେ ସବୁକଥା ସେତେବେଳେ ବୁଝି ପାରିଥିଲା ତା ନୁହେଁ । ବାପାଙ୍କ ପ୍ରଭାବରେ ସେ ଗଢ଼ି ଉଠିଥିଲା – ବାପାଙ୍କର ନୀତି, ନିଷ୍ଠା, ବିଶ୍ୱାସ ଆଉଥରେ ସେ ଦେଖିଲା ଓ ସେଇଟା ହିଁ ତା ଅଜାଣତରେ ସେମାନଙ୍କ ପାଖକୁ ତାକୁ ଟାଣି ନେଇଥିଲେ । ତା' ମନ ଉପରେ ଯେପରି ବସନ୍ତର ପବନ ବହିଗଲା, ଆଉ ଯାହାସବୁ ମୋଡ଼ିମାଡ଼ି ହୋଇ ରହିଥିଲା ସେସବୁ ଯେପରି ଫୁଲ ଫଳରେ ଫୁଟି ଉଠିଲା । କିନ୍ତୁ ସେଦିନ ଆହୁରି କିଛି ଘଟଣା ଘଟିବାର ଥିଲା ।

ପାହାନ୍ତା ପହରକୁ, ଚାରିପାଖ ପ୍ରାୟ ଫର୍ଚ୍ଚା ହୋଇଗଲା ପରେ, ଅରିନ୍ଦମ ଶିବିରକୁ ଫେରିଲା । ସେ ଫେରିବା ବେଳେ ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ ଶିବିରକୁ ଯାଇ କିଛି ସମୟ ଶୋଇଶାଇ ପଡ଼ । ଦେଖ, ଆମ କଥା, କି ଏସବୁ କଥା ଯେପରି କେହି କିଛି ନ ଜାଣେ । ଆମର କିଛି ଅସୁବିଧା ନାହିଁ, କିନ୍ତୁ ତୁମର ଅସୁବିଧା ହେବ । ତେବେ ମୋର ମନେହୁଏ ତୁମର କିଛି ଅସୁବିଧା ହେବ ନାହିଁ । ତୁମ ଶିବିରରେ ସାରା ରାତି ହୋ'ହଲ୍ଲା ପରେ ସମସ୍ତେ ଶୋଇଛନ୍ତି । ସବୁ ଶିବିରରେ ସେଇ ଅବସ୍ଥା । କାଲି ରାତିରେ କଂସ ତୁମ ଶିବିରକୁ ଆସିଥିଲା । ନାଁ, ନାଁ, ଚମକିବାର କିଛି ନାହିଁ । ସେ ତୁମକୁ ଖୋଜାଖୋଜି କରିନାହିଁ କି ତୁମକଥା ତା ମୁଣ୍ଡରେ ନ ଥିଲା । ସେ କୁସ୍ତିରେ ଜିତିଛି, ସେ ବର୍ତ୍ତମାନ ସାରା ଆର୍ଯ୍ୟାବର୍ତ୍ତର ପ୍ରସିଦ୍ଧ ଯୋଦ୍ଧା । ସେ ଜରାସନ୍ଧଙ୍କର ଦି ଝିଅଙ୍କୁ ବିଭା ହେବ । ତା' ମୁଣ୍ଡରେ ବର୍ତ୍ତମାନ ତୁମ୍ଭମାନଙ୍କ କଥା କି ମଥୁରା କଥା ନାହିଁ । ସେ ବର୍ତ୍ତମାନ ରାଜ୍ୟ ଜୟ କଥା ଭାବୁଚି । ଜରାସନ୍ଧଙ୍କ ସାଙ୍ଗରେ କିପରି ତାଳକୁ ତାଳ ଦେଇ ସେ ଛିଡ଼ା ହେବ । ଦରକାର ହେଲେ ଜରାସନ୍ଧଙ୍କୁ ଟପିଯିବ । କାଲି ସାରାରାତି ସେ ହୋ'ହଲ୍ଲା କରିଛି, ପ୍ରଚୁର ମଦ ପିଇଛି, ସ୍ତ୍ରୀଲୋକଙ୍କ ସାଙ୍ଗରେ ଲଟରପଟର ହୋଇଛି । ଅଧରାତି ପରେ ପରେ ଜରାସନ୍ଧଙ୍କ ଲୋକମାନେ ତାକୁ ଜରାସନ୍ଧଙ୍କ ଉଆସକୁ ଟେକିନେଇ ଯାଇଛନ୍ତି । ଜରାସନ୍ଧଙ୍କର ସିପେହୀମାନେ ଯେଉଁମାନେ ସାରାରାତି ଜଗି ରହିଥିଲେ ସେମାନେ ଆଉ ନାହାନ୍ତି । ତେବେ ଏ ମଦପିଆ ଓ ସ୍ତ୍ରୀଲୋକ ହୈ ଚୈ ଆହୁରି ତିନିଦିନ ଚାଲିବ । ଜରାସନ୍ଧ ଚାହାନ୍ତି ଯେତେ ଯିଏ ଯୁଆଡୁ ଆସିଛନ୍ତି ସମସ୍ତେ ଏଇଥିରେ ବୁଡ଼ି ରହନ୍ତୁ । ଅନ୍ତତଃ ତାଙ୍କ ବିଷୟରେ କେହି ଭାବିବାକୁ ସମୟ ପାଇବେ ନାହିଁ । ଜରାସନ୍ଧ ତାଙ୍କର ଅତ୍ୟନ୍ତ

ଅନ୍ତରଙ୍ଗ ଲୋକଙ୍କର ଜରୁରୀ ସଭା ଡାକିଛନ୍ତି । ଆମର ଯାହା ଖବର କଂସ ମଥୁରା ଫେରିଯିବା ଆଗରୁ କିଛି ଭୟଙ୍କର କାର୍ଯ୍ୟର ଯୋଜନା ହେବ । ତୁମେ ସମସ୍ତଙ୍କ ସାଙ୍ଗରେ ମିଶାମିଶି କରିବ । ସାବଧାନ ରହିବ କେହି କିଛି ସନ୍ଦେହ ନ କରନ୍ତି । ତୁମେ ଶୋଇଶାଇ ଉଠିଲା ପରେ ଆମ ଲୋକ ତୁମକୁ ଭେଟିବେ । ଯାଅ ।'

କିନ୍ତୁ ଅରିନ୍ଦମ ଥାଥା ମାମା ହୋଇ ଛିଡ଼ା ହୋଇ ରହିଥିଲା । କହିଲା – 'ହଁ, ଯାଉଛି... ।'

ଭାନୁପ୍ରକାଶ ଅରିନ୍ଦମକୁ କିଛି ସମୟ ସ୍ଥିର ହୋଇ ଚାହିଁଲେ । କହିଲେ – 'ଅରିନ୍ଦମ, ତୁମେ କ'ଣ ଭାବୁଛ । କ'ଣ ଭାବୁଛ ? କୁହ ।'

ଅରିନ୍ଦମ, କହିଥିଲା, 'ନାଇଁ, ମୁଁ ଏ ଖାଲି ପବନ ସହିତ ଯୁଦ୍ଧ କରିବା କଥା ଭାବୁଛି । ଆପଣ ମୋତେ ଯାହା କହିଲେ ମୁଁ ବୁଝୁଛି । ହୁଏତ ଆପଣ ଠିକ୍ କଥା କହୁଛନ୍ତି । ଆପଣଙ୍କ କଥାରେ ମୋର ତ ମନେ ହେଉଛି ମୋର ଜ୍ଞାନଚକ୍ଷୁ ଖୋଲିଗଲା, କିନ୍ତୁ...'

'କିନ୍ତୁ ? କିନ୍ତୁ କ'ଣ ?' ଭାନୁପ୍ରକାଶ କହିଲେ ।

'ମୁଁ ଭାବୁଛି ଏସବୁ କାମର ଫଳ କ'ଣ ? କେତେଦିନ ଆପଣମାନେ ଏ କାମ ଚଳେଇ ରଖିପାରିବେ ? ଜରାସନ୍ଧ ମହା ଶକ୍ତିଶାଳୀ, କଂସ ବି ଦିନେ ହେବ । ଏମାନେ ତ ଆପଣମାନଙ୍କୁ ଟିପରେ ଦଳିଲା ପରି ଦଳିଦେବେ । ଆପଣମାନେ ସେକଥା ଜାଣନ୍ତି । ତେବେ କାହିଁକି ଏହି କାମରେ ଲାଗିଛନ୍ତି ।'

ଭାନୁପ୍ରକାଶ କିଛି ସମୟ ଚୁପ୍‌ହୋଇ ରହିଲେ । ଭାନୁପ୍ରିୟ ବି । ପରେ ଭାନୁପ୍ରକାଶ କହିଲେ – 'ଅରିନ୍ଦମ, ଟିକେ ବସ । ମୁଁ ତୁମକୁ ଆଗରୁ ଯାହା କହିଥିଲି ପୁଣି ଥରେ କହୁଛି । ତୁମେ ଠିକ୍ କହିଛ । ଏଇଟାହିଁ ଏ କାମର ବାସ୍ତବ ଦିଗ । ଜରାସନ୍ଧ ବା କଂସ ଏମାନଙ୍କର ଶକ୍ତି ଅନେକ । ଆମେ ତ ସେମାନଙ୍କ ଆଗରେ କିଛି ନୋହୁଁ । ତେଣୁ ତୁମେ ଯାହା କହିଲ ସେକଥା ସମସ୍ତେ କହିବେ । କିନ୍ତୁ ଆଉ ଗୋଟାଏ ପାଖ ଅଛି । କୁକୁରଟାକୁ ଗୋଇଠାଟାଏ ପକେଇଲେ ସେ ସାଙ୍ଗେ ସାଙ୍ଗେ କାମୁଡ଼ି ଦେବ । ଆମେ କ'ଣ କୁକୁର ଠଉଁ ହୀନ ? ଏପରି ହୀନ ଭାବରେ ବଞ୍ଚିରହି ଲାଭ କ'ଣ ? ଭାବ, ନିଜ ଘର ଭିତରେ ଖାଇ ପିଇ, ନିଜ ପିଲାପିଲିଙ୍କ ପାଖରେ ଚୁପ୍‌ଚାପ୍ ରହି, ହଲିଲା ପାଣିକି ଗୋଡ଼ ନ ବଢ଼େଇ, ବୁଢ଼ା ହେଇ ମରିଯିବ, ଏଇ ତ ? ଯାକୁହିଁ କ'ଣ ତୁମେ ବଞ୍ଚିବା କୁହ, ତା'ହେଲେ ତ ଆର୍ଯ୍ୟମାନେ ସେଇ ସରସ୍ୱତୀ କୂଳରେ ଚୁପଚାପ ବସିଥାନ୍ତେ । ଏତେ ନୂଆ ନୂଆ ଜନପଦ କାହିଁକି, ରାଜ୍ୟ କାହିଁକି, ମୁନି ଆଶ୍ରମ କାହିଁକି, ବେଦ ଉପନିଷଦ କାହିଁକି ? ତୁମ ଆଗରେ ଦୁଇଟା

କଥା, ତୁମେ ଭଲ ଲୋକ ପରି ଗୋଇଠା ଖାଇଲେ ବି ଚୁପ୍‌ଚାପ୍ ହୋଇ ରହିବ ନା, ଉଠି ଛିଡ଼ା ହେବ, ପ୍ରତିବାଦ କରିବ, ଅନ୍ୟ କଥା ଭାବିବ, ଯା ଘଟୁଛି ଘଟୁ ।'

'ଆମେ ଦ୍ୱିତୀୟ ରାସ୍ତା ବାଛି ନେଇଛୁ ।' ଭାନୁପ୍ରିୟ କହିଲେ – 'ତୁମେ ହୁଏତ କହିପାର ଅନ୍ୟ ରାସ୍ତା ରହିଛି । ନା ନାହିଁ । ଯେଉଁଠି ଶାସକ ଶାସିତ ଭିତରେ ମନର ମେଳ ଥାଏ, ପରସ୍ପର ପରସ୍ପରର କଥା ବୁଝିପାରନ୍ତି, ପରସ୍ପର ପରସ୍ପରର ସୁଖ ଦୁଃଖରେ ଭାଗୀ ହୁଅନ୍ତି, ସେଠି ଅନ୍ୟ ରାସ୍ତା କଥା ଆସେ । ଯେପରି ମଥୁରାରେ ଉଗ୍ରସେନ ଓ ତୁମେମାନେ । କିନ୍ତୁ ଯେଉଁଠି ଶାସକ ଜରାସନ୍ଧ, କଂସ, କେବଳ ଲୋଭ ମୋହ ନିର୍ଦ୍ଦୟତା, ସେଠି ଅନ୍ୟ ବାଟ ନାହିଁ । ତୁମକୁ ପ୍ରତିବାଦ କରିବାକୁ ହିଁ ହେବ, ଦମ୍ଭରେ ଛିଡ଼ା ହେବାକୁ ହେବ । କ'ଣ ଘଟିବ ଭାବି ବିଚାର କରିହେବନି ।'

'ଆଉ ଅରିନ୍ଦମ, ଯାହା ମୁଁ କହିଛି, ତୁମେ ଭାବ ନା ଭୟ କେବଳ ଗୋଟାଏ ଆଡୁ' କହିଲେ ଭାନୁପ୍ରକାଶ, 'ଜରାସନ୍ଧର ବି ଆମ ପ୍ରତି ବହୁତ ଭୟ, ଯାହା ସବୁ ଅତ୍ୟାଚାରୀ ଶାସକମାନଙ୍କର ଲୋକମାନଙ୍କ ପ୍ରତି ଥାଏ । ଆଉ ଭୟ ବଢ଼ିବା ସାଙ୍ଗେ ସାଙ୍ଗେ ସେମାନଙ୍କର ଅତ୍ୟାଚାର ବଢ଼ି ବଢ଼ି ଚାଲେ । ଜରାସନ୍ଧଙ୍କର ଏତେ ସିପେହୀ କାହିଁକି ? ଏତେ ସତର୍କତା କାହିଁକି ? ତୁମେ କ'ଣ ଭାବୁଛ ଏସବୁ ଖାଲି ଖାଲି ହେଉଛି, କିଛି କାରଣ ନାହିଁ ? ନାଁ । ଭୟ, ଡର । ଭାବିପାରୁ ନାହାନ୍ତି ସେମାନେ ଆମେ କିଏ, ବୁଝିପାରୁ ନାହାନ୍ତି ଆମକୁ କେମିତି ଧରିବାକୁ ହେବ, ଜାଣିପାରୁ ନାହାନ୍ତି ଆମେ କ'ଣ କ୍ଷତି କରିବୁ ଆଉ କେମିତି । ଡରଟା ସ୍ପଷ୍ଟ ହୋଇଗଲେ ଏତେ ଡର ଲାଗିବନି । କିନ୍ତୁ ଯେଉଁଠି ବୁଝି ହେଉନାହିଁ ସେ ତ ଭୟଙ୍କର, ସେଠି ତ ଡରର ସୀମା ନାହିଁ । ଏହାହିଁ ଜରାସନ୍ଧଙ୍କର ଅବସ୍ଥା ।'

'ଏ ତ ଲୁଚାଛପା କଥା ।' ଅରିନ୍ଦମ କହିଥିଲା ।

'ହଁ, ଲୁଚାଛପା କଥା ।' ଭାନୁପ୍ରକାଶ କହିଥିଲେ, 'ଏ ବି ଯୁଦ୍ଧର ଗୋଟାଏ ଧାରା । ସମୟ ସୁବିଧା ଦେଖି ଯୁଦ୍ଧରେ ବିଭିନ୍ନ ଧାରା ପ୍ରୟୋଗ କରାଯାଇଥାଏ । ବଡ଼ କଥା, ଉଦ୍ଦେଶ୍ୟ କ'ଣ । ଉଦ୍ଦେଶ୍ୟ ଠିକ୍ ଥିଲେ ଧାରା ବି ଠିକ୍ । ଆଉ ଅତ୍ୟାଚାରୀ ଶାସକର ପ୍ରତିବାଦ ଯେ କୌଣସି ଭାବରେ କଲେ ବି ତା ସିଦ୍ଧ ।'

ଭାନୁପ୍ରକାଶ ପୁଣି କହିଲେ – 'ଅରିନ୍ଦମ, ତୁମେ ଧର୍ମ ଅଧର୍ମର କଥା ଭାବୁଛ । ଯେ ଧର୍ମ ଅଧର୍ମକୁ ଗୁରୁତ୍ୱ ଦିଏ ତା' ପାଖରେ ସିନା ସେ କଥାର ମୂଲ୍ୟ ଅଛି । ଜରାସନ୍ଧ ତ ଅଧର୍ମ, ତା'ପାଖରେ ଧର୍ମ ଅଧର୍ମ କ'ଣ ?'

ଅରିନ୍ଦମର ଅତମତ ଭାବ କଟି ଯାଉଥିଲା । ଚାରିପାଖରେ ଦିନ ବି ସଫା ହୋଇ ଆସୁଥିଲା । ସେ ଶିବିରକୁ ଫେରିଲା ।


Digitized by srujanika@gmail.com

ଶିବିରକୁ ଫେରି ତାକୁ ଆଶ୍ଚର୍ଯ୍ୟ ଲାଗିଲା । ମହାକାଳଙ୍କ ମନ୍ଦିର ସେ ପାଖରୁ ସୂର୍ଯ୍ୟ ଉଠି ଆସିଲେଣି । ଚାରିପାଖର ଗଛରେ, ଆକାଶରେ ଚଢ଼େଇଙ୍କ କଳରବ । ଦୂରରୁ ମନ୍ଦିରର ଘଣ୍ଟା ଧ୍ୱନି ଶୁଭୁଛି । ଦୂର ରାଜପୁରୀର ମିଶ୍ରିତ କୋଳାହଳ ଭାସି ଆସୁଛି । କିନ୍ତୁ ଚାରିପାଖ ଏତେ ଶୂନ୍‌ଶାନ୍ କାହିଁକି ? ସବୁବେଳେ ସିପେହୀ ପହରା ଦେଉଥାନ୍ତି । କେହି ନାହାଁ । ଶିବିର ବାହାରେ ମଧ୍ୟ ଚୁପ୍‌ଚାପ୍, ଲୋକ ଚଳାଚଳ ଶୂନ୍ୟ । ସେ ଆସ୍ତେ ଆସ୍ତେ, ସାବଧାନରେ, ଶିବିର ଭିତରକୁ ପଶିଲା । ଯାହା ଦେଖିଲା – ହା ଭଗବାନ ! ଏ କ'ଣ ! ଏ କ'ଣ ମଥୁରା ଶିବିର ? ଏମାନେ ମଥୁରା ଲୋକେ ? ଚାରିଆଡ଼େ ମଦ ଭାଣ୍ଡ ଗଡ଼ୁଛି, ଲୋକମାନେ ଖୋଲାମେଲା ହୋଇ ଯେ ଯୁଆଡ଼େ ପଡ଼ିଛନ୍ତି, ଆଉ ମେଳା ମେଳା ସ୍ତ୍ରୀ ଲୋକ, ଲୁଗାପଟା ଅତ୍ୟନ୍ତ ଅସଂଯତ । ସେମାନେ ବି ଅଚେତ । ଚାରିପାଖରୁ ଦୁର୍ଗନ୍ଧ । ଅରିନ୍ଦମ ମୁହୂର୍ତ୍ତେ ଛିଡ଼ା ହେଲା, ଭାବିଲା ବାହାରକୁ ଚାଲିଯିବ କି ? ନାଁ, କିଏ ଯେପରି କାନ ପାଖରେ କହିଲା । ସେ ଚମକି ଉଠିଲା । ନାଁ, ତା'ର ବାହାରକୁ ଯିବା ଠିକ୍ ହେବନି । ସେ ଶୋଇଥିବା ଲୋକଙ୍କୁ ଡେଇଁ ଶିବିରର ଗୋଟାଏ କଣରେ ଥିବା ତା' ବିଛଣା ପାଖକୁ ଚାଲିଗଲା, ବିଛଣା ପାରି, ସେଇ ଦୁର୍ଗନ୍ଧ ଭିତରେ ଚୁପ୍‌ଚାପ୍ ଶୋଇପଡ଼ିଲା । ସେ କେତେ ସମୟ ଶୋଇଥିଲା ଜଣାନାହିଁ । କିନ୍ତୁ ସେ ଶୋଇଥିଲା । ସାରା ରାତି ଅନିଦ୍ରା, ନିଦ ଆସିବାକୁ ତାକୁ ବେଶି ସମୟ ଲାଗି ନ ଥିଲା ।

ସେ ଯେତେବେଳେ ଉଠେ, ଆଉ ଅନେକ ବି ଉଠାଉଠି କଲେଣି । ସ୍ତ୍ରୀଲୋକମାନେ ବି ଉଠି ପ୍ରାୟ ଅନେକ ଚାଲିଗଲେଣି । ମଦ ଭାଣ୍ଡ ଗୁଡ଼ାକ ବି ପ୍ରାୟ ସଫା ହୋଇଗଲାଣି । ଲୋକ କୋଳାହଳ, ଯିବା ଆସିବା ବଢ଼ିଛି । ସାଧାରଣ ଭାବରେ ଦେଖିଲେ କାଲି ରାତିରେ ଯେ କି ବିଭତ୍ସ କାଣ୍ଡ ହୋଇଥିଲା ତା ବୁଝିବାର ଉପାୟ ନାହିଁ । ନିଦ ଭାଙ୍ଗିଲେ ବି ସେ ସାଙ୍ଗେ ସାଙ୍ଗେ ବିଛଣାରୁ ଉଠିଲା ନାହିଁ, କିଛି ସମୟ ସେ ସେହିପରି ଚେଇଁ ଚେଇଁ ଶୋଇ ରହିଲା । ତା ପାଖରେ ବି ଯେଉଁମାନେ ଶୋଇଥିଲେ ସେମାନେ ବି ଅଧାଅଧା ଉଠା ହେଲେଣି । ସେମାନଙ୍କ ଭିତରେ କଥା ଚାଲିଚି । ସ୍ୱର ସ୍ପଷ୍ଟ ନୁହେଁ, ଖଣ୍ଡ ଖଣ୍ଡ, ଜଡ଼ିତ । ଅରିନ୍ଦମ କାନ ପାରିଲା । ଜଣେ କହୁଛି, 'କାଲି ରାତିରେ କ'ଣ କଂସ ଶିବିରକୁ ଆସିଥିଲା ?' ଆଉ ଜଣେ କହିଲା, 'ଆସିଥିଲା, ଟିକିଏ ଆଖି ପକେଇ ଚାଲିଗଲା । ତାକୁ ତ ଚିହ୍ନିବା ମୁସ୍କିଲ ।' 'କାହିଁକି ?' 'କାହିଁକି କ'ଣ ରେ ? ତା ସାରା ଦେହ ଗହଣାରେ ଝଲମଲ କରୁଥାଏ ମହମହ ବାସୁଥାଏ । ସେ ଯୋଉ ପୋଷାକ ! ରାଜାରାଜୁଡ଼ାଙ୍କ ପୋଷାକ ଠଉଁ ବି ବଳି । ସାଙ୍ଗରେ ଦଶଟା ସିପେହୀ, ସେ ଶିବିରକୁ ଚାହିଁଲା, କ'ଣ ଦରକାର ବୋଲି


Digitized by srujanika@gmail.com

ଜଣେ ବି' ଜଣଙ୍କୁ ପଚାରିଲା, ଗୋଟାଏ ସିପେହୀକୁ କ'ଣ ଆସ୍ତେ ଆସ୍ତେ କହିଲା । ବାସ୍, ଚାରିପାଖକୁ ଥରେ ଚାହିଁଲା, ଯେମିତି ଆସିଥିଲା ସେମିତି ଫେରିଗଲା ।' 'ସେ ଆଉ ଆଗ କଂସ ନୁହେଁ ରେ,' ଅଳ୍ପ ଦୂରରୁ ସେ ପାଖରୁ କିଏ ଜଣେ କହିଲା, 'ଚେହେରା ବଦଳି ଯାଇଛି, ଢଙ୍ଗ ବଦଳି ଯାଇଛି, ସେ ଆଉ ଉଗ୍ରସେନ ପୁଅ ନୁହେଁ, ଜରାସନ୍ଧ ଜୋଇଁ- ସମ୍ରାଟ ଜରାସନ୍ଧ ।' 'ସେମିତି ତ ମନେହେଲା', ଆଉ ଜଣେ କହିଲା, 'ସେ ନିଜେ ଯେମିତି ସମ୍ରାଟ । ଢଙ୍ଗଢ଼ାଙ୍ଗ ସେମିତି । ପଦେ କଥା କାହାକୁ କହିଲା ନାହିଁ । ଆମେ ଯେମିତି ମଣିଷ ନୋହୁଁ, ତୁଚ୍ଛ, ମାଟି ଗୋଡ଼ି, ଦଶଦିନ ତଳେ ଆମ ସାଙ୍ଗରେ ନାଚୁଥିଲା । କାବା କଥା ' 'ହଁ, ସେ ନାଚିବ ନାହିଁ, ତମକୁ ନଚେଇବ', ଆଉ ଜଣେ ଅଳ୍ପ ଦୂରରୁ କହିଲା, 'ଦେଖ, ସେ ମଥୁରା ଫେରି କ'ଣ କରୁଛି ।'

ହଠାତ୍ ଜଣେ ଡାକିଲା, 'ଅରିନ୍ଦମ, ଶୋଇଛୁ ନା ଉଠିଲୁଣି ?'

'ଉଠିଲିଣି', ଅରିନ୍ଦମ କହିଲା ।

'କାଲି ରାତିରେ ତୁ କୋଉଠି ଥିଲୁ ?'

'ଏଇଠି ଥିଲି ।' ଅରିନ୍ଦମ କହିଲା ।

'କାହିଁ ମୁଁ ତତେ ଖୋଜୁଥିଲି । ପାଇଲିନି ।' ସେ ପୁଣି କହିଲା ।

'କାଲି ରାତିରେ ଯୋଉ ବିଭତ୍ସ କାଣ୍ଡ ଆରମ୍ଭ ହେଲା ମୁଁ ଶିବିର ଭିତରୁ ବାହାରକୁ ଉଠି ଯାଇଥିଲି ।' ଅରିନ୍ଦମ ଉତ୍ତର ଦେଲା ।

'ଆରେ ତୁ ତ ସାଧୁ ସନ୍ଥ । ଏ ମଜା ତୁ କୋଉଠୁ ପାଇବୁ ।' ଆଉ ଜଣେ କହିଲା ।

'ମଜା !' ଅନ୍ୟ ଜଣେ କହିଲା, 'ଠିକ୍, ମଜା । ମଥୁରାରେ ଏ ମଜା ନାହିଁ । କିନ୍ତୁ ଏ ମଜା କେତେଦିନ ପାଇଁ ? ଆରେ ବୁଝି ପାରୁନ, ଏ ମଜା ତୁମ ମୁହଁ ବନ୍ଦ କରିବା ପାଇଁ । ଯେତେ ଇଚ୍ଛା ସେତେ ମଜା କର, କିନ୍ତୁ ସାବଧାନ ରାଜାଙ୍କ ବିରୁଦ୍ଧରେ କିଛି କହିପାରିବନି । କଲେ ବିପଦ ।'

ସମସ୍ତେ ଚୁପ କରିଗଲେ । ଯେପରି ଏତେଗୁଡ଼ା କଥା କହିବା ସେମାନଙ୍କର ଠିକ୍ ହେଲାନାହିଁ । କଂସ ଉଗ୍ରସେନଙ୍କର ନିଜ ପୁଅ ନୁହେଁ, ମଥୁରାର ମୂଳ ଲୋକ ବି ନୁହେଁ । କିନ୍ତୁ ସେ ଉଗ୍ରସେନଙ୍କ ପରେ ରାଜା ହେବ । ଉଗ୍ରସେନ ଥିଲା ବେଳେ ବି ହୋଇପାରେ । ତା' ପ୍ରକୃତି କେବେ ଭଲ ନ ଥିଲା । ଠିକ୍ ଆର୍ଯ୍ୟମାନଙ୍କର ପ୍ରକୃତି ନୁହେଁ, ଆର୍ଯ୍ୟ ଧର୍ମ ବି ସେ ମାନେନା । ଏବେ ତା ପ୍ରକୃତି ଆହୁରି ବଦଳି ଯାଉଛି,


Digitized by srujanika@gmail.com

ସେ ଆହୁରି ଉଦ୍ଧତ ହୋଇ ଯାଉଛି । ଜରାସନ୍ଧ ତା' ପଛରେ ଛିଡ଼ା ହେଲାଣି - ସେ ଜରାସନ୍ଧର ଜୋଇଁ । ଜଣେ କିଏ ଧୀରେ ଧୀରେ କହିଲା, 'ଶୁଣ, କଂସ ବିଷୟରେ ଏତେ ଆଲୋଚନା ଫାଲୋଚନା କରିବା ଦରକାର ନାହିଁ । ଆମେ ଭଲରେ ଭଲରେ ଆସିଛେ, ଭଲରେ ବି ଅଛେ, ଭଲରେ ଭଲରେ ଫେରିଗଲେ ରକ୍ଷା । ରାଜାରାଜୁଡ଼ାଙ୍କ କଥାରେ ମୁଣ୍ଡ ପୂରାଇବା ଠିକ୍ ନୁହେଁ ।'

ଆଉ ଦି'ତିନିଜଣ ମୁଣ୍ଡ ହଲାଇଲେ, କହିଲେ, 'ଠିକ୍, ଠିକ୍ । ଏ ରାଜାରାଜୁଡ଼ା କଥା । ଆମେ ଖାଇ ପିଇ ମଜା ମଜ୍‌ଲିସ୍ କରି ଭଲରେ ଫେରିଗଲେ ଗଲା । ମଗଧରୁ ମଥୁରା ଅନେକ ବାଟ ।'

'ନାଁ, ବେଶି ବାଟ ନୁହେଁ', କିଏ ଜଣେ ବେଶ୍ ସ୍ପଷ୍ଟ ଓ ଦୃଢ଼ ଗଳାରେ କହିଲା, 'ଆଜି ଯା' ମଗଧରେ ଘଟୁଛି, କାଲି ମଥୁରାରେ ଘଟିବ । ହଁ, ତୁମେ ଠିକ୍ । ଆମେ କ'ଣ ବା କରିପାରିବା ?'

'ନାଁ, କିଛି କରିପାରିବା ନାହିଁ । ଆଲୋଚନା ବି କରିବା ଠିକ୍ ନୁହେଁ ।'

ଦି ତିନି ଜଣ ଉଠି ଛିଡ଼ା ହେଲେ ଓ ବାହାରକୁ ବାହାରିଗଲେ ।

ଅରିନ୍ଦମ ଉଠିଲା, ସେ ଯାହା ଜାଣିବାକୁ ଚାହୁଁଥିଲା ଠିକେ ଠିକେ ଜାଣିଗଲା । କଂସ ତା' ହେଲେ ସନ୍ଧ୍ୟାରେ ଆସିଥିଲା । ସେ ନିଶ୍ଚିତ ଭାବରେ ଚାହିଁବ ନାହିଁ ତା' ଶିବିରରେ, ତା ଲୋକଙ୍କ ଭିତରେ, କିଛି ଗୋଳମାଳ ହେଉ । ଲୋକ ଏଆଡୁ ସେଆଡୁ କହିବା ସେ ଜାଣିଥିବ । କିନ୍ତୁ ଏ ବି ଜାଣେ ଏ କିଛି ନୁହେଁ । ସେମାନେ କହିବେ, ବାସ୍ ସେତିକି । କିନ୍ତୁ ଭୟ ପଶିଗଲେ ସେ ସେମିତି ଉପର ଠାଉରିଆ ହୋଇ ରହିଯିବ । କଂସ ଆସି ଫେରିଯିବାହିଁ ଯଥେଷ୍ଟ । ତା ଲୋକେ ବୁଝିଲେ ସେ ନଜର ରଖିଛି । ସେ ତାଙ୍କ ଭିତରେ ନୁହେଁ । ସେ ତାଙ୍କ ଉପରେ । ସେ ରାଜା, ତା କଥାହିଁ ଶେଷ କଥା । ତମେ ଯେତେ ଇଚ୍ଛା ମଦ ପିଅ, ଯେତେ ଇଚ୍ଛା ସ୍ତ୍ରୀଲୋକଙ୍କ ସହିତ ଲଟରପଟର ହୁଅ । ସେତିକି ।

ଅରିନ୍ଦମ ନିଜ ଜାଗାରୁ ଉଠି କିଛି ଦୂରରେ ଆଉ ଦି'ଜଣ ପରିଚିତ ବନ୍ଧୁଙ୍କ ଜାଗା ପାଖକୁ ଗଲା । ସେମାନେ ଉଠୁ ଉଠୁ ହେଉଛନ୍ତି । ସେ ସେମାନଙ୍କ ବିଛଣାରେ ବସିଲା । ସେ ଦେଖିଲା ସେମାନଙ୍କ ଆଖି ଏବେ ବି ଢୁଳଢୁଳ ହୋଇ ରହିଛି । ଦେହରୁ ଆଳସ୍ୟ ଛାଡ଼ିନାହିଁ । ଜଣେ ତାକୁ ଭଲକରି ଚାହିଁଲା, କହିଲା - 'କିରେ ଅରିନ୍ଦମ ତୁ ତ ବେଶ୍ ଚିକ୍କଣ ଦିଶୁଛୁରେ, କାଲି ରାତିରେ ତୁ ଏଠି ନ ଥିଲୁ କି ?' ଅରିନ୍ଦମ ସାବଧାନ ହେଲା । କହିଲା, 'ହଁ ଥିଲି । କଂସ ଆସି ଫେରିଗଲା ପରେ ତମର ଏଠି ଯୋଉ ଗୋଳମାଳ ଆରମ୍ଭ ହେଲା, ଭଲ ଲାଗିଲା ନାହିଁ । ବାହାରେ

ଥିଲି ।’

‘ଭଲ କରିଥିଲୁ’, ଅନ୍ୟ ଜଣେ କହିଲା, ‘ଆମକୁ କ’ଣ ଭଲ ଲାଗିଲା ? ମୋର ତ ମନେହେଲା ଯେମିତି ଥୋଡ଼ାଏ ଗୋବର ପାଣି କିଏ ମୋ’ ଉପରେ ଢାଳିଦେଲା । ଏସବୁ ଜରାସନ୍ଧର ରାକ୍ଷସମାନଙ୍କର ଅଭ୍ୟାସ, ଆମର ତ ଅଭ୍ୟାସ ନାହିଁ ।’

‘ତା’ ଠିକ୍’, ଆଉ ବନ୍ଧୁ ଯୋଗ କଲା । ‘କିନ୍ତୁ ତମ ଆଗରେ ଯଦି ବଡ଼ିଆ ବଡ଼ିଆ ମଦ ଠିପା ସବୁ ଥୁଆ ହେବ, ଟୋକି ସ୍ତ୍ରୀ ଲୋକମାନେ ତୁମ ଉପରେ ପଡ଼ିବେ, ତୁମେ କ’ଣ କରିବ ?’

‘କିଛି କରିବ ନାହିଁ’, ଅରିନ୍ଦମ ହସିଲା, ‘ଯାହା କରିବା କଥା ତୁମେମାନେ ଠିକ୍ କରିଛ ।’

ଦି’ ବନ୍ଧୁ ଅରିନ୍ଦମ ସାଙ୍ଗରେ ହସି ଉଠିଲେ । ଜଣେ ବନ୍ଧୁ କହିଲେ, ‘ଆମେ ଜାଣୁ ଆମେ ଠିକ୍ କରିନାହୁଁ । ମଥୁରାରେ ବଡ଼ମାନେ କେବେ ଏ କଥା ପସନ୍ଦ କରିବେନି । କିନ୍ତୁ କାଲି କିଛି ଉପାୟ ନ ଥିଲା । କଂସ ନିଜେ ଠିଆହୋଇ ଆଦେଶ ଦେଇଗଲା । ଆଉ ଆମ ଶିବିର ଲୋକମାନେ ଯେମିତି ଡେଇଁ ପଡ଼ିଲେ । ତା’ ଛଡ଼ା, ଆମ ଶିବିରରେ କାଲି ରାତିରେ ବହୁତ ଲୋକ । କାବା କଥା, ଏତେ ଲୋକ ଆସିଲେ କୋଉଠୁ ।’

‘ସମସ୍ତେ ତମ ଶିବିରର ଲୋକ, ତମେ ତମ ଶିବିରରେ କେତେ ଲୋକ କେବେ ଦେଖିନା । ଅନ୍ୟ ଶିବିରରେ ବି ସମାନ ଅବସ୍ଥା । ତେବେ ତୁମ ଶିବିରରେ ଟିକିଏ ବେଶି । କଂସ ଜରାସନ୍ଧଙ୍କ ଜୋଇଁ ନା । ଆଜି ବୋଧେ ବିଭାଘର ହେବ ?’

‘ହଁ, ଆଜି ରାତିକୁ । ସେମାନେ କହିଦେଇ ଯାଇଛନ୍ତି’, ଜଣେ ବନ୍ଧୁ କହିଲେ ।

ଗପସପ କରୁ କରୁ ସେମାନେ ଶିବିର ବାହାରକୁ ବାହାରି ଆସିଲେ । ଅରିନ୍ଦମକୁ ଲାଗିଲା ସତେ ଯେପରି ପବନ ଚଳପ୍ରଚଳ ହେଉ ନ ଥିବା ଗୋଟାଏ ଗୁମଟି ଘର ଭିତରୁ ସେ ବାହାରକୁ ବାହାରି ଆସିଲା । ବାହାରେ ଦିନ ଆଗେଇ ଗଲାଣି, ଚାରିଆଡ଼େ ସ୍ୱଚ୍ଛ ଉଜ୍ଜ୍ୱଳ ଖରା ପଡ଼ିଛି, ଗଛ ପତ୍ର ଭିତର ଦେଇ ସୁଲୁସୁଲୁ ପବନ ବହୁଛି । ଚାରିଆଡ଼େ ଅସଂଖ୍ୟ ଚଢ଼େଇ ନାଚି ବୁଲୁଛନ୍ତି, କିଚିରି ମିଚିରି ହେଉଛନ୍ତି । ସେମାନେ କିଛି ଦୂରରେ ଚାରି ପାଞ୍ଚଟା ଗଛର ଗୋଟାଏ ଛୋଟ ବୁଦା ପରି ହୋଇଥିବା ଉଚ୍ଚା ଜାଗାରେ ଯାଇ ବସିଲେ ।

ଅରିନ୍ଦମ ପଚାରିଲା, ‘କଂସ କ’ଣ କହୁଥିଲା କି ? ମୁଁ ଟିକିଏ ଦୂରରେ ଥିଲି,


Digitized by srujanika@gmail.com

ଶୁଣିପାରିନି ।'

'ହଁ, କହିଥିଲା', ଜଣେ ବନ୍ଧୁ କହିଲେ, 'ନିଜର ପ୍ରୌଢ଼ି, ଜରାସନ୍ଧଙ୍କର ଭୂରି ଭୂରି ପ୍ରଶଂସା । ସେ ଆର୍ଯ୍ୟାବର୍ତ୍ତର ବିଖ୍ୟାତ ସମ୍ରାଟ, ତାଙ୍କର ଜାମାତା ହେବା ପରମ ଭାଗ୍ୟ, ସେ ଶୀଘ୍ର ମଥୁରାର ରାଜା ହେବାକୁ ଚାହେଁ, ରାଜା ହେଲେ ସେ ମଥୁରାକୁ ବଦଳେଇ ଦେବ । ମଥୁରାର ଲୋକଗୁଡ଼ା ଅଳସୁଆ, ଡରୁଆ, ସେ ବଦଳେଇ ଦେବ ସେସବୁ । ମଥୁରା ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ରାଜ୍ୟ ହେବ ।'

'ଏ ତ ଅତି ଉତ୍ତମ କଥା ।' ଅରିନ୍ଦମ କହିଲା ।

'ହଁ ଉତ୍ତମ ଠିକ୍', ବନ୍ଧୁ କହିଲେ, 'ତେବେ ସେ ଯାହାସବୁ କହିଲା ସେଥିରୁ ଗୋଟିଏ କଥା ଆମର ମନେ ହେଲା । ସେ କମାର ପରି ମଥୁରାଟାକୁ ବାଡ଼େଇ ପିଟି ସାବାଡ଼ କରିଦବ । ତା ପର ଉତ୍ତମ ରାଜ୍ୟ ।' 'ତା ଛଡ଼ା ଏତେ ତରବର କାହିଁକି ?' ଅନ୍ୟ ବନ୍ଧୁ କହିଲେ, 'ଉଗ୍ରସେନ ତ ରାଜା ଅଛନ୍ତି, ଗୋଷ୍ଠୀ ମୁଖିଆମାନେ ଅଛନ୍ତି । ସମସ୍ତଙ୍କର ତ ସମସ୍ତଙ୍କ ସାଙ୍ଗରେ ଭଲ ପଡୁଛି । ସମସ୍ତେ ଭଲରେ ଚଳୁଛନ୍ତି । ଶ୍ରେଷ୍ଠ ରାଜ୍ୟ କ'ଣ ? ଅନ୍ୟମାନଙ୍କୁ ପିଟାପିଟି କରି, ମାଡ଼ିମକଚି ନିଜେ ଉଠିବା, ଏଇ ତ ? ଏ କଂସ ନୁହେଁ, ଜରାସନ୍ଧ ଢଙ୍ଗ । ସେ ଯେମିତି ବୋଝେ ରାଜାଙ୍କୁ ଆଣି କଇଦୀ କରି ରଖିଚି, ସମସ୍ତଙ୍କୁ ହାଣିଦବ ।'

'ଏ ତ ଗୋଳମାଳିଆ କଥା, ଭଲ କଥା ନୁହେଁ ।' ଅରିନ୍ଦମ ରହି ରହି କହିଲା । 'ଆଦୌ ନୁହେଁ', ବନ୍ଧୁ କହିଲେ, 'କଂସ ରାଜା ହଉ, ରାଜା ତ ହବ । କିନ୍ତୁ ସେଥିପାଇଁ ସବୁ ତଛନଛ କରିଦବା ଦରକାର କ'ଣ ? ଆଦୌ ଭଲ ଲାଗୁ ନାହିଁ । ମଥୁରାର ଅବସ୍ଥା କ'ଣ ହେବ କେଜାଣି ?'

ଅରିନ୍ଦମ କିଛି କହିଲା ନାହିଁ । ବନ୍ଧୁମାନେ ଯା' କହୁଛନ୍ତି ସେ ତ ଭାନୁପ୍ରକାଶ ପ୍ରଭୃତିଙ୍କ କଥା, ତାଙ୍କରି ଚିନ୍ତା ଧାରା । ଏତେ ସ୍ପଷ୍ଟ ନୁହେଁ, ନିର୍ଦ୍ଦିଷ୍ଟ ନୁହେଁ । କିନ୍ତୁ ମୋଟାମୋଟି ଭାନୁପ୍ରକାଶ ପ୍ରଭୃତିଙ୍କର ବିଚାରଧାରା । ସେମାନେ ତା' ସାଙ୍ଗରେ ଯେମିତି ସମ୍ପର୍କ ରଖିଛନ୍ତି ଏମାନଙ୍କ ସାଙ୍ଗରେ ସେମିତି ସମ୍ପର୍କ ରଖିଛନ୍ତି କି ? ନା ଏମାନେ ବିରୁଦ୍ଧ ଦଳ, କଂସ ଲୋକ, ବିଡ଼ିବା ପାଇଁ ତାକୁ ଏସବୁ କହୁଛନ୍ତି । ଭାନୁପ୍ରକାଶଙ୍କ ଉପଦେଶ ମନେପଡ଼ିଲା - ସାବଧାନ ରହିବ, କଥାବାର୍ତ୍ତାରେ ସଂଯତ ହେବ, ସବୁଆଡ଼େ ଜରାସନ୍ଧ ଓ କଂସର ଚର । ଏ ବନ୍ଧୁମାନେ କ'ଣ କଂସର ଚର । ବିଶ୍ୱାସ ହେଉନି । ତଥାପି ସେ ସତର୍କ ଭାବରେ କହିଲା - 'ନାଇଁ, ଏତେ ଦୂର କାହିଁକି ଭାବୁଛ । କଂସର ବୟସ ଅଳ୍ପ । ଆମରି ବୟସର ତ, ଜରାସନ୍ଧଙ୍କର ଜୋଇଁ ହେବା ଗୋଟାଏ ବଡ଼ ସାହାସ । ତାକୁ ସେ ସାହାସ ଆମେ କ'ଣ କେହି ମଥୁରାରେ


Digitized by srujanika@gmail.com

ଦେଇ ପାରିବା ? ସବୁ ଅଳ୍ପ ବୟସର ଲୋକଙ୍କ ପରି ସେ ଭାବୁଛି ନୂଆ କିଛି କରି ହବ, ବଦଳେଇ ହବ । ମଥୁରାକୁ ଯଦି ସେ ଗୋଟାଏ ବଡ଼ ପାହିଆ ଆଣି ଦବ, ଦଉ, କ୍ଷତି କ'ଣ ?'

'ଆରେ, ହ, ହ... ଦେଖୁଛି ଲେମ୍ବୁ ଚୁପୁଡୁଛି ପିତା । କଂସକୁ ତୁ ଆଜି ନୂଆ ଦେଖିଲୁ ନା ଆମେ ନୂଆ ଦେଖୁଛେ । କଂସର ଯାହା ଚରିତ୍ର, ସେ ଯୋଉ ଉଦ୍ଧତ, ଅତ୍ୟାଚାରୀ, ସେ ଯଦି କାଲି ରାଜା ହୁଏ, ହବ ତ, ଦେଖ ସେ ଯେମିତି ହେଲେ ଉଗ୍ରସେନଙ୍କୁ ବାହାର କରିଦବ । ଆମର କ'ଣ ହେବ ? ମଥୁରା ଲୋକଙ୍କୁ ସେ ପୂଜା କରିବ, ନା ?'

'ଆରେ ଯା', ଆର ବନ୍ଧୁ କହିଲେ, 'କଂସକୁ ତୁ ଆମକୁ ବୁଝାନା । ସେ ଟା ମଣିଷ ! ବର୍ତ୍ତମାନ ଜରାସନ୍ଧ ସାଙ୍ଗରେ ମିଶିଛି, ଜରାସନ୍ଧ ଝିଅଙ୍କୁ ବିଭା ହେଉଛି । ତୁ ଭାବୁଛୁ ଏସବୁ ବିନା ମତଲବରେ ହେଉଛି । ଜରାସନ୍ଧ ମୂର୍ଖ ନୁହେଁ, କଂସ ବି ବେଶ୍ ଚତୁର । କାଲି ସନ୍ଧ୍ୟାରେ କି ମତଲବରେ ସେ ଶିବିରକୁ ଆସିଥିଲା ? ଆମେ ତା ଲୋକ, ତା ସାଙ୍ଗରେ ଆସିଛେ । କିନ୍ତୁ ଆମେ ଆସିବା ଦିନଠୁଁ ସେ ଦିନେ ତ ହେଲେ ଶିବିରକୁ ଆସି ନ ଥିଲା । ସେ ସେହି ଜରାସନ୍ଧଙ୍କ ନଅରରେ ରହୁଥିଲା । ଆମେ ଚାରିପାଖରେ କ'ଣ ଦେଖୁଥିଲେ, ମେଳା ମେଳା ସିପେହୀ, ସବୁବେଳେ ଆମକୁ ଜଗି ରହିଥିଲେ । ଏଇ ଆଜି ଦେଖ, ସେଠି ବୁଲୁଛନ୍ତି କେମିତି । ତୁମେ କ'ଣ କରୁଛ, କୁଆଡ଼େ ଯାଉଛ, କା' ସାଙ୍ଗରେ ଗପୁଛ ସବୁ ଖବର ତାଙ୍କ ପାଖରେ । କାହିଁକି ? କାହାର ସ୍ୱାର୍ଥ ? ଜରାସନ୍ଧର ନା କଂସର ? ଏ ଉଭୟଙ୍କର । କଂସ କୁସ୍ତିରେ ଜିତିଲା, ଜରାସନ୍ଧ ଝିଅଙ୍କୁ ବିଭା ହେବା ଠିକ୍ ହେଲା, ବର୍ତ୍ତମାନ ମଥୁରା ଫେରିବ । ସେଇ ଯୋଗୁଁ ସେ କାଲି ଆସିଥିଲା । ସେ ଜାଣିବାକୁ ଚାହୁଁଥିଲା ଆମେ ସବୁ କ'ଣ ଭାବୁଛୁ, ଖାଅ, ପିଅ, ମଜାକର, କିନ୍ତୁ ସାବଧାନ ତା' କଥାରେ ମୁଣ୍ଡ ପୂରାନା ।'

ବନ୍ଧୁମାନେ ଚୁପ୍ ହୋଇ ବସିଲେ । ଅରିନ୍ଦମ ବି କିଛି କହୁ ନ ଥାଏ । ତା'ର ମନେହେଲା ବନ୍ଧୁମାନଙ୍କର ଏ ଭୟ ଯଥାର୍ଥ । ଏଥିରେ ଗୋଳମାଳ ନାହିଁ, ଲୁଚାଛପା ନାହିଁ, ଅନ୍ୟ କଥା ବି ନାହିଁ । ଏ ସାଧାରଣ ଲୋକର ଭୟ, ଯେଉଁ ଲୋକ ନିଜ ଭିତରେ, ନିଜର ପରିବାରର ପରିସରରେ, ନିଜ ଗୋଷ୍ଠୀରେ, ଶାନ୍ତିରେ ରହିବାକୁ ଚାହେଁ । କିଏ ରାଜା ହେଲା, କ୍ଷମତା କା ହାତକୁ ଗଲା ସେ ବିଷୟରେ ସେ ବେଶି ଭାବେନା, ଯେ ପର୍ଯ୍ୟନ୍ତ ତା ନିଜର ବା ନିଜ ଲୋକଙ୍କର କ୍ଷତି ନ ହୋଇଛି । କିନ୍ତୁ କ୍ଷତି ହେଲେ ବି ସେ କ'ଣ କରିପାରିବ ?

'କଂସ ବିଷୟରେ ତୁମେ ଯାହା ଭାବୁଛ ତା ହୁଏତ ଠିକ୍', ଅରିନ୍ଦମ କହିଲା-

'ତା ହାବଭାବ ଭଲ ନୁହେଁ । ସମସ୍ତଙ୍କ କଥା ଶୁଣି, ସମସ୍ତଙ୍କ କଥା ବିଚାର କରି, ସମସ୍ତଙ୍କ ଭଲ ପାଇଁ କାମ କରିବା ତା'ର ଚରିତ୍ର ନୁହେଁ । ଥରେ ତା' ହାତକୁ କ୍ଷମତା ଚାଲିଗଲେ କେବଳ କ୍ଷମତାଟାହିଁ କାମ କରିବ, ଆଉ କିଛି ନୁହେଁ - ନିଜର ପ୍ରୌଢ଼ି, ନିଜର ଔଦ୍ଧତ୍ୟ, ନିଜର ସ୍ୱାର୍ଥ ।' ଅରିନ୍ଦମର ମନେହେଲା ଯେପରି ତା' ମୁହଁରେ ଭାନୁପ୍ରକାଶ କଥା କହୁଛନ୍ତି । ସେ ଚୁପ୍ କଲା । 'ଆଚ୍ଛା, ଅରିନ୍ଦମ ! ତୁ ତ ଆମଠଉଁ ବେଶୀ ଜାଣୁ', ଜଣେ ବନ୍ଧୁ କହିଲେ, 'କହ, ଏ କ'ଣ ଖାଲି ମଥୁରା କଥା, ନା ଅନ୍ୟ ରାଜ୍ୟରେ ଏମିତି ଅବସ୍ଥା, ଏମିତି ଦୁଷ୍ଟ, ଅତ୍ୟାଚାରୀ ଶାସକ ?'

'ପ୍ରାୟ', ଅରିନ୍ଦମ କହିଲା, 'ଜରାସନ୍ଧ ଆଉ ମଗଧକୁ ତ ଦେଖୁଛ । ଚେଦୀ, ବିଦର୍ଭ, ପାଞ୍ଚାଳ, ଅବନ୍ତୀ - ଅନେକ ।'

'ହସ୍ତିନା ବି ?'

'ହସ୍ତିନାରେ ସାମାନ୍ୟ ପ୍ରଭେଦ ଅଛି । ଭୀଷ୍ମ ଅତ୍ୟନ୍ତ ନିଷ୍ଠାବାନ ଓ ଦମ୍ଭ ଲୋକ । କିନ୍ତୁ ସେଠି ବି ସେମିତି ହୋଇଯିବ । ଥରେ କ୍ଷମତାକୁ ଆସିଲେ କ୍ଷମତା ହିଁ ଲୋକଙ୍କୁ ନଷ୍ଟ କରେ । ଅଧର୍ମର ଶକ୍ତି ବହୁତ । ତାକୁ ରୋକିବା ସହଜ ନୁହେଁ ।'

'କିନ୍ତୁ ରୋକିବା ତ ଦରକାର ।' ବନ୍ଧୁ କହିଲେ ।

'ହଁ, ହବ । ଥରେ ପର୍ଶୁରାମ ସେ କାମ କରିଥିଲେ । ହୁଏତ ସେ କାମ ପୁଣି ଥରେ ହେବ । ବଡ଼ କଥା ହେଲା ସଚେତ ହେବା ଦରକାର ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ସେ କେମିତି ଏସବୁ କଥା କହିପାରୁଛି । ଦଶ ଦିନ ତଳେ ସେ ଏକଥା ତ ଭାବୁ ନ ଥିଲା ।

'ଦେଖ, ଶାସକମାନଙ୍କୁ ରୋକିବା ସହଜ ନୁହେଁ', ସେ ପୁଣି ଥରେ କହିଲା, 'ସେମାନଙ୍କ ହାତରେ କ୍ଷମତା, ଅର୍ଥ, ଦଣ୍ଡ । ରାଜା ଭେଦରେ ପ୍ରଭେଦ ଅଛି । କିନ୍ତୁ ଯେଉଁଠି ଶାସକଟା ସମ୍ପୂର୍ଣ୍ଣ ଭାବରେ ନିଜକଥା ଭାବେ, ସମ୍ପୂର୍ଣ୍ଣ ଭାବରେ ଲୋକଙ୍କ କଥା, ରାଜ୍ୟ କଥା, ନିଜର ଦେଶ କଥା ଭୁଲିଯାଏ, ସେଠି ତ ସମ୍ପୂର୍ଣ୍ଣ ଅନ୍ଧାର, ଅଧର୍ମ । ମଥୁରାରେ କ'ଣ ହେବ ମୁଁ ଜାଣେନା । ଭଲ ନିଶ୍ଚୟ ନୁହେଁ ।'

ସିପେହୀମାନେ ଯିବା ଆସିବା କରୁଛନ୍ତି, ସେମାନେ ଯେ ଏମାନଙ୍କୁ ଗଛମୂଳେ ବସିଥିବା ଦେଖି ଖୁବ୍ ନଜର କରୁଛନ୍ତି ତା ନୁହେଁ । କିନ୍ତୁ ମନେହୁଏ ନଜର ବି କରୁଛନ୍ତି । ସେମାନେ ଉଠି ଛିଡ଼ାହେଲେ । ଅରିନ୍ଦମ ପଚାରିଲା, 'କଂସର ବିଭାଘର ଖବର କ'ଣ ? କେତେବେଳେ ହେବ ? ଆମ୍ଭେମାନେ କ'ଣ ଯିବା ?

'ଜଣା ନାହିଁ ।' ବନ୍ଧୁ କହିଲେ, 'ଖୁବ୍ ସମ୍ଭବ ମହାକାଳଙ୍କ ମନ୍ଦିରରେ ବିଭାଘର ହେବ। କିନ୍ତୁ ଆମକୁ ଅନୁମତି ନ ଦେଲେ ତ ଆମେ ଯାଇ ପାରିବା ନାହିଁ ।


Digitized by srujanika@gmail.com

ଖୁବ୍ ସମ୍ଭବ ଆମେ ଯାହା ଜାଣୁ ଆଜି ରାତିକି ବିଭାଘର ହେବ ।'

'ମଥୁରାକୁ ଖବର ଗଲା କି ?'

'ବୋଧେ ନୁହେଁ । କ'ଣ ଦରକାର ?'

'ଠିକ୍', ଅରିନ୍ଦମ କହିଲା, 'ଚାଲ, କାମ ଦାମ ସାର' ।

ତିନି ବନ୍ଧୁ ଶିବିରକୁ ଫେରିଲେ ।

ଶିବିର ସଫାସଫି ହୋଇଗଲାଣି, ଯେଉଁ ସ୍ତ୍ରୀଲୋକମାନେ ଏଠି ସେଠି ଥିଲେ ସେମାନେ ବି ଚାଲିଗଲେଣି । କିଛି କିଛି ଲୋକ ଏବେ ବି ଗଡ଼ପଡ଼ ହେଉଛନ୍ତି । କିନ୍ତୁ ଅଧିକାଂଶ ଉଠିଲେଣି, କାମଦାମ ସାରିଲେଣି, ବାହାରେ ବୁଲାବୁଲି କରୁଛନ୍ତି, ଗପସପ କରୁଛନ୍ତି । ଗତ କାଲି ଓ ଆଗ ଦିନର ବ୍ୟସ୍ତ ସଂକୋଚ ଭାବ ନାହିଁ – କାଳେ କ'ଣ ଘଟିଯିବ ଏହି ମନୋଭାବ । ମଥୁରାରୁ ଯେତେ ଲୋକ କଂସ ସାଙ୍ଗରେ ଆସିଛନ୍ତି ସମସ୍ତେ ତା'ରି ପାଖାପାଖି ବୟସର । ହୁଏତ ଦି'ତିନିଜଣ ବୟସ୍କ ଲୋକ ଆସିଛନ୍ତି । କିନ୍ତୁ ସେମାନେ କେବଳ ଆସିବା ପାଇଁ ଆସିଛନ୍ତି । ଅରିନ୍ଦମ ଲକ୍ଷ୍ୟ କଲା ଟୋକାମାନଙ୍କର ଆଧିପତ୍ୟ । କଂସ କୁସ୍ତିରେ ଜିତିଲା, ସେ ଜରାସନ୍ଧଙ୍କର ଝିଅଙ୍କୁ ବିଭା ହେବ, ଏଥିରେ ସେମାନଙ୍କର ଦମ୍ଭ ଯଥେଷ୍ଟ ବଢ଼ିଯାଇଛି । କଂସ କେବଳ ମଥୁରାର ଗୋଟାଏ ଦୁର୍ବିନୀତ ରାଜପୁତ୍ର ନୁହେଁ । ସେ ମଥୁରାର ଯୋଦ୍ଧା, ସାରା ଦେଶର ପ୍ରମୁଖ ଯୋଦ୍ଧା, ତା ପାଇଁ ସମସ୍ତଙ୍କର ଗର୍ବ । ତା କଥା ଶୁଣିବା ପାଇଁ, ତା କଥା ମାନିବା ପାଇଁ ସମସ୍ତେ ଯେପରି ଗୋଡ଼ ଟେକି ରହିଛନ୍ତି । ଏମାନଙ୍କର ମନୋଭାବର ପରିବର୍ତ୍ତନ ଦେଖି ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଲା । କଂସ ପାଇଁ ଏମାନଙ୍କର କିଛି ସମ୍ମାନ ନ ଥିଲା ସେ ଜାଣେ । ମଥୁରାରେ କଂସର ହାବଭାବ ଯାହା ସେଥିରେ କ୍ୱଚିତ ଲୋକ ତାକୁ ସମ୍ମାନ କରୁଥିଲେ । ସେ ସମ୍ମାନ ଯେ ଆନ୍ତରିକ ତା ନୁହେଁ । କେବଳ ଉଗ୍ରସେନଙ୍କ ଯୋଗୁଁ ସମସ୍ତେ ତାକୁ ସହ୍ୟ କରୁଥିଲେ । ଭିତରେ ଭିତରେ କଂସ ବିରୁଦ୍ଧରେ ଯଥେଷ୍ଟ ମନୋଭାବ ଥିଲା । ଲୋକେ ଭାବୁଥିଲେ ଅନ୍ୟ କିଛି ଉପାୟ କରାଯାଇ ପାରେ କି । ସେ ଦିନେ ବାପାଙ୍କୁ ଏ ବିଷୟରେ କହିଥିଲା । ବାପା ଦୁଇଦିନ କାଳ ତାକୁ କିଛି ଉତ୍ତର ଦେଇ ନ ଥିଲେ, ବା ଏ ବିଷୟରେ କିଛି ଆଗ୍ରହ ଦେଖେଇ ନ ଥିଲେ । ଦି'ଦିନ ପରେ ସେ ସକାଳେ ଯମୁନାରେ ଗାଧୋଇ ସାରି ଘରକୁ ଫେରୁଛି, ବାପା ଠାକୁର ଘରେ ପୂଜା କରୁଥାନ୍ତି, ଅରିନ୍ଦମକୁ ଡାକିଲେ । ଅରିନ୍ଦମ ଜାଣେ ବାପାଙ୍କର ଏଇ ସମୟଟା ଅନ୍ୟ ପ୍ରକାର ସମୟ । ସେ ବାହାରର କଥା କିଛି କହନ୍ତି ନାହିଁ, ଅଳ୍ପ କହନ୍ତି, କିନ୍ତୁ ଯାହା କହନ୍ତି ଅତ୍ୟନ୍ତ ଗୂଢ଼ କଥା । ତାଙ୍କର ସବୁକଥା ଯେ ଅରିନ୍ଦମ ବୁଝିପାରେ ତା' ନୁହେଁ, କିନ୍ତୁ ମନେହୁଏ ଏ କଥାର ଢାଞ୍ଚା

ଅଲଗା, ମନେହୁଏ ବାପା ଯେମିତି ଦେଖି ପାରୁଛନ୍ତି ଯାହା ଘଟିବ, ଅବଧାରିତ । ଅରିନ୍ଦମ ବସିଲା । ବାପା ପଚାରିଲେ – 'କଂସ ସାଙ୍ଗରେ ତୋର ମିଳାମିଶା କେମିତି ?' 'ମିଳାମିଶା ଠିକ୍ ନୁହେଁ' – ଅରିନ୍ଦମ ଉତ୍ତର ଦେଇଥିଲା, 'କଂସ ମୋ' ସାଙ୍ଗରେ ଭଲ ବ୍ୟବହାର କରେ । ମଝିରେ ମଝିରେ ମୋ'କଥା ଶୁଣେ । ତା'କଥା ବି କେତେବେଳେ କେମିତି କହେ । କିନ୍ତୁ ସେମିତି କିଛି ସମ୍ପର୍କ ନାହିଁ ।' 'ଭଲ', ବାପା କହିଥିଲେ – 'ମୋଟାମୋଟି ସମ୍ପର୍କ ଥାଉ । କିନ୍ତୁ ତା ବିରୁଦ୍ଧରେ କିଛି କହିବା ବା ତା ବିରୁଦ୍ଧରେ କିଛି ନ କରିବା ଭଲ ।' 'ନାଁ ମୁଁ କିଛି କରେ ନା', ଅରିନ୍ଦମ କହିଥିଲା ।

ବାପା କିଛି ସମୟ ଚୁପ ରହିଥିଲେ । ପରେ ଧୀରେ ଧୀରେ କହିଥିଲେ – 'କଂସ ଅଧର୍ମ, । ତା'ର ଶକ୍ତି ଅଧର୍ମର ଶକ୍ତି । ଅଧର୍ମର ଶକ୍ତିକୁ ଧର୍ମର ଶକ୍ତି ହିଁ ବନ୍ଦ କରିପାରିବ । ସେହି ଧର୍ମର ଶକ୍ତିକୁ ଅପେକ୍ଷା କର ।'

ପରବର୍ତ୍ତୀ ସମୟରେ ବାପାଙ୍କ କଥା ଅରିନ୍ଦମ ଅନେକ ଥର ଭାବିଛି । କଂସ ଯେ ଅଧର୍ମ ସେ ବିଷୟରେ ତା'ର କେବେ ସନ୍ଦେହ ନ ଥିଲା । ବର୍ତ୍ତମାନ ବି ନାହିଁ । କଂସର ବି ଏ ବିଷୟରେ ଲୁଚାଛପା ନାହିଁ । ସେ ଦେବତା ମାନେ ନା, ଧର୍ମ ମାନେ ନା, କୌଣସି ରୀତିନୀତି ମାନେନା । ସେ କାହାରିକୁ ସମ୍ମାନ କରେନା, ସମସ୍ତଙ୍କୁ ହେୟ ଜ୍ଞାନ କରେ, ମଣିଷର ଜୀବନ ତା' ପକ୍ଷରେ ତୁଚ୍ଛ, ଜନ୍ଦା ପିମ୍ପୁଡ଼ି ପରି ତୁଚ୍ଛ । ରାଜା ହେଲେ ଯେ ତା' ପ୍ରକୃତି ବଦଳିଯିବ ତା ସମ୍ଭବ ନୁହେଁ । ଯାହା ସମ୍ଭବ ସେ ଆହୁରି ଅତ୍ୟାଚାରୀ, ଅନାଚାରୀ ହେବ । କଂସ ଅଧୀନରେ ମଥୁରା କ'ଣ ହେବ ବାପା ଜଳଜଳ ଦେଖିପାରୁଥିଲେ । ଅରିନ୍ଦମ ବି ବୁଝୁଛି କ'ଣ ହେବ । ଆଜି ସେ ଏକା ନୁହେଁ, ତା ପଛରେ ଜରାସନ୍ଧ । ଗୋଟାଏ ଅଧର୍ମ ସହିତ ଆଉ ଗୋଟାଏ ଅଧର୍ମ । ଖାଲି ଅଧର୍ମ ନୁହେଁ, ଅଧର୍ମ, ପାପ, ଅତ୍ୟାଚାର ।

ଅରିନ୍ଦମ ଯେତେ ଭାବିବାକୁ ଚେଷ୍ଟା କରିଛି ପଙ୍କରେ ସେତେ ସେତେ ବୁଡ଼ିଗଲା ପରି ତାକୁ ଲାଗିଛି । ଏଥିରୁ ରକ୍ଷା କରିବ କିଏ ? ଭାନୁପ୍ରକାଶ ପ୍ରଭୃତିଙ୍କ କଥା ସେ ଭାବିଛି । ହୁଏତ ସେମାନେ ଯାହା କହୁଛନ୍ତି ବା କରୁଛନ୍ତି ସେ ଗୋଟାଏ ବାଟ । କିନ୍ତୁ ବାପା ଯେଉଁ ଧର୍ମର ଶକ୍ତି କଥା କହୁଛନ୍ତି ସେ କ'ଣ ? ଧର୍ମ କ'ଣ ? ସେ ଶକ୍ତି କ'ଣ ? ଭାନୁପ୍ରକାଶ ବି କହୁଥିଲେ ସେମାନେ ଗୋଟାଏ ବଡ଼ ଶକ୍ତିକୁ ଅପେକ୍ଷା କରିଛନ୍ତି, ସେହି ଶକ୍ତି ଆସିବା ପାଇଁ ବାଟ ପରିଷ୍କାର କରୁଛନ୍ତି । ଏ ତ ବାପାଙ୍କ କଥା ପରି ହେଲା । ତା'ହେଲେ ଭାନୁପ୍ରକାଶ ବାପା କ'ଣ ଏକା କଥା କହୁଛନ୍ତି । ଭାନୁପ୍ରକାଶ ପ୍ରଭୃତି ତ ବାପାଙ୍କୁ ଜାଣନ୍ତି । ବାପା କ'ଣ ଏମାନଙ୍କୁ

ଜାଣନ୍ତି ?

ଅରିନ୍ଦମ ଶିବିରର ଚାରିଆଡ଼କୁ ଚାହିଁଲା । ତା'ର ବନ୍ଧୁମାନେ କାମଦାମ ସାରିବାକୁ ଚାଲିଗଲେଣି । ଅନ୍ୟମାନେ ବି ପ୍ରସ୍ତୁତ ହୋଇଗଲେଣି । ସକାଳ ପ୍ରାୟ ସରିବା ଉପରେ, ସକାଳର ଖାଇବା ନିକଟରେ ଆସିଯିବ । ଶିବିରରେ ଫୁସ୍‌ଫୁସ୍ ହେଉଛନ୍ତି କଂସ ବି ଆସିପାରେ । ଅରିନ୍ଦମ ଭାବିଲା ଶିବିରରେ ଯେଉଁମାନଙ୍କୁ ଦେଖୁଛି ସେହିମାନେ ତ ମଥୁରାର ଭବିଷ୍ୟତ । ଏମାନେ କ'ଣ ଭାବୁଛନ୍ତି । ଏମାନେ ସମସ୍ତେ କ'ଣ କଂସକୁ ମାନିନେବେ ? ନାଁ ମାନିବେ ନାହିଁ, ସେ ଜାଣେ । କିନ୍ତୁ ନ ମାନିଲେ ଅବସ୍ଥା ଯା' ହେବ ସେକଥା ଭାବି ତା' ଦେହ ଶୀତେଇ ଉଠୁଛି । କଂସ କଥା ମାନିବାକୁ ହେବ, ଏଇଟା ହିଁ କଂସର ନିୟମ ।

କାମଦାମ ସାରି ଅରିନ୍ଦମର ଦି' ବନ୍ଧୁ ଫେରି ଆସିଲେ । ଜଣେ ଅରିନ୍ଦମକୁ ଠେଲିଦେଇ କହିଲା, 'କିରେ ଏମିତି କ'ଣ ଛିଡ଼ା ହେଇଛୁ ? ଯା, ଯା, କାମ ଦାମ ସାର । ଖବର ଆସିଚି ଏଠିକି ଖାଇବାକୁ ଆସିବନି । ଆମକୁ ସବୁ ମହାକାଳ ମନ୍ଦିରକୁ ଯିବାକୁ ହେବ । ସେଠି ଖାଇବାର ବନ୍ଦୋବସ୍ତ ହୋଇଛି । କଂସ ସବୁ ବନ୍ଦୋବସ୍ତ କରିଛି ।'

ଅରିନ୍ଦମ ଗୋଟାଏ ମୁହୂର୍ତ୍ତ ବୋକାଙ୍କ ପରି ବନ୍ଧୁଙ୍କ ମୁହଁକୁ ଚାହିଁଲା – 'କ'ଣ ମହାକାଳ ମନ୍ଦିର ? କିରେ, ମହାକାଳ ମନ୍ଦିରକୁ ପରା ବାହାର ଲୋକ କେହି ଯାଆନ୍ତି ନାହିଁ ?'

'ହଁ, ଗଲେ ମୁଣ୍ଡକାଟ । ଆମର ବି ମୁଣ୍ଡକାଟ ହେଇଯାଇ ପାରେ ।' ଜଣେ ବନ୍ଧୁ କହିଲେ ।

'ଆଜି ସାତଖୁଣ ମାଫ', ଅନ୍ୟ ବଂଧୁ କହିଲେ, 'କିରେ ଆମେ ପରା ଜୋଇଁ କଂସଙ୍କ ଲୋକ' ।

'ଠିକ୍ । କଂସର ସ୍ଥାନ କେଉଁଠି ଆମେ ଜାଣିବା ଦରକାର' ଅନ୍ୟ ବଂଧୁ କହିଲେ । 'ଆସୁଛି ସାଙ୍ଗେ ସାଙ୍ଗେ'- ଅରିନ୍ଦମ କାମଦାମ ସାରିବାକୁ ଚାଲିଗଲା ।

ଶିବିରର ସମସ୍ତେ ଏକାଠି ହୋଇ ମହାକାଳ ମନ୍ଦିର ଦିଗକୁ ଚାଲିଲେ । ଆଗେ ଆଗେ ଜରାସନ୍ଧଙ୍କର ତିନି ଚାରିଜଣ ଲୋକ । କହି ଦିଆଯାଇଛି ଯେପରି ସମସ୍ତେ ଜରାସନ୍ଧଙ୍କର ଲୋକଙ୍କର ପଛେ ପଛେ ଯାଆନ୍ତି । କେହି ଯେପରି ଏ ପାଖ ସେପାଖ ନ ହୁଅନ୍ତି । ପଛରେ ବି ଜରାସନ୍ଧଙ୍କର ତିନି ଚାରି ଜଣ ଲୋକ । ଦି କଡ଼ରେ ବି କିଛି । ଅରିନ୍ଦମର ମନେହେଲା ଏ ଯେପରି ପଲେ ଗୋରୁଙ୍କୁ ଅଡ଼େଇ ଅଡ଼େଇ ନିଆଯାଉଛି । ତା ସତ୍ତ୍ୱେ ବି, ସେ ଆଶ୍ଚର୍ଯ୍ୟ ହୋଇ ଚାହିଁଲା, ଖୁବ୍ ବେଶୀ ସିପାହୀ

ନାହାନ୍ତି । ଅନ୍ତତଃ ଗତ କାଲି ଯେପରି ସିପାହୀ ମେଳା ମେଳା ହେଉଥିଲେ, ସବୁ ଆଡକୁ ନଜର ଥିଲା, ଆଜି ତା ନୁହେଁ । ଜରାସନ୍ଧଙ୍କର ରାଜବାଟୀ ଖୁବ୍ ପ୍ରଶସ୍ତ । ସିପାହୀମାନେ ବି କାଲି ଯଥେଷ୍ଟ ସଂଖ୍ୟାରେ ଥିଲେ । ଘୋଡ଼ାରେ ଚଢ଼ି ଖବର ନେଉଥିଲେ, ବୁଝାସୁଝା କରୁଥିଲେ । ଆଜି ମନେ ହେଉଛି ଖୁବ୍ କମ୍ । ସେ ଘୁ ଘୁ ପବନ ଆଜି ନାହିଁ । ଗଛଲତା ଆସ୍ତେ ଆସ୍ତେ ହଲୁଛି । ଚଢ଼େଇମାନେ ଡାକି ଡାକି ଉଡି ଯାଉଛନ୍ତି । ଖରା ବି ଟାଣ ନୁହେଁ, ଛାଇ ଛାଇଆ । ଚାରିଆଡ଼େ ଯେପରି ଗୋଟାଏ ଅଲଗା ଅଲଗା ଖୁସି ଖୁସି ଭାବ। ଯେପରି ଯାହା ହେବାର କଥା ହୋଇଗଲା, ବର୍ତ୍ତମାନ ଟିକିଏ ବିଶ୍ରାମ ନିଅ, କଅଣ ହେଉଛି ଦେଖ ।

ସମସ୍ତେ ଚୁପ ଚୁପ୍ ଚାଲିଛନ୍ତି । ଯାହା କଥାବାର୍ତ୍ତା ଆସ୍ତେ ଆସ୍ତେ, ଫିସଫିସ କରି । ଅରିନ୍ଦମ ତାର ଦୁଇ ବଂଧୁଙ୍କ ସାଙ୍ଗରେ ଜାଣି ଜାଣି ସମସ୍ତଙ୍କ ପଛରେ ଯାଉଥିଲା । ସେମାନେ ରାଜବାଟୀର ଯେଉଁ ଅଂଶରେ ଯାଉଥିଲେ ରାଜ ନଅରର ପଛରେ, ଗୋଟାଏ କଡ଼କୁ, ସେଠୁ ପାହାଡ଼ ଉପରେ ମହାକାଳଙ୍କ ମନ୍ଦିରର ଚୂଡ଼ା ଓ ମନ୍ଦିର ଚାରିପାଖର ଗଛବୃକ୍ଷ ସ୍ପଷ୍ଟ ଦେଖାଯାଉଛି । ଅରିନ୍ଦମ ଶୁଣିଛି ଏ ପାଖୁ ଜରାସନ୍ଧ ନିଜେ ବା ତାର ବିଶ୍ୱସ୍ତ ଲୋକଙ୍କ ଛଡ଼ା ଅନ୍ୟ କେହି ଆସନ୍ତି ନାହିଁ, ବା ଆସିବାକୁ ଅନୁମତି ଦିଆଯାଏ ନାହିଁ । ଏ କେବଳ ମହାକାଳଙ୍କ ମନ୍ଦିର ନୁହେଁ । ମନ୍ଦିର ପାଖରେ, ପାହାଡ଼ ଖୋଲରେ ଖୋଲରେ ଆଉ ସବୁ କଅଣ ଅଛି । ହୁଏତ ଗୁମ୍ଫାସବୁ ବା ଘରସବୁ । ଜରାସନ୍ଧଙ୍କର ସେଇ ରାକ୍ଷସ ପରି ସିପେହୀ ସବୁ, ଯେଉଁମାନେ ସେଦିନ ପାଞ୍ଚାଳର ସେ ଯୋଦ୍ଧାକୁ କଂଚା କଂଚା ରଡମଡ କରି ଖାଇଗଲେ , ସେମାନେ ସେଇ ପାଖରେ ଥାଆନ୍ତି ବୋଲି ଶୁଣିଛି । ଅରିନ୍ଦମ ଭାବିବାକୁ ଚେଷ୍ଟା କଲା ସେମାନଙ୍କୁ ରାଜବାଟୀର ଏ ନିଷିଦ୍ଧ ଅଂଚଳକୁ ଅଣାଗଲା କାହିଁକି । ସେମାନଙ୍କୁ ଖାଇବା ତ ଯେ କୌଣସି ସ୍ଥାନରେ ଦିଆହୋଇ ପାରିଥାନ୍ତା । ସେମାନଙ୍କର ଶିବିରରେ ତ ଦିଆଯାଉଥିଲା । ହଠାତ୍ ଆଜି ଏଠି କହିଁକି ? ସେ ଦୁଇ ବଂଧୁଙ୍କୁ ଚାହିଁଲା । ସେମାନେ ଚୁପଚୁପ୍ ଚାଲିଛନ୍ତି । କିନ୍ତୁ ଠିକ୍ ଚୁପଚୁପ ନୁହନ୍ତି । ସେମାନଙ୍କର ଆଖି ସଜାଗ । ଚିତ୍ର ଲେଖିଲା ପରି ଦି ପାଖ ଯେପରି ସେମାନଙ୍କ ଆଖିରେ ଲେଖି ହୋଇ ଯାଉଛି । ସେ ସେମାନଙ୍କୁ ବାଧା ଦେବାକୁ ଚାହିଁଲା ନାହିଁ । ଭାବିଲା ସତେ ତ ସେ ନିଜେ ଦେଖିବା ଉଚିତ । ଏ କି ଜାଗା ? ଠିକ୍ ଜଙ୍ଗଲ ତ ନୁହେଁ । ଗଛସବୁ ଏଠି ସେଠି ଉଠିନି । ଯତ୍ନରେ ଲଗାଯାଇଛି । ଏଆଡୁ ସେ ଆଡୁ ଗଛ ବି ନୁହେଁ, କେତେକ ନିର୍ଦ୍ଦିଷ୍ଟ ଗଛ, ଫୁଲର ରଙ୍ଗ ବି ଅଲଗା ଅଲଗା ରଙ୍ଗ ନୁହେଁ, ବିଶେଷ କରି ଲାଲ । ତା'ଛଡ଼ା ସରୁ ସରୁ ରାସ୍ତା ହୋଇଛି । ବସିବା ପାଇଁ ଜାଗା ସବୁ ଅଛି । ଚାରିଆଡ଼େ


Digitized by srujanika@gmail.com

ସୁନ୍ଦର ଗାଲିଚା ପରି ଛୋଟ ଛୋଟ ଘାସ, ଆଉ ଛୋଟ ଛୋଟ ଚଢ଼େଇ ସବୁ ଡେଇଁ ଡେଇଁ ବୁଲୁଛନ୍ତି । ଆଉ ଗୋଟାଏ ସରୁ ଟାଣ ରାସ୍ତା ଗୋଟାଏ କଡ଼ରୁ ବାହାରି, ବୁଲି ବୁଲି ଜଙ୍ଗଲ ଭିତରେ କୁଆଡ଼େ ଚାଲି ଯାଇଛି । ବୁଝି ହେଉଛି ଏ ଗୋଟାଏ ତିଆରି ବଗିଚା । କିନ୍ତୁ ଏଠି ବଗିଚା ତିଆରି ହେଲା କାହିଁକି, ଅରିନ୍ଦମ ଭାବିଲା । ଏ ତ ରାଜବାଟୀର ଖୁବ୍ ପାଖ ନୁହେଁ ଯେ ରାଜବାଟୀର ଲୋକମାନେ ଆସିବେ । ତା' ହେଲେ, କାହା ପାଇଁ ?

ଅରିନ୍ଦମ ଲକ୍ଷ୍ୟ କଲା ସେମାନେ ସେ ବଗିଚାରେ ରହିଲେ ନାହିଁ । ତାଙ୍କ ଦଳ ଆସ୍ତେ ଆସ୍ତେ ଆଗେଇ ଯାଉଛି । ରାଜବାଟୀର ଘର ସବୁ ଡାହାଣ ପାଖକୁ ରହିଲାଣି । ସାମନାରେ ପାହାଡ଼ ଉପରେ ଯେଉଁ ମନ୍ଦିର କିଛି ସମୟ ଆଗରୁ ଦିଶୁଥିଲା, ସେ ମନ୍ଦିର ଆଉ ଦିଶୁନାହିଁ, ବଡ଼ ବଡ଼ ଗଛ ଆଢୁଆଳରେ ଘୋଡ଼େଇ ହୋଇଯାଇଛି । ତେବେ ମନେ ହେଲା ସେମାନେ ବୋଧହୁଏ ଆଉ ବେଶୀ ସମୟ ଚାଲିବେ ନାହିଁ। ସାମନାରେ ଅଳ୍ପ ଦୂରରେ ଗୋଟାଏ ଖୋଲା ପଡିଆ ପରି ଜାଗା ଦିଶୁଛି । କିଛି କିଛି କୋଳାହଳ ବି ଶୁଭୁଛି, ଆଉ କିଛି କିଛି ଲୋକ ଏ ପାଖ ସେ ପାଖ ହେଉଥିବା ବାରି ହେଉଛି ।

ଅରିନ୍ଦମର ଅନୁମାନ ଠିକ୍, ସେମାନେ ସବୁ ସେଇ ପଡିଆରେ ରହିଲେ । ବେଶ୍ କିଛି ସମୟ ସେମାନେ ଚାଲି ଚାଲି ଆସିଛନ୍ତି । ରାଜବାଟୀ ଓ ଜରାସନ୍ଧଙ୍କର ନଅର ସବୁ ଦୂରକୁ ରହିଲାଣି । ସେ ପାଖୁ ସହର ବେଶ୍ ଦୂରରେ । ଅରିନ୍ଦମ ଚାରିପାଖକୁ ଚାହିଁଲା। ଖାଲି ଗଛବୃକ୍ଷ ନ ଥିବା ଖୋଲା ପଡିଆ ନୁହେଁ, ବେଶ୍ ପରିଷ୍କାର ପରିଚ୍ଛନ୍ନ । ଆଉ ବଡ଼ କଥା ସାରା ପଡିଆ ଚମତ୍କାର ଭାବରେ ସଜାସଜି ହୋଇଛି । ଏଠି ସେଠି ଛୋଟ ଛୋଟ ତମ୍ବୁ, ଆଉ ପ୍ରତ୍ୟେକ ତମ୍ବୁରୁ ଗୀତ ବାଦ୍ୟର ସୁଲଳିତ ସ୍ୱର ଭାସି ଆସୁଛି । ପଡିଆର ପ୍ରାୟ ମଝାମଝି ଯେଉଁ ତମ୍ବୁ ସବୁଠାରୁ ବଡ଼, ସବୁଠାରୁ ସୁନ୍ଦର, ଆଖି ଛାଁ ଛାଁ ତା ଆଡକୁ ଟାଣି ହୋଇ ଯାଉଛି । ଚମତ୍କାର ତାର ସଜାସଜି, ଚାରିପାଖରେ ମଣି ମୁକ୍ତାର ଝାଲର । ତମ୍ବୁର ଗାଢ଼ ଲାଲ ରଙ୍ଗ ନିଆଁ ପରି ଜଳୁଛି । ତମ୍ବୁ ଉପରେ ଯେଉଁ ପତାକା ଉଡୁଛି ସେ ବି ସାଧାରଣ ଛୋଟ ମୋଟ ପତାକା ନୁହେଁ । ବେଶ୍ ବଡ, ଉଜ୍ଜ୍ୱଳ ଲାଲ ରଙ୍ଗର, ପତାକାରେ ଶିକାର ଉପରକୁ ଲମ୍ଫ ଦେଉଥିବା ବିରାଟ ମହାବଳ ବାଘର ଛବି । ଅରିନ୍ଦମର ହଠାତ୍ ମନେ ହେଲା ଏ ପତାକା ତ ସେ ଆଗରୁ ଦେଖିଛି । ଏ ତ ଜରାସନ୍ଧଙ୍କର ପତାକା ! ତେବେ ଏ କଅଣ ଜରାସନ୍ଧଙ୍କର ଶିବିର, ଭିତରେ ଜରାସନ୍ଧ ନିଜେ ଅଛନ୍ତି ? ବାହାରେ ସିପେହୀମାନେ ଜଗି ରହିଛନ୍ତି, ତମ୍ବୁ ଭିତରକୁ ଲୋକମାନେ ସାବଧାନରେ ଯାଉଛନ୍ତି


Digitized by srujanika@gmail.com

ଆସୁଛନ୍ତି । ଖୁବ୍ ସମ୍ଭବ ଜରାସନ୍ଧ ନିଜେ ଅଛନ୍ତି । ସେ ଭାବି ପାରିଲା ନାହିଁ ଜରାସନ୍ଧ କାହିଁକି ତାଙ୍କ ସମସ୍ତଙ୍କୁ ଡକେଇ ପଠେଇଛନ୍ତି । ମଥୁରାରୁ କଂସ ସାଙ୍ଗରେ ସେମାନେ ସମସ୍ତେ ଆସିଛନ୍ତି । ଖୁବ୍ ବେଶୀ ନୁହଁନ୍ତି, କୋଡ଼ିଏ ପଚିଶ ହେବେ । ସମସ୍ତେ ପ୍ରାୟ କଂସର ବୟସର ପାଖାପାଖି, ଓ ସମସ୍ତଙ୍କୁ କଂସ ନିଜେ ବାଛିଛି । ରାଜ ଦରବାର କିଛି ବୟସ୍କ ଓ ଗୁରୁଜନସ୍ଥାନୀୟ ଲୋକଙ୍କୁ ପଠାଇବାକୁ ଭାବୁଥିଲା । ସେମାନେ ବି ଆସିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ କଂସ ସେମାନଙ୍କୁ ଆଣିବାକୁ ପ୍ରସ୍ତୁତ ନ ଥିଲା । ତାର ଯୁକ୍ତି ସେମାନଙ୍କ ସହିତ ସେ ଠିକ୍ ମିଶିପାରିବ ନାହିଁ, ସବୁ କଥାକୁ ସେମାନେ ବାରିବେ, ତାକୁ ଆ ହବ ତା ହବ ନାନା ଉପଦେଶ ଦେବେ । ସେ ଏପରି ଲୋକଙ୍କୁ ଚାହୁଁ ଥିଲା ଯେଉଁମାନେ ଚୁପ୍‌ଚାପ ତା କଥା ମାନିଯିବେ, ଯେଉଁମାନେ ନିଜର ଖିଆପିଆ ମଜା ଛଡ଼ା ଅନ୍ୟ କଥାରେ ମୁଣ୍ଡ ପୂରେଇବେ ନାହିଁ । ଆଶ୍ଚର୍ଯ୍ୟ, ସେ କୌଣସି ସୈନ୍ୟସାମନ୍ତ ବି ସାଙ୍ଗରେ ଆଣିବାକୁ ରାଜି ହେଲା ନି । ନିହାତି ଯେତିକି ନ ହେଲେ ନ ହେବ ସେତିକି । ସେ ପୁଣି ନିଜେ ଦେଖି ଦେଖି ବାଛିଛି । ଯେଉଁମାନେ ଆସିଛନ୍ତି ସେମାନେ ମଥୁରାର ଶିବିର ନୁହେଁ, କଂସର ଶିବିର, ଖାଲି ନାଁକୁ ମଥୁରା । ମନେ ହେଉଛି କଂସ ଜରାସନ୍ଧଙ୍କ ପାଖରୁ ଆଗରୁ କିଛି ଖବର ପାଇଥିଲା । ସେ ଜାଣିଥିଲା ରାଜଗିରିରେ କଅଣ ହେବାକୁ ଯାଉଛି । ସେଥିପାଇଁ ଏତେ ସତର୍କତା । କଂସ ତାଙ୍କ ଶିବିରରେ ବି ଦିନେହେଲେ ରହି ନାହିଁ । ସେ ଆସିବା ଦିନ ଠଉଁ ବି ଅଲଗା, ଜରାସନ୍ଧଙ୍କ ନଅରରେ ସେ କେଉଁଠି ଥାଏ କେହି ଜାଣନ୍ତିନି । ବୋଧହୁଏ ଅନ୍ୟାନ୍ୟ ରାଜା ଓ ରାଜପୁତ୍ରମାନଙ୍କ ସାଙ୍ଗରେ । ନାଁ ତା ବି ତ ନୁହେଁ । ତାଙ୍କ ଶିବିରରେ ଅନ୍ୟମାନେ ଅନେକ ସମୟରେ ଅନ୍ୟସବୁ ରାଜା ଓ ରାଜପୁତ୍ରମାନଙ୍କ ବିଷୟରେ କଥାବାର୍ତ୍ତା କରନ୍ତି, କିନ୍ତୁ କଂସ ବିଷୟରେ ସମସ୍ତେ ଚୁପ । ଅରିନ୍ଦମ ଭାବି ଆଶ୍ଚର୍ଯ୍ୟ ହେଲା, ସତେ ତ । କଂସ ବିଷୟରେ କଥାବାର୍ତ୍ତା କରିବାକୁ ସେ ବିଶେଷ କାହାକୁ ଶୁଣିନି । କେବଳ ଜରାସନ୍ଧଙ୍କ ଝିଅଙ୍କୁ କଂସ ବିଭା ହେବା କଥା ଶିବିରରେ କେତେକ ଫୁସଫୁସ ହେଉଥିଲେ । କିଛି କିଛି ନାପସନ୍ଦ କରୁଥିଲେ । କିନ୍ତୁ କଥା ଆଉ ବଢ଼ିନି, ସେତିକିରେ ରହିଲା । ସତେ ଯେପରି କିଏ ଅଲିଖିତ ଆଦେଶ ଦେଇଯାଇଛି, ଚୁପ୍, କଂସ ବିଷୟରେ ବା ସେ କ'ଣ କରୁଛି ସେ ବିଷୟରେ ଗପଟପ ନ କରିବାହିଁ ଭଲ । ସେ ପୁଣି ଭାବିଲା, ହଁ, ସେମାନେ ଗିରିବ୍ରଜ ଆସିବା ଦିନଠୁଁ ସେ ଦିନେ ହେଲେ କଂସକୁ ଦେଖିନାହିଁ । କେବଳ ସେଇ କୁସ୍ତି ଦିନ ଯା' ଦେଖିଥିଲା ସେତିକି । ଶୁଣିଥିଲା କଂସ ଥରେ ଦି'ଥର ଶିବିରକୁ ଆସିଥିଲା । ତେବେ ସେ ଅଳ୍ପ ସମୟ ପାଇଁ । କାହାରି ସାଙ୍ଗରେ ବିଶେଷ କଥାବାର୍ତ୍ତା କରିନି, କେବଳ ଶିବିରରେ

ଲୋକଙ୍କର ସୁବିଧା ଅସୁବିଧା କଥା ବା ଖାଇବାକୁ ଠିକ୍ ସମୟରେ ଆସୁଛି କି ନାହିଁ ସେ କଥା ପଚାରି ବୁଝିଛି, ଓ ସାଙ୍ଗରେ ଥିବା ସିପେହୀମାନଙ୍କୁ ସଂକ୍ଷିପ୍ତ ଆଦେଶ ଦେଇ ଚାଲିଯାଇଛି । ସେ ଏକା ଏକା କେବେ ନ ଥିଲା, ସିପେହୀମାନେ ସବୁବେଳେ ତା ପାଖେ ପାଖେ ରହିଥିଲେ । ଇଚ୍ଛା କରି ତା ସାଙ୍ଗରେ କେହି କଥାବାର୍ତ୍ତା କରୁ ଏ କଥା ବି ସେ ଚାହୁଁ ନ ଥିଲା ।

ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ନାଁ, ଏ ତ ଠିକ୍ କଂସର ପ୍ରକୃତି ନୁହେଁ । ସେ ଦୁଷ୍ଟ ହୋଇପାରେ, କିନ୍ତୁ ମିଶାମିଶି କରେ, ସମସ୍ତଙ୍କ ସାଙ୍ଗରେ ମିଶିବାକୁ ତାର ଇଚ୍ଛା, ଆଉ ମିଶେ ବି । ସେଥିପାଇଁ ମଥୁରାର ତାରି ବୟସର ଟୋକାମାନଙ୍କ ସାଙ୍ଗରେ ତା' ସଂପର୍କ ମୋଟାମୋଟି ଭଲ । ଅନେକ ସମୟରେ ସେ ସେମାନଙ୍କୁ ସାହାଯ୍ୟ କରେ, କୁସ୍ତି କସରତ ବି ଶିଖାଏ । ଅରିନ୍ଦମ ଏହିପରି କେତେ ସମୟ ଭାବୁଥିଲା ତା'ର ଖିଆଲ ନାହିଁ, ହଠାତ୍ ତାର ମନେ ହେଲା ସେ ଯେପରି ଗୋଟାଏ ପାଖାକୁ ଠେଲି ହୋଇଯାଉଛି । ନିଦ ଭାଙ୍ଗିଲା ପରି ତାର ଚେତା ଫେରି ଆସିଲା । ସେ ଦେଖିଲା ଠିକ୍ ସେ ଆଉ ଚୁପଚାପ ଛିଡ଼ା ହୋଇନାହିଁ । ଅନ୍ୟମାନଙ୍କ ସାଙ୍ଗରେ ପ୍ରାୟ ଧାଡି କରି ସେ ଆସ୍ତେ ଆସ୍ତେ ଶିବିର ଆଡକୁ ଆଗଉଛି । ତା ପାଖେ ପାଖେ ତା ଆଗର ଦୁଇ ବଂଧୁ । ଜଣେ ବଂଧୁ ତା ଆଡକୁ ଚାହିଁ କହିଲେ, 'କଣ ଏତେ ଭାବୁଛୁ ?'

'ନାଁ କିଛି ନାହିଁ । କଂସ କଥା ଭାବୁଛି ।' ସେ କହିଲା ।

'କଂସ କଥା ଭାବିବାର କ'ଣ ଅଛି ?' ବଂଧୁ କହିଲେ, 'ସେ ଆଉ ତୁମ ଭିତରେ ନାହିଁ । ତୁ ଭାବୁଛୁ ସେ ତୁମ ସାଙ୍ଗରେ ଆଗ ପରି ମଥୁରା ଫେରିଯିବ । ନାଁ, ସେ ଏକା ଏକା ଯିବ । ଜରାସନ୍ଧଙ୍କର ସୈନ୍ୟସାମନ୍ତ ତା ସାଙ୍ଗରେ ଯିବେ । ସେ ରାଜାପରି ଫେରିବ । ହଁ, ରାଜା, ସେ ବର୍ତ୍ତମାନ ରାଜା, ତମ ସାଙ୍ଗରେ ନୁହେଁ ।'

'ହଁ, ଖାଲି ସୈନ୍ୟସାମନ୍ତ ନୁହନ୍ତି, ନୂଆ ଦି ରାଣୀ ବି ଯିବେ, ପାତ୍ରମନ୍ତ୍ରୀ ବି ଯିବେ ।' ଅନ୍ୟ ବଂଧୁ କହିଲେ ।

'ଆଉ ଉଗ୍ରସେନ ?' ଅରିନ୍ଦମ ପାଟିରୁ ଛାଁ ଛାଁ କଥା ବାହାରି ପଡିଲା ।

'ଛାଡ଼, ଛାଡ, ଉଗ୍ରସେନ! ଉଗ୍ରସେନଙ୍କ ଦିନ ସରିଲାଣି । ଏଣିକି ଜରାସନ୍ଧଙ୍କ ରାଜତ୍ୱ ଆରମ୍ଭ ହେବ ।'

ଅରିନ୍ଦମ ସାମାନ୍ୟ ଚମକି ପଡିଲା । ଏ ତ ଭାନୁପ୍ରକାଶଙ୍କ କଥା । ତା'ର ବଂଧୁମାନଙ୍କର କ'ଣ ଭାନୁପ୍ରକାଶଙ୍କ ସାଙ୍ଗରେ ସଂପର୍କ ଅଛି ! ଅସମ୍ଭବ କଥଣ । ଭାନୁପ୍ରକାଶ ଜରାସନ୍ଧ ପରି ସମ୍ରାଟ ନୁହଁନ୍ତି, କି ଜରାସନ୍ଧଙ୍କର ପ୍ରବଳ ପରାକ୍ରମ ତାଙ୍କର


Digitized by srujanika@gmail.com

ନାହିଁ । କିନ୍ତୁ ତାଙ୍କର ଯା ଅଛି ଜରାସନ୍ଧଙ୍କର ନାହିଁ । ବୁଦ୍ଧି, ଦୂରଦୃଷ୍ଟି, ଟିକିନିଖି ଯୋଗାଡ଼ କରିବାର ଅଦ୍ଭୁତ ଶକ୍ତି, ଆଉ ଦମ୍ଭ । ଶେଷକୁ ସେହିହିଁ ଜିତିବେ । ସେ ବଂଧୁମାନଙ୍କୁ ଚାହିଁଲା । ସେମାନେ ନିର୍ବିକାର । ଚାରିପାଖକୁ ଚାହିଁଲା । ଚାରିପାଖରେ ପରିଷ୍କାର ଦିନ । ସମସ୍ତେ ଆଉ ଖେଳାମେଳା ନୁହନ୍ତି । ସମସ୍ତେ ଏକାଠି ହୋଇ ଗୋଟିଏ ସରୁ ଧାଡିରେ ଆସ୍ତେ ଆସ୍ତେ ଆଗର ମଣିମୁକ୍ତାର ଝାଲରରେ ଝଲଝଲ କରୁଥିବା ତମ୍ବୁ ଆଡକୁ ଆଗଉଛନ୍ତି । ଅରିନ୍ଦମର ଆଉ ଭାବିବାକୁ ସମୟ ନ ଥିଲା । ସେ ତମ୍ବୁ ଭିତରକୁ ପଶିଲା । ତା ପଛରେ ଥିବା ବଂଧୁ ତା ବାହାକୁ ଚିପି ଦେଲେ । 'ଅରିନ୍ଦମ, ପୁଣି ଶୋଇ ପଡିଲୁକି ? ଦେଖ୍, ଦେଖ୍, ଚାରି ପାଖକୁ ଦେଖ୍ ।' ଆଜି ବହୁଦିନ ପରେ ସେ କଥା ମନେ ପଡିଲେ ଅରିନ୍ଦମ ଯେପରି ଆଉ ଥରେ ବୋବା ହୋଇଯାଉଛି । ସେଦିନ ସେ ଦେଖିବ କଅଣ ! କଥା ତ କଥା, ଆଖି ଦିଟା ଯେପରି ବାହାରି ଆସିଲା । ସେ ଲୋକଙ୍କର ଧନ ସଂପତ୍ତି ଦେଖିଛି । ଲୋକଙ୍କର ଧନ ସଂପତ୍ତିର ଆଡମ୍ବର ଦେଖିଛି । କିନ୍ତୁ ଏ କଅଣ ? ଲୋକେ ଇନ୍ଦ୍ର ସଭାର ଆଡମ୍ବର କଥା କହନ୍ତି । କିନ୍ତୁ ଇନ୍ଦ୍ର ସଭା ସେ ଦେଖିନାହିଁ କି କେହି ଦେଖି ନାହାନ୍ତି । ବାପାଙ୍କ ଠାରୁ ସୁବର୍ଣ୍ଣ ଲଙ୍କା କଥା ଶୁଣିଛି । ବାପା କହୁଥିବା ଗୀତ ମନେ ପଡିଲା – "ମାଣିକର ପାବଛ ନୀଳାର ଖମ୍ବମାନ / ମର୍କତର ପୀଢ ପୋଏଳା ବିତପନ / ପୁଷ୍କରାଗ ସେଣି କୃବିନ୍ଦର ଉରା / ଗୁଂଜ ଚିତିପାଟି ବ୍ରହ୍ମଭୀତି ହୀରା ।" କିନ୍ତୁ ସୁବର୍ଣ୍ଣ ଲଙ୍କା ସେ ଦେଖିନାହିଁ । କି ବାପା ବି ଦେଖି ନାହାନ୍ତି । ସୁବର୍ଣ୍ଣ ଲଙ୍କା କେବଳ ଶୁଣା କଥା । କିନ୍ତୁ ଏ କଅଣ ? ଚାରିପାଖରେ ସୁନା, ସୁନା, ସୁନା – ସୁନାର ଦୀପ, ସୁନାର ଖମ୍ବ, ସୁନାର ଚନ୍ଦ୍ରାତପ, ସୁନାର ଆସ୍ତରଣ, ସୁନା ଦାଉ ଦାଉ ହୋଇ ଜଳୁଛି । ସୁନାର ସେଇ ପ୍ରଚଣ୍ଡ ତେଜରେ ଆଖି ମେଲା କରି ଯିବା ବି ସମ୍ଭବ ନୁହେଁ । ଶିବିର ମଝିରେ ଦୁଇଟା ସୁନାର ସିଂହାସନ । ଗୋଟାଏ ବଡ଼, ଅନ୍ୟଟି ଅପେକ୍ଷାକୃତ ସାନ । ବଡ଼ଟିରେ ନିଜେ ଜରାସନ୍ଧ ବସିଛନ୍ତି । ଦେହରେ ଅପୂର୍ବ, ଅଭୂତପୂର୍ବ ପୋଷାକ, ଦେହସାରା ମଣିମୁକ୍ତାର ଅଭୂତପୂର୍ବ ଅଳଂକାର । ପୁଣି ବାପାଙ୍କ ଗୀତ ମନେ ପଡିଲା – 'କି ଜାଣି ଗଗନେ ଉଦୟେ ଲକ୍ଷେ ତାରା ।' ଆଖିରେ ଅପରିମିତ ସ୍ନେହ, ମୁହଁରେ ଉଦାର ହସ, ସତେ ଯେପରି ଦୁଇ ବାହୁ ମେଲେଇ ସେ ଡାକୁଛନ୍ତି– "ଆସ, ଆସ ।" ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗିଲା ଏ କଅଣ ସେହି କୁସ୍ତି ଆଖଡ଼ାର ଜରାସନ୍ଧ, ଯା'ର ଆଖି ରଡନିଆଁ ପରି ଜଳୁଥିଲା, ମୁହଁରେ ତୀବ୍ର, କୁଟିଳ ହସ । ହାବଭାବରେ ସମସ୍ତଙ୍କ ପ୍ରତି ତାଚ୍ଛଲ୍ୟ, ଦେଖିଲେ ଲୋକ ସାଙ୍ଗେ ସାଙ୍ଗେ ଡରିଯିବ, ସତେ ଯେମିତି ମଣିଷଖିଆ ବାଘ । ଏ ତ ସଂପୂର୍ଣ୍ଣ ଅଲଗା ଜରାସନ୍ଧ – ଦେବୋପମ, ପିତୃତୁଲ୍ୟ, ସମସ୍ତଙ୍କ ପ୍ରତି ଆଶୀର୍ବାଦର

ମୁଦ୍ରା, ଦେଖିଲେ ମନ ପୂରିଯିବ, ମୁଣ୍ଡ ଛାଏଁ ଛାଏଁ ନଇଁ ଆସିବ । ନାଁ, ନାଁ, ଭାନୁପ୍ରକାଶ ଭୁଲ୍ । ଏ ଜରାସନ୍ଧ ଦେବତା ।

ବଂଧୁ ଫିସଫିସ କରି କହିଲେ, 'ଆରେ ଅରିନ୍ଦମ, କଂସକୁ ଦେଖ୍ ।'

ଆଉ ସିଂହାସନରେ କଂସ, ଜରାସନ୍ଧଙ୍କର ପୋଷାକ ଓ ଅଳଂକାର ପରି କଂସର ବି ପୋଷାକ ଓ ଅଳଂକାରର ଆଡମ୍ବର । ଜରାସନ୍ଧଙ୍କ ପଛରେ ସିପାହୀମାନେ ଯେପରି ସଜାଗ ହୋଇ ରହିଛନ୍ତି, କଂସ ପଛରେ ବି ସେହିପରି କିଛି ସିପାହୀ । କିନ୍ତୁ ଜରାସନ୍ଧଙ୍କର ରାଜକୀୟ ଠାଣି କଂସ ପାଖରେ ନାହିଁ । ଜରାସନ୍ଧଙ୍କର ଉଦାରତାର ମୁଖମଣ୍ଡଳ, ଯେପରି ସବୁ କ୍ଷମା କରିଦେବାର ମନୋଭାବ । ମନେ ହେଉଛି କଂସ ଯେପରି ବିବ୍ରତ, ଆଉ ତା' ମୁହଁରେ ରୁକ୍ଷତା, ଔଦ୍ଧତ୍ୟ, ଅହଂକାର ।

'ହଁ, କଂସ କିପରି ଅଲଗା ଦିଶୁଛି ।' ଅରିନ୍ଦମ କହିଲା ।

'ଅଲଗା ଦିଶୁଛି ନୁହେଁ, ସେ ଅଲଗା' । ବଂଧୁ କହିଲେ, 'ସେ ସବୁଦିନେ ସେଇଆ । ଆମେ ତାକୁ ଆମ ଭିତରର ବୋଲି ଭାବୁଛେ । ସେ ଆମ ଭୁଲ । ସେ ଜରାସନ୍ଧଙ୍କ ଲୋକ । ଜରାସନ୍ଧ ଯେଉଁ ନିଷ୍ଠୁର ଦୁର୍ଦ୍ଦାନ୍ତ, ସେ ବି ସେଇଆ । ପ୍ରଭେଦ, ଜରାସନ୍ଧ ଚତୁର, ସେ ନିଜକୁ ଘୋଡ଼େଇ ଜାଣନ୍ତି । କଂସ ସେ ଚତୁରତା ଶିଖି ନାହିଁ, ଶିଖିବ ।'

ଅରିନ୍ଦମ ଲକ୍ଷ୍ୟ କଲା ଚାଲୁ ଚାଲୁ ସେମାନେ ଗୋଟାଏ ଜାଗାରେ ଛିଡ଼ା ହେଲେ । ପାଖରେ ଛୋଟ ଛୋଟ ପାତ୍ରରେ ଆଂଜୁଳାଏ ଆଂଜୁଳାଏ ମଣିମୁକ୍ତା । ପାତ୍ରଗୁଡ଼ିକ ମଣିମୁକ୍ତାର ଉଜ୍ଜ୍ୱଳ ଆଲୋକରେ ଛୋଟ ଛୋଟ ସୂର୍ଯ୍ୟ ପରି ଜଳଜଳ କରୁଛି । ସେଥିରୁ ଗୋଟିଏ ଗୋଟିଏ ପାତ୍ର ସେମାନଙ୍କୁ ଧରେଇ ଦିଆଗଲା । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ଏ ମଣିମୁକ୍ତା ସେ କରିବ କଅଣ ? ସେ ବଂଧୁଙ୍କୁ ଚାହିଁଲା । 'ଧରି ଥା', ବଂଧୁ କହିଲେ, 'ଦେଖ, ଆଗରେ ଅନ୍ୟମାନେ କଅଣ କରୁଛନ୍ତି । ସେଇଆ କରିବୁ ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଦେଖିଲା ଆଗରେ ଯେଉଁମାନେ ଛୋଟ ଛୋଟ ପାତ୍ରରେ ମଣିମୁକ୍ତା ଧରି ଯାଉଥିଲେ ସେମାନେ ସେ ସବୁକୁ ଜରାସନ୍ଧ ଓ କଂସର ପାଦ ପାଖରେ ଅଜାଡ଼ି ଦେଉଥିଲେ । ତାକୁ ଅଦ୍ଭୁତ ଲାଗିଲା । ସେ କହିଲା, 'ଏ କ'ଣ କି ହୋ ? ଏ ତ ଠାକୁରଙ୍କୁ ଫୁଲ ଦେବା କଥା !' 'ଏମାନେ ଠାକୁରଙ୍କ ଠଉଁ ବଡ଼ ସେଇ ଯୋଗୁଁ ଫୁଲ ବଦଳରେ ମଣିମୁକ୍ତା ଦିଆଯିବ ।' ବଂଧୁ କହିଲେ, 'ଠାକୁର ଚୁପଚାପ ବସିଥାନ୍ତି । କାହାର ଭଲ ମନ୍ଦ କରନ୍ତି ଜଣା ନାହିଁ । କିନ୍ତୁ ଏମାନଙ୍କର ଗୋଟିଏ ନିଷତ୍ତି । ଏ ପାଖ ସେ ପାଖ ହେଲେ ମୁଣ୍ଡକାଟ ।' 'ଅରିନ୍ଦମ, କିଛି କହନା ।


Digitized by srujanika@gmail.com

ଚୁପ୍‌ଚାପ୍ ଯାଇଁ, ମଣିମୁକ୍ତାତକ ପାଦତଳେ ଓଜାଡ଼ି ଦେଇ ନମସ୍କାର କରି ବାହାରି ଯା ।' ଅନ୍ୟ ବଂଧୁ କହିଲେ ।

ସେମାନେ ପୁଣି ଆସ୍ତେ ଆସ୍ତେ ଚାଲିଲେ । ତମ୍ବୁରେ ସୁନାର ଛାଉଣି ସେହିପରି ଦାଉ ଦାଉ ହୋଇ ଜଳୁଛି । ସିପାହୀମାନେ ସେମାନଙ୍କର ବର୍ଚ୍ଛା ଧରି ମୂର୍ତ୍ତିପରି ସେହିପରି ଛିଡ଼ା ହୋଇ ରହିଛନ୍ତି । ଜରାସନ୍ଧଙ୍କର ସେହିପରି ଉଦାର ହସ, କଂସର ସେହିପରି ଔଦ୍ଧତ୍ୟ । ଅରିନ୍ଦମ ମନରେ ପ୍ରଚଣ୍ଡ ବିରକ୍ତି, ମନେ ହେଲା ମଣିମୁକ୍ତାର ଥାଳିଆଟା କଂସର ମୁହଁକୁ ଫିଙ୍ଗି ଦେଇ ଶିବିରରୁ ଦୌଡ଼ି ବାହାରକୁ ଚାଲିଯିବ । ସେ ଏପର୍ଯ୍ୟନ୍ତ ଯାହା ଶିଖିଛି, ଜାଣିଛି ଏସବୁ ତାର ବିପରୀତ । ବାପା ଶୁଣିଲେ କଅଣ କହିବେ । ଜରାସନ୍ଧ ଓ କଂସକୁ ସେ କୁସ୍ତି ଆଖଡ଼ାରେ ଯାହା ଦେଖିଛି ସେଇଟାହିଁ ସେମାନଙ୍କର ଠିକ୍ ରୂପ, ଏସବୁ କେବଳ ଛଳନା । ସ୍ପଷ୍ଟ ବୁଝି ହେଉଛି କଂସ ଜଣେଇଦେବାକୁ ଚାହେଁ ସେ ଜରାସନ୍ଧଙ୍କର ଜାମାତା । ସେ ମଥୁରାର ଜଣେ କେହି ନୁହେଁ । ସେ ମଥୁରାର ଶାସକ, ତାର ଇଚ୍ଛା ଇଚ୍ଛା ନୁହେଁ ଆଦେଶ, ସମସ୍ତଙ୍କୁ ମାନିବାକୁ ହେବ । ଏଇଟା ହିଁ ଆରମ୍ଭ । ମଥୁରାରୁ ଯେଉଁମାନେ ଆସିଛନ୍ତି ସେମାନେ ବୁଝନ୍ତୁ, ମାନି ନିଅନ୍ତୁ । ସେ ବର୍ତ୍ତମାନ ଜରାସନ୍ଧଙ୍କ ସାଙ୍ଗରେ, ଜରାସନ୍ଧଙ୍କ ସାଙ୍ଗରେ କାନ୍ଧକୁ କାନ୍ଧ ମିଳେଇ ଛିଡ଼ା ହେଲାଣି ।

ପଛରୁ ବଂଧୁ କହିଲେ, 'ଅରିନ୍ଦମ ଚୁପ୍ । ଅନ୍ୟମାନେ ଯାହା କରୁଛନ୍ତି ସେଇଆ କର । ସାବଧାନ ।'

ଅରିନ୍ଦମ ମୁହଁ ଟେକି ଚାହିଁଲା ନାହିଁ । ଜରାସନ୍ଧ ଓ କଂସଙ୍କର ପାଦ ତଳେ ମଣିମୁକ୍ତା ଓଜାଡ଼ି ଦେଇ ଚୁପ୍‌ଚାପ ବାହାରିଗଲା ।

ଅରିନ୍ଦମ ପଛେ ପଛେ ତା'ର ଦୁଇବଂଧୁ ବି ବାହାରି ଆସିଲେ, ଅରିନ୍ଦମର ମନେ ହେଲା ଯେପରି ସେ ନିଃଶ୍ୱାସ ନେଇ ପାରୁ ନ ଥିଲା । ଏଠି ସେ ନିଃଶ୍ୱାସ ଫେରି ପାଇଲା । ବାହାରର ଖୋଲା ଆକାଶ ତଳେ, ଖୋଲା ପବନରେ, ଖୋଲା ପଡ଼ିଆରେ ତାର ମୁଣ୍ଡଟା ଯାହା ବନ୍ଦ ହୋଇ ଯାଇଥିଲା, ଖୋଲିଗଲା । ସେ ବଂଧୁମାନଙ୍କୁ ଚାହିଁଲା, କହିଲା, 'ଏ କ'ଣ ? ଏ କି ଧନର ଆଡମ୍ବର ।' 'ଧନ', ବଂଧୁ କହିଲେ, 'ଏ ଖାଲି ଧନ ନୁହେଁରେ ଅରିନ୍ଦମ । ଏ ଶକ୍ତି । ଧନ ହିଁ ଶକ୍ତି । ଏ ଶକ୍ତି ଆମକୁ ଦେଖେଇ ଦିଆଗଲା ।'

'ଆମେ ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା, 'ଆମେ କଅଣ କରି ପାରିବା ? ଆମର ମୂଲ୍ୟ କଅଣ ?'

'ଯଥେଷ୍ଟ', ବଂଧୁ କହିଲେ, 'ତୁମେ ପଶାପାଲିର ପ୍ରଥମ ଗୋଟି । ତୁମେ


Digitized by srujanika@gmail.com

ପାଞ୍ଚାଳ କି ଅବନ୍ତୀ ନୁହଁ, ତୁମେ ମଥୁରା, ଯେଉଁଠୁ ଜରାସନ୍ଧ ତାର ଦିଗବିଜୟ ଆରମ୍ଭ କରି ପାରିବ । ଯେଉଁଥିପାଇଁ କଂସ ଜାମାତା ଓ ଆମେ ସବୁ ମଥୁରା ଲୋକେ ତାର ଅନୁଗତ ପ୍ରଜା ।' ଅରିନ୍ଦମ ଭାବିଲା ଏ ବିଚାର ଠିକ୍ । ଏ ଉଭୟଙ୍କର ସ୍ୱାର୍ଥ, ଜରାସନ୍ଧଙ୍କ ପାଇଁ କଂସ, କଂସ ପାଇଁ ବି ଜରାସନ୍ଧ । ଭାନୁପ୍ରକାଶଙ୍କ କଥା ମନକୁ ଆସିଲା । ଜରାସନ୍ଧ ସମଗ୍ର ଆର୍ଯ୍ୟାବର୍ତ୍ତର ଏକଛତ୍ର ଅଧିପତି ହେବାକୁ ଚାହେଁ । ତା ପାଖରେ ନୀତି, ଧର୍ମ, ମଣିଷର ଜୀବନ ଏ ସବୁର କିଛି ମୂଲ୍ୟ ନାହିଁ । କଂସ ତାର ଅସ୍ତ୍ର, ଯେଉଁ ଅସ୍ତ୍ରକୁ ସେ ଠିକ୍ ଜାଣେ କିପରି ବ୍ୟବହାର କରି ପାରିବ । ତା ମନରେ ଯେଉଁ ସନ୍ଦେହ ଉଙ୍କି ମାରୁଥିଲା ସେ କ୍ରମଶଃ ଦୃଢ଼ ହେଲା । ତାର ବଂଧୁମାନେ ମଧ୍ୟ ଭାନୁପ୍ରକାଶଙ୍କ ଲୋକ ।

ସେମାନେ ସମସ୍ତେ ଅଳ୍ପ ଦୂରରେ ଥିବା ଅନ୍ୟ ଗୋଟିଏ ବଡ଼ ତମ୍ବୁ ଆଡକୁ ଯାଉଥିଲେ । ସେହିଠାରେ ଖାଇବା ପିଇବାର ବନ୍ଦୋବସ୍ତ । ତାର ଦୁଇ ବଂଧୁ ହଠାତ୍ ଅନ୍ୟମାନଙ୍କ ଠାରୁ ପଛେଇ ଗଲେ । ସେମାନଙ୍କର ସାଙ୍ଗରେ ଅରିନ୍ଦମ ବି । ସେ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ତାର ବଂଧୁମାନେ ଯାହା ମନେ ହୁଏ ଅନେକ କଥା ଜାଣନ୍ତି, ଯାହା ସେ ନିଜେ ଜାଣେ ନା । ବେଶ ସତର୍କ ବି । ସେମାନେ ତ ଆଖିରେ ପଡିଲା ପରି କିଛି ଭୁଲ କାମ କରିବେନି । ଅନ୍ୟମାନେ ବେଶ୍ ଆଗେଇ ଗଲେଣି । ସେମାନେ, ସେ ଓ ତାର ବଂଧୁ, ଚାଲି ଚାଲି ଶିବିର ଆଡକୁ ଯାଉଛନ୍ତି ଠିକ୍, କିନ୍ତୁ ଆସ୍ତେ ଆସ୍ତେ । ଅନ୍ୟମାନଙ୍କ ଠାରୁ ସେମାନେ ଯେ ଅଲଗା ହୋଇ ଗଲେଣି ବେଶ୍ ବୁଝି ହେଉଛି । ଚାରି ପାଖରେ ବେଶୀ ସିପେହୀ ନାହାନ୍ତି, କିନ୍ତୁ ତଥାପି କିଛି କିଛି ଅଛନ୍ତି । ଅରିନ୍ଦମ ଦେଖିଲା ସେମାନଙ୍କଠାରୁ ଦୁଇଜଣ ତାଙ୍କ ଆଡକୁ ଆଗେଇ ଆସୁଛନ୍ତି । ପ୍ରାୟ ପାଖ ହୋଇଗଲେଣି । ନିଶ୍ଚୟ କିଛି ଅଘଟଣ ଘଟିବ, ସେ ମନେ ମନେ ଭୟ ପାଇଗଲା । କିଛି ଦିନ ତଳ କଥା ମନେ ପଡିଗଲା, ଅଳ୍ପକେ ସେ ସିପେହୀମାନଙ୍କ ଠାରୁ ରକ୍ଷା ପାଇ ଯାଇଥିଲା । ସେ ମଥୁରାରୁ ଆସିଛି, କଂସଙ୍କ ଲୋକ । ସେହିଯୋଗୁଁ ସିପେହୀମାନେ କିଛି କଲେ ନାହିଁ, କେବଳ ସାବଧାନ କରି ଛାଡିଦେଲେ । ଆଜି ହୁଏତ କିଛି ହେବନି । କିନ୍ତୁ କିଏ ଜାଣେ । ଜରାସନ୍ଧଙ୍କ ରାଜ୍ୟରେ କୌଣସି ସ୍ଥାନ ନିରାପଦ ନୁହେଁ । ସାବଧାନ ହେଲେ ବି ବିପଦ ଅଛି । ସେ ବଂଧୁମାନଙ୍କୁ ଚାହିଁଲା, କଅଣ କହିବାକୁ ଯାଉଥିଲା, ଜଣେ ବଂଧୁ ଓଠରେ ଆଙ୍ଗୁଠି ଦେଇ ତାକୁ ଇଙ୍ଗିତରେ ଚୁପ ରହିବାକୁ କହିଲେ ।

ସିପେହୀ ଦୁଇଜଣଯାକ ପାଖକୁ ଲାଗି ଆସିଲେଣି । ଅରିନ୍ଦମର ମନେ ହେଲା ସେମାନଙ୍କର ମୁହଁରେ ବିରକ୍ତି । ଜଣେ ବେଶ ବିରକ୍ତ ହୋଇ କହିଲା, 'କି ହୋ,

ଏଠି କଅଣ କରୁଛ? ଯାଅ, ଯାଅ, ତୁମର ଖାଇବା ଜାଗା ସେଠି। ଯାଅ, ଶୀଘ୍ର ଯାଅ।' 'ହଁ, ହଁ, ଯାଉଛୁ।', ଜଣେ ବଂଧୁ କହିଲେ, ଓ ସାଙ୍ଗେ ସାଙ୍ଗେ ଜୋରରେ ଚାଲିବାକୁ ଆରମ୍ଭ କଲେ। ଅରିନ୍ଦମର ମନେ ହେଲା ବଂଧୁଙ୍କର ବୋଧେ ସିପେହୀ ସାଙ୍ଗରେ ଧକ୍କା ହୋଇଯିବ। ଉଭୟଙ୍କର ଦେହ ପ୍ରାୟ ଘସି ହେଲାପରି ଲାଗିଲା। ଏକା ସମୟରେ ଉଭୟ ପାଟି କଲେ। ସିପେହୀ ପାଟି କଲା, 'ଆରେ, ଆରେ, ଧକ୍କା ଦବ ନା କଅଣ?' ବଂଧୁ 'ଆଜ୍ଞା', 'ଆଜ୍ଞା' କହି ହାତ ଯୋଡି ଅଲଗା ହୋଇଗଲେ। ଅରିନ୍ଦମଙ୍କୁ କେମିତି କେମିତି ଲାଗିଲା। ଗୋଟାଏ ମୁହୂର୍ତ୍ତ, ଗୋଟାଏ ମୁହୂର୍ତ୍ତ ବି ନୁହେଁ। ତାର ମନେ ହେଲା ସିପେହୀର ମୁହଁଟା ଯେମିତି ଦେଖିଲା ନ ଦେଖିଲା ପରି ବଂଧୁଙ୍କର କାନ ପାଖରେ ଲାଗିଗଲା ଓ ସେ ଫିସ ଫିସ କରି କଅଣ କହିଦେଲା। ଆଉ ତାର ବଂଧୁ ମୁଣ୍ଡଟାକୁ ସାମାନ୍ୟ ହଲେଇ ଦେଲେ। ଏତେ ଶୀଘ୍ର, ଏତେ ସୂକ୍ଷ୍ମ ଭାବରେ ଏ କଥାଟି ଘଟିଗଲା ଅରିନ୍ଦମର ମନେ ହେଲା ସେ ଠିକ୍ ଦେଖିଛି ତ! ସାଙ୍ଗେ ସାଙ୍ଗେ ସିପେହୀର ପାଟି ଶୁଣାଗଲା- 'ଯାଅ, ଯାଅ, ଶୀଘ୍ର ଯାଅ।' 'ଆଜ୍ଞା, ଆଜ୍ଞା।' ବାସ୍ ସେତିକି।

ସେମାନେ ଖାଇବା ଶିବିରକୁ ଗଲେ। ଖାଇବାର ଆଡମ୍ବର ପୂର୍ବର ମଣିମୁକ୍ତା, ଧନସଂପତ୍ତିର ଆଡମ୍ବର ଠାରୁ କିଛି କମ ନୁହେଁ। ଆସିବା ଦିନଠାରୁ ସେ ଦେଖିଆସୁଛି ଜରାସନ୍ଧଙ୍କର ଖାଇବାର ଦେବାରେ କିଛି କାର୍ପଣ୍ୟ ନାହିଁ। କେବଳ ସେମାନଙ୍କୁ, ମଥୁରାର ଲୋକମାନଙ୍କୁ ନୁହେଁ। ଜରାସନ୍ଧଙ୍କର ନିମନ୍ତ୍ରଣରେ ବିଭିନ୍ନ ରାଜ୍ୟରୁ ଯେତେ ଲୋକ ଆସିଛନ୍ତି ସମସ୍ତଙ୍କ ଶିବିରରେ। ଭାନୁପ୍ରକାଶଙ୍କ କଥା ପୁଣି ଅରିନ୍ଦମର ମନେ ପଡିଲା। ଭଲ ଭାବରେ ନା ଖୁବ୍ ଭଲ ଭାବରେ ଖାଇବା ପିଇବାକୁ ଦେବାରେ ବି ସ୍ୱାର୍ଥ ଅଛି। ଲୋକେ ଜାଣିବେ, ଖୁସି ହେବେ, ତମର ପ୍ରଚାର କରିବେ, ତୁମ ଆଡକୁ ମନେ ମନେ ଢଳିବେ। କହିବେ ଜରାସନ୍ଧ ସମ୍ରାଟ ହେଲେ ବି ତାଙ୍କର ସବୁ ଆଡକୁ ନଜର ଅଛି। ଖୁବ୍ ଭଲ ଲୋକ। ଅରିନ୍ଦମ ମନେ ମନେ ହସିଲା, ଭଲ ଖାଇବାରେ କିଏ ଖୁସି ନ ହୁଏ। ଜରାସନ୍ଧଙ୍କୁ ଦୋଷ ଦେଇ ଲାଭ କଅଣ। ବିଭିନ୍ନ ପାତ୍ରରେ ପ୍ରଚୁର ଖାଇବା ଜିନିଷ ରହିଛି। ଯା ଇଚ୍ଛା ତା ନିଅ, ଆହୁରି ନିଅ, ଆହୁରି ନିଅ। ତା ଛଡ଼ା ପାନୀୟ। ନାଁ, ଏସବୁ ଖାଦ୍ୟର ବହର ମଥୁରାରେ ସ୍ୱପ୍ନ। ପ୍ରଥମ କଥା ଏତେ ସବୁ ଖାଦ୍ୟ ପାଇଁ ମଥୁରାର ଲୋକଙ୍କର ଲାଳସା ନାହିଁ। ଦ୍ୱିତୀୟ କଥା, ଏତେପ୍ରକାର ଆୟୋଜନ ବି ମଥୁରାରେ ସମ୍ଭବ ନୁହେଁ। ବଡ଼ କଥା ମଥୁରାରେ ଖାଦ୍ୟ ବିଳାସ ନୁହେଁ। ଜୀବନ ବଞ୍ଚାଇବା ପାଇଁ ଯେତିକି ଦରକାର ସେତିକି। ସେ ବି ଯଥେଷ୍ଟ ମିଳିଯାଏ। ଗୋ ମାତାର ଦୟା, ଯମୁନାର ଦୟା, ଜମିର ଫସଲ, ଚାରି ପାଖର

ସୁନ୍ଦର, ସୁସ୍ଥ ଫଳ ଗଛର ଦୟା । ଇନ୍ଦ୍ର ଦେବଙ୍କର ନିୟମିତ ବାରି ବର୍ଷଣ - ନାଁ, ମଥୁରାରେ ଖାଦ୍ୟର ଅଭାବ ନାହିଁ । କେବେ ବି ସେମାନେ ଭାବି ନାହାନ୍ତି ଖାଦ୍ୟର ଅଭାବ ପଡିପାରେ । କିନ୍ତୁ ଏ ଅଲଗା । ଏତେ ପ୍ରକାର ଖାଦ୍ୟ ଯେ ଅଛି ଏ ଧାରଣା ତାର ନ ଥିଲା । ପଶୁପକ୍ଷୀର ମାଂସ ତ ଅପର୍ଯ୍ୟାପ୍ତ, ତା ସହିତ ଆହୁରି କେତେ କେତେ ଖାଦ୍ୟ, ତା'ଛଡ଼ା ପାନୀୟ, ତାର ବି ସୀମା ନାହିଁ । ଆଉ ପାନୀୟ ପାଖରେ ହିଁ ବେଶି ଭିଡ଼ । ଲୋକଙ୍କୁ ସମ୍ଭାଳିବା ମୁସ୍କିଲ । ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଲା । ସେ ଏ ଲୋକମାନଙ୍କୁ ଜାଣେ । ପ୍ରତିଦିନ ଦେଖି ଆସୁଛି । କୁହାଯାଇ ପାରେ ବେଶ ଶାନ୍ତ ଶିଷ୍ଟ ଲୋକ । କିନ୍ତୁ ଖାଇବା ପାଇଁ ସେମାନଙ୍କର ଏ ଆଗ୍ରହ ତ ସେ କେବେ ଦେଖିନି । ଗତ ରାତିରେ ଏଇ ଲୋକମାନେ କିପରି ମଦ ଓ ସ୍ତ୍ରୀ ଲୋକମାନଙ୍କୁ ଧରି ପଡିଥିଲେ ଭାବିଲେ ଦେହ କଂପି ଉଠେ । ଆଜି ଖାଇବା ପାଇଁ ଏ ଠେଲାପେଲା, ଛଡ଼ାଛଡ଼ି, ଯେତେ ପାରୁଛ ଖାଇ ଯା ।'

ଅରିନ୍ଦମ ଗୋଟାଏ କଡ଼ରେ ଚୁପ୍ ହୋଇ ଛିଡ଼ା ହେଲା, ଭାବିଲା କଅଣ କରିବ, କଅଣ ଖାଇବ, କେମିତି ଖାଇବ । ତାର ଖିଆଲ ନାହିଁ ପାଖରେ ତାର ଦି ବଂଧୁ ଆସି ଛିଡ଼ା ହେଲେଣି । ଜଣେ କହିଲେ, 'ଅରିନ୍ଦମ, କ'ଣ ଏତେ ଭାବୁଛୁ ? ଯା ଖାଇ ଦେ ।' 'ଏ କି ଖାଇବା ହେ', ତା ପାଟିରୁ ଛାଁ ଛାଁ ବାହାରି ପଡିଲା । ଦି' ବଂଧୁଯାକ ହସିଲେ । ଜଣେ କହିଲେ, 'ଆରେ ଖାଇବା ତ ଖାଇବା । ଏତେ ବିଚାର କଅଣ ? ଏ ପରା କଂସର ବାହାଘର ଭୋଜି । ଏ ଖାଇବା ତୁ ମଥୁରାରେ କେବେ ଖାଇଛୁ ?'

'ନା, ସେଇଟାହିଁ ମୋତେ କାବା ଲାଗୁଛି ।' ଅରିନ୍ଦମ କହିଲା ।

'କାବା ହବା ଦରକାର ନାହିଁ', ବଂଧୁ କହିଲେ, 'ଖା' ଯା' । ଏଇଟା ହିଁ ମଥୁରାରେ କଂସ ରାଜତ୍ୱର ଆରମ୍ଭ, ବୁଝି ପାରୁନୁ ।'

'ତୁମେ ଖାଅ ପିଅ, ଆଉ ଯା' କରୁଛ କର ?' ଅନ୍ୟ ବଂଧୁ କହିଲେ, 'କିନ୍ତୁ କଂସର କୌଣସି କଥାରେ ମୁଣ୍ଡ ପୂରାନା । ସେ ଏଣିକି ଯାହା ନିଷ୍ପତ୍ତି କରିବ, ତୁମେ ନୁହଁ ।'

ସେମାନେ କିଛି ଦୂରରେ ରହିଥିବା ଖାଦ୍ୟ ପାତ୍ରମାନଙ୍କ ଆଡକୁ ଏକାଠି ଗଲେ । ବଂଧୁ କହିଲେ, 'ଅନେକ ଖାଦ୍ୟ ଅଛି । ଯାହା ଇଚ୍ଛା ହେଉଛି ଖାଅ । ଦେଖ ଅନ୍ୟମାନେ କିପରି ଖିଆପିଆ କରୁଛନ୍ତି । ତୁମେ ତାଙ୍କ ଭିତରୁ ଜଣେ । ଚୁପ୍‌ଚାପ ଖାଇନିଅ । ଶୀଘ୍ର ଖାଇନିଅ । ସେମାନେ ଆମକୁ ଏଠି ବେଶି ସମୟ ରହିବାକୁ ଦେବେନି ।' ଅରିନ୍ଦମ କଅଣ କହିବ ବୋଲି ଭାବୁଥିଲା, କିଛି ନ କହି ଚୁପ୍‌ଚାପ

ଖାଇବାକୁ ଆରମ୍ଭ କଲା । ତାର ଦି ବଂଧୁ ମଧ ଖାଇବାକୁ ଆରମ୍ଭ କଲେ । କେବଳ ଗୋଟାଏ କଥା ଅରିନ୍ଦମ ମନରେ ଖଚଖଚ ହୋଇ ଲାଗୁଥିଲା – ତାର ଏ ଦି ବଂଧୁ ଏତେ ସତର୍କ କାହିଁକି । ସେ ଏଆଡ଼େ ସେଆଡ଼େ ଚାହିଁଲା, କାହିଁ ସିପାହୀମାନେ ତ ବିଶେଷ ଦିଶୁ ନାହାନ୍ତି । ତଥାପି ସନ୍ଦେହ ଲାଗିଲା । ମଥୁରାରୁ ସେମାନେ ତ ଏତେ ଲୋକ ନୁହନ୍ତି । ଆଉ ସେ ତ ପ୍ରାୟ ଅଧିକାଂଶ ଲୋକଙ୍କୁ ଜାଣେ । ସେ ବଂଧୁମାନଙ୍କ ପାଖକୁ ଲାଗିଗଲା । ଫିସ୍‌ଫିସ୍ କରି କହିଲା, 'ଏମାନେ କିଏ ? ଏଠି ଏତେ ଲୋକ କଅଣ ?' ବଂଧୁ ସେମିତି ଫିସ୍‌ଫିସ୍ କରି କହିଲେ, 'ଏମାନେ ଜରାସନ୍ଧଙ୍କର ଲୋକ, ତାଙ୍କ ସିପେହୀ । ସେମାନେ ଲୋକଙ୍କ ସାଙ୍ଗରେ ମିଶିମାଶି କରି ଅଛନ୍ତି । ଏମାନେ ସବୁବେଳେ ଆମ ଶିବିରକୁ ଯାଆନ୍ତି । ତୁ ଏଆଡ଼େ ସେଆଡେ ବେଶି ଚାହାଁ ନା କି ବେଶି କାହାକୁ ପଚରା ପଚରି କରନା ।'

ଅରିନ୍ଦମ ବଂଧୁମାନଙ୍କ ପାଖରୁ ଦୂରେଇ ଗଲା । ଖାଇବା ପାତ୍ରରୁ ନିଜ ପାତ୍ରକୁ କିଛି କିଛି ଖାଇବାର ନେଇ ଖାଇବାକୁ ଆରମ୍ଭ କଲା । ଖାଦ୍ୟ ବେଶ ସୁସ୍ୱାଦୁ । ତା'ଛଡ଼ା ବିଭିନ୍ନ ପ୍ରକାରର ଖାଦ୍ୟ । ମଥୁରାରେ ଏସବୁ ପାଇବା ସହଜ ନୁହେଁ । ନାଁ, ଜରାସନ୍ଧଙ୍କର ସବୁ ଆଡକୁ ନଜର ଅଛି । ସେ ଆରମ୍ଭରୁ କଂସକୁ ଉଚ୍ଚ ଆସନରେ ବସେଇ ରଖିବାକୁ ଚାହାନ୍ତି । ଯେପରି ମଥୁରାର ଲୋକମାନେ ତାକୁ ଅନ୍ୟ ଆଖିରେ ଦେଖିବେ । କେବଳ ମଥୁରାର ଯୁବରାଜ ଓ ଉଗ୍ରସେନଙ୍କ ପୁଅ ଭାବରେ ନୁହେଁ ।

ହଁ, ଭାନୁପ୍ରକାଶ ଠିକ୍ କହୁଥିଲେ । ଏ ଗୋଟାଏ ବିରାଟ ଯୋଜନାର କାମ । ବହୁତ ଆଗକୁ ଜରାସନ୍ଧ ଚିନ୍ତା କରୁଛନ୍ତି । ସମଗ୍ର ଆର୍ଯ୍ୟାବର୍ତ୍ତରେ ବହୁ ରାଜା, ବହୁ ମହା ଜନପଦ, ବହୁ ଗୋଷ୍ଠୀ ଓ ବଂଶ, ସମସ୍ତେ ଯେ ଆର୍ଯ୍ୟ ତା ନୁହେଁ । ଆର୍ଯ୍ୟମାନଙ୍କର ବିଭିନ୍ନ ରାଜ୍ୟକୁ ବିସ୍ତାର ହେଉଛି । ନୂଆ ନୂଆ ଜଙ୍ଗଲ ସଫା କରି ନୂଆ ନୂଆ ଆର୍ଯ୍ୟ ବସତିମାନ ଗଢ଼ି ଉଠିଲାଣି । ତା'ଛଡ଼ା ଚାରି ପାଖରେ ଅସଂଖ୍ୟ ଅନ୍ୟ ଲୋକଙ୍କର ବସତି, ଯେଉଁମାନେ ଆର୍ଯ୍ୟ ନୁହନ୍ତି, କିନ୍ତୁ ଏମାନେ ଆର୍ଯ୍ୟମାନଙ୍କ ସହିତ ମିଶିଯିବାକୁ ଆରମ୍ଭ କଲେଣି । ନୂଆ ନୂଆ ପ୍ରକାର ଗୋଷ୍ଠୀ ତିଆରି ହେଲେଣି । ନୂଆ ନୂଆ ପ୍ରକାର ସ୍ୱାର୍ଥ । ସେ ଶୁଣିଛି ଜରାସନ୍ଧ ସଂପୂର୍ଣ୍ଣ ଆର୍ଯ୍ୟ ନୁହନ୍ତି, କଂସ ବି ନୁହେଁ । ସେହିଯୋଗୁ ହୁଏତ ଜରାସନ୍ଧଙ୍କର କଂସ ପ୍ରତି ଆଗ୍ରହ, ଓ ସେହିଯୋଗୁ ହୁଏତ ଉଭୟଙ୍କର ସଂପର୍କ । ସେ ଜାଣେ ଜରାସନ୍ଧଙ୍କର ଆର୍ଯ୍ୟରାଜାମାନଙ୍କ ପ୍ରତି ପ୍ରଚଣ୍ଡ ବିଦ୍ୱେଷ । ଲୋକେ କହନ୍ତି ସେ ବହୁ ଛୋଟ ଛୋଟ ଆର୍ଯ୍ୟରାଜାମାନଙ୍କୁ ଆଣି ବନ୍ଦୀ କରି ରଖିଛନ୍ତି, ମୁଣ୍ଡକାଟ କରିବେ । ଭାନୁପ୍ରକାଶ ଏହି କଥା ବାରମ୍ବାର କହୁଥିଲେ । ଜରାସନ୍ଧ ଏବେ କଅଣ କରୁଛି ବା କରିବାକୁ ଚାହୁଁଛି ସେ ବଡ଼ କଥା ନୁହେଁ, ସେ

ଭବିଷ୍ୟତରେ କଅଣ କରିବାକୁ ଚାହେଁ ସେଇଟାହିଁ ବଡ଼ କଥା । ସବୁ ଅତ୍ୟାଚାରୀ ଶାସକ ସେହିପରି ଯୋଜନା କରନ୍ତି । ନିଜର ଅସଲ ଉଦ୍ଦେଶ୍ୟକୁ ନାନା ଭାବରେ ଘୋଡ଼େଇ ରଖିବାକୁ ଚାହାନ୍ତି । ଜରାସନ୍ଧର ଅସଲ ଉଦ୍ଦେଶ୍ୟ ଦେଖ, କଅଣ ସେ କରିବାକୁ ଚାହୁଁଛି ସେ କଥା ଭାବ, ଆଉ ସବୁବେଳେ ସାବଧାନ ରୁହ, ଆଉ ଯଦି ପାରିବ ପ୍ରତିବାଦ କର ।

ଅରିନ୍ଦମ ଲକ୍ଷ୍ୟ କଲା ସାଦାସିଧା ଭାବରେ ବେଶ କିଛି ଜରାସନ୍ଧଙ୍କର ଲୋକ ତାଙ୍କ ସାଙ୍ଗରେ ମିଶିକରି ରହିଛନ୍ତି । ସିପେହୀ ବି ହୋଇପାରନ୍ତି । କିନ୍ତୁ ଗୋଳମାଳ କିଛି ନାହିଁ, ଅନ୍ୟମାନଙ୍କ ସାଙ୍ଗରେ ସହଜ ଭାବରେ, ଚିହ୍ନାପରିଚ ଲୋକ ପରି ମିଶାମିଶି କରୁଛନ୍ତି । କଥାବାର୍ତ୍ତା ବି କରୁଛନ୍ତି । ମଥୁରା ଲୋକମାନଙ୍କ ଉପରେ ସେମାନେ ସାବଧାନରେ ନଜର ରଖିଛନ୍ତି । ଏକଥା ବୁଝିହେଉଛି । ଆଉ କଅଣ ଉଦ୍ଦେଶ୍ୟ ଥାଇପାରେ, ଅରିନ୍ଦମ ଭାବିଲା । କଂସ ବିଷୟରେ ଲୋକେ କଅଣ କହୁଛନ୍ତି, ସେ ଜରାସନ୍ଧଙ୍କର ଜୋଇଁ ହେବା ଲୋକଙ୍କର ପସନ୍ଦ କି ନୁହେଁ , ମୋଟ କଥା କଂସର ସପକ୍ଷରେ ବା ବିପକ୍ଷରେ ସେମାନେ ନିଶ୍ଚୟ ଖବର ନେଉଥିବେ । ଖାଲି ସେତିକି, ଅରିନ୍ଦମ ପୁଣି ଭାବିବାକୁ ଚେଷ୍ଟା କଲା, ନାଁ, ଏ ନିଶ୍ଚୟ ଖାଲି କଂସ ନୁହେଁ । କଂସ ପାଇଁ ଏ ସବୁ ଆୟୋଜନ ? ଏତେ ଆଡମ୍ବର ? ଏତେ ଲୋକ ଲୁଚିଛପି ଘୂରି ବୁଲୁଛନ୍ତି ? ନାଁ, ଏସବୁ ଜରାସନ୍ଧର ନିଜ ପାଇଁ, ନିଜେ କେତେ ବଡ଼ କେତେ ମହାନ୍, ଲୋକେ ତା ଜାଣନ୍ତୁ ସେଇ ମତଲବ । ତା ଛଡ଼ା, ଆଉ ଗୋଟାଏ କଥା ତା ମନରେ ବାରମ୍ବାର ଧକ୍କା ଦେଉଥାଏ । ଏ ଭାନୁପ୍ରକାଶଙ୍କ ଭୟ । ସବୁ ଅତ୍ୟାଚାରୀ ମନ ଭିତରେ ଲୁଚିଛପି ଅତ୍ୟାଚାରର ପ୍ରତିବାଦ କରୁଥିବା ଲୋକଙ୍କ ପ୍ରତି ଯେଉଁ ଭୟ ଥାଏ, ସେହି ଭୟ । ଏ ଭୟକୁ ଧରି ହୁଏନା, ମୁହାଁମୁହିଁ ମୁକାବିଲା କରି ହୁଏନା, ମେଘ ଘୋଡ଼େଇଲା ପରି ଏ ସବୁବେଳେ ମନକୁ ଘୋଡ଼େଇ କରି ରଖିଥାଏ । ଏଇ କ'ଣ ହେଲାକି ?- ଏଇ ଭୟ । ସେହି ଯୋଗୁ ଏତେ ଏତେ ସିପେହୀ, ଏତେ ଏତେ ସତର୍କତା । ସେହିଯୋଗୁ ଜରାସନ୍ଧଙ୍କର ବଡ଼ପଣିଆ ସାଙ୍ଗରେ ଏସବୁ ସତର୍କତା ଓ ନିଷ୍ଠୁରତା ମିଶି ଯାଇଛି । ଅରିନ୍ଦମ ଏପାଖ ସେପାଖ ହେଲା ନାହିଁ । କି କୁଆଡ଼େ ଗଲା ନାହିଁ । ଚୁପ୍‌ଚାପ୍ ଗୋଟିଏ ଜାଗାରେ ଛିଡ଼ାହୋଇ ଖାଇଲା ଓ ଚାରିପାଖକୁ ଲକ୍ଷ୍ୟ କଲା । ବିଶେଷ କରି ତାର ଦୁଇ ବଂଧୁ କୁଆଡ଼େ ଗଲେ ସେ ଭାବିଲା ।

ସମସ୍ତେ ବେଶ୍ ଆନନ୍ଦରେ ଖାଉଛନ୍ତି । ଖୁସିବାସିରେ ସମସ୍ତେ ଗପସପ କରୁଛନ୍ତି। ମନେ ହେଉଛି ସମସ୍ତେ କଂସକୁ ନୂଆ ରାଜା ଭାବରେ ପୂରାପୂରି ମାନି ନେଲେଣି । ଆଉ ଜରାସନ୍ଧଙ୍କ ସହିତ ସଂପର୍କ ବିଷୟରେ ସମସ୍ତେ ବି ଖୁସି । ଜରାସନ୍ଧ

ମଥୁରା ପଛରେ ଆସି ଛିଡ଼ା ହେଲେ, ମଥୁରା ଆଉ ଏକା ନୁହେଁ, ଏ କଥା ସମସ୍ତଙ୍କର ପସନ୍ଦ ମନେ ହେଉଛି । ଭବିଷ୍ୟତ କଥା କିଏ ବା ଭାବେ, ବର୍ତ୍ତମାନ ଯାହା ଘଟୁଛି ସେଥିରେ ସମସ୍ତେ ଖୁସି । ଅରିନ୍ଦମ ଦେଖିଲା ତାର ଦି ବଂଧୁ ତା ପାଖରୁ କିଛି ଦୂରକୁ ଚାଲି ଯାଇଛନ୍ତି । ଆଶ୍ଚର୍ଯ୍ୟ, ସେମାନେ ତାକୁ କଥାବାର୍ତ୍ତା କରିବାକୁ ମନା କଲେ, କିନ୍ତୁ ସେମାନେ ତ ବେଶ କଥାବାର୍ତ୍ତା କରୁଛନ୍ତି ! ନାଁ । ସେ ଭଲ ଭାବରେ ଲକ୍ଷ୍ୟ କଲା । ନାଁ, ସେମାନେ କଥାବାର୍ତ୍ତା କରୁନାହାନ୍ତି । ଆସ୍ତେ ଆସ୍ତେ ଏପାଖ ସେପାଖ ହେଉଛନ୍ତି । ଯାହା ପାଖ ଦେଇ ଯାଉଛନ୍ତି ତାକୁ ଚୁପ୍‌ଚାପ ଦି'ପଦ କଅଣ କହି ଦେଇ ଯାଉଛନ୍ତି । ନାଁ, ସମସ୍ତଙ୍କୁ ନୁହେଁ । କିଛି ଲୋକଙ୍କୁ, ମଥୁରାର ଲୋକଙ୍କୁ ନୁହେଁ, ସେଇ ବାହାରର ଲୋକଙ୍କୁ, ସିପେହୀ ବୋଧହୁଏ । ବାହାର ଲୋକ, ସମସ୍ତେ ବି ନୁହେଁ । ସେମାନେ ଯେମିତି ବାଛି ବାଛି କିଛି ଲୋକଙ୍କୁ କଅଣ ଇଙ୍ଗିତରେ କହି ଦେଇ ଯାଉଛନ୍ତି । ଅରିନ୍ଦମର ଏ ନୂଆ ପ୍ରକାରର ଅନୁଭୂତି । ତା'ର ଯେ ଧାରଣା ଥିଲା ଆଉ ସେ ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲା ଯେ, ମଥୁରା ଶିବିରରୁ ଭାନୁପ୍ରକାଶ ଆଉ ତାଙ୍କ ଲୋକେ ତାକୁ ଏକା କାହିଁକି ବାଛିଲେ, ସେ ଭୁଲ୍ । ମଥୁରା ଶିବିରରେ ଭାନୁପ୍ରକାଶଙ୍କର ଅନ୍ୟ ଲୋକ ଅଛନ୍ତି । ତା'ର ଦି ବଂଧୁ ତ ନିଶ୍ଚୟ ଭାନୁପ୍ରକାଶଙ୍କ ଲୋକ ବା ଭାନୁପ୍ରକାଶଙ୍କ ସହିତ ତାଙ୍କର ନିଶ୍ଚୟ ସଂପର୍କ ରହିଛି ଏଥିରେ ସନ୍ଦେହ ନାହିଁ । ଖାଲି ସେତିକି ନୁହେଁ । ବାହାରେ ମଧ ଭାନୁପ୍ରକାଶଙ୍କର ଯଥେଷ୍ଟ ଲୋକ ରହିଛନ୍ତି । ଚେହେରାରୁ, ବ୍ୟବହାରରୁ ବୁଝି ହେବ ନାହିଁ, କିନ୍ତୁ ଭିତରେ ଭିତରେ ସେମାନେ ଅନ୍ୟ ପ୍ରକାର । ତା' ମନ ସହଜ ହୋଇ ଆସିଲା । ମଝିରେ ମଝିରେ ସେ ଯେପରି ଆଶ୍ଚର୍ଯ୍ୟ ହେଉଥିଲା ଯେ କିଏ ତାକୁ ଯେମିତି ଶୂନ୍ୟରୁ କଥା କହୁଛି, ଉପଦେଶ ଦେଉଛି, ଏଇମାନେ । ଏଇମାନେ ହିଁ ସେ ବୁଝି ନ ପାରିବା ଜାଗାରୁ ତା ଉପରେ ନଜର ରଖିଥିଲେ, କଅଣ କରିବାକୁ ହେବ ନ କରିବାକୁ ହେବ କହୁଥିଲେ । ଭାନୁପ୍ରକାଶଙ୍କ ପ୍ରତି ତା ସମ୍ମାନ ବଢ଼ିଗଲା । ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା ତାଙ୍କର ନିଜର କୌଣସି ସ୍ୱାର୍ଥ ନାହିଁ । ସେ ରାଜ୍ୟ ଜିଣିବେ ନାହିଁ, କି ରାଜତ୍ୱ ପାଇବେ ନାହିଁ, ବା ଅନ୍ୟ କୌଣସି ସୁବିଧା ସୁଯୋଗ ପାଇବେ ତା ନୁହେଁ । ଅନ୍ତତଃ ସେ ଜାଣିବାରେ କିଛି ନାହିଁ । ତା ହେଲେ ତାଙ୍କର ଜରାସନ୍ଧଙ୍କ ବିରୁଦ୍ଧରେ, କଂସ ବିରୁଦ୍ଧରେ ଏ ଆୟୋଜନ କାହିଁକି ? ଏ ଆୟୋଜନ ବୁଲିଯିବା ପରି ବା ଖାଇବା ପରି ଆୟୋଜନ ନୁହେଁ । ନିଜର ଜୀବନ ପ୍ରତି ବହୁତ ବିପଦ । ମୁଣ୍ଡରୁ ପାଣି ଛଡ଼େଇ ସେ ଲାଗିଛନ୍ତି, ତାଙ୍କ ସାଙ୍ଗରେ ଆହୁରି ବହୁତ ଲୋକ । କାହିଁକି ? ଲାଭ କଅଣ ! ଏମାନଙ୍କର କାମରେ କଅଣ ଜରାସନ୍ଧଙ୍କର ବା କଂସର ଅତ୍ୟାଚାର ବନ୍ଦ ହୋଇ ପାରିବ ?


Digitized by srujanika@gmail.com

ହିଁ ବନ୍ଦ ହୋଇପାରିବ – ତା ମନ ଭିତରୁ ଯେପରି କିଏ କହିଲା । ଅତ୍ୟାଚାରୀ ଭୟ ପାଇଯିବ, ସେ ବି ଭାବିବ ତା ଉପରେ କେହି ନଜର ରଖିଛି । ସେ ସାବଧାନ ହବ । ବଡ଼ କଥା, କିଛି ଲୋକଙ୍କ ମନରେ ଅତ୍ୟାଚାର ଶେଷ କଥା ନୁହେଁ, ଅତ୍ୟାଚାରକୁ ଅତ୍ୟାଚାରୀକୁ ପ୍ରତିବାଦ କରି ହେବ, ଏ ବିଶ୍ୱାସ ଆସିବ । ଏ କମ କଥା ନୁହେଁ । ମଣିଷ ବଂଚିବା ପାଇଁ ଯେଉଁ ଦମ୍ଭ, ସାହସ ଦରକାର, ଏ ସେହି ଦମ୍ଭ, ସାହସ । ଆମେ ନଇଁଯିବୁ ନାହିଁ, ଆମେ ନିଜକୁ ନଇଁବାକୁ ଦେବୁ ନାହିଁ, ଆମେ ନ ହେଲେ ବି ଆମ ପରେ ଆଉ ଯିଏ ଆସିବ, ସେ ଜିତିବ । ଆମେ ତା ପାଇଁ ରାସ୍ତା ସଫା କରି ରଖୁଛୁ ।

ଅରିନ୍ଦମର ଚିନ୍ତା ସହଜ ହୋଇ ଆସିଲା । ଏ ଗୋଟାଏ ନିରବଚ୍ଛିନ୍ନ ସଂଗ୍ରାମ । ଅତ୍ୟାଚାର ବିରୁଦ୍ଧରେ, ଅତ୍ୟାଚାରୀ ବିରୁଦ୍ଧରେ, ଯେଉଁମାନେ ଲୋକମାନଙ୍କୁ ମାଡି ମକଚି ଦଳି ନିଜ ପାଇଁ ସବୁ ସୁବିଧା ନେବାକୁ ଚାହୁଁଛନ୍ତି ସେମାନଙ୍କ ବିରୁଦ୍ଧରେ । ଆଜି ମଗଧରେ ଜରାସନ୍ଧ, କାଲି ମଥୁରାରେ କଂସ, ଆର୍ଯ୍ୟାବର୍ତ୍ତରେ ଆଉ ଯେତେ ଯେତେ ରାଜ୍ୟ ଅଛି । ଅଙ୍ଗ, କାଶୀ, କୋଶଳ, ଚେଦୀ, କୁରୁ, ପାଞ୍ଚାଳ, ମତ୍ସ୍ୟ, ସୁରସେନ, ଅବନ୍ତୀ, ଗାନ୍ଧାର, ସବୁଆଡ଼େ ସେଇ ଅବସ୍ଥା । ଧନ ହେଲେ ଆହୁରି ଧନ ଦରକାର, ସୁବିଧା ସୁଯୋଗ ହେଲେ ଆହୁରି ସୁବିଧା ସୁଯୋଗ ଦରକାର, କ୍ଷମତା ହେଲେ ଆହୁରି କ୍ଷମତା ଦରକାର । କିଛି ଲୋକ ସବୁ ସୁବିଧା ନେବେ । ସେହିମାନେ ରାଜା, ଏକଛତ୍ର ଅଧିପତି । ସାଧାରଣ ଲୋକର କଥାର ମୂଲ୍ୟ ନାହିଁ, ତା ଜୀବନର ମୂଲ୍ୟ ନାହିଁ । ଏ ଅବସ୍ଥା ବଦଳିଯିବ, ବାପା କହୁଥିଲେ, ସେହି ଶକ୍ତିକୁ ଅପେକ୍ଷା କର । ହଁ, ଆମେ ବି ସେହି ଶକ୍ତିକୁ ଅପେକ୍ଷା କରିଛୁ, ଭାନୁପ୍ରକାଶ କହୁଥିଲେ । କିନ୍ତୁ ଖାଲି ଅପେକ୍ଷା କରିବା ଯଥେଷ୍ଟ ନୁହେଁ, କାମ କରିବାକୁ ହେବ । ଆମେ ସେହି କାମ କରୁଛୁ । ଏ ଶକ୍ତି କୌଣସି ବାହାରର ଶକ୍ତି ନୁହେଁ, ଆମର ଶକ୍ତି । ଆମରି ନିଜର ଶକ୍ତିରେ ହିଁ ଅତ୍ୟାଚାରୀର ଶେଷ ହେବ ।

ଦୁଇ ବଂଧୁ ତା ପାଖକୁ ଫେରି ଆସୁଛନ୍ତି । ସେମାନଙ୍କ ସହିତ ତାର ଅନେକ ଦିନର ପରିଚୟ । କିନ୍ତୁ ଆଜି ଯେପରି ସେ ସେମାନଙ୍କୁ ନୂଆ ନୂଆ ଦେଖୁଛି । ମନେ ହେଉଛି ସେମାନେ ଅନେକ କଥା ଜାଣନ୍ତି ଯାହା ସେ ଜାଣେନା । ସେମାନେ ସତର୍କ, କିନ୍ତୁ ଯାହା କରିବା କଥା ବେଶ୍ ସହଜରେ କରି ଯାଉଛନ୍ତି । ସେମାନେ ପାଖକୁ ଲାଗି ଆସିଲେ । ଅରିନ୍ଦମର ଖାଇବା ସରିଯାଇ ଥିଲା, ସେମାନଙ୍କର ବି । ଦୁଇ ବଂଧୁ ଅରିନ୍ଦମର ପାଖକୁ ଲାଗି ଛିଡ଼ା ହେଲେ । ଉଭୟଙ୍କର ମୁହଁ ଉଜ୍ଜ୍ୱଳ, ହସହସ । ଜଣେ ବଂଧୁ ପଚାରିଲେ, 'ଅରିନ୍ଦମ, କେମିତି ଲାଗୁଛି ?' 'ବେଶ୍ ଭଲ', ଅରିନ୍ଦମ କହିଲା,


Digitized by srujanika@gmail.com

'ରାଜ ଦର୍ଶନ ହେଲା । ଚମତ୍କାର ଖାଇବା ହେଲା । ରାଜକୀୟ ଖାଦ୍ୟ । ଆଉ କଅଣ ଦରକାର ?' ବଂଧୁ ସେହିପରି ଲଘୁ ଭାବରେ କହିଲେ, 'ଆଉ ଯାହା ହେବ ସେ ଏଠି ନୁହେଁ, ପରେ । ହେଇ ସେ ପାଖୁ ଅନା । ତୁମ ଡାହାଣ ପାଖକୁ ଜରାସନ୍ଧଙ୍କର କୋଠାବାଡି ସବୁ । ସେ ଆଡକୁ ଜରାସନ୍ଧଙ୍କର ପରିବାର ଛଡ଼ା ଅନ୍ୟ କେହି ଯିବା ନିଷିଦ୍ଧ। ସେଠି ଦିନ ରାତି ପ୍ରହରୀ ଜଗି ରହିଛନ୍ତି । ସାଧାରଣ ସିପେହୀ ନୁହେଁ, ଜରାସନ୍ଧଙ୍କର ରାକ୍ଷସ ସିପେହୀ ସବୁ । ସେହି କୋଠାସବୁ ଭିତରେ ସବୁଠୁ ଉଚ୍ଚା କୋଠା ଦେଖ, ଯାହା ଉପରେ ଅର୍ଦ୍ଧ ଚନ୍ଦ୍ରର ଶକୁନ ଆଉ ବାଘ ଲମ୍ଫ ଦେବାର ଚିହ୍ନ ଥିବା ପତକା ଉଡୁଛି । ସେ ଜରାସନ୍ଧଙ୍କର ନିଜ ଘର । ସେଠିକି ଜରାସନ୍ଧଙ୍କ ଛଡ଼ା ଆଉ କେହି ଯାଆନ୍ତି ନାହିଁ, ତାଙ୍କର ସ୍ତ୍ରୀମାନେ, ପିଲାପିଲି ମାନେ, କେହି ନୁହନ୍ତି । ସେ ଘରଟାବି ଅଦ୍ଭୁତ ଘର । ସେଠୁ ସବୁବେଳେ ଧୂଆଁ ବାହାରୁଥାଏ । ମଝିରେ ମଝିରେ ରହସ୍ୟମୟ ଶବ୍ଦ ସବୁ ଶୁଭେ । କେତେବେଳେ ପିଲା କାନ୍ଦିଲା ପରି, କେତେବେଳେ ସ୍ତ୍ରୀଲୋକ ହୋ ହୋ ହସିଲା ପରି, କେତେବେଳେ ବାଘ ଗର୍ଜନ ପରି ତ କେତେବେଳେ ରାତି ଅଧିଆ ପିଚାଶୁଣୀ ଡାକ ପରି । ଲୋକେ କହନ୍ତି ସେ ଘର ଜରାସନ୍ଧଙ୍କର ତନ୍ତ୍ରସାଧନା ଘର, ଆଉ ସେ ଘରୁ ଭୂଇଁ ତଳେ ତଳେ ହେଇ ସେ ପାଖ ମହାକାଳଙ୍କ ମନ୍ଦିରକୁ ସୁଡଙ୍ଗ ଅଛି । ସେ ସୁଡ଼ଙ୍ଗେ ସୁଡ଼ଙ୍ଗେ ଜରାସନ୍ଧ ଅଦ୍ଭୁତ ଲଙ୍ଗଳା ହୋଇ ଯାଇ ମହାକାଳଙ୍କ ପୂଜା କରନ୍ତି ।' ବଂଧୁ ଚୁପ କଲେ । ଅରିନ୍ଦମର ଆଖି ଢିମା ଢିମା ହୋଇଗଲାଣି, ମୁଣ୍ଡ ଘୂରୁଛି । କହିଲା, 'ତୁମେ ଏତେ କଥା କେମିତି ଜାଣିଲ ? ଏସବୁ ସତ, ନାଁ ଫାନ୍ଦି କରି କହୁଛ ?'

ବଂଧୁ ହସିଲେ କହିଲେ, 'ଫନ୍ଦାଫନ୍ଦି କିଛି ନାହିଁ । ଆହୁରି ଅଛି ଶୁଣ । ମହାକାଳଙ୍କ ପାଖରେ ଗୋଟିଏ ନିର୍ଦ୍ଦିଷ୍ଟ ତିଥିରେ ବଳି ଦିଆଯାଏ । ପଶୁପକ୍ଷୀ ବଳି ନୁହେଁ, ମଣିଷ ବଳି । ନରବଳି । ସେ ଦିନଟା ଭୟଙ୍କର । ସେ ଦିନ ଜରାସନ୍ଧ କାହାକୁ ଦେଖିବେ ନାହିଁ କି ତାଙ୍କୁ କେହି ଦେଖିବେନି । ଶୁଣାଯାଏ ସେଦିନ ଜରାସନ୍ଧଙ୍କର ଚେହେରା ବଦଳି ଯାଏ । ପୁଣି ସେ ବଳି ଯେ ସେ ଲୋକ ହେଲେ ହବନି । ରାଜା, ରାଜପୁତ୍ର ବା ରାଜବଂଶୀୟ କେହି ହେବା ଦରକାର । ସାଧାରଣ ଲୋକର ରକ୍ତ ଅପବିତ୍ର, ରାଜବଂଶୀୟ ଲୋକର ରକ୍ତ ଏକମାତ୍ର ପବିତ୍ର । ବଳି ପରେ ଜରାସନ୍ଧ ନିଜେ ରକ୍ତ ପିଅନ୍ତି । ସମୁଦାୟ ରକ୍ତ । ରକ୍ତ ନଷ୍ଟ ହେବ ନି ।' ଅରିନ୍ଦମର ମନେ ହେଲା ସେ ତଳେ ପଡିଯିବ କି? ସେ ବଂଧୁଙ୍କ କାନ୍ଧରେ ହାତ ଦେଇ ନିଜକୁ ସ୍ଥିର କଲା । ତଥାପି ମୁଣ୍ଡଟା ଘୂରଘୂର କରୁଛି । ବାପା ମହାକାଳଙ୍କୁ ପୂଜା କରିବା ସେ ଦେଖିଛି । ବାପା ବହୁତ ସମୟ ପୂଜା କରନ୍ତି । ସେ ପୂଜା ମନ୍ତ୍ରରେ ହୁଏ, ଫୁଲ

ଚନ୍ଦନରେ ହୁଏ, ସେ ପୂଜାର ସୁଗନ୍ଧ, ଆନନ୍ଦ, ଭକ୍ତି ଅପୂର୍ବ । ଏ ତ ରାକ୍ଷସ ପୂଜା ! ଦେବତାଙ୍କୁ ଅପମାନ !

ସେ ସେଇକଥା କହିଲା । ସମସ୍ତଙ୍କର ଖିଆପିଆ ସରିଗଲାଣି । ସମସ୍ତେ ଆସ୍ତେ ଆସ୍ତେ ଖାଇବା ତମ୍ବୁରୁ ବାହାରି ଆସୁଛନ୍ତି । ଆଗ ପରି ମୋଟାମୋଟି ଧାଡ଼ି କରି । ପାଖେ ପାଖେ ଆଗର ସେଇ ସିପେହୀମାନେ । ରାସ୍ତା ଦେଖେଇ ଚାଲିଛନ୍ତି । ସେମାନଙ୍କୁ ଆଉ ଥରେ ଜରାସନ୍ଧ ଓ କଂସ ବସିଥିବା ତମ୍ବୁକୁ ଯିବାକୁ ହେବ । ଆଉ ଥରେ ନତମସ୍ତକ ହୋଇ ମଣିମୁକ୍ତାର ଅାଂଜୁଳା ସେମାନଙ୍କର ପାଦ ତଳେ ଅଜାଡ଼ି ଦେବାକୁ ହେବ । ସେମାନଙ୍କର ଆନୁଗତ୍ୟର ଚିହ୍ନ । କଂସ ପ୍ରତି, ଜରାସନ୍ଧଙ୍କ ପ୍ରତି । ମଥୁରାରେ ନୂଆ ଯୁଗ ଆରମ୍ଭ ହେଲା । ମଥୁରାର ଲୋକେ ଏକଥା ବୁଝନ୍ତୁ । ଅରିନ୍ଦମ ବଂଧୁଙ୍କୁ କହିଲା, 'ଗୋଟାଏ କଥା ମତେ କୁହ । ମହାକାଳ ଦେବତା, ମହାକାଳଙ୍କୁ ଜରାସନ୍ଧ ଏମିତି ଅପମାନ କରନ୍ତି କାହିଁକି ? ଏ କି ପୂଜା ?'

ଯେଉଁ ବଂଧୁ ଜରାସନ୍ଧଙ୍କର ପୂଜା କଥା କହୁଥିଲେ, ସେ କିଛି କହିଲେ ନାହିଁ । ଅନ୍ୟ ବଂଧୁ କହିଲେ, 'ଅରିନ୍ଦମ, ଏ ବଡ଼ ଗହନ କଥା । ମଣିଷ ଦେବତାମାନଙ୍କ ପୂଜା କରେ କାହିଁକି ? ଭୟରେ ନା ଭକ୍ତିରେ ? ଦେବତାମାନେ ମଣିଷକୁ କିଛି ଦିଅନ୍ତି କି ? ଏ ପ୍ରଶ୍ନ ମୁନି ଋଷିମାନେ ବାରମ୍ବାର ପଚାରିଛନ୍ତି ଆଉ ଉତ୍ତର ଖୋଜିଛନ୍ତି । ଦେବତାମାନେ ଯଦି ମଣିଷ କଥା ଶୁଣନ୍ତେ, ମଣିଷର ଭଲ ମନ୍ଦ ବୁଝନ୍ତେ, ତେବେ ଜୀବନରେ ଏତେ ଦୁଃଖ କାହିଁକି ? ସବୁଆଡ଼େ ଏତେ ଖରାପ ଲୋକ କାହିଁକି ? ଏ ସବୁ ତ ରହନ୍ତା ନାହିଁ । ଆମେ ସବୁବେଳେ ଦେବତାମାନଙ୍କୁ ଆମକୁ ରକ୍ଷା କର, ରକ୍ଷା କର ବୋଲି କହୁଚେ କାହିଁକି ?'

ବଂଧୁ ଚୁପ୍ କଲେ, ଅନ୍ୟ ବଂଧୁ ଜଣଙ୍କ ଯୋଗ ଦେଲେ, କହିଲେ, 'ଅରିନ୍ଦମ, ଆମେ ଏ ବିଷୟରେ, କଅଣ ବା ଜାଣୁ । ଆମର ବିଦ୍ୟା ବୁଦ୍ଧି ବା କେତେ । ମୁଁ ଯାହା ଶୁଣିଛି, କହୁଛି । ଆମ ମନ ବାହାରେ କିଛି ଅଛି କି ? ସବୁଦିନେ ସୂର୍ଯ୍ୟ ଉଠୁଛି, ବୁଡୁଛି, ବର୍ଷା ହେଉଛି, ପବନ ଦେଉଛି, ଦିନ ରାତି ହେଉଛି, ଆକାଶ ନୀଳ । ଏସବୁ କଅଣ ଆମ ପାଇଁ ? ଆମ ଆଗରୁ ତ ଏସବୁ ହେଉଥିଲା । ଆମ ପରେ ତ ହେବ । ତା'ହେଲେ ଆମେ ଆମର ବୋଲି କହିବା କାହିଁକି ? ଋଷିମାନେ ସେଇକଥା କହୁଚନ୍ତି । ଆମ ମନ ବାହାରେ ଯେମିତି ପୂଜା କରିବା ସେମିତି ଦେବତା । ଜରାସନ୍ଧ ହାଣ କାଟ କରୁଛି, ନରବଳି ଦେଉଛି, କାଲି କଂସ କରିବ । ଏ କଅଣ ଦେବତାମାନଙ୍କର ଇଚ୍ଛା ? ତା ହେଲେ ଦେବତାମାନେ ଜରାସନ୍ଧ ଓ କଂସ ପରି ସମାନ ଅତ୍ୟାଚାରୀ, ସମାନ ରକ୍ତପିପାସୁ । ଭାବି ଦେଖ ।'


Digitized by srujanika@gmail.com

ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ଏ ଗୂଢ଼ ତତ୍ତ୍ୱ । ବାପା ବି ମଝିରେ ମଝିରେ ଏହିପରି କଥା କହନ୍ତି । ଆମେ ସୃଷ୍ଟି ପାଇଁ ନା ଆମ ପାଇଁ ସୃଷ୍ଟି । ଆମେ ଯେମିତି ଚାହୁଁ ସୃଷ୍ଟିକି ସେମିତି ବଦଳେଇ ଦେଇ ପାରିବାକି ? ନାଁ ଏସବୁ ଭୁଲ୍, ସୃଷ୍ଟି ଯେମିତି ସେମିତି । ଆମ ସାଙ୍ଗରେ ସଂପର୍କ ନାହିଁ । ଆମେ ଖାଲି ନିଜ ଢଙ୍ଗରେ ଭାବୁଛେ ଏଇଟା ସେଇଟା । ତେବେ ଆମର ପୂଜା ଅର୍ଚ୍ଚନା, ଦେବତାର ଚିନ୍ତା, ଦେବତାରେ ବିଶ୍ୱାସ, ଏସବୁ କଅଣ ? ଥରେ ସେ ବାପାଙ୍କୁ ନିଜର ଏ ସନ୍ଦେହ କଥା କହିଥିଲା । ବାପା କହିଥିଲେ ଏସବୁ ଠିକ୍ । ତୁମର ବିଶ୍ୱାସ ଯେମିତି ଠିକ୍, ତୁମର ସନ୍ଦେହ ବି ସେମିତି ଠିକ୍, ଆଉ ଦେବତା ବି ସେମିତି ଠିକ୍ । ମଣିଷର ମନର ବାହାରେ ଦେବତା ଅଛନ୍ତି କି ? ଯେ ଯେମିତି ଭାବିବ ସେମିତି ପାଇବ । ଜରାସନ୍ଧଙ୍କ ନରବଳି କଥା ଶୁଣୁ ଶୁଣୁ ବାପାଙ୍କର କଥାର ଅର୍ଥ ଅରିନ୍ଦମ ଯେପରି ସ୍ପଷ୍ଟ ଭାବରେ ବୁଝି ପାରିଲା । ବାପା ମହାକାଳଙ୍କର ପୂଜା କରନ୍ତି । ଜରାସନ୍ଧ ବି, ବାପା ପୁଷ୍ପ ଚନ୍ଦନରେ ପୂଜା କରନ୍ତି, ଜରାସନ୍ଧ ନରବଳି ଦେଇ । ଏ କଅଣ ଏକା ମହାକାଳ ? ଆଉ ସୃଷ୍ଟି ପଛରେ, ଏ ଆକାଶ, ସୂର୍ଯ୍ୟ, ପବନ ପଛରେ ସେଇ ମହାକାଳ ? ଆଜି ଜରାସନ୍ଧ ଯାହା ଅତ୍ୟାଚାର କରୁଛି, କାଲି କଂସ ଯାହା କରିବ ସେ ସବୁ କଅଣ ମହାକାଳଙ୍କର ଇଚ୍ଛା । ଆଉ ସେଇ ମହାକାଳ କଅଣ ସେସବୁ ବନ୍ଦ କରିବେ ? ବାପା ସବୁବେଳେ ଆଖିରେ ଦେଖିଲା ପରି ଗୋଟିଏ ନୂତନ ଶକ୍ତିର କଥା କହନ୍ତି । ତାଙ୍କର ବିଶ୍ୱାସ ଏପରି ଶକ୍ତି ଦିନେ ଆସିବ, ମଣିଷର ଦୁଃଖ ଦୁର୍ଦ୍ଦଶାର ଶେଷ ହେବ । ଏ କି ଶକ୍ତି ? ଏ କଅଣ ସେଇ ମହାକାଳଙ୍କର ଶକ୍ତି !

ଅରିନ୍ଦମ ବଂଧୁମାନଙ୍କୁ ଚାହିଁଲା, ଅନ୍ୟମାନଙ୍କୁ ଚାହିଁଲା । ସମସ୍ତେ ଚୁପଚାପ କଂସ ଓ ଜରାସନ୍ଧ ବସିଥିବା ଶିବିରକୁ ପୁଣି ଥରେ ଯାଉଛନ୍ତି । ଅରିନ୍ଦମର ମନେ ହେଲା ସମସ୍ତେ ଖାଇପିଇ ବେଶ୍ ତୃପ୍ତ । ଆଖିର ସନ୍ତୋଷରେ, ମୁହଁର ଉଜ୍ଜ୍ୱଳତାରେ ସେସବୁ ବାରି ହୋଇ ପଡୁଛି । ଅରିନ୍ଦମର ବି ମନେ ହେଲା ଆଜି ଯାହା ସେମାନେ ଖାଇଲେ ସେପରି ସେ ଅନେକ ଦିନ ହେଲା ଖାଇନାହିଁ । ତାର ବଂଧୁମାନେ ଯାହା କହନ୍ତୁ ସେମାନେ ବି ସମାନ ଖୁସି । ଫିସଫିସ ହୋଇ ସମସ୍ତେ କଥାବାର୍ତ୍ତା କରୁଛନ୍ତି । ସମସ୍ତଙ୍କ କଥାରେ ଜରାସନ୍ଧଙ୍କର ପ୍ରଶଂସା । କଂସ ଜରାସନ୍ଧଙ୍କର ଦି ଝିଅଙ୍କୁ ବିଭା ହେଲା । ଏ ଭାଗ୍ୟର କଥା । ଜରାସନ୍ଧ କେବଳ କଂସର ଅଭିଭାବକ ହେବ ନାହିଁ, ମଥୁରାର ଅଭିଭାବକ ହେବ, ତାଙ୍କ ସମସ୍ତଙ୍କର ଅଭିଭାବକ ହେବ । ଏ ମଥୁରାର ଭାଗ୍ୟ । ବଂଧୁ ଅରିନ୍ଦମ ଉପରେ ସାମାନ୍ୟ ନଇଁ ପଡିଲେ, କହିଲେ, 'ଅରିନ୍ଦମ, ଶୁଣୁଛ, ଜରାସନ୍ଧଙ୍କର ପ୍ରଶଂସା ଶୁଣୁଛ ।'

'ହଁ, ତ', ଅରିନ୍ଦମ କହିଲା ।

'ଜରାସନ୍ଧ ଏଇଆ ଚାହୁଁଥିଲେ । ତେଣୁ ଆଜି ଆମକୁ ଏଠାକୁ ଅଣାଯାଇଛି । ଏ ଚମତ୍କାର ଖାଇବା ପିଇବା । ଜରାସନ୍ଧଙ୍କର ଇଚ୍ଛା ନୁହେଁ ଆମେ କଂସର ବାହାଘରକୁ ନାପସନ୍ଦ କରୁ ।' ବଂଧୁ କହିଲେ ।

'ନାପସନ୍ଦ ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

'ତା ନୁହେଁ ତ ଆଉ କଅଣ ? ମଥୁରାରେ ଆମେ ଉଚ୍ଚ ଜାତି, ସମଗ୍ର ଆର୍ଯ୍ୟାବର୍ତ୍ତରେ ଆମର ସମ୍ମାନ ଅଛି । ଜରାସନ୍ଧ କଅଣ ? ଆର୍ଯ୍ୟମାନଙ୍କର ହିସାବରେ ତାଙ୍କର ସ୍ଥାନ କେଉଁଠି ? ତାଙ୍କ ଘରେ କୌଣସି ଆର୍ଯ୍ୟ ରାଜା ବଂଧୁ କରିବେ କି ? ଯାହା ବଂଧୁଘର ହେବ, ସେ କେବଳ ଭୟରେ । ତେଣୁ କଂସକୁ ଝିଅମାନଙ୍କୁ ବିଭା ଦେଇ, ମଥୁରାରେ ଉଗ୍ରସେନଙ୍କ ଘରେ ବଂଧୁବାନ୍ଧବ କରି, ସେ ଜାତିକୁ ଉଠିଗଲେ ହେ ।'

ଅରିନ୍ଦମ ଏକଥା ଭାବିନାହିଁ । କିନ୍ତୁ ଏ କଥା ଠିକ୍ । ଜରାସନ୍ଧଙ୍କର ଆଉ ଯାହା ଉଦ୍ଦେଶ୍ୟ ଥାଉ, ଏ ତ ଗୋଟାଏ ବଡ଼ ଲାଭ ।

ହଁ, କଂସ ବି ଜାତିରେ ଉଠିଗଲା । ସେ ଉଗ୍ରସେନଙ୍କର ଜନ୍ମିତ ପୁଅ କି ନୁହେଁ, ସେ ବିଷୟରେ ଲୋକ ମନରେ ଯାହା ସନ୍ଦେହ ଥିଲା, ଯାହାକୁ କହନ୍ତି ଗୋଟାଏ ଝଟକାରେ ସେ ତାକୁ ଫପାଡି ଦେଲା । ସେ ଉଗ୍ରସେନଙ୍କର ଯେଉଁ ପୁଅ ହେଉ ସେହି ହିଁ ରାଜା, ଉଗ୍ରସେନ ନୁହନ୍ତି । ଏ ବି ଜରାସନ୍ଧଙ୍କର ଯୋଜନା, ଏ ବିଷୟରେ କିଛି ସନ୍ଦେହ ନାହିଁ । ଜରାସନ୍ଧ ବେଶ୍ ଚତୁର । ସେଦିନ କଂସ ଯେମିତି ରାଜଗାଦି ମାଡି ବସିଲା, ଏ ତା ନିଜର ବୁଦ୍ଧି ନୁହେଁ, ଜରାସନ୍ଧଙ୍କର ବୁଦ୍ଧି । ବାପା ଅବସ୍ଥା ସମ୍ଭାଳି ନେଲେ, କେତେ କଅଣ ହୋଇଥାନ୍ତା ଭାବି ହେଉନାହିଁ । ସହରଯାକ ସିପେହୀ, ତା ଉପରେ ନଅର ଭିତରେ ଜରାସନ୍ଧଙ୍କର ରାକ୍ଷସ ସିପେହୀ । ସେମାନେ ତ ରକ୍ତମୁହାଁ ହୋଇ ରହିଥିଲେ । ଧ କହିଲେ ମାଡି ବସିଥାନ୍ତେ । ସେମାନଙ୍କ ଆଗରେ ମଥୁରାର ଲୋକ କଅଣ ? କିଛି ନୁହନ୍ତି । ତଥାପି ତା' ସତ୍ତ୍ୱେ ବି ଗୋଳମାଳ ହୋଇଥାନ୍ତା, ବେଶ ଗୋଳମାଳ । ତାର କାରଣ ଉଗ୍ରସେନ ରାଜା ହେଲେ ବି ଠିକ୍ ରାଜା ନୁହନ୍ତି । ମଥୁରାର ଶାସନ ସମସ୍ତଙ୍କର, ସବୁ ମୁଖିଆମାନଙ୍କର, ସବୁ ମୁଖିଆ ଏକାଠି ହୋଇ ବିଚାର କରନ୍ତି, ନିଷ୍ପତ୍ତି ନିଅନ୍ତି । ଉଗ୍ରସେନ କେବଳ ମୁଖିଆ ଭିତରେ ମୁଖିଆ । ସେ ସମସ୍ତଙ୍କ ଭିତରେ ଜଣେ । ତେଣୁ କଂସ ସେଦିନ ଯାହା କଲା, କେବଳ ଉଗ୍ରସେନ ନୁହ ସମସ୍ତଙ୍କ ବିରୁଦ୍ଧରେ କଲା । ସେଇଟାହିଁ ବଡ଼ କଥା । ଏ ସାହସ ତାର ନୁହେଁ, ଜରାସନ୍ଧଙ୍କର, ଜରାସନ୍ଧ ଗୋଷ୍ଠୀ ମୁଖିଆ ନୁହନ୍ତି, ରାଜା । ରାଜ୍ୟର ସବୁ ନିଷ୍ପତ୍ତି

ତାଙ୍କର, ଆଉ କାହାର ନୁହେଁ । ସବୁ କ୍ଷମତା, ସବୁ ଧନ ସଂପତ୍ତି ବି ତାଙ୍କର । ମଥୁରାରେ ସେ ଚାହାନ୍ତି ସେଇଆହିଁ ହେଉ । ଗୋଷ୍ଠୀ ନୁହେଁ, କଂସ, କଂସ ହିଁ ରାଜା, ତାର ନିଷ୍ପତ୍ତି ହିଁ ଏକମାତ୍ର ନିଷ୍ପତ୍ତି । ତା ହେଲେ ହିଁ ସେ ଜରାସନ୍ଧଙ୍କୁ ସାହାଯ୍ୟ କରି ପାରିବ, ଅନ୍ୟ ଭାବରେ ନୁହେଁ ।

ବାପାଙ୍କର ବିଚାର ନିର୍ଭୁଲ । ସରସ୍ୱତୀ ନଦୀ କୂଳରେ ଯେତେବେଳେ ଆର୍ଯ୍ୟ ମାନଙ୍କର ପ୍ରଥମ ବସତି ଆରମ୍ଭ ହେଲା, ସେତେବେଳେ କେହି ରାଜା ନ ଥିଲେ । ଗୋଷ୍ଠୀ, ଅଲଗା ଅଲଗା ଗୋଷ୍ଠୀ, ଜନପଦ ସବୁ । ଗୋଷ୍ଠୀ ମୁଖିଆଙ୍କ ନାଁ ଅନୁସାରେ ଗୋଷ୍ଠୀର ନାମ । ଏ ବହୁତ ଦିନ ତଳର କଥା । ଆସ୍ତେ ଆସ୍ତେ ଆର୍ଯ୍ୟମାନେ ପୂର୍ବକୁ ଆସିଲେ । ଯମୁନା ଓ ଗଙ୍ଗା କୂଳକୁ । ଗଙ୍ଗା ଟପି ଆହୁରି ପୂର୍ବକୁ । ନୂଆ ନୂଆ ଜଙ୍ଗଲ ସଫା ହେଲା, ନୂଆ ନୂଆ ବସତି ଆରମ୍ଭ ହେଲା । ନାଗ, ନିଷାଦ, ରାକ୍ଷସ – ଯେଉଁମାନେ ମୂଳ ଲୋକ, ସେମାନେ ଆହୁରି ଆହୁରି ଭିତର ଜଙ୍ଗଲକୁ ଚାଲିଗଲେ । ଛୋଟ ଛୋଟ ଜନପଦରୁ ମହାଜନପଦସବୁ ଆରମ୍ଭ ହେଲା । ଆର୍ଯ୍ୟମାନେ ସ୍ଥିର ହେଲେ । ଗୋଷ୍ଠୀରୁ କ୍ରମଶଃ ଗୋଷ୍ଠୀ-ମୁଖିଆମାନେ ମୁଖ୍ୟ ହେଲେ । ରାଜା ହେଲେ, ରାଜତ୍ୱ ଆରମ୍ଭ ହେଲା । ଏ ଶହ ଶହ ବର୍ଷ ଧରି ଘଟିଛି । ଏହା ସତ୍ତ୍ୱେ, ବାପା କହନ୍ତି, ଅନେକ ଜାଗାରେ ଏବେ ବି ଗୋଷ୍ଠୀର ବିଚାର ରହିଛି । ଗୋଷ୍ଠୀର ସମସ୍ତେ ଏକାଠି ହୋଇ ବିଚାର କରନ୍ତି, ନିଷ୍ପତ୍ତି ନିଅନ୍ତି । ଯେମିତି ମଥୁରା । ମଥୁରାରେ ଉଗ୍ରସେନ ରାଜା, କିନ୍ତୁ ସେ ଏକା କିଛି କରନ୍ତି ନାହିଁ । ସମସ୍ତଙ୍କୁ ଡାକି, ସମସ୍ତଙ୍କ ମତ ନେଇ, ଏକାଠି ବିଚାର କରି ନିଷ୍ପତ୍ତି ନିଅନ୍ତି । ନାଁ, ଏ ଯିବ । ଅରିନ୍ଦମ ସ୍ପଷ୍ଟ ଦେଖି ପାରୁଛି ଯାହା ହେବ । କଂସ ହିଁ ସର୍ବେସର୍ବା ହେବ । ତା ଇଚ୍ଛା ଅନିଚ୍ଛା ହିଁ ନିଷ୍ପତ୍ତି । ଜରାସନ୍ଧ ଠିକ୍ ସେହିଆହିଁ ଚାହେଁ । ଉଗ୍ରସେନ ନୁହନ୍ତି, କଂସ ହିଁ ମଥୁରାର ରାଜା ।

କଂସ ତ ଉଗ୍ରସେନଙ୍କଠାରୁ ରାଜଗାଦୀ ଛଡ଼େଇ ନେଲା ପରି ଛଡ଼େଇ ନେଲା । ଏ ଖାଲି ଉଗ୍ରସେନ ନୁହନ୍ତି, ଉଗ୍ରସେନଙ୍କ ସହିତ ସବୁ ମୁଖିଆ, ସବୁ ମୁଖିଆମାନଙ୍କ ଦାୟିତ୍ୱ ସେ କାଢିନେଲା । ଏଣିକି ରାଜକାର୍ଯ୍ୟରେ ଆଉ କାହାରି ମୁଣ୍ଡ ପୂରାଇବା ଦରକାର ନାହିଁ । ସେହିହିଁ ବୁଝିବ । ମଥୁରାର ଯାହା ଭଲ ମନ୍ଦ ସେହିଁ ହିଁ ଠିକ୍ କରିବ । ଏଥିରେ ସବୁ ମୁଖିଆମାନେ ଯେ ଖୁସି ବା ଏ ଅବସ୍ଥାକୁ ଯେ ମାନି ନେଲେ ତା ନୁହେଁ । କିନ୍ତୁ ମାନିବା ଛଡ଼ା ଉପାୟ କିଛି ନଥିଲା । କାଳେ କିଛି ଗୋଳମାଳ ହୋଇପାରେ । ସେଥିପାଇଁ କଂସ ପ୍ରସ୍ତୁତ ଥିଲା । ଏ କଂସ ନୁହେଁ, ଜରାସନ୍ଧଙ୍କର ପୋଖତ ବୁଦ୍ଧି । ଜରାସନ୍ଧଙ୍କର ମନ୍ତ୍ରୀ, ସେନାପତି, ସିପେହୀ, ଗୁପ୍ତଚର ସାରା ମଥୁରା ଛାଇ ଯାଇଥିଲେ । ଏସବୁ କାମ ତତ୍‌କ୍ଷଣାତ୍ ହେବା ଦରକାର, ସାଙ୍ଗେ ସାଙ୍ଗେ ନିଷ୍ପତ୍ତି


Digitized by srujanika@gmail.com

ହେବା ଦରକାର । ଲୋକେ କିଛି ଭାବିବା ବା ବିଚାର କରିବା ଆଗରୁ ଯାହା ହେବାର କଥା ହୋଇଯିବ । ତାହାହିଁ ଘଟିଛି । ଘଟଣା ଘଟିବାର କିଛି ଦିନ ଆଗରୁ ସେ ଲକ୍ଷ୍ୟ କରିଛି, ଅନ୍ୟମାନେ ବି ଲକ୍ଷ୍ୟ କରିଛନ୍ତି, ମଗଧରୁ ମଥୁରାକୁ ବିଭିନ୍ନ ଲୋକ ଆସୁଛନ୍ତି, ଭାର ଓ ବୋଝସବୁ ଆସୁଛି । ତେବେ ଏ କଥାକୁ କେହି ବିଶେଷ ଗୁରୁତ୍ୱ ଦେଇ ନ ଥିଲେ । କାରଣ କଂସର ବିଭାଘର ପରଠାରୁ ଗିରିବ୍ରଜରୁ ମଥୁରାକୁ ପ୍ରାୟ ଲୋକ ଓ ଜିନିଷପତ୍ର ଆସୁଥିଲା । ଜରାସନ୍ଧ ସମ୍ରାଟ, ବହୁତ ଧନୀ ଓ ମାନୀ ଲୋକ । ତାଙ୍କ ଘରୁ ନିଜର ଏକମାତ୍ର ଜୋଇଁଙ୍କ ଘରକୁ ଲୋକବାକ ଆସିବାରେ ବା ଜିନିଷପତ୍ର ଆସିବାରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ? ଆସିବାର ତ କଥା । ଉଗ୍ରସେନ ବି ସେହିପରି ଭାବରେ ଅବସ୍ଥାକୁ ଗ୍ରହଣ କରି ନେଇଥିଲେ । ମୁଖିଆମାନେ ବି ଭାବୁଥିଲେ ସବୁ ଠିକ ଅଛି । ଜରାସନ୍ଧ ଯେ କୁଳୀନ ନୁହନ୍ତି, ନୀଚ ଜାତି, ସେମାନେ ଆସ୍ତେ ଆସ୍ତେ ଭୁଲି ଯାଉଥିଲେ । କେତେକ ତ ଜରାସନ୍ଧଙ୍କୁ ମଥୁରାକୁ ନିମନ୍ତ୍ରଣ କରି ଆଣିବା କଥା ଭାବୁଥିଲେ । ତାଙ୍କୁ ସମ୍ରାଟ ଭାବରେ, ନିଜ ଲୋକ ଭାବରେ ଯଥୋଚିତ ସମ୍ମାନ ଦେବାକଥା ବିଚାର କରୁଥିଲେ । କଂସ ବି ମୁଖିଆମାନଙ୍କ ସଭାରେ ଦି ତିନିଥର ଏ କଥା ଉଠେଇ ଥିଲା । ସମସ୍ତେ ପସନ୍ଦ କରିଥିଲେ । ଉଗ୍ରସେନ ବି ଖୁସି ଥିଲେ ଯେ ଯାହା ହେଉ କଂସ ନିଜ ଉଦ୍ୟମରେ ଖୁବ୍ ଭଲ ବଂଧୁ ଯୋଗାଡ଼ କରି ପାରିଛି । ଏପରିକି ଗିରିବ୍ରଜରୁ ନିମନ୍ତ୍ରଣ ଆସିଥିଲା । ଉଗ୍ରସେନଙ୍କ ପାଇଁ, କିଛି ମୁଖିଆଙ୍କ ପାଇଁ ଜରାସନ୍ଧଙ୍କର ନିମନ୍ତ୍ରଣ । ଜରାସନ୍ଧଙ୍କର ଅନୁରୋଧ ସେମାନେ ଜରାସନ୍ଧଙ୍କର ଅତିଥି ହୋଇ ଗିରିବ୍ରଜ ଆସନ୍ତୁ । ବୁଲାବୁଲି କରିବେ, ମହାକାଳଙ୍କର ଦର୍ଶନ କରିବେ । କଂସ ପିଲାଲୋକ, ମୁଖିଆ ମାନଙ୍କର ତା ପ୍ରତି ସ୍ନେହ, ସାହାଯ୍ୟ ସମର୍ଥନ ନ ରହିଲେ ସେ ରାଜ୍ୟ ଶାସନ ଜାଣିବ କେମିତି । ଏ ଥରେ ନୁହେଁ, ବାରମ୍ବାର ଜରାସନ୍ଧଙ୍କର ଲୋକମାନେ ମଥୁରା ଆସିଛନ୍ତି । ମୁଖିଆମାନଙ୍କର ସଭାରେ ବସିଛନ୍ତି । ମଥୁରାର ଲୋକମାନଙ୍କ ସହିତ ମିଶିଛନ୍ତି, ଜରାସନ୍ଧଙ୍କଠାରୁ ନାନା ପ୍ରକାର ଉପହାରମାନ ଆଣି ଉଗ୍ରସେନ ଓ ମୁଖିଆମାନଙ୍କୁ ଦେଇଛନ୍ତି । ମଥୁରାର ସାଧାରଣ ଲୋକଙ୍କର ଜରାସନ୍ଧଙ୍କ ପ୍ରତି ଧାରଣା ଭଲ । ଜରାସନ୍ଧଙ୍କ ବିଷୟରେ ଯାହାସବୁ କୁହାଯାଏ, ସେ ଅପପ୍ରଚାର, ଏହା ଅନେକ ଭାବନ୍ତି । କଂସ ନିଜର ଦୁର୍ଦ୍ଦାନ୍ତ ପ୍ରକୃତି ସତ୍ତ୍ୱେ ଯେ ଜରାସନ୍ଧଙ୍କର ସାହାଯ୍ୟରେ ଭଲ ରାଜା ହୋଇପାରିବ, ଏ ବି ଅନେକଙ୍କର ମତ। ପ୍ରଦ୍ୟୋତ ତ ପୂରାପୂରି କଂସ ସପକ୍ଷରେ । କଂସ ଯାହା କଲେ ବି ସେ ମାନିବାକୁ ରାଜି । ଏପରିକି ଅକ୍ରୁରଙ୍କ ପରି ଧର୍ମପ୍ରାଣ, ସଚ୍ଚୋଟ ଲୋକ, ସେ ବି ଭାବନ୍ତି ଯା ହେଉଛି ଖରାପ ନୁହେଁ । କଂସ ତରୁଣ ଲୋକ । ତାକୁ ସୁଯୋଗ ଦେବା ଉଚିତ୍ । ଆଉ ଜରାସନ୍ଧଙ୍କ

ଘରେ ସଂପର୍କ ଏମିତି କିଛି ନାପସନ୍ଦର କଥା ନୁହେଁ । ଜାତିର ପ୍ରଭେଦ କଅଣ ? ଆର୍ଯ୍ୟମାନେ ତ ବହୁ ଆର୍ଯ୍ୟେତର ଜାତିରେ ବିଭା ହେଉଛନ୍ତି । ତା ନ ହେଲେ ଆର୍ଯ୍ୟ ସମାଜ ବଢ଼ିବ କେମିତି । ଏଇତ ନାଗମାନଙ୍କ ସହିତ ବସୁଦେବଙ୍କ ପରିବାରର ବଂଧୁବାନ୍ଧବ ସଂପର୍କ । ଅସୁବିଧା କଅଣ ? କେତେ ଦିନ ଆର୍ଯ୍ୟମାନେ ନିଜ ଭିତରେ ବନ୍ଦ ହୋଇ ରହିଥିବେ । ମଥୁରାରେ ଅକ୍ରୂରଙ୍କର ଯଥେଷ୍ଟ ପ୍ରଭାବ । ତାଙ୍କ ସହିତ ଅନେକ ମୁଖିଆ ଏକମତ । ଏକମାତ୍ର ବାପା ଅନ୍ୟ କଥା କହନ୍ତି । ନାଁ, ସେ କେବେ କଂସ ବା ଜରାସନ୍ଧଙ୍କୁ ପ୍ରତିବାଦ କରି ନାହାନ୍ତି । ସେ କେବଳ କହିଛନ୍ତି- ଏତେ ଭାସି ଯାଅ ନା, ଆଖି କାନ ଖୋଲା ରଖ । ସେଦିନ ତ ତାଙ୍କରି ଚେଷ୍ଟାରେ ଗୋଟାଏ ଅତ୍ୟନ୍ତ ଗୋଳମାଳିଆ ଘଟଣା ଭଲରେ ଭଲରେ ମେଣ୍ଟିଗଲା । କଂସ ସୁରଖୁରରେ ରାଜା ହେଲା ।

ସେ ଦିନର ଘଟଣା ଅରିନ୍ଦମ ମନକୁ ବାରମ୍ବାର ଆସୁଛି । ସେଦିନ ସେ ବା ବାପା ଯିବା ଆଗରୁ ଯାହା ଘଟିବାର ଘଟିଯାଇଥିଲା । କଂସର କାର୍ଯ୍ୟ ଦ୍ରୁତ ଓ ତତ୍‌କ୍ଷଣାତ । ସକାଳେ କେହି ଉଠିବା ଆଗରୁ ରାଜଗାଦି ବଦଳି ଯାଇଛି । ସକାଳେ ଉଠି ଲୋକେ ଦେଖିଲେ ଯେ ଆଉ ଉଗ୍ରସେନ ନୁହନ୍ତି, କଂସ ହିଁ ରାଜା । ମୁଖିଆମାନଙ୍କ ସଭାରେ କଂସ ସେହି ଘୋଷଣା କରିଦେଲା, ଯେ ଉଗ୍ରସେନଙ୍କୁ ବୟସ ହେଲାଣି, ରାଜକାର୍ଯ୍ୟ ଠିକ୍ ଠିକ୍ ବୁଝିବା ତାଙ୍କ ପାଇଁ କଷ୍ଟ ସେହିହିଁ ବୁଝିବ, ସେହିହିଁ ରାଜା, ମୁଖିଆମାନଙ୍କର ଆପତ୍ତି ଅଛି କି ! ଅରିନ୍ଦମର ମନେ ଅଛି ମୁଖିଆମାନେ ସମସ୍ତେ ଚୁପ ରହିଥିଲେ । ଏତେ ସକାଳୁ ଡକାହୋଇ ଆସି ଏପରି ଘୋଷଣା ଶୁଣିବା ପାଇଁ ସେମାନେ କେହି ବୋଧହୁଏ ପ୍ରସ୍ତୁତ ନ ଥିଲେ । କଂସ ବି ସେମାନଙ୍କୁ ମତାମତ ଦେବାର ସୁବିଧା ଦେଲାନାହିଁ । ହସ ହସ ମୁହଁରେ ବିନୀତ ଭାବରେ କେବଳ କହିଲା - 'ମୁଁ ଜାଣେ ଆପଣମାନେ ସମସ୍ତେ ଖୁସି ହେବେ । ମୋତେ ଆଶୀର୍ବାଦ ଦିଅନ୍ତୁ ।' ବାସ୍, ସଭା ସରିଗଲା । କଂସ ନଅର ଭିତରକୁ ଚାଲିଗଲା । ମୁଖିଆମାନେ ଓ ରାଜା ଉଗ୍ରସେନ, ସମସ୍ତେ ଚୁପ ହୋଇ ବସି ରହିଲେ । କେମିତି କଅଣ ଘଟିଲା କେହି ବୁଝିବା ଆଗରୁ ଘଟଣା ଘଟିଗଲାଣି । ହୁଏତ କେହି କଅଣ କହିବାକୁ ଚାହୁଁଥିଲେ । କିନ୍ତୁ ତାର ସୁବିଧା ନ ଥିଲା । କଂସ ନାହିଁ, କଅଣ କହିବେ, କାହାକୁ କହିବେ ? ତା' ଉପରେ ସଭାଘର ବାହାରେ ଜଗିଥିବା ସିପେହୀମାନଙ୍କ ଭିତରୁ କେତେକ ଆସି ବୁଲାବୁଲି କରି ଗଲେଣି । ମୁଖିଆମାନଙ୍କ ଭିତରୁ ଅନେକ ଉଠି ବାହାରିଯିବାକୁ ଆରମ୍ଭ କଲେ । ରାଜଗାଦି ଯେପରି ଅଦଳବଦଳ ହୋଇଗଲା ତାର କୌଶଳ ଓ ସୂକ୍ଷ୍ମତା ଅରିନ୍ଦମକୁ ଆଶ୍ଚର୍ଯ୍ୟ କରିଥିଲା । କଂସର ବୁଦ୍ଧି ଏତେ ସୂକ୍ଷ୍ମ

ନୁହେଁ । ଏ ଯୋଜନାର ସୂକ୍ଷ୍ମତା ଜରାସନ୍ଧଙ୍କର, କଂସର ନୁହେଁ ।

ଛାଁ ଛାଁ ଦ୍ୱିତୀୟ ଘଟଣା କଥା ବି ମନକୁ ଆସିଲା । ଏ ସାଙ୍ଗେ ସାଙ୍ଗେ ଘଟି ନ ଥିଲା, ପ୍ରଥମ ଘଟଣାର କେତେ ବର୍ଷ ପରେ । ସେତେବେଳକୁ କଂସ ରାଜା ହୋଇ ପ୍ରତିଷ୍ଠିତ ହୋଇଗଲାଣି । କଂସ ରାଜା ବିଷୟରେ କାହାରି ମନରେ ଆଉ କିଛି ସଂକୋଚ ନାହିଁ । ସମସ୍ତେ ମାନି ନେଲେଣି - ଉଗ୍ରସେନ, ମୁଖିଆମାନେ, ଲୋକେ, ସମସ୍ତେ । ଗୋଟାଏ ଆଡ଼େ ମଥୁରାର ପ୍ରତାପ ସବୁଆଡ଼େ ବ୍ୟାପି ଗଲାଣି । କଂସ ଗୋଟାଏ ପରେ ଗୋଟାଏ ରାଜ୍ୟ ଆକ୍ରମଣ କରୁଛି, ରାଜାମାନଙ୍କୁ ପରାସ୍ତ କରୁଛି, ଜଣେ ପରେ ଜଣେ ରାଜା ତାର ବଶ୍ୟତା ମାନି ନେଉଛନ୍ତି । କଂସର ପ୍ରତାପରେ ସମସ୍ତେ ଥରହର । ଜରାସନ୍ଧ ଯେମିତି ଚାହିଁଥିଲେ ସେମିତି । କିନ୍ତୁ କଂସ ଜରାସନ୍ଧକୁ ଟପିଯିବାକୁ ବସିଲାଣି । କିଏ ଜାଣେ, କଂସର ଉଚ୍ଚାସା କେତେ, ମନେ ହେଉଛି ହୁଏତ କଂସ ଜରାସନ୍ଧଙ୍କର ଲଢ଼େଇ ବି ଲାଗିଯାଇ ପାରେ । ଏ ଗୋଟାଏ କଥା । ଅନ୍ୟ ଦିଗରେ, ଅରିନ୍ଦମ ଭାବିବାକୁ ଚେଷ୍ଟା କଲା, ମଥୁରା ପେଷି ହୋଇ ଗଲାଣି । ଏ ଆଉ ଉଗ୍ରସେନଙ୍କର ମଥୁରା ନୁହେଁ, ଯେଉଁଠି ଲୋକମାନେ ସ୍ୱର୍ଗରେ ଚଳିଲାପରି ସୁଖ ଶାନ୍ତିରେ ଚଳୁଥିଲେ । ଫଳବତୀ ପୃଥିବୀ, ମାତୃରୂପା ଯମୁନା, ଦେବଦେବଙ୍କର ଅଶେଷ କରୁଣାରେ, ଶହେ ପରିବାରରେ ନୁହେଁ ଯେପରି ଗୋଟିଏ ପରିବାରରେ ଯାଦବମାନେ ବାନ୍ଧି ହୋଇ ରହିଥିଲେ । ସେସବୁ ଆଉ ନାହିଁ । ଏକ ଭୟଙ୍କର ଭୟ ସବୁଆଡ଼େ ବ୍ୟାପୀ ଗଲାଣି । ପ୍ରଚଣ୍ଡ ଭୟ, ଆତଙ୍କ । କଂସର ଅତ୍ୟାଚାରରେ ଲୋକଙ୍କର ବଂଚିବା ଆଉ ମରିବା ସମାନ । ଏପରିକି ଯମୁନା ବି ଶୁଷ୍କ, ବୃକ୍ଷମାନେ ଆଉ ଫଳବତୀ ନୁହନ୍ତି, ଗାଭୀମାନେ ଆଉ ଦୁଗ୍ଧବତୀ ନୁହନ୍ତି । ମଥୁରାର ଶ୍ରୀ ତୁଟି ଗଲାଣି । ମଥୁରାରେ କେବଳ ଜଣେ, ସେ ସବୁ, ସେ କଂସ । ତାର ଇଚ୍ଛା ଅନିଚ୍ଛାହିଁ ରାଜ୍ୟ, ରାଜତ୍ୱ । ଅରିନ୍ଦମର ମନେ ଅଛି ସେ ବାପାଙ୍କୁ ପଚାରିଥିଲା - ଏ କଅଣ, କେତେଦିନ ଏମିତି ଚାଲିବ, କଂସର ଅତ୍ୟାଚାର ତ ଜରାସନ୍ଧର ଅତ୍ୟାଚାରକୁ ଟପିଗଲା । ବାପା କେବଳ ହସିଥିଲେ, କହିଥିଲେ, ଏ ହବ, ଏହାହିଁ ପ୍ରାରବ୍ଧ । ତା ସାଙ୍ଗରେ ସେ ଅରିନ୍ଦମକୁ ସାହସ ଦେଇଥିଲେ । କହିଥିଲେ, ଧୈର୍ଯ୍ୟ ଧର, ରାତି କଟିଯିବ ।

ହଁ, ପ୍ରଥମ ଘଟଣାର ଅଳ୍ପ କେତେ ବର୍ଷ ପରେ ଦ୍ୱିତୀୟ ଘଟଣା । ଏ ଆଗରୁ ସବୁ ଠିକ୍‌ଠାକ୍ କରି, ଭାବିଚିନ୍ତି ନୁହେଁ । ହଠାତ୍ ଘଟିଲା, ଅରିନ୍ଦମ ଏବେ ବି ଭାବି ପାରୁନାହିଁ ଏପରି ହେଲା କାହିଁକି ? କାହାର ସ୍ୱାର୍ଥ ? ନାଁ, ଏ ବି ବାପାଙ୍କର ସେହି ପ୍ରାରବ୍ଧ ? ଦେବତାମାନଙ୍କର ନିଷ୍ପତ୍ତି ? ବିଧିର ବିଧାନ ? ସେ ଅନେକ ଥର ଘଟଣାର

କାର୍ଯ୍ୟ କାରଣ କଥା ଭାବିବାକୁ ଚେଷ୍ଟା କରିଛି, ଯୁକ୍ତିଯୁକ୍ତତା ବି । ଏପରି କାହିଁକି ହେଲା । ଦ୍ୱିତୀୟ ଘଟଣାର ଆରମ୍ଭ ରହସ୍ୟଜନକ । ସବୁ କଂସର ଯୋଜନା ଅନୁଯାୟୀ ଚାଲିଛି । ରାଜ୍ୟ ଜୟ, ଜରାସନ୍ଧଙ୍କ ସହିତ ସଂପର୍କ, ମଥୁରା ଓ ଯାଦବଙ୍କୁ ନିଜର ହାତମୁଠାରେ ଚାପି ଦେବାର କୌଶଳ। ଚାରିଆଡ଼େ କଂସର ଚର, ଚାହିଁଆଡ଼େ ତାର ଲୋକ, କିଏ କ'ଣ କହୁଛି ନ କହୁଛି, କରୁଛି ନ କରୁଛି ସାଙ୍ଗେ ସାଙ୍ଗେ କଂସ ପାଖରେ ଖବର ପହଁଞ୍ଚୁଛି । ଲୋକମାନେ ବି ଅନେକ ସାବଧାନ ହୋଇଗଲେଣି । ସବୁ କଥାରେ ମାଡି ବସିବା, ଆଗଚଲା ହୋଇ କଥା କହିବା, କାହାରିକୁ ଖାତିର ନ କରିବା, ଯାଦବମାନଙ୍କର ଏ ଯେଉଁ ପ୍ରକୃତି ସେ ବି ଯେପରି ଅନେକ କମିଆସିଲାଣି । ଲୋକମାନେ ଆଉ ବିଚାର ଆଲୋଚନା ଖୋଲାଖୋଲି କରୁ ନାହାନ୍ତି । ଯାହା କଥାବାର୍ତ୍ତା ନିଜ ଭିତରେ ଚୁପଚୁପ୍, ନିଜ ପଡ଼ୋଶୀ ବି କଂସ ପାଖରେ ଖବର ପହଞ୍ଚେଇ ଦେଇପାରେ, ଏଇ ଭୟ । ଦିନରେ କଂସ ପାଖକୁ ଯେ ନାହିଁ ସେ ଯାଇପାରେ । ଲୋକ ଦେଖିଲେ ସେ ବହୁତ ଖୁସି। କଥା ଶୁଣେ, କଥାବାର୍ତ୍ତା କରେ, ଦରକାର ହେଲେ ସାହାଯ୍ୟ କରେ । ଅରିନ୍ଦମ ନିଜେ ବି କେତେଥର ଯାଇଁ କଥାବାର୍ତ୍ତା କରିଛି, ବନ୍ଧୁବତ୍ସଳ ନୁହେଁ ବୋଲି ବୁଝି ହେବନି । କିନ୍ତୁ ଅରିନ୍ଦମର ମନେ ହୁଏ ଏ କେବଳ ଲୋକ ଦେଖାଣ, ଉପରର ସର ପରି । ଉଦ୍ଦେଶ୍ୟ ଲୋକେ ସରଟାକୁ ଦେଖନ୍ତୁ , ଖୁସି ହୁଅନ୍ତୁ । ବାସ୍ ସେତିକି । ଦିନକର କଥା ତାର ମନେ ଅଛି । କଂସ ତାର ଦିଗ୍‌ବିଜୟରୁ ଫେରିଥାଏ । ସେମାନେ କିଛି ବଂଧୁ କଂସ ପାଖକୁ ଯାଇଥାନ୍ତି । କଥାବାର୍ତ୍ତା ହେଉଥାଏ, ବିଶେଷ କରି କଂସର ଗୁଣଗାନ, କଂସ ବି ଖୁସି । ହଠାତ୍ ଜଣେ ପାରିଷଦ ଆସି କଂସକୁ କ'ଣ କହିଦେଇ ଗଲେ । ପରେ ପରେ ଆଉ ଜଣେ, ପରେ ପରେ ଆଉ ଜଣେ । ହଠାତ୍ କଂସର ଚେହେରା ବଦଳି ଗଲା । ଦେହ ଥରୁଥାଏ, ଆଖି ଲାଲ୍ ଲାଲ୍ । ସେ ଉଠି ଛିଡ଼ା ହେଲା । ବାଁ ହାତ ହଲେଇ ସେଠୁଁ ସମସ୍ତଙ୍କୁ ବିଦା କରିଦେଲା । ପରେ ଅରିନ୍ଦମ ଶୁଣିଛି ସେହିଦିନ ପାଞ୍ଚଜଣ ଲୋକଙ୍କର ରାଜପ୍ରାସାଦ ସାମନାରେ ମୁଣ୍ଡ କାଟ ହୋଇଥିଲା । କାହିଁକି ହେଲା, କଥା କ'ଣ, ଲୋକ କିଏ, ଏସବୁ ଜଣା ନାହିଁ । କିନ୍ତୁ ହୋଇଥିଲା ।

ଅସଲ କଥା, ଅରିନ୍ଦମ ଭାବେ, କଂସ କାହାକୁ ବିଶ୍ୱାସ କରେ ନା, କାହାକୁ ବଂଧୁ ବୋଲି ଭାବେ ନା, ତାର ମନୋଭାବରେ ସ୍ଥିରତା ନାହିଁ । ସବୁଠାରୁ ଭଲ ତା ଠାରୁ ଦୂରେଇ ରହିବା । ଭାନୁପ୍ରକାଶ କହନ୍ତି ଏହାହିଁ ଅତ୍ୟାଚାରୀର ଚରିତ୍ର, ତା' ମନରେ ସବୁବେଳେ ଭୟ, ଆଉ ଏ ଭୟକୁ ଘୋଡ଼େଇବା ପାଇଁ ତାର ଅତ୍ୟାଚାରର ମାତ୍ରା ବଢ଼ିଯାଏ । ବାପା ବି ବୋଧହୁଏ ସେହିପରି ଭାବନ୍ତି । ସେ ଉଗ୍ରସେନଙ୍କ

ପାଖକୁ ଯେପରି ସବୁବେଳେ ଯାଉଥିଲେ, କଂସ ପାଖକୁ ପ୍ରାୟ ଯାଆନ୍ତି ନାହିଁ । ଡକେଇ ପଠେଇଲେ ଯାଆନ୍ତି । ସେଦିନ ସକାଳୁ ଡକରା ପାଇ ବାପା ରାଜସଭାକୁ ଯାଇଥିଲେ । ସେ ବି ଯାଇଥିଲା । ସକାଳ କଟି ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଗଲେଣି । ଚାରିପାଖରେ ବେଶ୍ ଶାନ୍ତ, ଶୀତଳ ପରିବେଶ । ଆଉ ଆଶ୍ଚର୍ଯ୍ୟ କଥା ରାଜସଭା ବାହାରେ ବିଶେଷ କେହି ସିପାହୀ ବା ଜଗୁଆଳି ନାହାନ୍ତି । ମନେ ହେଉଛି ବେଶ ଖୋଲାମେଳା, ଉଗ୍ରସେନଙ୍କର ସେହି ପୁରୁଣା ଦିନଗୁଡ଼ିକ ପରି । ଅନେକ ମୁଖିଆ ଆସି ରାଜସଭାରେ ବସିଲେଣି । ବାପା ବି ବସିଲେ । ଅରିନ୍ଦମ ଗୋଟାଏ କଡ଼କୁ ଛିଡ଼ା ହୋଇ ରହିଲା । କଂସ ନାହିଁ । ସମସ୍ତେ ଚୁପ୍‌ଚାପ । କିନ୍ତୁ ସମସ୍ତଙ୍କ ମୁହଁରୁ ଗୋଟାଏ କଥା ବୁଝିହେଉଛି । ସମସ୍ତେ ବିବ୍ରତ, କ'ଣ ଆଜି ଘଟିଲା, କାହିଁକି ସକାଳୁ ଏ ସଭା ? ବାପାଙ୍କୁ ଦେଖି କିଛି ଲୋକ ତାଙ୍କ ପାଖକୁ ଉଠି ଆସିଲେ । ପଚାରିଲେ କ'ଣ କଥା, ବାପା କିଛି ଜାଣନ୍ତି କି ? ବାପା କହିଲେ ନାଁ ସେ କିଛି ଜାଣନ୍ତିନି । ତେବେ ବ୍ୟସ୍ତ ହେବାର କିଛି ନାହିଁ । ଯାହା ଜାଣିବା କଥା କଂସ ନିଜେ ଆସି କହିବ । ସେଇଆ ହିଁ ହେଲା । ବେଶି ସମୟ ଅପେକ୍ଷା କରିବାକୁ ହେଲାନି । କଂସ ଏକା ଏକା ତାର ପ୍ରାସାଦ ଭିତରୁ ବାହାରି ଆସିଲା । ପୋଷାକ ସାଧାସିଧା । ମୁହଁରେ ହସ ହସ ଭାବ । ସେ ରାଜସଭାକୁ ଆସି ନିଜ ସିଂହାସନରେ ବସିଲାନି । ସିଧା ସିଧା ମୁଖିଆମାନଙ୍କ ଭିତରକୁ ଚାଲି ଆସିଲା । ମୁହଁରେ ଅତ୍ୟନ୍ତ ଉଦାର ଭାବ, ହାତ ଯୋଡି କହିଲା – ମୁଁ ଆପଣମାନଙ୍କୁ ଏତେ ସକାଳୁ ସକାଳୁ ଡାକି କଷ୍ଟ ଦେଲି । କିଛି ଭାବିବେ ନାହିଁ । ସମସ୍ତେ ଆଶ୍ଚର୍ଯ୍ୟ । ଏ ତ ନୂଆ କଂସ, କଂସର ଏ ଚେହେରା ତ କେହି କେବେ ଦେଖି ନାହାନ୍ତି । କିଛି ଲୋକ ଭୟ ବି ପାଇଗଲେ । ନିଶ୍ଚୟ କିଛି ମତଲବ ଅଛି । ବାପାଙ୍କ ଆଡକୁ ଅରିନ୍ଦମ ଚାହିଁଲା । ବାପା ନିର୍ବିକାର,ଯେପରି ଧ୍ୟାନରେ ବସିଛନ୍ତି । କଂସ କହୁଥାଏ – ମୁଁ ଯାହା କରିବି ବୋଲି ଭାବିଛି, ଆପଣମାନଙ୍କୁ ଜଣେଇବା ମୋର ପ୍ରଥମ କର୍ତ୍ତବ୍ୟ । ଆପଣମାନେ ମୋତେ ସମର୍ଥନ କଲେ ହିଁ ମୋ ମନରେ ସାହସ ଆସିବ । ମୁଁ ଭାବିବି ଯାହା ମୁଁ କରିବାକୁ ଯାଉଛି ଠିକ୍ ।

...ଅରିନ୍ଦମର ମନ ପଛକୁ ଫେରିଗଲା । ଭାନୁପ୍ରକାଶ ଠିକ୍ ଏଇକଥା କହୁଥିଲେ । ଯେ ଅତ୍ୟାଚାରୀ ଶାସକର ସବୁ କଥା ମିଛ । ସେ ଯାହା କହିବ ବା ଯାହା କରିବ ସବୁ ପଛରେ କିଛି ଉଦ୍ଦେଶ୍ୟ ଥାଏ । ସେଦିନ ଭୋଜି ଖାଇବା ପରେ ସେମାନେ ସବୁ ଶିବିରକୁ ଫେରି ଆସିଲେ । ସମୟ ପ୍ରାୟ ଅପରାହ୍ଣ ହେବ । ଅରିନ୍ଦମକୁ ଅସ୍ଥିର ଲାଗୁଥାଏ । ମଥୁରା ଫେରିବାକୁ ଆଉ ବେଶି ଦିନ ନାହିଁ । ହୁଏତ


Digitized by srujanika@gmail.com

ତିନି ଚାରି ଦିନରେ ଫେରିବା ପାଇଁ ନିର୍ଦ୍ଦେଶ ଆସିବ । କିନ୍ତୁ ଗୋଟାଏ କଥା ସ୍ପଷ୍ଟ ବୁଝିହେଲା । ଜରାସନ୍ଧଙ୍କ ସହିତ କଂସର ସଂପର୍କ ଠିକ୍ । କିନ୍ତୁ ସେହି ସଂପର୍କର ଜରିଆରେ କଂସ ସଂପୂର୍ଣ୍ଣ ଭାବରେ ଜରାସନ୍ଧଙ୍କର ବଶ୍ୟତା ମାନିନେଲା । ସେ ଜାଣେ ମଥୁରାର ଅଧିକାଂଶ ମୁଖିଆ ଏ ବଶ୍ୟତାର ସଂପର୍କକୁ ମାନିବେ ନାହିଁ । କିନ୍ତୁ ଲାଭ କଅଣ ? ଦିନେ ନା ଦିନେ, ନିକଟରେ ହେଉ ବା ଦୂର ଭବିଷ୍ୟତରେ ହେଉ, ସେମାନଙ୍କୁ ମାନିବାକୁ ପଡିବ । ଜରାସନ୍ଧ ପୋଖତ ଲୋକ, କଂସର ଉଚ୍ଚାଭିଳାଷ ବି ପ୍ରଚୁର । ହେଇତ ସେଦିନ ପ୍ରଥମ ଘଟଣା ଘଟିଲା, କଂସ ରାଜା ହେଲା ।

ଅରିନ୍ଦମ ଶିବିରକୁ ଫେରି ନିଜ ବିଛଣାରେ ଚୁପ୍‌ଚାପ ଶୋଇ ରହିଲା । ତା' ମନରେ ଅନେକ ଚିନ୍ତା । ଜରାସନ୍ଧ ବେଶ ଶକ୍ତିଶାଳୀ, ସନ୍ଦେହ ନାହିଁ । କିନ୍ତୁ ସେ ଆର୍ଯ୍ୟ ନୁହେଁ । ଆର୍ଯ୍ୟମାନଙ୍କର ସଂସ୍କୃତି, ଧର୍ମଧାରା, ଜୀବନପ୍ରଣାଳୀ ଏ ସବୁର ସେ ବିରୋଧୀ । ଦରକାର ହେଲେ ସେ ସବୁକୁ ସେ ନଷ୍ଟଭ୍ରଷ୍ଟ କରିଦେବାକୁ ଚାହେଁ । ଆର୍ଯ୍ୟ ରାଜାମାନଙ୍କୁ ମହାକାଳଙ୍କ ପାଖରେ ବଳି ଦେବାର ଗୋଟିଏ ଉଦ୍ଦେଶ୍ୟ, ଆର୍ଯ୍ୟ ଜଗତକୁ ଭୟଭୀତ କରି ନିଶ୍ଚିହ୍ନ କରିଦେବା । ଏ କଅଣ ସମ୍ଭବ, ସେ ନିଜକୁ ନିଜେ ପଚାରିଲା । ଭାନୁପ୍ରକାଶ ପ୍ରଭୃତିଙ୍କ କଥା ଛାଁ କୁ ଛାଁ ମନ ଭିତରକୁ ପଶି ଆସୁଛି । ଆଶ୍ଚର୍ଯ୍ୟ ଲୋକ, ଆଶ୍ଚର୍ଯ୍ୟ ଅନୁଷ୍ଠାନ, ଆଶ୍ଚର୍ଯ୍ୟ କାର୍ଯ୍ୟ । ସେମାନେ ଜରାସନ୍ଧଙ୍କ ସହିତ ଖୋଲାଖୋଲି, ସିଧାସିଧା, ଯୁଦ୍ଧ କରିବାକୁ ଚାହାନ୍ତି ନାହିଁ । ସେପରି ଯୁଦ୍ଧ କରିବାକୁ ସେମାନଙ୍କର ଯୋଗ୍ୟତା ଅଛି କି ନାହିଁ ସନ୍ଦେହ । କିନ୍ତୁ ଭାନୁପ୍ରକାଶ ଅନ୍ୟ କଥା କହନ୍ତି । ସେ କହନ୍ତି ଏଇ ତ ଯୁଦ୍ଧ । ଯୁଦ୍ଧ କ'ଣ ଗୋଟାଏ ପଡ଼ିଆ ଉପରେ ଛିଡ଼ା ହୋଇ ପରସ୍ପରକୁ ହାଣକାଟ କରିବା ? ଯୁଦ୍ଧ ଭିନ୍ନ ଭିନ୍ନ ପ୍ରକାରେ ହୋଇପାରେ । ଯେଉଁ ଲୋକ ସାଧୁ, ସଚ୍ଚୋଟ, ବିବେକବନ୍ତ ତା କଥା ଅଲଗା । କିନ୍ତୁ ଯେ ଅସାଧୁ ଅନାଚାରୀ, ଅତ୍ୟାଚାରୀ ତା ସହିତ କି ଯୁଦ୍ଧ କରିବ ? ଧର୍ମଯୁଦ୍ଧ ? ନାଁ, ତା ସହିତ ଯୁଦ୍ଧର ଧାରା ସେହିପରି ଠିକ୍ କରିବାକୁ ହେବ । ଆମେ ସେହିପରି ଭାବରେ ଯୁଦ୍ଧ କରୁଛୁ । ଜରାସନ୍ଧ ଆର୍ଯ୍ୟ ନୁହେଁ । କିନ୍ତୁ ସେଇଟା ତା'ର ଦୋଷ ନୁହେଁ । ଦୋଷ ସେ ନିଜର ସ୍ୱାର୍ଥ ପାଇଁ ନିରୀହ ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରୁଛି । ସେ ଅଧର୍ମ, ଆମେ ସେହି ଅଧର୍ମର ପ୍ରତିବାଦ କରୁଛୁ । ଅରିନ୍ଦମର ମନ ଏସବୁ ମାନି ନେଲେ ବି ତଥାପି ମଝିରେ ମଝିରେ ସନ୍ଦେହ ଆସେ । ଗୋଟାଏ ପ୍ରବଳ ପରାକ୍ରାନ୍ତ ଶତ୍ରୁ ସହିତ ଏମାନେ କେତେଦିନ ଯୁଦ୍ଧ କରି ପାରିବେ, ଏକଥା ସେ ବାରମ୍ବାର ଭାବିଛି । ଭାନୁପ୍ରକାଶଙ୍କ ଉତ୍ତର ସେଥିପାଇଁ ମଧ୍ୟ ପ୍ରସ୍ତୁତ । ସେ କହନ୍ତି ଏ ଯେଉଁ ପ୍ରବଳ ପରାକ୍ରାନ୍ତ କହୁଛ ସେ ଭୁଲ୍ । ସେ ତମର ମନର କଥା । ନିଜର ଶକ୍ତି ନିଜର

ମନରୁ ଆସେ, ନିଜେ ଦମ୍ଭ ହୋଇ ଛିଡ଼ା ହେବାର ଯୋଗ୍ୟତାରୁ ଆସେ, ନିଜର ଉଦ୍ଦେଶ୍ୟ ଓ ଚରିତ୍ରରୁ ଆସେ । ଜରାସନ୍ଧ ନିଜକୁ ଯେତେ ଶକ୍ତିଶାଳୀ କରି ଭାବିଲେ ବି ସେ ଆମକୁ ଜାଣେ, ଆମକୁ ଭୟ କରେ, ସେ ଜାଣେ ସେ ଆମକୁ କେବେହେଲେ ତା'ର ଅଧୀନ କରି ପାରିବ ନାହିଁ । ତାର କଂସ ପରି ଲୋକ ଦରକାର, ସମାନ ଅସାଧୁ, ସମାନ ଅଧର୍ମ ।

ଅରିନ୍ଦମ କେତେ ସମୟ ଶୋଇ ରହିଥିଲା ଜଣାନାହିଁ । ବୋଧହୁଏ ଆଖି ପଡି ଆସିଥିଲା, ଛାଇ ନିଦ ଲାଗି ଯାଇଥିଲା । କୋଉଠୁ କଅଣ ପାଟିଗୋଳ ଶୁଣି ତା ନିଦ ଭାଙ୍ଗିଗଲା । ସେ ଚାରିପାଖକୁ ଚାହିଁଲା । ଶିବିର ଭିତରେ ଲୋକ ବେଶି ନାହାନ୍ତି । ଭିତରଟା କିଛି କିଛି ଅନ୍ଧାର ହୋଇ ଆସିଲାଣି । ଭିତରେ ବି କିଛି ଲୋକ ଏଠି ସେଠି ଶୋଇଛନ୍ତି । ପାଟିଗୋଳ ଶବ୍ଦ ଶିବିର ବାହାରୁ ଆସୁଥିଲା । ସେ ଶବ୍ଦ ଲକ୍ଷ୍ୟ କରି ଶିବିରରୁ ବାହାରି ଆସିଲା । ଦେଖିଲା ବାହାରେ, ଟିକେ ଛାଡି ଗଛ ମୂଳେ ବେଶ କିଛି ଲୋକ ଜମିଛନ୍ତି । ତା ଶିବିରର ଲୋକେ, କିଛି ସିପେହୀ, ଆଉ କିଛି ମନେ ହେଉଛି ଅନ୍ୟ ଶିବିରର ଲୋକ ବା ବାହାରର ଲୋକ । ସମସ୍ତେ ଏକା ସାଙ୍ଗରେ କଥା କହୁଛନ୍ତି । ସମସ୍ତେ ଉତ୍ତେଜିତ । ଦିନ ପ୍ରାୟ ସରି ଆସିଲାଣି । ତଥାପି ଫର୍ଚ୍ଚା ଅଛି । ତା'ଛଡ଼ା ଆଉ କିଛି ଦୂରରେ ମଧ୍ୟ ଅଳ୍ପ ଅଳ୍ପ ଲୋକ ବିଭିନ୍ନ ଗଛ ମୂଳେ ଏକାଠି ହୋଇ କଅଣ ସବୁ ଆଲୋଚନା କରୁଛନ୍ତି । ଦୂର ହେଲେ ବି ବୁଝି ହେଉଛି ସେମାନେ ବି ଉତ୍ତେଜିତ । କଥା କଅଣ ଅରିନ୍ଦମ ଠିକ୍ ବୁଝି ପାରିଲା ନାହିଁ । ନିଶ୍ଚୟ କିଛି ଘଟିଛି । ସେମାନେ ତ ସବୁ ଏଇ ଦି ପହର ବେଳକୁ ଜରାସନ୍ଧଙ୍କର ରାଜପ୍ରାସାଦର ହତା ଭିତରକୁ ଖାଇବାକୁ ଯାଇଥିଲେ । କାଇଁ, କିଛି ତ ନ ଥିଲା । କେହି କିଛି କହୁ ନ ଥିଲେ । ବେଶ୍ ଆରାମରେ ସମସ୍ତେ ଖାଇପିଇ କରି ଆସିଲେ । ଏପରିକି ସମସ୍ତେ ଖାଇ ପିଇ ଆସି ଶିବିର ଭିତରେ ଗଡ଼ପଡ଼ ହେଉଥିଲା ବେଳେ ବି କିଛି କଥା ନାହିଁ । ଚାରିଆଡ଼ ଚୁପ୍‌ଚାପ, ସମସ୍ତେ ଖୁସି । ହଠାତ୍ ଏହା ଭିତରେ କଅଣ ଘଟିଲା - ଏତେ ଉତ୍ତେଜନା, ପାଟିଗୋଳ । ସେ ଭାବିଲା ଶିବିର ଭିତରକୁ ଫେରିଯିବ କି ? ଗିରିବ୍ରଜରେ ଏ କିଛି ଦିନ ରହିଲା ପରେ, ଏଠିକାର ଚାଲିଚଳଣ ଦେଖିଲା ପରେ, ଜରାସନ୍ଧଙ୍କର କାରବାର ଓ ଜରାସନ୍ଧ ଓ କଂସର ସଂପର୍କ ଜାଣିଲା ପରେ, ସେ ସାବଧାନ ହେବାକୁ ଶିଖିଛି । ଆସିଲାବେଳେ ବାପା ବି ସେହି କଥା କହିଥିଲେ - ଯାଉଛୁ ଯା, ମଥୁରାରୁ ଗିରିବ୍ରଜ ବେଶ୍ ବାଟ, ଆଖି କାନ ଖୋଲା ରଖିବୁ, ସାବଧାନ ରହିବୁ । ଜରାସନ୍ଧ ସୁବିଧା ଲୋକ ନୁହେଁ । ଭାନୁପ୍ରକାଶ ବି ପ୍ରାୟ ସେହିକଥା କହନ୍ତି । ସବୁ ଦେଖ, ଶୁଣ, କିନ୍ତୁ ସତର୍କ ରୁହ । ମଗଧ ସୁବିଧା ଜାଗା ନୁହେଁ । ସେ

ଭାବିଲା ଭାନୁପ୍ରକାଶ ଅନେକ କଥା ଜାଣନ୍ତି । ଅନେକ କାମ କରନ୍ତି । ତାର କିଛି କିଛି ସୂଚନା ସେ ପାଇଛି । କିନ୍ତୁ ସେ ଅରିନ୍ଦମକୁ ସ୍ନେହ କରନ୍ତି । ତାଙ୍କର ଇଚ୍ଛା ନୁହେଁ ଯେ ଅରିନ୍ଦମ ଏପରି କୌଣସି ଗୋଳମାଳରେ ପଶୁ ଯେଉଁଠୁ ସେ ବାହାରି ପାରିବ ନାହିଁ । ସେ ସ୍ଥିର କଲା, ନାଁ, ପାଟିଗୋଳ, ଗୋଳମାଳ ସ୍ଥାନକୁ ନ ଯିବା ଭଲ ।

ତଥାପି ଅରିନ୍ଦମ ନିଜ ଆଗ୍ରହକୁ ଚାପି ପାରୁ ନ ଥାଏ । କ'ଣ ଘଟିଲା ? ସକାଳେ ତ କିଛି ନ ଥିଲା । ଯାହା ଘଟିଲା ଏଇ ଦି ପହରେ, ସମସ୍ତେ ଖାଇ ଆସିଲା ପରେ, ସେ ଯେତେବେଳେ ଶିବିରରେ ଗଡ଼ପଡ଼ ହେଉଥିଲା ସେତିକିବେଳେ । ତାର ହଠାତ୍ ମନେ ପଡିଲା ସଂଧ୍ୟା ପରେ ଭାନୁପ୍ରକାଶ ତାକୁ ଗୌରୀ ମାଙ୍କ ମନ୍ଦିରକୁ ଯିବାକୁ କହିଛନ୍ତି । ତାଙ୍କ ଲୋକ ବି ଆସିବେ । ସେଇଠି ବି ଖିଆପିଆ ହେବ । ସେ ଭାବିବାକୁ ଚେଷ୍ଟା କଲା, ଗୌରୀମା'ଙ୍କ ମନ୍ଦିରକୁ ଭାନୁପ୍ରକାଶ ବା ତାଙ୍କ ଲୋକମାନେ ଯେ ଆସନ୍ତି ବା ବସାଉଠା କରନ୍ତି, ଏକଥା କ'ଣ ଜରାସନ୍ଧଙ୍କୁ ଜଣା ନାହିଁ । ନା, ସମ୍ଭବ ନୁହେଁ, ଜରାସନ୍ଧଙ୍କ ପାଖରେ ନିଶ୍ଚୟ ଖବର ଥିବ । ସେ ଜରାସନ୍ଧଙ୍କ ବିଷୟରେ ଯେତିକି ଜାଣିଲାଣି ତାଙ୍କର ଲୋକମାନେ ଯେ ଗୌରୀମାଙ୍କ ମନ୍ଦିର ଉପରେ ନଜର ରଖି ନ ଥିବେ, ଏକଥା ଭାବି ହେଉନାହିଁ । ତଥାପି... ନାଁ, ଭାନୁପ୍ରକାଶ ସାବଧାନୀ ଲୋକ, ସେ ଯାହା କହନ୍ତୁ ବା କରନ୍ତୁ ନିଜ ନିରାପଦା ବିଷୟରେ ସତର୍କ । ସେ ଜାଣନ୍ତି ବିପଦ କେଉଁଠି, କାହାକୁ କେତେଦୂର ବିଶ୍ୱାସ କରି ହେବ, କେଉଁଠି କାମ ହେବ, କେଉଁଠି ହୋଇ ପାରିବ ନାହିଁ । ତା ନ ହେଲେ, ଅରିନ୍ଦମର ଯାହା ମନେ ହେଲା, ସେ ଜରାସନ୍ଧଙ୍କ ପରି ଶକ୍ତିଶାଳୀ ସମ୍ରାଟଙ୍କ ବିରୁଦ୍ଧରେ ଛିଡ଼ା ହୋଇ ପାରି ନ ଥାନ୍ତେ । ଆଉ ଏତେ ଦମ୍ଭ ଆଉ ସାହସରେ । ଭାନୁପ୍ରକାଶଙ୍କ କଥା ପୁଣି ମନେ ପଡିଲା - ଲୋକ ବଂଶ ପରଂପରାରେ ରାଜା ହେଉଛନ୍ତି ଠିକ୍, କିନ୍ତୁ ରାଜାମାନେ ଯଦି ଲୋକମାନଙ୍କର ସୁଖ ସୁବିଧା, ଭଲମନ୍ଦ ଠାରୁ ଦୂରେଇ ଯିବେ, ସେମାନଙ୍କୁ ରାଜା ବୋଲି ମାନିବାର କୌଣସି କାରଣ ନାହିଁ । ଆର୍ଯ୍ୟ ବସତି ଆରମ୍ଭରୁ କେହି ରାଜା ନ ଥିଲେ । କ୍ରମେ ଲୋକମାନେ ନିଜର ଯୋଗ୍ୟତା ଓ ଦକ୍ଷତାରେ ରାଜା ହେଲେ । ତା'ପରେ ବଂଶ ପରଂପରା । କିନ୍ତୁ ପ୍ରଜାଙ୍କ ଯୋଗୁଁ ରାଜା, ଏଇଟାହିଁ ଅସଲ କଥା । ଏ କଥା ମନେ ରଖିବାକୁ ହେବ । କିନ୍ତୁ ଅରିନ୍ଦମକୁ ଯାହା ଆଶ୍ଚର୍ଯ୍ୟ ଲାଗେ ସେ ହେଲା ଭାନୁପ୍ରକାଶ ଏକା ନୁହନ୍ତି । ତାଙ୍କସାଙ୍ଗରେ ଆହୁରି ଅନେକ ଲୋକ ଅଛନ୍ତି । ଆଉ ଖାଲି ଗିରିବ୍ରଜ ବା ମଗଧରେ ନୁହେଁ, ଆର୍ଯ୍ୟାବର୍ତ୍ତର ବହୁ ବିଭିନ୍ନ ରାଜ୍ୟରେ ସେମାନଙ୍କର ଲୋକ ଅଛନ୍ତି । ସେମାନେ ଆସନ୍ତି ଯାଆନ୍ତି, ବିଭିନ୍ନ ରାଜ୍ୟର ଖବର

ଏକାଠି ହୁଏ, କୋଉଠି କଅଣ କରିବାକୁ ହେବ ସେ ବିଷୟରେ ନିଷ୍ପତ୍ତି ହୁଏ । ଅରିନ୍ଦମ ଅନୁଭବ କରିଛି ଏ ଠିକ୍ ସ୍ଥିର, ନିଶ୍ଚଳ ଉପର ପାଣି ତଳେ ତଳେ ଯେପରି ଗୋଟାଏ ପ୍ରଖର ଜଳ ସ୍ରୋତ । ଉଦ୍ଦେଶ୍ୟ ଆଉ ଯାହା ଥାଉନା କାହିଁକି, ଲୋକମାନଙ୍କୁ ସେମାନଙ୍କର ଦାବି ଓ ଅଧିକାର ସଂପର୍କରେ ସଚେତ କରିଦେବା ବଡ଼ କଥା । ତାହା ହିଁ ଆମେ କରୁ, ଭାନୁପ୍ରକାଶ କହିଥିଲେ । ମଥୁରାକୁ ବି ଆମେ ଯିବୁ, କିନ୍ତୁ ଏବେ ନୁହେଁ, ପରେ, କଂସ ରାଜା ହେଲା ପରେ ।

ଅରିନ୍ଦମ ଲକ୍ଷ୍ୟ କଲା ପାଟିଗୋଳ ଯେପରି ନ କମି ବଢ଼ି ଚାଲିଛି । ଟିକିଏ ଦୂରରେ, ପାଞ୍ଚ ଛଅଟା ବଡ଼ ବଡ଼ ଗଛ ଏକାଠି ହୋଇ ଗୋଟିଏ ଛୋଟ ତୋଟା ପରି ଦିଶୁଛି, ତାରି ତଳେ । ସେ ପ୍ରଥମେ ଦେଖିଲାବେଳେ ଯାହା ଲୋକ ଥିଲେ, ଆହୁରି କିଛି ଲୋକ ମିଶିଲେଣି । ତା ନିଜ ଶିବିରର ଲୋକ ଦୂରରୁ ବାରି ହେଉଛି । ଅନ୍ୟ ଶିବିରର ଲୋକ ବି ମନେ ହେଉଛି ଅଛନ୍ତି । ହଁ କିଛି ସିପେହୀ ବି, ତା ସହିତ କିଛି ଅନ୍ୟ ପ୍ରକାର ପୋଷାକ ପିନ୍ଧିଥିବା ଲୋକେ । ଏ ପୋଷାକରେ ଏମିତି ଲୋକ ସେ ଗିରିବ୍ରଜରେ ଏପର୍ଯ୍ୟନ୍ତ ଦେଖି ନ ଥିଲା । ଆଉ ଅନ୍ୟ ଢଙ୍ଗର କିଛି ଲୋକ । ସେଇସବୁ ଲୋକ ଯେ କି ଗୋଳମାଳ ହେଉଥିବା ଜାଗାରେ କୁଆଡୁ କୁଆଡୁ ଶୂନ୍ୟରୁ ଆସି ଯୁଟି ଯାଆନ୍ତି । ସେ ଗୋଟାଏ ଗଛ ତଳେ ଛିଡ଼ା ହୋଇଥିଲା । ସେଇଠି ଗଛରୁ ବାହାରିଥିବା ଗଣ୍ଡିପରି ଗୋଟାଏ ମୋଟ ଚେର ଉପରେ ସେ ବସିବାକୁ ଚେଷ୍ଟା କଲା । ନାଁ, ଗୋଳମାଳ ପାଖକୁ ସେ ଯିବନି । ଏଇଠି କିଛି ସମୟ ରହି ଦେଖାଯାଉ କଅଣ ହେଉଛି । ସେ ଚେର ଉପରେ ବସିଲା । ଦିନ ସରି ଆସିଲାଣି । ଭାନୁପ୍ରକାଶଙ୍କ ଲୋକ ଆସିବ ବୋଲି ଖବର ଆସିଥିଲା । ଆସୁ । 'ଅରିନ୍ଦମ', ଅରିନ୍ଦମ ସାମାନ୍ୟ ଚମକି ଚାରିଆଡକୁ ଚାହିଁଲା । କାହିଁ କେହି ତ କୁଆଡ଼େ ଦିଶୁନି । କିଏ ଡାକିଲା ? ପୁଣି ଥରେ ଡାକ ଶୁଭିଲା, 'ଅରିନ୍ଦମ' । ସେ ଦେଖିଲା ଗଛ ଆଢୁଆଳରେ ସେ ପାଖକୁ କିଏ ଜଣେ ବସିଛି । ସେଇ ବୋଧହୁଏ ଡାକୁଛି । ଲୋକଟି ସେ ପାଖରୁ ଉଠି ଅରିନ୍ଦମର ଆଉ ଟିକିଏ ପାଖକୁ ଲାଗି ଆସିଲା । କହିଲା, 'ଗୋଳମାଳକୁ ନ ଯାଇ ତୁମେ ଏଠି ବସି ଭଲ କରିଛ । ସେ ପାଖକୁ ଯିବା ଦରକାର ନାହିଁ ।'

ଅରିନ୍ଦମର କିନ୍ତୁ ଆଗ୍ରହ କମି ନ ଥାଏ । ସେ ସେଆଡକୁ ଚାହିଁ କହିଲା, 'ଗୋଳମାଳ ମତେ ଭଲ ଲାଗେ ନା । ମୁଁ ସେଇଯୋଗୁ ଗଲିନି । କିନ୍ତୁ ଗୋଳମାଳ କାହିଁକି ? ଆମେ ଜରାସନ୍ଧଙ୍କ ରାଜବାଟୀ ଭିତରକୁ ଖାଇବାକୁ ଗଲାବେଳେ ତ କିଛି ନଥିଲା ।' 'ସେଇଟାହିଁ ଗୋଳମାଳ । ଚାରିପାଖର ଏ ଶିବିର ସବୁ ଦେଖୁଛ । ତୁମେ ଯେମିତି ଜରାସନ୍ଧଙ୍କର ଅତିଥି, ସେମାନେ ବି ସେମିତି । କିନ୍ତୁ ତୁମେ ବିଶେଷ

ନିମନ୍ତ୍ରଣରେ ରାଜବାଟୀ ଭିତରକୁ ଗଲ, ତୁମକୁ ଅଲଗା କରି ଖାଇବାକୁ ଦିଆଗଲା । ଏଇଟା ଅନେକ ସହ୍ୟ କରି ପାରୁନାହାନ୍ତି । ଜରାସନ୍ଧଙ୍କର ଝିଅଙ୍କୁ କଂସ ବିଭା ହେଲେ ମଧ୍ୟ, ଏଇଟା ରାଜକନୋଚିତ ହେଲା ନାହିଁ । ବିଶେଷ କରି ସମ୍ରାଟ ଜରାସନ୍ଧଙ୍କ ପକ୍ଷରେ ।' ଅରିନ୍ଦମ ଭାବିଲା ହୁଏତ ସେଇଆ । କିନ୍ତୁ ମନ ରାଜି ହେଲା ନି ଖାଲି ଖାଇବା ପାଇଁ ଏ ଗୋଳମାଳ ! ବିଶ୍ୱାସ ହେଉନାହିଁ । ସେ ଲୋକଟି ଆଡକୁ ବୁଲି ପଡିଲା । ବାଙ୍ଗରା ହୋଇ ଲୋକଟି, ଦେହ ପତଳା ରଙ୍ଗ କଳା । ମୁଣ୍ଡର ବାଳ ଟିକେ କେମିତି ଅନ୍ୟ ଭାବରେ କଟା ଯାଇଛି । ମଗଧର ବାଳ କାଟିବା ଢଙ୍ଗ ନୁହେଁ । ଏପରିକି ପୋଷାକ ପିନ୍ଧିବା ଢଙ୍ଗ ବି ଅଲଗା । ଏ କିଏ ? ଲୋକଟାର ଆଖି ଦିଟା ଚଂଚଳ, ମନେ ହେଉଛି ଚତୁର । ଅରିନ୍ଦମ ମନେ ମନେ ସାବଧାନ ହେଲା । ଉଠି ଛିଡା ହେଲା, କହିଲା, 'କେବଳ ଖାଇବା ପାଇଁ ଏ ଗୋଳମାଳ । ଠିକ୍ ବିଶ୍ୱାସ ହେଉନାହିଁ । କେମିତି କେମିତି ଲାଗୁଛି ।' ଲୋକଟି ଅରିନ୍ଦମକୁ ଚାହିଁ ସାମାନ୍ୟ ହସିଲା, କହିଲା 'ନାଁ, ମୁଁ ବି ବିଶ୍ୱାସ କରେ ନା ।' 'ତା'ହେଲେ...' ଅରିନ୍ଦମ କହିଲା । ଲୋକଟି କହିଲା, 'ଯେଉଁମାନେ ସେଠି ପାଟିଗୋଳ କରୁଛନ୍ତି, ଭଲ କରି ଦେଖ, ତୁମ ଶିବିରର ଲୋକ ଅଛନ୍ତି ?'

'ନାଁ, କେହି ତ ଦିଶୁ ନାହାନ୍ତି ।' ଅରିନ୍ଦମ କହିଲା ।

'ବାସ୍ ! ଅନ୍ୟ ଶିବିର ?' ଲୋକଟି ପୁଣି ପଚାରିଲା ।

'ତା'ତ ଠିକ୍ କହି ପାରିବିନି । ତେବେ ମନେ ହେଉଛି ଅଛନ୍ତି ।'

'ସିପେହୀ ?'

ଅରିନ୍ଦମ ଭଲ କରି ଚାହିଁଲା, 'ହଁ ଅଛନ୍ତି । ବେଶ୍ ଅଛନ୍ତି । କିନ୍ତୁ ଆଉ କିଛି ଲୋକ ବି ଦିଶୁଛନ୍ତି । ତାଙ୍କର ପୋଷାକ ପତ୍ର ଅନ୍ୟ ପ୍ରକାର । ସେ କିଏ ?' 'ଠିକ୍ । ବସ୍, ଅସଲ କଥା କହୁଛି ।' ସେ ଲୋକ କହିଲା । ଅରିନ୍ଦମ ବସିଲା । ଲୋକଟି ଆସି ତା' ପାଖରେ ବସି ପଡ଼ିଲା, କହିଲା – 'ଏ ଗୋଳମାଳ ଲାଗିଛି ଜରାସନ୍ଧଙ୍କର ସିପେହୀ ଆଉ ପାଞ୍ଚାଳ ଶିବିରର ଲୋକଙ୍କ ଭିତରେ । ଅନ୍ୟ ଶିବିରର ଲୋକ ବି ଅଛନ୍ତି । ଅବନ୍ତୀ, କୋଶଳ । କିନ୍ତୁ ମୁଖ୍ୟ ଗୋଳମାଳ ସିପେହୀ ଆଉ ପାଞ୍ଚାଳ ଶିବିରର ଲୋକଙ୍କ ଭିତରେ ।'

'କାହିଁକି ?' ଅରିନ୍ଦମ ଆଗ୍ରହୀ ହୋଇ ଉଠିଲା ।

'ଏ ଗୋଳମାଳର ଆରମ୍ଭ ସେଇ କୁସ୍ତି ହବା ଦିନଠୁଁ । କୁସ୍ତି ଆଖଡ଼ାରେ ସଂକାଶଙ୍କୁ ପାଞ୍ଚାଳର ବିଖ୍ୟାତ ମଲ୍ଲ ସୂର୍ଯ୍ୟ ଯେପରି ମାରି ଦିଆଗଲା ସେହି ଦିନଠୁଁ ସେମାନେ ରାଗିକରି ଅଛନ୍ତି । କଂସ ସୂର୍ଯ୍ୟ ସଂକାଶଙ୍କ ଠାରୁ ଯେ ବେଶି ଯୋଗ୍ୟ ଏ


Digitized by srujanika@gmail.com

କଥା ସେମାନେ ମାନିବାକୁ ନାରାଜ । ସେମାନଙ୍କର ଧାରଣା ଏସବୁ ଜରାସନ୍ଧଙ୍କର କୁଚକ୍ର । କେବଳ କଂସକୁ ନାଁ ଦବା ପାଇଁ ଏସବୁ କରାହେଲା । କିନ୍ତୁ ଶେଷ ପର୍ଯ୍ୟନ୍ତ ବୋଧହୁଏ କିଛି ହେଇ ନ ଥାନ୍ତା । ସେମାନେ ଚୁପ୍‌ଚାପ୍ ପାଞ୍ଚାଳ ଫେରିଯାଇ ଥାନ୍ତେ । ଆଉ ଦି ଦିନ ଭିତରେ ସେମାନେ ଫେରିଯିବା କଥା । କିନ୍ତୁ ଆଜି ଅନ୍ୟ କିଛି ଗୋଳମାଳ ଘଟିଛି ।'

'ଆଜି...' ଅରିନ୍ଦମ ସାମାନ୍ୟ ଭାବିଲା, 'ଆଜି ତ ଆମେ ସବୁ ଭୋଜି ଖାଇବା ସମୟରେ ଜରାସନ୍ଧ ଓ କଂସ ଉଭୟ ସେଠି ଥିଲେ । ମନେ ହେଉଥିଲା ସବୁ ଠିକଠାକ ଚାଲିଛି । ଜରାସନ୍ଧ ବହୁତ ଖୁସି...।'

'ତା' ହୋଇପାରେ...' ଲୋକଟି କହିଲା, 'ଜରାସନ୍ଧଙ୍କୁ ବୁଝିବା ସହଜ ନୁହେଁ । ତାଙ୍କର ସବୁ କାମ ପଛରେ ଗୋଟାଏ କିଛି ମତଲବ ଥାଏ । ତେବେ ସେତେବେଳେ ହୁଏତ ଜରାସନ୍ଧ କଅଣ ଘଟିଛି ଜାଣି ନ ଥିଲେ, ପରେ ଜାଣିଲେ...'

'କଅଣ ? ତାଙ୍କ ବିରୁଦ୍ଧରେ କିଛି... ?' ଅରିନ୍ଦମ ପଚାରିଲା ।

'ବୋଧେ ସେଇଆ । ତୁମେ ସବୁ ତୁମର ଶିବିରକୁ ଫେରି ଆସିବା ପରେ, ତୁମେ ଶୋଇଥିଲ ବୋଧେ ସେଇ ସମୟରେ, କିଛି ସିପେହୀ ଓ ଆଉ କିଛି ଜରାସନ୍ଧଙ୍କର ବିଶ୍ୱସ୍ତ ଲୋକେ ପାଞ୍ଚାଳ ଶିବିରକୁ ଯାଇଁ ପାଞ୍ଚାଳ ଲୋକମାନଙ୍କୁ କଅଣ ପଚରାଉଚରା କରିଛନ୍ତି । କୁସ୍ତି ଆଖଡ଼ାରେ ସୂର୍ଯ୍ୟସଂକାଶଙ୍କୁ ମାରିଦବା ପରଠାରୁ ପାଞ୍ଚାଳ ଶିବିର ଉପରେ ସେମାନେ ନଜର ରଖିଛନ୍ତି । ତାଙ୍କର ବିଶ୍ୱାସ ଆଜି ଯାହା ଘଟିଲା ସେଥିରେ ପାଞ୍ଚାଳ ଲୋକଙ୍କ ହାତ ଅଛି ।'

'କିନ୍ତୁ, କଅଣ ଘଟିଲା ?...'

'ତା ମୁଁ ଠିକ୍ ଜାଣେ ନା । କିଛି ଗୋଟାଏ ଖୁବ୍ ଗୁରୁତର ନିଶ୍ଚୟ । ଆଉ ଜରାସନ୍ଧଙ୍କୁ ଏପରି ଧକ୍କା ଲାଗିଛି ଯା' ସେ ଘଟିବ ବୋଲି କେବେ ଭାବି ନ ଥିଲେ । ମୁଁ ଶୁଣୁଛି କିଛି ସିପେହୀଙ୍କର ମୁଣ୍ଡକାଟ ହେଇଗଲାଣି । ସେମାନେ ପାଞ୍ଚାଳ ଶିବିର ଉପରେ ରାଗି ନିଆଁ ହେଇ ରହିଛନ୍ତି । ସେଇଠୁ ପାଟିଗୋଳ, ଗୋଳମାଳ । ଜରାସନ୍ଧଙ୍କର ବି ବୋଧହୁଏ ଇଚ୍ଛା ଏ ଗୋଳମାଳ ହେଉ । ସେ ପାଞ୍ଚାଳ ଦଖଲ କରିନେବାକୁ ଚାହାନ୍ତି ।'

ଅରିନ୍ଦମ କିଛି ସମୟ ଭାବିଲା । କାରଣଟା କଅଣ ହୋଇପାରେ ବୁଝିବା ସମ୍ଭବ ନୁହେଁ । କାରଣ ଯାହା ହେଉ, ଆରେ ବାପ୍ । ଏ ତ ରାଜନୀତି, ରାଜ୍ୟ ଜୟ କଥା ପଶିଗଲାଣି । ସେ ଲୋକଟିକୁ ଭଲ କରି ଚାହିଁଲା । ଏ ଲୋକଟି କିଏ । ସେ ଏତେ କଥା ଜାଣିଲା କେମିତି ? ତାକୁ ଏତେ କଥା କହୁଛି କାହିଁକି ? ସେ କହିଲା,

'ଠିକ୍ କଥା । ଏ ଘଟଣା ନିଶ୍ଚୟ ଖୁବ୍ ଗୁରୁତର । ହେଇ ସେଠି ଗୋଳମାଳ କମିବା ପରି ତ ମନେ ହେଉନି । ପାଟି ଗୋଳ, କଥା କଟାକଟି ଚାଲିଛି । ତେବେ ପାଞ୍ଚାଳ ଶିବିରର କିଛି ଲୋକଙ୍କୁ ମୁଁ ଜାଣେ । ସେମାନେ ସବୁ ରାଗିଛନ୍ତି ନିଶ୍ଚୟ । କିନ୍ତୁ ଜରାସନ୍ଧଙ୍କର ନିଜ ରାଜ୍ୟରେ, ତାଙ୍କର ଲୋକବାକ ଯେଉଁଠି ଭର୍ତ୍ତି ହୋଇଛନ୍ତି, ସେଠି ସେମାନେ ତାଙ୍କ ବିରୁଦ୍ଧରେ କିଛି ଗୋଟେ କରିବେ ଏକଥା ବିଶ୍ୱାସ ହେଉନାହିଁ ।

'ମୁଁ ବି ତା ଭାବୁନି । କିନ୍ତୁ କଅଣ ଘଟିଛି ସଠିକ ନ ଜାଣିଲେ କିଛି କହି ହବ ନି ।' ଲୋକଟି ଉଠି ଛିଡା ହେଲା । କହିଲା, 'ଦେଖ, ଏଠି ଆମେ ବେଶି ସମୟ ରହିବା ଠିକ୍ ନୁହେଁ । ମୁଁ ଏଠିକା ଲୋକ ନୁହଁ ତୁମେ ବି ନୁହଁ । ମୁଁ ଯାଉଛି । ତୁମେ ବି ଶିବିରକୁ ଫେରିଯାଅ ।'

ଅରିନ୍ଦମ ଲକ୍ଷ୍ୟ କଲା ଲୋକଟି ବୟସ୍କ, ଧୀର ସ୍ଥିର ପ୍ରକୃତିର । ସେ ଭାବିଲା ସେ ଯେ ହେଉ ଠିକ କଥା କହୁଛି । ଏଇ କେତେ ଦିନରେ ସେ ଯାହା ଦେଖିଲାଣି ଓ ଜାଣିଲାଣି, ଜରାସନ୍ଧ ଯେ ଅତ୍ୟନ୍ତ ଚତୁର ଏଥିରେ ସନ୍ଦେହ ନାହିଁ । ନିଶ୍ଚୟ କିଛି ଘଟିଛି, ଆଉ ଜରାସନ୍ଧଙ୍କୁ ଖୁବ୍ ବାଧୁଛି । ଶେଷ ପର୍ଯ୍ୟନ୍ତ ଜରାସନ୍ଧ ଯେ କଅଣ କରିବେ ତା କହିବା ସମ୍ଭବ ନୁହେଁ । ହଠାତ୍ ତାର ଭାନୁପ୍ରକାଶଙ୍କ କଥା ମନକୁ ଆସିଲା । ତାଙ୍କ ଲୋକଙ୍କର ଏଥିରେ କିଛି କରିବାର ନାହିଁ ତ ? ସେ ଦେଖିଲା ତା ସହିତ ଏପର୍ଯ୍ୟନ୍ତ କଥା କହୁଥିବା ଲୋକଟି ଗୋଳମାଳ ଆଡକୁ ଚାହିଁ ଯେପରି କଅଣ ଭାବୁଛି । ସେ ଆସ୍ତେ ଆସ୍ତେ ସେମାନେ ବସିଥିବା ଗଛମୂଳୁ ଉଠି ଚାଲିଯିବାକୁ ଆରମ୍ଭ କଲାଣି । ହଠାତ୍ ତାର ମନେ ହେଲା ଲୋକଟି ଯେପରି ତାର ଅତ୍ୟନ୍ତ ପାଖକୁ ଲାଗି ଆସିଲା । ଆଉ ସେ ଫିସଫିସ କରି ଶୁଣିଲା, 'ଆଜି ସଂଧ୍ୟା ପରେ, ଗୌରୀମାଙ୍କ ମନ୍ଦିର' । ସେ ଚମକି ଉଠି ଚାହିଁଲା । ନାଁ ତ, ଲୋକଟି ଦୂରକୁ ଚାଲିଗଲାଣି, ଚାଲିଚାଲି ଯାଉଛି । ତେବେ ଏକଥା କିଏ କହିଲା ? ସଂଧ୍ୟା ପରେ ସେ ଗୌରୀମାଙ୍କ ମନ୍ଦିରକୁ ଯିବ ଏହାହିଁ ନିର୍ଦ୍ଦେଶ ।

ସେ ବୁଝିଲା ଏ ଲୋକଟି ଯିଏ ହେଉ, ଯା' କହୁ, ସେ ନିଶ୍ଚୟ ଭାନୁପ୍ରକାଶଙ୍କ ଲୋକ । ଆଉ ଗୋଟିଏ କଥା ବି ବୁଝିଲା । ଭାନୁପ୍ରକାଶଙ୍କ ଲୋକ ସବୁଆଡ଼େ ରହିଛନ୍ତି, ତା ଉପରେ ସବୁବେଳେ ନଜର ରଖିଛନ୍ତି । ଜରାସନ୍ଧ ଚତୁର ହେଲେ ଭାନୁପ୍ରକାଶ ଆହୁରି ଚତୁର । ତାର ମନେ ହେଲା ତା'ଉପରେ ନଜର ରଖିବା ଅତି ସାମାନ୍ୟ କାମ । ସେମାନଙ୍କର ଅସଲ ନଜର ତା ଉପରେ ନୁହେଁ ଜରାସନ୍ଧଙ୍କ ଉପରେ । ସେ କଅଣ କରୁଛନ୍ତି ନ କରୁଛନ୍ତି ତାଙ୍କ କାମ ଉପରେ । ଭାନୁପ୍ରକାଶଙ୍କ କଥା ତାର ମନେ ପଡ଼ିଲା । ଯୁଦ୍ଧଟା କୁସ୍ତି କସରତ ବାହୁ ବଳରେ ହୁଏ ନା, ବୁଦ୍ଧିରେ

ହୁଏ, ବାହୁବଳ ବୁଦ୍ଧିକୁ ସାହାଯ୍ୟ କରେ । ସେ ପାଟିଗୋଳ ହେଉଥିବା ଜାଗାକୁ ଚାହିଁଲା । ଗୋଳମାଳ କମି ଆସିଲାଣି । କିନ୍ତୁ ଲୋକ ସେମିତି ଜମିଛନ୍ତି । ସିପେହୀ ତ ଆଗରୁ ଥିଲେ । କିଛି ଘୋଡ଼ାଚଢ଼ା ସିପେହୀ ବି ଆସି ପହଞ୍ଚିଲେଣି । ଆଉ କିଛି କିଛି ଅନ୍ୟ ଲୋକ । ଭାନୁପ୍ରକାଶଙ୍କ ଲୋକ ବି ସେମାନଙ୍କ ସାଙ୍ଗରେ ଅଛନ୍ତି, ଏଥିରେ ଭୁଲ୍ ନାହିଁ । ସେମାନେ ହୁଏତ ଗୋଳମାଳ ବଢ଼ଉ ଥିବେ । କହି ହବ ନି । ସେ ସ୍ଥିର କଲା ସଂଧ୍ୟା ପରେ ସେ ଗୌରୀମାଙ୍କ ମନ୍ଦିରକୁ ଯିବ । ଆଜିର ଏ ଗୋଳମାଳ କାହିଁକି ସେ ନିଶ୍ଚୟ ସେଠୁ ଖବର ପାଇବ । ସେ ପର୍ଯ୍ୟନ୍ତ ସେ ଶିବିରରେ ହିଁ ରହିବ । ସେ ନିଜ ଶିବିରକୁ ଫେରି ଆସିଲା ।

କିନ୍ତୁ ଆଶ୍ଚର୍ଯ୍ୟ,ଶିବିର ଭିତରେ ବି ଗୋଳମାଳ । ବାହାର ପରି ଏତେ ନ ହେଲେ ବି ଲୋକେ ବେଶ୍ ଉତ୍ତେଜିତ । ଦି ତିନିଜଣ ଅରିନ୍ଦମ ପାଖକୁ ଲାଗି ଆସିଲେ, କହିଲେ, 'କି ହୋ ଅରିନ୍ଦମ, ତୁମେ ଥିଲ କୁଆଡ଼େ ?' 'କାହିଁକି, ମୁଁ ଏଇ ସାମାନ୍ୟ ବାହାରକୁ ଯାଇଥିଲି' ସେ କହିଲା । 'ବାହାରେ ତ ବେଶ୍ ଗୋଳମାଳ, ତୁମେ କୁଆଡ଼େ ଯାଇଥିଲ ? ଯୁଦ୍ଧ ଲାଗିଗଲାଣି ଯେ !' ଦି ତିନି'ଜଣ ଏକା ସାଙ୍ଗରେ ପାଟି କଲେ – 'ଯୁଦ୍ଧ !' 'କିହୋ ଯୁଦ୍ଧ କଅଣ ?' ଅରିନ୍ଦମ ଯେପରି ଶୂନ୍ୟରୁ ପଡିଲା, କି ଯୁଦ୍ଧ ? କାହା କାହା ଭିତରେ ?'

'ଧନ୍ୟ, ଧନ୍ୟ', ଜଣେ ବୟସ୍କ ଲୋକ ପାଖକୁ ଲାଗି ଆସିଲେ, 'ତମ ଟୋକାଙ୍କୁ ଆଉ ପାରି ହବନି । ଖିଆ ପିଆ ତ ଚଉକସ୍ । କିହୋ, ଯୁଦ୍ଧ କଥା ଜଣା ନାହିଁ ? ମଗଧ ଆଉ ପାଞ୍ଚାଳ ଭିତରେ । ଦେଖୁନା, ବାହାରେ କେମିତି ଘୋଡ଼ସବାର ଚାଲିଛନ୍ତି ।'

ଅରିନ୍ଦମ ଭାବିଲା, ହଁ ବାହାରେ ଗୋଳମାଳ ଅଛି, କିନ୍ତୁ ଗୋଟା ଯୁଦ୍ଧର କୌଣସି କଥା ତ ସେ ଦେଖିଲାନି । ହଁ, ଘୋଡ଼ା ସବାର ଅଛନ୍ତି ସତ, କିନ୍ତୁ ଯୁଦ୍ଧ କରିବାର କୌଣସି ଢଙ୍ଗ ତ ନ ଥିଲା । ତା ଛଡ଼ା ଏଇ ତ କିଛି ଘଟିକା ଆଗରୁ ସେମାନେ ଜରାସନ୍ଧଙ୍କ ନଅରରେ ବେଶ ଶାନ୍ତି ସୁସ୍ଥରେ ଖାଇକରି ଆସିଛନ୍ତି । ଏ ତ ଯୁଦ୍ଧର ଲକ୍ଷଣ ନୁହେଁ । ସେ ଯାହା ଭାବୁଥିଲା ସେଇଆ କହିଲା, 'କାହିଁ, ସେମିତି ଢଙ୍ଗ ତ ମୁଁ ଦେଖିଲିନି ।'

ବୟସ୍କ ଜଣକ ବିରକ୍ତ ହେଲେ । ଅନ୍ୟମାନଙ୍କୁ ଡାକି କହିଲେ, 'ଶୁଣୁଛ, ଅରିନ୍ଦମର କଥା । ଯୁଦ୍ଧର କୁଆଡେ ଗୋଟାଏ ଢଙ୍ଗ ଥାଏ, ଆଉ ସେ ଢଙ୍ଗଟା ସେ ଦେଖିଲାନି ।'

'ନାଇଁ ନାଇଁ ସେ କଥା ନୁହେଁ ।' ସେ ତରବର ହୋଇ କହିଲା, 'ଯୁଦ୍ଧଟା


Digitized by srujanika@gmail.com

ଗୋଟାଏ କିଛି ଛୋଟମୋଟ କଥା ନୁହେଁ । ସେଇଆ ମୁଁ କହିଥିଲି ।'

'ନାଇଁ ନାଇଁ ଅରିନ୍ଦମ ଠିକ୍ କହୁଛି ?' ଆଉ ଜଣେ ବୟସ୍କ ଲୋକ ପାଖେଇ ଆସିଲେ, 'ଆମ ମଥୁରାର ଜରାସନ୍ଧଙ୍କ ସାଙ୍ଗରେ ସଂପର୍କ ଭଲ । କଂସ ଜରାସନ୍ଧଙ୍କର ଜୋଇଁ ହେଲେ । ଆମେ ଜୋଇଁଙ୍କ ଲୋକ । ବାହାରେ ଗୋଳମାଳ ହଉଛି ଠିକ୍ । କାରଣ କଅଣ ଆମକୁ ଜଣା ନାହିଁ । ଆମେ ସେ ଗୋଳମାଳ ଭିତରେ ନ ପଶିବା ଭଲ । ସଂଧ୍ୟାରେ ଶିବିର ବାହାରକୁ ନ ଯିବା ଠିକ୍ ହେବ ।' ସେ ଅରିନ୍ଦମକୁ ଚାହିଁଲେ, 'ଅରିନ୍ଦମ, ତୁମେ ଚୁପ ହୋଇ ବସି ପାରବ ନାହିଁ, ମୁଁ ଜାଣେ, ଏଆଡ଼େ ସେଆଡ଼େ ଚାଲିଯାଅ । କିନ୍ତୁ ତୁମର କିଛି ହେଲେ ବାପା ବହୁତ ବ୍ୟସ୍ତ ହେବେ । ସେ କଥା ମନେ ରଖିଥା । ଆମେ ଆଉ ତିନିଚାରି ଦିନ ଭିତରେ ଏଠୁ ଫେରିଯିବା ।' ଅରିନ୍ଦମ କିଛି କହିଲା ନାହିଁ । ଏ ଆଡ଼େ ସେଆଡେ ଚାହିଁଲା । କିନ୍ତୁ ଟିକିଏ ଦୂରରୁ ଜଣେ ଟୋକା ବୟସର ଲୋକ ପାଟିକଲା, 'ଗୁହ, ଗୁହ, କଅଣ ଅରିନ୍ଦମକୁ ଏତେ ବୁଝଉଚ ହେ ! ସେ କଅଣ ଟିକି ଛୁଆ ହେଇଛି । ଆମେ କାହାର ଗୋଲାମ ନୋହୁଁ । ଷଡଯନ୍ତ କରି ଲୋକଙ୍କୁ ମାରି ଦିଆଯିବ । ମଗଧ ପାଞ୍ଚାଳ ଯୁଦ୍ଧ ତ ସେହିଯୋଗୁଁ । ତାଙ୍କର ଯୁଦ୍ଧ ହେଲେ, ଆମର ଦୋଷ କଅଣ, ଆମେ କଅଣ କରିବା ।'

'ତୁମେ ଚୁପ ରହିବ ।' ବୟସ୍କ ବ୍ୟକ୍ତି ଜଣଙ୍କ ବିରକ୍ତ ହେଲେ । 'ଚୁପ ରହିବାହିଁ ତୁମର କାମ, ଜରାସନ୍ଧଙ୍କ ରାଜ୍ୟରେ ବସି, ତାଙ୍କର ଅନ୍ନ ଖାଇ, ତାଙ୍କ ବିରୁଦ୍ଧରେ କିଛି କହିବା ବୋକାମୀ । ତୁମେ କଅଣ କରି ପାରିବ ? ଯୁଦ୍ଧ କରିବ ? ଯାଅ, ଦେଖ, ଭାବୁଛ, କଂସ ଏକଥା ଜାଣିଲେ କଅଣ ହେବ । ଭଲରେ ଭଲରେ ଆସିଛ । ଭଲରେ ଭଲରେ ଫେରିଯା । ବାଜେ କଥାରେ ମୁଣ୍ଡ ପୂରା ନା ?' ଆଉ ଜଣେ ତାଙ୍କୁ ସମର୍ଥନ କଲେ । ଏ ଠିକ୍ କଥା । ମଗଧ ପାଞ୍ଚାଳ ଯୁଦ୍ଧ ହେଉଛି । ହେଉ । ସେ କଥା ଜରାସନ୍ଧ ଦ୍ରୁପଦ ବୁଝିବେ । ଆମେ ମୁଣ୍ଡ ପୂରେଇବା ଠିକ୍ ନୁହେଁ ?'

ଅରିନ୍ଦମ ତଥାପି ବୁଝିପାରୁ ନ ଥାଏ, ଏ ଯୁଦ୍ଧ କଥା ଉଠୁଛି କାହିଁକି । ଜରାସନ୍ଧ ଚକ୍ରବର୍ତ୍ତୀ, ଦ୍ରୁପଦ ବି ବେଶ୍ ଶକ୍ତିଶାଳୀ । ହସ୍ତିନାର ଭୀଷ୍ମଙ୍କ ପରି । ସେମାନଙ୍କ ଭିତରେ ଯଦି ଯୁଦ୍ଧ ହେବ ସେ ସୂର୍ଯ୍ୟସଂକାଶ ପରି ଛୋଟ କାରଣ ପାଇଁ ବିଶ୍ୱାସ ହେଉନାହିଁ । ବରଂ ସେମାନେ ପରସ୍ପରଠାରୁ ଦୂରେଇ ରହିବାକୁ ବେଶି ଚେଷ୍ଟା କରିବେ । ସେଇଟାହିଁ ସ୍ୱାଭାବିକ । ସେମାନଙ୍କ ଭିତରେ ଯୁଦ୍ଧ ହେଲେ ସେ ରାଜ୍ୟ ଜୟ ପାଇଁ, କ୍ଷମତା ପ୍ରତିଷ୍ଠା କରିବା ପାଇଁ ହେବ । ଆଉ ସେ ଏମିତି ହୁ ହା, ସକାଳକୁ


Digitized by srujanika@gmail.com

ଜଣା ନାହିଁ, ଦି ପହରେ ହେଇଗଲା- ଏ କେମିତି କଥା ! ସେ କାହାକୁ କିଛି ନ କହିବାକୁ ସ୍ଥିର କଲା ।

ସେ ସିନା ଚୁପ୍‌ଚାପ ରହିଲା, କିନ୍ତୁ ଅନ୍ୟମାନେ ସମାନ ଭାବରେ ଉତ୍ତେଜିତ ହୋଇ କଥାବାର୍ତ୍ତା କରିବାକୁ ଲାଗିଲେ । ସେଇ ଗୋଟିଏ କଥା - ଯୁଦ୍ଧ । ଯୁଦ୍ଧ ଯେ ଲାଗିଗଲାଣି, ଏ ବିଷୟରେ ସମସ୍ତେ ଏକମତ । ଜଣେ କିଏ ବାହାରୁ ଦୌଡ଼ି ଦୌଡ଼ି ଆସି କହିଲା ପାଞ୍ଚାଳ ସୈନ୍ୟ ମଗଧ ଭିତରକୁ ପଶି ଆସିଲେଣି । କେତେବେଳେ କଅଣ ହେବ ଠିକ୍ ନାହିଁ । କିଛି ସମୟ ପରେ ଆଉ ଜଣେ ଦୌଡ଼ି ଦୌଡ଼ି ଆସି କହିଲା ଘମାଘୋଟ ଲଢ଼େଇ ଚାଲିଛି, ଦି ପାଖରୁ ବେଶ୍ ଲୋକ ମଲେଣି । ତା'ପରେ ଆଉ ଜଣେ ଆସିଲା, କହିଲା ସେ ଦେଖି ଆସିଲା ଜରାସନ୍ଧ ନିଜେ ଘୋଡ଼ା ଚଢି ଯୁଦ୍ଧକୁ ବାହାରିଛନ୍ତି । ଦେଖ କଅଣ ହେଉଛି । ଅରିନ୍ଦମକୁ ବିରକ୍ତ ଲାଗୁଥାଏ । ତାର ସଂପୂର୍ଣ୍ଣ ବିଶ୍ୱାସ ଏସବୁ ମିଛ । ଗୋଟାଏ ମିଛ କଥାକୁ ଫୁଲେଇ ଫମ୍ପେଇ କହିବାକୁ ଏ ଗୋଟାଏ ଢଙ୍ଗ । ଯୁଦ୍ଧ ଫୁଦ୍ଧ ହବାର କିଛି ନାହିଁ । ଜରାସନ୍ଧ ଏଡ଼େ ମୂର୍ଖ ନୁହନ୍ତି ଯେ ସେ ବିନା କଥାରେ ପାଞ୍ଚାଳ ସହିତ ଯୁଦ୍ଧ କରିବାକୁ ଯିବେ, ବା ପାଞ୍ଚାଳର ଦ୍ରୁପଦ ବି ମୂର୍ଖ ନୁହନ୍ତି । କିନ୍ତୁ ଗୋଟାଏ କଥା ଠିକ, କଅଣ ଗୋଟାଏ ଘଟିଛି, ଆଉ ସେ କଅଣ ଏମାନେ କିଛି ଜାଣନ୍ତି ନାହିଁ । ସେ ଚାରିଆଡ଼କୁ ଚାହିଁଲା । କିଛି ଦୂରରେ ସେ ଖାଇବା ବେଳେ ଯେଉଁ ଦି ଜଣ ବଂଧୁ ତା ସହିତ କଥାବାର୍ତ୍ତା କରୁଥିଲେ ସେମାନେ ଛିଡ଼ା ହୋଇଛନ୍ତି । ଆଉ ନିଜ ଭିତରେ କଥାବାର୍ତ୍ତା ହେଉଛନ୍ତି । ସେ ସେଇମାନଙ୍କ ପାଖକୁ ଗଲା ।

ସେମାନେ ଅରିନ୍ଦମକୁ ଦେଖି ଚୁପ୍ କରିଗଲେ । ଅରିନ୍ଦମ ସେମାନଙ୍କ ପାଖରେ ଯାଇ ଛିଡ଼ାହେଲା, ଓ ତିନିଜଣଯାକ ଶିବିରର ଗୋଟାଏ ବେଶି ଲୋକ ନ ଥିବା ଜାଗାକୁ ଚାଲିଗଲେ । ଅରିନ୍ଦମର ମନେ ହେଲା ଦୁଇ ବଂଧୁଯାକ ବିବ୍ରତ ହେଲା ପରି ଦିଶୁଛନ୍ତି । ଖାଇବା ସମୟରେ ସେମାନେ ଯେପରି ସ୍ଥିର, ଶାନ୍ତ ଭାବରେ କଥାବାର୍ତ୍ତା କରୁଥିଲେ ଏ ତାଠୁଁ ଅଲଗା । ବୟସ୍କ ବଂଧୁ ପ୍ରଥମେ କଥା କହିଲେ, 'ଅରିନ୍ଦମ, ଏ ସବୁ କଅଣ, ଶୁଣିଲଣି ?'

'ହଁ, ଶୁଣୁଛି ତ । କଅଣ ଏ ?' ସେ ସତର୍କ ହୋଇ କଥାଟାକୁ ସାମାନ୍ୟ ବୁଲେଇ ଦେଲା, 'କଂସ କଅଣ କିଛି ଖବର ପଠେଇଛି କି ?' ବଂଧୁ ପୁଣି କହିଲେ, 'ନାଁ, ଅନ୍ତତଃ ଆମେ ଜାଣୁନା । ତେବେ ଗୋଟିଏ ଖବର ଆସିଛି । ଆମକୁ ଶିବିର ଉଠେଇ ତିନି ଦିନ ପରେ ମଥୁରା ଫେରିବାକୁ ହେବ । ତମକୁ କେହି କହି ନାହାନ୍ତି ?'


Digitized by srujanika@gmail.com

'ହଁ, କହୁଥିଲେ ।' ଅରିନ୍ଦମ କହିଲା, 'କଂସ କଅଣ ଆମ ସାଙ୍ଗରେ ଯିବନି ?'

'ନାଁ', ବଂଧୁ ଉତ୍ତର ଦେଲେ, 'ଆମେ ସବୁ ଆଗେ ଫେରିଯିବା । କଂସ ଓ ରାଜକନ୍ୟାମାନେ ପରେ ଯିବେ । ଜରାସନ୍ଧଙ୍କର ବିଶ୍ୱସ୍ତ କର୍ମଚାରୀ ଓ ସୈନ୍ୟମାନେ ସେମାନଙ୍କ ସାଙ୍ଗରେ ଯିବେ ।' ବଂଧୁ ଚୁପ କରିଗଲେ, ଅଳ୍ପ ସମୟ ପରେ ପୁଣି କହିଲେ, 'କିନ୍ତୁ ଅରିନ୍ଦମ ଆଜି ଏ କ'ଣ କଥା ?, ଦେଖୁଛି ସମସ୍ତେ ଉତ୍ତେଜିତ ?'

'ଯୁଦ୍ଧ ।' ଅରିନ୍ଦମ ସଂକ୍ଷେପରେ କହିଲା, 'ଯୁଦ୍ଧ ।'

'ହଁ, ସମସ୍ତେ ତ ସେଇକଥା କହୁଛନ୍ତି ।'

ଦୁଇ ବଂଧୁ ସାମାନ୍ୟ ହସିଲେ । ବୟସ୍କ ବଂଧୁ ପୁଣି ପଚାରିଲେ, 'ତୁମେ ବିଶ୍ୱାସ କର ?'

'ନାଁ, କହୁଛନ୍ତି ମଗଧ ପାଞ୍ଚାଳ ଯୁଦ୍ଧ । କାହିଁକି ଯେ ଯୁଦ୍ଧ ହେବ, ବିଶ୍ୱାସ ହେଉନି ।' ଅରିନ୍ଦମ କହିଲା ।

'ତା ଛଡ଼ା ଜରାସନ୍ଧ ଏତେ ଶକ୍ତିଶାଳୀ, ତାଙ୍କୁ ସାହାଯ୍ୟ କରୁଥିବା ରାଜାମାନେ ଏତେ ବେଶି ଯେ, ଛୋଟମୋଟ କାରଣରେ ଦ୍ରୁପଦ ମଗଧ ଆକ୍ରମଣ କରିବାର ନିର୍ବୁଦ୍ଧିତା କରିବେନି ।' ବୟସ୍କ ବଂଧୁ କହିଲେ ।

'ମୋର ବି ସେଇ ଧାରଣା ।' ଅରିନ୍ଦମ କହିଲା, 'କିନ୍ତୁ କିଛି ଗୋଟା ନିଶ୍ଚୟ ଘଟିଛି । କଅଣ ସେ ?'

'ଆମେ ବି ଜାଣି ପାରୁନୁ ? ସେଇଯୋଗୁ ବ୍ୟସ୍ତ ଲାଗୁଛି ।'

ଅରିନ୍ଦମ ଜାଣିଛି ଏମାନେ ଭାନୁପ୍ରକାଶଙ୍କ ଲୋକ । ତା'ପ୍ରତି ଭାନୁପ୍ରକାଶଙ୍କର ସ୍ନେହ କଥା ଏମାନେ ବି ଜାଣନ୍ତି । କିନ୍ତୁ ଭାନୁପ୍ରକାଶଙ୍କ କାର୍ଯ୍ୟ ଅତ୍ୟନ୍ତ ଶୃଙ୍ଖଳିତ । ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି, ନିର୍ଦ୍ଦିଷ୍ଟ ଯୋଜନାରେ ସେ ସବୁ କାମ କରିଥାନ୍ତି । ଆଉ ଭାନୁପ୍ରକାଶ ତା ଉପରେ ସବୁବେଳେ ନଜର ରଖିଛନ୍ତି, ଏକଥା ବି ସେ ଜାଣେ । ତେବେ ଆଜିକାର ଏ ଗୋଳମାଳରେ ଭାନୁପ୍ରକାଶ କେତେଦୂର ଜଡ଼ିତ ତା କହିବା ସମ୍ଭବ ନୁହେଁ । ଏମାନେ ଯେ କେତେ ଦୂର ଜାଣନ୍ତି ତା ବୁଝିବା ବି ସମ୍ଭବ ନୁହେଁ । ତେବେ, ବିଶ୍ୱାସ ଏମାନଙ୍କ ଉପରେ ନିର୍ଭର କରିହେବ ।

ତିନିବଂଧୁ ଛିଡ଼ା ହୋଇ କଥାବାର୍ତ୍ତା କରୁଥିଲେ । ତିନିହେଁ ବସିଲେ । ଶିବିର ଭିତରେ ଉତ୍ତେଜନା ଥିଲେ ବି ଉତ୍ତେଜନା କମି ଆସିଲାଣି । ଅରିନ୍ଦମ ପ୍ରଥମେ କହିଲା, 'ସକାଳେ ତ, ଆମେ ଖିଆପିଆ କରିବା ବେଳକୁ, ତା ଆଗରୁ କି ତା ପରେ, ଏସବୁ କିଛି ନ ଥିଲା । ଜରାସନ୍ଧ ଆମ ଖାଇବା ଜାଗାକୁ ଆସିଥିଲେ, ସବୁ କଥା


Digitized by srujanika@gmail.com

ବୁଝୁଥିଲେ, କଂସ ବି ଥିଲା । ଜରାସନ୍ଧଙ୍କର ଅନ୍ୟାନ୍ୟ ଅନେକ ଲୋକ ବି ଥିଲେ । ସବୁ ଠିକ୍ ଯେମିତି ଚାଲିବା କଥା ଚାଲିଥିଲା । ଗୋଟା କିଛି ଘଟିଛି ବା ଘଟିବ ଏମିତି କିଛି ମନେ ହେଉ ନ ଥିଲା ।'

'ନାଁ, ତୁମେ ଠିକ୍ କହୁଛ, ଅରିନ୍ଦମ', ବୟସ୍କ ବଂଧୁ କହିଲେ, 'କଅଣ ଘଟିଛି ବା ଘଟୁଛି ଆମେ ଜାଣିବା ସମ୍ଭବ ନ ଥିଲା । କିନ୍ତୁ ଗୋଟିଏ କଥା ମନେ ରଖ । ଜରାସନ୍ଧ ଅତ୍ୟନ୍ତ ଚତୁର । କଂସ ତା ଆଗରେ ଦୁଧଖିଆ ପିଲା ପରି । ସେ ଯେମିତି ଉଠେଇବ ବସେଇବ କଂସ ସେମିତି ଉଠିବ ବସିବ। ଖାଲି କଂସ କଅଣ । ସାରା ଆର୍ଯ୍ୟାବର୍ତ୍ତରେ ତା ପରି ଚତୁର ଲୋକ କେହି ଅଛି କି ନାହିଁ ସନ୍ଦେହ । ଭୀଷ୍ମ ଖୁବ୍ ସାହସୀ, ଶକ୍ତିଶାଳୀ । ବୋଧହୁଏ ସେ ଏକମାତ୍ର ଲୋକ ଯାହାଙ୍କୁ ଜରାସନ୍ଧ ଭୟ କରେ। କିନ୍ତୁ ଭୀଷ୍ମ ସିଧାଲୋକ । ତାଙ୍କର ଭିତର ବାହାର ନାହିଁ । ସେ ଦୃଢ଼, କଠିନ । ତାଙ୍କର କଥାହିଁ କଥା । ତା ନ ହେଲେ ଦେଖୁନା କିପରି ଗୋଟାଏ କଥାରେ ସେ ହସ୍ତିନା ରାଜଗାଦି ଛାଡିଦେଲେ । ଦ୍ରୁପଦ ବି ସେହିପରି । ସେ ଭୀଷ୍ମଙ୍କ ପରି ଏତେ ଟାଣୁଆ ନ ହେଲେ ବି, ତାଙ୍କ ସାଙ୍ଗରେ ଜରାସନ୍ଧ ଅସ୍ତିମସ୍ତି କରିବାକୁ ଚାହିଁବ ନାହିଁ । ଆର୍ଯ୍ୟାବର୍ତ୍ତର ଅନ୍ୟ ରାଜାମାନଙ୍କୁ ଜରାସନ୍ଧ ଖାତିର କରେ ନା । ସେମାନେ ବି ଜରାସନ୍ଧ ସହିତ ଗୋଳମାଳ କରିବାକୁ ଚାହାନ୍ତି ନାହିଁ । ଆଉ ଟୋକାଟାକିଳିଆ ରାଜାମାନେ ତ ଜରାସନ୍ଧର ଭକ୍ତ ।'

'ମୁଁ ସେଇଆହିଁ ଦେଖୁଛି', ଅରିନ୍ଦମ କହିଲା, 'ଏଠିକି ଆସିବା ପୂର୍ବରୁ ମୋର ଜରାସନ୍ଧଙ୍କ ବିଷୟରେ ବିଶେଷ ଧାରଣା ନ ଥିଲା । ଖାଲି ଯା ଦୂରରୁ ଶୁଣୁଥିଲି, ମଗଧର ସମ୍ରାଟ ଓ ସମସ୍ତେ ତାଙ୍କୁ ଭୟ କରନ୍ତି, ଏଇଆ ।' 'ଠିକ୍ କଥା', ବୟସ୍କ ବଂଧୁ କହିଲେ, 'ମଥୁରାର ଢଙ୍ଗ ଅଲଗା । କେବଳ ଯେ ଗୋଟାଏ ବଡ଼ ଆର୍ଯ୍ୟ ବସତି ତା ନୁହେଁ, ଯାଦବମାନଙ୍କର ପ୍ରକୃତି ବି ଅଲଗା । ସେମାନେ ନିଜ ନିଜର ସ୍ୱାଧୀନତାକୁ ବେଶି ଭଲ ପାଆନ୍ତି ।' 'ଏବେ ଦେଖ କଅଣ ହେଉଛି ?' ତରୁଣ ବଂଧୁ କହିଲେ ।

'ଆଉ ଦେଖିବାର କଅଣ ଅଛି ? ଯାହା ଘଟିବ ତା' ତ ଜଳଜଳ ହୋଇ ଦିଶୁଛି । କଂସ ରାଜା ହେବ, ଆଉ କଂସ ଜରିଆରେ ଜରାସନ୍ଧଙ୍କ ରାଜତ୍ୱ ଚାଲିବ ।'

ଅରିନ୍ଦମର ମନେ ପଡିଲା ଭାନୁପ୍ରକାଶ ବି ଠିକ୍ ଏଇକଥା କହୁଥିଲେ । ଜରାସନ୍ଧ ବିନା ଉଦ୍ଦେଶ୍ୟରେ ନିଜ ଝିଅମାନଙ୍କ ସହିତ କଂସର ବିଭାଘର କରିନାହିଁ । ସେ ଠିକ୍ ଖବର ରଖିଛି । ମଥୁରା ସହିତ ସଂପର୍କ ହୋଇଗଲେ, ଆର୍ଯ୍ୟାବର୍ତ୍ତର ଗୋଟାଏ ଗୁରୁତ୍ୱପୂର୍ଣ୍ଣ ମଝି ଜାଗାରେ ଜରାସନ୍ଧର ପ୍ରତିପତ୍ତି ବଢ଼ିଯିବ । ଯାହାକି ହସ୍ତିନା, ପାଞ୍ଚାଳ ଓ ଆଖପାଖର ବହୁ ରାଜ୍ୟ କାହାରି ପାଇଁ ମଙ୍ଗଳ ନୁହେଁ । 'ତୁମେ ଯାହା

ଭାବୁଛ, ମୁଁ ବି ସେଇଆ ଭାବୁଛି', ଅରିନ୍ଦମ କହିଲା, 'କିନ୍ତୁ ଆମେ ବା କଅଣ କରିବା ?'

'ନାଁ, ଆମେ କିଛି କରି ପାରିବା ନାହିଁ', ବୟସ୍କ ବଂଧୁ କହିଲେ, 'କିନ୍ତୁ ଆମେ ଅନ୍ତତଃ ଏ ବିଷୟରେ ଜାଣି ସତର୍କ ହେବା, ଅନ୍ୟମାନଙ୍କୁ କହିବା ।'

ସଂଧ୍ୟା ହୋଇ ଆସିଲାଣି । ଶିବିର ଭିତରୁ ଲୋକେ ବାହାରକୁ ଯାଉଛନ୍ତି । ବାହାର ଲୋକେ ବି ଭିତରକୁ ଆସୁଛନ୍ତି । ଦିନର ଉତ୍ତେଜନା ଏତେ ନାହିଁ । ତଥାପି ଯୁକ୍ତିତର୍କ, କଥାବାର୍ତ୍ତାରୁ ଲୋକମାନେ ଯେ ଉତ୍ତେଜିତ ଅଛନ୍ତି ତା ବୁଝି ହେଉଛି । ତିନିବଂଧୁ ଉଠି ଆସ୍ତେ ଆସ୍ତେ ଶିବିର ବାହାରକୁ ଚାଲି ଚାଲି ଆସିଲେ । ଅରିନ୍ଦମର ମନର ଆଗ୍ରହ ଅନେକ କମି ଯାଇଥାଏ । କିନ୍ତୁ ଆଶ୍ଚର୍ଯ୍ୟ ଭାବ କମି ନ ଥାଏ । ପଡିଆ ମଝିରେ ତୋଟା ଭିତରେ ଲୋକମାନେ ଗୁଣ୍ଡ ହୋଇ ଯେ ପାଟିଗୋଳ କରୁଥିଲେ, ସେ କମି ଯାଇଛି । କିଛି କିଛି ଲୋକ ଅଛନ୍ତି । କିନ୍ତୁ ଭିଡ଼ ଭାଙ୍ଗିଗଲାଣି । ପାଖ ପାଖାଳ ଶିବିର ମଧ୍ୟ ମୋଟାମୋଟି ଚୁପ୍ । ଶିବିର ଭିତରକୁ ଓ ବାହାରକୁ ଲୋକମାନେ ସବୁଦିନେ ଯେପରି ଯିବା ଆସିବା କରନ୍ତି ସେମିତି । କିଛି ଦୂରରେ ଜଣେ କିଏ ଗୀତ ଗାଉଛି । ଶିବିର ଭିତରେ ଜଣେ କିଏ ବୀଣା ବଜଉଛି । ଅରିନ୍ଦମ ଶିବିର ଆଡକୁ ଚାହିଁ ଭାବିଲା, ଏ ତ ଯୁଦ୍ଧ ଲାଗିବାର ଲକ୍ଷଣ ନୁହେଁ । ସେ ବଂଧୁଙ୍କ ଆଡକୁ ବୁଲି ପଡିଲା, 'ଦେଖୁଛ ?'

'ହଁ । ଯୁଦ୍ଧ କଥା ଯେ ମିଛ ସେ କଥା ବୁଝି ହେଉଛି ।' ବଂଧୁ କହିଲେ, 'କିନ୍ତୁ ସୂର୍ଯ୍ୟସଂକାଶକୁ ଯେପରି ମାରି ଦିଆଗଲା ସେ ଅଧର୍ମ ।'

ଅରିନ୍ଦମ କହିଲା, 'ଜରାସନ୍ଧ ପାଖରେ ଧର୍ମ ଅଧର୍ମର ମୂଲ୍ୟ ଅଛି କି ?'

ବଂଧୁ କହିଲେ, 'ସେ ଧର୍ମ, ପୁଣି ସେହିଁ ହିଁ ଅଧର୍ମ । ସେ ସବୁ ନିଜେ ।'

'କିନ୍ତୁ ଆଶ୍ଚର୍ଯ୍ୟ କଥା କଂସ ସେ ସବୁ ମାନିନେଲା' ଅରିନ୍ଦମ ପୁଣି କହିଲା ।

ବଂଧୁ ସାମାନ୍ୟ ହସିଲେ, କହିଲେ, 'ତୁମେ କଅଣ କଂସକୁ ଅଲଗା ବୋଲି ଭାବୁଛ ? ଅଲଗା ନୁହେଁ । ତାର ଆଶା ବହୁତ । ତୁମେ ଦେଖିବ କେତେ ଶୀଘ୍ର ସେ କଅଣ ହେବ । ଜରାସନ୍ଧ ଠାରୁ ଆହୁରି ଭୟଙ୍କର । ତାଙ୍କ ଭିତରେ କିଏ ଆଗ କିଏ ପଛ କହି ହେବନି ।'

....ଅରିନ୍ଦମର ମନ ମଥୁରାର ସେଇ ସକାଳକୁ ପୁଣି ଫେରି ଆସିଲା । ଅଭାବିତ ଚିତ୍ର । ସକାଳ । ପ୍ରଶସ୍ତ ରାଜସଭା ଘରେ ଯାଦବ ମୁଖିଆମାନେ ଚୁପ୍‌ଚାପ


Digitized by srujanika@gmail.com

ଜାକିଜୁକି ହୋଇ ବସିଛନ୍ତି । ବାପା ବି ଗୋଟାଏ କଡ଼କୁ ବସିଛନ୍ତି । କଂସ ହାତଯୋଡ଼ି ଆଗରେ ଛିଡ଼ା ହୋଇଛି । ମୁହଁରେ ହସ ହସ ଭାବ । ସାଧାରଣ ପୋଷାକପତ୍ର । ସମସ୍ତଙ୍କୁ ଅନୁରୋଧ କରୁଛି ସେ ଯାହା କରିବାକୁ ଚାହେଁ ତାକୁ ସେଥିପାଇଁ ଅନୁମତି ମିଳୁ । ଅରିନ୍ଦମ ଏଆଡ଼େ ସେଆଡେ ଚାହିଁଲା । କଂସ ପାଖରେ ଜରାସନ୍ଧଙ୍କର ଯେଉଁ ଉପଦେଷ୍ଟା ଦିନ ରାତି ରହିଛି ସେ କାହିଁ ? ସେ ଜାଣେ ତ ? ନାଁ ଏସବୁ ତାରି ଯୋଜନା ? ତା'ରି ଉପଦେଶରେହିଁ କଂସର ଏ ନୂଆ ରୂପ, ନୂଆ ଛଳନା !

କଂସ କହୁଥାଏ – 'ଆପଣମାନେ ଯାଦବ ଗୋଷ୍ଠୀର ମୁଖ୍ୟ ଲୋକ । ମୁଁ ନୁହେଁ । ଆପଣମାନେ ବୟସ୍କ, ମୋର ପୂଜନୀୟ । ମୁଁ ଆଜି ଯାହା କରିବା ପାଇଁ ଭାବିଛି ରାଜା ଉଗ୍ରସେନଙ୍କୁ ବି ପଚାରିଥିଲି । ସେ କହିଲେ ଆପଣମାନଙ୍କୁ ପଚାରି ମତାମତ ନେବା ପାଇଁ ।'

କଂସ ବାପାଙ୍କ ଆଡ଼କୁ ବୁଲି ଚାହିଁଲା, କହିଲା, 'ଆପଣ ଜ୍ଞାନୀ ଲୋକ । ଆପଣ ମୋତେ ଉପଦେଶ ଦିଅନ୍ତୁ ।'

ବାଃ, ଅରିନ୍ଦମ ଭାବିଲା, କି ବିନୟ ! ହଠାତ୍ ବାପା ଜ୍ଞାନୀ ଲୋକ ହୋଇଗଲେ । ତାଙ୍କର ଉପଦେଶ ଦରକାର । ଲୋକଙ୍କୁ ହାଣକାଟ କରିବା ସମୟରେ, ଯାଦବମାନଙ୍କୁ ତାଙ୍କର ଘରବାଡ଼ିରୁ ଉଚ୍ଛନ୍ନ କରି ବାହାର କରିଦେବା ସମୟରେ, ସ୍ତ୍ରୀଲୋକମାନଙ୍କୁ ବେଇଜ୍ଜତ କରିବା ସମୟରେ ତ ବାପା ନ ଥିଲେ । ଆଜି ହଠାତ୍ ତାଙ୍କର ଉପଦେଶ ଦରକାର ହେଲା !

ବାପା କହୁଥାନ୍ତି – 'ମୋର ଉପଦେଶ କଅଣ ? ତୁମେ ଯାହା ଠିକ୍ କରୁଛ କର । ଯଦି ପଚାରିବାକୁ ଚାହଁ ଅକ୍ରୁର ଓ ବସୁଦେବଙ୍କୁ ପଚାର । ସେମାନେ ଯଦି ରାଜି ଆମର କିଛି ଆପତ୍ତି ନାହିଁ ।'

କଂସ କହିଲା, 'ମୁଁ ପଚାରିଛି । ସେମାନେ ରାଜି ?'

'ତା ହେଲେ ଆଉ ଅସୁବିଧା କଅଣ ?' ଜଣେ ବୟସ୍କ ମୁଖିଆ କହିଲେ, 'କିନ୍ତୁ କି କଥା ? କୋଉ ବିଷୟରେ ତୁମେ ଆମର ମତାମତ ଚାହୁଁଛ ?' କଂସ ଟିକେ ଚୁପ କରିଗଲା । ତା'ପରେ ସ୍ପଷ୍ଟ ଭାବରେ କହିଲା, 'ମୁଁ ମୋର ଭଉଣୀ ଦେବକୀକୁ ବସୁଦେବଙ୍କ ସହିତ ବିବାହ ଦେବାକୁ ଚାହେଁ ।' 'କିନ୍ତୁ ବସୁଦେବ ତ ବିବାହ କରିଛନ୍ତି ?' ଆଉ ଜଣେ ମୁଖିଆ କହିଲେ । 'ହଁ, ମୁଁ ସେହିଯୋଗୁଁ ଆପଣମାନଙ୍କର ମତାମତ ଚାହେଁ ।' କଂସ କହିଲା । ମୁଖିଆମାନଙ୍କର ନାରାଜ ହେବାର କିଛି କାରଣ ନ ଥିଲା । ବସୁଦେବ ସମସ୍ତଙ୍କର ପ୍ରିୟ, ସମସ୍ତେ ତାଙ୍କୁ ସମ୍ମାନ କରନ୍ତି । ସେ ସୁର ଗୋଷ୍ଠୀର ମୁଖ୍ୟ । ତାଙ୍କର ଏକାଧିକ ସ୍ତ୍ରୀ ହେବାରେ ଆପତ୍ତି କିଛି ନାହିଁ । କିନ୍ତୁ ଯାହା

ଆଶ୍ଚର୍ଯ୍ୟ ଲାଗୁଛି ସେ କଂସର ପ୍ରିୟଭାଜନ ନୁହନ୍ତି - କି କଂସର କାର୍ଯ୍ୟକୁ ସମର୍ଥନ କରନ୍ତି ନାହିଁ । ତାଙ୍କ ସହିତ ନିଜର ଭଉଣୀର ବିବାହ ଦେବାକୁ ସେ ସ୍ଥିର କଲା କାହିଁକି ? ଯାହାହେଉ ମୁଖିଆମାନେ ଆଶ୍ୱସ୍ତ ହେଲେ । ଏ ଆଉ କିଛି ଭୟଙ୍କର କଥା ନୁହେଁ । ବସୁଦେବଙ୍କ ସହିତ ଦେବକୀର ବିଭାଘର ଗୋଟିଏ ମଙ୍ଗଳକର କାର୍ଯ୍ୟ ।

ଅରିନ୍ଦମ ବାପାଙ୍କୁ ପଚାରିଥିଲା - 'ଏ କେମିତି କଥା । ବସୁଦେବଙ୍କ ସହିତ ଦେବକୀର ବିଭାଘର, ଏ ତ କଂସ ପରି କଥା ହେଲାନି । ତା ପାଖରେ ଜରାସନ୍ଧର ଯୋଉ ଲୋକ ଦିନରାତି ବସି ରହିଛି, କଅଣ କରିବାକୁ ହେବ ସବୁବେଳେ ଉପଦେଶ ଦଉଛି, ସେ ରାଜି ହେଲା କେମିତି ?'

ବାପା କେବଳ କହିଥିଲେ - 'ଆମେ ଅନେକ ସମୟରେ ବୁଝି ପାରୁ ନ ଥିବା ଘଟଣା ଘଟେ । ଏ ସେହିପରି ଗୋଟିଏ ଘଟଣା, ଏ ଘଟଣା ଘଟିବାର ଥିଲା ଘଟିଲା। ଏ ବିଭାଘର ଶେଷ ନୁହେଁ, ଆରମ୍ଭ ।'

ବାପାଙ୍କର ସଂକ୍ଷେପ କଥା ଅରିନ୍ଦମ ଅନେକ ସମୟରେ ବୁଝେ, ଅନେକ ସମୟରେ ବୁଝି ପାରେନା । ବିଭାଘରଟା ଆରମ୍ଭ, ଅରିନ୍ଦମ ଏହି କଥାଟା ପରେ ବୁଝିଥିଲା ।

ବସୁଦେବଙ୍କ ସହିତ ଦେବକୀଙ୍କର ବିଭାଘର ଓ କଂସ ଏ ବିଭାଘରଟା ହେଉ ଏକଥା ଚାହୁଁଛି, ଏକଥା ପବନ ପରି ମଥୁରାଯାକ ଖେଳି ଯାଇଥିଲା । ବସୁଦେବ ଓ ଦେବକୀ ଉଭୟ ଏ କଥା ଚାହୁଁଛନ୍ତି କି ନାହିଁ, ଦେବକୀଙ୍କର ବାପା ଉଗ୍ରସେନଙ୍କର ଏ ବିଷୟରେ ମତ କଅଣ ସେ ବିଷୟରେ କେହି ପ୍ରଶ୍ନ କଲେ ନାହିଁ । କାରଣ ବସୁଦେବଙ୍କ ସହିତ ଦେବକୀଙ୍କର ବିଭାଘର ଗୋଟାଏ ସାଧାରଣ, ସ୍ୱାଭାବିକ କଥା, ଓ ଏ ବିଭାଘର ଆଗରୁ ବି ହୋଇ ପାରିଥାନ୍ତା । କିନ୍ତୁ ସମସ୍ତଙ୍କ ମନରେ ଯାହା ପ୍ରାୟ ଉଠିଲା, ବାହାରେ ଲୋକମାନେ, ଘରେ ସ୍ତ୍ରୀଲୋକମାନେ, ସମସ୍ତେ କୁହାକୁହି ହେଲେ, ହଠାତ୍ କଂସର ଏ ଆଗ୍ରହ କାହିଁକି, ତାର ସ୍ୱାର୍ଥ କଅଣ ? ଅନେକ ଭାବିଲେ ଏ କଂସର ଗୋଟାଏ କୌଶଳ । ଉଗ୍ରସେନଙ୍କୁ ରାଜଗାଦିରୁ ବାହାର କଲେ ବି, ସେ ନିଷ୍ଠୁର ନୁହେଁ, ନିଜର ପରିବାର ପ୍ରତି ତାର ସମାନ ସ୍ନେହ ଶ୍ରଦ୍ଧା ରହିଛି, ସେ ସେମାନଙ୍କର ଭଲ ମନ୍ଦ କଥା ଭାବେ - ଏଇକଥା ସେ ଜଣେଇ ଦେବାକୁ ଚାହୁଁଛି । ସମସ୍ତେ ଜାଣନ୍ତୁ ତାକୁ ଯେତେ ଅତ୍ୟାଚାରୀ ବା ଖରାପ ବୋଲି ଲୋକେ ଭାବୁଛନ୍ତି ସେ ସେତେ ଖରାପ ନୁହେଁ । ସେ ସମସ୍ତଙ୍କ କଥା ଭାବେ, ତାର ମନଟା ଅତ୍ୟନ୍ତ କୋମଳ, ଆଉ ସେ ଜାଣେ କାହା ପ୍ରତି ତାର କେତେ ଦାୟିତ୍ୱ ।

ଆଉ କିଛି ଅନ୍ୟ ପ୍ରକାର ଭାବିଲେ । ସେମାନେ କହିଲେ ଏ କଂସର


Digitized by srujanika@gmail.com

କାରବାର ନୁହେଁ, ଜରାସନ୍ଧର କାରବାର । କଂସ ରାଜ୍ୟ ଜୟ କରୁଛି ଠିକ୍, ବାହାରେ ନାଁ ବି କଲାଣି, ବାହାର ରାଜ୍ୟମାନେ ତାର ସାହସ ଓ ପରାକ୍ରମ ବିଷୟରେ କହିବାକୁ ଆରମ୍ଭ କଲେଣି, ତାକୁ ଭୟ ବି କଲେଣି । କିନ୍ତୁ ମଥୁରା ଭିତରେ ସେ ଅତ୍ୟନ୍ତ ଅପ୍ରିୟ । ଯାଦବମାନେ ତାକୁ ବିଶ୍ୱାସ କରିବାକୁ ରାଜି ନୁହନ୍ତି । ଖୋଲାଖୋଲି ନ ହେଲେ ବି ଭିତରେ ଭିତରେ ତାର ଅତ୍ୟାଚାରରୁ କିପରି ଉଦ୍ଧାର ପାଇବେ ସେ ବିଷୟରେ ଚିନ୍ତା କରିବାକୁ ଆରମ୍ଭ କଲେଣି । ଯେଉଁମାନେ କଂସର କାମ କରୁଛନ୍ତି, କଂସ ସହିତ ମିଶି ମଥୁରାଟାକୁ ତଛନଛ କରି ସାରିଲେଣି, ସେମାନେ ହୁଏତ ସେ କାମ ଭୟରେ କରୁଛନ୍ତି ବା ଲୋଭରେ କରୁଛନ୍ତି । ସେ ଖବର ଜରାସନ୍ଧ ପାଉଛି । ତାର ଲୋକମାନେ କଂସକୁ ଘେରିକରି ରହିଛନ୍ତି । ତାର ସିପେହୀମାନେ କଂସର ରାଜପ୍ରାସାଦକୁ ଜଗି କରି ରହିଛନ୍ତି । ତାର ସୈନ୍ୟମାନେ କଂସର ସୈନ୍ୟମାନଙ୍କ ସହିତ ମିଶି ଯୁଦ୍ଧ କରିବାକୁ ଯାଉଛନ୍ତି । କଂସ ଯାହା କରୁଛି ଜରାସନ୍ଧର ସମର୍ଥନରେ କରୁଛି, ଏହାହିଁ ସମସ୍ତଙ୍କର ଧାରଣା । ତେଣୁ କଂସ ଅପ୍ରିୟ ହେବା ମାନେ ଜରାସନ୍ଧ ହିଁ ଅପ୍ରିୟ ହେଉଛି, ଏଇଟା ହିଁ ବଡ଼ କଥା । ତେଣୁ ଏ କଂସର କୌଶଳ ନୁହେଁ, ଜରାସନ୍ଧର କୌଶଳ । ସେ ଚାହେଁ କଂସ ଏହିପରି କିଛି କାର୍ଯ୍ୟ କରି ନିଜର ସମ୍ମାନ ଫେରିପାଉ । ନଚେତ ନିଜର ପରିବାର ଓ ଦେବକୀ ପ୍ରତି କଂସର ଏ ଆଗ୍ରହ ବିଶ୍ୱାସ କରି ହେଉନାହିଁ । ବହୁ ଯାଦବ ସ୍ତ୍ରୀଲୋକଙ୍କର ଧର୍ମ ନଷ୍ଟ କରିଥିବା ଲୋକ, ଯାହା ତାର ପ୍ରତିଦିନର କାରବାର, ସେ ହଠାତ୍ ଦେବକୀର ଧର୍ମ ରକ୍ଷା କରିବା ପାଇଁ ତତ୍ପର ହୋଇ ଉଠିଲା । ଏ କଥା ସହଜେ ବିଶ୍ୱାସ କରି ହେଉନାହିଁ । ସମସ୍ତେ ଶୁଣିଲେ, ନିଜ ଭିତରେ କଥାବାର୍ତ୍ତା ହେଲେ, କିନ୍ତୁ ଚୁପ୍‌ଚାପ ରହିଲେ । ସବୁଆଡ଼େ କଂସର ଚର । କେହି ଖୋଲାଖୋଲି କିଛି ମତାମତ ଦେଲେ ନାହିଁ । ଅପେକ୍ଷା କଲେ କଅଣ ଘଟୁଛି ଦେଖିବା ପାଇଁ । କିନ୍ତୁ ବାପାଙ୍କ ପରି କିଛି ଲୋକ, ଅରିନ୍ଦମ ଲକ୍ଷ୍ୟ କଲା, ଏସବୁ କିଛି ଚିନ୍ତା ବି କଲେ ନାହିଁ । କେବଳ ଗୋଟିଏ କଥା କହିଲେ - ଯାହା ଘଟିବାର କଥା ଘଟିବ । ତାହାହିଁ ଘଟୁଛି । ବସୁଦେବ ଦେବକୀର ବିଭାଘର କେବଳ ଗୋଟାଏ ଘଟିବାର ବାଟ । ଏ କେବଳ ମଣିଷର କଥା ନୁହେଁ, ମଣିଷ ବୁଝି ନ ପାରିବା ପରି କଥା ।

ଏ ସବୁ କଥା ଶୁଣି ଅରିନ୍ଦମ ନିଜେ ବି ଗୋଳମାଳରେ ପଡିଗଲା । ତା ମନରେ ବି ସେହି ପ୍ରଶ୍ନ । କଂସ ହଠାତ୍ ଏ ନିଷ୍ପତ୍ତି ନେଲା କାହିଁକି ? ମୁଁ ମୋ ଭଉଣୀର ବିଭାଘର ଖୁବ୍ ଆଡମ୍ବରରେ କରିବାକୁ ଚାହେଁ - କଂସ ସେଦିନ ମୁଖିଆ ମାନଙ୍କୁ ଏକଥା କହିଥିଲା । ଅରିନ୍ଦମ ଖବର ପାଇଛି କଂସ ପାଖକୁ ଅନେକ ଜ୍ୟୋତିଷ

ଓ ଗଣତକାରମାନେ ଆସୁଥିଲେ । ସେମାନଙ୍କର ଏ ବିଷୟରେ ଦାୟିତ୍ୱ କଅଣ ? ତେବେ ଗୋଟାଏ ବିଷୟରେ ଅରିନ୍ଦମର ସନ୍ଦେହ ନ ଥିଲା । ସେ ହେଲା ଜରାସନ୍ଧଙ୍କର ସମ୍ମତି । ଏ ନିଷ୍ପତ୍ତି ପଛରେ ନିଶ୍ଚୟ ଜରାସନ୍ଧଙ୍କର ସମ୍ମତି ଅଛି । ନଚେତ୍ ନିଜ ଭଉଣୀ ହେଲେ ବି, କଂସ ସହଜେ ଏ ବିଷୟ ଚିନ୍ତା କରି ନ ଥାନ୍ତା ।

ସେହିଦିନ ସଂଧ୍ୟାବେଳେ ଅରିନ୍ଦମ ତାର କିଛି ବଂଧୁଙ୍କ ନିକଟକୁ ଗଲା । ତାର ମନେ ହେଲା ଏ ବିଷୟରେ ଆଉ କିଛି ଆଲୋଚନା କରାଯାଇ ପାରିବ । ବିଶେଷ କରି ତାର ବଂଧୁ ଦେବପ୍ରିୟ ଅନେକ ଖବର ରଖେ ଓ ତାର ଚିନ୍ତା କରିବାର ଧାରା ବେଶ୍ ପ୍ରଖର ଓ ଅନ୍ୟମାନଙ୍କ ଠାରୁ ଅଲଗା । ଯମୁନା କୂଳ ଅଞ୍ଚ ଭିତରକୁ ତାର ଘର ଓ ଅରିନ୍ଦମ ଦେଖିଲା ଦେବପ୍ରିୟ ଘରର ପ୍ରଶସ୍ତ ବାରନ୍ଦାରେ ଆହୁରି ଅନେକ ବଂଧୁ ବସିଛନ୍ତି । ତାକୁ ଦେଖି ସମସ୍ତେ ଖୁସି ହେଲେ, ବିଶେଷ କରି ଦେବପ୍ରିୟ । ଦୂରରୁ ଅରିନ୍ଦମକୁ ଦେଖି ସେ ପାଟି କଲା – 'ଅରିନ୍ଦମ ଆସ୍, ଆସ୍, ତୁ ନ ଆସିଲେ ଏ ଆଲୋଚନା ପୂର୍ଣ୍ଣ ହେବନି ।' ଅରିନ୍ଦମ ବାରନ୍ଦା ଉପରକୁ ଉଠିଗଲା ଓ ଦେବପ୍ରିୟ ପାଖରେ ବସି ପଡିଲା । ସମସ୍ତେ ସମସ୍ତଙ୍କର ପୂର୍ବ ପରିଚିତ, ପ୍ରାୟ ସମାନ ବୟସ, ଓ କଂସ ପ୍ରତି ସମସ୍ତଙ୍କର ପ୍ରାୟ ସମାନ ବିରାଗ । ସମସ୍ତଙ୍କ ହାତରେ ଛୋଟ ଛୋଟ ପିଆଲା, ଓ ସେଥିରେ କିଛି କିଛି ପାନୀୟ । ଦେବପ୍ରିୟ କିଛି ପାନୀୟ ଅରିନ୍ଦମ ହାତରେ ଧରେଇ ଦେଲା, କହିଲା, 'ଅରିନ୍ଦମ, କଥା କଅଣ ? ଯାହା ଶୁଣା ଯାଉଛି ସତ ?' 'ହଁ, ସତ ।' ଅରିନ୍ଦମ କହିଲା, 'କଂସ ମୁଖିଆମାନଙ୍କୁ ସକାଳେ ଡାକିଥିଲା, ମୁଁ ବାପାଙ୍କ ସାଙ୍ଗରେ ଯାଇଥିଲି । କଂସର ସେ କି ଚେହେରା ! କି ବିନୟ ଭାବ ! ମୁଁ ଭାବିଲି ମଥୁରାଟା ବଦଳି ଗଲା କି !'

'ହଁ, ସେଇଟା ହିଁ ଆଶ୍ଚର୍ଯ୍ୟ ଲାଗୁଛି । ଦେବକୀ ବସୁଦେବଙ୍କର ବିବାହ ପାଇଁ କଂସର ଏ ଆଗ୍ରହ କାହିଁକି ?' ଦେବପ୍ରିୟ କହିଲା ।

'ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?' ଅନ୍ୟ ଜଣେ ବଂଧୁ, ସୁରଂଜନ, କହିଲା, 'କଂସ ତା' ଭଉଣୀର ବିଭାଘର ପାଇଁ ଭାବିବ ନାହିଁ ତ କ'ଣ ଆମେ ଭାବିବା ? ତା'ର ଅନେକ ଆଗରୁ ନିଷ୍ପତ୍ତି ନେବାର ଥିଲା ।'

'ସେ କେବେ ନିଷ୍ପତ୍ତି ନେବ ସେଟା ବଡ଼ କଥା ନୁହେଁ । ବଡ଼ କଥା ବସୁଦେବ କାହିଁକି ? ବସୁଦେବ ତ ବିବାହିତ ?' ଦେବପ୍ରିୟ ନିଜ କଥା ଉପରେ ଜୋର ଦେଲା । 'ଅରିନ୍ଦମ, ଏ ବିଷୟରେ ତୁ କଅଣ ଭାବୁଛୁ, ତୁ ତ କଂସକୁ ବେଶି ଜାଣୁ ।

'ମୁଁ କଂସକୁ କଅଣ ଜାଣେ ମୁଁ ଜାଣେ ନା । କଂସ ଯେଉଁ ଲୋକ । ତାକୁ

କମ୍ ବେଶି ଜାଣିବା ଅର୍ଥହୀନ ।' ଅରିନ୍ଦମ କହିଲା, 'ତା'ର ସବୁ କାମ, ସବୁ କଥା ପଛରେ ଗୋଟାଏ ଉଦ୍ଦେଶ୍ୟ ଥାଏ । ଆଉ ତାର ସବୁବେଳେ ହିସାବ, ତା'ର ଲାଭ କଅଣ ? ସେ ଜରାସନ୍ଧଙ୍କ ଛଡ଼ା ଆଉ କାହା କଥା ଶୁଣେ ନା ।'

'ଆମେ ବି ସେହି କଥା ଭାବୁଛୁ । କଂସର ଏ ନିଷ୍ପତ୍ତି ପଛରେ ଜରାସନ୍ଧଙ୍କର ହାତ ନିଶ୍ଚୟ ଅଛି ।'

'ଥାଇପାରେ ।' ଅରିନ୍ଦମ କହିଲା, 'ତେବେ ଯାହାକୁ କହନ୍ତି ଦିଅଁଙ୍କୁ ଖାଇ ଖଟୁଲି ଖାଇବା କଥା । ଜରାସନ୍ଧଙ୍କ ବିଷୟରେ ସେହି ଅବସ୍ଥା । କଂସ ନିଜ ଗୋଡ଼ରେ ଛିଡ଼ା ହେବାକୁ ଆରମ୍ଭ କଲାଣି । ତେବେ ମୁଁ ଗୋଟାଏ କଥା ଭାବୁଛି । ଏ ଗୋଟାଏ ରାଜନୈତିକ ବିବାହ ।'

'ରାଜନୈତିକ ବିବାହ ?' ଏକା ସାଙ୍ଗରେ ଦି ତିନି ଜଣ କହି ଉଠିଲେ, 'ମାନେ ?'

'ଦେଖ, ବସୁଦେବ ସୁର ଗୋଷ୍ଠୀର ମୁଖ୍ୟ । ସୁର ଗୋଷ୍ଠୀ ଯାଦବମାନଙ୍କ ଭିତରେ ସବୁଠୁ ବଡ଼ ଗୋଷ୍ଠୀ, ଆଉ ସବୁଠୁ ବେଶି ଶକ୍ତିଶାଳୀ । ବସୁଦେବଙ୍କ ସହିତ ସଂପର୍କ କରି ସେ ଏହି ସୁର ଗୋଷ୍ଠୀକୁ ହାତରେ ରଖିବାକୁ ଚାହେଁ । ଆଗରୁ ଅକ୍ରୁରଙ୍କ ଜରିଆରେ ବୃଷ୍ଣି ଗୋଷ୍ଠୀ ତାକୁ ସମର୍ଥନ କରୁଛି । ବର୍ତ୍ତମାନ ସୁର ଗୋଷ୍ଠୀ ସମର୍ଥନ ପାଇଗଲେ ପୂରାପୂରି ଯାଦବଙ୍କର ସମର୍ଥନ ହୋଇଗଲା କୁହାଯିବ ।'

ବଂଧୁମାନେ ଚୁପ କରିଗଲେ । ଦେବପ୍ରିୟ କହିଲା, 'ଅରିନ୍ଦମ ତୁ ଗୋଟା ଠିକ୍ କଥା କହିଲୁ । ଏ ଗୋଟା ନୂଆ କଥା । ଆମେ ଏ କଥା ଭାବିନୁ ।'

ଅରିନ୍ଦମ କହିଲା, 'ଦେଖ, କଂସ ବହୁତ ବାଜେ ବାଜେ କାମ କରୁଛି । ସେ ଜାଣେ ଆମେ ଅନେକ ତାକୁ ପସନ୍ଦ କରୁ ନା । କିନ୍ତୁ ଏମିତି କିଛି ଗୋଟା ସଂପର୍କ କରି ଦେଲେ ଜିନିଷଟା ଅନ୍ୟ ପ୍ରକାର ହୋଇଯିବ ।'

'ହବ କି ?' ଦେବପ୍ରିୟ ନିଜକୁ ନିଜେ ଭାବିଲା ପରି କହିଲା, 'କଂସକୁ ବିଶ୍ୱାସ କରିବା ମୂର୍ଖାମି ।'

'ଠିକ୍,' ଆଉ ଜଣେ ବଂଧୁ କହିଲେ, 'ସେ ଯାହାହେଉ, କଂସକୁ ବିଶ୍ୱାସ କରିବା ମୂର୍ଖାମି ।'

'ମୋର ଖବର କଂସ ପାଖକୁ ଅନେକ ଜ୍ୟୋତିଷ ଓ ଗଣତକାର ଆସୁଛନ୍ତି ।' ଅରିନ୍ଦମ କହିଲା, ' ଏ ଖାଲି ମଥୁରାରୁ ନୁହେଁ, ବାହାରୁ । ଏପରିକି ମଗଧରୁ ବି, ଜରାସନ୍ଧଙ୍କର ବ୍ୟକ୍ତିଗତ ଗଣତ୍କାର ।'

'ଏତେ ଗଣତ୍କାରର ଦରକାର କଅଣ ?' ଦେବପ୍ରିୟ କହିଲା, 'କଂସ ନିଜେ


Digitized by srujanika@gmail.com

ଭୟ କରୁଛି କି ?'

'ଅସମ୍ଭବ ନୁହେଁ,' ଅରିନ୍ଦମ କହିଲା, 'ବାହାଘରର କଥା ତ କଂସ ଘୋଷଣା କରିଦେଲା । କିନ୍ତୁ ସେ ଘୋର ସନ୍ଦେହୀ । ଏ ବିଭାଘରରୁ ଭବିଷ୍ୟତରେ କଅଣ ହବ କି ନ ହବ, ଭଲ କି ମନ୍ଦ । ମୋର ମନେହୁଏ କେଉଁମାନେ ହୁଏତ ତାକୁ ସତର୍କ କରିଛନ୍ତି । ସେହିଯୋଗୁ ଏତେ ଗଣାଗଣି, ଏତେ ଜ୍ୟୋତିଷ ।'

'ଅରିନ୍ଦମ', ପଛରୁ ଜଣେ ବଂଧୁ କହିଲେ, 'ମୁଁ ଅକ୍ରୁର କହିବାର ଶୁଣିଛି । ଏ ବାହାଘର ହୁଏତ ନ ହୋଇପାରେ ?

'ନ ହୋଇ ପାରେ ?'

'ହଁ, ସେମିତି କିଛି । ଅକ୍ରୁର କହୁଥିଲେ କଂସ ଭୟ ପାଇ ଯାଇଛି ।

'ଭୟ ? କୋଉଥିପାଇଁ ?'

ସମସ୍ତେ ବିସ୍ମିତ ହୋଇଉଠିଲେ ।

'ତା ମୁଁ କହି ପାରିବି ନାହିଁ । ଅକ୍ରୁର କହୁଥିଲେ କଂସ ବାହାଘରର ଆୟୋଜନ କରିବା ପାଇଁ ଆଦେଶ ଦେଇ ଦେଇଛି ।'

'ତେବେ ବିଭାଘର ହବ ନାହିଁ କେମିତି ? ହବ', ଅରିନ୍ଦମ କହିଲା ।

'ତା ହୁଏତ ହବ ?' ବଂଧୁ ପୁଣି କହିଲେ, 'କିନ୍ତୁ ଅକ୍ରୁର କହୁଥିଲେ ଆଉ ଜଣେ କିଏ ବଡ଼ ଜ୍ୟୋତିଷ ଆଉ କୋଉଠୁ ଆସୁଛନ୍ତି ।

ଏ ତ ଗୋଳମାଳ କଥା, ଅରିନ୍ଦମ ଭାବିଥିଲା । ଭବିଷ୍ୟତ୍ କେହି ଦେଖି ପାରେନା । ସେ ବି ଭାବି ପାରି ନଥିଲା ଭବିଷ୍ୟତରେ କଅଣ ହେବ । ବାପାଙ୍କ କଥା ମନେ ପଡିଲା । ସେ କହିଥିଲେ, ଭବିଷ୍ୟତ ମଂଗଳକର । ଏ ତ ଅତୀତ । ଭବିଷ୍ୟତ ମଂଗଳକର ହେଲା କି ? ବାପା ଦିବ୍ୟଦ୍ରଷ୍ଟା । ସେ ହୁଏତ ମଂଗଳର ଚରିତ୍ର ଜାଣିଥିବେ । କନ୍ତୁ ଅରିନ୍ଦମ କଅଣ ଦେଖିଲା ? ତୀବ୍ର ଅମଙ୍ଗଳର ଧାରା, ତୀବ୍ର ଲୋଭ, ସ୍ୱାର୍ଥ, ଅତ୍ୟାଚାରର ଧାରା, ଯେଉଁ ଅତ୍ୟାଚାର ଭାବି ହେବନି, କିନ୍ତୁ ସହ୍ୟ କରିବାକୁ ପଡୁଛି । କାରଣ ଉପାୟ ନାହିଁ । ଏ ଅତ୍ୟାଚାରର ମୂଳ କେଉଁଠି । କଂସର ନିଜ ପାଖରେ ନା ଜରାସନ୍ଧଙ୍କ ଠାରେ, କା'ର ଦାୟିତ୍ୱ ବେଶି । ଏ ବିଚାର ମୂଲ୍ୟହୀନ । ଅସଲ କଥା, ଯେତେବେଳେ ମଣିଷର ବିଚାରବୋଧ ଚାଲିଯାଏ, ମଣିଷ ଭୁଲିଯାଏ ଯେ ସେ ମଣିଷ, ତାର ଲୋଭ, ସ୍ୱାର୍ଥ, ହିଂସା, କ୍ଷୁଦ୍ରତା ମୁଖ୍ୟ ହୋଇ ଉଠେ, ସେତେବେଳେ ସେ ପଶୁଠାରୁ ବି ହୀନ ହୋଇଯାଏ, ସେତେବେଳେ ସେ ସେହି ଭୟଙ୍କର ବସ୍ତୁ ହୋଇଉଠେ, ଯାହାକୁ ଅଧର୍ମ କହନ୍ତି । ଅଧର୍ମର ଗୋଟାଏ ରୂପ ନୁହେଁ,


Digitized by srujanika@gmail.com

ହଜାର ରୂପ । ଅଧର୍ମ ସହିତ ସାଲିସ କରି ହେବନାହିଁ, ଅଧର୍ମକୁ ଚେର ମୂଳ ସହିତ ପୂରା ଉପାଡି ଦେବାକୁ ପଡିବ । ଭାନୁପ୍ରକାଶ ସେଇକଥା କହନ୍ତି, ବାପା ବି । ଜରାସନ୍ଧ ଅଧର୍ମ, କଂସ ଅଧର୍ମ । ଭାନୁପ୍ରକାଶ କାର୍ଯ୍ୟ କରନ୍ତି, ଚେଷ୍ଟା କରନ୍ତି ଏହି ଅଧର୍ମକୁ କିପରି ପରାସ୍ତ କରି ହେବ । ବାପା ଧ୍ୟାନ କରନ୍ତି, ପୂଜା ଅର୍ଚ୍ଚନା କରନ୍ତି, ଅପେକ୍ଷା କରନ୍ତି ସେହି ଶକ୍ତିକୁ ଯେ ଅଧର୍ମର ମୂଳୋତ୍ପାଟନ କରି ପାରିବ ।

....ଅରିନ୍ଦମର ମନ ପୁଣି ପଛକୁ ଫେରିଗଲା । ଶିବିରରେ ଆଲୋକ ଲାଗିଲାଣି । ରାତି ଖାଇବାର ଯୋଗାଡ଼ଯନ୍ତ୍ର ଚାଲିଛି । କିଛି ପୂର୍ବରୁ ସେ ଶିବିର ବାହାରେ ଓ ଭିତରେ ଯେଉଁ ଉତ୍ତେଜନା ଲକ୍ଷ୍ୟ କରିଥିଲା, ସେ ଉତ୍ତେଜନା ଆଉ ନାହିଁ । ଲୋକେ ସାଧାରଣ ଭାବରେ କଥାବାର୍ତ୍ତା କରୁଛନ୍ତି । ଦି ଦିନ ପରେ ମଥୁରା ଫେରିବେ ସେଥିପାଇଁ ମୋଟାମୋଟି ସମସ୍ତେ ଖୁସି । ବଂଧୁମାନେ ବି କୁଆଡ଼େ ବାହାରକୁ ଚାଲିଗଲେଣି । କିନ୍ତୁ ଗୋଟାଏ କଥା ସେ ସେ ପର୍ଯ୍ୟନ୍ତ ବି ବୁଝିପାରିଲା ନାହିଁ । ଦିନରେ କ'ଣ ଘଟିଗଲା, ଏତେ ପାଟିଗୋଳ କାହିଁକି ? ସ୍ପଷ୍ଟ ବୁଝି ହେଉଛି ଏ ଯୁଦ୍ଧଫୁଦ୍ଧ ନୁହେଁ, ଅନ୍ୟ କିଛି କାରଣ । ଆଉ ଏ କାରଣଟା କଅଣ, କାହାରି କିଛି ଧାରଣା ନାହିଁ । ସେ ଶିବିର ବାହାରକୁ ଚାଲି ଚାଲି ଆସିଲା । ଅନ୍ୟାନ୍ୟ ଶିବିରରେ ବି ଆଲୋକ ଲାଗିଲାଣି । ଦୂରରେ ଜରାସନ୍ଧଙ୍କର ରାଜପ୍ରାସାଦ ବି ବହୁ ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଲାଣି । ଆହୁରି ଦୂରରୁ, ପାହାଡ଼ ଖୋଲରୁ, ଜଙ୍ଗଲ ଉପରୁ, ଉଜ୍ଜ୍ୱଳ ନକ୍ଷତ୍ର ପରି ମହାକାଳ ମନ୍ଦିରର ବିରାଟ ଜ୍ୟୋତି ଦିଶୁଛି । ସଂଧ୍ୟା ପବନରେ ଧୀରେ ଧୀରେ ମନ୍ଦିରର ଶଙ୍ଖ ଘଣ୍ଟା ଧ୍ୱନି ଭାସି ଆସୁଛି । ଅରିନ୍ଦମ ହାତ ଯୋଡି ମହାକାଳଙ୍କୁ ପ୍ରଣାମ କଲା । ମଣିଷ କେତେ ଜାଣେ, କେତେ ବା ବୁଝେ । ସେହି ମାନବୋତ୍ତର ଶକ୍ତିକୁ ପ୍ରାର୍ଥନା କରିବାହିଁ ତାର ମୁକ୍ତି ।

ଅରବିନ୍ଦକୁ ବାହାରେ ବେଶି ସମୟ ଅପେକ୍ଷା କରିବାକୁ ହେଲାନାହିଁ । ତା'ପାଖ ଦେଇ କିଏ ଦି'ଜଣ ଚାଲିଗଲେ । ତା'ର ମନେ ହେଲା କିଏ ତାକୁ କଅଣ କହିଲା । ସେ ସପ୍ରତିଭ ହୋଇ ଚାହିଁଲା ବେଳକୁ ସେ ଦି'ଜଣ ଲୋକ ଆଗେଇ ଗଲେଣି । କିନ୍ତୁ ପୁଣି ଯେପରି କିଏ କଅଣ କହିଲା, ଏଥର ସ୍ପଷ୍ଟ ଭାବରେ - ଗୌରୀ ମା'ଙ୍କ ମନ୍ଦିର । ଆମ ପଛେ ପଛେ ଆସ । ସେ ଏଆଡ଼େ ସେଆଡ଼େ ଚାହିଁଲା । କେହି କୁଆଡ଼େ ନାହାନ୍ତି । ସେ ଦି'ଜଣ ଲୋକ ବି ବେଶ୍ ଦୂରରେ । ଶିବିର ବାହାରେ ସେ ପ୍ରାୟ ଏକାକୀ । ସେ ଆଉ କିଛି ନ ଭାବି ସେ ଦି' ଜଣ ଯିବା ରାସ୍ତାରେ ହିଁ


Digitized by srujanika@gmail.com

ସେମାନଙ୍କୁ ଆଖି ଆଗରେ ରଖି ଚାଲିଲା । ଦି ପାଖରେ ବୁଦୁବୁଦିଆ ଜଙ୍ଗଲ । ମଝିରେ ରାସ୍ତା ଅଛି । ସେ ମାଛି ଅଂଧାରରେ ବି ରାସ୍ତା ବୁଝି ହେଉଥାଏ । ଅରିନ୍ଦମର ମନେ ହେଲା ଏ ରାସ୍ତା ତ ତାର ଚିହ୍ନା ନୁହେଁ । ସେ ଆଗରୁ ଗୌରୀ ମାଙ୍କ ମନ୍ଦିରକୁ ଯାଇଛି । କିନ୍ତୁ ସେ ଅନ୍ୟ ରାସ୍ତାରେ । ଆଉ ତାଙ୍କ ଶିବିରରୁ ଗୌରୀମାଙ୍କ ମନ୍ଦିର ଖୁବ୍ ଦୂର ନୁହେଁ । ରାସ୍ତା ଜଙ୍ଗଲ ଭିତର ଦେଇ । ହେଲେ ବିଶେଷ ଅସୁବିଧା ନାହିଁ । ଆଉ ତା ଶିବିରରୁ କିଛି କିଛି ଲୋକ ଗୌରୀ ମାଙ୍କ ମନ୍ଦିର କଥା ଜାଣନ୍ତି, ମା'ଙ୍କ ଦର୍ଶନ କରିବାକୁ ଆସିଛନ୍ତି । ନାଁ' ଏ ରାସ୍ତା ତାର ଚିହ୍ନା ନୁହେଁ । ଏ ଆଦୌ ଗୌରୀମାଙ୍କ ମନ୍ଦିରକୁ ରାସ୍ତା ନୁହେଁ । ଏ ଅନ୍ୟ କେଉଁ ରାସ୍ତା । କିନ୍ତୁ ଲୋକ ଦି ଜଣଙ୍କୁ ତ ଆଗରେ ଛାଇ ଛାଇ ପରି ଦେଖି ହଉଛି । ଭୁଲ୍ ହେଲା କି ? ସେ ଫେରି ଚିହ୍ନା ବାଟରେ ଯିବ କି ? ତା'ର ନିର୍ଦ୍ଦେଶ ଥିଲା ସଂଧ୍ୟା ପରେ ଗୌରୀ ମା'ଙ୍କ ମନ୍ଦିରକୁ ଯିବା ପାଇଁ । ସେ ଏକା ଏକା ଯାଇଥାନ୍ତା, ଯାଇ ପାରିଥାନ୍ତା ବି । ବୋଧହୁଏ ଗୋଟାଏ ମୁହୂର୍ତ୍ତ ପାଇଁ ସେ ସନ୍ଦେହରେ ପଡି ସେହି ଜଙ୍ଗଲ ରାସ୍ତା ମଝିରେ ଛିଡ଼ା ହୋଇ ଯାଇଛି । ସାଙ୍ଗେ ସାଙ୍ଗେ ସେ ଚମକି ଉଠିଲା। ସେଇ ଶୂନ୍ୟବାଣୀ - ନାଁ, ଯାଅ । ତାର ସାରା ଦେହ ଶୀତେଇ ଉଠିଲା । କିଏ କହିଲା ? ନାଁ ନିଜର ଭ୍ରମ । ସେ ଲୋକ ଦି'ଜଣ ତ ବହୁତ ଆଗେଇ ଗଲେଣି । ସେ ଟିକେ ଏପାଖ ସେପାଖ ଚାହିଁ ଆଉ କିଛି ନ ଭାବି ଯାଉଥିବା ରାସ୍ତାରେ ଆଗେଇ ଚାଲିଲା । ଭାନୁପ୍ରକାଶ ଆଉ ଯାହା ହୁଅନ୍ତୁ, ସେ ଯେ ନିଶ୍ଚିତ ଜଣେ ଯାଦୁକର, ଏ ବିଶ୍ୱାସ ତାର ଦୃଢ଼ ହେଲା ।

ଅରିନ୍ଦମର ସନ୍ଦେହ ଠିକ୍ ଥିଲା । ସେ ଗୌରୀ ମା'ଙ୍କ ମନ୍ଦିରକୁ ଗଲାନାହିଁ । ଗୌରୀ ମା'ଙ୍କ ମନ୍ଦିରକୁ ଆଡ଼େଇ ସେଇ ଜଙ୍ଗଲି ଚଲାବାଟ ଆଉ ଗୋଟିଏ ଛୋଟ ମନ୍ଦିରରେ ଶେଷ ହେଲା । ମନ୍ଦିର ଶିବଙ୍କର । ମନ୍ଦିର ଛୋଟ, ମନ୍ଦିରର ମଣ୍ଡପ ବି ଛୋଟ । କିନ୍ତୁ ଯାହା ଦୀପ ଦିଆଯାଇଛି ସାରା ମଣ୍ଡପ ଉଜ୍ଜ୍ୱଳ ହୋଇ ଦିଶୁଛି । ସେ ଦୂରରୁ ଲକ୍ଷ୍ୟ କଲା ମଣ୍ଡପରେ ବେଶି ଲୋକ ନାହାନ୍ତି । ଗୋଟାଏ କଡକୁ ପାଞ୍ଚ ସାତ ଜଣ ବସିଛନ୍ତି । ସେ ଭାନୁପ୍ରକାଶ ଓ ଭାନୁପ୍ରିୟଙ୍କୁ ଚିହ୍ନିଲା । ଅନ୍ୟମାନଙ୍କ ମଧ୍ୟରୁ ଆହୁରି ଦୁଇ ତିନି ଜଣ ବି ଚିହ୍ନା ଚିହ୍ନା ଲାଗିଲା । ମନେ ହେଲା ସେମାନେ ଯେପରି ତାକୁ ଅପେକ୍ଷା କରି ରହିଛନ୍ତି । ସେ ପାଖକୁ ଲାଗି ଆସିଲା, ନମସ୍କାର କଲା, ପଚାରିଲା - 'ଟିକେ ଡେରି ହେଲା କି ?'

ଭାନୁପ୍ରକାଶ ହସିଲେ, କହିଲେ, 'ନାଁ ଠିକ୍ ଅଛି । ବସ ।' ତା'ପରେ ସେ ପୂଜକଙ୍କୁ ଡାକିଲେ, 'ନନା, ଭୋଗ ଆଣ ।'

ଭୋଗ ଆସିଲା, କିଛି ଫଳ ମୂଳ, ଓ ଅନ୍ନଭୋଗ । ପୂଜକ ଧୁଆଧୋଇ

ହୋଇଥିବା ପରିଚ୍ଛନ୍ନ ପତ୍ରରେ ଭୋଗ ସମସ୍ତଙ୍କୁ ବାଣ୍ଟିଦେଲେ ।

ଭାନୁପ୍ରକାଶ କହିଲେ, 'ଅରିନ୍ଦମ ଖାଅ । ଭୋଗ ଅଳ୍ପ ଅଛି । ଏ ଦିନ ଭୋଗ, ସଂଧ୍ୟା ଭୋଗ ଲାଗି ହୋଇନାହିଁ । ଲାଗି ହେଲାପରେ ଆମେ ଖାଇବା । କିଛି ସମୟ ଲାଗିବ । ନାଁ, ନାଁ, ବ୍ୟସ୍ତ ହୁଅନା । ମୁଁ ନିଜେ ନେଇ ତୁମକୁ ଶିବିରରେ ଛାଡ଼ିଦେଇ ଆସିବି । ଖାଇ ସାର୍, କଥା ହେବା ।'

ଖାଉ ଖାଉ ଅରିନ୍ଦମ ଦେଖିଲା ଏ ମନ୍ଦିର ଯେ କେବଳ ଛୋଟ ତା ନୁହେଁ, ମନ୍ଦିରର ଜାଗା ବି ଛୋଟ । ବାହାରୁ ଏଠି ଗୋଟିଏ ମନ୍ଦିର ଅଛି ଜାଣିବା ସହଜ ନୁହେଁ । ଛୋଟ ବଡ଼ ଗଛ ସବୁ ଠେଲିଠାଲି, ଜାକିଜୁକି ହୋଇ ଚାରିପାଖରେ ଘେରି ରହିଛନ୍ତି । ଏପରିକି ମନ୍ଦିରର ମଣ୍ଡପକୁ ମଧ ଗଛର ଡାଳ ସବୁ ଲମ୍ବି ଆସିଥାଏ । ସଂଧ୍ୟା ହୋଇଯାଇଥିଲେ ମଧ ଚଢ଼େଇଙ୍କ କୋଳହଳ କମିନାହିଁ । ଚଢ଼େଇଙ୍କ ଡାକସବୁ ଅତ୍ୟନ୍ତ ପାଖରୁ ପାଖରୁ ଭାସି ଆସୁଛି । ହଁ, ଗୌରୀମାଙ୍କ ମନ୍ଦିରଠୁଁ ଏ ମନ୍ଦିର ସଂପୂର୍ଣ୍ଣ ଅଲଗା । ସତେ ଯେପରି ଚୁପ୍‌ଚାପ୍, ଲୁଚିଲାଚି ରହିବା ପାଇଁ ଏ ମନ୍ଦିର ତିଆରି ହୋଇଛି । ଅରିନ୍ଦମର ମନର ଭାବନା ଯେପରି ସମର୍ଥନ କରି ଭାନୁପ୍ରକାଶ କହିଲେ, 'ଏ ମନ୍ଦିର କଥା ଖୁବ୍ କମ ଲୋକ ଜାଣନ୍ତି । ଏ ମନ୍ଦିର ଦିନରେ ଖୋଲେ ନା, ରାତିରେ ହିଁ ଖୋଲେ । ରାତିରେ ବି ବେଶୀ ସମୟ ଖୋଲା ରହେନା । ତେବେ ଆଜି ଖୋଲା ରହିବ । ଆମେ ଏଠୁ ଯିବା ପର୍ଯ୍ୟନ୍ତ ।'

'ଏ ମନ୍ଦିର କଥା କଅଣ ଆଉ କେହି ଜାଣନ୍ତି ନାହିଁ ?' ଅରିନ୍ଦମ ପଚାରିଲା ।

'ଜାଣନ୍ତି ।' ଭାନୁ ପ୍ରକାଶ କହିଲେ, 'କିଛି କିଛି ଲୋକ ଜାଣନ୍ତି । ବିଶେଷ କରି ଆମରି ଲୋକେ ।'

'ଜରାସନ୍ଧଙ୍କ ଲୋକ ?'

ଭାନୁପ୍ରକାଶ ହସିଲେ, 'ତେବେ ସେ ବି ଆମ ଲୋକ । ଜରାସନ୍ଧଙ୍କ ନିଜ ଲୋକ ଏ ଅଂଚଳକୁ ଭୟ କରନ୍ତି । ଆସନ୍ତି ନାହିଁ । ସାଧାରଣ ଲୋକଙ୍କର ବି ସମାନ ଭୟ । ସେମାନଙ୍କର ଧାରଣା ଏ ଭୂତପ୍ରେତଙ୍କର ସ୍ଥାନ ।' ଭାନୁପ୍ରକାଶ ଟିକିଏ ଚୁପ କରିଗଲେ, କହିଲେ, 'ଏ ଭୂତପ୍ରେତ ଓ ବ୍ରହ୍ମରାକ୍ଷସଙ୍କର ସ୍ଥାନ ବି । ତୁମେ ଦିନରେ ଆସିଥିଲେ ତା'ର ପରିଚୟ ପାଇଥାନ୍ତ । ଅସଂଖ୍ୟ ବୃକ୍ଷରେ ଭୂତପ୍ରେତ କିପରି ରହିଛନ୍ତି ଦେଖିଥାନ୍ତ । ରାତିରେ ବି ପରିଚୟ ପାଇବ, ଅପେକ୍ଷା କର ।'

ଅରିନ୍ଦମର ଦେହ ଶିରଶିରେଇ ଉଠିଲା । ଏ ଆଶ୍ଚର୍ଯ୍ୟ ଲୋକ, ଆଶ୍ଚର୍ଯ୍ୟ କଥା ! 'ଆପଣମାନେ କଅଣ ଭୟ କରୁ ନାହାନ୍ତି ?' ଅରିନ୍ଦମ ରହି ରହି ପଚାରିଲା ।

'ହଁ, ପ୍ରଥମେ ପ୍ରଥମେ ଆମେ ଭୟ କରୁଥିଲୁ । ଏବେ ଆଉ ନୁହେଁ । ସେମାନେ ସବୁ


Digitized by srujanika@gmail.com

ଆମର ଦେହସୁଆ ହୋଇଗଲେଣି । ସେମାନେ ଆମର ଶତ୍ରୁ ନୁହନ୍ତି, ବଂଧୁ । ସେମାନେ ଆମର କ୍ଷତି କରନ୍ତି ନାହିଁ । ବରଂ ସେମାନଙ୍କ ଯୋଗୁଁ ବାହାର ଲୋକେ ଏଠାକୁ ଆସିବାକୁ ଭୟ କରନ୍ତି ।' ଭାନୁପ୍ରକାଶ ପୁଣି କିଛି ସମୟ ଚୁପ ହୋଇ ରହିଲେ । କହିଲେ, 'ଅରିନ୍ଦମ ତୁମେ ଭୟ କରନା । ସେମାନେ ଠିକ୍ ଅଛନ୍ତି । ତୁମେ ଗୋଟାଏ କଥା ଭାବି ଦେଖ, ଜରାସନ୍ଧ ବେଶି କ୍ଷତିକାରକ, ନା ସେମାନେ ? ଆମେ ତ ସବୁ ଜୀବନରୁ ପାଣି ଛଡ଼େଇ ଦେଇଛୁ । ଭୟ କଅଣ ? କାହା ପାଇଁ ? ଭୂତ ପ୍ରେତ ଭୟ ତ ବ୍ୟକ୍ତିଗତ ଭୟ । କିନ୍ତୁ ଜରାସନ୍ଧ ? ଜରାସନ୍ଧ ଭୟ ତ ସମସ୍ତଙ୍କ ପାଇଁ, ସମଗ୍ର ମଣିଷ ଜାତି ପାଇଁ । ଅମଙ୍ଗଳ, ଅନ୍ୟାୟ, ଅଧର୍ମ । ଭୂତ ପ୍ରେତଙ୍କ ବିରୁଦ୍ଧରେ ଲଢ଼ିବା ଦରକାର ନାହିଁ । କିନ୍ତୁ ଜରାସନ୍ଧ ବିରୁଦ୍ଧରେ ତ ଲଢ଼ିବାକୁ ହେବ । କେବଳ ଆଜି ନୁହେଁ, ସବୁବେଳେ ଏହି କଥା । ସେଇଥିପାଇଁ ତ ଭଗବାନ ପୃଥିବୀକୁ ଆସନ୍ତି ।'

ଅରିନ୍ଦମ ଚମକି ଉଠିଲା । ଏ ତ ଭାନୁପ୍ରକାଶଙ୍କ କଥା ନୁହେଁ, ବାପାଙ୍କ କଥା । ବାପା ପ୍ରାୟ ଏହିପରି କହନ୍ତି । ଧର୍ମରେ ଗ୍ଲାନି ହେଲେ ଭଗବାନ ଆସିବେ । କିନ୍ତୁ ଭଗବାନ କଅଣ ମଣିଷଠଉଁ ଅଲଗା, ଅରିନ୍ଦମ ଭାବିଲା । ଆଜି ଭାନୁପ୍ରକାଶ ଓ ତାଙ୍କ ଲୋକେ ଯେପରି ଦମ୍ଭ ଓ ସାହସରେ ଅନ୍ୟାୟ ଓ ଅଧର୍ମ ବିରୁଦ୍ଧରେ ଛିଡ଼ା ହୋଇଛନ୍ତି ଏ କଅଣ ଭଗବାନଙ୍କ କାମ ନୁହେଁ ?

ଭାନୁପ୍ରକାଶ କହିଲେ, 'ଛାଡ ସେସବୁ କଥା । ଭଗବାନ ଆସନ୍ତୁ କି ନ ଆସନ୍ତୁ, କାମ ଚାଲିଛି ଚାଲିବ । ଏ ପୃଥିବୀରେ ଯେତେ ପ୍ରାଣୀ ଅଛନ୍ତି ବଂଚିବା ପାଇଁ ପ୍ରତ୍ୟେକଙ୍କର ନିର୍ଦ୍ଦିଷ୍ଟ ସ୍ଥିତି ରହିଛି । ମଣିଷର ତ ବିଶେଷ କରି । ଠିକ୍ ଭାବରେ ବଂଚିବାକୁ ହେଲେ ଯାହା କରିବା କଥା ଆମେ କରୁଛୁ । ଅନ୍ୟାୟ, ଅଧର୍ମ ବିରୁଦ୍ଧରେ ଲଢ଼ିବା ଏହିପରି ଗୋଟାଏ କାମ । ଆମେ ଆମ ଢଙ୍ଗରେ କରୁଛୁ । ଉଦ୍ଦେଶ୍ୟ ଗୋଟାଏ - ମଣିଷ କିପରି ଠିକ୍ ଭାବରେ ବଂଚି ରହିବ ।'

ଅରିନ୍ଦମର ଭୟ କଟିଗଲାଣି । ମନ ସ୍ଥିର ହୋଇ ଆସିଲାଣି । ସେ ଆଉ ଥରେ ଚାରିପାଖକୁ ଚାହିଁଲା । ସୁନ୍ଦର ପରିବେଶ । ଏ ଖାଲି ଦେବତାଙ୍କର ବା ମଣିଷର ଆସ୍ଥାନ ନୁହେଁ । ଏ ବହୁ ବୃକ୍ଷଲତା, ପଶୁପକ୍ଷୀ ଓ ବହୁ ଅଦୃଶ୍ୟ ପ୍ରାଣୀମାନଙ୍କର ଆସ୍ଥାନ । ତା ମନ ସହଜ ହୋଇ ଆସିଲା । ସେ ଭାନୁପ୍ରକାଶଙ୍କୁ ଚାହିଁ କହିଲା, 'ଆଜି ସକାଳେ ଜରାସନ୍ଧଙ୍କର ରାଜପ୍ରାସାଦର ହତାରେ ଆମକୁ ଭୂରି ଭୋଜନ ଦିଆଗଲା ।'

ଭାନୁପ୍ରକାଶ କହିଲେ, "ଆମେ ଜାଣୁ । ସେଠି ଜରାସନ୍ଧ ଓ କଂସ ନିଜେ ରହି

ତୁମ୍ଭମାନଙ୍କୁ ଆପ୍ୟାୟିତ କଲେ ।"

'ହଁ କଲେ,' ଅରିନ୍ଦମ କହିଲା, 'ଆମ୍ଭମାନଙ୍କୁ ବି ସେମାନଙ୍କର ନିକଟରେ ମୁଣ୍ଡ ନୋଇଁ ମାନିନେବାକୁ ହେଲା ଯେ ସେମାନେ ଆମର ପ୍ରଭୁ ।'

ଭାନୁପ୍ରକାଶ ହୋ ହୋ ହୋଇ ହସି ଉଠିଲେ, କହିଲେ, 'ଆମ ପାଖରେ ଖବର ତୁମେ ପ୍ରଥମେ ଖୁବ୍ ଅସ୍ଥିର ହୋଇ ଉଠିଥିଲ । ଖାଲି ଭୁରି ଭୋଜନ ନୁହେଁ, ଭୂରି ଭୂରି ମଣିମୁକ୍ତା, ଆଉ ସିପେହୀ ମାନଙ୍କର ଦୌରାତ୍ମ୍ୟ । ଲମ୍ୱା ଧାଡିରେ ଏ ପାଖ ସେପାଖ ନ ହୋଇ ଯେମିତି କୁହାଯାଉଛି ସେମିତି ଯିବ, ଆଉ ଯାହା କରିବାକୁ କୁହାଯାଉଛି ତାହା କରିବ । ନୁହେଁ? ଖାଲି ଖାଇ ଦେଇ ଚାଲି ଆସିଲେ କେମିତି ହବ ? କଂସ ଜରାସନ୍ଧଙ୍କର ଜୋଇଁ, ଆଜି ଜରାସନ୍ଧ, କାଲି କଂସ । ତୁମେ ମଥୁରା ଲୋକେ ଭବିଷ୍ୟତରେ କେମିତି କଅଣ କରିବ କିଛି ଶିଖି ଥା ।'

'ଆପଣ ଯାହା କହୁଛନ୍ତି ଠିକ୍', ଅରିନ୍ଦମ କହିଲା । 'ମତେ ଖୁବ୍ ଅସ୍ଥିର ଲାଗୁଥିଲା । ଖାଇବାକୁ ଦେବାରେ ସମ୍ମାନ ନାହିଁ, ଆଗ୍ରହ ନାହିଁ । ଆମେ ଯେମିତି ଗୋଡ଼କୁ ଗୋଡ଼ ଛନ୍ଦାଛନ୍ଦି ହୋଇଥିବା ଛେଳି କି ମେଣ୍ଢା, ଆମ କାମ ଖାଲି ମେଁ ମେଁ କରିବା ।'

'ସେଇଟା ହିଁ ଦୁଃଖ, ମଣିଷ ଛେଳି ମେଣ୍ଢା ନୁହେଁ, ମଣିଷ । ମଣିଷ ମଣିଷକୁ ଯେ କେତେ ବାଟରେ କଷ୍ଟ ଦିଏ ତୁମେ ତା' ଭାବି ପାରିବ ନାହିଁ ।' ଭାନୁପ୍ରକାଶ କହିଲେ । 'ସେଦିନ ଯାହା ସବୁ ହେଲା ମୁଁ ଜାଣେ, ମୁଁ ତୁମରି କଥା ହିଁ ଭାବୁଥିଲି । ଆମର ଦି'ଜଣ ଲୋକ ସବୁବେଳେ ତୁମ ପାଖେ ପାଖେ ଥିଲେ ।'

'ମୁଁ ଜାଣେ', ଅରିନ୍ଦମ କହିଲା, 'ମୋର ଏକା କିଛି ନିଷ୍ପତ୍ତି ନେବାକୁ ଥିଲେ ମୁଁ ଆଦୌ ସେ ଭୋଜିକୁ ଯାଇ ନ ଥାନ୍ତି । ଖାଇବାରେ ମୋର ଆଗ୍ରହ ନାହିଁ । ମୁଣ୍ଡିଆ ମାରି ନିଜକୁ କୃତ୍ୟକୃତ୍ୟ କର । ଏ କଅଣ ?'

'ଯେଉଁମାନଙ୍କ ହାତରେ କ୍ଷମତା, ଅର୍ଥ, ଆଉ ଯେଉଁମାନେ ଅତି ସହଜରେ ଅତ୍ୟାଚାର କରିପାରନ୍ତି, ଏ ସେଇମାନଙ୍କର ଢଙ୍ଗ ।' କହିଲେ ଭାନୁପ୍ରକାଶ । ସଂଧ୍ୟାଭୋଗ ଠାକୁରଙ୍କ ପାଖରେ ଲାଗି ହୋଇ ଯାଇଥିଲା । ଭାନୁପ୍ରକାଶ ଅରିନ୍ଦମକୁ କହିଲେ, 'ଆସ ଯିବା । ଠାକୁରଙ୍କୁ ଦର୍ଶନ କରି ଆସିବା ?'

ବାହାର ମଣ୍ଡପ ଖୁବ୍ ପ୍ରଶସ୍ତ ନ ହେଲେ ବି, ଗର୍ଭଗୃହ ଖୁବ୍ ଛୋଟ ନୁହେଁ । ଭିତରେ ଶିବଙ୍କର ନଟରାଜ ମୂର୍ତ୍ତି । ଅରିନ୍ଦମ ଲକ୍ଷ୍ୟ କଲା କାରୁକାର୍ଯ୍ୟ ଅତି ସୁନ୍ଦର, ଓ ଦୀପର ଉଜ୍ଜ୍ୱଳ ଆଲୋକରେ ମୂର୍ତ୍ତି ଜାଜ୍ଜ୍ୱଲ୍ୟମାନ ହୋଇ ପ୍ରକାଶ ପାଉଛି । ଅରିନ୍ଦମ ନଟରାଜଙ୍କୁ ପ୍ରଣାମ କଲା । କହିଲା, 'ଏ ମୂର୍ତ୍ତି ଖୁବ୍ ସୁନ୍ଦର । ଠିକ୍ ଜୀବନ୍ତ ମଣିଷ

ପରି ।'

'ଏ ମୂର୍ତ୍ତି ଆମକୁ ଏଇ ମଗଧର ଜଣେ ପ୍ରାଚୀନ ଆଚାର୍ଯ୍ୟ ଦେଇଛନ୍ତି । କିନ୍ତୁ ଏ ମୂର୍ତ୍ତି କେବେ ତିଆରି ହୋଇଛି, ବା କିଏ ତିଆରି କରିଥିଲେ ସେ ଜାଣନ୍ତି ନାହିଁ । ତାଙ୍କ ଆଶ୍ରମରେ ଏ ମୂର୍ତ୍ତି ବହୁଦିନ ଧରି ପୂଜା ପାଉଥିଲେ । କିନ୍ତୁ ଜରାସନ୍ଧଙ୍କ ଯୋଗୁ ତାଙ୍କର ଆଶ୍ରମ ଭାଙ୍ଗିଗଲା । ସେ ମୂର୍ତ୍ତି ଆମକୁ ଦେଇ କୁରୁକ୍ଷେତ୍ର ଚାଲିଗଲେ ।' ଭାନୁ ପ୍ରକାଶ କହିଲେ ।

ଟିକିଏ ରହି ଭାନୁପ୍ରକାଶ ପୁଣି କହିଲେ, 'ମଗଧରେ ଆଚାର୍ଯ୍ୟ ମାନଙ୍କର ସମ୍ମାନ ନାହିଁ । ଜ୍ଞାନ, ତପ, ଭକ୍ତି ଏ ସବୁର ଜରାସନ୍ଧ ପାଖରେ କିଛି ମୂଲ୍ୟ ନାହିଁ । ମଗଧରେ ଆଶ୍ରମ କରି ରହିବାକୁ ହେଲେ ଜରାସନ୍ଧ ପ୍ରତି ପ୍ରଥମ ଆନୁଗତ୍ୟ, କୌଣସି ଦେବଦେବୀ ନୁହନ୍ତି । ଜରାସନ୍ଧ ହିଁ ସର୍ବ ଶକ୍ତିମାନ ଏ କଥା ମାନିବାକୁ ହେବ । ଏହାହିଁ ଅଧାର୍ମିକ, ଅତ୍ୟାଚାରୀ ଶାସକର ପ୍ରଥମ ନିୟମ ।'

'ତା'ହେଲେ କଂସ କଅଣ... ?' ଅରିନ୍ଦମ କହିଲା ।

ହଁ ଭାନୁପ୍ରକାଶ କହିଲେ, 'କଂସ ଠିକ୍ ସେଇଆ ହେବ । ଅପେକ୍ଷା କର । ତା ନ ହେଲେ ଜରାସନ୍ଧ କଂସକୁ ନିଜର ଜୋଇଁ କରି ବାଛିବ କାହିଁକି ? ଦେଖିଲ ତ କଂସକୁ କିପରି ଶ୍ରେଷ୍ଠ ମଲ୍ଲ କରାଗଲା । କଂସ ତ ମଥୁରାର ରାଜା ହେବ । ତା'ପରେ ଯାହା ହେବ ସେ ସବୁ ଜରାସନ୍ଧର ଆୟୋଜନରେ ହିଁ ହେବ ।'

ଆଉ କିଛି ବଂଧୁ ଆସିଛନ୍ତି । ନଟରାଜଙ୍କ ଦର୍ଶନ ସାରି ସମସ୍ତେ ଗର୍ଭଗୃହରୁ ଫେରି ଆସିଲେ । ଚାରିପାଖର ଜଙ୍ଗଲ ଚୁପ୍‌ଚାପ ହୋଇ ଆସିଲାଣି । ବାହାର ପବନରେ ଚନ୍ଦନ ବୋଳିଲା ପରି ଶୀତଳତା, ମଣ୍ଡପ ପରିଷ୍କାର ପରିଚ୍ଛନ୍ନ କରି ଦିଆ ଯାଇଛି । ସମସ୍ତେ ମଣ୍ଡପରେ ଜାକିଜୁକି ହୋଇ ବସିଲେ । ପରିଷ୍କାର କଦଳୀ ପତ୍ରରେ ପୂଜକ ପ୍ରଥମେ ପାୟସାନ୍ନ, ଓ ପରେ ପରେ ଅନ୍ୟାନ୍ୟ ଭୋଗ ଦେଇଗଲେ ।

ଖାଉ ଖାଉ ଭାନୁପ୍ରକାଶ ଅରିନ୍ଦମକୁ ପଚାରିଲେ, 'ଅରିନ୍ଦମ, ତୁମ ବାପା ତ ମହାକାଳଙ୍କୁ ପୂଜା କରନ୍ତି ? ବହୁତ ସମୟ ପୂଜା କରନ୍ତି ବୋଧେ ?'

'ହଁ, ପ୍ରାୟ ଅନେକ ସମୟ । କିନ୍ତୁ ଦରକାର ହେଲେ ପୂଜା କାଟଛାଣ୍ଟ କରିଦିଅନ୍ତି ।'

'ବାପାଙ୍କୁ ଆମେ ଜାଣୁ ।' ଭାନୁପ୍ରକାଶ କହିଲେ, 'ତାଙ୍କୁ ଆମେ ସମ୍ମାନ କରୁ । ମୋର ମନେହୁଏ ମଥୁରାର ଯାଦବମାନେ ବି ତାଙ୍କୁ ବହୁତ ସମ୍ମାନ କରନ୍ତି ।'

'ହଁ କରନ୍ତି', ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ କହିଲା, 'ଆପଣ କଅଣ ବାପାଙ୍କୁ ଜାଣନ୍ତି ? ଆପଣ କ'ଣ ମଥୁରା ଯାଇଛନ୍ତି ?'

'ଆସ୍ତେ, ଆସ୍ତେ', ଭାନୁପ୍ରକାଶ ହସିଲେ, 'ହଁ, ମୁଁ ମଥୁରା ଯାଇଛି । ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରିଛି । ତାଙ୍କରି ଠାରୁ ତ ଆମେ ତୁମର ଖବର ପାଇଥିଲୁ । ସେ ତ ତୁମ ଉପରେ ନଜର ରଖିବାକୁ ଆମକୁ ଅନୁରୋଧ କରିଥିଲେ ।'

ସମସ୍ତେ ଚୁପ୍‌ଚାପ ଖାଉଥାନ୍ତି । ଭାନୁପ୍ରକାଶଙ୍କ ସେ ପାଖକୁ ଭାନୁପ୍ରିୟ ବସିଥାନ୍ତି। ସେ ବି ଅଳ୍ପ ହସିଲେ, କହିଲେ, 'ଅରିନ୍ଦମ, ତୁମେ ତ ଆମ ଭିତରୁ ଜଣେ ହୋଇ ଗଲଣି । କଅଣ ଭାବୁଛ ଏତେ ?'

ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କଟି ନ ଥିଲା । ସେ କହିଲା, 'ନା, ମୁଁ ବାପାଙ୍କ କଥା ଭାବୁଛି । ମୋର ଧାରଣା ସେ ଏସବୁ ବିଷୟରେ ବେଶୀ ପଶିବାକୁ ଚାହାନ୍ତି ନାହିଁ । ମଥୁରାର ଯାଦବମାନେ, ଯାଦବ ମୁଖିଆମାନେ ତାଙ୍କ କଥା ଶୁଣନ୍ତି । ସେ ତ ରାଜା ଉଗ୍ରସେନଙ୍କର ବ୍ୟକ୍ତିଗତ ବଂଧୁ, ଉଗ୍ରସେନ ପ୍ରାୟ ସବୁ କଥାରେ ତାଙ୍କର ମତାମତ ନିଅନ୍ତି । କିନ୍ତୁ ଆପଣମାନଙ୍କ ପରି ଏ ପ୍ରକାର ଟିକିନିଖି କାମ ତାଙ୍କୁ କେବେ କରିବାର ମୁଁ ଦେଖିନାହିଁ ।

'ନାଁ, ସେ କରନ୍ତି ନାହିଁ ।' ଭାନୁପ୍ରକାଶ କହିଲେ, 'ତୁମେ ଠିକ୍ କହିଛ । ତାଙ୍କର ଶକ୍ତି ତାଙ୍କର ତପର ଶକ୍ତି, ଜ୍ଞାନର ଶକ୍ତି, ପୂଜା ଅର୍ଚ୍ଚନାର ଶକ୍ତି । ତାଙ୍କର ସେହି ଶକ୍ତି ହିଁ ସାହସ ଆଣେ । ଜରାସନ୍ଧର ଅଧର୍ମ ମଗଧରୁ ମଥୁରାକୁ ଯିବ, ଏ କଥା ସେ ଆମକୁ ବହୁତ ଆଗରୁ କହିଛନ୍ତି । ତାଙ୍କରି କଥାରେହିଁ ଆମେ କଂସ ଉପରେ ନଜର ରଖିଛୁ । ଆଉ ଆମେ ନିକଟରେ ମଗଧରୁ ମଥୁରାକୁ ଯିବୁ । ଆଉ ସେତେବେଳେ ବାପା ନୁହନ୍ତି, ତୁମେ ହିଁ ଆମକୁ ସାହାଯ୍ୟ କରିବ ।' ଅରିନ୍ଦମର ମନେ ହେଲା ଯେପରି ନୂଆ ନୂଆ ଅଞ୍ଚଳ ତା ପାଇଁ ଖୋଲି ଯାଉଛି । ସେ ମନେ ମନେ ଖୁସି ହେଲା ଯେ ବାପା ଅନ୍ତତଃ ଏମିତି ହବ ବୋଲି ଜାଣନ୍ତି, ତାଙ୍କର ପରୋକ୍ଷ ସମର୍ଥନ ଅଛି ।

ଖିଆପିଆ ସରି ଯାଇଥାଏ । ଅନ୍ୟ ଯେଉଁମାନେ ଆସିଥିଲେ, ସେମାନେ ଜଣେ ଜଣେ ଚାଲିଗଲେ, ମନ୍ଦିର ଶୂନଶାନ ହୋଇଗଲା । ପୂଜକ ବି ଠାକୁରଙ୍କ ଗର୍ଭଗୃହ ବନ୍ଦ କରି ଚାଲିଗଲେଣି । ସବୁ ଦୀପ ଲିଭେଇ ଦିଆଗଲାଣି । କେବଳ ଗୋଟିଏ ଦୀପ ଜଳୁଥାଏ । ମଣ୍ଡପରେ କେବଳ ସେମାନେ ତିନିଜଣ - ଭାନୁପ୍ରକାଶ, ଭାନୁପ୍ରିୟ ଓ ସେ ନିଜେ । ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ ଶିବିରକୁ ଯିବ । ଆମେ ଛାଡି ଦେଇ ଆସିବୁ । ଆସ, ଅଳ୍ପ ସମୟ ବସ । ଅନ୍ୟ କଥା ଅଛି ।'

ସେମାନେ ତିନିଜଣ ଦୀପଠାରୁ ଦୂରରେ, ଅଧା ଆଲୁଅ ଅଧା ଛାଇରେ, ମଣ୍ଡପର ଗୋଟାଏ କଣରେ ଯାଇ ବସିଲେ ।

ଭାନୁପ୍ରକାଶ କହିଲେ, 'ଆମେ ଯେଉଁ କଥା କହିବୁ, ତୁମେ ଏଠୁ ଯିବା ସାଙ୍ଗେ

ସାଙ୍ଗେ ଭୁଲିଯିବ । କଥା ଦିଅ । ଏ କଥା ଯେପରି ତୁମ ପାଖରୁ ଦ୍ୱିତୀୟ ଲୋକ ନ ଜାଣେ । ଏ କେବଳ ତୁମ ଜାଣିବା ପାଇଁ ।'

ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଲା । କହିଲା, 'ଠିକ୍ ଅଛି । କୁହନ୍ତୁ ।'

'ତୁମେ ତ ଆମ ସଂଗଠନର କିଛି କିଛି ଦେଖିଛ, କିଛି ଲୋକଙ୍କୁ ବି ଜାଣିଲଣି', କହିଲେ ଭାନୁପ୍ରକାଶ 'କିନ୍ତୁ ତୁମେ ଯାହା ଦେଖିଲ ସେତିକି ନୁହେଁ, ତା'ଠାରୁ ବହୁତ ବଡ଼, ଆର୍ଯ୍ୟାବର୍ତ୍ତର ପ୍ରାୟ ସବୁ ରାଜ୍ୟରେ ଆମର ସଂଗଠନ ଅଛି, ଆମର ଲୋକ ଅଛନ୍ତି । କିନ୍ତୁ ଆମର ମୁଖ୍ୟ କାର୍ଯ୍ୟାଳୟ ଏଇଠି, ମୁଖ୍ୟ କାର୍ଯ୍ୟ ଏଇଠି, ଏଇ ମଗଧରେ । କାରଣ ଜରାସନ୍ଧ କେବଳ ଅତ୍ୟାଚାରୀ, ବର୍ବର, ରକ୍ତପିପାସୁ ଶାସକ ନୁହେଁ, ସଂପୂର୍ଣ୍ଣ ଅଧର୍ମ, ଓ ଆର୍ଯ୍ୟ ମାନଙ୍କର ନୀତିନିୟମ, ଧର୍ମ, ଚରିତ୍ର ସବୁର ବିରୋଧୀ । ଅଧିକାଂଶ ଆର୍ଯ୍ୟ ରାଜା ଏକଥା ଜାଣନ୍ତି, କିନ୍ତୁ ଜରାସନ୍ଧକୁ ଭୟ କରନ୍ତି । ଜରାସନ୍ଧ ବିରୁଦ୍ଧରେ ଛିଡ଼ା ହେବାପାଇଁ ସେମାନଙ୍କର ସାହସ ବା ଶକ୍ତି ନାହିଁ । ତେଣୁ ଜରାସନ୍ଧ ସମ୍ରାଟ, ଚକ୍ରବର୍ତ୍ତୀ । ତାର ଯୋଜନା ସମଗ୍ର ଆର୍ଯ୍ୟାବର୍ତ୍ତରେ ଆଧିପତ୍ୟ କରିବା, ଆର୍ଯ୍ୟମାନଙ୍କର ଧ୍ୟାନଧାରଣା ସବୁକୁ ତଛନଛ କରି ଭାଙ୍ଗିଦେବା । ସେ ସେଇଆହିଁ କରୁଛି । ଅସଂଖ୍ୟ ରାଜାଙ୍କୁ ପରାସ୍ତ କରି ଗିରିବ୍ରଜରେ ବନ୍ଦୀ କରି ରଖିଛି । ଆଚାର୍ଯ୍ୟମାନଙ୍କର ଆଶ୍ରମ ସବୁକୁ ଜାଳିପୋଡି ନଷ୍ଟ କରିଦେଉଛି । ଆଉ କେତେ ଭାବରେ କେତେ ନିର୍ଦ୍ଦୋଷ ଲୋକଙ୍କୁ ଯେ ହତ୍ୟା କରାଗଲାଣି ତା'ର ହିସାବ ନାହିଁ ।'

ଭାନୁପ୍ରକାଶ ଚୁପ୍ କଲେ । ଅରିନ୍ଦମ ଦେଖିଲା ଭାନୁପ୍ରକାଶଙ୍କ ଦି ଆଖି ଜଳି ଉଠିଲାଣି , ସେଇ ଛାଇ ଛାଇ ଅଂଧାରରେ ଦି ଆଖି ନିଆଁ ପିଣ୍ଡୁଳା ପରି ଜଳୁଛି । ସ୍ୱରରେ ତୀବ୍ର କଠିନତା । ଅରିନ୍ଦମ ବୁଝିଲା ଭାନୁପ୍ରକାଶ ଏ ପର୍ଯ୍ୟନ୍ତ ଅସଲ କଥାକୁ ଆସି ନାହାନ୍ତି । ସେ କିଛି ନ କହି ଅପେକ୍ଷା କଲା ।

ଆସ୍ତେ ଆସ୍ତେ ଭାନୁପ୍ରକାଶଙ୍କର ଆଖି ଓ ସ୍ୱର ସହଜ ହୋଇଗଲା । ତାଙ୍କର ହାତ ମୁଠା ଯାହା ଟାଣ ହୋଇ ବନ୍ଦ ହୋଇଯାଇଥିଲା ଖୋଲିଗଲା । ସେ ଅଳ୍ପ ହସିଲେ । କହିଲେ, 'ଏସବୁ କଥା ଅରିନ୍ଦମ ଆମେ ଆଗରୁ ଅଳ୍ପ ବହୁତ ତୁମକୁ କହିଛୁ । ତଥାପି ମୁଁ ତୁମକୁ ଆଉ ଥରେ ଏସବୁ କହିଲି । ଯେପରି ଆମ ବିଷୟରେ ତୁମର କିଛି ଭୁଲ୍ ଧାରଣା ନ ରହେ । ତୁମେ ଆଉ ଦି ଦିନ ପରେ ମଥୁରା ଫେରିବ । ଆମ ଲୋକେ ବି ତୁମ ସାଙ୍ଗରେ ଯିବେ। ମଥୁରା ଏପର୍ଯ୍ୟନ୍ତ ଆମ କାମର ପରିସର ଭିତରେ ନ ଥିଲା, କାରଣ ଦରକାର ନ ଥିଲା। ଏବେ ଦରକାର ହେବ । ରାଜ୍ୟ ଶାସନ କରିବାର ଯେଉଁ ଧାରା ମଥୁରାରେ ଆଜି ପର୍ଯ୍ୟନ୍ତ ଥିଲା ସେ ଆଉ ରହିବ ନାହିଁ । ଏଣିକି ଆମ ମୁଖ୍ୟ କାର୍ଯ୍ୟ ମଗଧରେ ନୁହେଁ, ମଥୁରାରେ ହିଁ ହେବ । କଂସ


Digitized by srujanika@gmail.com

ଜରାସନ୍ଧଠାରୁ ବି ଆହୁରି ଭୟଙ୍କର । ଜରାସନ୍ଧର ଯୋଜନା ନିର୍ଭୁଲ । ସେ ମଥୁରାକୁ ଭାଙ୍ଗି ଛିନଛତ୍ର କରିଦେବ । ସମଗ୍ର ଆର୍ଯ୍ୟାବର୍ତ୍ତକୁ ଛିନଛତ୍ର କରି ଦେବ । ସେଇଥିପାଇଁ ସେ କଂସକୁ ବାଛିଛି, ଓ କଂସଠାରୁ କାମର ଆରମ୍ଭ ।'

ଭାନୁପ୍ରକାଶ ଚୁପ କଲେ, ଅନ୍ୟମାନେ ବି ଚୁପ । ଅରିନ୍ଦମ କଅଣ କଅଣ କହିବ ବୋଲି ଭାବି ଶେଷ ପର୍ଯ୍ୟନ୍ତ ସେହିପରି ଚୁପ ହୋଇ ରହିଲା। ରାତି ହୋଇ ଗଲାଣି । ପାଖରୁ ଆଉ ଦୂରରୁ ବିଭିନ୍ନ ରାତ୍ରିଚର ପଶୁଙ୍କ ଡାକ ଶୁଣାଯାଉଛି । ଅନ୍ୟପ୍ରକାର ଶବ୍ଦ ବି ଶୁଣାଯାଉଛି । ବୋଧହୁଏ ଅଶରୀରୀ ମାନଙ୍କର ଗତାଗତ ଆରମ୍ଭ ହୋଇ ଗଲାଣି । ଭାନୁପ୍ରକାଶଙ୍କର ସ୍ୱର ସ୍ଥିର ହୋଇ ଆସିଲାଣି । ଧୀରେ ଧୀରେ ପାଖରୁ କହିଲା ପରି ସେ କହିଲେ, 'ଅରିନ୍ଦମ, ତୁମେ ଆଜି ତୁମ ଶିବିରରେ, ଶିବିର ପାଖରେ କଅଣ କିଛି ଲକ୍ଷ୍ୟ କରିଛ ?'

ହଠାତ୍ ଅରିନ୍ଦମର ସେ ବିଶେଷ କରି ଶିବିର ବାହାରେ ଦେଖିଥିବା ଗୋଳମାଳ କଥା ମନେ ପଡ଼ିଲା । ନଟରାଜଙ୍କ ମନ୍ଦିରରେ ଭାନୁପ୍ରକାଶ ପ୍ରଭୃତିଙ୍କ ସାଙ୍ଗରେ କଥାବାର୍ତ୍ତା ହେଉ ହେଉ ସେ ପ୍ରାୟ ସେସବୁ କଥା ଭୁଲି ଯାଇଥିଲା । ସେ କହିଲା, 'ହଁ ତ, ଲୋକମାନେ ଏତେ ଉତ୍ତେଜିତ ହେବା ମୁଁ ଆଗରୁ ଦେଖି ନ ଥିଲି । ବେଶ ପାଟିଗୋଳ । ଶିବିର ବାହାରେ ତ ପାଞ୍ଚାଳ ଲୋକଙ୍କର ଆଉ କିଛି ଲୋକଙ୍କ ସାଙ୍ଗରେ ବେଶ୍ ହାତାହାତି ହବା ଅବସ୍ଥା । କିଛି କିଛି ସିପେହୀ ବି ଆସି ପାଟିଗୋଳ କରୁଥାନ୍ତି । ଆମ ଶିବିର ଭିତରେ ବି ସେଇ ଅବସ୍ଥା । ଲୋକମାନେ ଉତ୍ତେଜିତ ହୋଇ କଥାବାର୍ତ୍ତା କରୁଥାନ୍ତି । ସମସ୍ତେ କହୁଥାନ୍ତି ମଗଧ ଓ ପାଞ୍ଚାଳ ଯୁଦ୍ଧ ଆରମ୍ଭ ହୋଇଗଲା, ଓ ପାଞ୍ଚାଳ ସୈନ୍ୟ ମଗଧ ଭିତରକୁ ମାଡ଼ି ଆସିଲେଣି ।' ସେ ଭାନୁପ୍ରକାଶଙ୍କ ଆଡ଼କୁ ବୁଲି ପଡ଼ିଲା । ପଚାରିଲା, 'ସତରେ କଅଣ ମଗଧ ଆଉ ପାଞ୍ଚାଳ ଭିତରେ ଯୁଦ୍ଧ ଆରମ୍ଭ ହେଲା ?'

ଭାନୁପ୍ରକାଶ ହସିଲେ, କହିଲେ, 'ନାଁ, ଯୁଦ୍ଧ ଫୁଦ୍ଧ କିଛି ନାହିଁ ।'

'କିନ୍ତୁ ଏତେ ପାଟିଗୋଳ କାହିଁକି ? ସମସ୍ତେ ତ ସେ କଥା କହୁଥିଲେ ।' ଅରିନ୍ଦମ କହିଲା ।

'ହଁ, କହିବାରେ କଅଣ ଅଛି ? ଗୋଟାଏ କଥା ଜଣେ କହିଲେ, ଆଉ ଜଣେ କହିବ, ଆଉ ଜଣେ କହିବ, କଥାଟା ଏମିତି ମାଡ଼ିଯାଏ । ସତ ମିଛ କେହି ଭାବନ୍ତି ନାହିଁ । କଥାଟା ଆମେ ଚଳେଇ ଦେଇଥିଲୁ ।' ଭାନୁପ୍ରକାଶ କହିଲେ ।

'ଆପଣ ଚଳେଇ ଦେଇଥିଲେ ?' ଅରିନ୍ଦମ ଯେପରି ଆକାଶରୁ ପଡ଼ିଲା । 'ମାନେ... ?'

'ମାନେ କିଛି ନାହିଁ', ଭାନୁପ୍ରକାଶ କହିଲେ, 'ସେଦିନ ମଲ୍ଲକୁସ୍ତିରେ ପାଞ୍ଚାଳର ବିଖ୍ୟାତ ଯୋଦ୍ଧା ସୂର୍ଯ୍ୟସଂକାଶଙ୍କୁ ମାରି ଦିଆଗଲା । ପ୍ରତିଯୋଗିତାରେ ସୂର୍ଯ୍ୟସଂକାଶ ହିଁ ଜିତି ଥାଆନ୍ତେ । କଂସ ତାଙ୍କ ଆଗରେ କିଛି ନୁହେଁ । ତେଣୁ ସୂର୍ଯ୍ୟସଂକାଶ ଓ ପାଞ୍ଚାଳକୁ ଘେନି ଆମେ ଯେତେବେଳେ କଥା ଚଳେଇ ଦେଲୁ, ସମସ୍ତେ ବିଶ୍ୱାସ କଲେ ।'

'କିନ୍ତୁ କାହିଁକି ?' ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କଟି ନ ଥାଏ । 'କାହିଁକି ଏମିତି କଥା ଆପଣମାନେ ପ୍ରଚାର କଲେ ? ସତ ସତ ଗୋଳମାଳ ତ ହେଇଯାଇଥାନ୍ତା । ପାଞ୍ଚାଳର ଲୋକମାନେ ବହୁତ ଉତ୍ତେଜିତ ହୋଇଯାଇ ଥିଲେ । ଜରାସନ୍ଧଙ୍କର ସିପେହୀମନେ ବି ବେଶ୍ ରକ୍ତମୁଖା ହୋଇ ଉଠିଥିଲେ ।'

'ନାଁ, ଆମ ଲୋକମାନେ ବି ସତର୍କ ଥିଲେ । ସେମାନେ ସତ ସତ ଗୋଳମାଳ ହେବାକୁ ଦେଇ ନ ଥାନ୍ତେ ?' ଭାନୁପ୍ରକାଶ କହିଲେ, 'କାରଣ ଆମେ ସିନା କଥା ଉଠେଇ ଥିଲୁ, ଗୋଳମାଳ ହେବା ଆମେ ଚାହୁଁ ନ ଥିଲୁ ।' ଅରିନ୍ଦମ ଚୁପ୍‌ଚାପ୍ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁ ରହିଥିଲା । ବିନା ଉଦ୍ଦେଶ୍ୟରେ ଭାନୁପ୍ରକାଶ ତ କୌଣସି କାମ କରିବା ଲୋକ ନୁହଁନ୍ତି । ଯା ମନେ ହେଉଛି ଏ ଗୋଟାଏ ଖେଳ । ଏ ସମ୍ଭବ କି ? ଖେଳ ? ନାଁ, ନାଁ, ଆଉ କିଛି ଉଦ୍ଦେଶ୍ୟ ଅଛି, ଗୁରୁତର ଉଦ୍ଦେଶ୍ୟ ।

ଭାନୁପ୍ରକାଶ ନିଜେ କହିଲେ, 'ଦେଖ, ଅରିନ୍ଦମ, ତୁମେ ଯାହା ଭାବୁଛ ଖେଳ, ଏ ଖେଳ ଠିକ୍ । ଏମିତି ଖେଳ ମଝିରେ ମଝିରେ ଖେଳିବାକୁ ହୁଏ । ଆମେ ତ ଶତ୍ରୁପକ୍ଷ ସାଙ୍ଗରେ ପଡିଆ ଉପରେ ଛିଡ଼ା ହୋଇ ଯୁଦ୍ଧ କରୁନୁ । ଆମ ଯୁଦ୍ଧ ଭିତରେ ଭିତରେ, ବୁଦ୍ଧିର ଖେଳ । ଏଇଟା ହିଁ ଜରାସନ୍ଧର ଦୁର୍ବଳ ସ୍ଥାନ । ସେ ଚତୁର, କିନ୍ତୁ ବୁଦ୍ଧିମାନ ନୁହେଁ, ତାର ଚତୁରତା ତାର ଗତ ରାସ୍ତା ଭିତରେ ବାନ୍ଧି ହୋଇ ରହିଛି । ତାର ନିଜର ସ୍ୱାର୍ଥ ଭିତରେ । ତା' ବାହାରକୁ ସେ ଯାଇପାରେ ନା । ସବୁ ଅତ୍ୟାଚାରୀ ଶାସକଙ୍କର ଏଇଟା ହିଁ ଧାରା । ନିଜ ସ୍ୱାର୍ଥ ପାଇଁ କାମ କରୁଥିବେ । କିନ୍ତୁ ଏପରି ଧାରଣା ଦେବେ ଯେପରି ସେମାନେ ସମସ୍ତଙ୍କ ସ୍ୱାର୍ଥ ପାଇଁ କାମ କରୁଛନ୍ତି । ବୁଦ୍ଧିମାନ ଲୋକ ତା କରେ ନା । ସେ ସବୁ ଦିଗରୁ ବିଚାର କରେ, ଓ ଯାହା କରେ ସମସ୍ତଙ୍କୁ ନେଇ କରେ । ଫଳରେ ସ୍ୱାର୍ଥ କଥା ଆଗକୁ ଆସେ ନା । ବିଭିନ୍ନ ଦରକାରୀ କାମ ଭିତରେ ସ୍ୱାର୍ଥ ଘୋଡ଼େଇ ହୋଇଯାଏ ।'

ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କିଛି କିଛି କଟିଗଲାଣି । ଭାନୁପ୍ରକାଶଙ୍କର ସଂଗଠନଟା ହିଁ ଆଶ୍ଚର୍ଯ୍ୟ ସଂଗଠନ , ଅଧିକ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ସେ ତ ଗିରିବ୍ରଜକୁ ଆସି ନ ଦେଖିଲା ପର୍ଯ୍ୟନ୍ତ ଏପରି ଗୋଟାଏ ସଂଗଠନ ଯେ ଥାଇପାରେ,

କିଛି ଲୋକ ଯେ ଏପରି କାମ ସବୁ କରି ପାରନ୍ତି, ଏସବୁ ଜାଣି ପାରି ନ ଥାନ୍ତା । ଆଜି ଜରାସନ୍ଧ ତ କାଲି କଂସ, ଏକଥା ଭାନୁପ୍ରକାଶ ବାରମ୍ବାର କହୁଛନ୍ତି , ଓ ତାଙ୍କର ଯୋଜନା ଯାହା, ତାଙ୍କର କାମ ଗିରିବ୍ରଜରୁ ମଥୁରାକୁ ବ୍ୟାପୀଯିବ ।

'ଏ କେବଳ ଗିରିବ୍ରଜ, ମଥୁରା କଥା ନୁହେଁ, ଅରିନ୍ଦମ', ଅରିନ୍ଦମର ଚିନ୍ତାର ଧାରା ବୁଝିଲା ପରି ଭାନୁପ୍ରକାଶ କହିଲେ, 'ଏ ସବୁ ଆର୍ଯ୍ୟ ରାଜାମାନଙ୍କର ରାଜ୍ୟରେ ଘଟିବାକୁ ଆରମ୍ଭ କଲାଣି । ରାଜାମାନେ କ୍ଷମତା ପାଇବା ସାଙ୍ଗେ ସାଙ୍ଗେ ସ୍ୱାର୍ଥ ଓ ଲୋଭରେ ବୁଡ଼ି ଗଲେଣି , ଓ ସେଥିପାଇଁ ଯେ କୌଣସି ହୀନ କାର୍ଯ୍ୟ କରିବାକୁ ପଛଉ ନାହାନ୍ତି । ଆଜି ରାଜା ଓ ପ୍ରଜାର ସଂପର୍କ କଟିଯିବାକୁ ବସିଲାଣି । ଏପରିକି ମୁନି, ଋଷି ଓ ଆଚାର୍ଯ୍ୟମାନଙ୍କର ସମ୍ମାନ ନାହିଁ । ରାଜ ଦରବାରରେ କେବଳ ସ୍ତାବକମାନଙ୍କର ଭିଡ଼, ରାଜ୍ୟର ମଂଗଳ ପାଇଁ ନୁହେଁ, ନିଜର ସ୍ୱାର୍ଥ ପାଇଁ । ଆମେ ଚେଷ୍ଟା କରୁଛୁ ଏ ସବୁକୁ ଯଦି କିଛି ସୁଧାରି ହେବ । ବିପଦ ବହୁତ, ସେଥିପାଇଁ କହିଲି ବୁଦ୍ଧିର ଖେଳ ।'

ସେଦିନ ଅରିନ୍ଦମ ବହୁତ ଡେରିରେ ଶିବିରକୁ ଫେରିଥିଲା । ସେତେବେଳକୁ ପ୍ରାୟ ଅଧିକାଂଶ ଲୋକେ ଶିବିରରେ ଶୋଇ ଗଲେଣି । ଅଧିକାଂଶ ଆଲୁଅ ଲିଭିଗଲାଣି । କେବଳ ଗୋଟିଏ ମଶାଲ ଗୋଟିଏ କଣରେ ଜଳୁଥାଏ, ଓ ଗୋଟିଏ ଲୋକ ସେହି ମଶାଲ ପାଖରେ ଅଧାଢୋଳା ଅବସ୍ଥାରେ ବସିଥାଏ । ଶିବିର ଭିତର ଚୁପ୍‌ଚାପ, ବାହାର ବି ଚୁପ୍‌ଚାପ୍ । କିଛି ଘଟିକା ଆଗରୁ, ସଂଧ୍ୟାହେବା ଆଗରୁ ଭିତରେ ବାହାରେ ସେ ଯେଉଁ ଉତ୍ତେଜନା, ଗୋଳମାଳ ଦେଖିଥିଲା ତାର ଚିହ୍ନବର୍ଣ୍ଣ ନାହିଁ । ଶିବିର ବାହାରର, ଅଳ୍ପ ଦୂରର, ସେ ତୋଟା ଭିତରେ ସମ୍ପୂର୍ଣ୍ଣ ଅଂଧାର । ସେଠି ଯେ କିଛି ଲୋକେ ମରାମରି, ହଣାହଣି ଅବସ୍ଥାକୁ ଆସି ଯାଇଥିଲେ ସେ କଥା ଭାବି ହୁଏନା । ଅରିନ୍ଦମ ଭାବିଲା ସେ ଯାଇଁ ସେ ତୋଟା ଭିତରେ ଟିକେ ବୁଲି ଆସିବ କି ! ସୁନ୍ଦର ପବନ, ଖରାଦିନେ ଥଣ୍ଡା ପାଣି ପିଇଲା ପରି ଦେହକୁ ଲାଗୁଛି । ଚାରିପାଖ ଶୁନ୍‌ଶାନ୍, ଟିକି ଟିକି ଚଢ଼େଇଙ୍କ ରାବ ଶୁଣାଯାଉଛି । ଭାରି ଇଚ୍ଛା ହେଲା । ଠିକ୍ ମଥୁରାରେ ରାତି ଅଧରେ ଯମୁନା କୂଳରେ ତାକୁ ଯେମିତି ଲାଗେ । ଶିବିର ମୁହଁରେ ଦୋଦୋ ପାଞ୍ଚ ହୋଇ ସେ ଟିକେ ଛିଡ଼ା ହେଲା । ଶିବିର ମୁହଁ ଜଗୁଥିବା ଦି ଜଣ ସିପେହୀ ବି ଅଧା ଶୋଇବା ଅବସ୍ଥାରେ, ତାକୁ ଦେଖି ନ ଦେଖିଲା ପରି । ଆକାଶରୁ କଅଣ ଯେପରି ତାର ଦେହରେ ମୁଣ୍ଡରେ ନିଗିଡି ହୋଇ ପଡୁଛି । ଚୁପ୍‌ଚାପ ରାତିର ବି ଗୋଟାଏ ଶବ୍ଦ ଥାଏ । ସେହି ଶବ୍ଦ ଚିଁ ଚିଁ ହୋଇ ତା କାନରେ ଲାଗୁଥାଏ । ହଠାତ୍ ରାତି ଅଂଧାରକୁ ନିଜ ଡାକରେ ଚିରଚିର କରି କାଟି ଗୋଟାଏ ଚଢ଼େଇ ଦୂରକୁ

ଉଡିଗଲା । ଅରିନ୍ଦମ ଚମକି ଉଠିଲା । ଭାନୁପ୍ରକାଶ, ଭାନୁପ୍ରିୟ ତାକୁ ଶିବିର ପାଖରେ ଅନେକ ସମୟ ହେଲା ଛାଡିଦେଇ ଚାଲିଗଲେଣି । ତାଙ୍କର କଥା ମନେ ପଡିଲା - ଶିବିରରେ ଯାଇଁ ଚୁପ୍‌ଚାପ ଶୋଇପଡ । ମଥୁରା ଯିବା ଆଗରୁ କାହା ସାଙ୍ଗରେ ବିଶେଷ ମିଳାମିଶା କରିବା କି ଦିନର ପାଟିଗୋଳ ଉତ୍ତେଜନା କଥା କାହାକୁ କିଛି କୁହ ନା, ତୁମ ଶିବିର ଉପରେ ବି ନଜର ଅଛି, ଭୁଲି ଯାଅ ନା । ଚୁପ୍‌ଚାପ ରୁହ, ସେ ଶିବିର ଭିତରକୁ ପଶିଲା । ତାର ବିଛଣା ଶିବିରର ଗୋଟାଏ କଣକୁ । ପାଖର ବଂଧୁମାନେ ଶୋଇ ଗଲେଣି । ସେମାନେ ଶୋଇବା ଆଗରୁ ତା ବିଛଣାଟା ମେଲେଇ ଦେଇ ଯାଇଛନ୍ତି । ସେ ପାଖ ପାତ୍ରରୁ କିଛି ପାଣି ପିଇ, ଘୋଡ଼େଇ ହୋଇଥିବା ଚଦରଟାକୁ ଖୋଲି ଦେଇ ଦେହସାରା ଘୋଡେଇ ହୋଇ ପଡିଲା ଓ ଶୋଇ ପଡିଲା । କିଛି ସମୟ ବୋଧେ ସେ ଶୋଇଥିଲା । ନାଁ ନିଦ ନୁହେଁ, ଛାଇ ଛାଇ ନିଦ । ହଠାତ୍ ବାହାରେ ଗୋଟାଏ ଶବ୍ଦ ହେଲା । ମନେ ହେଲା କିଏ ଯେପରି ଟାଣି ଟାଣି କଅଣ କହୁଛି । କିଏ କହୁଛି, କ'ଣ କହୁଛି ? କିଏ କାନ୍ଦିଲା ପରି ମନେ ହେଲା । ତା ନିଦ ଭାଙ୍ଗିଗଲା । ନାଁ, କେହି ନାହିଁ, ସବୁଆଡ଼ ଚୁପ୍‌ଚାପ । ଖାଲି ଏଠୁ ସେଠୁ ଘୁଙ୍ଗୁଡ଼ି ଶବ୍ଦ, କଡ ମୋଡିବା ଶବ୍ଦ । କିଏ କାଶୁଛି ? ବାହାରେ ଦି ତିନିଟା କୁକୁର ଏକା ସାଙ୍ଗରେ ଡାକି ଉଠିଲେ, ଆହୁରି ଦୂରରେ କେଉଁଠି ଘଣ୍ଟା ବାଜୁଛି, ସେଇ ଶବ୍ଦ । ଗୋଟାଏ କେମିତି ଧୂଆଁଳିଆ ଧୂଆଁଳିଆ ଅଳ୍ପ ଅଳ୍ପ ମିଠା ଗନ୍ଧ । ତା ଦେହ ଶିରଶିରେଇ ଉଠିଲା । ଏ କି ଗନ୍ଧ । ଏ ଗନ୍ଧ ତ ମନ୍ଦିରର । ଭାନୁପ୍ରକାଶ ତାକୁ ସାବଧାନ କରି ଦେଇଥିଲେ । କହିଥିଲେ ଗନ୍ଧ ଆସିବ, ଚୁପ ରୁହ, ଅଶରୀରୀ ମାନଙ୍କର ଗତାଗତ ଆରମ୍ଭ ହେଲାଣି । ଏ ସେଇ ବାସନା । କିନ୍ତୁ ତା ଶିବିର ଭିତରେ ଏ ବାସନା ? ନାଁ, ଏ ଅନ୍ୟ କିଛି, ଶିବିର ଭିତରୁ ନୁହେଁ, ଶିବିର ବାହାରୁ ଆସୁଛି । କିଏ ଯେପରି ଚୁପଚୁପ କଥାବାର୍ତ୍ତା ହେଉଛନ୍ତି । ସେ ତ ଶିବିର ବାହାରେ ଦି ଜଣ ଅଧାଶୁଆ ସିପେହୀଙ୍କ ଦେଖିଥିଲା । ସେଇମାନେ ? ଭାବିଲା ଉଠିଯାଇ ଦେଖିବ କି ? ଭାନୁପ୍ରକାଶଙ୍କ କଥା ମନେ ପଡିଲା । ଚୁପ ରୁହ- କିଏ ଯେପରି କାନ ପାଖରେ କହି ଦେଇଗଲା । ଟିକେ ଟିକେ ଶୀତ ଲାଗୁଛି । ସେ ଘୋଡ଼େଇ ହୋଇଥିବା ପତଳା ଚାଦରଟାକୁ କାଢିଦେଇ ବିଛଣା ଭିତରୁ ଆଉ ଗୋଟାଏ ମୋଟା ଚାଦର କାଢି ଘୋଡ଼େଇ ହେଇ ପଡିଲା ଓ ଚୁପ୍‌ଚାପ ଶୋଇବାକୁ ଚେଷ୍ଟା କଲା ।

....ସେଦିନର ଘଟଣା ଓ କଥା ସବୁ ଅରିନ୍ଦମ ମନରେ ଧ୍ରୁବତାରା ପରି ଉଜ୍ଜ୍ୱଳ


Digitized by srujanika@gmail.com

ହୋଇ ରହିଛି । ଯାହା ତାକୁ ସବୁଠାରୁ ବେଶୀ ଆଶ୍ଚର୍ଯ୍ୟ କଲା ସେ ଭାନୁପ୍ରକାଶ ଓ ତାଙ୍କ ବଂଧୁମାନଙ୍କର ସ୍ଥିର ଲକ୍ଷ୍ୟ, ଓ ଅଦ୍ଭୁତ ଇଚ୍ଛାଶକ୍ତି । ସେମାନେ ଜାଣନ୍ତି ପ୍ରାୟ ନିରବଛିନ୍ନ ଭାବରେ ଦୀର୍ଘ ଦିନ ଧରି ସେମାନଙ୍କୁ ସଂଗ୍ରାମ କରିବାକୁ ହେବ । ସେଥିପାଇଁ ସେମାନେ ପ୍ରସ୍ତୁତ । ନିଜର କ୍ଷତି କଥା ସେମାନେ ଭାବୁ ନାହାନ୍ତି । କିଏ ଗଲା କିଏ ଆସିଲା ସାମୟିକ ଭାବରେ ବେଦନାଦାୟକ ହେଲେ ବି ସେସବୁ ସେମାନେ ବେଶ ଖୁସି ମନରେ ସହି ଯାଉଛନ୍ତି । ଲକ୍ଷ୍ୟ ଗୋଟିଏ, ଲୋକମାନଙ୍କୁ ସଚେତ କରିବା, ସେମାନଙ୍କ ମନରେ ସାହସ ଆଣିଦେବା, ସେମାନେ ବୁଝନ୍ତୁ ଅତ୍ୟାଚାର ବେଶୀ ଦିନ ଚାଲି ପାରେ ନା । ଅଧର୍ମ ବେଶୀ ଦିନ ରହି ପାରିବ ନାହିଁ, ତାର ଶେଷ ଅଛି । ଧର୍ମ ଆସିବ ହିଁ ଆସିବ, ଅତ୍ୟାଚାରର ଶେଷ ହେବ ହିଁ ହେବ । ଏହି ବିଶ୍ୱାସ ସେମାନଙ୍କର ଅଛି । ଏହି ବିଶ୍ୱାସ ହିଁ ସେମାନଙ୍କର ଶକ୍ତି । ଏହି ଶକ୍ତିହିଁ ସେମାନେ ସାଧାରଣ ଲୋକଙ୍କ ଭିତରେ ଖେଳେଇ ଦେବାକୁ ଚାହାଁନ୍ତି । ଅରିନ୍ଦମ ସେମାନଙ୍କର ସଂଗଠନର କିଛି କିଛି ପରିଚୟ ପାଇଛି । ଯେପରି ଶୂନ୍ୟରେ ସେମାନଙ୍କର ସଂଗଠନ ତିଆରି ହୋଇଛି, ଓ ଏହି ଶୂନ୍ୟରେ ତିଆରି ହେବାହିଁ ସଂଗଠନର ଶକ୍ତି ।

ଅରିନ୍ଦମ ଅନେକ ଥର ଭାବିଛି ଭାନୁପ୍ରକାଶ ଓ ତାଙ୍କର ବଂଧୁମାନେ ଯାହା କହୁଛନ୍ତି ଓ ଯାହା କରୁଛନ୍ତି ସେସବୁ ଅତ୍ୟନ୍ତ ଯୁକ୍ତିଯୁକ୍ତ । ଠିକ୍ ଭାବରେ ବଂଚିବାକୁ ହେଲେ ନିଜର ସ୍ଥିତି ଦରକାର, ନିଜର ପରିଚୟ ଦରକାର, ନିଜର ବିଚାରରେ କାର୍ଯ୍ୟରେ ସ୍ୱାଧୀନତା ଦରକାର । ଭାନୁପ୍ରକାଶ ଗୋଟାଏ କଥା ବାରମ୍ବାର କହୁଥିଲେ । ଧର୍ମରେ ବଂଚିବାକୁ ହେଲେ ଆମେ ଧର୍ମରେ ଅଛୁ ଏହିକଥା ଭାବି ନେବା ଯଥେଷ୍ଟ ନୁହେଁ । ଅଧର୍ମ ସହିତ ବାରମ୍ବାର ଯୁଦ୍ଧ କରିବାକୁ ପଡ଼ିବ, ଓ ଅଧର୍ମକୁ ପରାସ୍ତ କରିବା ପାଇଁ ଯେ କୌଣସି ଉପାୟ ଅବଲମ୍ବନ କଲେ ବି ସେ ଅଧର୍ମ ନୁହେଁ, ଧର୍ମର ଅଂଶ । ସେଦିନ ମନ୍ଦିରରେ କଥାବାର୍ତ୍ତା କରୁ କରୁ ଏହି କଥା ଉଠିଥିଲା । ଭାନୁପ୍ରକାଶ ପଚାରିଥିଲେ – ଅରିନ୍ଦମ, ତୁମେ ତ ଆମ ଲୋକଙ୍କୁ କିଛି କିଛି ଦେଖିଲଣି, ଆମର ସଂଗଠନ କିଛି କିଛି ଜାଣିଲଣି, ତୁମର ଆମ ବିଷୟରେ ଧାରଣା କଅଣ ? ଅରିନ୍ଦମ ସହସା କିଛି ଉତ୍ତର ଦେଇପାରି ନ ଥିଲା । ଭାନୁପ୍ରକାଶ ସିଧା ପ୍ରଶ୍ନ ପଚାରିଛନ୍ତି, ସିଧା ଉତ୍ତର ଦରକାର । ସେ ଉତ୍ତର ଦେଇଥିଲା – ମୁଁ ଆପଣଙ୍କର କେତେ ବା ଜାଣିଛି । କିନ୍ତୁ ଯେତେ ଯେତେ ଜାଣୁଛି ସେତେ ସେତେ ଆଶ୍ଚର୍ଯ୍ୟ ଲାଗୁଛି । ମୁଁ ତ ଭାବୁଛି ଆପଣଙ୍କ ପାଖରେ ସବୁଦିନ ରହି କାମ କଲେ ଭଲ ହୁଅନ୍ତା । ଭାନୁପ୍ରକାଶ ହସିଥିଲେ – କହିଥିଲେ ତୁମେ କଅଣ ବାହାର ଲୋକ । ତୁମେ ବି ଆମ ଭିତରେ


Digitized by srujanika@gmail.com

ଜଣେ ହୋଇ ଯାଇଛ । ଖାଲି ତୁମେ ଆମ ସାଙ୍ଗରେ ନ ରହି ବାହାରେ ଅଛ । ତୁମେ ଭାବ ନା ତୁମ କାମ କମ । ଆଜି ତୁମର କାମ ନାହିଁ, କିନ୍ତୁ ମଥୁରାରେ କାମ ହେବ । ସେତେବେଳେ ତୁମେ ଭିତର ବାହାର କଥା ଭାବିପାରିବ ନାହିଁ । ଏବେ ସେ କଥା ଛାଡ଼ । ଆଉ ଗୋଟାଏ ପ୍ରଶ୍ନର ଉତ୍ତର ଦିଅ । ତୁମେ କେବେ ଭାବିଛ ଆମର ଏ ସଂଗଠନ ଚାଲେ କେମିତି । ଟଙ୍କା ପଇସା କେଉଁଠୁ ଆସେ ।  ଅରିନ୍ଦମ ଟିକିଏ ଥମ୍ଭି ଯାଇଥିଲା । ସତରେ ଏକଥା ତ ସେ ଭାବିନି । ସେଇ କଥା ସେ କହିଥିଲା - ନାଁ, ମୁଁ ଏକଥା ଭାବିନି । ଆପଣ ବର୍ତ୍ତମାନ କହିବାରୁ ଭାବୁଛି । ସତରେ ଆପଣମାନଙ୍କର କାମ ପାଇଁ ତ ବେଶ୍ ଟଙ୍କାପଇସା ଦରକାର ହେଉଥିବ ? 'ହୁଏ', ଭାନୁପ୍ରକାଶ କହିଥିଲେ, ଓ ଚୁପ କରି ଯାଇଥିଲେ ।

ଅରିନ୍ଦମ ଭାବିଥିଲା ଭାନୁପ୍ରକାଶ ହୁଏତ କହିବାକୁ ସଂକୋଚ କରୁଛନ୍ତି, ବା ହୁଏତ ତାକୁ ସଂପୂର୍ଣ୍ଣ ବିଶ୍ୱାସ କରୁ ନାହାନ୍ତି । ସେ ଚୁପ୍ କରି ରହିଲା । କିଛି ସମୟ ପରେ ଭାନୁପ୍ରକାଶ ପୁଣି କହିଥିଲେ - 'ହଁ ହୁଏ । ଆଉ ଯେଉଁ ମାନଙ୍କର ଟଙ୍କା ପଇସା ଅଛି ଆମେ ସେମାନଙ୍କ ପାଖରୁ ଆଣୁ ।'

ଅରିନ୍ଦମ ଠିକ୍ ବୁଝି ପାରି ନ ଥିଲା । 'ଆଣୁ ମାନେ ସେମାନେ ଛାଁ ଛାଁ ଦିଅନ୍ତି ?' 'ନାଁ, ଭାନୁପ୍ରକାଶ କହିଥିଲେ, 'କେହି ନିଜ ଇଚ୍ଛାରେ ଦିଅନ୍ତି ନାହିଁ, ଆମକୁ ଆଣିବାକୁ ପଡେ ।'

ଅରିନ୍ଦମ ନିଜକୁ ରୋକି ପାରି ନ ଥିଲା । ତା' ପାଟିରୁ ଛାଁ ଛାଁ ବାହାରି ଯାଇଥିଲା 'ଏ ତ ଜବରଦସ୍ତି, ଚୋରି ।'

'ନାଁ, ଏ ଜବରଦସ୍ତି ନୁହେଁ କି ଚୋରି ନୁହେଁ ।' ଭାନୁପ୍ରକାଶ କହିଥିଲେ, 'ଏଇ ଦେଖ, ଜରାସନ୍ଧ । ତା ଖଜଣାଖାନାରେ ସୁନା ଭର୍ତ୍ତି ହୋଇ ରହିଛି । ଆମେ ସେଇଠୁ ଆମ ଦରକାର ପାଇଁ କିଛି ନେଇ ଆସୁଛୁ । ତା'ର ବି ସୁନା ଭାରା କମିଯାଉଛି । ନୁହେଁ ?'

'କିନ୍ତୁ... କିନ୍ତୁ'... ଅରିନ୍ଦମ ବାକ୍ୟ ସଂପୂର୍ଣ୍ଣ କରି ପାରି ନ ଥିଲା ।

ଭାନୁ ପ୍ରକାଶ ହୋ ହୋ ହୋଇ ହସି ଉଠିଥିଲେ ।

'କି ହୋ, ଅରିନ୍ଦମ', ଭାନୁପ୍ରକାଶ କହିଥିଲେ, 'ସେ ସୁନା କଅଣ ଜରାସନ୍ଧର ? ସେ ସୁନା ସେ କଅଣ ତା ନିଜ ଜମିରେ ଫଳେଇଛି ? ତା ଖଜଣାଖାନାରେ ପାହାଡ଼ ପରି ସୁନା ଜମା ହୋଇଛି । ଏତେ ସୁନା ସେ ଆଣିଲା କେଉଁଠୁ ? ଭାବିଛ କେବେ ? ଭାବ, ଅନେକ କଥା ବୁଝି ପାରିବ । ସେ ସୁନା ସେ ଯେତେ ରାଜ୍ୟ ଜୟ କରିଛି, ଯେତେ ରାଜାଙ୍କୁ ବନ୍ଦୀ କରିଛି, ସେ ସବୁ ରାଜ୍ୟର ।


Digitized by srujanika@gmail.com

ତାର ଯେଉଁ ହଜାର ହଜାର ପ୍ରଜା ଜମିରେ ଫସଲ କରନ୍ତି, ଅଥଚ ନିଜେ ଖାଇବାକୁ ପାଆନ୍ତି ନାହିଁ, ସେ ସମସ୍ତଙ୍କର । ସେ ଯେତେ ଅତ୍ୟାଚାର କରେ, ଲୋକଙ୍କୁ ହାଣେ କାଟେ ମାରେ, ସେସବୁ କଅଣ କେବଳ ହାଣିବା କାଟିବା ପାଇଁ ? ନାଁ, ସେସବୁ ଲୋକଙ୍କୁ ଭୟଭୀତ କରିବା ପାଇଁ । ତା' ହେଲେ ଲୋକମାନେ ସେମାନଙ୍କର ଯେତେ ସଂଚିତ ଅର୍ଥ ସେସବୁ ଆଣି ତା ପାଖରେ ଅଜାଡ଼ି ଦେବେ । ତାର ଯେତେ ଆଡମ୍ବର, ସୈନ୍ୟ ସାମନ୍ତ, ଏ ଯେଉଁ ମଲ୍ଲ କୁସ୍ତି ଦେଖିଲ, ତମକୁ ଯେଉଁ ଭୂରି ଭୋଜନ ଦିଆଗଲା, ତାର କୋଠା ବାଡ଼ି, ରାଜ ପ୍ରାସାଦ, ମନ୍ଦିର ଏସବୁ କଅଣ ତା'ର ନିଜ ପରିଶ୍ରମରେ ଆଣୁଥିବା ଟଙ୍କାରେ ?'

ଅରିନ୍ଦମର ମୁଣ୍ଡ ବୁଲେଇବାକୁ ଆରମ୍ଭ କରିଥିଲା । ଏସବୁ କଥା ସେ କେବେ ଭାବି ନାହିଁ । ମଥୁରାରେ ସେମାନେ ସମସ୍ତେ ସମାନ । ଉଗ୍ରସେନ ରାଜା ଠିକ୍ କିନ୍ତୁ ସେ ସେମାନଙ୍କ ଭିତରୁ ଜଣେ । ତାଙ୍କର ବି ଅନ୍ୟମାନଙ୍କ ପରି ଟଙ୍କା ସୁନାର ଅଭାବ । ସେ ସମସ୍ତଙ୍କର ସାହାଯ୍ୟରେ ଚଳନ୍ତି ।

'ତୁମ ମଥୁରା କଥା ଅଲଗା', ଭାନୁପ୍ରକାଶ କହିଥିଲେ, 'ସେଠି ରାଜା ବା ରାଜତ୍ୱର ଆଧିପତ୍ୟ ନାହିଁ, ଅନ୍ତତଃ ବର୍ତ୍ତମାନ ପର୍ଯ୍ୟନ୍ତ ନାହିଁ । କିନ୍ତୁ ବେଶୀଦିନ ନୁହେଁ । କଂସ ରାଜା ହେଲାପରେ ସେସବୁ ବଦଳି ଯିବ । ରାଜା ପ୍ରଜା ଫରକ ଆସିଯିବ । ଯେଉଁ ଟଙ୍କା ସୁନା କଥା ମୁଁ କହୁଛି ସବୁର ଢଙ୍ଗ ବି ବଦଳି ଯିବ ।'

'ଜରାସନ୍ଧଙ୍କର ଟଙ୍କା ସୁନା – ସେସବୁ କଅଣ ଅନ୍ୟମାନଙ୍କର ?' ଅରିନ୍ଦମ ପଚାରିଥିଲା ।

'ହଁ, ଅନ୍ୟମାନଙ୍କର ।' ଭାନୁପ୍ରକାଶ କହିଥିଲେ ।

ଅରିନ୍ଦମ ମନରୁ ସନ୍ଦେହ ତଥାପି ଯାଇ ନ ଥିଲା । ରାଜା ରାଜ୍ୟର ରକ୍ଷକ, ପ୍ରଜାମାନଙ୍କୁ ସୁଶାସନ ଦେବେ କିପରି ? ଧର୍ମ ରକ୍ଷା କରିବେ କିପରି ? ରାଜାଙ୍କୁ ଅର୍ଥ ଦେବା, ଏ ତ ପ୍ରଜାମାନଙ୍କର ଦାୟିତ୍ୱ ।

'ତୁମେ ଯାହା ଭାବୁଛ ଠିକ୍ ।' ଭାନୁପ୍ରକାଶ ଅରିନ୍ଦମକୁ କହିଥିଲେ, 'ପ୍ରଜାମାନେ ରାଜାଙ୍କର ଶକ୍ତି । ଏ ଖାଲି ଅର୍ଥର ଶକ୍ତି ନୁହେଁ । ବାହୁର ଶକ୍ତି, ମନର ଶକ୍ତି ବି । କିନ୍ତୁ ରାଜାମାନେ ବି ଏ ଶକ୍ତି ପାଇବା ପାଇଁ ଯୋଗ୍ୟ ହେବା ଦରକାର । ଏ ଖାଲି ଚରିତ୍ରର କଥା ନୁହେଁ । ମାନସିକତାର କଥା ବି । ରାଜା ଯଦି ମାନସିକ ସ୍ତରରେ ନିଜକୁ ପ୍ରଜାମାନଙ୍କ ସହିତ ଏକାଠି କରି ନ ପାରିବେ, ସେ ନେତୃତ୍ୱ ଦେଇ ପାରିବେ ନାହିଁ । ସେ ବଂଧୁ ନୁହନ୍ତି, ପ୍ରଜାମାନଙ୍କର ଶତ୍ରୁ ହେବେ ।'

ଅରିନ୍ଦମର ମନେ ହୋଇଥିଲା ବାପା ବି ମଝିରେ ମଝିରେ ଏପରି କଥା


Digitized by srujanika@gmail.com

କହନ୍ତି । ସେ କହନ୍ତି ଆର୍ଯ୍ୟମାନେ କ୍ରମଶଃ ଆର୍ଯ୍ୟାବର୍ତ୍ତ ଟପି ଦୂରକୁ ଦୂରକୁ ମାଡ଼ି ଗଲେଣି । ରାଜ୍ୟ ବଢୁଛି, କିନ୍ତୁ ଚରିତ୍ର ଠିକ୍ ଅଛି ତ ।

ଶିବିର ବାହାରୁ ଚୁପ୍‌ଚୁପ୍ କଥା ଆସୁଛି । ଶିବିର ବାହାରୁ ନା ଭିତରେ? ସେ ଅଧା ଉଠି ବସିଲା । ଚାରିପାଖକୁ ଚାହିଁ ଦେଖିଲା । ନାଁ, ସମସ୍ତେ ଶୋଇଛନ୍ତି । ତେବେ ରାତି ପ୍ରାୟ ସରି ଆସିଲାଣି । ବାହାରୁ ଶେଷ ରାତିର ପକ୍ଷୀମାନଙ୍କର ଡାକ ଶୁଭୁଛି । ସଂଧ୍ୟାବେଳେ ପବନ ପ୍ରାୟ ନ ଥିଲା । ବର୍ତ୍ତମାନ ଜୋରରେ ଜୋରରେ ପବନ ଦେଲାଣି । ପବନରେ ଥଣ୍ଡାର ଆମେଜ ବଢ଼ିଛି । ଭାନୁପ୍ରକାଶ କହୁଥିଲେ ତୁମେ ଶେଷ ରାତିରେ ହିଁ ଅଶରୀରୀମାନଙ୍କ ସହିତ କଥାବାର୍ତ୍ତା କରି ପାରିବ । ସେ ପ୍ରାୟ କରନ୍ତି । ଅରିନ୍ଦମ ଭାବି ପାରିଲା ନାହିଁ ଏ କିପରି ସମ୍ଭବ । ତାର ହଠାତ୍ ମନେ ହେଲା ବାପା ବି ଅଶରୀରୀମାନଙ୍କ ସହିତ କଥାବାର୍ତ୍ତା କରନ୍ତି । ବହୁତ ରାତିରେ ସେ ଉଠି ଏକା ଏକା ଯମୁନାକୂଳକୁ ଚାଲି ଯାଆନ୍ତି । ସେତେବେଳେ ତାଙ୍କୁ କେହି କିଛି କହିବା, ବା ତାଙ୍କ ସାଙ୍ଗରେ ଯିବା ମନା । ସେ ଯେତେବେଳେ ଫେରନ୍ତି ସେହିପରି ଧ୍ୟାନସ୍ଥ । କିନ୍ତୁ ସେ ଶୋଇବା ଘରକୁ ନ ଯାଇ ଠାକୁର ଘରକୁ ଯାଇ କବାଟ ବନ୍ଦ କରନ୍ତି । ଭାନୁପ୍ରକାଶ କଅଣ ଠାକୁର ପୂଜା କରନ୍ତି ? ଅନ୍ତତଃ ଅରିନ୍ଦମ ଜାଣେ ନା । ତେବେ ଭାନୁପ୍ରକାଶଙ୍କର ଯାହା ଅରିନ୍ଦମକୁ ସବୁଠାରୁ ବେଶି ଭଲ ଲାଗିଛି ସେ ତାଙ୍କ ମନର ସହଜ ସ୍ୱଚ୍ଛଳତା । କୌଣସି କଥାରେ ସେ ବିଚଳିତ ନୁହନ୍ତି, ଓ ସବୁ କଥାକୁ ସିଧା ସିଧା ଗ୍ରହଣ କରି ନେବାର ଦୃଢ଼ତା ।

ନାଁ, ସେ ଚୁପଚୁପ କଥାଟା ସେମିତି ଶୁଣାଯାଉଛି । ଆଉ ସେ ଅଦ୍ଭୁତ ବାସନା । ବାସନା କମିଯାଇଛି, କିନ୍ତୁ ଆସୁଛି । ଅରିନ୍ଦମ ସିଧା ହୋଇ ବସିଲା । ପାଖରେ ଶୋଇଥିବା ବଂଧୁଙ୍କର ନିଦ ବୋଧହୁଏ ଭାଙ୍ଗିଯାଇଛି । ସେ କଡ଼ ଲେଉଟାଇ ଖାଲି ପଚାରିଲେ - ରାତି ପାହିଲାକି ? ଅରିନ୍ଦମ କିଛି କହିଲାନି, ଉଠି ଛିଡ଼ା ହେଲା । ନାଁ, ଆଉ ନିଦ ହେବନି । ସେ ଶୋଇବା ଲୋକଙ୍କୁ କଡ଼େଇ କଡ଼େଇ ବାହାରକୁ ବାହାରି ଆସିଲା । ହଁ, ରାତି ପାହି ଆସୁଛି । ପରିଷ୍କାର ବିସ୍ତୃତ ଆକାଶରେ ତାରାମାନେ ଲିଭି ଆସିଲେଣି । ଦୂର ଆମ୍ବତୋଟା ଉପରେ ପାହାନ୍ତିଆ ତାରା, ଧକଧକ ହୋଇ ଜଳୁଛି । ସେ ତାରା ଆଡ଼କୁ ଚାହିଁ ଛିଡ଼ା ହେଲା । ପାହାନ୍ତା ପହରରେ ସେ ଅନେକ ଥର ଯମୁନା କୂଳକୁ ଉଠି ଆସିଛି ଏଇ ପାହାନ୍ତିଆ ତାରାକୁ ଦେଖିବା ପାଇଁ । ବାପା କହନ୍ତି ସ୍ୱର୍ଗର ଦେବତା, ନମସ୍କାର କର, ପୁଣ୍ୟ ହେବ । ଅରିନ୍ଦମ ଭାବିଲା ପୁଣ୍ୟ କଅଣ ? କେମିତି ବିଚାର ହୁଏ ? ଭାନୁପ୍ରକାଶ କହନ୍ତି ଜରାସନ୍ଧର ସୁନାଗଦାରେ


Digitized by srujanika@gmail.com

ପୁଣ୍ୟ ନାହିଁ । ତାକୁ ଯେପରି ଭାବରେ ହେଉ ନେଇ ଆସ, ଠିକ୍ କାମ କଲେ ପୁଣ୍ୟ ଆସିବ । ସେଇ ସଫା ହୋଇ ଆସୁଥିବା ଅଂଧାରରେ ଆସ୍ତେ ଆସ୍ତେ ଚାଲି ଚାଲି ସେ ତୋଟା ଆଡ଼କୁ ଗଲା ।

ଛୋଟ ତୋଟା । କିନ୍ତୁ ଗଛଗୁଡ଼ିକ ଜାକିଜୁକି ହୋଇ ନ ରହି ଛାଡି ଛାଡି ଅଛି । ତେଣୁ ଭିତରେ ପରିଷ୍କାର ଖୋଲାମେଲା ଜାଗା । ଚଳପ୍ରଚଳ ହେବା ପାଇଁ ପ୍ରଶସ୍ତ । ଗତ କାଲି ଏଇଠି ଗୋଳମାଳ ହେଉଥିଲା । ସେ ଶିବିରକୁ ଫେରିଲା ବେଳକୁ ସବୁ ଚୁପ୍‌ଚାପ ହୋଇଯାଇଥିଲା ଠିକ୍, କିନ୍ତୁ ବେଶ କିଛି ସମୟ ଗୋଳମାଳ ଚାଲିଥିଲା । ଗୋଟିଏ କଥା ସେ ଭାବୁଥିଲା । ସେ ଭାନୁପ୍ରକାଶ ଓ ତାଙ୍କ ଲୋକଙ୍କର ପ୍ରଚଣ୍ଡ ସାହସ । ଏ ତ ସିଂହ ପାଟିରେ ହାତ ପୂରେଇବା କଥା । ଯେ କୌଣସି ମୁହୂର୍ତ୍ତରେ ଯେ କୌଣସି କଥା ଘଟି ଯାଇପାରେ । ଆଉ ଭାନୁପ୍ରକାଶଙ୍କର ସ୍ୱାର୍ଥ କଅଣ ? ସ୍ୱାର୍ଥ କିଛି ନାହିଁ । ଯାହା ସ୍ୱାର୍ଥ ସେ ଗୋଟାଏ ସାଧାରଣ, ସାମଗ୍ରିକ ସ୍ୱାର୍ଥ । ଅତ୍ୟାଚାରୀକୁ ଭୟଭୀତ କରିବା, ଅତ୍ୟାଚାରର ପ୍ରତିବାଦ କରିବା । ସାଧାରଣ ଲୋକେ ଭୟଭୀତ ନ ହୋଇ ସାହସ କରି ଛିଡ଼ା ହେଉନ୍ତୁ । ନିଜର ଦାବି କଅଣ, ସ୍ୱାର୍ଥ କଅଣ ସଚେତ ହୁଅନ୍ତୁ, ବୁଝନ୍ତୁ । ଭାନୁପ୍ରକାଶ ଯାହା କରୁଛନ୍ତି, ଠିକ୍ କି ଭୁଲ୍ । ଏ ପ୍ରଶ୍ନ ଅବାନ୍ତର । ବଡ଼ କଥା ଉଦ୍ଦେଶ୍ୟ କଅଣ ? ଉଦ୍ଦେଶ୍ୟ ଯଦି ଠିକ୍ ଅଛି କାମ ବି ଠିକ୍ । ଅରିନ୍ଦମର ମନରେ ଆଗରୁ ଯାହା କିଛି ସନ୍ଦେହ ଥିଲା ଗତ ରାତିର ଆଲୋଚନା ପରେ ସେ ସବୁ ପରିଷ୍କାର ହୋଇଯାଇଛି । ଭାନୁପ୍ରକାଶ ଯାହା କରୁଛନ୍ତି, ଯେପରି ଭାବରେ କରୁଛନ୍ତି ଠିକ୍, କଣ୍ଟାକୁ କଣ୍ଟାରେ କଢ଼ାଯାଏ । ଜରାସନ୍ଧର ଗଦା ଗଦା ଟଙ୍କା ସୁନା ଠିକ୍ କାମରେ ଲାଗିବା ଦରକାର । କିନ୍ତୁ କି ସାହସ ! ସେ ନ ଦେଖିଥିଲେ ବୁଝି ପାରି ନ ଥାନ୍ତା ଯେ ଲୋକଙ୍କର ଏତେ ସାହସ, ଦମ୍ଭ ଥାଇପାରେ । ଆଉ ଟିକେ ଭୁଲ୍ ଭଟକା ନ ଥିବା ଯୋଜନା । ପାହାନ୍ତିଆ ଥଣ୍ଡା ପବନରେ ତା ମନ ସହଜ ହୋଇଆସିଲା, ମୁଣ୍ଡ ହାଲ୍‌କା ହାଲ୍‌କା ଲାଗିଲା । ସେ ତୋଟା ଭିତରକୁ ପଶିଲା ।

କିନ୍ତୁ ତୋଟା ଭିତରେ ତା'ପାଇଁ ଯେ ଅନ୍ୟପ୍ରକାର ଆଶ୍ଚର୍ଯ୍ୟ ଘଟଣା ରହିଥିବ ତା ସେ ଭାବି ନ ଥିଲା । ବେଶୀ ଭିତରକୁ ଯିବାକୁ ହେଲା ନାହିଁ । ସେଇ ପାହାନ୍ତା ଆଲୁଅରେ ସେ ଦେଖିଲା ଗୋଟାଏ ଗଛ ମୂଳେ ଦି ଜଣ ଲୋକ, ଜଣେ ପୁରୁଷ, ଜଣେ ସ୍ତ୍ରୀ । ସ୍ତ୍ରୀ ଲୋକଟି ଅତ୍ୟନ୍ତ ଆପଣାର ଲୋକ ପରି କହିଲା, 'ଅରିନ୍ଦମ, ବସ ।' ଅରିନ୍ଦମ ଚମକି ଉଠିଲା । ଏମାନେ କିଏ ? ତାକୁ ସେମାନେ ଜାଣନ୍ତି । ହୁଏତ ତା'ରି ପାଇଁ ସେମାନେ ଅପେକ୍ଷା କରି ରହିଛନ୍ତି । ଏ ଏକ ଅଦ୍ଭୁତ ଯୋଗାଯୋଗ । ସେ ଯେ ପାହାନ୍ତାରେ ଶିବିରରୁ ଉଠି ଏଇ ତୋଟାକୁ ଆସିବ ଏମିତି ତ କିଛି ଯୋଜନା ନ

ଥିଲା । ଏମାନେ ମନେ ହେଉଚି ଭାନୁପ୍ରକାଶଙ୍କ ଲୋକ, ସେ କଥା ବୁଝି ହେଉଛି । କିନ୍ତୁ ଏମାନେ ତାକୁ ଅପେକ୍ଷା କରିଥିଲେ । କାହିଁକି ? ଭାନୁପ୍ରକାଶ ନିଜେ ବି ତ କିଛି କହୁ ନ ଥିଲେ । ସ୍ତ୍ରୀ ଲୋକଟି ପୁଣି କହିଲେ, 'ବସ, କଥା ଅଛି । ଭାନୁପ୍ରକାଶ ତୁମକୁ ଏଠି ଭେଟିବାକୁ କହିଛନ୍ତି । ତୁମେ ଏଠିକି ଆସିବ, ଏ କଥା ବି କହିଛନ୍ତି ।'

'କିନ୍ତୁ ମୋତେ ତ ଭାନୁପ୍ରକାଶ କିଛି କହି ନାହାନ୍ତି ।' ଅରିନ୍ଦମ କହିଲା, 'ମୋତେ ଶିବିରରେ ଛାଡିଦେଇ ଗଲାପରେ ଖାଲି କହିଲେ ପାହାନ୍ତା ଆଗରୁ ଶିବିରରୁ ବାହାରିବ ନାହିଁ । ତୁମେ କିଏ ? କି କଥା ?'

ଅରିନ୍ଦମ ସେମାନଙ୍କ ପାଖରେ ବସିଲା । ଆଲୁଅ ପରିଷ୍କାର ହୋଇ ଆସୁଛି । ହଠାତ୍ ତାର ମନେ ହେଲା ଏ ସ୍ତ୍ରୀଲୋକଙ୍କୁ ସେ ଜାଣେ । କିନ୍ତୁ କୋଉଠି, କେମିତି ଜାଣିଲା ? ସେ ସ୍ତ୍ରୀଲୋକଙ୍କ ମୁହଁକୁ ଭଲ କରି ଚାହିଁଲା । ହଁ, ଚିହ୍ନା ଚିହ୍ନା ମନେ ହେଉଛି । ସ୍ତ୍ରୀ ଲୋକ ଜଣକ ଅଳ୍ପ ହସିଲେ, କହିଲେ, 'ଅରିନ୍ଦମ, ମୋତେ ଚିହ୍ନି ପାରିଲ ? ମେତେ ତୁମେ ଦି ଥର ଦେଖିଛ । ଥରେ ଆମ ଦଳର ସେଇ ଗୁପ୍ତ ଘରେ , ଭାନୁପ୍ରକାଶଙ୍କ ସାଙ୍ଗରେ । ଆଉ ଥରେ ତା ଆଗରୁ, ହେଇ ସେ ପାଖ ରାସ୍ତା ଉପରେ । ଯେତେବେଳେ ସେମାନେ ମୋର ସ୍ୱାମୀଙ୍କୁ ମାରିଦେଲେ ।' ସତେ ତ ! ସେଦିନର କଥା ମନେ ପଡି ଅରିନ୍ଦମର ଦେହ ଶୀତେଇ ଉଠିଲା । ସେଇ ସେ ଗିରିବ୍ରଜକୁ ଆସିବାର ଆରମ୍ଭ ସମୟର । ମଲ୍ଲକୁସ୍ତି ହେବା ଆଗରୁ । ସେ ଏ ଅଞ୍ଚଳ ଛାଡି ବାହାରକୁ ଯାଇଛି । ସଂଧ୍ୟା ହେବା ହେବା ଉପରେ । ଏ ଜାଗା ସବୁ ତାର ଅଚିହ୍ନା । ସେ କେବଳ ନିଜ ମନର ଆଗ୍ରହରେ ଆସ୍ତେ ଆସ୍ତେ ଚାଲି ଚାଲି ଯାଉଛି । ସେତେବେଳେ ହଠାତ୍ ଏଇ ରାସ୍ତା ଉପରେ ସେମାନେ ଏଇ ସ୍ତ୍ରୀ ଲୋକଙ୍କର ସ୍ୱାମୀଙ୍କୁ ହାଣି ଦେଲେ । ତା' ଆଖି ଆଗରେ । ଭାଗ୍ୟ ଭଲ ସେ ଗୋଟାଏ ବୁଦା ଆଢୁଆଳରେ ଲୁଚି ଛିଡ଼ା ହୋଇଥିଲା । ନଚେତ୍ ତା'ର କଅଣ ହେଇଥାଆନ୍ତା କିଏ କହିବ । ସେତେବେଳେ ଏଇ ସ୍ତ୍ରୀ ଲୋକଙ୍କୁ ସେ ଦେଖିଛି । ସେ ତା' ପାଖରୁ ଅଳ୍ପ ଦୂରରେ ଛିଡ଼ା ହୋଇଥିଲେ । ପାଟିରେ କଥା ନାହିଁ । ଆଖିରୁ ଝର ଝର ହେଇ ଲୁହ ବହି ଯାଉଥିଲା । ମୁହଁ ପଥର ପରି, ଆଖି ଦିଟା ରଡ ନିଆଁ ପରି ଜଳୁଥିଲା । ଲୋକମାନେ ଯେମିତି ଆସିଥିଲେ ସେମିତି ପବନ ପରି କୁଆଡ଼େ ଚାଲିଗଲେ । ଏ ସ୍ତ୍ରୀ ଲୋକ ଜଣକ ବି ଚୁପ୍‌ଚାପ ସେ ଜାଗା ଛାଡି ଚାଲିଗଲେ । ସେ ଅରିନ୍ଦମକୁ ଦେଖିଥିଲେ କି ନାହିଁ ତାକୁ ଜଣାନାହିଁ । କିନ୍ତୁ ସେ ଗଲାବେଳେ ତାଙ୍କର ସେ ମୁହଁ, ଆଖି ଅରିନ୍ଦମକୁ ଭୟଭୀତ କରି ଦେଇଥିଲା । ଅରିନ୍ଦମ କହିଲା, 'ହଁ, ସେଦିନର କଥା ମୋର ପୂରା ମନେ ଅଛି । ମୁଁ ଏ ଜାଗାରେ ନୂଆ ନୂଆ । ସଂଧ୍ୟାରେ ଖାଲି ବୁଲାବୁଲି


Digitized by srujanika@gmail.com

କରିବାକୁ ମୁଁ ସେଠି ବୁଲୁଥିଲି । ମୁଁ ଭାବି ନଥିଲି ଏମିତି ଗୋଟାଏ ଘଟଣା ଘଟିପାରେ । ମୁଁ ତ ବହୁତ ଡରି ଯାଇଥିଲି ।'

'ଡରିବା କଥା ।' ସ୍ତ୍ରୀ ଲୋକ ଜଣକ କହିଲେ, 'ତୁମେ ଶିବିରରୁ ବାହାରିବା ବେଳେ ସେଠିକା ସିପାହୀ ମନା କରିଥିବ ?'

'ହଁ, କରିଥିଲା । କହିଥିଲା - ବେଶୀ ଦୂରକୁ ଯିବନି । ଶୀଘ୍ର ଫେରିଆସିବ ।'

'ତୁମେ ଫେରି ସିପେହୀକି କଅଣ କହିଥିଲ କି ?''

'ନାଁ । ମତେ ଏମିତି ଡର ଯାବୋଡି ଧରିଥିଲା ମୁଁ କାହାକୁ କିଛି କହିବା ଅବସ୍ଥାରେ ନ ଥିଲି ।'

ସ୍ତ୍ରୀ ଲୋକ ଜଣଙ୍କ ହସିଲେ, କହିଲେ, 'ମୋ ସାଙ୍ଗ ଲୋକଙ୍କୁ ଭଲ କରି ଦେଖିଲ । ଏ ସେଇ ସିପେହୀ ନୁହନ୍ତି ତ ?'

ଅରିନ୍ଦମ ଚାହିଁଲା । ମୁହଁ ଚିହ୍ନା ଚିହ୍ନା ମନେ ହେଲା । କହିଲା, 'ଠିକ୍ ମନେ ନାହିଁ । ତେବେ ମୁହଁ ଚିହ୍ନା ଚିହ୍ନା ମନେ ହେଉଛି ।'

'ହଁ, ସେଇ ଲୋକ । ଆମର ଆଉ ଅନ୍ୟ ଲୋକ ବି ଥିଲେ । ମଥୁରା ଶିବିର ଉପରେ ଆମର ନଜର ଥିଲା । ବିଶେଷ କରି ତୁମ ଉପରେ ନଜର ରଖିବାକୁ କୁହାଯାଇଥିଲା । କିନ୍ତୁ ତୁମେ ଯେ ସେଇ ଲୋକ ଆମେ ନିର୍ଦ୍ଦିଷ୍ଟ ଭାବରେ ଜାଣି ନ ଥିଲୁ । ତୁମ ଚେହେରାର ଯେଉଁ ବର୍ଣ୍ଣନା ଆମ ପାଖରେ ଥିଲା, ଆମେ ଭାବୁଥିଲୁ ତୁମେ ସେଇ ଲୋକ । ତୁମର ମନେ ଅଛି ? ତୁମେ ଶିବିରରୁ ବାହାରିବା ବେଳେ ସିପେହୀ ତୁମକୁ ନାଁ ପଚାରିଥିଲା ?'

ଅରିନ୍ଦମ କହିଲା, 'ସତେ ତ ! ବାହାରେ ଥିବା ସିପେହୀ ମନା କଲା ଓ ବିରକ୍ତ ହେଇ ମୋ ନାଁ ପଚାରିଥିଲା । ମୁଁ ନାଁ କହିଥିଲି, ଭାବିଥିଲି ସେମାନେ ସାଧାରଣ ଭାବରେ ସତର୍କ ରହୁଛନ୍ତି ।'

ସ୍ତ୍ରୀ ଲୋକ ଜଣକ ତାଙ୍କ ସାଙ୍ଗକୁ ଚାହିଁଲେ, କହିଲେ, 'ଅରିନ୍ଦମଙ୍କୁ ଉତ୍ତର ଦିଅ ।'

ଲୋକ ଜଣକ ଅରିନ୍ଦମକୁ ଚାହିଁଲେ, କହିଲେ, 'ମୁଁ ତୁମକୁ ଆଗରୁ ଚିହ୍ନି ସାରିଥିଲି । କିନ୍ତୁ ମୁଁ ଶିବିର ଜଗିଛି । କିଛି ନ କହିଲେ ବା ନ ପଚାରିଲେ ତୁମେ ହୁଏତ ଅନ୍ୟ କିଛି ଭାବିବ, ସେଇ ଯୋଗୁଁ । ଦିନକ ପରେ ପଡିଆ ଭିତରେ ତୁମକୁ ସାବଧାନ କରି ଦିଆଯାଇଥିଲା, ମନେ ଅଛି ?'

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଚାହିଁଲା - 'ତୁମେ ?'

'ହଁ । ତୁମେ କାଲି ରାତିରେ ଶିବିରକୁ ଫେରିଲା ବେଳେ ଯିଏ ଶିବିର


Digitized by srujanika@gmail.com

ସାମନାରେ ଅଧାଶୁଆ ହୋଇ ବସିଥିଲା, ତା' ମୁହଁ ଦେଖିଛ ?'

ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ ଆହୁରି ବଢ଼ିଗଲା – 'ତୁମେ ? ଏ କେମିତି କଥା ? ତୁମେ କଅଣ ଜରାସନ୍ଧଙ୍କ ସିପେହୀ ନୁହଁ ?'

'କିଏ କହିଲା ନୁହେଁ ।' ଲୋକ ଜଣକ କହିଲେ, 'ମୁଁ, ଆହୁରି ଅନେକ, ସମସ୍ତେ ତାଙ୍କ ଲୋକ । କିନ୍ତୁ ତାଙ୍କ ଲୋକ ହେଲେ ବି ସବୁବେଳେ ତାଙ୍କ କଥା ମାନିବୁ ଏମିତି ତ କିଛି କଥା ନାହିଁ ।'

'ନାଁ, ନାହିଁ....' ଅରିନ୍ଦମ ଥାଥା ମାମା ହୋଇ କହିଲା – 'କିନ୍ତୁ...'। 'କିନ୍ତୁ କଅଣ ?...' ସ୍ତ୍ରୀ ଲୋକ ଜଣକ କହିଲେ, ତାଙ୍କ ଆଖି ଜଳି ଉଠିଲାଣି, 'ଅତ୍ୟାଚାରୀ, ଦୁରାଚାରୀ ଶାସକ ଠାରୁ ସବୁ ସୁବିଧା ନିଅ, କିନ୍ତୁ ସାମାନ୍ୟ ସୁଯୋଗ ପାଇଲେହିଁ ସାପ ପରି ଚୋଟ ମାର ।'

'ତା ଠିକ... ତା' ଠିକ୍...' ଅରିନ୍ଦମର ଥାଥା ମାମା ଭାବ କଟି ନ ଥିଲା । 'ଠିକ୍ ଭୁଲ୍ କଥା ନୁହେଁ, ଅରିନ୍ଦମ ।' ସ୍ତ୍ରୀଲୋକ ଜଣକ କହିଲେ, 'ସେ ବିଚାରର ଆବଶ୍ୟକ ନାହିଁ । ଅତ୍ୟାଚାରୀ ଅତ୍ୟାଚାରର ପ୍ରତିବାଦ କରିବାକୁ ହେବ । ଯେପରି ଭାବରେ ଭାବୁଛ ପ୍ରତିବାଦ କର । ଏଥିରେ ନୀତି ଅନୀତିର ପ୍ରଶ୍ନ ନାହିଁ । ଜରାସନ୍ଧର ଅର୍ଥ ବଳ, ସୈନ୍ୟବଳ, ଲୋକବଳ । ଆମର ସେସବୁ ନାହିଁ । ତେଣୁ ଆମେ ତା'ର ଅର୍ଥକୁ ବ୍ୟବହାର କରୁଛୁ । ତାରି ଲୋକେ ଆମ ଲୋକ । ମୁଁ ମୋର ସ୍ୱାମୀ ହତ୍ୟାର ଯେମିତି ହେଲେ ପ୍ରତିଶୋଧ ନେବି । ଭାନୁପ୍ରକାଶ ଏକଥା ଜାଣନ୍ତି । ସେ ମୋ ସହିତ ଏକମତ ।'

ଅରିନ୍ଦମ ମନରୁ ତଥାପି ବି ଦ୍ୱିଧାଭାବ କଟି ନ ଥିଲା । ସେ ଯେଉଁପରି ଭାବରେ ନିଜ ପରିବାରରେ ଓ ବାପାଙ୍କ ଆଦେଶରେ ବଢ଼ି ଉଠିଥିଲା, ଏ ତ ସବୁ ତା ଠାରୁ ଅଲଗା । ବାପା ନୀତି ନିୟମରେ ବିଶ୍ୱାସ କରନ୍ତି, ଧର୍ମରେ ବିଶ୍ୱାସ କରନ୍ତି, ସେ କାହାକୁ ଶତ୍ରୁ ଭାବରେ ଦେଖନ୍ତି ନାହିଁ । ତାଙ୍କର ସଂପୂର୍ଣ୍ଣ ଅପକାର କରିଥିବା ଲୋକକୁ ମଧ୍ୟ ସେ କେବେ ନିନ୍ଦା କରିବା ବା ତା ବିରୁଦ୍ଧରେ କହିବା ଅରିନ୍ଦମ ଶୁଣି ନାହିଁ । ମନ ଖୁବ୍ ଖରାପ ହେଲେ ସେ ଦେଖିଛି ବାପା ଠାକୁର ଘରକୁ ପଶି ଯାଆନ୍ତି ଓ ଦୀର୍ଘ ସମୟ ଧରି ପୂଜା କରନ୍ତି । ସେ ବାରମ୍ବାର ଦେଖିଛି ବାପା କେବେ ରାଗନ୍ତି ନାହିଁ, ଆଉ ଯେବେ ମନେହୁଏ ସେ ଖୁବ୍ ରାଗିଛନ୍ତି, ସେ କଥା କହନ୍ତି ନାହିଁ ଚୁପଚାପ ରହନ୍ତି । କଂସ ଯେବେ ଉଗ୍ରସେନଙ୍କୁ ବାହାର କରି ନିଜେ ରାଜା ହେଲା, ସେ ବାହାରେ କିଛି କହିଲେ ନାହିଁ । ଉଗ୍ରସେନଙ୍କୁ ମାନିନେବାକୁ କହିଲେ, ଆଉ ନିଜେ ସଂପୂର୍ଣ୍ଣ ଚୁପ ରହିଥିଲେ ।


Digitized by srujanika@gmail.com

ଅରିନ୍ଦମର ଭାବିବାଟା ଯେମିତି ଧକ୍କା ଖାଇଲା ପରି ବନ୍ଦ ହୋଇଯାଇ ଥିଲା । ନାଁ ତ, ବାପା ସବୁକଥା ଚୁପ୍‌ଚାପ୍ ମାନି ନିଅନ୍ତି, ଏ ତ ଠିକ୍ କଥା ନୁହେଁ । କଂସ ଯାହା କଲା ସେ କଥା ସମସ୍ତେ, ସବୁ ମୁଖିଆ, ନାପସନ୍ଦ କରିଥିଲେ । କିନ୍ତୁ କେହି ତ କିଛି କହି ନ ଥିଲେ ? ଏକମାତ୍ର ବାପାହିଁ କଂସକୁ ସ୍ପଷ୍ଟ ଭାବରେ କହିଥିଲେ, ଯେ ସେ ଯାହା କଲା ସେ ଠିକ୍ ନୁହେଁ, ଅଧର୍ମ । ଉଗ୍ରସେନ ସ୍ୱଇଚ୍ଛାରେ ରାଜଗାଦି ଛାଡି ଦେଇଥାନ୍ତେ, ଏ ଜୋର ଜବରଦସ୍ତି କାହିଁକି ? ତା'ର ମନେ ଅଛି କଂସର ମୁହଁ ଲାଲ୍ ପଡିଯାଇଥିଲା । ଅରିନ୍ଦମର ଭୟ ହେଲା ସେ ବାପାଙ୍କ ବିରୁଦ୍ଧରେ କ'ଣ ଏଆଡୁ ସିଆଡୁ କହିପାରେ । ନାଁ, ସେ କିଛି କଲା ନାହିଁ କି କହିଲା ନାହଁ । ବାପା ଉଠି ଚାଲି ଆସିଥିଲେ ଓ ସେ ସାରା ଦିନ ଠାକୁର ଘରେ ଥିଲେ । ତେବେ ଏସବୁ ତ ପର କଥା । ସେଦିନ ସେଇ ସକାଳେ, ଗିରିବ୍ରଜରେ, ତୋଟା ଭିତରେ ବସି କଥା କହିଲା ବେଳେ ସେ ଏସବୁ କଥା ଭାବୁ ନ ଥିଲା । କେବଳ ଗୋଟାଏ ସଂସ୍କାର ତା ମୁଣ୍ଡରେ କାମ କରୁଥିଲା, ଯେଉଁ ସଂସ୍କାର ତାର ଜନ୍ମଗତ, ବାପାଙ୍କ ଠାରୁ ସେ ପାଇଛି, କେଉଁଟା ଠିକ୍ କେଉଁଟା ଭୁଲ୍ ସେହିପରି ଗୋଟାଏ ସ୍ୱତଃ ବିଚାର ।

ସେ ସ୍ତ୍ରୀଲୋକ - ଅରିନ୍ଦମର ମନେ ପଡିଲା ତାଙ୍କ ନାଁ ଗୋପା - ଉଠି ଅରିନ୍ଦମ ପାଖକୁ ଲାଗି କରି ବସିଲେ, ଓ ତାର ଗୋଟାଏ ହାତ ନିଜ ହାତ ମୁଠାରେ ଧରି ରଖିଲେ । ଅରିନ୍ଦମ ଏତେ ପାଖରୁ ଗୋପାଙ୍କୁ କେବେ ଦେଖି ନ ଥିଲା । ସଫା ହୋଇ ଆସୁଥିବା ଆଲୁଅରେ ତାର ମନେ ହେଲା ଗୋପା ସୁନ୍ଦରୀ । ତାଙ୍କର ଦେହ, ହାତ, ମୁହଁ ସବୁଆଡ଼େ ଗୋଟାଏ ଆକର୍ଷଣ କଲାପରି ବ୍ୟକ୍ତିତ୍ୱ । ଶୀତ ଦିନେ ଉଷୁମ ଉଷୁମ ଭାବ ପରି ତାଙ୍କ ଦେହରୁ ଗୋଟାଏ ଉଷୁମ ଉଷୁମ ଅନୁଭବ ଆସି ମନକୁ ଖୁସି କରୁଛି । ସେ କିଛି ନ କହି କିଛି ସମୟ ବୋଧେ ଗୋପାଙ୍କୁ ଚାହିଁ ରହିଥିଲା । ଗୋପା ହସିଲେ, ମୃଦୁ ସ୍ୱରରେ ଡାକିଲେ, 'ଅରିନ୍ଦମ' । ଅରିନ୍ଦମ ସାମାନ୍ୟ ଚମକି ଉଠିଲା, ତରବର ହୋଇ କହିଲା, 'ନାଇଁ, ନାଇଁ, କହନ୍ତୁ ।' ଗୋପା ପୁଣି ହସିଲେ, ସେମିତି ଅରିନ୍ଦମର ହାତକୁ ଧରି ଯେମିତି ତାର ମନକୁ ପଢିପାରୁଛନ୍ତି ସେମିତି କହିଲେ, 'ମୋ ଚେହେରା ତୁମକୁ ଭଲ ଲାଗୁଛି, ନୁହେଁ? ନାଇଁ, ନାଇଁ, ଲାଜ କରନା, ମୋ ଚେହେରା ଭଲ ମୁଁ ଜାଣେ । ଏ କଥା ସମସ୍ତେ କହନ୍ତି । ଭାନୁପ୍ରକାଶ ତ ଥଟ୍ଟା କରନ୍ତି । କିନ୍ତୁ ତୁମେ ବୋଧହୁଏ ଜାଣ ନା, ଏଇ ଭଲ ଚେହେରା ଯୋଗୁ ମୁଁ ଅନେକ ବିପଦରୁ ବଂଚି ଆସିଛି ।' ଗୋପା ଚୁପ କରିଗଲେ । ଅରିନ୍ଦମର ମନେହେଲା ତାଙ୍କର ଦି ଆଖି ତାକୁ, ସେମାନେ ବସିଥିବା ତୋଟାକୁ, ଓ ସଖାଳକୁ ଛାଡି କେଉଁ ଦୂରକୁ ଯେପରି ଲମ୍ବିଯାଇଛି । ଆଖିରେ ଦୁଃଖ, ବିଷାଦର ଚିହ୍ନ । ସେ ପୁଣି କଥା କହିଲେ, ସ୍ୱରରେ


Digitized by srujanika@gmail.com

ବି ସେଇ ଦୁଃଖ ବିଷାଦର ଧାରା । ସେ କହିଲେ, 'ଅରିନ୍ଦମ, ମୁଁ ଏଠିକାର ଲୋକ ନୁହେଁ । ମୋର ନିଜ ଘର ହସ୍ତିନାପୁର, ମୁଁ ଭୀଷ୍ମଙ୍କ ପରିବାରର ଲୋକ । ମହାରାଣୀ ସତ୍ୟବତୀ ମୋତେ ଖୁବ୍ ସ୍ନେହ କରନ୍ତି । ମୋର ମା ସତ୍ୟବତୀଙ୍କ ପରି କୈବର୍ତ୍ତ କନ୍ୟା । ମୋର ପିତା ସତ୍ୟବତୀଙ୍କ ପ୍ରଥମ ସ୍ୱାମୀଙ୍କ ପରି ଋଷି ନୁହନ୍ତି, କିନ୍ତୁ ବ୍ରାହ୍ମଣ । ମୁଁ ସତ୍ୟବତୀଙ୍କ ପାଖରେ ରହିଥିଲି । ତାଙ୍କରି ପାଖରେ ହିଁ ବଢ଼ି ଉଠିଛି ।' ସେ ଚୁପ କରିଗଲେ । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା... ଭୀଷ୍ମ ! ମହାରାଣୀ ସତ୍ୟବତୀ ! ସେ କେବଳ କହିଲା 'ମହାରାଣୀ ସତ୍ୟବତୀ... !' 'ହଁ, ମହାରାଣୀ ସତ୍ୟବତୀ' ଗୋପା କହିଲେ, 'ତାଙ୍କ ପରି ଆଉ ଦ୍ୱିତୀୟ ଜଣେ ଏ ଭୂଭାରତରେ ନାହିଁ । ମୋତେ ତୁମେ ସୁନ୍ଦରୀ ବୋଲି ଭାବୁଛ ଅରିନ୍ଦମ । କିନ୍ତୁ ତାଙ୍କ ଆଗରେ ମୁଁ କି ଛାର । ସେ କେତେ ସୁନ୍ଦରୀ ସେ କଥା କହିବା ମୋ ପକ୍ଷରେ ସମ୍ଭବ ନୁହେଁ । କେହି ବି କହି ପାରିବ ନାହିଁ । ସେ ଅଦ୍ଭୁତ ସୌନ୍ଦର୍ଯ୍ୟକୁ କେବଳ ଭାବି ହବ, କହି ହବ ନାହିଁ । ଦୁଇଜଣ ମହାନ ଲୋକଙ୍କ କଥା ଭାବ, ଜଣେ ମହାନ ଋଷି ପରାଶର, ଆଉ ଜଣେ ମହାନ୍ ଚକ୍ରବର୍ତ୍ତୀ ସମ୍ରାଟ ଶାନ୍ତନୁ । ସେ କାହା ପାଖକୁ ଯାଇ ନ ଥିଲେ । ସେ ଉଭୟ ତାଙ୍କ ପାଖକୁ ଆସିଥିଲେ ।'

ଅରିନ୍ଦମ କଣ କହିବାକୁ ଭାବି କହି ପାରିଲା ନାହିଁ । ସେ କେବଳ ବିହ୍ୱଳ ହୋଇ ଗୋପାଙ୍କୁ ଚାହିଁ ରହିଲା । ତା ମୁଣ୍ଡରେ କେବଳ ଗୋଟାଏ ନାଁ ରଣଝଣ ହୋଇ ବାଜୁଥିଲା... 'ମହାରାଣୀ ସତ୍ୟବତୀ'... 'ମହାରାଣୀ ସତ୍ୟବତୀ' ! କିଛି ଦୂରରେ ଗୋପାଙ୍କ ସାଙ୍ଗରେ ଥିବା ଲୋକଟି ଚୁପ ହୋଇ ବସିଛି । ସତେ ଯେପରି ଶୂନ୍ୟକୁ ଚାହିଁଛି । ଏମାନେ କଅଣ କଥାବାର୍ତ୍ତା ହେଉଛନ୍ତି ଯେମିତି ତାର କିଛି ଆଗ୍ରହ ନାହିଁ । ଅନ୍ଧାର ପ୍ରାୟ କଟିଗଲାଣି । କିନ୍ତୁ ଶିବିରରୁ ଲୋକ କେହି ବାହାରି ନାହାନ୍ତି । ଚାରିଆଡ଼େ ପ୍ରାୟ ଶୂନଶାନ । କିନ୍ତୁ ଅରିନ୍ଦମ ବୁଝି ପାରୁ ନ ଥାଏ ସେ ଗୋପାଙ୍କୁ କଣ କହିବ, ତାଙ୍କ ସାଙ୍ଗରେ କିପରି କଥାବାର୍ତ୍ତା କରିବ । ବାପାଙ୍କ ପାଖରୁ ସେ ଚକ୍ରବର୍ତ୍ତୀ ଶାନ୍ତନୁ, ସତ୍ୟବତୀ, ଭୀଷ୍ମ, ସମସ୍ତଙ୍କ କଥା ଶୁଣିଛି । ବାପାଙ୍କର ସେମାନଙ୍କ ପ୍ରତି ଅସୀମ ଶ୍ରଦ୍ଧା, ସମ୍ମାନ । ତାଙ୍କ ମତରେ ସେମାନେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ବ୍ୟକ୍ତି, ଶ୍ରେଷ୍ଠ ଆର୍ଯ୍ୟ । ସତ୍ୟବତୀ ତ ବାପା କହନ୍ତି ମାନବୀ ନୁହନ୍ତି, ଦେବୀ । ମହାନ ଋଷି ବେଦବ୍ୟାସଙ୍କର ମାତା ଦେବୀ ନ ହୋଇ କଅଣ ମାନବୀ ହେବେ ! ଅରିନ୍ଦମ କେବଳ କହିଲା, 'ଗୋପା ଆପଣ କଅଣ ମହାରାଣୀ ସତ୍ୟବତୀଙ୍କ ପାଖରେ ଥିଲେ ?'

'ହଁ, ଥିଲି ।' ଗୋପା କହିଲେ ।

'ସତ୍ୟବତୀ କେମିତି ? ଲୋକେ ତାଙ୍କ ବିଷୟରେ ଯାହା କହନ୍ତି ସେସବୁ

କଅଣ ସତ ?' ପ୍ରଶ୍ନ ପଚାରି ଅରିନ୍ଦମର ନିଜକୁ ଅତ୍ୟନ୍ତ ଛୋଟ ମନେ ହେଲା । କାହିଁ ସତ୍ୟବତୀ, ଭୀଷ୍ମ, ଆଉ ସେ । ବିରାଟ ମହୀରୁହ ପାଖରେ ଛୋଟ ଘାସ । ସେ ସାମାନ୍ୟ ଲଜ୍ଜିତ ହୋଇ ଗୋପାଙ୍କୁ ଚାହିଁଲା ।

ଗୋପା ସ୍ନେହରେ ଅରିନ୍ଦମ ମୁହଁକୁ ଚାହିଁଲେ, କହିଲେ, 'ନାଇଁ, ନାଇଁ, ବ୍ୟସ୍ତ ହେବାର କିଛି ନାହିଁ । ତୁମେ ଯାହା ପଚାରିଲ, ଅନେକ ସେହିପରି ପଚାରନ୍ତି । ସତ୍ୟବତୀ ଭୀଷ୍ମ ମା ପୁଅ । କିନ୍ତୁ ସେମାନଙ୍କର ବୟସ ଯାହା ଉଭୟ ସ୍ୱାମୀ ସ୍ତ୍ରୀ ହୋଇ ପାରିଥାନ୍ତେ । କିନ୍ତୁ ସେମାନଙ୍କର ସଂପର୍କ ନ ଦେଖିଲେ ବୁଝି ହବନି । ଜଣଙ୍କର ଅଚଳା ଭକ୍ତି । ଜଣଙ୍କର ଅଚଳା ସ୍ନେହ । ଉଭୟଙ୍କର ଗୋଟିଏ ଉଦ୍ଦେଶ୍ୟ, ଚକ୍ରବର୍ତ୍ତୀ ଭରତଙ୍କର ରାଜ ସିଂହାସନକୁ ଅତୁଟ ରଖିବା ।' ଗୋପା ଟିକିଏ ରହିଯାଇ ପୁଣି କହିଲେ, 'ଭୀଷ୍ମ ଭୀଷ୍ମ, ସମସ୍ତେ ତାଙ୍କୁ ଭୟ କରନ୍ତି । କିନ୍ତୁ ସତ୍ୟବତୀଙ୍କର ସ୍ନେହର ତୁଳନା ନାହିଁ । ସମସ୍ତଙ୍କୁ ସେ ସମାନ ସ୍ନେହ କରନ୍ତି । ମୁଁ ଆଜି ବି ଇଚ୍ଛା କଲେ ତାଙ୍କ ପାଖକୁ ଫେରିଯାଇ ପାରିବି ।'

ଅରିନ୍ଦମର ବିହ୍ୱଳ ଭାବ କଟିଗଲାଣି । ସେ ଗୋପାଙ୍କୁ ନୂଆ ଆଖିରେ ଦେଖିବାକୁ ଆରମ୍ଭ କଲାଣି । ତାର ମନେ ପଡିଲା ଭାନୁପ୍ରକାଶ ବା ଭାନୁପ୍ରିୟ ଗୋପାଙ୍କ କଥା କହିବା ବେଳେ ବେଶ ସମ୍ଭ୍ରମରେ କହନ୍ତି । ସେ ବେଳେବେଳେ ଆଶ୍ଚର୍ଯ୍ୟ ହୋଇଛି ଏତେ ସମ୍ଭ୍ରମ କାହିଁକି । କିନ୍ତୁ ସେ ବିଶେଷ ଭାବି ନାହିଁ । ଗୋପାଙ୍କ କଥା ଉଠିଲେ, ତା ମନରେ ସବୁବେଳେ ସେଇ ଛବିଟା ଠେଲି ଉଠେ । ସେଇ ସକାଳର ଛବି... ରାସ୍ତାରେ ସ୍ୱାମୀ ରକ୍ତ ଜୁଡୁବୁଡୁ ହୋଇ ପଡିଛନ୍ତି, ଆଉ ପାଖରେ ନୀରବରେ କାନ୍ଦୁଥିବା ନାରୀ, କିନ୍ତୁ ଆଖି ଦି'ଟା ରଡ ନିଆଁ ପରି ଜଳୁଛି । ହଠାତ୍ ଗୋଟାଏ କଥା ଅରିନ୍ଦମ ମନକୁ ଆସିଲା – ଏମାନଙ୍କର ଏସବୁ ନାଁ, ଭାନୁପ୍ରକାଶ ଭାନୁପ୍ରିୟ, ଗୋପା, ଏସବୁ ନିଜ ନାଁ ତ ? ସେ ସେଇକଥା ଗୋପାଙ୍କୁ ପଚାରିଦେଲା । ଗୋପା ହସିଲେ, କହିଲେ, 'ନାଁ, ନିଜ ନାଁ ନୁହେଁ । ଆଉ ନିଜ ନାଁ ସବୁ କେବେ ଠୁ ହଜିଗଲାଣି । ଏ ସବୁ ଆମ ନାଁ, ଏଇ ନାଁରେ ଆମେ ପରସ୍ପରକୁ ଜାଣୁ ।' ସେ ଅରିନ୍ଦମର ମୁହଁକୁ ଚାହିଁଲେ । ସେମିତି ସ୍ନେହ ମିଶା ସ୍ୱରରେ କହିଲେ, 'ଅରିନ୍ଦମ, ତୁମେ ଆଉ ଗୋଟା ପ୍ରଶ୍ନ ପଚାରିବାକୁ ଚାହୁଁଛ । ନୁହେଁ... ?'

'ହଁ, ହଁ...' ଅରିନ୍ଦମ ସାମାନ୍ୟ ସଂକୁଚିତ ହେଲା ।

'ସଂକୋଚ କର ନା ।' ଗୋପା କହିଲେ, 'ତୁମେ କ'ଣ ପ୍ରଶ୍ନ ପଚାରିବାକୁ ଚାହଁ ମୁଁ ଜାଣେ । ମୁଁ ଉତ୍ତର ଦେଉଛି ଶୁଣ ।'

ସକାଳ ହୋଇ ଗଲାଣି । ଗୋଟା ଗୋଟା ଲୋକ ଯିବା ଆସିବା କଲେଣି ।


Digitized by srujanika@gmail.com

ଛୋଟ ଛୋଟ ଚଢ଼େଇମାନେ ଡିଆଁଡେଇଁ କଲେଣି । ଆକାଶ ସଫା, ଗୋପା ସେ ଆଡକୁ ଚାହିଁ ଚୁପ କରିଗଲେ । ଆଖିରେ ତାଙ୍କର ସେଇ ଦୂର ଦୂର ଭାବ । କହିଲେ, 'ଅରିନ୍ଦମ, ତୁମେ ଜାଣିବାକୁ ଚାହୁଁଛ । ଯେ କୌଣସି ଲୋକ ବି ଜାଣିବାକୁ ଚାହିଁବ । ଏ ଲମ୍ବା ଇତିହାସ । ସବୁ କଥା କହିବାକୁ ସମୟ ନାହିଁ । ତୁମେ ଆସ୍ତେ ଆସ୍ତେ ଜାଣିବ । ତେବେ ଗୋଟିଏ କଥା କହେ । ଭାନୁପ୍ରକାଶ ଓ ଭାନୁପ୍ରିୟ ଏମାନେ ହସ୍ତିନାର ଲୋକ । ଯାହାଙ୍କୁ ସେଦିନ ଜରାସନ୍ଧର ଲୋକେ ଅତ୍ୟନ୍ତ ନୃଶଂସ ଭାବରେ ମାରିଦେଲେ, ଯାହାଙ୍କୁ ତୁମେ ମୋର ସ୍ୱାମୀ ବୋଲି ଜାଣିଛ, ସେ ମୋର ସ୍ୱାମୀ ନୁହନ୍ତି, ବଂଧୁ, ଯେମିତି ଭାନୁପ୍ରକାଶ ଭାନୁପ୍ରିୟ ବି, ବଂଧୁ । ଏମାନେ ସମସ୍ତେ ହସ୍ତିନାର ଲୋକ । ସେଇ ହସ୍ତିନାରୁ ହିଁ ଆମର ଏ ସଂଗଠନର ଆରମ୍ଭ । ଭୀଷ୍ମ ଜାଣନ୍ତି, ସତ୍ୟବତୀ ଜାଣନ୍ତି । ସେମାନଙ୍କର ନୀରବ ସମର୍ଥନ ଆମର ଏ ସଂଗଠନ ପଛରେ ରହିଛି ।'

ଅରିନ୍ଦମ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲା କହିଲା, 'ଭୀଷ୍ମ, ସତ୍ୟବତୀ... ଏକଥା ତ ବିଶ୍ୱାସ କରି ହେଉନି । ଏ ତ ପୂରା ରାଜନୀତି !'

ଗୋପା ହସିଲେ, କହିଲେ, 'ହଁ, ବିଶ୍ୱାସ ନ ହେବା କଥା । ଆଉ ରାଜନୀତି ଜୀବନଠଉଁ ଅଲଗା କି ? ରାଜନୀତି ଆସେ କୋଉଠୁ, ଭାବିଛ ? ଜୀବନର ଅବସ୍ଥା ବଦଳିବା ସାଙ୍ଗେ ସାଙ୍ଗେ ରାଜନୀତିର ଚେହେରା ବଦଳି ଯାଏ । ଭୀଷ୍ମ ସତ୍ୟବତୀଙ୍କର ରାଜନୀତି ଆଉ ଜରାସନ୍ଧର ରାଜନୀତି ଏକା କଥା ନୁହେଁ । ଭୀଷ୍ମ ସତ୍ୟବତୀ ଜୀବନକୁ ଗଢ଼ିବାକୁ ଚାହାନ୍ତି, ଜରାସନ୍ଧ ଲଣ୍ଡଭଣ୍ଡ କରି ନଷ୍ଟ କରିଦେବାକୁ ଚାହେଁ ।'

ଗୋପା ଚୁପ କରିଗଲେ, ପୁଣି କହିଲେ, 'ଏସବୁ କଥା ଛାଡ । ଦିନ ହୋଇ ଗଲାଣି । ଏଠି ଆଉ ବେଶୀ ସମୟ ବସିବା ଠିକ୍ ହେବନି । ତୁମେ ଆଉ ଦି ଦିନ ପରେ ଗିରିବ୍ରଜ ଛାଡି ମଥୁରା ଯିବ । ମୁଁ ବି ଯିବି । କିନ୍ତୁ ତୁମମାନଙ୍କ ସାଙ୍ଗରେ ନୁହେଁ । ପରେ, ଜରାସନ୍ଧଙ୍କର ଝିଅଙ୍କ ସାଙ୍ଗରେ ମୁଁ ଯିବି, ଓ ମଥୁରା ରାଜବାଟିରେ ସେମାନଙ୍କ ସାଙ୍ଗରେ ରହିବି । ଆଜି ସଂଧ୍ୟାରେ ସମସ୍ତେ ଏକାଠି ହେବେ । ତୁମେ ଆସ, ସହର ଭିତରେ ସେହି ଘରେ । ଆମ ଲୋକ ଆସି ନେଇଯିବ । ଭାନୁପ୍ରକାଶ ତୁମକୁ ଏକଥା ଜଣେଇଦେବାକୁ ମୋତେ କହିଛନ୍ତି ।'

ସେଦିନ ଗୋପାଙ୍କ କଥାରୁ ଅରିନ୍ଦମ ଯାହା ବୁଝିଲା ତାକୁ ଆଶ୍ଚର୍ଯ୍ୟ ଲାଗିଥିଲା । ପ୍ରଥମେ, ଗୋପା ନିଜେ । ସେ ତାଙ୍କୁ ଯେ ସାଧାରଣ ସ୍ତ୍ରୀ ଲୋକ ବୋଲି ଭାବିଥିଲା ତା ନୁହେଁ । ତାଙ୍କର ନିଜର ବିଶ୍ୱାସ ଅଛି, ସିଦ୍ଧାନ୍ତ ଅଛି, ଓ ନିଜର ବିଶ୍ୱାସରେ ଯେତେ ପ୍ରତିକୂଳ ଅବସ୍ଥା ହେଉ ପଛେ ସେ କାର୍ଯ୍ୟ କରିବାକୁ ପ୍ରସ୍ତୁତ । ଦ୍ୱିତୀୟରେ, ତାଙ୍କର

ପୃଷ୍ଠଭୂମି । କେବଳ ତାଙ୍କର ନୁହେଁ । ତାଙ୍କ ଗୋଷ୍ଠୀର ଅନେକଙ୍କର । ଭାନୁପ୍ରକାଶ ବା ଭାନୁପ୍ରିୟଙ୍କର ତ ନିଶ୍ଚୟ । ସେମାନେ ରାସ୍ତାକଡ଼ରୁ ଧରା ହୋଇଥିବା ଲୋକ ନୁହନ୍ତି । ସେମାନେ ଯେଉଁ ପରିସ୍ଥିତିରେ ବଢ଼ି ଉଠିଛନ୍ତି, ଯାହା ଶିଖିଛନ୍ତି ବା ଯାହା ସେମାନଙ୍କୁ ଶିଖାଯାଇଛି, ବା ସେମାନଙ୍କର ଚରିତ୍ର ଯାହା ସେଥିରେ ସେମାନେ ଅନ୍ୟାୟ, ଅଧର୍ମ ବା ସ୍ୱେଚ୍ଛାଚାରିତାକୁ ସହଜେ ଗ୍ରହଣ କରି ପାରିବେ ନାହିଁ । କିନ୍ତୁ ତାକୁ ଯାହା ସବୁଠାରୁ ବେଶୀ ଆଶ୍ଚର୍ଯ୍ୟ କଲା,ସେ ଭୀଷ୍ମ ଓ ସତ୍ୟବତୀଙ୍କ ପରି ଆର୍ଯ୍ୟାବର୍ତ୍ତର ମହାନ ବ୍ୟକ୍ତିଙ୍କର ଆଶୀର୍ବାଦ । ନାଁ, ଏ କେବଳ ଜରାସନ୍ଧ ବିରୁଦ୍ଧରେ ନୁହେଁ ବା ଭବିଷ୍ୟତରେ କଂସ  ବିରୁଦ୍ଧରେ ନୁହେଁ । ଏ ଧର୍ମ ଅଧର୍ମର ବିଚାର, ମଣିଷ କେତେଦୂର ପରସ୍ପର ସହିତ ମିଶି ଆଦର୍ଶ ସମାଜ ତିଆରି କରି ପାରିବ ସେହି ଚିନ୍ତା । ଏ ଦମ୍ଭ, ସାହସ, ନିଷ୍ଠାର କଥା, ଯେଉଁଠି ଉଦ୍ଦେଶ୍ୟ ସ୍ପଷ୍ଟ ଓ କାର୍ଯ୍ୟର ଧାରା ବି ସ୍ପଷ୍ଟ, ଓ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟର କଥା ନାହିଁ ।

ସେଦିନ ସଂଧ୍ୟାରେ ସମସ୍ତେ ଏକାଠି ହେଲାବେଳେ ସେ ଭାନୁପ୍ରକାଶଙ୍କୁ ସେହି ପ୍ରଶ୍ନ ପଚାରିଥିଲା - ଆପଣଙ୍କର ନିଜର ଓ ନିଜ ପରିବାରର କଅଣ ସୁଖସ୍ୱାଚ୍ଛନ୍ଦ୍ୟ ନାହିଁ ? ଆପଣ କେତେଦିନ ଏହିପରି ଭାବରେ ଲଢି ପାରିବେ ? ଭାନୁପ୍ରକାଶ ହସିଥିଲେ, କହିଲେ, 'ଅରିନ୍ଦମ, ତୁମେ ତୁମ ପ୍ରଶ୍ନର ସ୍ପଷ୍ଟ ଉତ୍ତର ଜାଣିବାକୁ ଚାହଁ ? ତେବେ ଶୁଣ । ମୋର ଓ ଆମ ଅନେକଙ୍କର ପରିବାର ଅଛି । ସେମାନେ ସମସ୍ତେ ହସ୍ତିନାପୁରରେ । ହସ୍ତିନାପୁରର ରାଜଶକ୍ତି ସେମାନଙ୍କୁ ରକ୍ଷା କରେ । କିନ୍ତୁ ଭାବ ନା ଆମେ ହସ୍ତିନାପୁର ପାଇଁ ଏଠାରେ କାର୍ଯ୍ୟ କରୁଛୁ ବା ଆମେ ହସ୍ତିନାପୁରର ଗୁପ୍ତଚର । ନାଁ, ତା ନୁହେଁ । ହସ୍ତିନାପୁରର ରାଜଶକ୍ତିର ବର୍ତ୍ତମାନ ଯେଉଁମାନେ ନିୟନ୍ତକ, ଭୀଷ୍ମ ଓ ରାଜମାତା ସତ୍ୟବତୀ, ସେମାନେ ଆମ କାମକୁ ଜାଣନ୍ତି ଓ ପସନ୍ଦ କରନ୍ତି । ବାସ୍ ସେତିକି । ଭବିଷ୍ୟତରେ ହସ୍ତିନାପୁରର ରାଜଶକ୍ତି ବଦଳି ଗଲେ ଏ ଅବସ୍ଥା ବି ବଦଳି ଯାଇପାରେ । ତେବେ ବର୍ତ୍ତମାନ ଏହାହିଁ ସ୍ଥିତି । ଆମେ ଭୀଷ୍ମ ଓ ରାଜମାତା ସତ୍ୟବତୀଙ୍କ ନିକଟରେ କୃତଜ୍ଞ ସେମାନେ ଆମର ପରିବାରକୁ ସୁରକ୍ଷା ଯୋଗେଇ ଦେଇଛନ୍ତି ।

ଭାନୁପ୍ରକାଶ ଚୁପ କରିଗଲେ ଓ ଚାରିଆଡକୁ ଥରେ ଚାହିଁଲେ । ଅରିନ୍ଦମ ଦେଖିଲା ତାଙ୍କ ଗୋଷ୍ଠୀର ଅନେକ ଆସି ଚାରିପାଖରେ ବସିଲେଣି ଓ ଚୁପ ହୋଇ ଭାନୁପ୍ରକାଶଙ୍କ କଥା ଶୁଣୁଛନ୍ତି । ଭାନୁପ୍ରକାଶ ପୁଣି କହିଲେ, 'ତୁମର ସନ୍ଦେହ ଠିକ୍ ଅରିନ୍ଦମ । ଏ ସାଧାରଣ ଲଢ଼େଇ ନୁହେଁ । ତେଣୁ ଏହାର ସାଧାରଣ ଆରମ୍ଭ ନାହିଁ କି ସାଧାରଣ ଶେଷ ନାହିଁ । ତୁମେ ହୁଏତ ଜାଣିଥିବ ମହର୍ଷି ଜମଦଗ୍ନିଙ୍କ ପୁତ୍ର ଭଗବାନ

ପର୍ଶୁରାମ ଏକୋଇଶ ଥର ପୃଥିବୀକୁ ନିକ୍ଷତ୍ରୀ କରିଥିଲେ । କାହିଁକି ନା ପୃଥିବୀରେ କ୍ଷତ୍ରିୟ ରାଜାମାନଙ୍କର ଦୌରାତ୍ମ୍ୟ ବହୁତ ବଢ଼ିଗଲା, ଅସଂଖ୍ୟ ମୁନି ଋଷିମାନଙ୍କର ଆଶ୍ରମ ନଷ୍ଟଭ୍ରଷ୍ଟ ହୋଇଗଲା, ଲୋକେ ତ୍ରାହି ତ୍ରାହି ଡାକ ଛାଡିଲେ । ଭାବି ପାରୁଛ କି ଭୟଙ୍କର ଅବସ୍ଥା । ଥରେ ଦି ଥର ନୁହେଁ, ଥର ଥର କରି ଏକୋଇଶ ଥର ସେ ଦୁଷ୍ଟ ରାଜମାନଙ୍କୁ ହାଣି ମାରି ଶେଷ କରିଦେଲେ । କିନ୍ତୁ କଅଣ ହେଲା ? ଏହା ଭିତରେ ବହୁତ ବର୍ଷ ଚାଲି ଗଲାଣି । ଭଗବାନ ପର୍ଶୁରାମ ଏବେ ବି ଅଛନ୍ତି । ଲୋକେ ତାଙ୍କୁ ଭୟ କରନ୍ତି, ପୂଜା କରନ୍ତି, ଆଗ୍ରହୀ ଯୋଦ୍ଧାମାନେ ତାଙ୍କଠାରୁ ଅସ୍ତ୍ରଶିକ୍ଷା ବି ପାଆନ୍ତି । ଭୀଷ୍ମ ତ ପର୍ଶୁରାମଙ୍କ ଠାରୁ ଅସ୍ତ୍ରଶସ୍ତ୍ର ଶିକ୍ଷା କରିଥିଲେ, ଓ ତାଙ୍କରି ଶିକ୍ଷାରେ ତ ସେ ଆଜି ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ଯୋଦ୍ଧା । କିନ୍ତୁ ହେଲା କଅଣ ? ଦୁଷ୍ଟ ରାଜାମାନେ କଅଣ ଶେଷ ପାଇଗଲେ ? ଏବେ କଅଣ ଆଉ ଦୁଷ୍ଟ ରାଜା କେହି ନାହାନ୍ତି, ନା ଆଗ ଠଉଁ ବେଶୀ ଅଛନ୍ତି ? ଅରିନ୍ଦମ, ଏ କଥା ବୁଝ । କଥା ସେଠି ନାହିଁ – ତୁମେ କେତେଥର ପୃଥ୍ୱୀ ନିକ୍ଷତ୍ରୀ କରି ପାରିବ । ଭଗବାନ ପର୍ଶୁରାମ ସେ କଥା ବୁଝିଥିଲେ । ତୁମର କାମ ସାମୟିକ ଭାବରେ ଫଳ ଦେବ, କିନ୍ତୁ ସବୁଦିନ ପାଇଁ ନୁହେଁ । ସେଥିପାଇଁ ସେ ଶେଷକୁ ସ୍ଥିର ହୋଇ ନିଜ ଆଶ୍ରମରେ ଯାଇ ରହିଲେ । ତୁମେ ଯେତେ ଯାହା କର, ଦୁଷ୍ଟ ରାଜାମାନେ ସବୁଦିନେ ରହିବେ । ଅନ୍ୟାୟ, ଅସତ୍ୟ, ଅଧର୍ମ ସବୁଦିନେ ରହିବ । ତୁମେ ଯେତେ ଯାହା କଲେ ବି ସେ ପୁଣି ଫେରି ଆସିବ ଗୋଟାଏ ବାଟରେ ନୁହେଁ, ବହୁତ ବହୁତ ବାଟରେ । ସେମାନଙ୍କ ସହିତ ଯୁଦ୍ଧ କଲେ ତୁମେ ଗୋଟାଏ ସମୟରେ ଯୁଦ୍ଧ ଆରମ୍ଭ କରି ଆଉ ଗୋଟାଏ ସମୟରେ ଶେଷ କରିଦେଇ ପାରିବନି । ଏ ଯୁଦ୍ଧକୁ ସବୁଦିନେ ଚଳେଇ ରଖିବାକୁ ପଡିବ । ଏ ଦମ୍ଭ ସାହସ, ଧର୍ମର ଯୁଦ୍ଧ । ଏ ନିଷ୍ଠା, ଚରିତ୍ରର ଯୁଦ୍ଧ ।'

ଭାନୁ ପ୍ରକାଶ ଚୁପ୍ କରିଗଲେ । ଚାରି ପାଖରେ ସମସ୍ତେ ଚୁପ । ଅରିନ୍ଦମର ମନେ ହେଲା ଏ ଖାଲି ଭାଷଣ ନୁହେଁ । ଏ ସେହି ଭାଷଣ ଯାହା ରକ୍ତରେ ମିଶିଯାଏ, ରକ୍ତକୁ ତେଜୀୟାନ କରେ, ଆଖି ଆଗରେ କବାଟ ପରେ କବାଟ ଖୋଲିଯାଏ । ଯାହା ମଣିଷ ଅନୁଭବ କରେ ସେ ବିପୁଳ ବିସ୍ମୃତି, ବିପୁଳ ଉନ୍ମାଦନା । ତେବେ ସେ ଆଉ ଗୋଟାଏ କଥା ଭାବୁଥିଲା, ବାପାଙ୍କ କଥା । ବାପା ବି ଏହିପରି କଥା କହନ୍ତି । କିନ୍ତୁ ସାଙ୍ଗେ ସାଙ୍ଗେ ଏକଥା ବି କହନ୍ତି ଯେ ଏପରି ଅବସ୍ଥା ହେଲେ ଭଗବାନ ନିଜେ ପୃଥିବୀକୁ ଓହ୍ଲେଇ ଆସନ୍ତି, ସାଧାରଣ ମଣିଷ ପରି କାର୍ଯ୍ୟ କରନ୍ତି ଓ ଧର୍ମ ପ୍ରତିଷ୍ଠା କରନ୍ତି । ଭାନୁପ୍ରକାଶ ଅରିନ୍ଦମକୁ ଚାହିଁଲେ, କହିଲେ, 'ଅରିନ୍ଦମ, ତୁମେ ଆଉ କିଛି ପଚାରିବାକୁ ଚାହଁ ବୋଧେ ?'

'ନାଁ, ମୁଁ ବାପାଙ୍କ କଥା ଭାବୁଥିଲି', ଅରିନ୍ଦମ କହିଲା, 'ସେ କହନ୍ତି ଏପରି ଅବସ୍ଥାରେ ଧର୍ମର ପ୍ରତିଷ୍ଠା ପାଇଁ ଭଗବାନ ନିଜେ ପୃଥିବୀକୁ ଓହ୍ଲେଇ ଆସନ୍ତି । ତାଙ୍କ ମତରେ ଏହାହିଁ ଧର୍ମର ନିୟମ ଓ ଏହାହିଁ ଘଟିବ ।'

'ଅରିନ୍ଦମ, ତୁମ ବାପା ଜ୍ଞାନୀ, ଦିବ୍ୟଦ୍ରଷ୍ଟା । ସେ ଯାହା କହିଲେ ଠିକ୍ ।' କହିଲେ ଭାନୁପ୍ରକାଶ, 'ଆମେ ବି ସେଥିରେ ବିଶ୍ୱାସ କରୁ । କିନ୍ତୁ ଭଗବାନ କେବେ ଆସିବେ ସେହି ଦିନକୁ ଅପେକ୍ଷା କରି ଆମେ ବସି ରହିବା, ଓ ଯେତେ ଅନ୍ୟାୟ ଅତ୍ୟାଚାରକୁ ସହିଯିବା, ଏଇଟା ଠିକ୍ ନୁହେଁ । ତୁମେ ଅନ୍ୟ ଭାବରେ ଦେଖ । ଆମେ ଭଗବାନ ଆସିବା ପାଇଁ କାମ କରୁଛୁ । ତା ନୁହେଁ । ଆମେ ଯେଉଁ କାମ ଯେପରି ଭାବରେ କରୁଛୁ ତା ଭିତରୁ ଭଗବାନ ଛାଁ ଛାଁ ବାହାରି ଆସିବେ ।'

ହଠାତ୍ ଅରିନ୍ଦମର ଆଖି ଆଗରୁ ଯେପରି ଅଂଧାର କଟିଗଲା । ବାପା ଯା କହନ୍ତି, ଭାନୁପ୍ରକାଶ ଯାହା କରୁଛନ୍ତି, ତା ଭିତରେ ପ୍ରଭେଦ କେଉଁଠି ? ଉଦ୍ଦେଶ୍ୟ ଏକ, ବିଶ୍ୱାସ ଏକ । ବାପା ଚିନ୍ତା କରୁଛନ୍ତି, ଧ୍ୟାନ କରୁଛନ୍ତି । ଭାନୁପ୍ରକାଶ କାର୍ଯ୍ୟ କରୁଛନ୍ତି, ସଂଗଠନ କରୁଛନ୍ତି । ତା ମୁହଁ ପ୍ରଫୁଲ୍ଲ ହୋଇ ଉଠିଲା, ତା ମନର ଦ୍ୱିଧା ଭାବ କଟିଗଲା । ସେ ଭାନୁପ୍ରକାଶଙ୍କୁ ଚାହିଁ କେବଳ କହିଲା, 'କୁହନ୍ତୁ, ମୁଁ କଅଣ କରିବି ।'

ଭାନୁପ୍ରକାଶ ହସିଲେ, କହିଲେ, 'ନାଁ, ତୁମକୁ କିଛି କରିବାକୁ ହବ ନି । ତୁମେ କେବଳ ଆମ ସାଙ୍ଗରେ ରୁହ । ସେତିକି ଯଥେଷ୍ଟ । ତୁମେ ଦିନକ ପରେ ମଥୁରା ଫେରୁଛ । ମଥୁରା ବେଶ ଲମ୍ୱା ବାଟ । ଏଠି ଯେଉଁମାନଙ୍କୁ ଦେଖୁଛ ସେମାନଙ୍କର ଭିତରୁ ଅନେକ ତୁମ ସାଙ୍ଗରେ ମଥୁରା ଯିବେ । କିନ୍ତୁ ମଥୁରାରେ ପହଞ୍ଚି ସେମାନେ ଅଲଗା ହୋଇଯିବେ ।' ଭାନୁପ୍ରକାଶଙ୍କ ସ୍ୱର କମିଗଲା । ସେ ପ୍ରାୟ ଫୁସ୍‌ଫୁସ୍ କରି ଅରିନ୍ଦମକୁ କହିଲେ, 'ଶୁଣ, ମଥୁରାରେ କାମ ଶୀଘ୍ର ଆରମ୍ଭ ହୋଇଯିବ, କଂସ ମଥୁରାକୁ ଫେରିବା ସାଙ୍ଗେ ସାଙ୍ଗେ । ଆମ ଲୋକ ସବୁଆଡ଼େ ଥିବେ । କିନ୍ତୁ ତୁମେ ତାଙ୍କୁ ଚିହ୍ନିବାକୁ ଚେଷ୍ଟା କରିବନି । ଚିହ୍ନିଲେ ବି ଚିହ୍ନିବନି । ଏଇଟା ମନେ ରଖି ଥା । କି ତୁମ ସାଙ୍ଗମାନଙ୍କୁ କାହାକୁ ବା କେଉଁଠି ବି ଆମ ବିଷୟରେ କିଛି କହିବନି, କିଛି ଆଲୋଚନା କରିବନି । ଯା ଇଚ୍ଛା ତା ହେଲେ ବି, ତୁମ ସାମନାରେ ତୁମେ ଚିହ୍ନିପାରୁଥିବା କୌଣସି ଲୋକର କିଛି କ୍ଷତି ହେଲେ ବି, ତୁମେ ଚୁପ ରହିବ । ଏ ଖୁବ୍ ଦରକାରୀ କଥା । ତୁମର ଆମ ସହିତ କୌଣସି ପରିଚୟ ନାହିଁ, କିଛି ସଂପର୍କ ନାହିଁ । କାରଣ ବୁଝି ପାରୁଛ । ମୁଁ ଚାହେଁନା ଯେ ତୁମେ ବା ତୁମ ବାପା ଅଯଥା ଅସୁବିଧାରେ ପଡ । ଯାହା କରିବାର କଥା ଆମେ କରିବୁ । ଯାହା ଦେଖିବାର କଥା

ଆମେ ଦେଖିବୁ । ତୁମକୁ ଆମେ ଖବର ଦେବୁ । ଯଦି କିଛି କରିବାକୁ ହେବ ତା ବି କହିବୁ । ବାସ୍, ସେତିକି । ସାବଧାନ ରହିବ । ଏଠି ଗିରିବ୍ରଜରେ ତୁମେ ବାହାର ଲୋକ । କିନ୍ତୁ ସେ ଜାଗା ତୁମର । ଖୁବ୍ ସାବଧାନ ହେବାକୁ ହେବ, ଆଉ ଗୋଟିଏ କଥା ସବୁବେଳେ ମନେ ରଖିବ - କଂସକୁ କେବେହେଲେ ବିଶ୍ୱାସ କରିବ ନାହିଁ ।'

ଭାନୁପ୍ରକାଶ ସିଧା ହୋଇ ବସିଲେ । ଚାରିପାଖକୁ ଚାହିଁଲେ । କହିଲେ, 'ଏ ଯେତେ ଲୋକଙ୍କୁ ଦେଖୁଛ, ସମସ୍ତେ ଯିବେ ନି, କିଛି ଯିବେ । ତୁମେ ସମସ୍ତଙ୍କୁ ଜାଣ ନା । କିନ୍ତୁ ସେମାନେ ସମସ୍ତେ ତୁମକୁ ଜାଣନ୍ତି । ଯିବା ବାଟରେ ବା ମଥୁରାରେ ଯଦି ତୁମ ସାଙ୍ଗରେ କେହି ହଠାତ୍ ପରିଚିତ ପରି ବ୍ୟବହାର କରେ ବା ଚୁପ୍‌ଚାପ କଥାବାର୍ତ୍ତା କରେ ଆଶ୍ଚର୍ଯ୍ୟ ହବ ନି, କି ଭୟ କରିବନି ।'

'ଆପଣ କି ଭାନୁପ୍ରିୟ ଯିବେ ନି ?' ଅରିନ୍ଦମ ପଚାରିଲା । 'ହଁ ଯିବୁ', ଭାନୁପ୍ରକାଶ କହିଲେ, 'କିନ୍ତୁ ଏବେ ନୁହେଁ । ଆମର ଯିବା ସମୟ ଆସିନି । ମୁଁ ବା ଭାନୁପ୍ରିୟ ଗଲେ ତୁମେ ଖବର ପାଇବ । ମଗଧ ଓ ମଥୁରା ଭିତରେ ପ୍ରଭେଦ ଅଛି । ମଗଧକୁ ଜରାସନ୍ଧ ଗୋଟାଏ ବିରାଟ ରାକ୍ଷସ ପରି ମାଡି ବସିଛି । ତାର ଭୟ ସବୁଆଡ଼େ । ଏଠି ସାଧାରଣ ଲୋକର ଭଲମନ୍ଦ ନାହିଁ, ମତାମତ ନାହିଁ । ସବୁ ଜରାସନ୍ଧ, ଜରାସନ୍ଧର ଭୟ ସମସ୍ତଙ୍କୁ ଗ୍ରାସ କରି ରଖିଛି । ଜରାସନ୍ଧ ହିଁ ମଗଧ । ଏଠି ବିରୁଦ୍ଧ କଥା ବା ଚିନ୍ତା କିଛି ନାହିଁ । ମଥୁରାରେ ତା ନୁହେଁ । ମଥୁରାରେ ସବୁ ଖୋଲାମେଲା । ସେଠାରେ ଗୋଷ୍ଠୀ ମୁଖ୍ୟମାନେ ହିଁ ମୁଖ୍ୟ, ରାଜା ନୁହଁନ୍ତି । ଆଉ ଯାଦବମାନେ କାହାକୁ ମାନି ଚଳିବାକୁ ଶିଖି ନାହାନ୍ତି । ସବୁ କଥାରେ ସେମାନଙ୍କର ଅଲଗା ଅଲଗା ମତ । ଆଉ ନିଜର ସ୍ୱାଧୀନ ମତକୁ ସେମାନେ ସବୁବେଳେ ସମ୍ମାନ କରନ୍ତି । ଦରକାର ହେଲେ ନିଜର ମତାମତ ପାଇଁ ସେମାନେ ପରସ୍ପର ସହିତ ଲଢ଼େଇ ବି କରନ୍ତି ।'

ଅରିନ୍ଦମ କଅଣ କହିବାକୁ ଯାଉଥିଲା । ଭାନୁପ୍ରକାଶ ତାକୁ ହାତଟେକି ବନ୍ଦ କରିଦେଲେ । କହିଲେ, 'ତୁମେ ଯାହା କହିବାକୁ ଚାହୁଁଛ ମୁଁ ଜାଣେ । ତୁମେ କହିବାକୁ ଚାହୁଁଛ ସମସ୍ତେ ଏହା ନୁହନ୍ତି । ଠିକ୍ । ଆର୍ଯ୍ୟମାନଙ୍କର ବହୁତ ଭଲ ଗୁଣ ଯାଦବମାନଙ୍କର ଅଛି । ସେମାନେ ଯେ ଆର୍ଯ୍ୟମାନଙ୍କର ଭିତରେ ଗୋଟାଏ ଶ୍ରେଷ୍ଠ ଗୋଷ୍ଠୀ ଏ କଥା ଠିକ୍ । କିନ୍ତୁ କଥା ସେଠି ନାହିଁ । କଥା ହେଲା ଯାଦବମାନେ ନିଜର ଗୋଷ୍ଠୀଠାରୁ ନିଜ ନିଜ ବିଷୟରେ ବେଶୀ ଆଗ୍ରହୀ । ଏହାକୁ ତୁମେ ସ୍ୱାର୍ଥ କହିପାର । ଯାଦବ ପାଇଁ ତା ନିଜର ବା ପରିବାରର ସ୍ୱାର୍ଥ ସବୁଠୁଁ ବଡ଼ ।'

ଭାନୁପ୍ରକାଶ ଚୁପ ହୋଇ ଅରିନ୍ଦମ ମୁହଁକୁ ଚାହିଁଲେ, କହିଲେ, 'ଅରିନ୍ଦମ ମୁଁ

ଭୁଲ୍ କହୁଛି ?' 'ନାଁ, ଠିକ୍', ଅରିନ୍ଦମ କହିଲା, 'ସାଧାରଣ ଯାଦବ ତା ନିଜ ବିଷୟରେ ଚିନ୍ତା କରେ । ଧନ ଥିବା ଲୋକ ବି ନିଜ ବିଷୟରେ ବହୁତ ବେଶି ଚିନ୍ତା କରନ୍ତି ।'

'ସେଇଟା ହିଁ ଯାଦବମାନଙ୍କର ସବୁଠୁ ବଡ଼ ଅସୁବିଧା ।' କହିଲେ ଭାନୁପ୍ରକାଶ, 'କଂସ ଏକଥା ଜାଣେ । ତାର ପ୍ରଧାନ କାମ ହେବ ଯାଦବମାନଙ୍କର ଏହି ମନୋଭାବକୁ ଖଣ୍ଡ ଖଣ୍ଡ କରି ଭାଙ୍ଗି ସେମାନଙ୍କୁ ଭୟଭୀତ କରି ରଖିବା । ଅନେକ ଧନୀ ଯାଦବ ମଥୁରା ଛାଡି ଚାଲିଯିବେ । କିନ୍ତୁ ସେଇଟା ସମାଧାନ ନୁହେଁ । ସମାଧାନ ହେଉଛି କଂସକୁ ପ୍ରତିବାଦ କରିବା, ତା'ର ସ୍ୱେଚ୍ଛାଚାରୀ ଶାସନର ବିରୁଦ୍ଧରେ ଛିଡ଼ା ହେବା । ଆମେ ଜାଣୁ ମଥୁରାରେ ତା ବର୍ତ୍ତମାନ ସମ୍ଭବ ହେବ ନାହିଁ । ମଗଧରେ ବି ପ୍ରଥମେ ପ୍ରଥମେ ହୋଇ ନ ଥିଲା । ମଗଧରେ ଯାହା ସବୁଆଡ଼େ ବ୍ୟାପି ରହିଥିଲା ସେ ଜରାସନ୍ଧ ପ୍ରତି ଭୟ, ପ୍ରଚଣ୍ଡ ଭୟ । ସେ ଭୟ ବର୍ତ୍ତମାନ ଅନେକ ଗଲାଣି, ଲୋକମାନେ ସଚେତ ହେଲେଣି । ସେମାନେ ଜାଣିଲେଣି ସେମାନଙ୍କର କଅଣ ପାଇବା ଦରକାର, ଅଥଚ ପାଉ ନାହାନ୍ତି । ସେମାନେ ବୁଝିଲେଣି ଜରାସନ୍ଧର ଯେଉଁ ଚକ୍ରବର୍ତ୍ତୀ ସମ୍ରାଟ ହେବାର ସ୍ୱପ୍ନ ସେ ସେମାନଙ୍କର ପିଠି ଉପରେ ଚଢି ହେବାର ସ୍ୱପ୍ନ । କିନ୍ତୁ ଯାଦବମାନେ କଅଣ ଏକଥା ସହଜେ ବୁଝିବେ ?'

'ନାଁ', ଅରିନ୍ଦମ କହିଲା, 'ସେମାନେ ସବୁ ବିଷୟରେ ତର୍କ କରନ୍ତି, ସବୁ ବିଷୟରେ ନିଜର ସ୍ୱାର୍ଥ କଥା ଆଗ ଭାବନ୍ତି ।'

'ଠିକ୍ ?' କହିଲେ ଭାନୁପ୍ରକାଶ, 'ଆମର ବି ସେହି ଧାରଣା । ଏପରି ଲୋକେ ଅତି ସହଜେ ଅତ୍ୟାଚାରୀ ଶାସନକୁ ମାନି ନିଅନ୍ତି । ଯୁକ୍ତିତର୍କ କରି ଏପରି ଶାସନ ପାଇଁ ବେଶ୍ ଗୋଟାଏ ଦୁର୍ଗ ତିଆରି କରି ଦିଅନ୍ତି । ଆମର ଆଶଙ୍କା ମଥୁରାରେ ତାହାହିଁ ଘଟିବ । କଂସର ଅତ୍ୟାଚାରକୁ ସମର୍ଥନ କରିବା ପାଇଁ ଅନେକ ଲୋକ ମିଳିଯିବେ ।'

'ଭୟ ବି...' ଅରିନ୍ଦମ ରହି ରହି କହିଲା ।

'ହଁ, ଭୟରୁ ତ ଆରମ୍ଭ', ଭାନୁପ୍ରକାଶ କହିଲେ, 'ସେହି ଭୟରୁ ଆମର କାମ ବି ଆରମ୍ଭ । ପ୍ରଚଣ୍ଡ ଭୟ, ନିଜେ ଓ ନିଜ ପରିବାର ଶେଷ ପାଇଯିବାର ଭୟ । ପ୍ରଚଣ୍ଡ ଭୟର ସମୁଦ୍ରକୁ ମଥୁରା ଠେଲି ହୋଇଯାଉଛି, ଅରିନ୍ଦମ । କିନ୍ତୁ ଏ ସମୁଦ୍ରର ମନ୍ଥନ ଦରକାର । ତା' ହେଲେ ଅମୃତ ଆସିବ, ଲକ୍ଷ୍ମୀ ଆସିବେ ।'

ଭାନୁପ୍ରକାଶ ଚୁପ୍ କରିଗଲେ । ତାଙ୍କର ମୁହଁ ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଯାଇଛି । ସାରା ମୁହଁରେ ଗୋଟାଏ ଜ୍ୟୋତି, ଆଖି ଦୁଇଟା କୋଉ ଦୂରକୁ ଲମ୍ବି

ଯାଇଛି । ସେ ସେଇଠି ଅଛନ୍ତି ପୁଣି ନାହାନ୍ତି । ଯୋଉ ଲୋକ ଏଇ କେଇ ମୁହୂର୍ତ୍ତ ଆଗରୁ ମଗଧ ଓ ମଥୁରା କଥା କହୁଥିଲା ଏ ଯେପରି ସେ ଲୋକ ନୁହେଁ । ଅରିନ୍ଦମକୁ ଭୟ ଲାଗିଲା । ଏ ଲୋକ କିଏ ? ଯେଉଁ ଲୋକ ଏ ବିରାଟ ସଂଗଠନ ଗଢ଼ି ତୋଳିଛି ତାର ସ୍ୱାର୍ଥ କଅଣ ? ଅରିନ୍ଦମ ନିଜେ କଅଣ କରି ପାରିବ ? ତାର ମନେ ହେଲା ଗୋଟାଏ ବିରାଟ ଯଜ୍ଞରେ ସେ ଯେପରି ଗୋଟାଏ ଆହୁତି, ଆଉ କିଛି ନୁହେଁ । ଏ ବେଶୀ ସମୟ ନୁହେଁ । ଭାନୁପ୍ରକାଶଙ୍କ ମୁହଁ ପୁଣି ସ୍ୱାଭାବିକ ହୋଇ ଆସିଲା । ସେ ହସି ଅରିନ୍ଦମକୁ ଚାହିଁଲେ । କହିଲେ 'ଅରିନ୍ଦମ, କିଛି ଭାବ ନା, ମଥୁରାରେ ଯେଉଁ ବିରାଟ ଯଜ୍ଞ ଆରମ୍ଭ ହେବାକୁ ଯାଉଛି ସେ କେବଳ ମଥୁରା ନୁହେଁ, ସାରା ଆର୍ଯ୍ୟାବର୍ତ୍ତକୁ ବଦଳେଇ ଦେବ । ଏଥିରେ କେବଳ ତୁମେ, ମୁଁ ବା ଆମ ପରି ଲୋକ ନୁହଁନ୍ତି, ବହୁ ଦେବ ଦାନବ ପଶିଯିବେ । ଏପରି କି ଭଗବାନ ବି ନିଜେ ଆସିଯିବେ । ତୁମେ କେବଳ ଆହୁତି ନୁହଁ, ଅରିନ୍ଦମ, ତୁମେ ହୋତା । ତୁମେ ଅଗ୍ନିରୁ ଯାହା ପାଇବ ସେ ପୁରୁଣା କଥା ନୁହେଁ - ନୂତନ ଆଶା, ବିଶ୍ୱାସ, ନୂଆ ଜୀବନ । ତୁମର ବାପା ଏକଥା ଜାଣନ୍ତି । ସେ ଯୋଗୀ, ଜ୍ଞାନୀ । ସେ ବହୁତ ଦୂରକୁ ଦେଖି ପାରନ୍ତି, ଅନେକ କଥା ବୁଝନ୍ତି ଯାହା ଅନ୍ୟମାନେ ବୁଝି ପାରନ୍ତି ନାହିଁ । ସେଇତ ଆମକୁ କଂସ ବିଷୟରେ ପ୍ରଥମେ କହିଥିଲେ । ସେ ତ ଚାହାନ୍ତି ଆମେ ମଥୁରାରେ କାମ ଆରମ୍ଭ କରୁ ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଚାହିଁଲା - 'ବାପା !', 'ହଁ, ବାପା' ଭାନୁପ୍ରକାଶ କହିଥିଲେ ।

ଆଜି, ପ୍ରାୟ ୧୦ ବର୍ଷ ପରେ, ସେ କଥା ଭାବିଲେ ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗୁଛି । ସେତେବେଳେ ସେ ଯେ ବାପାଙ୍କୁ ଠିକ୍ ଠିକ୍ ବୁଝି ପାରୁଥିଲା ତା ନୁହେଁ । ଏବେ ଯେ ବୁଝି ପାରୁଛି । ତା ବି ନୁହେଁ । ବାପା ସେତେବେଳେ ଯେମିତି ଏବେ ବି ସେମିତି । ଆଗ ପରି ସେହିପରି ପୂଜା, ଧ୍ୟାନ, ଅଧ୍ୟୟନ । ଲୋକମାନଙ୍କ ସହିତ ଆଗ ପରି ଠିକ୍ ସେମିତି ମିଶାମିଶି କରୁଛନ୍ତି । ଲୋକମାନେ ଉପଦେଶ ପାଇଁ ନିଜ ନିଜର ସମସ୍ୟା ସମାଧାନ ପାଇଁ ସେମିତି ଆସୁଛନ୍ତି । ମୁଖ୍ୟମାନଙ୍କର, ଉଗ୍ରସେନଙ୍କର, ସମସ୍ତଙ୍କର, ବାପାଙ୍କ ପ୍ରତି ଆଗପରି ଶ୍ରଦ୍ଧା, ସମ୍ମାନ । କିନ୍ତୁ ବାପା ବଦଳି ନାହାନ୍ତି, ଏ କଥା ଠିକ୍ କି ? ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ହଁ ମଥୁରା ବଦଳିବା ସାଙ୍ଗେ ସାଙ୍ଗେ ସେ ବି ବଦଳିଛନ୍ତି । ମୁହଁର ଜ୍ୟୋତି ବଢିଛି । ସାହସ ବଢ଼ିଛି । ବିଶ୍ୱାସ ବଢିଛି । ଆଉ କେହି ନ ଦେଖିଲେ ବି, ଅରିନ୍ଦମ ଦେଖୁଛି । ବାପା ଯେପରି ଚାରିପାଖରୁ ନିଜକୁ ଗୋଟେଇ ଆଣି ନିଜ ଭିତରେ ହିଁ ନିଜକୁ ରଖି ଦେଇଛନ୍ତି ।


Digitized by srujanika@gmail.com

ଯେପରି କୌଣସି ଦୂର ଭବିଷ୍ୟତକୁ ସେ ଦେଖି ପାରୁଛନ୍ତି ଓ ସେହିଭାବରେ ନିଜକୁ ପ୍ରସ୍ତୁତ କରୁଛନ୍ତି । ଏ ଦେହର କିଛି ପରିବର୍ତ୍ତନ ନୁହେଁ । ବାପା ଆଗପରି ନିରୋଗ, କର୍ମ ଚଂଚଳ, ସପ୍ରତିଭ । ଆଗପରି ସିଧା ସିଧା, ଲୁହାଛଡ଼ ପରି । ଯାହା ପରିବର୍ତ୍ତନ ସେ ମନର, ମନ ଯେପରି ଲୁହା ପିଣ୍ଡୁଳା ପରି ଟାଣ ହୋଇଯାଇଛି । ବିଶେଷ କଥା କହିବାକୁ ପସନ୍ଦ କରୁ ନ ଥିବା ଲୋକ, ଯେତେବେଳେ କଥା କହୁଛି, ଅରିନ୍ଦମ ବୁଝି ପାରୁଛି, ସେ କଥାର ତନ୍ତୁ ଅଲଗା, ଟାଣ ଟାଣ । କିନ୍ତୁ ସେଦିନ, ଗିରିବ୍ରଜର ସେହି ଭାନୁପ୍ରକାଶଙ୍କ ଠାରୁ ବାପାଙ୍କ ବିଷୟରେ ସେ ଯାହା ଶୁଣିଲା, ସତରେ ଆଶ୍ଚର୍ଯ୍ୟ ହୋଇଯାଇଥିଲା ।

ଭାନୁପ୍ରକାଶ ତାଙ୍କ କଥାକୁ ଦୋହରାଇ ଥିଲେ । 'ହଁ ତୁମ ବାପା ।' ତା ପରେ ସେ ସାମାନ୍ୟ ରହି ପୁଣି କହିଥିଲେ, 'ତୁମେ ତୁମ ବାପାଙ୍କୁ କେତେ ଜାଣିଛ ଅରିନ୍ଦମ ? ଜାଣ ନା । ତୁମ ଜନ୍ମ ପୂର୍ବରୁ ତୁମର ବାପା କୋଉଠି ଥିଲେ ଜାଣିଛ ? ତୁମକୁ କେବେ ସେ କହିଛନ୍ତି ?' ଅରିନ୍ଦମ ଭାବିଲା- ନାଁ ତ ।

'ନାଁ, ସେ କହି ନାହାନ୍ତି ।'

'ମୁଁ ଆଜି କହୁଛି ଶୁଣ ।' ଭାନୁପ୍ରକାଶ କହିଲେ, ସେ କୁରୁକ୍ଷେତ୍ରରେ ଥିଲେ । ସେ ମହାମୁନି ବ୍ୟାସଦେବଙ୍କର ଅନ୍ତରଂଗ । ଆଶ୍ରମରେ ସବୁଦିନେ ରହିବେ ବୋଲି ଭାବିଥିଲେ । କିନ୍ତୁ ପରେ ବ୍ୟାସଦେବଙ୍କର ନିର୍ଦ୍ଦେଶରେ ସେ ବିବାହ କରି ମଥୁରାକୁ ଚାଲି ଆସିଥିଲେ । ତାଙ୍କୁ ମଥୁରାକୁ ଯିବାପାଇଁ ବ୍ୟାସଦେବ କାହିଁକି ନିର୍ଦ୍ଦେଶ ଦେଲେ ତାର କାରଣ ମୁଁ ଜାଣେ ନା । ବାପା ହୁଏତ ଜାଣିଥିବେ । କିନ୍ତୁ ସେ କେବେ କହିନାହାନ୍ତି । ସେ ଯାଦବ ଗୋଷ୍ଠୀର, ସେ ହୁଏତ କାରଣ ହୋଇପାରେ । କିନ୍ତୁ ମୋର ମନେ ହୁଏ ସେ ମୁଖ୍ୟ କାରଣ ନୁହେଁ । ବ୍ୟାସଦେବ ଦିବ୍ୟଦ୍ରଷ୍ଟା । ବାପା ମଥୁରା ଯିବା କାରଣ ଏବେ ବି ମୋ ପାଖରେ ରହସ୍ୟମୟ ହୋଇରହିଛି ।'

ଅରିନ୍ଦମ ଚୁପ୍ ହୋଇ ଶୁଣୁଥାଏ । ବାପାଙ୍କ ବିଷୟରେ ବିଚାର କରିବାକୁ ତାର କ୍ଷମତା ନାହିଁ । ସେ ବାପାଙ୍କୁ ସବୁଦିନେ ସମୀହ କରିଛି । ଭକ୍ତି କରିଛି । ସେ ଏକା ନୁହେଁ । ମଥୁରାର ଜାଣିବା ଶୁଣିବା ଲୋକେ ବି ତାଙ୍କୁ ସମାନ ଭୟ ଭକ୍ତି କରନ୍ତି । ଏପରିକି କଂସ ବି । ସେ ଦେଖିଛି, କଂସ ବି ବାପାଙ୍କଠାରୁ ଦୂରେଇ ଦୂରେଇ ରହିବାକୁ ଚାହେଁ, ଖୁବ୍ ଦରକାର ନ ହେଲେ ସେ ବାପାଙ୍କୁ ଡାକେ ନା । ଭାନୁପ୍ରକାଶଙ୍କ କଥାରେ ସେ ବାପାଙ୍କର ଏପରି ଗୋଟାଏ ଦିଗ ଦେଖୁଛି ଯାହା ସେ ଆଗରୁ ଜାଣି ନ ଥିଲା ।

ସେ ଭାନୁପ୍ରକାଶଙ୍କୁ ପଚାରିଲା, 'କିନ୍ତୁ ଆପଣମାନଙ୍କ ସାଙ୍ଗରେ ବାପାଙ୍କ


Digitized by srujanika@gmail.com

ସଂପର୍କ... ?'

'ସେ ସେଇ କୁରୁକ୍ଷେତ୍ରରେ', ଭାନୁପ୍ରକାଶ କହିଲେ, 'ହସ୍ତିନାରେ ଆଦର୍ଶ ରାଜତ୍ୱ । ଧୃତରାଷ୍ଟ୍ର ରାଜା । କିନ୍ତୁ ଭୀଷ୍ମ ଓ ମହାରାଣୀ ସତ୍ୟବତୀ ସବୁ ବୁଝାବୁଝି କରୁଥାନ୍ତି । ସେମାନଙ୍କର ସୁଶାସନରେ ହସ୍ତିନାରେ ଦୁଃଖ ନ ଥିଲା, ଅଭିଯୋଗ ନ ଥିଲା । କିନ୍ତୁ ହସ୍ତିନା ବାହାର ରାଜ୍ୟମାନଙ୍କରେ ଅବସ୍ଥା ଭିନ୍ନ ପ୍ରକାର ଥିଲା । ବିଶେଷ କରି ବ୍ୟାସଦେବ ଏ ବିଷୟରେ ବହୁତ ଚିନ୍ତିତ ଥିଲେ ।'

'ବ୍ୟାସଦେବ... ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ, 'ବ୍ୟାସଙ୍କର ଶିଷ୍ୟମାନେ ଆର୍ଯ୍ୟାବର୍ତ୍ତର ବହୁସ୍ଥାନରେ ଆଶ୍ରମମାନ କରିଥିଲେ । ସେମାନେ ବ୍ୟାସଦେବଙ୍କୁ ଖବର ଦେଉଥିଲେ । ତା ଛଡ଼ା ବ୍ୟାସଦେବ ନିଜେ ବି ବାରମ୍ବାର ବହୁ ରାଜ୍ୟକୁ ଯାଉଥିଲେ ।'

ଅରିନ୍ଦମର ବାପାଙ୍କ କଥା ମନେ ପଡିଲା । ବାପାଙ୍କର ବ୍ୟାସଦେବଙ୍କ ପ୍ରତି ଅଚଳ ଭକ୍ତି । ସେ ବାରମ୍ବାର କହୁଥିଲେ ବ୍ୟାସଦେବ ହିଁ ଧର୍ମ, ସେହି ଏକମାତ୍ର ଆର୍ଯ୍ୟାବର୍ତ୍ତକୁ ଅଧର୍ମରୁ ରକ୍ଷା କରି ପାରିବେ । ସେ ଶୁଣିଛି ତାର ଜନ୍ମ ସମୟରେ ବ୍ୟାସଦେବ ମଥୁରାକୁ ଆସିଥିଲେ ଓ ତାକୁ ଆଶୀର୍ବାଦ କରିଥିଲେ । ସେ ଭାନୁପ୍ରକାଶଙ୍କୁ ସେ କଥା କହିଲା ।

ଭାନୁପ୍ରକାଶ ହସିଲେ, କହିଲେ, 'ହଁ, ସେ କଥା ମୁଁ ବାପାଙ୍କ ଠାରୁ ଶୁଣିଛି । ତୁମ ବାପା ବ୍ୟାସଦେବଙ୍କର ଶ୍ରେଷ୍ଠ ଶିଷ୍ୟ, ତେବେ ମୁଁ ଯେଉଁକଥା କହୁଥିଲି ଶୁଣ । ବ୍ୟାସଦେବ ହିଁ ଆମକୁ ପ୍ରଥମ ଉତ୍ସାହ ଦେଇଥିଲେ । ସେ କହୁଥିଲେ ଆର୍ଯ୍ୟାବର୍ତ୍ତର ଅବସ୍ଥା ଖୁବ୍ ଖରାପ । ଭଲ ରାଜାଙ୍କ ସଂଖ୍ୟା କମି ଗଲାଣି, ଓ ସେହି ପରିମାଣରେ ଦୁଷ୍ଟ, ଅତ୍ୟାଚାରୀ, ପ୍ରଜାପୀଡ଼କ ରାଜାମାନଙ୍କ ସଂଖ୍ୟା ବହୁତ ବଢ଼ିଯାଇଛି । ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଏ ସମସ୍ୟାର ସମାଧାନ ହେବନାହିଁ । ଭଗବାନ ପର୍ଶୁରାମ ସେ କାମ କରିଥିଲେ । କିନ୍ତୁ ସେ ଅନେକ ବର୍ଷ ଚାଲିଗଲାଣି । ଆଉ ବର୍ତ୍ତମାନ ବି ପର୍ଶୁରାମଙ୍କ ପରି କେହି ନାହାନ୍ତି ଯେ ଏ କାମ ଆଉ ଥରେ କରି ପାରିବେ । ସେଥିପାଇଁ ଅନ୍ୟ ବାଟ ଦେଖିବାକୁ ହେବ ।'

ଭାନୁପ୍ରକାଶ କିଛି ସମୟ ଚୁପ୍ କରି, ପୁଣି କହିଲେ, 'ବ୍ୟାସଦେବ ଅଯୋଧ୍ୟାର ରାଜା ଶ୍ରୀରାମଚନ୍ଦ୍ରଙ୍କ କଥା ବି କହୁଥିଲେ । ତାଙ୍କ ମତରେ ଶ୍ରୀ ରାମଚନ୍ଦ୍ର ଅତ୍ୟନ୍ତ ଆଦର୍ଶ ରାଜା ଥିଲେ । କିନ୍ତୁ ଶ୍ରୀରାମଚନ୍ଦ୍ର ମୁଖ୍ୟତଃ ଭଗବାନ ପର୍ଶୁରାମଙ୍କ କାର୍ଯ୍ୟର ସୁଫଳ ପାଇଥିଲେ । ଆଉ ଲୋକେ ତାଙ୍କୁ ପର୍ଶୁରାମଙ୍କ ପରେ ଦ୍ୱିତୀୟ

ଭଗବାନ ଭାବରେ ମାନିଥିଲେ ।' ଭାନୁପ୍ରକାଶ ପୁଣି ଚୁପ୍ କରିଗଲେ, ଯେପରି କଣ ଭାବିଲେ ଓ ପୁଣି କହିଲେ, 'ଅରିନ୍ଦମ, ଏ କଥା ତୁମର ବୁଝିବା ଦରକାର । ଆମର ଏ ଆର୍ଯ୍ୟାବର୍ତ୍ତ ମୁଖ୍ୟତଃ ମଧ୍ୟ-ଦେଶ । ତୁମେ ରାଜ୍ୟମାନଙ୍କର ନାଁ ଶୁଣିଛ - କୁରୁକ୍ଷେତ୍ର, ମତ୍ସ୍ୟ, ପାଞ୍ଚାଳ, ସୁରସେନ, କାଶୀ, କୋଶଳ, ବିଦେହ । ମୁଁ ଏ ମଧ୍ୟ- ଦେଶର ସବୁ ରାଜ୍ୟମାନଙ୍କୁ ଯାଇଛି । ଏହା ବାହାରେ ବାହ୍ୟ-ଦେଶରେ ମଧ୍ୟ ଆର୍ଯ୍ୟମାନେ ରାଜତ୍ୱ କରୁଥିବା କିଛି ରାଜ୍ୟକୁ ଯାଇଛି । ଯେପରି ବିଦର୍ଭ, ଭୋଜ, ବିଦିଶା, ଅବନ୍ତୀ, ଦଶାର୍ଣ୍ଣ, ସୌରାଷ୍ଟ୍ର, କାମରୂପ, ଆଉ ବର୍ତ୍ତମାନ ମଗଧ । ସବୁ ରାଜ୍ୟରେ ସମାନ ଅବସ୍ଥା - ଲୋଭ, ସ୍ୱାର୍ଥ, କ୍ଷମତାରେ ଅଧିକାଂଶ ରାଜ୍ୟ ପୀଡିତ । ଅଧିକାଂଶ ରାଜା ବିଳାସବ୍ୟସନରେ ବୁଡ଼ି ରହିଛନ୍ତି । ପ୍ରଜାମାନଙ୍କର ଭଲମନ୍ଦ ସହିତ ସଂପର୍କ ନାହିଁ । ଗୋଟିଏ କଥା ମୁଁ ବାରମ୍ବାର ଦେଖିଛି । ରାଜାମାନେ ପ୍ରଜାଙ୍କ ପାଇଁ ନୁହନ୍ତି । ସବୁବେଳେ ପ୍ରଜାମାନଙ୍କ ବିରୁଦ୍ଧରେ । ବ୍ୟାସଦେବ ମୋ ଠାରୁ ବହୁତ ଅଧିକ ଜାଗା ବୁଲିଛନ୍ତି । ବହୁତ ଅଧିକ କଥା ଜାଣିଛନ୍ତି । ତାଙ୍କର ବି ସେଇ ଗୋଟିଏ ଚିନ୍ତା - କଅଣ କରି ହେବ, ଆଉ କେମିତି ।'

ବ୍ୟାସଦେବ ଖାଲି ଶ୍ରେଷ୍ଠ ଋଷି ନୁହନ୍ତି, ଜଣେ ରାଜନୀତିଜ୍ଞ ବି, ଅରିନ୍ଦମ ଭାବୁଥିଲା । ସତେ ଯେପରି ତା'ର ମନର କଥା ପଢି ଭାନୁପ୍ରକାଶ କହିଲେ, 'ଖାଲି ରାଜନୀତିଜ୍ଞ ନୁହନ୍ତି, ରାଷ୍ଟ୍ରନୀତିଜ୍ଞ ବି । ଭୀଷ୍ମ ବା ସତ୍ୟବତୀ ଗୋଟିଏ ରାଜ୍ୟ ବା ରାଜ ପରିବାର ସପର୍କରେ ଭାବୁଛନ୍ତି । ବ୍ୟାସଦେବ ସମଗ୍ର ଆର୍ଯ୍ୟାବର୍ତ୍ତ ସଂପର୍କରେ ଚିନ୍ତିତ । ଏପରିକି ମ୍ଳେଚ୍ଛ ଆର୍ଯ୍ୟମାନଙ୍କ ବିଷୟରେ ଓ ଏହି ବିରାଟ ଭୂଖଣ୍ଡ ଭାରତବର୍ଷର ଯେଉଁମାନେ ଆର୍ଯ୍ୟ ନୁହନ୍ତି ସେମାନଙ୍କ ବିଷୟରେ ବି, ଯେପରି ରାକ୍ଷସ, ନାଗ, ପିଶାଚ, ବାନର । ସେ ଗୋଟିଏ କଥା ବାରମ୍ବାର କହୁଥିଲେ - ଅଧର୍ମର ପ୍ରତିବାଦ କର ।'

ଯୋଉ କଥା ଅରିନ୍ଦମ ମନରେ ଠେଲିପେଲି ହୋଇ ଉଠୁଥିଲା ସେ ବାପାଙ୍କ ସାଙ୍ଗରେ ଭାନୁପ୍ରକାଶଙ୍କର ସଂପର୍କ କେତେ, କେମିତି ।

ଭାନୁପ୍ରକାଶ ଅରିନ୍ଦମର ସେହି ଅକୁହା ପ୍ରଶ୍ନର ଉତ୍ତର ଦେଲେ, 'ତୁମ ବାପା ଆଉ ମୁଁ ବ୍ୟାସଙ୍କର ଶିଷ୍ୟ ଥିଲୁ, ଦି'ଟା ଅଲଗା ଅଲଗା ଆଶ୍ରମରେ । ବାପାଙ୍କ ସହିତ କେବେ କେମିତି ଦେଖା ହୋଇଛି, ଓ ଆମ ଉଭୟଙ୍କର ମୁହଁ ଚିହ୍ନାଚିହ୍ନି ଥିଲା । ବାପା ବେଦ ପଢୁଥିଲେ, ଶାସ୍ତ୍ର ପଢୁଥିଲେ, ଅନ୍ୟମାନଙ୍କୁ ବି ପଢଉଥିଲେ । ମୁଁ ସେସବୁ ବିଶେଷ କରୁ ନ ଥିଲି । ମୁଁ ମୁଖ୍ୟତଃ ଆଶ୍ରମମାନଙ୍କର ପରିଚାଳନା କଥା ବୁଝୁଥିଲି, ଓ ଗୁରୁଦେବ କୁଆଡ଼େ ଗଲେ ତାଙ୍କର ପାଖେ ପାଖେ ରହୁଥିଲି । ମୁଁ ସେତେବେଳକୁ

ମୋର ସଂଗଠନ କାମ ଆରମ୍ଭ କରି ଦେଇଥାଏ । କିଛି କିଛି ଲୋକ ଆସୁଥାନ୍ତି । ମୁଁ ସେମାନଙ୍କୁ କଅଣ କରିବାକୁ ହେବ, କେମିତି କରିବାକୁ ହେବ କହୁଥାଏ, ଓ ସେମାନଙ୍କୁ ସାଙ୍ଗରେ ନେଇ ମଝିରେ ମଝିରେ ବାହାରକୁ ଯାଉଥାଏ । ଏହି ସମୟରେ ଦିନେ ସଂଧ୍ୟାରେ ସଂଧ୍ୟା ହୋମ ପରେ ଗୁରୁଦେବ ମୋତେ ଡକେଇ ପଠେଇଲେ । ମୁଁ ଦେଖିଲି ତାଙ୍କ ପାଖରେ କେହି ନାହାନ୍ତି, ଏକମାତ୍ର ତୁମର ବାପା ବସିଛନ୍ତି । ଗୁରୁଦେବ ତାଙ୍କ ଆଡକୁ ହାତ ଦେଖେଇ କହିଲେ – ଚିହ୍ନିଛ । ମୁଁ ହଁ କଲି । ଗୁରୁଦେବ କହିଲେ – ତାଙ୍କର ଏଠିକାର ଶିକ୍ଷା ସରି ଗଲାଣି । ସେ ମଥୁରା ଫେରିଯିବେ । ମୁଁ ଚାହେଁ ତୁମେ ପରସ୍ପରକୁ ଭଲ କରି ଚିହ୍ନ । ଭାନୁ, ତୁମ କାମ କଥା ମୁଁ ତାଙ୍କୁ ସବୁ କହିଛି । ତୁମ କାମରେ ମୋର ଆଶୀର୍ବାଦ ଅଛି ସେ କଥା ବି କହିଛି । ନାଁ, ସେ ଆଶ୍ରମ କରିବେନି । ସେ ଗୃହସ୍ଥ ଧର୍ମକୁ ଫେରିଯିବେ । ତୁମେ ଯେତେବେଳେ ମଥୁରାରେ କାମ ଆରମ୍ଭ କରିବ ସେ ତୁମକୁ ସାହାଯ୍ୟ କରିପାରିବେ । ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଗୁରୁଦେବଙ୍କୁ କହିଥିଲି – ଗୁରୁଦେବ, ମଥୁରା କଥା କାହିଁକି ? ମଥୁରାରେ ତ ଆଦର୍ଶ ଶାସନ । ରାଜା ପ୍ରଜା ପ୍ରଭେଦ ନାହିଁ । ମଥୁରାର ଆର୍ଯ୍ୟ ଗୋଷ୍ଠୀ ତ ଆଦର୍ଶ ଗୋଷ୍ଠୀ । ଗୁରୁଦେବ ସାମାନ୍ୟ ହସିଥିଲେ । ରହସ୍ୟମୟ ଭାବରେ କହିଥିଲେ – ବୈଶାଖର କାଳ ମେଘ ଉଠି ଆସୁଛି । ବେଶୀ ଡେରି ନାହିଁ । ତୁମେ ମଗଧରେ ଯେଉଁ କାମ ଆରମ୍ଭ କରିଛ ତାର ଚରମ ପରୀକ୍ଷା ମଥୁରାରେ, ଆଉ ତୁମର ଚରମ ପୁରସ୍କାର ବି । ଗୁରୁଦେବ ବେଶୀ କଥା କହନ୍ତି ନାହିଁ । କିନ୍ତୁ ମୁଁ ବୁଝିଲି ସେ ଭବିଷ୍ୟତ କଥା କହୁଛନ୍ତି । ଆଉ ସେ ଯାହା କହୁଛନ୍ତି ତାକୁ ବୁଝିବା କ୍ଷମତା ଆମର ନାହିଁ । କେବଳ ମୁଁ ବୁଝିଲି ଆମେ ଯୋଉ କାମ କରୁଛୁ ସେ ଠିକ୍ କାମ ଆଉ ଆମ ଉଦ୍ଦେଶ୍ୟ ବି ଠିକ୍ । ସେହିଦିନଠାରୁ ତୁମ ବାପାଙ୍କ ସହିତ ଆମର ପରିଚୟ । ମୋର ମନେ ହୁଏ ସେତେବେଳେ ଗୁରୁଦେବ ଯାହା କହିଥିଲେ ଏବେ ତାହା ଫଳିବାକୁ ଯାଉଛି । ମଥୁରାରେ ହିଁ ଆମର ଚରମ ପରୀକ୍ଷା । ଗୁରୁଦେବ ଭବିଷ୍ୟତ ଦେଖି ପାରିଥିଲେ, ତୁମର ବାପା ବି ଭବିଷ୍ୟତ ଦେଖୁଛନ୍ତି । ସେହିହିଁ ମଥୁରାରେ ଆମର ପ୍ରଧାନ ସହାୟ ହେବେ ।'

ସେଦିନ କଥା କିନ୍ତୁ ସେତିକିରେ ସରି ନ ଥିଲା । ରାତି ବଢ଼ି ବଢ଼ି ଯାଉଥାଏ । ଅରନ୍ଦିମ ଭୁଲିଗଲା ଯେ ସେ ଠିକ୍ ସମୟରେ ଶିବିରକୁ ନ ଫେରିଲେ ଲୋକେ ପଚରାଉଚରା କରି ପାରନ୍ତି । ଭାନୁପ୍ରକାଶଙ୍କ ଗୋଷ୍ଠୀ ଭିତରେ ବସିରହି ସେ ବି ଭୁଲିଗଲା ଯେ ସେ ଜରାସନ୍ଧ ରାଜ୍ୟରେ ବସିଛି, ନିଆଁ ପିଣ୍ଡୁଳା ଉପରେ ବସିଲା ପରି । ଯେ କୌଣସି ସମୟରେ ଜରାସନ୍ଧର ଲୋକେ ଆକ୍ରମଣ କରିପାରନ୍ତି । ତା' ମୁଣ୍ଡରେ

ସେସବୁ କିଛି ନ ଥିଲା । ଭାନୁପ୍ରକାଶଙ୍କ କଥା ଶୁଣୁ ଶୁଣୁ, ତାଙ୍କର ବନ୍ଧୁମାନଙ୍କର ଆଲୋଚନା ଶୁଣୁ ଶୁଣୁ, ତା' ଆଖିରେ ଯେପରି ଏହି ବିରାଟ ଭାରତବର୍ଷର ଗୋଟାଏ ପରେ ଗୋଟାଏ ମାନଚିତ୍ର ଖୋଲି ଯାଉଥିଲା । ଭାନୁପ୍ରକାଶଙ୍କ ସ୍ୱରରେ ଉତ୍ତେଜନା, ଆବେଗ । ସେ କ୍ଳାନ୍ତ ହୋଇ ଚୁପ୍ କରିଗଲେ, ଭାନୁପ୍ରିୟ ତାଙ୍କ କଥାକୁ ବଢ଼େଇ ନେଉଥିଲେ । ତାଙ୍କର ସ୍ୱରରେ ମଧ୍ୟ ସମାନ ଉତ୍ତେଜନା, ସମାନ ଆବେଗ । ସେମାନେ କହୁଥିଲେ କେଉଁ ପୁରୁଣା କାଳର କଥା, ଶହ ହଜାର ବର୍ଷ ତଳର କଥା, ଯାହା କେବଳ ମୁନିଋଷିମାନଙ୍କ କଥାରେ ହିଁ ରହିଛି । ସେତେବେଳେ କିଛି ନ ଥିଲା, ସମଗ୍ର ପୃଥିବୀ ଜଳରେ ଜଳାର୍ଣ୍ଣବ, ମହାପ୍ରଳୟ, ଆଉ ସେହି ମହାପ୍ରଳୟରେ ସବୁ ଲୋପ ପାଇ ଯାଇଥିଲା, ଗଛ ବୃକ୍ଷ, ନଦୀ ପର୍ବତ, ଜୀବ ଜନ୍ତୁ, ଆକାଶ ପୃଥିବୀ, ସବୁ । କେବଳ ଯେ ଏକମାତ୍ର ବଞ୍ଚି ରହିଥିଲେ ସେ ମନୁ – ମଣିଷ ଜାତିର ଆଦି ପୁରୁଷ, ସେ ମଣିଷ ଜାତିର ଆଚାର ବ୍ୟବହାର, ନୀତି ନିୟମ ସବୁ ସ୍ଥିର କରିଥିଲେ । ମନୁହିଁ ଆର୍ଯ୍ୟାବର୍ତ୍ତର ପ୍ରଥମ ରାଜା ଓ ତାଙ୍କ ଠାରୁ ହିଁ ଆର୍ଯ୍ୟାବର୍ତ୍ତର ସବୁ ବଂଶ ପରମ୍ପରା, ସବୁ ଐତିହ୍ୟର ଆରମ୍ଭ । ପରେ ପରେ କେତେ ରାଜା, ସେମାନଙ୍କର ରାଜତ୍ୱ ଓ କେତେ ଉଜ୍ଜ୍ୱଳ ବ୍ୟକ୍ତିଙ୍କ କଥା ଯେଉଁମାନଙ୍କର ପ୍ରଚଣ୍ଡ ତେଜରେ ଆର୍ଯ୍ୟାବର୍ତ୍ତ ବାରମ୍ବାର ଆଲୋକିତ ହୋଇ ଉଠିଛି – ଯଯାତି, ମାନଧାତ୍ରୀ, ଅର୍ଜୁନ କୀର୍ତ୍ତବୀର୍ଯ୍ୟ, ବିଶ୍ୱାମିତ୍ର, ଜମଦଗ୍ନି, ପରଶୁରାମ, ହରିଶ୍ଚନ୍ଦ୍ର, ସାଗର, ଦୁଷ୍ମନ୍ତ, ଭରତ, ରାମ । ସେହି ସନ୍ଧ୍ୟାରେ ମଗଧ ନ ଥିଲା, ମଥୁରା ନ ଥିଲା, ଦୀପର ଛାୟାନ୍ଧକାର ଆଲୋକରେ, ବିରାଟ ଆର୍ଯ୍ୟଜାତିର ମହିମାମୟ ଇତିହାସର ପ୍ରଭାବରେ ଅରିନ୍ଦମ ଅଭିଭୂତ ହୋଇ ଯାଇଥିଲା ।

ପରେ ସେ ଯେତେ ଭାବିଛି, ଆର୍ଯ୍ୟ ଜାତିର ଏଇ ଦୀର୍ଘ ଇତିହାସ ତାକୁ ସେତେ ଆଶ୍ଚର୍ଯ୍ୟ କରିଛି । ଏ ଯେପରି ଗୋଟାଏ ପ୍ରବଳ ପ୍ରବହମାନ ସ୍ରୋତ, ଯେଉଁଥିରେ ସେମାନେ ସମସ୍ତେ ଭାସି ଭାସି ଚାଲିଛନ୍ତି, ଆଉ ଏ ଭାସି ଭାସି ଚାଲିବାହିଁ ସେମାନଙ୍କର ଧର୍ମ । ସେ ଜାଣେନା ଏ ସ୍ରୋତର ଶେଷ କେଉଁଠି । ଭାନୁପ୍ରକାଶ ବା ଭାନୁପ୍ରିୟ ଯେ ଜାଣନ୍ତି ତା ମନେ ହୁଏନା । କିନ୍ତୁ ସେମାନେ କହନ୍ତି ସେପରି ଭାବିବା ଭୁଲ । ଏ ସ୍ରୋତଟା ହିଁ ଅସଲ । ଏହି ସ୍ରୋତଟା ହିଁ ଶକ୍ତି, ଆଉ ସେ ଶକ୍ତି ଆମ ସମସ୍ତଙ୍କର । ଭାନୁପ୍ରକାଶ ଓ ଭାନୁପ୍ରିୟ ହିନ୍ଦୁ ସଭ୍ୟତା ଓ ଭାରତବର୍ଷର ଯେଉଁ ନକ୍ସା ତିଆରି କରିଥିଲେ ଅରିନ୍ଦମର ଆଖି ଆଗରେ ସେ ସବୁ ଭାସି ଉଠିଲା । ଅନ୍ଧକାରରେ ଅସ୍ପଷ୍ଟ ହୋଇ ନୁହେଁ, ଉଜ୍ଜ୍ୱଳ ସ୍ପଷ୍ଟ ହୋଇ । ଆର୍ଯ୍ୟାବର୍ତ୍ତ ଓ ଆର୍ଯ୍ୟସଭ୍ୟତାର ଗୌରବ ଓ ବିସ୍ତାର । ସେ ଯେପରି ସେହି ଆର୍ଯ୍ୟର ଦମ୍ଭ ଓ ଅପରିସୀମ ଆଶାର ଅଂଶ


Digitized by srujanika@gmail.com

ହୋଇଗଲା । ସେହି ସନ୍ଧ୍ୟାରେ ଭାନୁପ୍ରକାଶଙ୍କର ଉଦାତ୍ତ କଣ୍ଠସ୍ୱରର ଲହଡ଼ି ଏବେ ବି ଯେପରି ତା ଚାରିପାଖରେ ଖେଳି ବୁଲୁଛି । ସାମାନ୍ୟ ଧ୍ୟାନ ଦେଲେ ତା' ଚାରିପାଖରେ ସେହି ଉଚ୍ଛ୍ୱଳିତ ସ୍ରୋତ, ଭାନୁପ୍ରକାଶଙ୍କର କେଉଁ ଦୂର ଅତୀତର କାହାଣୀ । ସେ କହୁଥାନ୍ତି - ହଁ, ସେମାନେ ଆସିଲେ, ପର୍ବତମାଳା ଅତିକ୍ରମ କରି ସେହି ଉତ୍ତର ସ୍ଥାନରୁ, ବହୁ ଗୋଷ୍ଠୀ, ବଂଶ, ପରିବାର, ସମ୍ପୂର୍ଣ୍ଣ ମୁକ୍ତ, ସମ୍ପୂର୍ଣ୍ଣ ସ୍ୱାଧୀନ । ମହାନ ନଦୀ ସପ୍ତସିନ୍ଧୁର କୂଳେ କୂଳେ, ପୂଣ୍ୟତୋୟା ସରସ୍ୱତୀର ଅବବାହିକାରେ । ସେହିଠାରେ ହିଁ ଆର୍ଯ୍ୟମାନେ ରାଜ୍ୟ ସ୍ଥାପନା କଲେ, ବ୍ରହ୍ମାବର୍ତ୍ତ, ପୃଥିବୀର ଶ୍ରେଷ୍ଠ ରାଜ୍ୟ, ଧର୍ମ, ଜ୍ଞାନ, କଳା, ସମାଜ ନୀତି, ରାଜନୀତି, ବ୍ୟବସାୟ, ପ୍ରତ୍ୟେକରେ ବ୍ରହ୍ମାବର୍ତ୍ତ ଆଦର୍ଶ ରାଜ୍ୟ ହେଲା - ଏହି ଭାରତଭୂମିରେ ଆର୍ଯ୍ୟଙ୍କର ପ୍ରଥମ ଆଦର୍ଶ ରାଜ୍ୟ, ମହାନ୍, ଗୌରବମୟ ଆର୍ଯ୍ୟସ୍ରୋତର ଆରମ୍ଭ । କହୁ କହୁ ଭାନୁପ୍ରକାଶଙ୍କ ସ୍ୱର ଗମ୍ଭୀର ହୋଇଯାଇଥିଲା, ଆଖି କେଉଁ ଦୂର ଅତୀତକୁ ପ୍ରସାରିତ ହୋଇ ଯାଇଥିଲା । ଆକାଶର ଉଜ୍ଜ୍ୱଳ ନକ୍ଷତ୍ର ପରି କେତେ ରାଜା, କେତେ ବ୍ୟକ୍ତି, କେତେ ଋଷି - ବିରାଟ, ମନୁ, ପ୍ରିୟବ୍ରତ, ଋଷଭ ଦେବ, ଭରତ, ଧ୍ରୁବ, ପ୍ରିଥୁ, ରାଜକୁମାରୀ ଦେବହୂତି, କପିଳ, ପତଞ୍ଜଳି, ବାଲ୍ମିକୀ, ପୁଣି ଚିରସ୍ମରଣୀୟ ସପ୍ତର୍ଷି - ମାରିଚୀ, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ ଓ ମହାନ ଋଷି ଭୃଗୁ, ଯେଉଁମାନେ ସୂର୍ଯ୍ୟ ବଂଶ, ଚନ୍ଦ୍ର ବଂଶ ପରି ସବୁ ଭବିଷ୍ୟତ ଆର୍ଯ୍ୟ ବଂଶର ପ୍ରତିଷ୍ଠା କରିଥିଲେ ।

ଏ ଖାଲି ପ୍ରାଚୀନ ସମୟର କଥା ନୁହେଁ, ଅରିନ୍ଦମ ଭାବିଲା - ତା' ନିଜ ସମୟର କଥା ବି । ଆଶ୍ଚର୍ଯ୍ୟ, ଭାନୁପ୍ରକାଶ ଓ ଭାନୁପ୍ରିୟ ଏତେ କଥା ଜାଣନ୍ତି, ଏତେ ଅଭିଜ୍ଞତା ସେମାନଙ୍କର । ଭାନୁପ୍ରକାଶ ମଧ୍ୟ-ଦେଶ କଥା କହୁଥିଲେ, ଗଙ୍ଗା ଯମୁନା ଅବବାହିକାର ଦେଶ ସବୁ । କେତେ ନଦୀ, କେତେ ରାଜ୍ୟ, ଫଳବତୀ, ପୁଷ୍ପବତୀ, ଧନ ସମ୍ପତ୍ତିରେ ପରିପୂର୍ଣ୍ଣ । କିନ୍ତୁ ଅର୍ଥ ଲୋଭ, ଧନ ଲୋଭ, କ୍ଷମତା ଲୋଭ ଅନେକଙ୍କୁ ନଷ୍ଟ କରି ସାରିଲାଣି । ଦେବ ଦ୍ୱିଜରେ ଭକ୍ତି କମି ଗଲାଣି, ଶାସ୍ତ୍ର ପ୍ରତି ସମ୍ମାନ କମି ଆସିଲାଣି । ଏ ଖାଲି ମଧ୍ୟ-ଦେଶର ରାଜାମାନଙ୍କ କଥା ନୁହେଁ, ଭାନୁପ୍ରକାଶ କହିଥିଲେ । ପୁରାତନ ବ୍ରହ୍ମାବର୍ତ୍ତର ଗୌରବ ଆଉ ନାହିଁ, ଯେଉଁଠି ଧର୍ମ ବଳରେ, ମନର ବଳରେ, ଆର୍ଯ୍ୟମାନେ ଆଦର୍ଶ ରାଜ୍ୟ ସ୍ଥାପନା କରିଥିଲେ, ଯେଉଁଠି ବେଦର ସୃଷ୍ଟି ହୋଇଥିଲା, ଯେଉଁଠି ମୁନିଋଷିମାନଙ୍କର ଅଖଣ୍ଡ ପ୍ରଭାବ ଥିଲା । ସେସବୁ ଆଉ ନାହିଁ । ସମୟ ବଦଳିଛି । ଅରିନ୍ଦମ ଲକ୍ଷ୍ୟ କରିଥିଲା କଥା କହୁ କହୁ ଭାନୁପ୍ରକାଶଙ୍କର କଣ୍ଠ ଯେପରି ବନ୍ଦ ହୋଇ ଆସିଥିଲା । ସ୍ୱରରେ ଦୁଃଖ, ଆଖିରେ ଯେପରି ହତାଶ ଭାବ । ସତେ ଯେପରି ସେ ଧର୍ମଯୁଦ୍ଧରେ ହାରିଯାଉଛନ୍ତି । ସେ

ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଥିଲା । ଭାନୁପ୍ରକାଶଙ୍କର କଥାର ଧାରା ତା ନୁହେଁ । ତାଙ୍କ କଥାରେ ସବୁବେଳେ ଆଶା, ବିଶ୍ୱାସ, ଦମ୍ଭ । କିନ୍ତୁ ସେ ଅଳ୍ପ ସମୟ ପାଇଁ । ତାଙ୍କ ସ୍ୱରରେ ପୁଣି ଆଗର ସାହସ ଦମ୍ଭ ଫେରି ଆସିଥିଲା । ସମସ୍ତେ ଚୁପ୍, ମନେହେଲା ଯେପରି କମି ଯାଉଥିବା ଦୀପ ଶିଖା ପ୍ରଚଣ୍ଡ ଶକ୍ତିରେ ପୁଣି ଜଳି ଉଠିଲା । ସେ କହୁଥାନ୍ତି, ହଁ, ସବୁଆଡ଼େ ସମାନ ଅବସ୍ଥା - ଅନ୍ୟାୟ, ଅଧର୍ମ, ସ୍ୱାର୍ଥ । ଏ କେବଳ ଆର୍ଯ୍ୟାବର୍ତ୍ତ ବା ମଧ୍ୟ-ଦେଶର କଥା ନୁହେଁ । ଦକ୍ଷିଣକୁ, ପୂର୍ବକୁ, ବାହ୍ୟ-ଦେଶର ରାଜ୍ୟମାନଙ୍କରେ ବି, ଖାଦ୍ୟରେ, ଆଚାର ବ୍ୟବହାରରେ, ପୂଜା ଆରାଧନାରେ, ନୈତିକତାରେ, ସମ୍ପୂର୍ଣ୍ଣ ଅଧୋଗତି । ଭାନୁପ୍ରକାଶ ଦକ୍ଷିଣ, ପଶ୍ଚିମ, ପୂର୍ବର ବହୁ ରାଜ୍ୟର କଥା କହିଥିଲେ, ଯେଉଁଠି ଆର୍ଯ୍ୟମାନେ ହୁଏତ ରାଜା, ଶାସକ ବା ସେମାନଙ୍କର ଯଥେଷ୍ଟ ପ୍ରଭାବ । ଅରିନ୍ଦମ ହୁଏତ କିଛି କିଛି ରାଜ୍ୟର ନାଁ ଶୁଣିଥିଲା, ଯେପରି ବିଦର୍ଭ, ଭୋଜ, ଚେଦୀ, ବିଦିଶା, ଅବନ୍ତୀ । କିନ୍ତୁ ଆହୁରି ବହୁତ ରାଜ୍ୟ, ଦକ୍ଷିଣକୁ, ପୂର୍ବକୁ । ଆର୍ଯ୍ୟମାନେ ଭାରତବର୍ଷର ଅଧିକାଂଶ ରାଜ୍ୟକୁ ଦଖଲ କରି ଯାଇଛନ୍ତି, ଆଉ ଅଧିକାଂଶ ରାଜ୍ୟକୁ ନିଜର ସ୍ୱାର୍ଥରେ ନଷ୍ଟ କରି ଦେଇଛନ୍ତି, ଭାନୁପ୍ରକାଶ କହୁଥାନ୍ତି, ଏମାନଙ୍କୁ ପୁରାତନ ଆର୍ଯ୍ୟଧର୍ମକୁ ଫେରେଇ ଆଣିବା ଆମର କର୍ତ୍ତବ୍ୟ, କାର୍ଯ୍ୟ । ଏହାହିଁ ଗୁରୁ ବ୍ୟାସଦେବଙ୍କର ନିର୍ଦ୍ଦେଶ, ତାଙ୍କର ଆଶୀର୍ବାଦ ଆମ ପଛରେ ରହିଛି ।

ସେଦିନ ଶିବିରକୁ ଫେରୁ ଫେରୁ ବହୁତ ରାତି ହୋଇ ଯାଇଥିଲା । ପ୍ରାୟ ପାହାନ୍ତା ପାଖାପାଖି । ଶେଷ ରାତିର ଚଢ଼େଇମାନେ ଡାକିବାକୁ ଆରମ୍ଭ କରିଥିଲେ । ରାସ୍ତା ସମ୍ପୂର୍ଣ୍ଣ ଜନଶୂନ୍ୟ । ଅରିନ୍ଦମ ହୁଏତ ଏକା ଏକା ଫେରିପାରି ନ ଥାନ୍ତା । ତା'ର ବି ଇଚ୍ଛା ଥିଲା ଭାନୁପ୍ରକାଶଙ୍କ ପାଖରେ ରାତିଯାକ ରହି ସକାଳୁ ସକାଳୁ ଶିବିରକୁ ଫେରିଥାନ୍ତା । କିନ୍ତୁ ଭାନୁପ୍ରକାଶ ରାଜି ହେଲେ ନାହିଁ । ସେ କହିଲେ ତୁମେ ପାହାନ୍ତା ପାଖାପାଖି ସମୟରେ ଫେରିଯାଅ । ସେତେବେଳେ ଶିବିରରେ ସମସ୍ତେ ଶୋଇଥିବେ । ତୁମର ଫେରିବା କଥା କେହି ଜାଣିପାରିବେ ନାହିଁ । ସକାଳୁ ଫେରିବାରେ ଅସୁବିଧା ଅଛି । ଲୋକେ ଉଠାଉଠି କରିଥିବେ, ତୁମକୁ ହୁଏତ ପଚରାପଚରି କରିପାରନ୍ତି । ଅରିନ୍ଦମ ତଥାପି ଥାଥା ମାମା ହୋଇ ରହି ଯାଇଥିଲା । ଭାନୁପ୍ରକାଶ ବୁଝି ପାରିଥିଲେ । କହିଥିଲେ ନାଁ, ତୁମେ ଏକା ଯିବନି । ତୁମ ସାଙ୍ଗରେ ଆମର ଦି'ଜଣ ଲୋକ ଯାଇ ଛାଡ଼ିଦେଇ ଆସିବେ । ତା ଛଡ଼ା ଶିବିରରେ ବି ଆମ ଲୋକ ଅଛନ୍ତି । ସେମାନେ ଶୋଇ ନ ଥିବେ, ଅପେକ୍ଷା କରିଥିବେ, ତୁମେ ଶିବିରରେ ପହଞ୍ଚି କାହାକୁ କିଛି ନ କହି, କି ଏପାଖ ସେପାଖ ନ ହୋଇ ଚୁପଚାପ ଶୋଇ


Digitized by srujanika@gmail.com

ପଡ଼ିବ । ତା'ପରେ ସେ କାହାକୁ କ'ଣ ଇଙ୍ଗିତ କରି କହିଥିଲେ । ଅରିନ୍ଦମ ଉଠି ଆସିବା ସଙ୍ଗେ ସଙ୍ଗେ ଦୁଇଜଣ ଲୋକ ପ୍ରସ୍ତୁତ ହୋଇ ତା' ସାଙ୍ଗରେ ବାହାରି ଆସିଲେ ।

ଏସବୁ କଥା ଭାବିଲା ବେଳକୁ ଅରିନ୍ଦମକୁ ଗୋଟାଏ କଥା ଖୁବ୍ ଆଶ୍ଚର୍ଯ୍ୟ ଲାଗିଥିଲା - ଶୃଙ୍ଖଳା, ସମ୍ପୂର୍ଣ୍ଣ ଶୃଙ୍ଖଳା, ଆଉ ଆନୁଗତ୍ୟ, ସମ୍ପୂର୍ଣ୍ଣ ଆନୁଗତ୍ୟ । ତେଲ ଦିଆ ହୋଇଥିବା ଚକ ପରି, ଚକ ସୁରୁଖୁରୁରେ ଘୂରି ଘୂରି ଚାଲିଛି । କିଛି ବାଧା ନାହିଁ, କିଛି ପ୍ରତିବାଦ ନାହିଁ । ଚାଳକର ଇଚ୍ଛା ହିଁ ଏକମାତ୍ର ଇଚ୍ଛା । ସେ ଏକଥା ଭାନୁପ୍ରକାଶଙ୍କୁ କହିଥିଲା । କହିଥିଲା, ଏମାନେ ସମସ୍ତେ ଆପଣଙ୍କର ଏକାନ୍ତ ଅନୁଗତ । ଭାନୁପ୍ରକାଶ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲେ ନାଁ, ତା ଠିକ୍ ନୁହେଁ । ମୁଁ ନୁହେଁ, ମୋର କେହି ଅନୁଗତ ନୁହନ୍ତି । ମୁଁ ଆଉ ଆମେ ସମସ୍ତେ ଗୋଟାଏ ଆଦର୍ଶର ଅନୁଗତ, ସେ ଆଦର୍ଶ ଆର୍ଯ୍ୟ ଜାତିର, ମଣିଷ ଜାତିର ବି । ଉଦ୍ଦେଶ୍ୟ ଧର୍ମ ରାଜ୍ୟର ପ୍ରତିଷ୍ଠା କରିବାରେ ସାହାଯ୍ୟ କରିବା । ସେଥିପାଇଁ ବ୍ୟାସଦେବ ଆମକୁ ସାହାଯ୍ୟ କରନ୍ତି, ମହାରାଣୀ ସତ୍ୟବତୀ, ଭୀଷ୍ମ ବି, ଆଉ ଧର୍ମରେ ଚଳୁଥିବା ଆର୍ଯ୍ୟାବର୍ତ୍ତର ସବୁ ରାଜା ବି । ଏସବୁ ଅରିନ୍ଦମ ପାଇଁ ନୂଆ ନୂଆ ଅନୁଭୂତି । ସେ ଗିରିବ୍ରଜ ଆସିବା ପୂର୍ବରୁ ଏପରି ଗୋଟାଏ ବ୍ୟବସ୍ଥା ଥାଇପାରେ ବୋଲି ଭାବିପାରି ନ ଥିଲା । ଏପରି ସାହାସ, ଯୋଜନା, ଶୃଙ୍ଖଳା, ଆଉ ନେତୃତ୍ୱ ବି । ଯିଏ ଯେତେବେଳେ ରାଜା ହେଲା ସେ ଭଲ ହେଉ କି ଦୁଷ୍ଟ ହେଉ, ଲୋକେ ସବୁବେଳେ ମାନି ନେଇଥାନ୍ତି । ଖୁବ୍ ଅତ୍ୟାଚାର ହେଲେ ବା ଖୁବ୍ କଷ୍ଟ ହେଲେ ଅତି ବେଶୀରେ ସେମାନେ ହୁଏତ ସେ ରାଜ୍ୟକୁ ଛାଡ଼ି ଅନ୍ୟ ରାଜ୍ୟକୁ ଚାଲି ଯାଆନ୍ତି । କିନ୍ତୁ ଏଠି ତା ନୁହେଁ, ଉଦ୍ଦେଶ୍ୟ ପ୍ରତିବାଦ କରିବା, ପ୍ରତିରୋଧ କରିବା । ସେ ନିଜେ ମଗଧରେ ଏମାନଙ୍କ କାର୍ଯ୍ୟସବୁ ଦେଖିଛି । ଭୟ ନାହିଁ, ଦୁର୍ବଳତା ନାହିଁ । ଅତ୍ୟନ୍ତ ସତର୍କ, କିନ୍ତୁ ଜୀବନ ପ୍ରତି ଅହେତୁକ ମୋହ ନାହିଁ । ସବୁ କାର୍ଯ୍ୟ ଯୋଜନା କରି, ଆଗରୁ ନିଷ୍ପତ୍ତି ନେଇ କରାଯାଉଛି । ତେଣୁ ଛକ କାଟିଲା ପରି କାର୍ଯ୍ୟ । କୌଣସି କାମ ପାଇଁ ତରବର ହେବାର ନାହିଁ, କିନ୍ତୁ କୌଣସି ଦରକାରି କାର୍ଯ୍ୟ ଯେ ରହିଯିବ ତା ବି ନୁହେଁ । ସେ ଏମାନଙ୍କ ସାଙ୍ଗରେ ମିଶିଲା ପରେ ପ୍ରଥମେ ପ୍ରଥମେ ତାକୁ ଖୁବ୍ ଆଶ୍ଚର୍ଯ୍ୟ ଲାଗିଥିଲା । ମନେ ହେଉଥିଲା ଯେପରି ସବୁ କାମ ଶୂନ୍ୟେ ଶୂନ୍ୟେ ହେଉଛି । ପରେ ସେ ଦେଖିଲା ତା ନୁହେଁ । ଏ ଗଭୀର ବୁଦ୍ଧି ଓ ଗଭୀର ଶୃଙ୍ଖଳାର କାମ । ତା'ର ଖୋଲାମେଲା ମଥୁରା ଜୀବନରେ ଏ ପ୍ରକାର କାମ ଯେ ସମ୍ଭବ ସେ କେବେ ଭାବି ପାରି ନ ଥିଲା । ସେ ବାପାଙ୍କ କଥା ଭାବିଥିଲା । ମନେ ମନେ ବାପାଙ୍କୁ ସେ

ଭାନୁପ୍ରକାଶଙ୍କ ସହିତ ତୁଳନା କରିଥିଲା । ଉଭୟ ଏକା ମନର, ଉଭୟଙ୍କର ବିଶ୍ୱାସ ଏକ । ବାପା କାହାରି ସାଙ୍ଗରେ ବିଶେଷ ମିଶନ୍ତି ନାହିଁ । ନିଜର ପଢ଼ାପଢ଼ି, ପୂଜା ଅର୍ଚ୍ଚନା, ଧ୍ୟାନ ଧାରଣାରେ ସବୁବେଳେ ବ୍ୟସ୍ତ ଥାଆନ୍ତି । ସେଇଟା ହିଁ ବାପାଙ୍କର ଶକ୍ତି, ସେହି ଯୋଗୁହିଁ ବାପା ନିଜକୁ ଗଭୀର ଭାବରେ ସଂଯତ କରି ରଖିପାରନ୍ତି, ଓ ଏପରି କଥା ସବୁ ଦେଖିପାରନ୍ତି ଓ ବୁଝିପାରନ୍ତି ଯାହା ଅନ୍ୟମାନେ ବୁଝିପାରନ୍ତି ନାହିଁ ଓ ଦେଖିପାରନ୍ତି ନାହିଁ । ଭାନୁପ୍ରକାଶ ସେହିପରି । ତାଙ୍କର ସ୍ଥିରତା, ସ୍ଥିର ଚିନ୍ତା, ବିଭିନ୍ନ ଘଟଣାକୁ ଏକାଠି ଶୃଙ୍ଖଳିତ କରିବାର ଅଦମ୍ୟ କ୍ଷମତା, ଓ ଅବିଚଳିତ ଆଦର୍ଶ ଓ ଏହି ଆଦର୍ଶ ପାଇଁ ସମ୍ପୂର୍ଣ୍ଣ ଆନୁଗତ୍ୟ ହିଁ ତାଙ୍କର ଶକ୍ତି । ତାଙ୍କର ଶକ୍ତିର କିଛି କିଛି ସୂଚନା ଅରିନ୍ଦମ ପାଇଥିଲା । ମହାନ୍ ଶକ୍ତିଶାଳୀ ଜରାସନ୍ଧ ସହିତ ତାଙ୍କର ଯେଉଁ ଯୁଦ୍ଧ ସେଥିରେ ସେ ନୁହନ୍ତି, ଜରାସନ୍ଧ ହିଁ ବେଶୀ ଭୟଭୀତ । ଭାନୁପ୍ରକାଶ ଜରାସନ୍ଧ ବିଷୟରେ ଏତେକଥା ଜାଣନ୍ତି, ଯା' ସେ ନିଜେ ହିଁ ଜାଣେନା । ସେଇଟା ହିଁ ଆଶ୍ଚର୍ଯ୍ୟ, ଭାନୁପ୍ରକାଶଙ୍କର ସବୁ କାମ ସ୍ୱୟଂସମ୍ପୂର୍ଣ୍ଣ, ଠିକ୍ ବାପାଙ୍କ କାମ ପରି ।

ଶିବିରରେ ଅରିନ୍ଦମକୁ ଛାଡ଼ି ଯେଉଁ ଦି ଜଣ ସାଙ୍ଗରେ ଆସିଥିଲେ ସେମାନେ ଫେରିଗଲେ । ଗଲାବେଳେ ଖାଲି କହିଦେଇ ଗଲେ ପରଦିନ ସନ୍ଧ୍ୟା ଆଗରୁ ଗୌରୀମାଙ୍କ ମନ୍ଦିରକୁ ଯିବା ପାଇଁ ଭାନୁପ୍ରକାଶଙ୍କ ନିର୍ଦ୍ଦେଶ । ଶିବିର ଭିତରେ ଚୁପ୍‌ଚାପ୍, ସମସ୍ତେ ସବୁଆଡ଼େ ଶୋଇଛନ୍ତି । ଅରିନ୍ଦମ ମନରେ ଭାନୁପ୍ରକାଶଙ୍କ କଥା ଖେଳିଗଲା - ଶିବିରରେ ଆମ ଲୋକେ ତୁମକୁ ଅପେକ୍ଷା କରି ରହିଥିବେ । ତା'ମାନେ ସେମାନେ ତ ଶୋଇ ନ ଥିବେ । ସେ ଚାରିଆଡ଼କୁ ଚାହିଁଲା । କିଏ ସେମାନେ ? ନାଁ, ବୁଝି ହେଉନି, ସବୁଆଡ଼େ ତ ଚୁପ୍ ! ହଠାତ୍ ବାହାରୁ ତୀବ୍ର ହୁଇସିଲ ମାରିବା ପରି ଶୁଭିଲା । ଥରେ, ଦି'ଥର, ତିନିଥର । ଅରିନ୍ଦମ ସାମାନ୍ୟ ଚମକି ଉଠିଲା । କୌଣସି ଉଡ଼ି ଯାଉଥିବା ଶେଷ ରାତିର ଚଢ଼େଇ ନିଶ୍ଚୟ । ନାଁ କାହାର ଇଙ୍ଗିତ ? ତା'ର ମନେହେଲା ଶିବିରର ଗୋଟାଏ କଣରେ, ଟିକିଏ ଦୂରରେ, କେଉଁମାନେ ଯେପରି ଉଠି ବସିଲେ, ତା'ପରେ ପୁଣି ଶୋଇ ପଡ଼ିଲେ । ଚାରିଆଡ଼ ପୁଣି ଚୁପ୍‌ଚାପ, ଅଧା ଅଧା ଅନ୍ଧାର, ଗୋଟାଏ କଣରେ ଯେଉଁ ମଶାଲ ଜଳୁଥିଲା ସେ ବି ଲିଭି ଲିଭି ଆସିଲାଣି, ତା'ର ଦେଖିବାର ଭୁଲ ହୋଇପାରେ । ଶିବିର ମୁହଁର ଦି'ଜଣ ସିପେହୀ ବି ଶୋଇଗଲେଣି । ସେ ଠେକିରୁ ଗଡ଼େଇ ପାଣି ପିଇଲା । ଚାରିପାଖରେ ଶୋଇଥିବା ଲୋକଙ୍କର ନିଶ୍ୱାସର ଶବ୍ଦ, ଦେହର ଗନ୍ଧ । ସେ ଆଉ କିଛି ନ ଭାବି ବିଛଣାରେ ଯାଇ ଶୋଇପଡ଼ିଲା । ହଠାତ୍ ତା'ର ମନେହେଲା ସେ ତ ବିଛଣା ଗୁଡ଼େଇ ରଖିଦେଇ ଯାଇଥିଲା । ତା' ବିଛଣା ପରିଷ୍କାର, ପରିଚ୍ଛନ୍ନ କରି ପକେଇଲା କିଏ ? ଯେମିତି

ମନେହେବ ଲୋକଟା ଶୋଇଥିଲା, ଏଇମାତ୍ର ଉଠି ବାହାରକୁ ଯାଇଛି । ନାଁ, ଭାନୁପ୍ରକାଶଙ୍କ ରହସ୍ୟ ବୁଝିବା ତା' ପକ୍ଷରେ ସମ୍ଭବ ନୁହେଁ । ପାହାନ୍ତା ପହରର ଟିକେ ଟିକେ ଶୀତ ଲାଗୁଛି । ସେ ଚଦରଟାକୁ ଲମ୍ବାକରି ଦେହରେ ଟାଣି ଶୋଇ ପଡ଼ିଲା । ବାହାରେ ଫର୍ଚ୍ଚା ହୋଇ ଆସୁଥାଏ । ଦୂରରୁ ବୋଧହୁଏ ମହାକାଳ ମନ୍ଦିରର ଘଣ୍ଟାଧ୍ୱନି ଶୁଭୁଥାଏ ।

ଅରିନ୍ଦମ ଯେ ବହୁତ ସମୟ ଶୋଇଥିଲା ତା' ନୁହେଁ । ତେବେ ସେ ଉଠିଲା ବେଳକୁ ଅଧିକାଂଶ ଲୋକ ଉଠି ବାହାରକୁ ନିତ୍ୟକର୍ମ ପାଇଁ ଚାଲିଗଲେଣି । ଆଉ ଅଳ୍ପ କେଇଜଣ ଯେ ଅଛନ୍ତି, ସେମାନେ ବି ଉଠ୍ ଉଠ୍ ହେଲେଣି । ଅରିନ୍ଦମ ଉଠି, ବିଛଣା ଉଠେଇ ଦେଇ, ନିଜର ବ୍ୟବହାର ଜିନିଷ ପତ୍ରକୁ ଚାହିଁନେଲା । ତାକୁ ସେସବୁ ବନ୍ଧାବନ୍ଧି କରି ଠିକ୍ କରିଦେବାକୁ ହେବ । ବୋଧହୁଏ ଆସନ୍ତା କାଲି ଶିବିର ଉଠେଇ ସେମାନେ ମଥୁରା ଫେରିବେ । ସେ ବାହାରକୁ ଆସିଲା । ଶିବିର ମୁହଁ ପାଖରେ ଦି'ଜଣ ପରିଚିତ ଲୋକ । ଜଣେ ପଚାରିଲେ – 'ଅରିନ୍ଦମ ତୁମର ଜିନିଷ ପତ୍ର ବନ୍ଧା ବନ୍ଧି ହୋଇଗଲାଣି ?' 'ହଁ', ଅରିନ୍ଦମ କହିଲା, 'କାଲି ଫେରିବାକି ?' 'ବୋଧହୁଏ ।' ଦୁହେଁଯାକ ପାଖକୁ ଲାଗି ଆସିଲେ, ଫିସଫିସ କରି କହିଲେ, 'ଜାଣିଛ, ଅରିନ୍ଦମ, କଂସ ତ ଆମ ପରେ ଅଲଗା ଯିବ, ତା ସାଙ୍ଗରେ ଜରାସନ୍ଧଙ୍କର ନିଜର ଦେହରକ୍ଷୀ ସୈନ୍ୟମାନେ ଯିବେ । ସେମାନେ ଆଉ ଫେରିବେ ନାହିଁ, ସେଇ ମଥୁରାରେ ରହିବେ । କଂସ ପାଖେ ପାଖେ ।' ଏ ନୂଆ ଖବର ନିଶ୍ଚୟ, ଅରିନ୍ଦମ ଭାବିଲା । କଂସ ନିଜର ସ୍ତ୍ରୀମାନଙ୍କୁ ଧରି ତ ଏକା ଯାଇ ନ ଥାନ୍ତା, ତା ସାଙ୍ଗରେ ମଗଧର ସୈନ୍ୟମାନେ ଯାଇଥାନ୍ତେ । କିନ୍ତୁ ସେମାନେ ଫେରି ଆସିଥାନ୍ତେ । ମଥୁରାରେ ରହି ନ ଥାନ୍ତେ । ତା' ନୁହେଁ, ଏମାନେ ରହିବେ । ତା' ଛଡ଼ା ଜରାସନ୍ଧଙ୍କର ଦେହରକ୍ଷୀ ସୈନ୍ୟ ! ଏ ତ ଭୟଙ୍କର କଥା । ପ୍ରଥମ କଥା ସେମାନେ ମଗଧର ଲୋକ ନୁହନ୍ତି । ଦ୍ୱିତୀୟ କଥା ସେମାନେ ଜରାସନ୍ଧଙ୍କ ଛଡ଼ା ଆଉ କାହାକୁ ମାନନ୍ତି ନାହିଁ । ପ୍ରକୃତି ଅତ୍ୟନ୍ତ ନିଷ୍ଠୁର । ବ୍ୟବହାର ବି ସେମିତି । ସେମାନେ ମଣିଷ ନୁହନ୍ତି, ରାକ୍ଷସ । ପାଞ୍ଚାଳର ମଲ୍ଲ ସୂର୍ଯ୍ୟସଂକାଶଙ୍କୁ ସେମାନେ କଡ଼ମଡ଼ କରି ଖାଇଯିବାର ସେଇ ବିଭତ୍ସ ଦୃଶ୍ୟ ତା ଆଖି ଆଗରେ ଭାସି ଉଠିଲା । କହିଲା, 'ସେମାନେ ଯିବେ ? ସେଗୁଡ଼ା ତ ରାକ୍ଷସ । ମଥୁରା ଆଉ ରହିବ ତ ?' 'ସେକଥା ଆମେ କହି ପାରିବୁନି' ବନ୍ଧୁମାନେ କହିଲେ, 'କିନ୍ତୁ ସେମାନେ ଯିବେ, ଆଉ ମଥୁରାରେ ରହିବେ, କଂସ ପାଖରେ' । ଅରିନ୍ଦମ ଭାବିବାକୁ ଚେଷ୍ଟା କଲା– 'କାହିଁକି ?' ମଥୁରାରେ ସୈନ୍ୟସାମନ୍ତ ଅଛନ୍ତି, ମଗଧର କିଛି ସୈନ୍ୟ ବି ଯାଇ

ସେଠାରେ କିଛିଦିନ ରହି ପାରନ୍ତି । କିନ୍ତୁ ଏମାନେ କାହିଁକି ? ଏଇ ରାକ୍ଷସଗୁଡ଼ା !'

ସକାଳେ ନିଜର କାମଦାମ ସାରୁ ସାରୁ ଏହି କଥାଟା ହିଁ ତା ମୁଣ୍ଡରେ ଘେରି କରି ରହିଲା । ଏସବୁ କଂସର ନିଜ ଇଚ୍ଛାରେ ହେଉଛି ନା ଜରାସନ୍ଧଙ୍କର ଯୋଜନାରେ ? ହସ୍ତିନା ପାଖରୁ ମଗଧ ଓ ଗିରିବ୍ରଜ ଅନେକ ଦୂର । କିନ୍ତୁ ମଥୁରା ଦୂର ନୁହେଁ । ତା' ଛଡ଼ା ମଥୁରାର ଆଖପାଖରେ ବହୁ ଆର୍ଯ୍ୟ ରାଜ୍ୟ । ମଥୁରାକୁ ନିଜ ଅଧୀନରେ ରଖିପାରିଲେ ଜରାସନ୍ଧଙ୍କୁ ନିଶ୍ଚୟ ସୁବିଧା ହେବ । ଜରାସନ୍ଧ ଅତ୍ୟନ୍ତ ଚତୁର, ଭାନୁପ୍ରକାଶଙ୍କ କଥା ତା'ର ମନେପଡ଼ିଲା । ଜରାସନ୍ଧ ଆର୍ଯ୍ୟ ରାଜାମାନଙ୍କ ଉପରେ ଆଧିପତ୍ୟ କରିବାକୁ ଚାହେଁ । ତା'ର ସବୁ ଯୋଜନା ସେଇଠି ପାଇଁ । ଭାନୁପ୍ରକାଶ ସେକଥା ବାରମ୍ବାର କହୁଥିଲେ । ସେ ଅତ୍ୟାଚାରୀ, ନିଷ୍ଠୁର, ନିର୍ଦ୍ଦୟ, ତା'ର କୌଣସି ମାନବିକ ପ୍ରବୃତ୍ତି ନାହିଁ । ତା'ର ଜୀବନରେ ଗୋଟିଏ ଲକ୍ଷ୍ୟ, କିପରି ସମଗ୍ର ଆର୍ଯ୍ୟାବର୍ତ୍ତର ଚକ୍ରବର୍ତ୍ତୀ ହେବ । ତା'ର ଏକମାତ୍ର ଭୟ ଭୀଷ୍ମଙ୍କୁ, ଆଉ ଭୟ ଯଦି କେତେବେଳେ ଆର୍ଯ୍ୟାବର୍ତ୍ତର ରାଜାମାନେ ତା' ବିରୁଦ୍ଧରେ ଏକାଠି ହୋଇ ଯାଆନ୍ତି । ସେଥିପାଇଁ ସେ ଏତେ ସାବଧାନ, ସତର୍କ, କୌଶଳରେ କାମ ହାସଲ କରିବାକୁ ଚାହେଁ, ଆଉ ସେଇଥିପାଇଁ ସେ ମଥୁରା ବିଷୟରେ ଏତେ ଆଗ୍ରହୀ । ମଥୁରା ହିଁ ଯୋଜନାର କେନ୍ଦ୍ର ହେବ, ଆଉ ତା' ପାଇଁ ଯେ କାମ କରିପାରିବ ସେ କଂସ । ଭାନୁପ୍ରକାଶଙ୍କ ବିଶ୍ଳେଷଣ ଠିକ୍, ଅରିନ୍ଦମ ବାରମ୍ବାର ଭାବିଲା । ଜରାସନ୍ଧ ଆଗକୁ ଆସିବ ନାହିଁ, କଂସ ଆସିବ, ଆଉ ମନେହେବ କଂସ ଜରାସନ୍ଧଙ୍କ ପାଇଁ ନୁହେଁ, ନିଜ ପାଇଁ କାମ କରୁଛି, ନିଜେ ଚକ୍ରବର୍ତ୍ତୀ ହେବ, ଏହି ଆଶାରେ ।

ଦିନ ବଢ଼ିବା ସାଙ୍ଗେ ସାଙ୍ଗେ ମଥୁରା ଶିବିରରେ ବେଶ୍ ଗହଳଚହଳ ଆରମ୍ଭ ହୋଇ ଯାଇଥିଲା । ସମସ୍ତେ ମଥୁରା ଫେରିବାକୁ ବ୍ୟଗ୍ର, ସେଥିପାଇଁ କଥାବାର୍ତ୍ତା, ଆୟୋଜନ । ଖାଇବା ସମୟରେ ଜରାସନ୍ଧଙ୍କର କିଛି ଲୋକ ଆସି ବୁଝାବୁଝି କରୁଥାନ୍ତି । କଂସ ବି ଆସିଲା, କିଛି ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କଲା, କଅଣ ସବୁ ବନ୍ଦୋବସ୍ତ ହୋଇଛି, ଆଉ କ'ଣ ଦରକାର, ପଚରାପଚରି କଲା, ଦେଖିଲା, ଫେରିଗଲା । ବାଟରେ ପନ୍ଦର କୋଡ଼ିଏ ଦିନ ଯିବ, ରହି ରହି ଯିବାକୁ ହେବ, ଖାଇବା ପିଇବା ଜିନିଷ ସବୁ ସାଙ୍ଗରେ ଯିବ, କିଛି ସୈନ୍ୟ ସାମନ୍ତ ବି । ଅରିନ୍ଦମର ମନେ ହେଲା କଂସ ଆସି ବୁଝାବୁଝି କଲେ ବି, ସବୁ ଆୟୋଜନ ଜରାସନ୍ଧଙ୍କର । ସେ ଚାହାନ୍ତି ନାହିଁ ମଥୁରା ଲୋକଙ୍କର ଘରକୁ ଫେରିବାରେ କିଛି ଅସୁବିଧା ହେଉ । ସମସ୍ତେ ଯେପରି ଭାବନ୍ତି ସେ କେଡ଼େ ଉପକାରୀ, କେଡ଼େ ମହାନ୍ । ମଥୁରା ଶିବିରରେ ବି ସେହି ଆଲୋଚନା, କଂସ ବିଷୟରେ ନୁହେଁ, ଜରାସନ୍ଧଙ୍କର

ବିଷୟରେ । ସେ ଚକ୍ରବର୍ତ୍ତୀ ହେବା ଯୋଗ୍ୟ ଲୋକ, ସମ୍ରାଟ ହେବା ଯୋଗ୍ୟ ଲୋକ । ମଥୁରାର ଭାଗ୍ୟ ଯେ ମଥୁରା ସହିତ ତାଙ୍କର ସମ୍ବନ୍ଧ ହେଲା ।

କିନ୍ତୁ ଗୋଟାଏ କଥା ଅରିନ୍ଦମ ମନକୁ ଘୂରି ଘୂରି ଆସୁଥାଏ । ଗତକାଲି ନିଶ୍ଚୟ କିଛି ଘଟିଛି । କଅଣ ଘଟିଛି ଠିକ୍ ନ ଜାଣିଲେ ବି, ସେ ଭାନୁପ୍ରକାଶ ପ୍ରଭୃତିଙ୍କ କଥାରେ କିଛି କିଛି ଆଭାସ ପାଇଥିଲା । ଆଉ ସେଥିରେ ଭାନୁପ୍ରକାଶଙ୍କ ଲୋକେ ସଂଶ୍ଳିଷ୍ଟ ଏକଥା ବି ସେ ବୁଝି ପାରିଥିଲା । ଯାହା ବା ଘଟିଛି ସେ ଜରାସନ୍ଧଙ୍କ ସପକ୍ଷରେ ନୁହେଁ, ନିଶ୍ଚୟ ବିପକ୍ଷରେ । କିନ୍ତୁ ଚାରିପାଖକୁ ଦେଖିଲେ ମନେ ହେବ ଯେମିତି କିଛି ନୁହେଁ, କିଛି ଘଟିନି, ବା ଯାହା ବା ଘଟିଛି ସେ ଜରାସନ୍ଧଙ୍କ ପାଇଁ ଅତି ତୁଚ୍ଛ, ସେ ବିଷୟରେ ବ୍ୟସ୍ତ ହବା ତ ଦୂରର କଥା, ସାଧାରଣ ଭାବରେ କଥାବାର୍ତ୍ତା ହେବା ବି ଦରକାର ନାହିଁ । ସମସ୍ତେ ଆସୁଛନ୍ତି ଯାଉଛନ୍ତି, ସ୍ୱାଭାବିକ ଭାବରେ ଆୟୋଜନ ହେଉଛି । ଆଗ ଦିନ ସବୁ ଯେମିତି ଏ ସେମିତି । ଅରିନ୍ଦମ ଚୁପ ରହି ଟିକିଏ ଭାବିଲା । ଉପରୁ ବୁଝି ହେଉନି ଠିକ୍, କିନ୍ତୁ କେମିତି ଟିକିଏ ଅଡୁଆ ଲାଗୁଛି । ସେମାନେ ଏତେ ଦିନ ହେଲା ଆସିଲେଣି, କାଇଁ, ଜରାସନ୍ଧଙ୍କର ଲୋକମାନଙ୍କର ତ ଏତେ ଆଗ୍ରହ ନ ଥିଲା । ଆଜି ସେମାନଙ୍କ ପାଇଁ ଏତେ ଆଗ୍ରହ କାହିଁକି ? ସେମାନେ ଦି ଦିନ ଭିତରେ ଫେରିଯାଉଛନ୍ତି, ସେଥିପାଇଁ ? ନାଁ କଂସ ଜୋଇଁ ହେଲା ସେଥିପାଇଁ ? ମଥୁରା ଲୋକଙ୍କୁ ଏତେ ସମ୍ମାନ, ଏତେ ଆପଣାର ପରି ବ୍ୟବହାର ? ନା ଜରାସନ୍ଧ ମଥୁରା ଲୋକଙ୍କ ପାଖରୁ କିଛି କଥା ଲୁଚେଇ ରଖିବାକୁ ଚାହୁଁଛନ୍ତି, ସେଥିପାଇଁ, ନା ଆଉ କିଛି ? ଅରିନ୍ଦମର ମନେହେଲା ତା'ର ମନଟା ଯେମିତି ଆଉଲଚାଉଲ ହୋଇଯାଉଛି । ସେ ମନକୁ ସ୍ଥିର କରିବାକୁ ଚେଷ୍ଟା କଲା । ଜରାସନ୍ଧଙ୍କ ପରି ଦୁର୍ଦ୍ଦାନ୍ତ ରାଜାଙ୍କ ରାଜ୍ୟରେ ସେ ଯେ ଠିକ୍ ଅଛି ଏ କଥା କମ ? ଖଣ୍ଡା କେବେ ମୁଣ୍ଡ ଉପରେ ପଡ଼ିବ ସେ ବଡ଼ କଥା ନୁହେଁ । ଖଣ୍ଡାଟା ଯେ ରହିଛି, ଯେକୌଣସି ସମୟରେ ମୁଣ୍ଡରେ ପଡ଼ିପାରେ ଏଇଟା ହିଁ ଭୟ । ଖିଆପିଆ ସରିଗଲାଣି । ବାହାରେ ଖରାର ତେଜ ମଉଳି ଆସିଲାଣି । ଭାବିଲା ଟିକେ ଗଡ଼ପଡ଼ ହେବ କି ? ହଠାତ୍ ତା'ର ଗୋପାଙ୍କ କଥା ମନେ ପଡ଼ିଲା । ଗୋପା ତାକୁ ଖରା କମି ଆସିଲେ ଗୌରୀମା'ଙ୍କ ମନ୍ଦିରକୁ ଯିବାକୁ କହିଛନ୍ତି । ସେ ଶିବିରରୁ ବାହାରି ଆସି ଗୌରୀମା'ଙ୍କ ମନ୍ଦିରକୁ ଯିବାକୁ ପାଖ ଜଙ୍ଗଲ ରାସ୍ତାରେ ପଶିଲା ।

ମଗଧ ବିଷୟରେ ସେ ଆଗରୁ କଅଣ ଜାଣିଥିଲା, ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ନାଁ, ପ୍ରାୟ କିଛି ନୁହେଁ । ମଗଧ ଗୋଟାଏ ଶକ୍ତିଶାଳୀ ରାଜ୍ୟ ଓ ଜରାସନ୍ଧ ବେଶ ବଡ଼ ରାଜା, ବାସ୍ ଏତିକି । କିନ୍ତୁ ଜରାସନ୍ଧ କେବେ ମଥୁରା ଆକ୍ରମଣ

କରିନାହାନ୍ତି, ଆଉ ଜରାସନ୍ଧଙ୍କ ବିଷୟରେ ଉଗ୍ରସେନ ବା ଅନ୍ୟ ମୁଖ୍ୟମାନେ କେହି ବିଶେଷ ଭାବିବା ସେ ଦେଖିନି । ତେଣୁ କଂସକୁ ମଗଧ ଯିବାପାଇଁ ଯେତେବେଳେ ଜରାସନ୍ଧଙ୍କ ପାଖରୁ ଖବର ଆସିଲା, ସମସ୍ତେ ରାଜି ହୋଇଗଲେ, ଆଉ କଂସ ସାଙ୍ଗରେ କିଏ କିଏ ଯିବେ ତା' ବି ଠିକ୍ ହୋଇଗଲା । ସେ ବାପାଙ୍କୁ କିଛି କହିବା ଆଗରୁ ବାପା ତାଙ୍କ ଆଡୁ ଅରିନ୍ଦମକୁ କହିଥିଲେ, 'ଅରିନ୍ଦମ, ତୁ କଂସ ସାଙ୍ଗରେ ଯା । ଗିରିବ୍ରଜ ଭଲ ଜାଗା, ମହାକାଳଙ୍କ ମନ୍ଦିର ଅଛି, ଯା, ବୁଲାବୁଲି କରି ଦେଖାଦେଖି କରି ଆ ।' ସେ ଖାଲି ବାପାଙ୍କୁ ପଚାରିଥିଲା - ଜରାସନ୍ଧ କ'ଣ ବଡ଼ ରାଜା ? ବାପା କହିଥିଲେ, 'ହଁ ବଡ଼ । ବେସ୍ ବଡ଼ । ଆର୍ଯ୍ୟାବର୍ତ୍ତର ପ୍ରାୟ ସବୁ ରାଜା ତାଙ୍କୁ ଡରନ୍ତି ।' ଅରିନ୍ଦମ ଯେଉଁକଥା ପଚାରିବାକୁ ଚାହୁଁଥିଲା, ପଚାରିଲା, କହିଲା, 'କିନ୍ତୁ ଜରାସନ୍ଧ ତ କେବେ ମଥୁରା ଆକ୍ରମଣ କରି ନାହାନ୍ତି ?' 'ନାଁ, ବାପା କହିଥିଲେ, ତା'ର ଦରକାର ହବନି, ମଥୁରା ତାଙ୍କୁ ମାନି ନବ' । ବାଶ୍, ସେତିକି, ବାପା ଆଉ କିଛି କହିଲେନି । କେବଳ ଆସିବା ସମୟରେ କହିଥିଲେ 'ସାବଧାନ ରହିବୁ ।' ସେ ଏବେ ବୁଝୁଛି ବାପାଙ୍କ କଥାର ମାନେ କଅଣ । ବାପା ବୋଧହୁଏ କଂସ ସାଙ୍ଗରେ ଏହିପରି ଗୋଟାଏ ସମ୍ବନ୍ଧ ହେବ ବୁଝିପାରିଥିଲେ । ଆଉ ଏ ସମ୍ବନ୍ଧର ଭବିଷ୍ୟତ କଅଣ ତା ବି ବୋଧେ ଦେଖି ପାରିଥିଲେ । ଜରାସନ୍ଧଙ୍କ ବିଷୟରେ ନିଶ୍ଚୟ ତାଙ୍କର ଭଲ ଧାରଣା ନ ଥିଲା । ଅରିନ୍ଦମ ଭାବିଲା, ବାପା ଅନେକ କଥା ବୁଝିପାରନ୍ତି, କିନ୍ତୁ ଅଳ୍ପ କହନ୍ତି, ଆଉ ଯାହା କହନ୍ତି ସେ ଭବିଷ୍ୟତ କଥା ପରି । ସେ ବାରମ୍ବାର ଦେଖିଛି ତାହାହିଁ ଘଟିଛି । ସେ ମଥୁରା ଉଗ୍ରସେନଙ୍କ ବିଷୟରେ ହେଉ ବା ଜରାସନ୍ଧ କଂସ ବିଷୟରେ ହେଉ ।

ଗୌରୀମା'ଙ୍କ ମନ୍ଦିରକୁ ଗୋପା ଏକା ଆସିବେ ବୋଲି ସେ ଭାବିଥିଲା । ଗୋପା ତ ଆସିଥିଲେ, କିନ୍ତୁ ଭାନୁପ୍ରକାଶ ବି ଆସିଥିଲେ ଓ ଆଉ ଦି' ତିନି ଜଣ ଲୋକ, ଯାହାଙ୍କୁ ସେ ଆଗରୁ ଆଦୌ ଦେଖି ନ ଥିଲା । ସେ ନମସ୍କାର କରି ଭାନୁପ୍ରକାଶଙ୍କ ପାଖରେ ଯାଇ ବସିଲା । ଭାନୁପ୍ରକାଶ ପ୍ରଥମେ କଥା କହିଲେ । କହିଲେ, 'ଅରିନ୍ଦମ ଆମେ ତମକୁ ଅପେକ୍ଷା କରୁଥିଲୁ । ତୁମ୍ଭେମାନେ ତ ଆସନ୍ତା କାଲି ଫେରିବ । ମଥୁରାରେ ପହଞ୍ଚିବାକୁ ପ୍ରାୟ ପନ୍ଦର ଦିନ ଲାଗିଯାଇପାରେ । କିନ୍ତୁ ଭୟର କିଛି ନାହିଁ । ତୁମେ ସବୁ ଯିବା ପାଇଁ ଜରାସନ୍ଧ ବାଟେ ବାଟେ ସବୁ ବନ୍ଦୋବସ୍ତ କରିଛି ।' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, କହିଲା - 'ଆମେ ଆସିଲା ବେଳେ ଯେଉଁ ବାଟରେ ଆସିଥିଲୁ, ସେହି ବାଟରେ ତ ଯିବୁ । ସେହି ତ ବାଟ । କାଶୀ ପାଞ୍ଚାଳ ଭିତର ଦେଇ । ରାସ୍ତା ମୋଟାମୋଟି ସୁରକ୍ଷିତ । ଜରାସନ୍ଧ ତାଙ୍କର ଝିଅ ଜୋଇଁଙ୍କ

ପାଇଁ ଯାହା କରିବେ । କିନ୍ତୁ ଆମ ପାଇଁ... ? ଟିକେ ଆଶ୍ଚର୍ଯ୍ୟ ଲାଗୁଛି ।' ଭାନୁପ୍ରକାଶ ହସିଲେ, କହିଲେ – 'କିହୋ, ତୁମେମାନେ ପରା ଜୋଗଙ୍କ ଲୋକ । କିନ୍ତୁ କଥା ସେଠି ନୁହେଁ । ବିନା ଯୁଦ୍ଧରେ ମଥୁରା ପରି ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଆର୍ଯ୍ୟ ରାଜ୍ୟ ଜରାସନ୍ଧ ଅଧୀନକୁ ଚାଲି ଆସିଲା ଯେଉଁଠୁ କୁରୁମାନଙ୍କର ହସ୍ତିନାପୁର ବା ପାଞ୍ଚାଳମାନଙ୍କର କାମ୍ପିଲ୍ୟ ବେଶୀ ଦୂର ନୁହେଁ ।'

'ଅଧୀନକୁ ଚାଲି ଆସିବା ମାନେ... ?' ଅରିନ୍ଦମ ସଂକୋଚରେ ପଚାରିଲା । 'ମାନେ ସହଜ', ଭାନୁପ୍ରକାଶ କହିଲେ, 'ତୁମେ କ'ଣ ଭାବୁଛ ଏ ବାହାଘରଟା ବାହାଘର ପାଇଁ ହେଲା ? ଜଣେ ଉଦାର ହୃଦୟ କନ୍ୟାବତ୍ସଳ ପିତା ନିଜର କନ୍ୟାଙ୍କୁ ମଥୁରା ରାଜ୍ୟର ପ୍ରସିଦ୍ଧ ଯୁବରାଜ କଂସଙ୍କ ହାତରେ ଦେଲେ । କାରଣ ସେମାନେ ସୁଖଶାନ୍ତି ଓ ଗୌରବରେ ରହିପାରିବେ । ନାଁ, ତା ନୁହେଁ । ଏ ବିଭାଘର ପୂରାପୂରି ରାଜନୈତିକ ବିବାହ । ଅର୍ଥାତ୍ ଜରାସନ୍ଧର ଅଧିକରୁ ଅଧିକ ରାଜ୍ୟ ଜୟ କରିବାର ଯୋଜନାରେ ତା'ର ଦୁଇ ଝିଅକୁ ବଳି ପକାଗଲା । କଂସ ଜରାସନ୍ଧର କେବଳ ଅନୁଗତ ହୋଇ ରହିବ ନାହିଁ, ସେ ଜରାସନ୍ଧର ସେନାପତି ହେବ, ଜରାସନ୍ଧ ପାଇଁ ରାଜ୍ୟ ଜୟ କରିବ । ହସ୍ତିନାପୁର ବା ପାଞ୍ଚାଳ କଥା ନୁହେଁ, ତା ବାହାରେ ଆହୁରି ବହୁତ ରାଜ୍ୟ ଅଛି । ସେସବୁ ରାଜ୍ୟକୁ ଚକ୍ରବର୍ତ୍ତୀ ଜରାସନ୍ଧ ନିଜେ ଯିବାକୁ ଚାହାନ୍ତି ନାହିଁ । କଂସ ସେସବୁ ରାଜ୍ୟ ଜୟ କରିପାରିବ, ଓ ରାଜାମାନଙ୍କୁ ଜରାସନ୍ଧର ଯଜ୍ଞର ପୂର୍ଣ୍ଣାହୁତି ପାଇଁ ବନ୍ଦୀ କରି ଆଣିପାରିବ ।'

'ଏ ତ ଭୟଙ୍କର କଥା' ଅରିନ୍ଦମ ଆସ୍ତେ ଆସ୍ତେ କହିଲା ।

'ନାଁ, ଭୟଙ୍କର କଥା ନୁହେଁ, ଭୟଙ୍କର କଥାର ଆରମ୍ଭ', ଭାନୁପ୍ରକାଶ କହିଲେ । 'ଏତେ ଆଡ଼ମ୍ବର କରି, ଏତେ ରାଜ୍ୟର ଲୋକଙ୍କୁ ନିମନ୍ତ୍ରଣ କରି, ଏ ମଲ୍ଲ କୁସ୍ତିର ଆୟୋଜନ କରାଗଲା କାହିଁକି ? ତୁମେ କ'ଣ ଭାବୁଛ ଜରାସନ୍ଧର କିଛି ଉଦ୍ଦେଶ୍ୟ ନାହିଁ ? ଉଦ୍ଦେଶ୍ୟ ତ ସ୍ପଷ୍ଟ । କଂସକୁ ସାମ୍ନାକୁ ଆଣିବା । କଂସ ଯେ ମଲ୍ଲ କୁସ୍ତିରେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଯୋଦ୍ଧା ଏକଥା ସମସ୍ତଙ୍କୁ ଜଣେଇ ଦେବା । ଏହାହିଁ ପ୍ରଥମ କାମ, ନିଜର ଦି' ଝିଅଙ୍କୁ କଂସକୁ ବିଭା କରେଇବା ହେଲା ଦ୍ୱିତୀୟ କାମ । ବର୍ତ୍ତମାନ ତୃତୀୟ କାମର ଆରମ୍ଭ ।'

'ତୃତୀୟ କାମ... ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ- 'ବର୍ତ୍ତମାନ କାମ ଗିରିବ୍ରଜ ଓ ମଗଧରୁ ମଥୁରାକୁ ଘୁଞ୍ଚିଯିବ । କଂସ ମଥୁରାର ରାଜା ହେବ ।'

'ମଥୁରାର ରାଜା... ? ଉଗ୍ରସେନ... ?' ଅରିନ୍ଦମ କହିଲା ।

'ହଁ, ମଥୁରାର ରାଜା, ଏକଥା ମୁଁ ତୁମକୁ ଆଗରୁ କହିଥିଲି, ଆଉଥରେ କହେ । ଉଗ୍ରସେନ ପଶାଖେଳର ଗୋଟି, ଧରି ନିଅ ସେ ଆଉ ରାଜା ନୁହନ୍ତି । କଂସ ମଥୁରାକୁ ଫେରିବା ପରେ ପରେ ରାଜା ହେବ । ଏହାହିଁ ବର୍ତ୍ତମାନ ସ୍ଥିର । କିଛି ଆଗରୁ ତୁମେ ଆଶ୍ଚର୍ଯ୍ୟ ହେଉଥିଲ, ତୁମମାନଙ୍କର ଏତେ ଯତ୍ନ କାହିଁକି ନିଆଯାଉଛି । କାରଣ ବୁଝିଲ ତ ? ମଥୁରାରେ ରାଜଗାଦି ବଦଳିଯିବ, ଆଉ ତୁମେ କଂସ ସପକ୍ଷରେ ରହିବ, ଏଇଟା ହିଁ କାରଣ ।'

'କିନ୍ତୁ ମୁଖିଆମାନେ ରାଜି ହେବେ ତ ?...' ଅରିନ୍ଦମ ସନ୍ଦେହ କଲା ।

'ହଁ, ହେବେ ।' ଭାନୁପ୍ରକାଶ ହସିଲେ, 'ଖବର ନେଇ ଲୋକ ମଥୁରା ଚାଲିଗଲେଣି । ପ୍ରବଳ ପ୍ରତାପୀ ଚକ୍ରବର୍ତ୍ତୀ ଜରାସନ୍ଧଙ୍କୁ ଅମାନ୍ୟ କରିବ କିଏ ? ତାଙ୍କ କଥା ଚୁପ୍‌ଚାପ୍ ମାନିଗଲେ ଅନେକ ଲାଭ ଅଛି । ତୁମ୍ଭେମାନେ କାଲି ଯାଉଛ । ତୁମମାନଙ୍କ ସାଙ୍ଗରେ ଜରାସନ୍ଧଙ୍କ ଲୋକ ବି ଯିବେ । କିଛି ଦିନ ପରେ ଯେତେବେଳେ କଂସ ସସ୍ତ୍ରୀକ ଫେରିବ, ତା' ସାଙ୍ଗରେ ଲୋକ ନୁହନ୍ତି, ସୈନ୍ୟସାମନ୍ତ ଯିବେ, ଜରାସନ୍ଧଙ୍କର ନିଜର ଦେହରକ୍ଷୀ ସୈନ୍ୟମାନେ ।'

'ଦେହରକ୍ଷୀମାନେ, ସେଇ କୁସ୍ତି ଆଖଡ଼ାରେ ଯେଉଁମାନେ... ?' ଅରିନ୍ଦମ ପଚାରିଲା ।

'ହଁ ହଁ, ସେଇମାନେ ।' ଭାନୁପ୍ରକାଶ କହିଲେ, 'ସେମାନେ ମଗଧର ଲୋକ ନୁହନ୍ତି, ଉତ୍ତରରୁ ହିମାଳୟ ସେ ପାଖରୁ ଆସିଛନ୍ତି । ସେମାନେ ଜରାସନ୍ଧର ନିଜ ଲୋକ । ଜରାସନ୍ଧର ଇଙ୍ଗିତରେ ପିମ୍ପୁଡ଼ିକୁ ଦଳିଦେଲା ଭଳି ଲୋକଙ୍କୁ ମାରିଦେବା ତାଙ୍କର ପିଲାଖେଳ । ଅତ୍ୟନ୍ତ ନିଷ୍ଠୁର, ନୃଶଂସ । ସେହିମାନେ ହିଁ କଂସ ସାଙ୍ଗରେ ମଥୁରାକୁ ଯିବେ ଓ ସେଠି ରହିବେ ।'

'କିନ୍ତୁ ଆପଣ ଜାଣନ୍ତି, ମଥୁରାର ଲୋକମାନେ ନିଜ ନିଜ ଭିତରେ ବହୁତ ସ୍ୱାଧୀନ । ଉଗ୍ରସେନ ସିନା ରାଜା, ହେଲେ ସବୁ ମୁଖିଆମାନେ ମିଳିମିଶି ସବୁ ନିଷ୍ପତ୍ତି ନିଅନ୍ତି ।' ଅରିନ୍ଦମ କହିଲା ।

'ହଁ, ଜାଣେ', ଭାନୁପ୍ରକାଶ କହିଲେ, 'କିନ୍ତୁ ସେ ଢଙ୍ଗ ଭାଙ୍ଗିଯିବ । କଂସ ରାଜା ହେବ, ଠିକ୍ ରାଜା ପରି । ଆଉ ମୁଖିଆମାନଙ୍କର ନିଷ୍ପତ୍ତି ନୁହେଁ, କଂସର ନିଷ୍ପତ୍ତି ହିଁ ମଥୁରାରେ ଚାଲିବ ।'

'ମୁଖିଆମାନେ କ'ଣ ରାଜି ହେବେ... ?' ଅରିନ୍ଦମ କହିଲା ।

ଭାନୁପ୍ରକାଶ ପୁଣି ହସିଲେ । କହିଲେ, 'ରାଜି ନ ହେଲେ, ତୁମେ କୁସ୍ତି ଆଖଡ଼ାରେ ପାଞ୍ଚାଳ ଯୋଦ୍ଧା ସୂର୍ଯ୍ୟସଂକାଶକୁ ଦେଖିଛ । ତା'ରି ଅବସ୍ଥା ହେବ ।


Digitized by srujanika@gmail.com

ଜରାସନ୍ଧର ଦେହରକ୍ଷୀ ସୈନ୍ୟମାନେ କଂସ ସାଙ୍ଗରେ ଯାଉଛନ୍ତି କାହିଁକି ? ତୁମେ କ'ଣ ଭାବୁଛ ମଥୁରାରେ ଆରାମରେ ରହିବା ପାଇଁ ?'

ଅରିନ୍ଦମର ଦେହ ଶିରଶିରେଇ ଉଠିଲା । ସେ ଆସ୍ତେ ଆସ୍ତେ କହିଲା, 'ଏ କ'ଣ ସମ୍ଭବ ?'

'ଏ କଅଣ ସମ୍ଭବ ଅସମ୍ଭବର କଥା ଅରିନ୍ଦମ ?' ଭାନୁପ୍ରକାଶ କହିଲେ । ତାଙ୍କ ହାସ୍ୟୋଜ୍ଜଳ ମୁହଁ ଗମ୍ଭୀର ହୋଇଯାଇଛି । ସେ ଟିକିଏ ରହି କଅଣ ଭାବିଲେ, ତା'ପରେ କହିଲେ, 'ଏ ତୁମ ଆମର କଥା ନୁହେଁ, ବା କେବଳ ମଗଧ ବା ମଥୁରା କଥା ନୁହେଁ, ଯଦିଚ ଯେତେବେଳେ ଅଘଟଣ ଘଟେ ଆମେ ହିଁ, ଅର୍ଥାତ୍ ଲୋକମାନେ ହିଁ ବେଶୀ ଭୋଗନ୍ତି । ଏ ଲୋଭର କଥା, କ୍ଷମତାର କଥା, ସ୍ୱାର୍ଥର କଥା । ଯେତେବେଳେ ଆର୍ଯ୍ୟ ବସତି ସବୁ ଆରମ୍ଭ ହେଲା ସେତେବେଳେ ହୁଏତ ଲୋକେ ମିଳିମିଶି ଭଲମନ୍ଦ ଭାବି ସବୁ କାର୍ଯ୍ୟ ପାଇଁ ମିଳିତ ନିଷ୍ପତ୍ତି ନେଉଥିଲେ । ବର୍ତ୍ତମାନ ତା ନୁହେଁ । ଆମେ ହିଁ ଆମର ସୁବିଧା ପାଇଁ ରାଜବଂଶ ତିଆରି କରିଛେ, ରାଜାଙ୍କୁ ଆଣି ଆମ ଉପରେ ବସେଇଛେ । କିନ୍ତୁ ହେଲା କ'ଣ ? ଯେଉଁମାନେ କ୍ଷମତାକୁ ଆସିଲେ ସେମାନେ ଯେଉଁମାନେ ତାଙ୍କୁ କ୍ଷମତାକୁ ଆଣିଲେ ସେମାନଙ୍କ କଥା ଭୁଲିଗଲେ । ଯାହା ରହିଲା ସେ ବ୍ୟକ୍ତିର ସ୍ୱାର୍ଥ, ବ୍ୟକ୍ତିର ବିଳାସ । ତୁମେ ଆର୍ଯ୍ୟାବର୍ତ୍ତରେ କ୍ୱଚିତ ରାଜ୍ୟ ପାଇବ ଯେଉଁଠି ରାଜାମାନେ ପ୍ରଜାଙ୍କ ବିରୋଧୀ ନୁହନ୍ତି, ପ୍ରଜାଙ୍କ ସ୍ୱାର୍ଥ ନିଜର ସ୍ୱାର୍ଥ ବୋଲି ଭାବନ୍ତି । ଅଧିକାଂଶ ଏଇ ଜରାସନ୍ଧ ପରି । ଅଧାର୍ମିକ, ଅତ୍ୟାଚାରୀ, ଅତ୍ୟନ୍ତ ସ୍ୱାର୍ଥପର । ବର୍ତ୍ତମାନ ରାଜଧର୍ମ କହିଲେ ବ୍ୟକ୍ତି ଧର୍ମ, ବଂଶ ଧର୍ମ । ଏପରି ଭାବରେ ଦେଶ ରହିବ ନାହିଁ ।'

ଭାନୁପ୍ରକାଶ ଚୁପ୍ କରିଗଲେ, ଅନ୍ୟମାନେ ବି ଚୁପ୍ । ଅରିନ୍ଦମ ଦେଖିଲା ଭାନୁପ୍ରକାଶ ସେଠି ଥାଇ ବି ନ ଥିଲା ପରି । ଅରିନ୍ଦମ ଭାବିଲା ଭାନୁପ୍ରକାଶଙ୍କ ପରି ବୁଦ୍ଧିମାନ, ଦମ୍ଭ ଲୋକ କ'ଣ ଭାବୁଛନ୍ତି ? କେଉଁ ଦୂର ଭବିଷ୍ୟତର କଥା ।

ସେତେବେଳକୁ ସନ୍ଧ୍ୟା ଆସିଗଲାଣି । ମନ୍ଦିରରେ ଦୀପ ଲାଗିଲାଣି ଓ ସନ୍ଧ୍ୟା ଆରତି ପାଇଁ ପୂଜକ ପ୍ରସ୍ତୁତ ହେଉଥାନ୍ତି । ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ଗୋପା ତୁମକୁ ଏଠିକୁ ଆସିବାକୁ କହିଥିଲେ । ସେ ତୁମ ସାଙ୍ଗରେ କଥାବାର୍ତ୍ତା ହେବେ । କିନ୍ତୁ ତା ଆଗରୁ ଆମର ଆଉ ଦୁଇଜଣ ବନ୍ଧୁ ଆସିଛନ୍ତି । ସେମାନେ ବି ମଥୁରା ଯିବେ । ନାଇଁ, ନାଇଁ ତୁମମାନଙ୍କ ସାଙ୍ଗରେ ନୁହେଁ, ଅଲଗା । ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା ହୁଅ । ଭାନୁପ୍ରକାଶଙ୍କ ପଛ ପାଖକୁ ବସିଥିବା ସେ ଆଗରୁ ଦେଖି ନ ଥିବା ଲୋକ ଦି'ଜଣଙ୍କ ବିଷୟରେ ଅରିନ୍ଦମ ସଚେତ ହେଲା । ଉଭୟ ସୁପୁରୁଷ, ପୁଷ୍ଟ ଶରୀର,

ମନେହେଉଛି ଦୀର୍ଘକାୟ । ଉଭୟ ବେଶ ସପ୍ରତିଭ ହୋଇ ବସିଥିଲେ । ଭାନୁପ୍ରକାଶ କହିଲେ, 'ଉଭୟଙ୍କୁ ଭଲ କରି ଚିହ୍ନ । ଆମ ଅନୁଷ୍ଠାନର ପୁରୁଣା ଲୋକ । ଅନେକ ଆଡ଼େ କାମ କରିଛନ୍ତି । ଆନୁଷ୍ଠାନିକ ନାଁ ଜିତ ଓ ଜୟ । ତୁମେ ମଥୁରା ପହଞ୍ଚିବା ଆଗରୁ ସେମାନେ ମଥୁରା ପହଞ୍ଚି ସାରିଥିବେ । ସେମାନେ ମଥୁରା କାମର ଦାୟିତ୍ୱରେ ରହିବେ ।' ଅରିନ୍ଦମ ଉଠିଯାଇ ସେମାନଙ୍କ ପାଖରେ ବସିଲା । ଜିତ ପ୍ରଥମେ କହିଲେ, 'ଆମେ ମଥୁରା ଅନେକ ଥର ଯାଇଛୁ । ଏବେ ତୁମେ ଗିରିବ୍ରଜ ଆସିବା ପରେ ବି ଯାଇଥିଲୁ । ତୁମ ଘରକୁ ବି ଯାଇଛୁ । ତୁମ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା ହୋଇଛି । ତୁମେ ଆଉ ବେଶିଦିନ ଗିରିବ୍ରଜରେ ରହିବା ତାଙ୍କର ଇଚ୍ଛା ନୁହେଁ । ସେ ତୁମର ଫେରିବାକୁ ଅପେକ୍ଷା କରିଛନ୍ତି ।'

ଭାନୁପ୍ରକାଶ ଯୋଗ ଦେଲେ । କହିଲେ, 'ଜିତଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ଲାଗୁଛି କି ଅରିନ୍ଦମ ? ନାହିଁ, ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମଥୁରା ବିଷୟରେ ସେମାନେ ଅନେକ କଥା ଜାଣନ୍ତି, ଯାହାକି ତୁମେ ଜାଣନା । ତୁମେ ବୋଧେ ଭାବୁଛ କଂସର ଜରାସନ୍ଧ ସହିତ ଏଇ ପ୍ରଥମ ପରିଚୟ ହେଲା । ନାଁ, ଅନେକ ଆଗରୁ ସମ୍ପର୍କ ରହିଛି, ଅନେକ ଆଗରୁ କଂସ ଯେ ଜରାସନ୍ଧର ଜୋଇଁ ହେବ ଏକଥା ତାକୁ କୁହାଯାଇଛି ଓ କଂସ ମଥୁରାକୁ ଫେରିବା ପରେ କ'ଣ କ'ଣ ହେବ ସେକଥା ବି ଠିକ୍ ହୋଇସାରିଛି । ତୁମେ କଅଣ ଜାଣ ତୁମର କେତେ ମୁଖିଆ ଲୋକ ଜରାସନ୍ଧର ଲୋକ ? ଯାହା ଘଟଣା ଘଟୁ ସେମାନେ ସବୁବେଳେ କଂସ ପାଖରେ ଛିଡ଼ା ହେବେ । ତୁମେମାନେ ଜାଣି ପାରିବ ନାହିଁ । ଭାବିବ ସେମାନେ କଂସର ବିରୋଧୀ, ତା ନୁହେଁ ।' ଭାନୁପ୍ରକାଶ ଜିତଙ୍କ ଆଡ଼କୁ ବୁଲି ପଡ଼ିଲେ, କହିଲେ, 'ଜିତ୍, ତୁମେ କୁହ ।'

ଜିତ କହିବାକୁ ଆରମ୍ଭ କଲେ । ସମସ୍ତେ ଚୁପ୍, ଅରିନ୍ଦମ ବି ଚୁପହୋଇ ଶୁଣୁଥାଏ । ତା'ର ମନେହେଲା ଏ କି ବିବରଣୀ ! ମଥୁରାରେ ସେ ଷୋଳ ସତର ବର୍ଷ କଟେଇ ସାରିଲାଣି । ମଥୁରା ତା' ନିଜ ଜାଗା । ମଥୁରାର ନଈ, ପାଣି, ପବନ, ଗଛ ବୃକ୍ଷ, ପଶୁପକ୍ଷୀ ସମସ୍ତଙ୍କ ସହିତ ସେ ପରିଚିତ । ମଥୁରାର ବି କେତେ ଲୋକ - ଦାଦି, ମଉସା, ମାମୁଁ, ଭାଇ, ଅପା, ଅଜା - କେତେ ନାଁରେ ସେ ସମସ୍ତଙ୍କୁ ଜାଣିଛି । କିନ୍ତୁ ସେ ମଥୁରାର ଲୋକମାନଙ୍କୁ ଏମିତି ତ କେବେ ଜାଣିନି । ଏତେ ଟିକିନିଖି ବିବରଣୀ । ଜିତ ଯେମିତି ମଥୁରାର ପାଣି ପବନରେ ମିଶି ଯାଇଛନ୍ତି, ଘର ଘର କରି ସମସ୍ତଙ୍କୁ ଜାଣନ୍ତି, ଚିହ୍ନନ୍ତି । ଜିତ ଆଗରେ ଯେମିତି ସମସ୍ତେ ଧାଡ଼ି କରି ଚାଲି ଯାଉଛନ୍ତି, ଜଣେ ପରେ ଜଣେ । ଏ ସମସ୍ତେ ତା'ର ଚିହ୍ନା ମଥୁରାର ଲୋକ !


Digitized by srujanika@gmail.com

ଆଶ୍ଚର୍ଯ୍ୟ ! ଏମାନଙ୍କୁ ତ ସେ କାହାକୁ ଚିହ୍ନି ନାହିଁ । ତା'ର ମନେହେଲା ଯେପରି ଦେହ ଉପରର ଚମଡ଼ାଟା ଖସିଗଲାଣି । ସେ ଯାହା ଦେଖୁଛି କେବଳ କଙ୍କାଳ ମାଳ ମାଳ । ଜିତ କହୁଥାନ୍ତି – 'ମଥୁରା ବଦଳୁଛି, ଖୁବ୍ ଶୀଘ୍ର ବଦଳୁଛି । ବୟସ୍କ ଲୋକ, ତରୁଣ ଲୋକଙ୍କ ଭିତରେ ବହୁତ ପ୍ରଭେଦ । ବୟସ୍କ ଲୋକେ ପୁରୁଣା ଆର୍ଯ୍ୟ ରୀତି ନୀତି କଥା ଭାବୁଛନ୍ତି । ସେମାନଙ୍କର ଇଚ୍ଛା ସମାଜ ସେହି ରୀତିନୀତିରେ ଚାଲୁ । ସମସ୍ତେ ନ ହେଲେ ବି ବେଶ କିଛି ଲୋକ ଉଗ୍ରସେନଙ୍କୁ ସମର୍ଥନ କରନ୍ତି । ସେମାନେ ଭାବନ୍ତି ଉଗ୍ରସେନ ଆଦର୍ଶ ରାଜା ଯେ କି ସବୁ କଥାରେ ଲୋକମାନଙ୍କ ସହିତ ଆଲୋଚନା କରି, ସେମାନଙ୍କର ମତାମତ ନେଇ ନିଷ୍ପତ୍ତି ନିଅନ୍ତି । ସେ ମୁଖିଆଙ୍କ ସହିତ ଏକାଠି ରହିଛନ୍ତି, ସେମାନଙ୍କୁ ସମ୍ମାନ ଦିଅନ୍ତି । କିନ୍ତୁ ତରୁଣମାନଙ୍କ କଥା ଅଲଗା । ସେମାନେ ଅଧିକାଂଶ ନୂଆ ଭାବରେ ଚଳିବାକୁ ଚାହାନ୍ତି । ବିଶେଷ କରି ସେମାନେ ନିଜ ନିଜ ବିଷୟରେ ବହୁତ ସଚେତନ, ନିଜର ଅର୍ଥ, ନିଜର କ୍ଷମତା, ନିଜର ସ୍ୱାର୍ଥ । ଉଗ୍ରସେନଙ୍କର ଧୀର, ଶାନ୍ତ କାର୍ଯ୍ୟ ସେମାନଙ୍କର ପସନ୍ଦ ନୁହେଁ । ସେମାନେ ଭାବନ୍ତି ରାଜା ହେବାପାଇଁ କଂସ ହିଁ ଠିକ୍ ଲୋକ ।'

ଅରିନ୍ଦମ ଭାବିଲା ଜିତ ତ ଠିକ୍ କଥା କହୁଛନ୍ତି । ସେ ନିଜେ ମଥୁରା ଲୋକଙ୍କୁ ଯେତେ ଜାଣିଛି ବା ବୁଝିଛି ଜିତଙ୍କ ମତାମତକୁ ଆଡ଼େଇ ଦେଇ ହେବନି । ହଁ, ମଥୁରା ବଦଳୁଛି । ବୟସ୍କ ଲୋକମାନଙ୍କ ସଂଖ୍ୟା କମି ଆସୁଛି । ତରୁଣମାନେ ଆଗକୁ ଚାଲି ଆସୁଛନ୍ତି । ସେମାନେ ସ୍ୱାର୍ଥପର, ଠିକ୍ । ମଥୁରା ନୁହେଁ, ଯାଦବ ଜାତି ନୁହେଁ, ନିଜ ନିଜ ବିଷୟରେ ସେମାନେ ବେଶୀ ଆଗ୍ରହୀ । ନାଁ, ନାଁ, ଜିତ ଠିକ୍ । ଉଗ୍ରସେନ ନୁହନ୍ତି, କଂସ ଉଠି ଆସୁଛି, ସେହିହିଁ ଆଦର୍ଶ । ଜରାସନ୍ଧ ଶକ୍ତିଶାଳୀ ରାଜା, ତାଙ୍କ ହାତରେ ସବୁ କ୍ଷମତା, ସେହିହିଁ ତ ଆଦର୍ଶ ହେବେ । ଅରିନ୍ଦମ ଜିତଙ୍କ କଥା ଶୁଣୁ ଶୁଣୁ ନିଜ ଚିନ୍ତାରେ ବୁଡ଼ି ଯାଇଥିଲା । ସେ ମଥୁରାରେ ରହିଛି ସତ, କିନ୍ତୁ କେବେ ଏପରି ଭାବରେ ସବୁ ମିଶେଇ ମଥୁରା ବା ମଥୁରାର କଅଣ ହେବ ସେକଥା ସେ ଭାବି ନାହିଁ । ସେଦିନ ଜିତଙ୍କ କଥା ଯେପରି ହଠାତ୍ ତା ମନରେ ଗୋଟାଏ କବାଟ ଖୋଲିଦେଲା । ସେ ଅନେକ ସମୟରେ ଯେଉଁଟା ନିଜେ ଅନୁଭବ କରୁଥିଲା ସେ ସ୍ପଷ୍ଟ ହୋଇ ତାକୁ ଦେଖାଗଲା । ହଁ, ମଥୁରା ବଦୁଳୁଛି । ସେ ଆଉ ବାପାଙ୍କର, କି ଉଗ୍ରସେନଙ୍କର ବା ଏପରିକି ତା ନିଜର ମଥୁରା ନୁହେଁ, ଯେଉଁ ମଥୁରାର ସ୍ୱପ୍ନ ସେ ବାପାଙ୍କ ଜରିଆରେ ନିଜେ ଦେଖି ଆସିଥିଲା । ଏ ଏକ ବିକଟାଳ ମଥୁରା, କବନ୍ଧ ମାଳ ମାଳ ନାଚୁଛନ୍ତି, ବନ୍ଧୁ ନାହାନ୍ତି, ସହୋଦର ନାହାନ୍ତି, ଧର୍ମ ନାହିଁ, ସ୍ୱାର୍ଥ, ସ୍ୱାର୍ଥ, ସ୍ୱାର୍ଥର ସର୍ବଗ୍ରାସୀ ମୂର୍ତ୍ତି, କଂସ ହିଁ ନେତା, କଂସ ହିଁ ଆଦର୍ଶ ।


Digitized by srujanika@gmail.com

ହଠାତ୍ ଭାନୁପ୍ରକାଶଙ୍କ କଥାରେ ଅରିନ୍ଦମର ଧ୍ୟାନ ଭାଙ୍ଗିଗଲା । ଭାନୁପ୍ରକାଶ କହୁଥାନ୍ତି, 'ଅରିନ୍ଦମ, ଆଖି ବନ୍ଦକରି କଅଣ ଏତେ ଭାବୁଛ ?' ଅରିନ୍ଦମ ଆଖି ଖୋଲିଲା । ସାମ୍ନାରେ ଭାନୁପ୍ରକାଶଙ୍କର ହସହସ ମୁହଁ, ସେ କହୁଥାନ୍ତି, 'ନିଅ, ମା'ଙ୍କ ପଣା ଆସିଛି । ପିଇ ଦିଅ । ମଥୁରାରେ ଯାହା ଅଛି ବା ଯାହା ହବାକୁ ଯାଉଛି, ସାରା ଆର୍ଯ୍ୟାବର୍ତ୍ତରେ ସେହି ଅବସ୍ଥା - ଲୋଭ, ସ୍ୱାର୍ଥ, କ୍ଷମତା, କିଏ କେତେ ବେଶୀ ନେଇ ପାରିବ । ଚାରିଆଡ଼େ ଅଧର୍ମ, ଅସତ୍ୟ । ସାଧାରଣ ଲୋକେ ଯିଏ ନିଜର ପରିବାର ଘେନି ଭଲରେ ଭଲରେ ବଞ୍ଚିବାକୁ ଚାହାନ୍ତି, ସେ ପେଷି ହୋଇଗଲେଣି । ଜରାସନ୍ଧ ପରି ରାକ୍ଷସମାନେ ସବୁଆଡ଼େ ବ୍ୟାପିଯିବେ । ସେହିମାନେ ହିଁ ରାଜା, ସେହିମାନେ ହିଁ ଆଦର୍ଶ । ତେବେ ଶୁଣ, ଆଜି ଅନ୍ୟ କଥା ଅଛି । ତୁମେ ମଥୁରା ଫେରିଯିବା ପଛେ ପଛେ ଜିତ ଓ ଜୟ ବି ଯିବେ । ସେମାନଙ୍କ ସାଙ୍ଗରେ ଅନ୍ୟମାନେ ବି ଅଛନ୍ତି । ପରେ, କଂସର ସ୍ତ୍ରୀମାନଙ୍କ ସାଙ୍ଗରେ ଗୋପା ବି ଯିବେ । ଆମେ ମଗଧରୁ ଆମର ବେଶ୍ କିଛି ଲୋକଙ୍କୁ ମଥୁରା ପଠେଇ ଦେଉଛୁ ।'

'କାହିଁକି ?' ଅରିନ୍ଦମ ପଚାରିଲା ।

'କାହିଁକି ନା ଆମର ବଡ଼ କାମ ବର୍ତ୍ତମାନ ମଥୁରାରେ ଆରମ୍ଭ ହେବ । ଆଉ ମଗଧ ନୁହେଁ, ମଥୁରା ହିଁ କ୍ଷମତାର କେନ୍ଦ୍ର ହେବ । ଏହାହିଁ ଜରାସନ୍ଧର ଯୋଜନା, ଏହାହିଁ ଘଟିବାକୁ ଯାଉଛି । ଜରାସନ୍ଧ ନୃଶଂସ, କିନ୍ତୁ ଚତୁର । କଂସ ଚତୁର ନୁହେଁ, କିନ୍ତୁ ଜରାସନ୍ଧଠାରୁ ଅଧିକତର ନୃଶଂସ । ଉଭୟଙ୍କର ଯୋଜନା ଆର୍ଯ୍ୟାବର୍ତ୍ତକୁ ଅଧିକାର କରିବା । ତା'ର ଆରମ୍ଭ ମଥୁରାରୁ, ସେହିଯୋଗୁଁ ଆମେ ମଥୁରା ଉପରେ ଜୋର ଦେବାକୁ ଚାହୁଁ । ହୁଏତ ଆମେ ସମସ୍ତେ ମଥୁରାକୁ ଘୁଞ୍ଚି ଯାଇପାରୁ ।

ଅରିନ୍ଦମର ମନେହେଲା ସେ ଯେପରି ଗୋଟାଏ ବିରାଟ ଶକ୍ତି ପରୀକ୍ଷାର ଭିତରକୁ ଭିତରକୁ ପଶିଯାଉଛି । ଏ ସାଧାରଣ କଥା ନୁହେଁ । ଏ ଗୋଟାଏ ବିରାଟ ଘଟଣାର ଆରମ୍ଭ, ତା'ର ଚାରିପାଖରେ ହିଁ ଘଟିବାକୁ ଯାଉଛି, ମଗଧରେ ନୁହେଁ, ଶହ ଶହ ଯୋଜନ ଦୂରରେ । ସେ ମନେ ମନେ ଉତ୍ତେଜିତ ହୋଇ ଉଠିଲା । ଏ ଗୋଟିଏ ନୂଆ କଥା । ପ୍ରବଳ ସ୍ରୋତ ମାଡ଼ିଆସୁଛି, ଭାନୁପ୍ରକାଶ ସେହି ସ୍ରୋତର ଅଂଶ, ସେହି ସ୍ରୋତର ଶକ୍ତି । ସବୁ ବୁଡ଼ିଯିବ, ଭଲ ମନ୍ଦ ବି । ସେ ମନେ ମନେ ଭୟ ପାଇଗଲା ।

ତା'ର ଧ୍ୟାନ ଭାଙ୍ଗିଗଲା ପୁଣି ଭାନୁପ୍ରକାଶଙ୍କ କଥାରେ । ସେ କହୁଥାନ୍ତି, 'ଅରିନ୍ଦମ, ଭୟ ପାଉଛ କି ? ନାଁ, ଭୟ ପାଇବାର କିଛି ନାହିଁ । ଅଧର୍ମ, ଅନ୍ୟାୟ, ଅସତ୍‌ର ପ୍ରତିବାଦ କରିବାକୁ ହେବ । ଏ ପ୍ରତିବାଦ ଦରକାର । ଯେଉଁମାନଙ୍କର ଜୀବନ ନାହିଁ ସେଇମାନେ ହିଁ ପ୍ରତିବାଦ କରିପାରନ୍ତି ନାହିଁ । ଆମ ସାଙ୍ଗରେ ମିଶି


Digitized by srujanika@gmail.com

ତୁମେ ମଗଧର କିଛି ଦେଖି ସାରିଲଣି । କ'ଣ ଦେଖୁଛ ? କିଏ ଡରିକରି ଅଛି - ଆମେ ନା ଜରାସନ୍ଧ ? ଜରାସନ୍ଧର ଯଥେଷ୍ଟ ଅଧିକ ଶକ୍ତି, ଯଥେଷ୍ଟ ସୈନ୍ୟସାମନ୍ତ, ବାରମ୍ୱାର ସେ ଆମର ଲୋକଙ୍କୁ ମାରି ଦେଉଛି, ନଷ୍ଟଭ୍ରଷ୍ଟ କରି ଦେଉଛି, କିନ୍ତୁ ଶେଷକୁ ଜିତୁଛି କିଏ ? ଆମେ, ଜରାସନ୍ଧ ନୁହେଁ । ଜରାସନ୍ଧ ଅତ୍ୟନ୍ତ ଚତୁର । ସେ ବର୍ତ୍ତମାନ ନିଜର ସବୁ କାମ ମଗଧରୁ ମଥୁରାକୁ ଘୁଞ୍ଚେଇ ଦେବ । ଦାୟିତ୍ୱ କଂସର । ସେ କେବଳ ସାହାଯ୍ୟ ଦେବ, ବୁଦ୍ଧି ଦେବ, କଂସ ବି ପ୍ରସ୍ତୁତ । ଆମ କାମର ନୂଆ ଧାରା ମଥୁରାରୁ ଆରମ୍ଭ ହେବ । ଅତ୍ୟାଚାର, ଅନ୍ୟାୟର ପ୍ରତିବାଦ କରିବାକୁ, ଅରିନ୍ଦମ, ତୁମେ କ'ଣ ଭୟ ପାଉଛ ?'

'ନାଁ', ଅରିନ୍ଦମ କହିଲା, 'ମୁଁ ଖାଲି ଭାବୁଛି ମୁଁ ଏଥିପାଇଁ ଯୋଗ୍ୟ କି ?' 'ହଁ, ଯଥେଷ୍ଟ ଯୋଗ୍ୟ', ଭାନୁପ୍ରକାଶ କହିଲେ, 'ଦୁଇଟି କଥା ମନେ ରଖ । ମଥୁରାରେ ଆମେ ତୁମର ସାହାଯ୍ୟ ନେବାକୁ ଚାହୁଁ, ତୁମକୁ ଆମ ସାଙ୍ଗରେ ରଖିବାକୁ ଚାହୁଁ । ଏକଥା ତୁମର ବାପା ଜାଣନ୍ତି, ତାଙ୍କର ସମର୍ଥନ ଅଛି । ସେ ତ ଆମର ଗୁରୁ । ସେ ଜାଣନ୍ତି ମଥୁରାରେ କଂସ ଉଠି ଆସୁଛି, ନାନା ଅଘଟଣ ଘଟିବ । ଏ ଅଘଟଣକୁ ରୋକି ହେବନାହିଁ । କିନ୍ତୁ ଜାଣିହେବ, ବୁଝିହେବ, ଲୋକଙ୍କୁ ସାବଧାନ କରିହେବ । ଆମକୁ ବି ସାବଧାନ ରହିବାକୁ ପଡ଼ିବ । କିନ୍ତୁ ଶେଷକୁ ଆମେ ହିଁ ଜିତିବୁ, କଂସ ନୁହେଁ । ଦ୍ୱିତୀୟ କଥା ଗୋଟିଏ ସାଧାରଣ କଥା । କୌଣସି ଅନ୍ୟାୟ, ଅଧର୍ମ, ସ୍ୱାର୍ଥ ସତ୍ ମଣିଷର ସାହସ, ଦମ୍ଭ, ବିଶ୍ୱାସକୁ ଭାଙ୍ଗିପାରିବ ନାହିଁ । ଜରାସନ୍ଧ ପାରିନାହିଁ, କଂସ ବି ପାରିବ ନାହିଁ । ଆର୍ଯ୍ୟାବର୍ତ୍ତର କୌଣସି ଅତ୍ୟାଚାରୀ ଶାସକ ପାରିବ ନାହିଁ । କେବେହେଲେ ବି ତା ସମ୍ଭବ ନୁହେଁ ।' ଭାନୁପ୍ରକାଶ କିଛି ସମୟ ଚୁପ୍ କରିଗଲେ । ଅରିନ୍ଦମ ଦେଖିଲା, ଯାହା ସେ ଭାନୁପ୍ରକାଶ ଏହିପରି କଥା କହୁଥିବା ସମୟରେ ଅନେକ ଥର ଦେଖିଛି, ତାଙ୍କ ମୁହଁରୁ ଗୋଟାଏ ଅଦ୍ଭୁତ ଜ୍ୟୋତି ବାହାରୁଛି, ତାଙ୍କର ଆଖିର ଦୃଷ୍ଟି ତାଙ୍କ ସମସ୍ତଙ୍କୁ ଛାଡ଼ି କେଉଁ ଦୂରକୁ ଦୂରକୁ ଲମ୍ୱି ଯାଉଛି । ଆଉ ସ୍ୱରରେ ବି ସେହିପରି, ସେ ଯେପରି ସେମାନଙ୍କ ସାଙ୍ଗରେ ନାହାନ୍ତି, ସ୍ୱରରେ କେଉଁ ଅନାହାତ କାଳର ଧ୍ୱନି । ଭାନୁପ୍ରକାଶଙ୍କ ମୁହଁ ଆସ୍ତେ ଆସ୍ତେ ସ୍ୱାଭାବିକ ହୋଇ ଉଠିଲା । ସେ ଆଗପରି ହସ ହସ ମୁହରେ ଅରିନ୍ଦମକୁ ଚାହିଁ କହିଲେ - 'ହଉ ହେଲା, ତୁମ କଥା ପରେ ବୁଝାଯିବ । ତୁମେ ବର୍ତ୍ତମାନ ଗୋପାଙ୍କ କଥା ଶୁଣ, ତାଙ୍କ ସାଙ୍ଗରେ କଥାବାର୍ତ୍ତା ହୁଅ, ତାଙ୍କୁ ଭଲକରି ଚିହ୍ନ । ତୁମର ବହୁତ କଥାର ଉତ୍ତର ତୁମେ ପାଇଯିବ । ଆଜି ବିଶେଷ କରି ତାଙ୍କୁ ଜାଣିବା ପାଇଁ ମୁଁ ତୁମକୁ ଡାକିଛି । ମଥୁରାରେ ସେ ତୁମର ପାଖାପାଖି ରହିବେ ।'

ସେଦିନ ସନ୍ଧ୍ୟାରେ ଗୌରୀମା'ଙ୍କ ମନ୍ଦିରରେ ଗୋପାଙ୍କ ସହିତ ଅରିନ୍ଦମର ଅନେକ କଥାବାର୍ତ୍ତା ହେଲା । କଥାବାର୍ତ୍ତା ଠିକ୍ ନୁହେଁ, ଗୋପା ହିଁ ପ୍ରାୟ ନିଜକଥା କହୁଥାନ୍ତି । କେତେବେଳେ ଆସ୍ତେ ଆସ୍ତେ, କେତେବେଳେ ଜୋରରେ, କେତେବେଳେ ରାଗରେ କ୍ରୋଧରେ ତାଙ୍କର ମୁହଁ ଆଖି ଜଳି ଉଠୁଥାଏ, ପୁଣି କେତେବେଳେ ଦୁଃଖରେ ସେ ଭାଙ୍ଗି ପଡୁଥାନ୍ତି, ପ୍ରାୟ କାନ୍ଦିବା ଅବସ୍ଥା । ଅରିନ୍ଦମର ମନେହେଲା ଏ କେବଳ ଗୋପାଙ୍କ କଥା ନୁହେଁ, ଆର୍ଯ୍ୟାବର୍ତ୍ତର ସବୁ ନାରୀଙ୍କ କଥା, ଯେଉଁମାନେ ନାନା ସାମାଜିକ ଦୁରବସ୍ଥାରେ ବାନ୍ଧି ହୋଇ ପଡ଼ିଛନ୍ତି, ଯେଉଁମାନେ ଉଠିବାକୁ ଚାହୁଁଛନ୍ତି, ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇ ନିଜକୁ ପ୍ରତିଷ୍ଠା କରିବାକୁ ଚାହୁଁଛନ୍ତି, ଯେଉଁମାନେ ପୁରୁଷମାନଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନୁହନ୍ତି, ଏ ସମସ୍ତଙ୍କ କଥା । ଗୋପା ସେହି ପୀଡ଼ିତ ନାରୀ ଆତ୍ମା, ପୁଣି ସେ ଅବସ୍ଥାର ବ୍ୟତିକ୍ରମ । ତାଙ୍କର କାହାଣୀ ସେହି ଅଦ୍ଭୁତ କାହାଣୀ, ଯାହା ମନରେ ସାହସ ଆଣେ, ଦମ୍ଭ ଆଣେ । ଏବେ ବି ସେହି ସନ୍ଧ୍ୟାରେ ଗୋପାଙ୍କର ସ୍ପଷ୍ଟ ତୀବ୍ର ସ୍ୱର ତା କାନରେ ଝଣ ଝଣ ହୋଇ ବାଜୁଛି ଓ ସେ ଯାହା କହିଥିଲେ ସେସବୁ ପଥରରେ ଖୋଳି ହେଲା ପରି ତା' ମନରେ ଖୋଳି ହୋଇ ରହିଛି ।

ଗୋପାଙ୍କର ଜନ୍ମ ସେହି କେଉଁ ଉତ୍ତର କୁରୁରେ ପାହାଡ଼ ପର୍ବତ ବନ ଉପତ୍ୟକା ଭିତରେ, ଦୁଃସ୍ଥ ପରିବାରରେ, ତିନି ପିଲାର ଜ୍ୟେଷ୍ଠ ପିଲା । ଗୋପା ନିଜର ବାପାଙ୍କୁ ମନେ ପକାନ୍ତି । ଡେଙ୍ଗା, ଗୋରା ତକତକ ଚେହେରା, ଅମରାବତୀର ଦେବତାଙ୍କ ପରି । କିନ୍ତୁ ଅତ୍ୟନ୍ତ ବଦରାଗୀ ଓ ସେ ପ୍ରାୟ ଫିସ୍‌ଫିସ୍ କରି କହିଥିଲେ – 'ଅତ୍ୟନ୍ତ ଚରିତ୍ରହୀନ' । ପରିବାରରେ ସୁଖଶାନ୍ତି ନ ଥିଲା, ପ୍ରତିଦିନ ଦି'ଓଳି ଖାଇବା ଯୋଗାଡ଼ କରିବା ବି କଷ୍ଟକର ହେଉଥିଲା । ତା ଉପରେ ବାପା ପ୍ରାୟ ସବୁଦିନେ ମା'କୁ ଗାଳି ମନ୍ଦ, ପିଟାପିଟି କରୁଥିଲେ । ତା'ପରେ ଦିନେ ହଠାତ୍ ସେ କୁଆଡ଼େ ଚାଲିଗଲେ । ମା' ବହୁତ ଖୋଜାଖୋଜି କରିଥିଲେ, ଦେଶକୁ ଦେଶ ବହୁତ ଚାର ପଠେଇଥିଲେ, ନାଁ, କିଛି ଖବର ପାଇଲେନି । ଗୋପା କହନ୍ତି ସେ ପରେ ନିଜେ ବାପାଙ୍କ ଖବର ପାଇବାକୁ ଚେଷ୍ଟା କରିଥିଲେ, ପାଇଥିଲେ ବି । ହଁ, ସେ ଥିଲେ ସେମିତି ସେମିତି । ଆଉ ଜଣେ ସ୍ତ୍ରୀଲୋକ ସାଙ୍ଗରେ ରହୁଥିଲେ । ବହୁତ ବୁଢ଼ା ହୋଇଯାଇ ଥିଲେ ।

ତେବେ ଏ ପରର କଥା । ସେତେବେଳକୁ ମା' ଚାଲିଗଲେଣି । ଗୋପା ମନେ ପକାନ୍ତି ବାପାଙ୍କୁ ଭେଟିବା ପାଇଁ ମା'ଙ୍କର ସେ କି ଆଗ୍ରହ । କୋଉଠି କେମିତି ଦେଖା ହୁଅନ୍ତା ! ଥରେ ହେଲେ ହୁଅନ୍ତା ! ସେ ସବୁବେଳେ ନିଜକୁ ଦୋଷ ଦେଉଥିଲେ । ସେ ବାପାଙ୍କ କଥା ବୁଝି ପାରିଲେ ନାହିଁ । ସେହି ଯୋଗୁଁ ସେ ଛାଡ଼ି

ଚାଲିଗଲେ । ପାହାଡ଼ର ଢାଲୁରେ ଏପାଖ ସେପାଖ ହୋଇ ମା' ସବୁବେଳେ ଘର କାମ କରନ୍ତି, କୋଉଠି କେମିତି ପିଲାଙ୍କ ପାଇଁ ଖାଇବା ଆଣିବେ ସେଇ ଚିନ୍ତାରେ ଲାଗିଥା'ନ୍ତି । କିନ୍ତୁ ତାଙ୍କର ମନ କେତେବେଳେ ଭଲ ନ ଥାଏ । କାମ ଭିତରେ ସେ ହଠାତ୍ ଚୁପ୍‌ଚାପ୍ ବସି ଦୂରକୁ ଚାହିଁ ରହନ୍ତି, ଆଖିରୁ ଝରଝର ଲୁହ ବୋହି ପଡ଼େ । ସାରା ଦିନରେ କେତେବେଳେ ଖାଆନ୍ତି ତ କେତେବେଳେ ନାହିଁ । ରାତି ଅଧରେ ଗୋପା ଦେଖିଛନ୍ତି ସେ ହଠାତ୍ ଉଠି ପଡ଼ନ୍ତି । ପିଲାମାନେ ଶୋଇଥାଆନ୍ତି । ସେ ଉଠି ଆସ୍ତେ ଆସ୍ତେ ବାହାରକୁ ଯାଆନ୍ତି । ବାହାରେ ପ୍ରବଳ ଶୀତ । ସେହି ଶୀତରେ ସେ ଜାକିଜୁକି ହୋଇ ବାହାର ପିଣ୍ଡାରେ ବସନ୍ତି, ଅନ୍ଧାରକୁ ଚାହିଁ ରହନ୍ତି । ନିଜେ ନିଜେ କଅଣ ଗୁଣୁ ଗୁଣୁ ହୋଇ କହନ୍ତି । ଏମିତି ଦିନେ ଅଧେ ନୁହେଁ, ଅନେକ ଦିନ । ମା' ଗୋପାଙ୍କୁ ଖୁବ୍ ଭଲ ପାଉଥିଲେ । ସେ ବଡ଼ ପିଲା ବୋଲି ଖାଲି ସେଥିପାଇଁ ନୁହେଁ । ଗୋପା କୌଣସି କଥାକୁ ଡରୁ ନ ଥିଲେ । ସେ ଝିଅ ହେଲେ ବି ପୁଅଙ୍କ ସାଙ୍ଗରେ ସମାନ ମିଶାମିଶି କରୁଥିଲେ । ପୁଅଙ୍କର ସବୁ କାମ କରୁଥିଲେ । କିନ୍ତୁ ମା'ଙ୍କର ଅବସ୍ଥା ଯାହା ଗୋପା ବିଶେଷ କିଛି କରିପାରିଲେ ନାହିଁ । ବାପା ଘର ଛାଡ଼ିଯିବା ପରେ ମା' ଯେଉଁ ଭାଙ୍ଗି ପଡ଼ିଥିଲେ ସେ ଆଉ ଭଲ ହେଲା ନାହିଁ । ପିଲାଙ୍କ କଥା ସେ ଆଉ ବୁଝିଲେ ନାହିଁ । ସେହି ବୟସରେ ଗୋପାଙ୍କୁ ତାଙ୍କ ତଳ ଭଉଣୀ ଓ ସଭା ସାନଭାଇ କଥା ବୁଝିବାକୁ ପଡୁଥାଏ । ଏମିତି ଦିନେ ହଠାତ୍ ମା' ଚାଲିଗଲେ ।

ଶୀତ ସମୟ, ଦିନଯାକ ସେଦିନ ଅନ୍ଧାର କରି ରହିଥାଏ । ସାରା ଦିନ ଅଳ୍ପ ଅଳ୍ପ ଝଡ଼ ବହିବା ପରି ପବନ ବହୁଥାଏ । ସନ୍ଧ୍ୟାବେଳକୁ ପବନର ବେଗ କେମିତି ବଢ଼ିଗଲା । ମନେହେଲା ଝଡ଼ ହେବ । ହେଲା ବି, ଶୀତ ବଢ଼ିଲା । ପବନ ବଢ଼ିଲା । ସେଦିନ ଘରେ ଖାଇବାକୁ ଯାହା ଥାଏ କିଛି ନୁହେଁ । ସେଇଆକୁ ଟିକେ ଟିକେ ଖାଇ ଭଉଣୀ ଆଉ ଭାଇ ଶୋଇପଡ଼ିଲେ । ମା' ଘର ଭିତରେ । ବାହାର ପିଣ୍ଡା ଅନ୍ଧାରରେ ବସି ଗୋପା ଭାବୁଥାଆନ୍ତି କିଛି ଖାଇବା କୋଉଠୁ କେମିତି ଯୋଗାଡ଼ ହେବ । ସେ ତାଙ୍କର ଜଣେ ସାଙ୍ଗ କଥା ଭାବୁଥାଆନ୍ତି । ତା' ଘର ଟିକିଏ ଦୂର, ଭାବୁଥାଆନ୍ତି ସେଠିକି ଯିବ କି । କିନ୍ତୁ ମା'ଙ୍କୁ ଘରେ ଏକା ଅନ୍ଧାରରେ ଛାଡ଼ି ଯିବାକୁ ଦୋଦୋପାଞ୍ଚ ହେଉଥାଆନ୍ତି । ଭାଇ ଭଉଣୀ ତ ଠିକ୍ ଖାଇ ନାହାନ୍ତି, ସେ ନିଜେ ବି ଖାଇନାହାନ୍ତି, ମା' ବି ଖାଇ ନାହାନ୍ତି । ସେ ତାଙ୍କ ସାଙ୍ଗର ଭାଇଙ୍କ କଥା ଭାବିଲେ । ବେଶ ସମର୍ଥ ପୁରୁଷ । ଗୋପା ପ୍ରତି ତାଙ୍କର ଆଗ୍ରହ ଅଛି । ତାଙ୍କୁ ହିଁ ଯାଇ କହିବେ, ଗୋପା ଠିକ୍ କଲେ । ଗୋପା ହଠାତ୍ ଦେଖିଲେ ସେହି ଅନ୍ଧାର ପବନ ଭିତରେ କିଏ ଏପାଖ ସେପାଖ ହେଉଛି । ତାଙ୍କ ମନରେ ସନ୍ଦେହ ହେଲା । ହେଟା ନୁହେଁ ତ ? ଗୋଟାଏ


Digitized by srujanika@gmail.com

ହେଟା ଆସି ଦିନରେ ବୁଲୁଥିଲା, ସମସ୍ତେ କହୁଥିଲେ । ସେ ଘର ଭିତରକୁ ଯାଇ ଗୋଟାଏ ଦୀପ ଲଗାଇଲେ । ଆରେ ଏ କଅଣ ? ମା' କାହିଁ ? ମା' ତ ଏଇଠି ଶୋଇଥିଲା । ତାଙ୍କ ମନରେ ଭୟ ପଶିଗଲା । ଘର ବାହାରେ ଦଶ ହାତ ଢାଲୁ ରାସ୍ତା । ତା ତଳକୁ ଖାଦ । ବାହାରକୁ ମା' ଉଠି ଯାଇଛି କାହିଁକି ? ତଳକୁ ଖସି ପଡ଼ିବ ଯେ ! ସେ ସେଇ ଅନ୍ଧାରରେ ବାହାରକୁ ଦୌଡ଼ିଗଲେ । ସେ ଯାହା ଭୟ କରୁଥିଲେ । ଠିକ୍ ସେଇଆ ଘଟିଛି । ମା' ତଳକୁ ଖସି ପଡ଼ିଛି । ତଳ ମାନେ ବେଶ୍ ତଳ । ତା' ଉପରେ ଅନ୍ଧାର । ସେ ଯାହାହେଉ ଡକାଡ଼କି କରି ମଶାଲ ନେଇ ମା'ଙ୍କୁ ସେ ଉପରକୁ ଘରକୁ ଟେକିନେଇ ଆସିଲେ । କିନ୍ତୁ ଯା ହବାର କଥା ତା' ହେଲା । ମା' ଅଧା ଅଚେତା ହୋଇ ରହିଲେ, କେତେବେଳେ କେମିତି ଲୋକ ଚିହ୍ନିଲେ ଓ କଥା କହିଲେ । ତେବେ ବେଶି ଦିନ ନୁହେଁ । ସେ ଚାଲିଗଲେ ।

ଗୋପାଙ୍କୁ ସେତେବେଳେ ସତର ଅଠର ବର୍ଷ ହେବ । ଭାଇ ଭଉଣୀ ଦିହେଁ ତାଙ୍କଠାରୁ ସାନ । ମା' ଗଲା ପରେ ଘରର ସବୁ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ସେ ବଡ଼ ଦୁଃଖର ଦିନ, ହତାଶାର ଦିନ । ସେ ସମୟର କଥା କହିବା ସମୟରେ ଗୋପାଙ୍କ ସ୍ୱର ନରମ ହୋଇ ଯାଉଥାଏ । କିନ୍ତୁ ମନରେ ଯେ ଦୁଃଖ ଥାଏ ତା ନୁହେଁ । ସେ ଯେପରି ନିରପେକ୍ଷ ଭାବରେ ଆଉ କାହା କଥା କହୁଛନ୍ତି ସେହି ଭାବରେ । ସେ କହୁଥାନ୍ତି - ସେ ସମୟରେ ଅନେକ କଷ୍ଟ, ଅନେକ ଦୁଃଖ, ନିଜ ପାଇଁ, ନିଜ ଭାଇଭଉଣୀ ପାଇଁ । କିନ୍ତୁ ସେ ଦମ୍ଭ ଧରି ଛିଡ଼ା ହେଲେ । ଆଉ ଯେଉଁ ଲୋକ ତାଙ୍କ ପଛରେ ଖୁଣ୍ଟ ପରି ଛିଡ଼ା ହେଲା, ସେ ତାଙ୍କ ସାଙ୍ଗର ଭାଇ । ସେ ସାହସ ଦେଲେ, ଆଶା ଦେଲେ । ଗୋପା କହନ୍ତି ସେ ହିଁ ତାଙ୍କର ପ୍ରଥମ ସାଙ୍ଗ, ଅତି ଘନିଷ୍ଠ ସାଙ୍ଗ, ତାଙ୍କରି ସାହସରେ ଓ ତାଙ୍କରି ସାଙ୍ଗରେ ସେ ଉତ୍ତର କୁରୁ ଛାଡ଼ି ହସ୍ତିନାକୁ ଚାଲି ଆସିଲେ । ହସ୍ତିନା ଯେ ଖୁବ୍ ଭଲ ଜାଗା ତା ନୁହେଁ । ସେଠାରେ ଅନେକ ସ୍ୱାର୍ଥ, ଅନେକ ସ୍ୱାର୍ଥାନ୍ୱେଷୀ ଲୋକେ । କିନ୍ତୁ ଉତ୍ତର କୁରୁରେ ତାଙ୍କ ଗାଁ ନିପଟ ଗଣ୍ଡ ମଫସଲ ଗାଁ । ବଣ ଜଙ୍ଗଲ ଯଥେଷ୍ଟ, କିନ୍ତୁ କିଛି ପାଇବାର ନାହିଁ, କିଛି କରିବାର ନାହିଁ, କିଛି ଦେବାର ନାହିଁ । ହସ୍ତିନା ପ୍ରସିଦ୍ଧ କୁରୁ ଚକ୍ରବର୍ତ୍ତୀମାନଙ୍କର ରାଜଧାନୀ, ଧନ ସମ୍ପତ୍ତିରେ ପରିପୂର୍ଣ୍ଣ, ଏଠାରେ ମଣିଷ ମଣିଷ ପରି ନିଜ ଯୋଗ୍ୟତାରେ ବଞ୍ଚିପାରିବ । ଭୀଷ୍ମ ପ୍ରଚଣ୍ଡ ଯୋଦ୍ଧା, ଶାସକ, ଅତ୍ୟନ୍ତ ଧର୍ମ ପରାୟଣ, ନ୍ୟାୟବନ୍ତ । ତାଙ୍କ ଶାସନରେ ହସ୍ତିନା ନିରାପଦ, ସୁସ୍ଥ । ଗୋପା ଠିକ୍ କଲେ ଯାହା ଘଟୁ ସେ ହସ୍ତିନାରେ ହିଁ ରହିବେ ।

ଗୋପା ହସ୍ତିନାକୁ ଆସିଲେ, ସାଙ୍ଗରେ ଦି ସାନ ଭାଇ ଭଉଣୀ, ତାଙ୍କର ନିଜର ବୟସ ବା କେତେ, ସବୁଆଡ଼େ ବିପଦ । କିନ୍ତୁ ସେ ମନ ଦୃଢ଼ କଲେ । ଗୋଟାଏ


Digitized by srujanika@gmail.com

ସାହସ ଭୀଷ୍ମ, ତାଙ୍କର ଉଜ୍ଜ୍ୱଳ ଚରିତ୍ର, ଓ ତାଙ୍କ ପ୍ରତି ଲୋକଙ୍କର ଅସୀମ ଶ୍ରଦ୍ଧା, ସମ୍ମାନ ଓ ଭୟ । ସେ ସ୍ଥିର କଲେ ଦରକାର ହେଲେ ସେ ଭୀଷ୍ମଙ୍କୁ ହିଁ ତାଙ୍କର ବିପଦ କଥା କହିବେ । କିନ୍ତୁ ତା'ର ଦରକାର ହେଲାନାହିଁ । ତାଙ୍କର ସାଙ୍ଗଙ୍କ ଚେଷ୍ଟାରେ ସେ କୁରୁ ରାଜପରିବାରରେ ଜଣେ ଆଶ୍ରିତା ଭାବରେ ସ୍ଥାନ ପାଇଲେ ଓ ହସ୍ତିନାରେ ତାଙ୍କର ନୂତନ ଜୀବନର ଆରମ୍ଭ ହେଲା ।

ଏ ଅନେକ ବର୍ଷ ତଳର କଥା । କୁରୁ ରାଜପରିବାରରେ ଗୋପା କେହି ଜଣେ ହୋଇ ରହିଲେ ନାହିଁ, ସେ ଅନନ୍ୟା ହୋଇଗଲେ । ପାହାଡ଼ ଦେଶର ଝିଅ ଗୋପା ନିଜର ବୁଦ୍ଧି, ଚାତୁର୍ଯ୍ୟ, ସାହସ ଓ କାର୍ଯ୍ୟଦକ୍ଷତାରେ ସମସ୍ତଙ୍କୁ ଟପି ଗଲେ । ସେତେବେଳେ ଭୀଷ୍ମଙ୍କ ପାଖକୁ ଯାଇ କହିବା ଦରକାର ହେଲାନାହିଁ । ଭୀଷ୍ମ ନିଜେ ତାଙ୍କୁ ଡକେଇ ବିଭିନ୍ନ କାମର ନିର୍ଦ୍ଦେଶ ଦେଲେ ଓ ରାଜମାତା ମହାମାନ୍ୟା ସତ୍ୟବତୀଙ୍କର ଗୋପା ପ୍ରିୟପାତ୍ରୀ ହୋଇ ଉଠିଲେ । ଏହି ସମୟରେ ଗୋଟାଏ ଘଟଣା ଘଟିଲା, ଗୋପା କହନ୍ତି, ଯାହାକି ତାଙ୍କର ଭାଗ୍ୟକୁ ପ୍ରାୟ ବଦଳେଇ ଦେଲା । ସେଦିନ କଅଣ ଗୋଟାଏ ପୁଣ୍ୟ ପର୍ବ ହୋଇଥାଏ । ସତ୍ୟବତୀ ଗଙ୍ଗା ସ୍ନାନ କରିବାକୁ ଗଲେ ଓ ତାଙ୍କ ଗହଣରେ ଗୋପା ବି ଯାଇଥାନ୍ତି । ପାଗ ମେଘୁଆ ହୋଇଥାଏ, ଜୋରରେ ଜୋରରେ ପବନ ବହୁଥାଏ । ଗଙ୍ଗା ବି ସେଦିନ ଉତ୍ତାଳ, ଲହଡ଼ି ସବୁ ଜୋରରେ ଆସି କୂଳରେ ଭାଙ୍ଗି ହେଉଥାଏ, ନଈରେ ଲୋକବାକ ପ୍ରାୟ ନ ଥାନ୍ତି । ହଠାତ୍ ପାଟିଗୋଳ ଉଠିଲା । କ'ଣ କ'ଣ ବୁଝୁ ବୁଝୁ ବୁଝାଗଲା ଯେ ସତ୍ୟବତୀଙ୍କର ଜଣେ କେହି ପରିଚାରିକା ଗୋଡ଼ ଖସି ହଠାତ୍ ନଈ ମଝିକୁ ଚାଲିଯାଇଛି । ନଈ ମଝିରେ ପ୍ରଚଣ୍ଡ ସୁଅ ତୋଡ଼, ସେ ପ୍ରାୟ ବୁଡ଼ିଯିବା ଉପରେ । ସମସ୍ତେ କୂଳରେ ଛିଡ଼ା ହୋଇ ହାୟ ହାୟ ହେଉଥାନ୍ତି, କିନ୍ତୁ ନଈ ଭିତରକୁ ଯିବାପାଇଁ କେହି ସାହସ କରୁ ନ ଥାନ୍ତି । ରାଜମାତା ସତ୍ୟବତୀ ନିଜେ ବ୍ୟସ୍ତ ହୋଇ ଚାରିପାଖକୁ ଚାହିଁଲେ । ତାଙ୍କ ଆଖିରେ ବ୍ୟାକୁଳ ପ୍ରାର୍ଥନା, ଜଣେ କେହି ଯାଅ, ଝିଅଟାକୁ ବଞ୍ଚାଅ । କିନ୍ତୁ କେହି ଯିବାକୁ ସାହସ କରୁ ନ ଥାନ୍ତି । ଏପରିକି ରାଜମାତାଙ୍କ ସାଙ୍ଗରେ ଥିବା ସିପେହୀମାନେ ବି ଚୁପ୍‌ଚାପ୍, କାକୁସ୍ଥ ହେଲାପରି ଛିଡ଼ା ହୋଇଥାନ୍ତି । ଗୋପା ମୁହୂର୍ତ୍ତେ ମନ ସ୍ଥିର କରିନେଲେ । ଉତ୍ତର କୁରୁର ପାହାଡ଼ିଆ ନଈରେ ପହଁରିବା ତାଙ୍କର ଅଭ୍ୟାସ ଅଛି । ନଈକୁ ସେ ଡରନ୍ତି ନାହିଁ । ସେ ଶାଢ଼ିର ଅଞ୍ଚଳଟାକୁ ଟାଣକରି ଅଣ୍ଟା ଚାରିପାଖରେ ଭିଡ଼ିଦେଲେ ଓ ନଈକୁ ଡେଇଁ ପଡ଼ିଲେ । ତା'ପରେ କ'ଣ ହେଲା ତାଙ୍କର ମନେ ନାହିଁ । କେବଳ ମନେଅଛି ସେ ଯେତେବେଳେ ଅଚେତ ଝିଅଟାକୁ ଟାଣି ଆଣି କୂଳରେ ଛାଡ଼ିଦେଲେ, ଓ ନିଜେ ଅଚେତ ହୋଇ ପଡ଼ିଗଲେ । ସେ ଝିଅଟାତ

ବଞ୍ଚିଗଲା, ଗୋପା ବି ବଞ୍ଚିଗଲେ । ଦୁଇଦିନ ପରେ ସତ୍ୟବତୀ ଗୋପାଙ୍କୁ ଡକେଇ ପଠେଇଲେ ଓ ତାଙ୍କୁ ସାଙ୍ଗରେ ନେଇ ଭୀଷ୍ମଙ୍କ ପାଖକୁ ଗଲେ । ଗୋପା ସେହି ଦିନଠୁ ରାଜମାତାଙ୍କର ନିକଟତମ ଅତ୍ୟନ୍ତ ନିର୍ଭରଯୋଗ୍ୟ ପରିଚାରିକା ଭାବରେ ନିଯୁକ୍ତି ପାଇଲେ ଓ ତାଙ୍କ ନିକଟରେ ହିଁ ରହିଲେ ।

ଗୋପାଙ୍କର ଦୁଃଖର ସମୟ ଚାଲିଗଲା । ସେ ସତ୍ୟବତୀଙ୍କର ଓ କୁରୁରାଜ ପରିବାରର ବହୁ ଗୋପନୀୟ କାର୍ଯ୍ୟ କରିଛନ୍ତି । ଏପରିକି ବହୁ କାର୍ଯ୍ୟ ଯେଉଁଥିରେ ଶାରୀରିକ ବିପତ୍ତି ମଧ୍ୟ ରହିଥିଲା । ସତ୍ୟବତୀଙ୍କର ଦୂର ଅରଣ୍ୟରେ ରହୁଥିବା ମହାରାଜା ପଣ୍ଡୁଙ୍କର ସହିତ ସମ୍ପର୍କ ଏହିପରି ଗୋଟିଏ କାର୍ଯ୍ୟ । କେବଳ ସତ୍ୟବତୀ ଓ ଭୀଷ୍ମ ନୁହନ୍ତି, ମହର୍ଷି ବ୍ୟାସଦେବଙ୍କ ସହିତ ମଧ୍ୟ ଗୋପାଙ୍କର ପରିଚୟ ହେଲା । କୁରୁକ୍ଷେତ୍ରରେ ବ୍ୟାସଦେବଙ୍କ ଆଶ୍ରମକୁ ମଧ୍ୟ ସେ ଅନେକ ଥର ଯାଇଛନ୍ତି । ତାଙ୍କର ଧାରଣା ବ୍ୟାସ ମଣିଷ ନୁହନ୍ତି, ଭଗବାନ । ସେହିଠାରେ ହିଁ ଭାନୁପ୍ରକାଶଙ୍କ ସହିତ ତାଙ୍କର ପରିଚୟ । ଗୋପାଙ୍କର ସେଦିନ କଥା ସ୍ପଷ୍ଟ ମନେଅଛି । ସେ କହିଲା ବେଳେ ଭାନୁପ୍ରକାଶ ଅଳ୍ପ ଅଳ୍ପ ହସୁଥାନ୍ତି । ଭାନୁପ୍ରକାଶ ବି ବ୍ୟାସଙ୍କର ଶିଷ୍ୟ, ତେବେ ସେ ଆଶ୍ରମରେ ପ୍ରାୟ ରହନ୍ତି ନାହିଁ । କୋଉ କୋଉ କାମରେ ପ୍ରାୟ ସବୁବେଳେ ବାହାରକୁ ଯାଆନ୍ତି । ଗୋପା ଲକ୍ଷ୍ୟକରି ଦେଖିଛନ୍ତି ବ୍ୟାସଙ୍କର ଭାନୁପ୍ରକାଶଙ୍କ ପ୍ରତି ଅଗାଧ ବିଶ୍ୱାସ । ବ୍ୟାସ କେବେହେଲେ ଭାନୁପ୍ରକାଶଙ୍କୁ ଅନ୍ୟ ଶିଷ୍ୟମାନଙ୍କ ଗହଣରେ ଭେଟନ୍ତି ନାହିଁ । ଅନ୍ୟମାନେ ନ ଥିବାବେଳେ ସେ ଭାନୁପ୍ରକାଶଙ୍କୁ ଏକା ଏକା ଭେଟନ୍ତି ଓ କଅଣ ସବୁ ଗୋପନୀୟ ବିଷୟରେ କଥାବାର୍ତ୍ତା କରନ୍ତି । ସେଦିନ ସନ୍ଧ୍ୟା ଆହ୍ନିକ ପରେ ପରେ ବ୍ୟାସ ବିଶ୍ରାମ ନେବା ପାଇଁ ଭିତରକୁ ଗଲେ, ତାଙ୍କ ପଛେ ପଛେ ଭାନୁପ୍ରକାଶ । ସେଦିନ ସତ୍ୟବତୀଙ୍କ ପାଖରୁ ସନ୍ଦେଶ ନେଇ ଗୋପା କୁରୁକ୍ଷେତ୍ର ଆସିଥାନ୍ତି ଓ ବ୍ୟାସଙ୍କୁ ଦେଖା କରିବା ପାଇଁ ବାହାରେ ଅପେକ୍ଷା କରିଥାନ୍ତି । କିଛି ସମୟ ପରେ ବ୍ୟାସଙ୍କର ଜଣେ ଶିଷ୍ୟ ଆସି ତାଙ୍କୁ ଭିତରକୁ ଯିବାପାଇଁ ଡାକିଲେ । ତାଙ୍କୁ ବ୍ୟାସଙ୍କ ପାଖରେ ଛାଡ଼ିଦେଇ ଶିଷ୍ୟ ଫେରିଗଲେ । ଗୋପା ଦେଖିଲେ ଭିତରେ କେହି ନାହାନ୍ତି । କେବଳ ବ୍ୟାସଦେବ ଓ ଭାନୁପ୍ରକାଶ । ସେ ବ୍ୟାସଦେବଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ବ୍ୟାସ କହିଲେ, 'ଗୋପା ଉଠ ଉଠ' । ତାପର ଭାନୁପ୍ରକାଶଙ୍କୁ ଚାହିଁ କହିଲେ, 'ଭାନୁ, ଏହିହିଁ ଗୋପା । ଏହାରି କଥା ମୁଁ ତମକୁ କହୁଥିଲି ।' ସେହି ଅଳ୍ପ ଅଳ୍ପ ଅନ୍ଧାର ଭିତରେ ଭାନୁପ୍ରକାଶ ଗୋପାଙ୍କୁ କିଛି ସମୟ ସ୍ଥିର ହୋଇ ଚାହିଁ ରହିଲେ । ପରେ ସେ ବ୍ୟାସଙ୍କ ଆଡ଼କୁ ବୁଲିପଡ଼ିଲେ, କହିଲେ – 'ଗୁରୁଦେବ, ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । ମୁଁ ଗୋପାଙ୍କୁ କେବେ ପାଇବି ?' ବ୍ୟାସଦେବ ଅଳ୍ପ ସମୟ

ଭାବିଲେ, କହିଲେ - 'ଟିକେ ଅପେକ୍ଷା କର, ମୁଁ ମାତାଙ୍କୁ ଖବର ଦିଏ, ତୁମେ ହସ୍ତିନା ଫେରିଯାଅ ଓ ମାତାଙ୍କୁ ଦେଖାକର । ଗୋପା ବି କାଲି ଫେରିବ । ତୁମେ ସେଇଠି ମାତାଙ୍କ ସହିତ କଥାବାର୍ତ୍ତା କରି ଗୋପା ସହିତ ବନ୍ଦୋବସ୍ତ କର ।' ବାସ୍ ସେତିକି । ବ୍ୟାସଦେବ ଆଶୀର୍ବାଦ କରିଥିଲେ ଓ ଗୋପା ଫେରି ଆସିଥିଲେ । ଗୋପା ବୁଝି ପାରି ନ ଥିଲେ ଏ କି କଥା, କି ଦାୟିତ୍ୱ ! ଭାନୁପ୍ରକାଶ ତାଙ୍କୁ ନେବେ କାହିଁକି, ତାଙ୍କ ସହିତ କି ବନ୍ଦୋବସ୍ତ ? କିନ୍ତୁ ବ୍ୟାସଦେବଙ୍କର ନିର୍ଦ୍ଦେଶ । ସେ ତ୍ରିକାଳଦର୍ଶୀ । ସେ ଯାହା ଦେଖି ପାରୁଛନ୍ତି ଗୋପାଙ୍କର ଜାଣିବା ସାଧ୍ୟ ନୁହେଁ । ଗୋପାଙ୍କର ଅଜ୍ଞାତରେ ତାଙ୍କର ଭାଗ୍ୟର ଧାରା ବଦଳି ଗଲା ।

ହଁ, ବଦଳି ଯାଇଥିଲା । ଗୋପା ସେସବୁ କଥା ହୁଏତ କହି ନ ଥାନ୍ତେ ବା ଅଳ୍ପରେ ସାରିଥାନ୍ତେ । କିନ୍ତୁ ଭାନୁପ୍ରକାଶଙ୍କର ହସ ହସ ମୁହଁ ଓ ହସ ହସ ଆଖି ଗୋପାଙ୍କୁ ଯେପରି ଉତ୍ସାହିତ କଲା । ସେ କହିଥିଲେ - 'ଗୋପା, ଏଣିକି ତ ତୁମର ମୋର ଦିହିଁଙ୍କର କଥା । ଅରିନ୍ଦମକୁ ସବୁ କୁହ । ଏ ତ ଖାଲି କଥା ନୁହେଁ । ତା' ଆଗରେ କ'ଣ ଦାୟିତ୍ୱ ସେ ସେସବୁ ବୁଝିପାରିବ ।' ସେତେବେଳକୁ ସନ୍ଧ୍ୟା ଗଡ଼ିଗଲାଣି । ଖାଇବା ପାଇଁ ଭୋଗ ମଧ୍ୟ ପ୍ରସ୍ତୁତ ହୋଇଗଲାଣି । ସେହି ଅଧା ଆଲୁଅ ଅଧା ଅନ୍ଧାରରେ ମନ୍ଦିରରେ ବସିଥିବା ଅଳ୍ପ କେଇଜଣ ଲୋକ ସମସ୍ତେ ଚୁପ୍ । ଅତୀତ ଯେପରି ଖଣ୍ଡ ଖଣ୍ଡ ହୋଇ ଛାଇ ପରି ଭାସି ବୁଲୁଥାଏ । ଆଉ ସେହି ବିରାଟ ବ୍ୟକ୍ତିତ୍ୱ ସବୁ - ବ୍ୟାସ, ଭୀଷ୍ମ, ସତ୍ୟବତୀ ।

ତା'ପରେ ଗୋପାଙ୍କର ନୂଆ ଜୀବନ । ଯାହା ଯାହା ସବୁ ଘଟିଲା ସେସବୁ ଘଟିବ ବୋଲି ଗୋପା ଆଗରୁ କେବେ ଭାବିପାରି ନ ଥିଲେ । ସେ କୁରୁକ୍ଷେତ୍ରରୁ ହସ୍ତିନା ଏକା ଫେରିଲେ ନାହିଁ । ତାଙ୍କ ସାଙ୍ଗରେ ଭାନୁପ୍ରକାଶ । ଉଭୟ ଗୋଟିଏ ରଥରେ ହସ୍ତିନା ଫେରି ଆସିଲେ । ଗୋପା ଜୀବନରେ ପ୍ରଥମ ଥର ପାଇଁ ଭାନୁପ୍ରକାଶଙ୍କୁ ଭେଟିଲେ । କିନ୍ତୁ ତାଙ୍କର ବାରମ୍ବାର ମନେହେଲା ଯେପରି ଭାନୁପ୍ରକାଶ ତାଙ୍କର ବହୁ ପରିଚିତ, କେବଳ ଏ ଜନ୍ମରୁ ନୁହେଁ, ବହୁ ବହୁ ଜନ୍ମରୁ । ଭାନୁପ୍ରକାଶ ବି ସେହିପରି । ତାଙ୍କର କଥାବାର୍ତ୍ତା, ହାବଭାବ ଯେପରି ଜଣେ ଏବେ ଏବେ ନୂଆ କରି ଭେଟିଥିବା ଲୋକ ସାଙ୍ଗରେ ନୁହେଁ । ଯେପରି ଗୋପା ତାଙ୍କର ଅତି ପରିଚିତ ସେହିପରି ବ୍ୟବହାର । ଆଉ ଗୋପା ଯେ ଜଣେ ତରୁଣୀ ଏକଥା ସେ ଯେପରି ପୂରା ଭୁଲିଯାଇଛନ୍ତି । ତାଙ୍କର କଥାବାର୍ତ୍ତା ଦୁଇଜଣ ସହକର୍ମୀଙ୍କ ଭିତରେ କଥାବାର୍ତ୍ତା ପରି । ସମାନ ବିଶ୍ୱାସ ସମାନ ସ୍ୱାଭାବିକତା । ପ୍ରଥମେ ପ୍ରଥମେ ଗୋପାଙ୍କୁ ଖରାପ ଲାଗିଥିଲା । ଏ କି ଲୋକ ! ଜଣାଶୁଣା ହେଉ ହେଉ ସେ ବ୍ୟବହାର କରୁଛନ୍ତି

ଯେପରି ଗୋପା ତାଙ୍କର ନିଜର ଲୋକ, ଘରର ଲୋକ । ସେ ପ୍ରତିବାଦ କରିବା କଥା ଭାବିଥିଲେ । କିନ୍ତୁ ତାଙ୍କର ଭାବନା ଭାବନାରେ ହିଁ ରହିଗଲା । ଭାନୁପ୍ରକାଶଙ୍କ ବ୍ୟବହାର ଏତେ ସହଜ ଏତେ ପ୍ରାଣବନ୍ତ ଯେ କିଛି କହିବାକୁ ହିଁ ଗୋପାଙ୍କୁ ସଂକୋଚ ଲାଗିଥିଲା । ତା' ଛଡ଼ା ସେ ଦେଖିଛନ୍ତି ବ୍ୟାସଦେବଙ୍କର ଭାନୁପ୍ରକାଶଙ୍କ ପ୍ରତି କି ଅଗାଧ ବିଶ୍ୱାସ । ଯାହାଙ୍କୁ ସମସ୍ତେ ମୁଣ୍ଡିଆ ମାରନ୍ତି ସେହି ହିଁ ଭାନୁପ୍ରକାଶଙ୍କୁ ଅତ୍ୟନ୍ତ ନିକଟକୁ ଟାଣି ନେଇଛନ୍ତି । ଭାନୁପ୍ରକାଶଙ୍କୁ ଜାଣିବା ପାଇଁ ଏତିକି କଅଣ ଯଥେଷ୍ଟ ନୁହେଁ । ଗୋପା ମନେ ମନେ ସ୍ଥିର ହେଲେ । ଭାନୁପ୍ରକାଶ ଗୋପାଙ୍କୁ ନିଜର ଯୋଗ୍ୟ ସହକର୍ମୀ ଭାବରେ ବ୍ୟବହାର କରୁଛନ୍ତି । ସେ ବି ଭାନୁପ୍ରକାଶଙ୍କର ବିଶ୍ୱାସର ପ୍ରତିଦାନ ଦେବେ ।

ଗୋପଙ୍କର ଦ୍ୱିତୀୟ ବିସ୍ମୟ ହସ୍ତିନାରେ ଅପେକ୍ଷା କରିଥିଲା । ସେ ବି ଭାନୁପ୍ରକାଶଙ୍କ ସମ୍ପର୍କରେ । ବ୍ୟାସଙ୍କର ସନ୍ଦେଶ ଦେବା ପାଇଁ ଗୋପା ଯେତେବେଳେ ସତ୍ୟବତୀଙ୍କ ନିକଟକୁ ଗଲେ, ଭାନୁପ୍ରକାଶ ବି ତାଙ୍କ ସାଙ୍ଗରେ ଗଲେ । ସତ୍ୟବତୀଙ୍କର ପ୍ରାସାଦ ହସ୍ତିନା ମୁଖ୍ୟ ରାଜପ୍ରସାଦର ବାହାରେ, କିଛି ଦୂରରେ, ପ୍ରବେଶ ଦ୍ୱାରରେ ରକ୍ଷୀ । ରକ୍ଷୀମାନେ ଗୋପାଙ୍କୁ ଜାଣନ୍ତି, କିନ୍ତୁ ସେମାନେ ଭାନୁପ୍ରକାଶଙ୍କୁ ଛାଡ଼ିବେ କି ନାହିଁ ଗୋପାଙ୍କର ସନ୍ଦେହ ଥିଲା । ରାଜମାତାଙ୍କର ଅନୁମତି ନେବାକୁ ପଡ଼ିବ । ସେ ଭାନୁପ୍ରକାଶଙ୍କୁ ପଚାରିଥିଲେ - ଆପଣଙ୍କୁ ରାଜମାତା ଜାଣନ୍ତି କି ? ଭାନୁପ୍ରକାଶ କେବଳ ସଂକ୍ଷେପରେ କହିଥିଲେ, ହଁ । ଗୋପା ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଥିଲେ । କିନ୍ତୁ ପ୍ରବେଶ ଦ୍ୱାରରେ ରକ୍ଷୀମାନେ ତାଙ୍କୁ ଯେପରି ସମ୍ବର୍ଦ୍ଧନା କଲେ ସେ ଆହୁରି ଆଶ୍ଚର୍ଯ୍ୟ ହୋଇଥିଲେ । ତାଙ୍କର ମନେ ହୋଇଥିଲା ଭାନୁପ୍ରକାଶ ଏ ପ୍ରାସାଦର ଅତ୍ୟନ୍ତ ପରିଚିତ ବ୍ୟକ୍ତି । ଖାଲି ପରିଚିତ ନୁହନ୍ତି, ଜଣେ ସମ୍ମାନନୀୟ ବ୍ୟକ୍ତି । ରକ୍ଷୀ ଭିତରକୁ ଖବର ପଠେଇଥିଲେ । ରାଜମାତାଙ୍କର ପରିଚାରିକା ଆସି ଭାନୁପ୍ରକାଶଙ୍କୁ ନମସ୍କାର କଲା, ଓ ଗୋପାଙ୍କୁ ଚାହିଁ କହିଲା- ରାଜମାତାଙ୍କର ପୂଜା ସରିଗଲାଣି । ତୁମେ ଆସ, ଭାନୁପ୍ରକାଶ ଆସନ୍ତୁ । ଭିତରେ ବିଦୂର ଅଛନ୍ତି ।

ଗୋପା ଚମକି ଉଠିଥିଲେ । ବିଦୂର ରାଜମାତାଙ୍କ ପାଖରେ ଅଛନ୍ତି । ଏ କଅଣ ଆକସ୍ମିକ ଯୋଗାଯୋଗ ନାଁ ଆଉ କିଛି । ବ୍ୟାସଦେବଙ୍କ ପରି ସେ ତ୍ରିକାଳଦର୍ଶୀ, ହସ୍ତିନାର ମହାମନ୍ତ୍ରୀ ଓ ଉଭୟ ଭୀଷ୍ମ ଓ ସତ୍ୟବତୀଙ୍କର ଅତ୍ୟନ୍ତ ଘନିଷ୍ଠ । ସେ ଯେତେବେଳେ ରାଜମାତାଙ୍କୁ ଭେଟିବାକୁ ଆସନ୍ତି ସେତେବେଳେ ରାଜମାତାଙ୍କୁ ଅନ୍ୟ କେହି ଭେଟିବାର ଅନୁମତି ନାହିଁ । କିନ୍ତୁ ଆଶ୍ଚର୍ଯ୍ୟ ! ବିଦୂର ରାଜମାତାଙ୍କ ପାଖରେ ଅଛନ୍ତି । ଅଥଚ ରାଜମାତା ଗୋପାଙ୍କୁ, ବିଶେଷ କରି ଭାନୁପ୍ରକାଶଙ୍କୁ, ଦେଖା କରିବାକୁ


Digitized by srujanika@gmail.com

ଡାକୁଛନ୍ତି । ଗୋପାଙ୍କର ଜ୍ଞାନଚକ୍ଷୁ ହଠାତ୍ ଖୋଲିଗଲା । ନାଁ, ଭାନୁପ୍ରକାଶ ସାଧାରଣ ଲୋକ ନୁହନ୍ତି । ସେ କେବଳ ବ୍ୟାସଦେବଙ୍କର ଅନ୍ତରଙ୍ଗ ନୁହନ୍ତି, ରାଜମାତା ସତ୍ୟବତୀଙ୍କର ବି । ଆଉ ସେ ଯେ ଆଜି ଗୋପାଙ୍କ ସାଙ୍ଗରେ ଆସିଛନ୍ତି, ଗୋପାଙ୍କ ଦାୟିତ୍ୱ ନେଇଛନ୍ତି, ଏକଥା ରାଜମାତା ଜାଣନ୍ତି । ଆଉ ସେଇଥିପାଇଁ ବୋଧହୁଏ ମହାମନ୍ତ୍ରୀ ବିଦୂର ବି ଆସିଛନ୍ତି । ଗୋପା ମନେ ମନେ ଭୀତତ୍ରସ୍ତ ହୋଇ ଉଠିଲେ । ଏ କି ଦାୟିତ୍ୱ, କି କାମ ! ତାଙ୍କର ମନେହେଲା ନଈର ସୁଅରେ ପହଁରୁ ପହଁରୁ ସେ ଯେପରି ଅତଳ ଜଳରେ ବୁଡି ଯାଉଛନ୍ତି । ସେ ବିବ୍ରତ ହୋଇ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲେ । ଭାନୁପ୍ରକାଶଙ୍କ ମୁହଁ ଆଗପରି ସହଜ, ସ୍ୱାଭାବିକ, ଆଖି ହସ ହସ, କେଉଁଠି ସାମାନ୍ୟ ବିବ୍ରତ ବା ଭୟର ଚିହ୍ନ ନାହିଁ । ସେ ହସ ହସ ମୁହଁରେ ଗୋପାଙ୍କୁ ଚାହିଁଲେ, କହିଲେ – 'ଭଲ ହେଲା, ରାଜମାତାଙ୍କ ପାଖରେ ମହାମନ୍ତ୍ରୀ ବି ଅଛନ୍ତି । ଗୋପା ଚାଲ, ଅନେକ କଥା ଅଛି ।'

ବାସ୍ତବିକ ସେଦିନ ଅନେକ କଥା ହେଲା । ରାଜମାତା ସତ୍ୟବତୀ, ମହାମନ୍ତ୍ରୀ ବିଦୁର, ଭାନୁପ୍ରକାଶ ଓ ଗୋପା । ଆଉ ଯେଉଁ ଦୁଇଜଣ ସେଠାରେ ଉପସ୍ଥିତ ନ ଥିଲେ ମଧ୍ୟ ସେମାନଙ୍କ କଥା ବାରମ୍ବାର ଉଠୁଥାଏ ସେମାନେ ହେଲେ ବ୍ୟାସଦେବ ଓ ଭୀଷ୍ମ । ନାଁ, ଏ ଗୋପାଙ୍କ କଥା ବିଶେଷ ନୁହେଁ । ଗୋପାଙ୍କ ସୂଚନା ମଝିରେ ମଝିରେ ଆସୁଥାଏ । ଏ ରାଜ୍ୟମାନଙ୍କ କଥା, ରାଜାମାନଙ୍କ କଥା, ସମଗ୍ର ଆର୍ଯ୍ୟାବର୍ତ୍ତର କଥା, ଆର୍ଯ୍ୟମାନଙ୍କର ଅତୀତ ଓ ଭବିଷ୍ୟତ, ଆର୍ଯ୍ୟମାନଙ୍କର ଶୃଙ୍ଖଳା, ଧର୍ମ, କିପରି ପରିବ୍ୟାପ୍ତ ଲୋଭ ଉଚ୍ଚାଶା ଅଧର୍ମକୁ ପ୍ରତିହତ କରିବାକୁ ହେବ, ବିଶେଷ କରି କୁରୁ ରାଜବଂଶର କାର୍ଯ୍ୟ କ'ଣ, ହସ୍ତିନାର ଦାୟିତ୍ୱ କେତେ । ଗୋପାଙ୍କର ନିଜର ବିସ୍ମୟ ପାହାଡ଼ ପରି ତାଙ୍କୁ ମାଡ଼ି ବସିଲା । ସେ ଅଜ୍ଞ, ମୂର୍ଖ । ସେ ସ୍ୱପ୍ନରେ ଭାବି ନ ଥିବା ବିଷୟସବୁ ଏଠାରେ ଆଲୋଚିତ ହେଉଛି । ସେ ଉତ୍ତର କୁରୁର ଜଣେ ସାଧାରଣ ନାରୀ, ଅନାଥ । ସେ ନିଜେ କିପରି ବଞ୍ଚି ରହିବେ, ନିଜର ଦି ଭାଇ ଭଉଣୀଙ୍କି କିପରି ବଞ୍ଚେଇ ରଖିବେ ସେଇଟାହିଁ ବଡ଼ କଥା । ତାଙ୍କର ସୌଭାଗ୍ୟ ଯେ ସେ କୌଣସି ଦୁଷ୍ଟ ଲୋକ ହାବୁଡ଼ରେ ନ ପଡ଼ି ରାଜମାତା ସତ୍ୟବତୀଙ୍କର ଦୟା ଓ ସହାନୁଭୂତି ପାଇ ପାରିଛନ୍ତି । ତାଙ୍କରି କାମ ଦାମ କରିଦେଇ ସେ ଭଲରେ ଅଛନ୍ତି, ଖୁସିରେ ଅଛନ୍ତି । ସେ ଜାଣନ୍ତି ସେ ସତ୍ୟବତୀଙ୍କର ପାଖ ଲୋକ ବୋଲି ଅନେକ ତାଙ୍କୁ ଇର୍ଷା କରନ୍ତି । କିନ୍ତୁ ସତ୍ୟବତୀ ତାଙ୍କୁ ସ୍ନେହ କରନ୍ତି ବୋଲି କେହି ତାଙ୍କର କ୍ଷତି କରନ୍ତି ନାହିଁ ବା କରିବାକୁ ସାହସ କରନ୍ତି ନାହିଁ । କିନ୍ତୁ ଏସବୁ ଆଲୋଚନା କଅଣ ? ସେ ଏସବୁ ଆଲୋଚନାର କ'ଣ ବା ଜାଣନ୍ତି ? ତାଙ୍କୁ ପାଖରେ ବସେଇ ଏସବୁ ଆଲୋଚନା

କାହିଁକି ?

ଅନ୍ତତଃ ଦୁଇଟି କଥା ଗୋପାଙ୍କ ନିକଟରେ ସ୍ପଷ୍ଟ ହୋଇଗଲା । ପ୍ରଥମ କଥା, ଭାନୁପ୍ରକାଶଙ୍କୁ ସେ ଆଗରୁ ନ ଦେଖିଥିଲେ ବି ବା ନ ଜାଣିଥିଲେ ବି ସେ ଏମାନଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ଓ ଏମାନଙ୍କର ସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିର ଭାଗୀଦାର । କେବଳ ବ୍ୟାସଦେବଙ୍କର ଶିଷ୍ୟ ଭାବରେ ତାଙ୍କର ପରିଚୟ ନୁହେଁ । ତା ବାହାରେ ତାଙ୍କର ପରିଚୟ ରହିଛି, ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପରିଚୟ । ଦ୍ୱିତୀୟରେ, ରାଜମାତା ସତ୍ୟବତୀଙ୍କ ବିଷୟରେ । ସେ ଶୁଣିଥିଲେ ରାଜମାତା ସତ୍ୟବତୀ କୈବର୍ତ୍ତ କନ୍ୟା, ତାଙ୍କର ଅପରୂପ ରୂପ ଲାବଣ୍ୟରେ ପ୍ରଥମେ ମୁନି ପରାଶର ଓ ପରେ ସମ୍ରାଟ ଶାନ୍ତନୁ ମୋହିତ ହୋଇଥିଲେ ଓ ସମ୍ରାଟ ଶାନ୍ତନୁ ସତ୍ୟବତୀଙ୍କୁ ବିବାହ କରି ପାରିବେ ବୋଲି ଭୀଷ୍ମଙ୍କ ପରି ମହା ପରାକ୍ରମୀ ଯୋଦ୍ଧା ସାରାଜୀବନ ଅବିବାହିତ ରହିଗଲେ । ଗୋପା ମଧ୍ୟ ଯେତେବେଳେ ସତ୍ୟବତୀଙ୍କୁ ପ୍ରଥମ ଦେଖିଲେ, ସେ କି ସୌନ୍ଦର୍ଯ୍ୟ । ବୟସ ହୋଇଥିଲା କିନ୍ତୁ ବୟସ ଯେପରି ସତ୍ୟବତୀଙ୍କୁ ଛୁଇଁ ପାରି ନ ଥିଲା । ସେ ସୌନ୍ଦର୍ଯ୍ୟ ଅଦ୍ଭୁତ । ଗୋପା ସେପରି ସୌନ୍ଦର୍ଯ୍ୟବତୀ ରମଣୀଙ୍କୁ ଜୀବନରେ କେଉଁଠି ଦେଖି ନ ଥିଲେ କି ଭବିଷ୍ୟତରେ କେବେ ଦେଖିବେ ଏ ବିଶ୍ୱାସ ବି ନ ଥିଲା । ବ୍ୟାସଦେବ ସତ୍ୟବତୀଙ୍କର ପୁଅ, ପରାଶରଙ୍କର ଔରସରେ ସତ୍ୟବତୀଙ୍କର ଜନ୍ମିତ ସନ୍ତାନ । ଏ ସତ୍ୟବତୀଙ୍କର ବିବାହ ପୂର୍ବର ଘଟଣା । ଏ କଥା ଜାଣି ମଧ୍ୟ ସମ୍ରାଟ ଶାନ୍ତନୁ ସତ୍ୟବତୀଙ୍କୁ ବିବାହ କରିଥିଲେ । ଆଉ ବ୍ୟାସଦେବ ମା'ଙ୍କ ପାଖକୁ ଆସି ସତ୍ୟବତୀଙ୍କୁ ଭୂମିଷ୍ଠ ପ୍ରଣାମ କରିବା ଗୋପା ଦେଖିଛନ୍ତି । ବ୍ୟାସଙ୍କ ସହିତ ସତ୍ୟବତୀଙ୍କୁ ଦେଖିଲେ, କେହି ଭାବିବ ନାହିଁ ସେମାନେ ମା' ପୁଅ । ସତ୍ୟବତୀଙ୍କର ସେ ଦେବଦୁର୍ଲଭ ସୌନ୍ଦର୍ଯ୍ୟ କେବଳ ଗୋପା ନୁହନ୍ତି ଯେ ଦେଖିଛି ସେ ଅଭିଭୂତ ହୋଇଛି । କିନ୍ତୁ ରାଜମାତା ସତ୍ୟବତୀଙ୍କର ଏ ଗୋଟିଏ ଦିଗ, ଗୋପା କହନ୍ତି । ଅନ୍ୟ ଦିଗଟି ସମାନ ମହତ୍ତ୍ୱପୂର୍ଣ୍ଣ, ବୋଧହୁଏ ମହତ୍ତ୍ୱତମ - ତାଙ୍କର ହୃଦୟ, ଉଦାରତା, ସ୍ନେହ, ଶ୍ରଦ୍ଧା । ଗୋପା କୋଉ ଉତ୍ତର କୁରୁରୁ ଶିକ୍ଷାଦୀକ୍ଷା ନ ଥିବା ଗୋଟିଏ ଗାଉଁଲୀ ଝିଅ । ନିଜ ଚାରିପାଖର ଗଛବୃକ୍ଷ, ଜୀବଜନ୍ତୁ, ପାହାଡ଼ ପର୍ବତ ଛଡ଼ା ସେ କିଛି ଜାଣି ନ ଥିଲେ । ତାଙ୍କ ପାଇଁ ପ୍ରସିଦ୍ଧ ହସ୍ତିନାପୁର, କୁରୁ ରାଜବଂଶର ଆଭିଜାତ୍ୟ କେଉଁ ଦୂର ସ୍ୱପ୍ନ ପରି । ତାଙ୍କୁ ସାଙ୍ଗରେ ନେଇ ଯେଉଁ ବ୍ୟକ୍ତି ରାଜମାତା ସତ୍ୟବତୀଙ୍କ ପାଖକୁ ଯାଇଥିଲେ ସେ ବାଟରେ କେତେ କେତେ ଉପଦେଶ ଦେଇଥିଲେ - କେମିତି ପ୍ରଣାମ କରିବ, କେମିତି କଥା କହିବ, କଅଣ କହିବ ବା କଅଣ ନ କହିବ, କେତେ କେତେ । କିନ୍ତୁ ସେସବୁ କିଛି ଦରକାର ହେଲା ନାହିଁ । ରାଜମାତାଙ୍କୁ ଦେଖିବା ସାଙ୍ଗେ


Digitized by srujanika@gmail.com

ସାଙ୍ଗେ ତାଙ୍କର ଯେପରି କଅଣ ହୋଇଗଲା । ସେ ନିହାତି ବୋକା ଝିଅଟି ପରି ଚୁପ୍ ହୋଇ ଛିଡ଼ା ହେଲେ । ସତ୍ୟବତୀ କିଛି ସମୟ ଚୁପହୋଇ ଗୋପାଙ୍କୁ ଚାହିଁଲେ । ଗୋପାଙ୍କୁ ସାଙ୍ଗରେ ନେଇ ଯିଏ ଯାଇଥିଲେ ସେ କ'ଣ କହିବାକୁ ଚାହିଁଲେ । ସତ୍ୟବତୀ ହାତ ଟେକି ତାଙ୍କୁ ବନ୍ଦ କରିଦେଲେ । ଗୋପାଙ୍କର ମନେହେଲା ସତ୍ୟବତୀଙ୍କର ଦି ଆଖିରୁ ଅଗାଧ ସ୍ନେହଧାରା ବହି ଆସୁଥାଏ । ମୁହଁ ହସ ହସ । ସେ ଗୋପାଙ୍କୁ ପାଖକୁ ଯିବାକୁ ଇଙ୍ଗିତ କଲେ, କହିଲେ – 'ତୁମେ ଉତ୍ତର କୁରୁରୁ ଆସିଛ ? ମୋ' ମା' ବି ଉତ୍ତର କୁରୁରୁ ଆସିଥିଲେ, ତୁମେ କାଲି ତୁମର ଭାଇ ଭଉଣୀଙ୍କୁ ନେଇ ଚାଲିଆସ । ତୁମେ ଏଇଠି ରହିବ ।' ବାସ ସେତିକି, ଗୋପାଙ୍କର ସବୁ ଆଶଙ୍କା, ଭୟ ମୁହୂର୍ତ୍ତକରେ ଭାଙ୍ଗିଗଲା ।

ଏସବୁ ଠିକ୍, ଗୋପା କହନ୍ତି । ରାଜମାତା ସତ୍ୟବତୀ ଅତ୍ୟନ୍ତ ସ୍ନେହଶୀଳ, କେବଳ ଗୋପାଙ୍କ ପ୍ରତି ନୁହନ୍ତି, ସମସ୍ତଙ୍କ ପ୍ରତି । ତେବେ ଗୋପାଙ୍କ ପ୍ରତି ତାଙ୍କର ସବୁବେଳେ ନଜର ରହିଥିଲା । ବିଶେଷ କରି ସେହି ଗଙ୍ଗା ନଦୀ ଦୁର୍ଘଟଣା ପରେ ଗୋପାଙ୍କର ମନେ ହୋଇଥିଲା ସେ ଯେପରି ସତ୍ୟବତୀଙ୍କର ଅତ୍ୟନ୍ତ ନିକଟକୁ ଚାଲି ଯାଇଛନ୍ତି । ସତ୍ୟବତୀ ତାଙ୍କୁ ଅନେକ ସମୟରେ ଗୋପନୀୟ କଥା କହନ୍ତି ଓ ଗୋପନୀୟ କାର୍ଯ୍ୟର ଦାୟିତ୍ୱ ଦିଅନ୍ତି, ଯାହାକି ସେ ବିନା ଦ୍ୱିଧାରେ ପାଳନ କରିଛନ୍ତି । ତେବେ ସତ୍ୟବତୀଙ୍କୁ ଗୋପା ଯାହା ଜାଣିଥିଲେ ସେ ସମସ୍ତେ ଶ୍ରଦ୍ଧା ଓ ସମ୍ମାନ କରୁଥିବା ରାଜମାତା ଭାବରେ, ମାତା ଭାବରେ, ଜଣେ ଅତ୍ୟନ୍ତ ଉଦାରହୃଦୟା ମହିୟସୀ ମହିଳା ଭାବରେ । କିନ୍ତୁ ସେଦିନ ସେ ଯାହା ଦେଖିଲେ ସ୍ତମ୍ଭିତ ହୋଇଗଲେ । ଏ ସତ୍ୟବତୀ ରାଷ୍ଟ୍ରନାୟିକା ସତ୍ୟବତୀ । ଭୀଷ୍ମ ନୁହନ୍ତି ସେହି ହିଁ ହସ୍ତିନାର ମୁଖ୍ୟ, କୌରବ ରାଜବଂଶର ନେତ୍ରୀ, ତାଙ୍କର ବିଚାର ଓ ନିର୍ଦ୍ଦେଶ ରାଷ୍ଟ୍ରମୁଖ୍ୟର ନିର୍ଦ୍ଦେଶ । ପରାକ୍ରମୀ ଭୀଷ୍ମ, ମହାମନ୍ତ୍ରୀ ବିଦୂର, ମହାନ ଗୁରୁ ବ୍ୟାସଦେବ ତାଙ୍କରି ନିର୍ଦ୍ଦେଶରେ ହିଁ କାର୍ଯ୍ୟ କରୁଛନ୍ତି । ସେ ସାଧାରଣ ସ୍ତ୍ରୀଲୋକ ନୁହନ୍ତି, ଅସାଧାରଣ ଅଦ୍ୱିତୀୟ ନାରୀ । ସେମାନେ ଆଲୋଚନା କରୁଥାନ୍ତି – ରାଜମାତା, ମହାମନ୍ତ୍ରୀ, ଭାନୁପ୍ରକାଶ । ଅନେକ କଥା ଗୋପା ବୁଝୁଥାନ୍ତି, ଅନେକ କଥା ବୁଝି ବି ପାରୁ ନ ଥାନ୍ତି । କିନ୍ତୁ ଗୋଟିଏ କଥା ତାଙ୍କୁ ଆଚ୍ଛନ୍ନ କରି ରଖିଲା । ସେ ବୁଝିଲେ ଏ କେବଳ ହସ୍ତିନା ବା କୌରବ ରାଜବଂଶର କଥା ନୁହେଁ । ଏ ସାରା ଆର୍ଯ୍ୟାବର୍ତ୍ତର କଥା, ସାରା ଭାରତବର୍ଷର କଥା, ଆର୍ଯ୍ୟମାନଙ୍କର ଶକ୍ତି ଓ ଉଚ୍ଚାଭିଳାଷର କଥା, ରାଜନୀତି, ଧର୍ମ ଓ ନ୍ୟାୟର କଥା । ସେ ଥରେ ଦି'ଥର ଉଠିଯିବାକୁ ଚେଷ୍ଟା କରିଥିଲେ । କିନ୍ତୁ ସତ୍ୟବତୀ ତାଙ୍କୁ ଇଙ୍ଗିତରେ ବସିବାକୁ କହିଥିଲେ । ବିଚାର

ଆଲୋଚନା ସେହିପରି ଚାଲିଥାଏ । ଗୋପା ବୁଝିପାରିଲେ ନାହିଁ ସେ କ'ଣ କରିବେ, ତାଙ୍କୁ କ'ଣ କରିବାକୁ ହେବ ବା ତାଙ୍କର କି ଯୋଗ୍ୟତା ଅଛି ।

ଗୋପାଙ୍କ ଉତ୍ତେଜିତ ସ୍ୱର ସେହି ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଶୁଣୁ ଶୁଣୁ ଅରିନ୍ଦମର ମନେହେଲା ସେ ନିଜେ ଯେପରି ଉତ୍ତେଜିତ ହୋଇ ଉଠୁଛି । ଗୋପାଙ୍କ ପରି ତା'ର ନିଜର ଅବସ୍ଥା । ଗୋପା ଯେପରି ପାହାଡ଼ ଜଙ୍ଗଲର ସରଳ ସିଧାସିଧା ପରିବେଶରୁ ଆସି ହଠାତ୍ ଜଟିଳ ରାଜନୀତିର ଚକ୍ରରେ ପଡ଼ିଗଲେ ସେ ବି । ମଥୁରାରେ ତା' ଜୀବନ ସିଧା ସିଧା, ସହଜ । ଯମୁନା ଓ ସାଙ୍ଗସାଥୀମାନଙ୍କ ମେଳରେ ଯା' ଥିଲା ସେଥିରେ ଦାୟିତ୍ୱ ନ ଥିଲା କି କାହା ବିରୁଦ୍ଧରେ ଲଢ଼େଇ କରିବାର ଆବଶ୍ୟକତା ନ ଥିଲା । ଗିରିବ୍ରଜରେ ସେସବୁ ହଠାତ୍ ବଦଳି ଗଲା । ସେ ବୁଝିଲା ଠିକ୍ ଭାବରେ ବଞ୍ଚି ରହିବାକୁ ହେଲେ ଆହୁରି ଅନେକ ଅନେକ କଥା କରିବାକୁ ହେବ । ସେଥିରେ ବିପଦ ଅଛି, ଜୀବନହାନୀର ଭୟ ଅଛି । କିନ୍ତୁ ସେସବୁର ମୁହାଁମୁହିଁ ହେବାକୁ ହେବ । ଯେପରି ଭାନୁପ୍ରକାଶ, ଭାନୁପ୍ରିୟ ବା ଗୋପା ହେଉଛନ୍ତି । ସେମାନେ ଭୟ ଭିତରେ ବଢ଼ି ଉଠିଛନ୍ତି । କିନ୍ତୁ ଏହି ଭୟ ହିଁ ସେମାନଙ୍କର ଶକ୍ତି । ଭୟ ଭିତରୁ ଯାହା ଉଠି ଆସୁଛି ସେ ନୂଆ ଜୀବନ, ନୂଆ ଚିନ୍ତା ।

ଗୋପା କହି ଚାଲିଥାନ୍ତି । ରାଜମାତାଙ୍କ ଆଗରେ ବସି, ସେମାନଙ୍କର ସମ୍ମିଳିତ ଆଲୋଚନା ଶୁଣୁ ଶୁଣୁ ଗୋପାଙ୍କର ମନେ ହୋଇଥିଲା ଉତ୍ତର କୁରୁ କେଉଁ ଦୂର ଦିଗ୍‌ବଳୟରେ ହଜିଗଲାଣି । ଉତ୍ତର କୁରୁ ଏ ଜନ୍ମର କଥା ନୁହେଁ ଗତ ଜନ୍ମର କଥା । ତାଙ୍କ ଦେହରୁ ଯେପରି ଗୋଟାଏ ପରେ ଗୋଟାଏ ଛାଲ ଉଠିଯାଉଥାଏ । ଯାହା ବାହାରି ଆସୁଥାଏ ସେ ଗୋପା ନୁହେଁ, ଆଉ ଜଣେ କିଏ, ନୂଆ ମଣିଷ । ତାଙ୍କର ମନେହେଲା ତାଙ୍କର ବାଇଶ ତେଇଶ ବର୍ଷର ଜୀବନକୁ ଯେପରି କିଏ ପିଟି ପିଟି ଟାଣ କରି ଦେଉଛି । ସେଠି ଭାଇ ଭଉଣୀ ବାପ ମା' ବନ୍ଧୁବାନ୍ଧବ କେହି ନାହାନ୍ତି, ଏପରିକି ନିଜର ଭଲ ପାଇବା ନ ପାଇବା ବି ତୁଚ୍ଛ, ଯାହା ଅଛି ସେ ମଣିଷ ଜାତି, ମଣିଷ ଜାତିର କାର୍ଯ୍ୟ । ମଣିଷ ପାଇଁ ମଣିଷ ବିରୁଦ୍ଧରେ କାର୍ଯ୍ୟ । ଧାଡ଼ି ଧାଡ଼ି ପିମ୍ପୁଡ଼ି ଧାଡ଼ି ଚାଲିଛି । ଯେ କୌଣସି ସମୟରେ ଏ ଧାଡ଼ି ନିଶ୍ଚିହ୍ନ ହୋଇଯିବ, ଲୋପ ପାଇଯିବ ।

ଗୋଟା ସମୟରେ ବିଦୂର ଗୋପାଙ୍କୁ ଚାହିଁଲେ । କହିଲେ, 'ଗୋପା, ତୁମେ ହୁଏତ ଭାବୁଥିବ ଆମର ଏ ଆଲୋଚନାରେ ତୁମର କଅଣ କରିବାର ଅଛି ।' ଗୋପା ଚମକି ଉଠିଥିଲେ । ମହାମନ୍ତ୍ରୀ ବିଦୂରଙ୍କୁ ସେ ଦୂରରୁ ଦେଖିଛନ୍ତି, ଶୁଣିଛନ୍ତି ସେ ଅତ୍ୟନ୍ତ କାର୍ଯ୍ୟଦକ୍ଷ । ସମସ୍ତେ ତାଙ୍କୁ ଭୟ କରନ୍ତି । ସେ ବି, ଅନେକ ସମୟରେ ରାଜମାତାଙ୍କ ପାଖରୁ ଖବର ନେଇ ବିଦୂରଙ୍କ ପାଖରେ ପହଞ୍ଚେଇ ଦେଇଛନ୍ତି । ବାସ ସେତିକି । ସେ

କେବେହେଲେ ବିଦୂରଙ୍କ ସାଙ୍ଗରେ କଥାବାର୍ତ୍ତା କରି ନାହାନ୍ତି । କଥାବାର୍ତ୍ତା କରିବାକୁ ସାହସ ବି କରିନାହାନ୍ତି । ତେଣୁ ହଠାତ୍ ବିଦୂର ତାଙ୍କୁ କଥା କହିବାରେ ସେ ସଂକୁଚିତ ହୋଇଗଲେ । ଏ ପ୍ରଧାନ ରାଜପୁରୁଷଙ୍କୁ କଅଣ ବା କହିବେ । ସେ କି ତୁଚ୍ଛ । ବିଦୂର ପୁଣି କହିଲେ - 'ଗୋପା, ତୁମେ ନିଜକୁ ତୁଚ୍ଛ ବୋଲି ଭାବ ନା । ଆମେ ତୁମ ଉପରେ ଅନେକ ଦିନ ହେଲା ନଜର ରଖିଛୁ । ଆମର ଜଣେ ସାହସୀ, ବୁଦ୍ଧିମତୀ ନାରୀ ଦରକାର । ତୁମେ ସେ କାମ କରିବ ।'

ଗୋପାଙ୍କର ଆଶ୍ଚର୍ଯ୍ୟ ଭାବ କଟି ନ ଥିଲା, ବରଂ ବଢ଼ି ଯାଇଥିଲା । ସେ ସତ୍ୟବତୀଙ୍କୁ ଚାହିଁଲେ । ସତ୍ୟବତୀଙ୍କ ମୁହଁ ହସ ହସ, ଆଖିରେ ସ୍ନେହର ଧାରା । ଗୋପାଙ୍କର ମନେହେଲା ଠିକ୍ ତାଙ୍କର ମା'ଙ୍କ ପରି । ସେ ଯେପରି କହୁଛନ୍ତି ଭୟ କରନା ଗୋପା, ତୁମେ ଠିକ୍ ପାରିବ । ସେ ଭାନୁପ୍ରକାଶଙ୍କୁ ଚାହିଁଲେ । ଭାନୁପ୍ରକାଶଙ୍କ ସହିତ ତାଙ୍କର ପରିଚୟ ଏବେ ଏବେ, ତିନି ଚାରିଦିନ ବି ହେବନି । କିନ୍ତୁ ତାଙ୍କ ମୁହଁରେ, ଆଖିରେ ବହୁ ପୁରାତନ ବନ୍ଧୁର ଅନ୍ତରଙ୍ଗତା, ଆଗ୍ରହ । ବିଦୂର ପୁଣି କହିଲେ, 'ଗୋପା, ଆମେ ସମସ୍ତେ ତୁମ ବିଷୟରେ ଏକମତ । ମା'ହିଁ ତୁମ କଥା ପ୍ରଥମେ ଆମକୁ କହିଥିଲେ । ସେ ତୁମକୁ ବ୍ୟାସଦେବଙ୍କ ନିକଟକୁ ବାରମ୍ବାର ପଠଉଥିଲେ ବ୍ୟାସଦେବ ତୁମକୁ ଭଲ ଭାବରେ ଜାଣିବା ପାଇଁ । ତୁମର ମନେ ଅଛି ବ୍ୟାସଦେବ ତୁମକୁ ତାଙ୍କ ଆଶ୍ରମରେ ଅନେକ ସମୟରେ ଚାରି ପାଞ୍ଚ ଦିନ ରଖି ଦେଉଥିଲେ । କାହିଁକି ? ତୁମେ ତ ମା'ଙ୍କ ପାଖରୁ ଖବର ନେଇ ଯାଉଥିଲ । ଖବର ନେଇ ସାଙ୍ଗେ ସାଙ୍ଗେ ଫେରି ଆସୁଥାନ୍ତ । ନାଁ, ସେ ତୁମକୁ ତୁମ ଅଜାଣତରେ ବିଭିନ୍ନ ଭାବରେ ପରୀକ୍ଷା କରୁଥିଲେ । ଯେତେବେଳେ ସେ ମା'ଙ୍କ ପାଖକୁ ଖବର ଦେଲେ ଠିକ୍ ଅଛି, ତୁମକୁ ନିଆଯାଇ ପାରେ, ଆମେ ଭାନୁପ୍ରକାଶଙ୍କୁ ଖବର ଦେଲୁ । ସେ ଆସିଲେ । ତୁମେ ଭାବନା ଭାନୁପ୍ରକାଶ ତୁମକୁ ବ୍ୟାସଦେବଙ୍କ ଆଶ୍ରମରୁ କେବଳ ସାଙ୍ଗରେ ନେଇ ଆସିଲେ । ସେ ତୁମକୁ ପରୀକ୍ଷା କରି ସାରିଛନ୍ତି । ତାଙ୍କର ବି ସେହି ମତ, ଆମେ ତୁମ ଉପରେ ନିର୍ଭର କରି ପାରିବୁ ।'

ଗୋପା ଚୁପ ହୋଇ ବସିଥିଲେ । ସେ ଉଠି ପ୍ରଥମେ ସତ୍ୟବତୀଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ପଛେ ପଛେ ବିଦୂରଙ୍କୁ । ପରେ ସେ ଭାନୁପ୍ରକାଶଙ୍କୁ ଚାହିଁ କହିଲେ - 'କୁହନ୍ତୁ, ମୁଁ କ'ଣ କରିବି ?' ବିଦୂର ପୁଣି କହିଲେ – 'ଗୋପା, ତୁମେ ଆଉ ମା'ଙ୍କ ପାଖରେ ରହିବ ନାହିଁ । ତୁମେ ଭାନୁପ୍ରକାଶଙ୍କ ଦାୟିତ୍ୱରେ ରହିବ । ସେ ତୁମକୁ କ'ଣ କରିବାକୁ ହେବ, କେମିତି କରିବାକୁ ହେବ କହିବେ ଓ ସେ ବିଷୟରେ ଶିକ୍ଷା ଦେବେ । କିନ୍ତୁ ତା ଆଗରୁ ମୁଁ ତୁମକୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ । ତୁମେ

ତ ଆମ ପାଖରେ ଏତେ ସମୟ ଧରି ବସିଛ, ଆମର ଆଲୋଚନା ସବୁ ଶୁଣିଛ, ତୁମେ ଏ ବିଷୟରେ କ'ଣ ବୁଝିଲ, କୁହ ।'

ଗୋପା ଭାବିଲେ ଏ ବି ପରୀକ୍ଷା, ବୋଧହୁଏ ଶେଷ ପରୀକ୍ଷା - କଠିନତମ ପରୀକ୍ଷା । ମହାମନ୍ତ୍ରୀ ଅତ୍ୟନ୍ତ ଭଦ୍ର ଭାବରେ, ଯେପରି କିଛି କଥା ହିଁ ନୁହେଁ, ଏହିପରି ଭାବରେ ପ୍ରଶ୍ନ ପଚାରୁଛନ୍ତି । ତାଙ୍କୁ ଠିକ୍ ଉତ୍ତର ଦେବାକୁ ହେବ । ଏହି ଠିକ୍ ଉତ୍ତର ପାଇଁ ସେମାନେ ତାଙ୍କୁ ଏତେ ସମୟ ପାଖରେ ବସେଇ ରଖିଛନ୍ତି, ତାଙ୍କର ଆଗରେ ନାନା ପ୍ରକାର ଆଲୋଚନା ପ୍ରତିଆଲୋଚନା କରିଛନ୍ତି । ସେ ଠିକ୍ କଲେ ତାଙ୍କର ଉତ୍ତର ଭୁଲ ହେଉ କି ଠିକ୍ ହେଉ, ସେ ନିଜର ବିଦ୍ୟାବୁଦ୍ଧିରେ ଯାହା ବୁଝିଛନ୍ତି ଠିକ୍ ସେହି କଥାହିଁ କହିବେ, ସିଧାସିଧା କହିବେ, ବୁଲାବୁଲି ଗୋଳିଆମିଶା ନୁହେଁ । ସେ ବିଦୂରଙ୍କୁ ଚାହିଁଲେ, କହିଲେ - 'ମହାମନ୍ତ୍ରୀ, ଆପଣ ଜ୍ଞାନୀ, ଗୁଣୀ । ମୁଁ ମୂର୍ଖ, ଅଶିକ୍ଷିତ । ମୋ' ଦୋଷ ଧରିବେ ନାହିଁ । ମୁଁ ମୋ' ଅଳ୍ପ ବୁଦ୍ଧିରେ ଯାହା ବୁଝିଛି ସେହି କଥାହିଁ କହୁଛି । ବର୍ତ୍ତମାନ ଆର୍ଯ୍ୟାବର୍ତ୍ତ ଅଧର୍ମ, ଅନ୍ୟାୟରେ ପୂରିଗଲାଣି । ଯେଉଁ ରାଜଶକ୍ତି ଏ ଅଧର୍ମ ଅନ୍ୟାୟକୁ ବନ୍ଦ କରିପାରନ୍ତା ସେ ନିଜର ଲୋଭ ଓ ସ୍ୱାର୍ଥରେ ଏ ଅଧର୍ମ ଅନ୍ୟାୟର ପୋଷକତା କରୁଛି । ରାଜଶକ୍ତି ପ୍ରଜାଙ୍କୁ ରକ୍ଷା କରିବା କଥା । କିନ୍ତୁ ରାଜଶକ୍ତି ବର୍ତ୍ତମାନ ପ୍ରଜାଙ୍କ ସ୍ୱାର୍ଥ ବିରୁଦ୍ଧରେ, ପ୍ରଜାଙ୍କୁ ଧ୍ୱଂସ କରିଦେବାକୁ ଚାହୁଁଛି । ଆପଣମାନେ ଏହାର ପ୍ରତିବାଦ କରିବାକୁ ଚାହାଁନ୍ତି । ଯୁଦ୍ଧ କରି ନୁହେଁ । ପ୍ରଜାଶକ୍ତି ଜନଶକ୍ତିକୁ ଜାଗ୍ରତ କରି ଆପଣ ଏ ଅଧର୍ମ, ଅନ୍ୟାୟ ରାଜଶକ୍ତିକୁ ସଂଯତ କରିବାକୁ ଚାହାଁନ୍ତି, ଶୃଙ୍ଖଳିତ କରିବାକୁ ଚାହାଁନ୍ତି । ଅଧର୍ମ ବଦଳରେ ଧର୍ମର ପ୍ରତିଷ୍ଠା ହିଁ ଆପଣଙ୍କର ଲକ୍ଷ୍ୟ । ଉଦ୍ଦେଶ୍ୟ ଅଳ୍ପ କେତେକ ରାଜା ଓ ରାଜବଂଶୀୟ ଲୋକଙ୍କର ମଙ୍ଗଳ ନୁହେଁ, ଦୁଃଖରେ ପଡ଼ି ରହିଥିବା ଲକ୍ଷ ଲକ୍ଷ ପ୍ରଜାଙ୍କର ମଙ୍ଗଳ ।' ଗୋପାଙ୍କର ମନରେ ତାଙ୍କର ନିଜର, ତାଙ୍କର ପରିବାରର, ନିଜ ଗାଁର ବହୁ ପରିବାରର, ଦୁଃଖ, ନିର୍ଯାତନା ଭାସି ଉଠିଲା । ସେ ଚୁପ୍ କରିଗଲେ ।

ଗୋପା ଲକ୍ଷ୍ୟ କଲେ ବିଦୂରଙ୍କ ଗମ୍ଭୀର ମୁହଁ ସହଜ ହୋଇ ଆସିଲା । ସେ ଭାନୁପ୍ରକାଶଙ୍କୁ କହିଲେ, 'ଭାନୁପ୍ରକାଶ, ତୁମର ଦାୟିତ୍ୱ ଏବେ ଆରମ୍ଭ ହେଲା'। ତା' ପରେ ସେ ରାଜମାତାଙ୍କ ଆଡ଼କୁ ବୁଲି ପଡ଼ିଲେ । ସତ୍ୟବତୀଙ୍କ ମୁହଁ ସେହିପରି ହସହସ । ଯେପରି ସେ ଜାଣିଥିଲେ ଗୋପା କ'ଣ ଉତ୍ତର ଦେବେ । ସେ ବିଦୂରଙ୍କୁ କେବଳ ପଚାରିଲେ 'ବିଦୂର, ଠିକ୍ ତ ?' ଗୋପା ଆଶ୍ଚର୍ଯ୍ୟ ହୋଇ ଦେଖିଲେ ବିଦୂର ସାମାନ୍ୟ ହସିଲେ । କହିଲେ 'ମା, ଏ ତ ଆପଣଙ୍କ ଶିକ୍ଷା ।' ସତ୍ୟବତୀ କହିଲେ, 'ନାଇଁ, ନାଇଁ, ବିଦୂର, ତୁମେ ଗୋପାକୁ ଭୁଲ ବୁଝନା । ସେଇ ଗଙ୍ଗାରେ ମୁଁ ଗୋପାର

ସାହସ ଦେଖିଥିଲି । କିନ୍ତୁ ଗୋପା ସମାନ ବୁଦ୍ଧିମତୀ, ସପ୍ରତିଭା, ଆଉ ବଡ଼ କଥା ସେ ନିର୍ଭୀକ, ଯେକୌଣସି କାମରେ ତା' ଉପରେ ନିର୍ଭର କରିହେବ ।' ତା'ପରେ ଅଳ୍ପ ସମୟ ଚୁପ ରହି ସେ ଗୋପାଙ୍କୁ ଚାହିଁଲେ । କହିଲେ, 'ଗୋପା, ମୁଁ ତୁମକୁ ଗୋଟାଏ ବ୍ୟକ୍ତିଗତ କଥା ପଚାରିବାକୁ ଚାହେଁ । ତୁମେ କିଛି ସଂକୋଚ ନ କରି ଖୋଲାଖୋଲି କୁହ ।' ଗୋପା କେବଳ 'ଆଜ୍ଞା' କହି ଚୁପ ରହିଲେ । ସତ୍ୟବତୀ ପ୍ରଥମେ ବିଦୂର, ପରେ ଭାନୁପ୍ରକାଶଙ୍କୁ ଚାହିଁଲେ । ତା'ପରେ ଆଗପରି ସହଜ ସ୍ୱରରେ କହିଲେ, 'ଗୋପା ଶୁଣ, ମୁଁ ଜାଣେ ତୁମର କେତେକ ପୁରୁଷ-ବଂଧୁ ଅଛନ୍ତି । ସେମାନଙ୍କ ଭିତରୁ ଜଣେ ଦି'ଜଣ ତୁମ ସହିତ ବେଶ୍ ଘନିଷ୍ଠ । ତୁମେ ସେମାନଙ୍କ ଭିତରୁ କାହାକୁ ବିବାହ କରିବାକୁ ସ୍ଥିର କରିଛ ନା କରିବ ?'

ଗୋପାଙ୍କୁ ଲାଜ ଲାଗିଲା । ସେ କ'ଣ କହିବେ କହିବେ ହୋଇ କହି ପାରିଲେ ନାହିଁ । ସତ୍ୟବତୀ ଗୋପାଙ୍କ ସଂକୋଚ ଲକ୍ଷ୍ୟ କଲେ, କହିଲେ - 'ନାଇଁ, ସଂକୋଚ କର ନା ଗୋପା, ମତେ ବି ଭୁଲ ବୁଝ ନା । ମୁଁ ତୁମକୁ ସବୁ ପ୍ରକାର ସାହାଯ୍ୟ କରିବାକୁ ଚାହେଁ । ଆମର ଇଛା ତୁମେ ଆମ ସାଙ୍ଗରେ ମିଶ, କୁହ ।' ବିଦୂର ବି ସତ୍ୟବତୀଙ୍କ ସାଙ୍ଗରେ ସ୍ୱର ମିଳେଇଲେ, 'ଗୋପା, ମା' ଯାହା କହୁଛନ୍ତି ଠିକ୍ । ସଂକୋଚ କର ନା, ତୁମେ ଏଣିକି ଯେଉଁ କାମ ଆରମ୍ଭ କରିବ, ସେ ତ ପ୍ରାୟ ପୁରୁଷଙ୍କ ସାଙ୍ଗରେ । ତେଣୁ ଆମେ ତୁମର ସ୍ପଷ୍ଟ ମନୋଭାବ ଜାଣିବାକୁ ଚାହୁଁ ।'

ଗୋପା ଭାବିଲେ ଏ ଆଉ ଗୋଟାଏ ପରୀକ୍ଷା । ଗୋପା ମନ ଦୃଢ଼ କଲେ ଓ ସ୍ଥିର କଲେ ଯେ ସେ ଆଗପରି ସ୍ପଷ୍ଟ କଥାହିଁ କହିବେ । ସେ ହାତଯୋଡ଼ି ସତ୍ୟବତୀଙ୍କ ଆଗରେ ନଇଁ ପଡ଼ିଲେ, କହିଲେ - 'ମା, ଆପଣଙ୍କ ପାଖରେ ମୋର ଲୁଚେଇବାର କିଛି ନାହିଁ । ହଁ, ମୋର ପୁରୁଷ ବନ୍ଧୁ ଅଛନ୍ତି । ମୁଁ ତ ଏହିପରି ଜଣେ ପୁରୁଷ ବନ୍ଧୁଙ୍କ ସାହାଯ୍ୟରେ ଉତ୍ତର କୁରୁ ଛାଡ଼ି ଆସିବାକୁ ସାହସ କରିଥିଲି । ହସ୍ତିନାରେ ବି ମୋର ପୁରୁଷ ବନ୍ଧୁମାନେ ମୋତେ ସାହାଯ୍ୟ କରିଛନ୍ତି । ଆପଣଙ୍କ ପାଖକୁ ଆସି ଥଇଥାନ ହେବାରେ ବି ମୋର ଜଣେ ପୁରୁଷ ବନ୍ଧୁଙ୍କ ଯୋଗୁଁ ସମ୍ଭବ ହୋଇଛି । ତେବେ ଆମେ ସମସ୍ତେ ବନ୍ଧୁ ଆଉ କିଛି ନୁହେଁ । ମୁଁ ସେମାନଙ୍କ ସାଙ୍ଗରେ ମିଶିବାକୁ କେବେହେଲେ ଭୟ କରିନାହିଁ । ମୁଁ ସେମାନଙ୍କୁ ସବୁବେଳେ ସମାନ ସମାନ ବ୍ୟବହାର କରିଛି । ତେଣୁ ସେମାନେ ସବୁବେଳେ ମୋ' ସାଙ୍ଗରେ ସହଜ, ମୁଁ ଯେପରି ଝିଅ ନୁହେଁ, ସେମାନଙ୍କର ଆଉ ଜଣେ ପୁରୁଷ ବନ୍ଧୁ, ବାସ୍ । ମୁଁ ସେମାନଙ୍କୁ ସମ୍ମାନ କରିଛି, ସେମାନେ ମତେ ବି ସମ୍ମାନ କରିଛନ୍ତି ।'

'ଭୟ ବି', ସତ୍ୟବତୀ ସାମାନ୍ୟ ହସି କହିଲେ ।

ଗୋପା ସାମାନ୍ୟ ଲାଜେଇ ଗଲେ । କହିଲେ 'ସେକଥା ମା, ମୁଁ କହିପାରିବି ନାହିଁ । କିନ୍ତୁ ମୋର ପୁରୁଷ ବନ୍ଧୁମାନଙ୍କ ସାଙ୍ଗରେ ବିଶେଷ ଅସୁବିଧା କେବେ ହୋଇନି ।'

'କିନ୍ତୁ ଆଉ ଗୋଟାଏ କଥା ଛାଡ଼ିଗଲ ।' ବିଦୂର କହିଲେ, 'ବିବାହ'। ଗୋପା କିଛି ସମୟ ଚୁପ୍ କରିଗଲେ, କହିଲେ, 'ବିବାହ କଥା ଯେ ମୁଁ ନ ଭାବିଛି ତା ନୁହେଁ । କିନ୍ତୁ ବିବାହ ପାଇଁ ମନ ସ୍ଥିର କରିନାହିଁ, ମୋର ସାନ ଭାଇ ଭଉଣୀ ମୋ' ଉପରେ ନିର୍ଭର କରି ରହିଛନ୍ତି । ତା'ଛଡ଼ା ମୁଁ ପାହାଡ଼ ଦେଶର ଝିଅ । ମୁଁ ସ୍ୱାଧୀନ ଭାବରେ ରହିବାକୁ ଚାହେଁ । କାହା ଅଧୀନରେ, କାହା ହାତଟେକାରେ ନୁହେଁ । ଭବିଷ୍ୟତରେ ମୋର ମନ ପସନ୍ଦ ଲୋକ ପାଇଲେ ମୁଁ ବିଭା ହେବି ।' କିଛି ସମୟ ସମସ୍ତେ ଚୁପ ହୋଇଗଲେ । ମନେହେଲା ସମସ୍ତଙ୍କର ମନୋଭାବ ସହଜ ହୋଇଗଲା । ଏପରିକି ଭାନୁପ୍ରକାଶ ଯେ ଏ ପର୍ଯ୍ୟନ୍ତ କିଛି କହୁ ନ ଥିଲେ, ସେ ଉଠିଆସି ଗୋପାଙ୍କ ପାଖରେ ବସିଲେ, କହିଲେ - 'ଗୋପା, ଆମେ ସମସ୍ତେ ଖୁସି । ମା' କେତେ ଖୁସି ଦେଖ । ଆମେ ତୁମ ପାଖରୁ ଏହିପରି ସ୍ପଷ୍ଟ କଥା ଆଶା କରୁଥିଲୁ ।' ବିଦୂର ମଧ୍ୟ ଗୋପାଙ୍କ ଆଡ଼କୁ ବୁଲିପଡ଼ିଲେ, କହିଲେ - 'ଭାଇ ଭଉଣୀଙ୍କ ବିଷୟରେ ବ୍ୟସ୍ତ ହୁଅନା, ଆମେ ସେକଥା ଭାବିଛୁ । ଭାଇ କୁରୁକ୍ଷେତ୍ର ବ୍ୟାସଦେବଙ୍କ ଆଶ୍ରମକୁ ଯିବ । ସେଇଠି ସେ ଶିକ୍ଷା ପାଇବ । ଭଉଣୀ ମା'ଙ୍କ ପାଖରେ ରହିବ । ତୁମେ ଯେତେବେଳେ ଇଚ୍ଛା କରିବ ସେମାନଙ୍କୁ ଦେଖା କରି ପାରିବ ।'

କିନ୍ତୁ ଗୋପାଙ୍କର କିଛି ପ୍ରଶ୍ନ ପଚାରିବାକୁ ଥିଲା । ସେ ପ୍ରଥମେ ସତ୍ୟବତୀଙ୍କୁ ଚାହିଁଲେ, ପରେ ବିଦୂରଙ୍କୁ, ପରେ ଭାନୁପ୍ରକାଶଙ୍କୁ । ପ୍ରଥମେ ମା' କହିଲେ, 'ଗୋପା, ମନେହେଉଛି ତୁମେ କ'ଣ ଜାଣିବାକୁ ଚାହୁଁଛ । କୁହ,'

ଗୋପାଙ୍କର ଭୟ ଓ ସଂକୋଚ ଭାଙ୍ଗିଯାଇଥିଲା । ସେ ମନେ ମନେ ଦୃଢ଼ ହୋଇ ଯାଇଥିଲେ । ତାଙ୍କର ଜୀବନର ଧାରା ବଦଳି ଯାଇଛି, ଏ ବିଷୟରେ ସେ ନିଜେ ବି ସଚେତ ହୋଇ ଉଠିଥିଲେ । ଏସବୁ ଯେଉଁ କଥା ହେଉଛି ସେ ସାଧାରଣ ପାରିବାରିକ ଜୀବନର କଥା ନୁହେଁ । ତା'ଠାରୁ ବହୁତ ବଡ଼, ବହୁତ ଭିନ୍ନ । ତା'ର ପ୍ରଭାବ ବି ବହୁତ ବେଶୀ । ଆର୍ଯ୍ୟମାନଙ୍କର ପ୍ରଭାବ ବହୁତ ବଢ଼ି ବଢ଼ି ଚାଲିଛି । ସେମାନେ ନୂଆ ନୂଆ ଅଞ୍ଚଳ ଜୟ କରୁଛନ୍ତି । ଶୀଘ୍ର ନୂଆ ନୂଆ ବସତି ସବୁ ହେଉଛି । ସେମାନଙ୍କୁ ସଂଯତ କରିବାକୁ ହେବ, ଶୃଙ୍ଖଳିତ କରିବାକୁ ହେବ । ଏକଥା ବୁଝି ହେଉଛି । କିନ୍ତୁ ଜନଶକ୍ତି, ଲୋକଶକ୍ତି, ଏ ତ ନୂଆ ନୂଆ କଥା । ସେ ବିଦୂରଙ୍କୁ ଚାହିଁଲେ, କହିଲେ, 'ମହାମନ୍ତ୍ରୀ, ଆପଣ ଯାହା ପଚାରିଲେ ମୁଁ ଖୋଲାଖୋଲି କହିଛି ।


Digitized by srujanika@gmail.com

କିନ୍ତୁ ଗୋଟାଏ କଥା ମୁଁ ବୁଝିପାରୁନି । ଆପଣ କହିଲେ ମତେ ନୂଆ କାମରେ ଯୋଗ ଦବାକୁ ହବ । ଏ କାମ ଅତ୍ୟନ୍ତ ଗୋପନୀୟ, ଅତ୍ୟନ୍ତ ଗୁରୁତର । ମୁଁ ରାଜି, କିନ୍ତୁ ଏ କାମ କ'ଣ ? ମତେ କ'ଣ କରିବାକୁ ହେବ ?' ବିଦୂର ଭାନୁପ୍ରକାଶଙ୍କୁ ଚାହିଁଲେ, କହିଲେ - ଭାନୁପ୍ରକାଶ, ତୁମେ ଉତ୍ତର ଦିଅ । ଆଜି, ଏହି ମୁହୂର୍ତ୍ତରୁ ଗୋପାଙ୍କର ଶିକ୍ଷା ଆରମ୍ଭ ହେଉ ।'

ଶିକ୍ଷା ଆରମ୍ଭ ହେଲା । ଗୋପା କହନ୍ତି ସେ ଶିକ୍ଷା ଏବେ ବି ଚାଲିଛି । ପ୍ରତି ନୂଆ ନୂଆ ଘଟଣାରେ ନୂଆ ନୂଆ ଉପାୟ, ନୂଆ ନୂଆ ଶିକ୍ଷା । ଗିରିବ୍ରଜର ଜଙ୍ଗଲ ଭିତରେ ଗୌରୀମା'ଙ୍କ ମନ୍ଦିରରେ ବସି ରାତି ବଢ଼ିବା ସାଙ୍ଗେ ସାଙ୍ଗେ ଗୋପାଙ୍କ ସ୍ମୃତିଚାରଣ ଆଉ ସ୍ମୃତିଚାରଣ ହୋଇ ରହିଲା ନାହିଁ, ଜୀବନର କାହାଣୀ ହୋଇ ଉଠିଲା । ପୂଜକ ଆସି ଖାଇବାକୁ ଡାକିଦେଇ ଗଲାଣି । ସେକଥା କାହାର ଖିଆଲ ନାହିଁ । ଅରିନ୍ଦମକୁ ଶିବିରକୁ ଫେରିବାକୁ ହେବ । ଅନ୍ୟମାନଙ୍କୁ ସେମାନଙ୍କ ଜାଗାକୁ ଯିବାକୁ ହେବ । ଗୋପା ବି ନିଜ ଜାଗାକୁ ଯିବେ । ଦି'ଦିନ ତଳେ ଯାହା ଘଟିଛି ସେଥିରେ ରାସ୍ତାଘାଟ ଖୁବ୍ ନିରାପଦ ନୁହେଁ । ଜରାସନ୍ଧଙ୍କ ସୈନ୍ୟମାନେ ପଇଁତରା ମାରୁଛନ୍ତି । କିନ୍ତୁ ସେସବୁ କାହାର ଖିଆଲ ନାହିଁ । ଭାନୁପ୍ରକାଶ ନିଜେ ବି ମନେହେଉଛି ଆଚ୍ଛନ୍ନ ହୋଇ ଯାଇଛନ୍ତି । ଅରିନ୍ଦମ ଗୋପାଙ୍କୁ ଆଗରୁ ଦେଖିଛି । ଗିରିବ୍ରଜରେ ତା'ର ସେହି ପ୍ରଥମ ଦିନର ରକ୍ତ ସନ୍ଧ୍ୟା ତା'ର ମନେଅଛି । ଭାନୁପ୍ରକାଶଙ୍କ ସଭାରେ ଗୋପା ବୋଧହୁଏ ଏକମାତ୍ର ନାରୀ । ସେ କିଛି ନ କହିଲେ ବି ମନେ ମନେ ବିସ୍ମିତ ହୋଇଛି । କିନ୍ତୁ ସେହି ଏକମାତ୍ର ନାରୀ ଯେ ଆଦ୍ୟାଶକ୍ତି, ଏକଥା ସେ ଭାବିନି । ଭାନୁପ୍ରକାଶ କହିଲେ, 'ଗୋପା ତୁମେ ଟିକିଏ ବସ । ମୁଁ କହେ । ମୁଁ ଠିକ୍ କହୁଛି କି ଭୁଲ କହୁଛି ଦେଖ ।'

ଭାନୁପ୍ରକାଶ କହିବାକୁ ଆରମ୍ଭ କଲେ - 'ହଁ, ସେଦିନ ଗୋପା ଆମ ସମସ୍ତଙ୍କୁ ବିସ୍ମିତ କରିଥିଲେ । ତାଙ୍କର ବୟସ ବା କେତେ । ଅଭିଜ୍ଞତା ତା'ଠୁ କମ୍ । କିନ୍ତୁ ସେ କଥା କହିଥିଲେ ଠିକ୍ ଜଣେ ପୋଖତ ଲୋକ ପରି । ଯାହା ଆମ ସମସ୍ତଙ୍କୁ ପ୍ରଭାବିତ କରିଥିଲା । ସେ ତାଙ୍କର ଦୃଢ଼ତା, ସ୍ୱଚ୍ଛତା, ଚଟ୍‌ପଟ୍ ଯେ କୌଣସି କଥା ବୁଝିପାରିବାର ବୁଦ୍ଧି, ଆଉ ତାଙ୍କର ଆଗ୍ରହ ଓ ଆନ୍ତରିକତା । ଆମେ ଜଣେ ବୁଦ୍ଧିମତୀ, ଯୋଗ୍ୟ ନାରୀର ସନ୍ଧାନ କରୁଥିଲୁ ଯେ ଆମକୁ ଆମ କାର୍ଯ୍ୟରେ ସାହାଯ୍ୟ କରିପାରିବ । ବିଶେଷ କରି ମଗଧ ପାଇଁ ଆମେ ଏପରି ଜଣେ ନାରୀକୁ ଖୋଜୁଥିଲୁ । ଉଦ୍ଦେଶ୍ୟ ଥିଲା ସେ ଜରାସନ୍ଧଙ୍କ ଉଆସରେ, ତାଙ୍କର ପରିବାର ଭିତରେ ଆମର କାମ କରିପାରିବେ । ଏ ସାଧାରଣ ନାରୀର କାମ ନୁହେଁ । ସେଥିପାଇଁ ଜଣେ ଅସାଧାରଣ ବୁଦ୍ଧିସମ୍ପନ୍ନ,


Digitized by srujanika@gmail.com

ସାହସୀ ନାରୀର ଦରକାର । ରାଜମାତା ଯେତେବେଳେ ପ୍ରଥମେ ଗୋପାଙ୍କ କଥା ଆମକୁ କହିଲେ ଆମେ ଠିକ୍ କଲୁ ତାଙ୍କୁ ଆଉ କିଛି ପରୀକ୍ଷା କରିବାକୁ ହେବ । ବିଦୁର ବ୍ୟାସଦେବଙ୍କୁ ଖବର ଦେଲେ । ଗୁରୁଦେବ ଆମ ସହିତ ଏକମତ ହେଲେ । କହିଲେ - ମା' ଯେତେବେଳେ ବାଛିଛନ୍ତି ସେ ନିଶ୍ଚୟ ଠିକ୍ ଲୋକ ହୋଇଥିବ । କିନ୍ତୁ ଆଉ କିଛିଦିନ ଦେଖ ! ରାଜମାତା ବି ସେହି କଥା କହିଲେ । ଆମେ ସମସ୍ତେ ଗୋପାଙ୍କ ଉପରେ ନଜର ରଖିଲୁ । ଗୋପା ଜାଣିବାରେ ଉପାୟ ନ ଥିଲା । କିନ୍ତୁ ପ୍ରାୟ ପ୍ରତ୍ୟେକ କାମରେ ଆମେ ତାଙ୍କୁ ପରୀକ୍ଷା କରୁଥିଲୁ । ଯେତେବେଳେ ଆମେ ଦେଖିଲୁ ଯେ ଚଳିବ, ଆଉ କିଛି ଶିକ୍ଷା ପରେ ଠିକ୍ ହୋଇଯିବ, ମୁଁ ଗୁରୁଦେବଙ୍କୁ ଦେଖା କରିବାକୁ କୁରୁକ୍ଷେତ୍ର ଗଲି । ଗୋପାଙ୍କୁ ମଧ୍ୟ ସେହି ସମୟରେ ଗୁରୁଦେବଙ୍କ ଆଶ୍ରମକୁ ପଠାଗଲା, ଗୋପା ସେକଥା ଆଗରୁ କହିଛନ୍ତି ।'

ଭାନୁପ୍ରକାଶ ହସିକରି ଗୋପାଙ୍କ ଆଡ଼କୁ ବୁଲି ପଡ଼ିଲେ, କହିଲେ - 'ଗୋପା, ମୁଁ ସେଦିନ କ'ଣ ଭାବିଥିଲି ତୁମେ ଆଜି ପର୍ଯ୍ୟନ୍ତ ଜାଣନା, ଆଜି ଶୁଣ ।' ଅରିନ୍ଦମ ଭାବିଲା ଗୋପା କ'ଣ କହିବେ । ଗୋପା କିଛି କହିଲେ ନାହିଁ । ସେ ଖାଲି ହସି ଉଠିଲେ, ଅରିନ୍ଦମକୁ କହିଲେ - 'ଅରିନ୍ଦମ, ଭାନୁପ୍ରକାଶ କ'ଣ ଭାବିଥିବେ ଭାବିଲ ?' ଅରିନ୍ଦମକୁ ସଂକୋଚ ଲାଗିଲା । ସେ କହିଲା - 'ଆପଣମାନେ ମୋର ଗୁରୁଜନସ୍ଥାନୀୟ । ମୁଁ କ'ଣ ଭାବିବି ? ଭାନୁପ୍ରକାଶ ନିଶ୍ଚୟ ଖୁସି ହୋଇଥିବେ ।' 'ନାଁ', ଭାନୁପ୍ରକାଶ କହିଲେ, 'ଗୋପାଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନ ହେଲେ ବି ମୁଁ ତାଙ୍କ ବିଷୟରେ ଅନେକ କଥା ଶୁଣିଥିଲି । ବିଶେଷ କରି ସେ ଯେ ପୁରୁଷ ବନ୍ଧୁମାନଙ୍କ ସାଙ୍ଗରେ ଖୋଲାଖୋଲି ମିଶୁଥିଲେ ମତେ ଖୁବ୍ ଭଲ ଲାଗୁଥିଲା । କିନ୍ତୁ ସେଇଟା ହିଁ ଅସୁବିଧା । ଆମେ ଯେଉଁସବୁ କାମ କରୁଥିଲୁ ସେ ଖୁବ୍ ସାବଧାନ ସତର୍କତାର କାମ । ନିଜର ଢଙ୍ଗଢ଼ାଙ୍ଗକୁ ବହୁତ ଶୃଙ୍ଖଳିତ କରିବାକୁ ହେବ । ମତେ ଖରାପ ଲାଗିଲା ଗୋପାଙ୍କୁ ଅନେକ ସ୍ୱାଧୀନତା ହରେଇବାକୁ ପଡ଼ିବ । ମୁଁ ଗୁରୁଦେବଙ୍କୁ ସେକଥା କହିଥିଲି । ଗୁରୁଦେବ ତ୍ରିକାଳଦର୍ଶୀ । ସେ କହିଥିଲେ କଠିନ କାମ କରିବାକୁ ହେଲେ ନିଜର ସମସ୍ତ ଶକ୍ତିକୁ ସଂଯତ କରିବାକୁ ହେବ । ଖେଳେଇ ଦେଇ ନୁହେଁ । ଗୋପା ତା' ପାରିବ । ମୁଁ ଆଜି ଦେଖୁଛି ଗୁରୁଦେବ ଠିକ୍ କଥା କହିଥିଲେ । ମୁଁ ଅଯଥା ଭୟ କରୁଥିଲି ।'

ଗୋପା ହସି ଉଠିଲେ, କହିଲେ - 'ଥାଉ, ଥାଉ, ମୋତେ ଟେକାଟେକି କରିବା ଦରକାର ନାହିଁ । ଅରିନ୍ଦମ, ତୁମେ ଭାନୁପ୍ରକାଶଙ୍କ କଥା ବିଶ୍ୱାସ କରନା । ସେଦିନ ମା'ଙ୍କ ସହିତ କଥାବାର୍ତ୍ତା ପରେ ମୁଁ ଭାନୁପ୍ରକାଶଙ୍କ ପୂରା ଦଖଲକୁ

ଚାଲିଆସିଲି । ସେ ଯାହା ମୋତେ କଲେ ତୁମେ ଭାବିପାରିବ ନାହିଁ । ଦେଖ, ସେ ହସୁଛନ୍ତି । ସେ କହିବେ ଶିକ୍ଷା ଆରମ୍ଭ ହେଲା । କିନ୍ତୁ ସେ କି ଶିକ୍ଷାରେ ବାବା ! ମୁଁ ଭୁଲିଗଲି ଯେ ମୁଁ ଗୋଟାଏ ସ୍ତ୍ରୀ ଲୋକ । ମୋର ଦେହଟା ପୁରୁଷ ଦେହଠୁ ଅଲଗା । ମୋ' ଦେହର କେତେଗୁଡ଼ାଏ ନିଜ ନିଜ କଥା ଅଛି । ସେ ମୋ' ଦେହଟାକୁ ଅନେଇଲେ ନାହିଁ, କୌଣସି ଗୁରୁତ୍ୱ ବି ଦେଲେ ନାହିଁ । ମୁଁ ଥରେ ଦି' ଥର କୁଣ୍ଠିତ ହେଇ କହିଥିଲି । ସେ ମୋତେ ବୁଝେଇ ଦେଇଥିଲେ, କହିଥିଲେ - ଦେହଟାକୁ କ'ଣ ତୁମେ ତିଆରି କରିଛ । ଏ ଗଛଟା ଯେମିତି ବଢ଼ିଛି ତୁମ ଦେହଟା ବି ସେମିତି ବଢ଼ିଛି । ଗଛଟାକୁ କାମରେ ଲଗେଇବାକୁ ହେଲେ ଯେମିତି ହଣାକଟା ସଫାସଫି କରିବାକୁ ହୁଏ ତୁମ ଦେହଟାକୁ ବି ସେମିତି ସିଧା କରିବାକୁ ହେବ । କ'ଣ କହିବି, ଅରିନ୍ଦମ ! କମାର ଲୁହାକୁ ପିଟିଲା ପରି ଭାନୁପ୍ରକାଶ ମୋ' ଦେହଟାକୁ ପିଟି ପିଟି ସିଧା କରିଦେଲେ । ମୋ' ଆଙ୍ଗୁଠି, ହାତ, ବାହାକୁ ଚିପିକରି ଦେଖ ଅରିନ୍ଦମ ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଗୋପାଙ୍କ ଆଙ୍ଗୁଠିକୁ ଦେଖିଲା, ବାହାକୁ ଚିପିଲା । ଗୋପାଙ୍କ କଥା ମିଛ ନୁହେଁ । ଲୁହାଖଣ୍ଡ ପରି ଟାଣ ।

'ଏ ତ ଗଲା ଦେହ କଥା ।' ଗୋପା ପୁଣି କହିଲେ, 'ମନ ବି । ମୁଁ ଆଉ ଉତ୍ତର କୁରୁର ସେହି ମଫସଲିଆ ପାହାଡ଼ିଆ ଝିଅ ହୋଇ ରହିଲିନି । ଦେହଟା ପିଟାପିଟି ହୋଇ ଟାଣ ହୋଇଗଲା । ଘର ଭିତରୁ ଅଳନ୍ଧୁ ସଫା କଲାପରି ମୋ' ମନରୁ ବି ଯେତେ ଆଜେ ବାଜେ ଚିନ୍ତା କଥା ସବୁ ସଫାକରି ଦିଆଗଲା । ଭାବ, ମା-ଚଢ଼େଇ ଡିମ୍ୱ ଉଷୁମେଇବା ବେଳେ ଯେମିତି ତା' ମନ ଧ୍ୟାନ ସବୁ ଡିମ୍ୱ ଉପରେ ଥାଏ, ସେମିତି ମନରୁ ସବୁକଥା ବାଦ ଦିଆଯାଇ କେବଳ କାମ ଉପରେ ସ୍ଥିର ହୋଇ ରହିଲା । ଭାନୁପ୍ରକାଶ କହୁଥାନ୍ତି - ଦେହ କିଛି ନୁହେଁ । ମନଟାହିଁ ସବୁଠୁଁ ବେଶୀ ଗୋଳମାଳିଆ । ମନଟାକୁ ସାଧିକରି ପାରିଲେ ଦେହଟାବି ସାଧ ହୋଇଯିବ । କାମ ଦେହରେ ହୁଏନା, ମନରେ ହୁଏ । ସେ ସବୁବେଳେ ବାଘ ତା' ଶିକାରକୁ ଆକ୍ରମଣ କରିବା କଥା କହନ୍ତି । ସେତେବେଳେ ବାଘର ଯେଉଁ ଏକାଗ୍ରତା ସେହି ଏକାଗ୍ରତା ମନରେ ଆଣିବାକୁ ହେବ । ତା' ହେଲେ କାମ ହାସଲ ହେବ ।' ଗୋପା କିଛି ସମୟ ଚୁପ୍ କରିଗଲେ । ତା'ପରେ କହିଲେ - 'ହଁ, ଅରିନ୍ଦମ, ମୁଁ ବଦଳିଲି, ପୂରା ବଦଳି ଗଲି । ମୋର ଦେହ ମନ ସବୁ ବଦଳିଗଲା । ଭାନୁପ୍ରକାଶଙ୍କ ଗୁରୁ ବ୍ୟାସଦେବ । ମୋର ଗୁରୁ ଭାନୁପ୍ରକାଶ ।'

ଚାରିପାଖରେ ଚୁପ୍‌ଚାପ୍ ରାତି । ମନ୍ଦିରକୁ ଘେରି ରହିଥିବା ଗଛମାନଙ୍କରେ ଚଢ଼େଇମାନଙ୍କର ଚେଁ ଚାଁ ବି ବହୁତ ବେଳୁ ଚୁପ ହୋଇଗଲାଣି । ପାଖରେ ଦୂରରେ


Digitized by srujanika@gmail.com

ବିଲୁଆର ଡାକ । ଆଉ ରହି ରହି ଖସଖସ ମସମସ ଶବ୍ଦ । ପଶୁମାନେ ବୋଧହୁଏ ଯିବା ଆସିବା କରୁଛନ୍ତି । ବା, ଆଉ କିଏ । ଗୋପାଙ୍କର ସ୍ୱାଭାବିକ ଗମ୍ଭୀର ସ୍ୱର ତରଳରୁ ତରଳତର ହୋଇଯାଉଛି । ଅରିନ୍ଦମର ମନେହେଲା ଯେଉଁ ଗୋପାଙ୍କୁ ସେ ଜାଣେ, ଚିହ୍ନେ, ବାରମ୍ବାର ଦେଖୁଛି, ଏ ସେ ଗୋପା ନୁହନ୍ତି । ଏ ଆଉ ଜଣେ ଯାହାକୁ ସେ ଚିହ୍ନେ ନା, କିନ୍ତୁ ଏ ଗୋପାଙ୍କୁ ନ ଜାଣିଲେ ଅସଲ ଗୋପାଙ୍କୁ ସେ ଚିହ୍ନିପାରିବ ନାହିଁ ।

ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ କିଛି କିଛି ଆଶ୍ଚର୍ଯ୍ୟ ହେଉଥିବ ମୁଁ ଜାଣେ । କିନ୍ତୁ ଏ କେବଳ ଗୋପା ନୁହନ୍ତି । ଆମ ସମସ୍ତଙ୍କର ସେହିପରି ସେହିପରି କଥା । ସମସ୍ତଙ୍କୁ କଠିନ ପରୀକ୍ଷା ଓ କଠିନ ଶିକ୍ଷା ଦେଇ ଯିବାକୁ ପଡ଼ିଛି । ଗୋପାଙ୍କ କଥା କେବଳ ତାଙ୍କର ନିଜର କଥା ନୁହେଁ, ସମସ୍ତଙ୍କର କଥା । ଯେଉଁ କାମ ଆମେ କରୁଛୁ, ଯାହା ପଛରେ ଗୁରୁ ବ୍ୟାସଦେବଙ୍କର ନିରବଚ୍ଛିନ୍ନ ଆଶୀର୍ବାଦ ରହିଛି, ସେ କାମରେ ଅବହେଳା ବା ଅଯୋଗ୍ୟତା ସମ୍ଭବ ନୁହେଁ ।'

ଅନେକ ସମୟ ଧରି ଅରିନ୍ଦମ ପଚାରିବ ପଚାରିବ ହେଉଥିଲା । କିଛି ବୁଝିଲେ ବି ସେ ଠିକ୍ ମୂଳକଥା ବା କାମ କଅଣ ସେ ବିଷୟରେ ତା'ର ସନ୍ଦେହ ଥିଲା । ସେ କହିଲା, 'କିନ୍ତୁ ଗୋଟାଏ କଥା ମୁଁ ଠିକ୍ ବୁଝି ପାରୁନି । ଏ କାମ କଅଣ ? ଯେଉଁଥି ପାଇଁ ଆପଣମାନେ ଏତେ ସାବଧାନ, ସତର୍କ ।'

ଗୋପା ଚୁପ ହୋଇ ରହିଲେ । ଭାନୁପ୍ରକାଶ ବି କିଛି ସମୟ ଚୁପ୍‌ହୋଇ ରହି କହିଲେ, 'ହଁ, ଉଚିତ ପ୍ରଶ୍ନ । କିନ୍ତୁ ଏଠି, ଏଇ ମୁହୂର୍ତ୍ତରେ ସେ କଥାର ଆଲୋଚନା କରିହେବନି । କିନ୍ତୁ ଗୋଟିଏ କଥା ଜାଣିପାର । ଆମେ ଲୋକଶକ୍ତିକୁ ଜାଗ୍ରତ କରିବା ପାଇଁ ଯେତେ ଯେତେ କାମ କରୁଥିଲୁ - ହସ୍ତିନାରେ, ପାଞ୍ଚାଳରେ, ଅବନ୍ତୀରେ, କାଶୀରେ - ଏ ସେଇ କାମ । ଗୋପା ସେଇ କାମରେ ସାମିଲ ହୋଇଗଲେ । ତେବେ ଗୋପା ଆମର ସବୁଠାରୁ କଠିନ କାମରେ ତାଙ୍କର କାମ ଆରମ୍ଭ କଲେ - ଏଇ ଗିରିବ୍ରଜରେ, ମଗଧରେ । ତାଙ୍କର ଶିକ୍ଷା ପରେ ସେ କିଛିଦିନ ଗୁରୁଦେବଙ୍କ ଆଶ୍ରମରେ ଥିଲେ । ପରେ ସତ୍ୟବତୀଙ୍କୁ ଦେଖାକରି ଏଠିକି ଚାଲି ଆସିଲେ ।'

ଅରିନ୍ଦମର ମନରେ ଖଣ୍ଡ ଖଣ୍ଡ ଅନେକ ଚିତ୍ର ଭାସି ଆସିଲା । ସବୁ ଏଇ ଗିରିବ୍ରଜରେ, ବିଭିନ୍ନ ସମୟର ଘଟଣା, ସେଇ ସନ୍ଧ୍ୟାରେ ରାଜରାସ୍ତାର ନୃଶଂସ ହତ୍ୟା ପରେ ।

ଭାନୁପ୍ରକାଶ ପୁଣି କହିଲେ, 'ତୁମେ କ'ଣ ଭାବୁଛ ମୁଁ ଜାଣେ । ତୁମର ସେଇ ପ୍ରଥମ ଦିନର ସନ୍ଧ୍ୟାର ଘଟଣା କଥା । ଆଉ ଗୋପାଙ୍କ ସ୍ୱାମୀ । ନାଁ ନାଁ ଚମକି ପଡ଼

ନା, ଗୋପା ବିବାହ କରିଥିଲେ, ଆଉ ସେଦିନ ଯାହାଙ୍କୁ ଦେଖିଥିଲ ସେ ଗୋପାଙ୍କର ସ୍ୱାମୀ, ତାଙ୍କୁ ହିଁ ହତ୍ୟା କରାଗଲା । ସେ ବି ଆମର ସହକର୍ମୀ, ଅତ୍ୟନ୍ତ ଦକ୍ଷ ବ୍ୟକ୍ତି । ସେହିହିଁ ମଥୁରାରୁ ତୁମ ବିଷୟରେ ସବୁ ଖବର ଆଣିଥିଲେ ଓ ତୁମେ ଗିରିବ୍ରଜରେ ପହଞ୍ଚିବା ପରଠୁ ତୁମ ଉପରେ ନଜର ରଖିଥିଲେ ।'

ଏ ଲୋକମାନଙ୍କ ପାଖରେ ଅରିନ୍ଦମର ନିଜକୁ ବହୁତ ଛୋଟ ମନେହେଲା । ବିଦ୍ୟା, ବୁଦ୍ଧି, କାମ କରିବାରେ ଆଗ୍ରହ, ଦକ୍ଷତା ଏ ସବୁଥିରେ ଏମାନେ ଯେ ତା'ଠାରୁ ବହୁତ ଆଗରେ, ଏ ବିଷୟରେ ତା'ର ସନ୍ଦେହ ରହିଲା ନାହିଁ । ଏ ଗୋଟାଏ ଯୋଗସୂତ୍ର, ସେ ଭାବିଲା – ତା'ର ଏମାନଙ୍କ ସହିତ ସମ୍ପର୍କ । ସେ ଏମାନଙ୍କୁ କଅଣ ସାହାଯ୍ୟ କରିପାରିବ ସେ ଜାଣେ ନା । କିନ୍ତୁ ଏମାନଙ୍କୁ ସାହାଯ୍ୟ କରିବା କେବଳ କଥାର କଥା ନୁହେଁ । ଏ ଗୋଟାଏ ବିରାଟ ପରିବର୍ତ୍ତନ ସହିତ ଏକାଠି ହୋଇଯିବା । ସେଠି ମଥୁରା, ମଗଧ, ହସ୍ତିନାପୁର ବା ଅବନ୍ତୀ ନୁହେଁ, ସାରା ଆର୍ଯ୍ୟ ସଭ୍ୟତାର କଥା । ମଣିଷ କିପରି ମଣିଷ ପରି ବଞ୍ଚି ରହିବ ସେହି କଥା । ସେ ଗୋପାଙ୍କୁ ଚାହିଲା । ତା ମନରେ ଗଭୀର ଦୁଃଖ ଓ ସହାନୁଭୂତିର ଧାରା । ସେ କେବଳ କହିଲା, 'ଆପଣଙ୍କୁ ତ ବହୁତ କଷ୍ଟ ଲାଗିଥିବ ?' ଗୋପା ହସିଲେ, କହିଲେ – 'ହଁ ଲାଗିଥିଲା । କଷ୍ଟ ଅପେକ୍ଷା କ୍ରୋଧ ବେଶି । ଆମର ସାମାନ୍ୟ ଭୁଲରେ ସେମାନେ ସୁବିଧା ପାଇଗଲେ । ଯେଉଁ ଭୁଲ ଆମର କରିବାର ନ ଥିଲା । କିନ୍ତୁ ମଣିଷ ମନର ଦୁର୍ବଳତା ତ ।' ଗୋପାଙ୍କ କଥାରେ ଭାନୁପ୍ରକାଶ କଥା ଯୋଗ କଲେ – 'ନାଁ, ଗୋପାଙ୍କର ଭୁଲ ନୁହେଁ, ବା ମଣିଷ ମନର ଦୁର୍ବଳତା ନୁହେଁ । ସେ ଘଟଣା ହଠାତ୍ ଘଟିଗଲା । ସେ ଆମର ବନ୍ଦୋବସ୍ତର ଭୁଲ । ଆମେ ଯେଉଁ କାର୍ଯ୍ୟ କରୁଛୁ ସେଥିରେ ସବୁବେଳେ ବିପଦ । କେବଳ ଜରାସନ୍ଧ ପାଖରୁ ନୁହେଁ । ସବୁ କ୍ଷମତାଶାଳୀ ରାଜାଙ୍କ ପାଖରୁ, ସବୁ ସ୍ୱାର୍ଥପର, ଲୋଭୀ ଲୋକମାନଙ୍କ ପାଖରୁ । ସେଇ ଆମର ଭୁଲ । ଆମର ସବୁ ଜାଗାରେ ଗଣ୍ଡି ପକେଇବା କଥା, ସବୁ ଗାତ ବନ୍ଦ କରିଦେବା କଥା । ଆମର ସାମାନ୍ୟ ଅବହେଳାରେ ସେଇ ଭୁଲ ହୋଇଗଲା । ତୁମେ ଜାଣନା ଆମର ଶକ୍ତି କେତେ । ଆମେ ଯେବେ ଇଚ୍ଛା ଜରାସନ୍ଧ ପରି ଅତ୍ୟାଚାରୀ ରାଜାଙ୍କୁ ଶେଷ କରିଦେଇ ପାରିବୁ ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, କହିଲା – 'ତା'ହେଲେ... ?'

'ତା'ହେଲେ କିଛି ନାହିଁ । ସବୁ କାମର ସମୟ ଅଛି, ଯୋଗ ଅଛି । ଆମେ ସେହି ସମୟ ଓ ଯୋଗକୁ ଅପେକ୍ଷା କରି ରହିଛୁ । ଗୁରୁଦେବ କହନ୍ତି ସେଇ ସମୟକୁ ଅପେକ୍ଷା କର, ନିଜକୁ ପ୍ରସ୍ତୁତ କରି ରଖ, ଆମେ ତାହାହିଁ କରୁଛୁ ।'

ରାତି ଗଡ଼ି ଯାଉଥିଲା । ସେମାନେ ସମସ୍ତେ ପ୍ରସାଦ ଖାଇବାକୁ ବସିଲେ – ଗୋପା, ଭାନୁପ୍ରକାଶ, ଭାନୁପ୍ରିୟ, ଅରିନ୍ଦମ ଓ ଅନ୍ୟ ଦି'ଜଣ । ଗୋପାଙ୍କର ବୈବାହିକ ଜୀବନ ବିଷୟରେ କିଛି ଜାଣିବାକୁ ଅରିନ୍ଦମର ଆଗ୍ରହ ଥିଲା । କିନ୍ତୁ ସେ ନିଜକୁ ସଂଯତ କଲା । ନିକଟ ଅତୀତରେ ଗୋପା ନିଜର ସ୍ୱାମୀଙ୍କୁ ହରେଇଛନ୍ତି । ସେ ଆଘାତ ଏବେବି କଞ୍ଚା ହୋଇ ତାଙ୍କ ମନରେ ରହିଛି । ତାଙ୍କୁ ସେ ବିଷୟରେ ଆଉ କିଛି ପଚାରିବା ଠିକ୍ ହେବ ନାହିଁ, ସେ ଭାବିଲା । କିନ୍ତୁ ଗୋପାଙ୍କ ମୁହଁରେ, ଏପରିକି ଭାନୁପ୍ରକାଶ ବା ଭାନୁପ୍ରିୟଙ୍କ ମୁହଁରେ ସେ କୌଣସି ଦୁଃଖର ଚିହ୍ନ ଦେଖିଲା ନାହିଁ । ସେମାନେ ଆଗପରି ପ୍ରଫୁଲ୍ଲ, ହସହସ, ମୁହଁ ପରିଷ୍କାର, ସତେଜ ଯେପରି କେତେବେଳେ କୌଣସି ଦୁଃଖର ଘଟଣା ଘଟିନାହିଁ । ଅରିନ୍ଦମର ଅଜାଣତରେ ବୋଧହୁଏ ଭାନୁପ୍ରକାଶ ତାକୁ ଲକ୍ଷ୍ୟ କରୁଥିଲେ । ସେ ଖାଉ ଖାଉ କହିଲେ – 'ଅରିନ୍ଦମ, ଆମେ ଯଦି ସବୁବେଳେ ପଛକଥା ଭାବିବା, ପଛ ପାଇଁ ଦୁଃଖ କରିବା ତେବେ କେବେହେଲେ ଆଗକୁ ଯାଇପାରିବା ନାହିଁ । ପଛ ଆମକୁ ବାଟ ବତେଇ ଦେବ, ସାବଧାନ କରିଦେବ, ବାସ୍ ସେତିକି ।'

ଖିଆପିଆ ସରିଗଲା । ରାତି କେତେ ହେବ ବୁଝି ନ ହେଲେ ବି ବେଶ୍ ଆଗେଇ ଯାଇଥାଏ । ଖାଇସାରି ସମସ୍ତେ ଆସି ମଣ୍ଡପରେ ପୁଣି ଥରେ ବସିଲେ । ଗୌରୀମା'ଙ୍କ ପହଡ଼ ପଡ଼ି ନ ଥାଏ । ଗର୍ଭଗୃହର କବାଟ ମେଲାଥାଏ ଓ ମା'ଙ୍କ ପାଖରେ ଗୋଟିଏ ଦୀପ ଉଜ୍ଜ୍ୱଳ ହୋଇ ଜଳୁଥାଏ । ଭାନୁପ୍ରକାଶ ମା'ଙ୍କ ପାଖକୁ ଯାଇ ଦେବୀଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ । ଡାକିଲେ – 'ଅରିନ୍ଦମ, ଏଠାକୁ ଆସ ।' ଅରିନ୍ଦମ ଭାନୁପ୍ରକାଶଙ୍କ ପାଖକୁ ଗଲା, ଗୋପା ବି ଗଲେ । ଗର୍ଭଗୃହର ସ୍ୱଚ୍ଛାନ୍ଧକାରରେ ଭାନୁପ୍ରକାଶ ବସିଲେ । ତାଙ୍କ ନିକଟରେ ଅରିନ୍ଦମ ଓ ଗୋପା । ଦୀପ ଜଳିବାର ତେଲରୁ ବାସନା ଆସୁଥାଏ । ତା'ଛଡ଼ା ଗୋଟାଏ ମହମହ ବାସନା ସେଇ ଛୋଟ ଗର୍ଭଗୃହଟିକୁ ଆଚ୍ଛନ୍ନ କରି ରଖିଥାଏ । ଅରିନ୍ଦମର ମନେହେଲା ସେହି ମହମହ ବାସନା ତା'ର ଦେହ ଓ ମନକୁ ଆଚ୍ଛନ୍ନ କରିଦେଲା । ଏ ଠିକ୍ ବାପାଙ୍କର ପୂଜା ଘରର ବାସନା ପରି । ଅନେକ ଥର ଏହି ବାସନା ପାଇବା ପାଇଁ ସେ ବାପାଙ୍କର ପୂଜା ଘରକୁ ଯାଇଛି । ବାପାଙ୍କର ଦେବତା ମହାକାଳ । ଶୁଣିଛି ସେ ପ୍ରତ୍ୟକ୍ଷ ଦେବତା । ବାପା ତାଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ସେ ସମୟରେ ପୂଜା ଘରକୁ ଯିବା ମନା । ସେ ସମୟରେ ଖାଲି ପୂଜାଘର ନୁହେଁ, ସାରା ଘରଟାର ଚେହେରା ଯେମିତି ବଦଳିଯାଏ । ଚାରିପାଖରେ ଯେମିତି ଟୁପଟୁପ, ଫୁସଫୁସ, କିଏ ଯେପରି ଘର ଭିତରେ ଦୌଡ଼ାଦୋଡ଼ି କରୁଛନ୍ତି । ଅରିନ୍ଦମକୁ ବହୁତ ଡର ଲାଗେ । ସେ ଥରେ ବାପାଙ୍କୁ ପଚାରିଥିଲା । ବାପା

ହସିଥିଲେ, ଆଉ କହିଥିଲେ ଡରିବାର କିଛି ନାହିଁ । ଦେବତାମାନେ ଆମରି ପରି ମଣିଷ । ଆମର ଯେମିତି ହସଖୁସି, ଦୁଃଖଶୋକ ଅଛି, ତାଙ୍କର ବି ସେମିତି । ଆମେ ତାଙ୍କୁ ଯେପରି ଭାବରେ ଦେଖିବୁ ସେମାନେ ସେହିପରି ଭାବରେ ଆସିବେ । ତୁ ଖେଳିବାକୁ ଚାହିଁଲେ ସେମାନେ ଆସି ତୋ ସାଙ୍ଗରେ ଖେଳିବେ । ତୁ କଥାବାର୍ତ୍ତା କରିବାକୁ ଚାହିଁଲେ ସେମାନେ କଥାବାର୍ତ୍ତା କରିବେ । ଅରିନ୍ଦମ ଗୌରୀମା'ଙ୍କ ମୁହଁକୁ ଚାହିଁଲା । କଳା ମୁଗୁନି ପଥରର ହସହସ ମୂର୍ତ୍ତି । ମନେହେବ ନିଜର ଅତି ଆପଣାର ଲୋକ । ଯେମିତି ଡାକୁଛନ୍ତି ଆସ, କଥା କୁହ । ଅରିନ୍ଦମର ହଠାତ୍ ମନେହେଲା ଭାନୁପ୍ରକାଶ ବି ବାପାଙ୍କ ପରି । ସେ ଦେବୀଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ସେ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲା । ଭାନୁପ୍ରକାଶ ନିବିଷ୍ଟ ଭାବରେ ଦେବୀଙ୍କ ମୁହଁକୁ ଚାହିଁଛନ୍ତି । ଆଖି ଦିଓଟି ଅଧାବୁଜି ହୋଇଯାଇଛି । ଓଠରେ ଅଳ୍ପ ହସ । ସାରା ମୁହଁରେ ଅଦ୍ଭୁତ ପ୍ରଶାନ୍ତି । ମନେହେବ ଯେପରି ସେ ସେଠି ଅଛନ୍ତି ପୁଣି ନାହାନ୍ତି । ଗୋପାଙ୍କର ସେହି ଅବସ୍ଥା, ସେ ବି ଧ୍ୟାନସ୍ଥ । ଅରିନ୍ଦମ ନିଜେ ବି ଯେମିତି ଦେବୀଙ୍କି ଚାହିଁ ଚାହିଁ ଧ୍ୟାନସ୍ଥ ହୋଇଗଲା । ମନେହେଲା ଯେପରି ଗୋଟାଏ ଉଜ୍ଜ୍ୱଳ ଆଲୁଅର ଲହଡ଼ିରେ ସେ ଭାସି ଭାସି ବୁଲୁଛି । କିନ୍ତୁ ବେଶି ସମୟ ନୁହେଁ । ତା'ର ଧ୍ୟାନ ଭାଙ୍ଗିଗଲା । ଭାନୁପ୍ରକାଶ କହୁଥାନ୍ତି, 'ଅରିନ୍ଦମ, ଗୌରୀ ମା' ପ୍ରତ୍ୟକ୍ଷ ଦେବତା । ତାଙ୍କୁ ପ୍ରଣାମ କର । ତାଙ୍କ ଉପରେ ବିଶ୍ୱାସ ରଖ, ସେ ତୁମର ଅନେକ ଉପକାର କରିବେ ।'

ସେମାନେ ସମସ୍ତେ ସାଙ୍ଗହୋଇ ଗୌରୀମା'ଙ୍କ ମନ୍ଦିରରୁ ଫେରି ଆସିଲେ । ବାଟରେ ଗୋପା ଅରିନ୍ଦମର ପାଖକୁ ଲାଗି ଆସିଲେ, କହିଲେ – 'ଅରିନ୍ଦମ, ତୁମେ ଗୋଟାଏ କଥା ଜାଣିବାକୁ ଚାହିଁଥିଲ । ମୁଁ ସେକଥା କହିନାହିଁ । ମୋ' ସ୍ୱାମୀଙ୍କ ବିଷୟରେ । ସେ ବି ମୋ ପରି ଉତ୍ତର କୁରୁର ଲୋକ । ହସ୍ତିନାରେ ତାଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା । ସେ ବି ବ୍ୟାସଦେବଙ୍କର ଶିଷ୍ୟ ଓ ଭାନୁପ୍ରକାଶଙ୍କ ସହିତ କାମ କରୁଥିଲେ । ସେଦିନ ସାମାନ୍ୟ ଭୁଲରେ ଅଘଟଣ ଘଟିଗଲା । ତୁମ ଶିବିର ଗିରିବ୍ରଜକୁ ସାଙ୍ଗେ ସାଙ୍ଗେ ଆସିଥାଏ । ଆମେ ତୁମ ଶିବିର ଉପରେ ନଜର ରଖିଥାଉ, ଆଉ ବିଶେଷ କରି ତୁମ ଉପରେ ନଜର ରଖିବାକୁ ଓ ତୁମର ଯେପରି କୌଣସି କ୍ଷତି ନ ହୁଏ ସେ ବିଷୟରେ ସାବଧାନ ରହିବାକୁ ଆମର ନିର୍ଦ୍ଦେଶ ଥାଏ । କିନ୍ତୁ ଆମ ଛଡ଼ା ଅନ୍ୟ ଲୋକ ଯେ ତୁମ ଶିବିର ଉପରେ ନଜର ରଖିପାରନ୍ତି ଆମେ ସେକଥା ଭୁଲିଗଲୁ ଯଦିଚ ସେ ବିଷୟରେ ଭାନୁପ୍ରକାଶ ଆମକୁ ଆଗରୁ ସତର୍କ କରି ଦେଇଥିଲେ ।'

'କିନ୍ତୁ ଅନ୍ୟ ଲୋକ କାହିଁକି ?' ଅରିନ୍ଦମ ପଚାରିଲା ।


Digitized by srujanika@gmail.com

'ହଁ, ଅନ୍ୟ ଲୋକ', ଗୋପା କହିଲେ - 'ଜରାସନ୍ଧଙ୍କ ଲୋକ । ତୁମର ମନେଥିବ ଜରାସନ୍ଧଙ୍କର କୁସ୍ତି ଆଖଡ଼ା ହେବା ପାଇଁ ଆଉ ଦୁଇ ତିନିଦିନ ବାକିଥାଏ । ବିଭିନ୍ନ ରାଜ୍ୟରୁ ଲୋକସବୁ ଆସୁଥାନ୍ତି । ଅଲଗା ଅଲଗା ଶିବିର ସବୁ ଲାଗି ଯାଇଥାଏ । ଜରାସନ୍ଧ ସନ୍ଦେହୀ, ସାବଧାନ । ତାଙ୍କ ଲୋକମାନେ ସବୁ ଶିବିର ଉପରେ ନଜର ରଖିଥାନ୍ତି । ତୁମ ମଥୁରା ଶିବିର ଉପରେ ବି । ତା'ଛଡ଼ା ମଥୁରା କଂସର ଶିବିର, ଆଉ କଂସ ଜରାସନ୍ଧଙ୍କର ସବୁ ଆୟୋଜନର ମୂଳ । କଂସକୁ ନିଜର ଜୋଇଁ କରି, କଂସକୁ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ମଲ୍ଲଯୋଦ୍ଧା ଭାବରେ ପ୍ରତିଷ୍ଠା କରି ସେ ନିଜର ଭବିଷ୍ୟତ ଯୋଜନା ସବୁ ଠିକ୍ କରି ସାରିଥିଲେ । ଆମକୁ ଏସବୁ କଥା କୁହାହୋଇଥିଲା, ଆଉ ସେଥିପାଇଁ ଖୁବ୍ ସାବଧାନ ରହିବାକୁ ମଧ୍ୟ କୁହା ହୋଇଥିଲା । ଆମେ ମଧ୍ୟ ସାବଧାନ ଥିଲୁ, କିନ୍ତୁ ଯୋଗ ତ । ଯୋଗକୁ କେହି ଖଣ୍ଡେ ନା । ଆମେ ଦେଖିଲୁ ତୁମେ ଶିବିରରୁ ବାହାରି ଆସିଲ । ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ତୁମେ ଜରାସନ୍ଧଙ୍କର ରାଜପ୍ରାସାଦ ଆଡ଼କୁ ଚାଲିବାକୁ ଆରମ୍ଭ କଲ । ଦେଖିଲୁ ପଡ଼ିଆ ଭିତରେ ଦି'ଜଣ ସିପେହୀ ତୁମକୁ କ'ଣ କହିଲେ । ଆମେ ଭାବିଲୁ ତୁମେ ଶିବିରକୁ ଫେରି ଆସିବ । ତୁମେ ଶିବିରକୁ ଫେରିଲ ବି । କିନ୍ତୁ ହଠାତ୍ ଶିବିର ପାଖରେ ପହଞ୍ଚି ତୁମେ ପୁଣି ବୁଲିଲ । ଏଥରକ ରାଜପ୍ରାସାଦ ଆଡ଼କୁ ନୁହଁ । ରାଜପ୍ରାସାଦକୁ ପଛରେ ରଖି ତୁମେ ସହର ଆଡ଼କୁ ଚାଲିଲ । ଆମର ସେତିକିବେଳେ ତୁମକୁ ସାବଧାନ କରିଦେବା ଉଚିତ ଥିଲା । ସେତେବେଳେ ଆଉ କୁଆଡ଼କୁ ନୁହେଁ, ତୁମର ନିଜ ଶିବିରକୁ ଫେରିଯିବା କଥା । ତୁମେ ଜାଣି ନ ଥିଲ, କିନ୍ତୁ ଆମେ ଜାଣିଥିଲୁ । ଗିରିବ୍ରଜ ସାରା, ମଗଧ ସାରା ଜରାସନ୍ଧଙ୍କର ସିପେହୀ ଛାଇହୋଇ ଯାଇଥିଲେ । ସାମାନ୍ୟ ସନ୍ଦେହରେ ଲୋକଙ୍କୁ ମାରିଦେବା ପାଇଁ ତାଙ୍କର ଆଦେଶ ଥିଲା ।'

'ମାରିଦବା ପାଇଁ... ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

'ହଁ, ମାରିଦବା ପାଇଁ ।' ଗୋପା କହିଲେ, 'କାରଣ ମଲ୍ଲକୁସ୍ତି ଆଖଡ଼ା ଆଗରୁ ଜରାସନ୍ଧ କୌଣସି ଝୁଙ୍କି ନବାକୁ ପ୍ରସ୍ତୁତ ନ ଥିଲେ । ସେ ଜାଣିଥିଲେ କଂସ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ମଲ୍ଲ ନୁହେଁ । କିନ୍ତୁ ସେ ଯେ ଶ୍ରେଷ୍ଠ ମଲ୍ଲ ସେକଥା ଖୋଲାଖୋଲି ସମସ୍ତଙ୍କ ଆଗରେ ଘୋଷଣା କରିବାକୁ ହେବ । ସେଥିପାଇଁ ସବୁପ୍ରକାର ଆୟୋଜନ । ସେଥିପାଇଁ ସବୁପ୍ରକାର ସାବଧାନ, ଏତେ ସିପେହୀ । ଏକଥା ଜାଣି ମଧ୍ୟ ଆମେ ଅଣଦେଖା କରିଦେଲୁ । ସନ୍ଧ୍ୟା ହୋଇ ଯାଇଥିଲା । ତୁମ ଶିବିର, ଆଉ ସବୁ ଶିବିରରେ ସେତେବେଳକୁ ମଶାଲ ଲାଗିଲାଣି, ରାତି ଖାଇବା ପାଇଁ ଗହଳ ଚହଳ


Digitized by srujanika@gmail.com

ଆରମ୍ଭ ହେଲାଣି । ସେହି ଅନ୍ଧାର ଭିତରେ ତୁମେ ଯେ କାହିଁକି ସହର ଆଡ଼କୁ ଚାଲିଲ ଆମେ ବୁଝି ପାରିଲୁ ନାହିଁ । ସହର ପାଖରେ ନୁହେଁ, ଦୂରରେ । ତା'ଛଡ଼ା ରାସ୍ତା ଚୁପ୍‌ଚାପ ହୋଇ ଆସୁଥାଏ । ସେ ସମୟରେ ସେତେବେଳେ ଏକା ଏକା ଯିବା ବିପଜ୍ଜନକ । କିନ୍ତୁ ଆମର କିଛି ଉପାୟ ନ ଥିଲା । ଆମେ ତୁମ ଉପରେ ନଜର ରଖି ତୁମ ପଛେ ପଛେ ଚାଲିଲୁ ।'

'ସେମିତି କିଛି କଥା ନୁହେଁ,' ଅରିନ୍ଦମ କହିଲା, 'ସହର ସେଠୁ କେତେଦୂର ବା କୁଆଡ଼େ ମୁଁ ଜାଣି ନ ଥିଲି । ଗିରିବ୍ରଜ ବିଷୟରେ ବି ମୋର କୌଣସି ଧାରଣା ନ ଥିଲା । ମୁଁ ଦେଖିଲି ଖୋଲା ପଡ଼ିଆ, ଶିବିର ସବୁ ଟଣା ହୋଇଗଲାଣି, ଚାରିଆଡ଼େ ଲୋକଙ୍କର ଗହଳଚହଳ । ଆସ୍ତେ ଆସ୍ତେ ପବନ ଦଉଥାଏ । ନୂଆ ଜାଗା, ଜରାସନ୍ଧ ପ୍ରବଳ ପ୍ରତାପୀ ରାଜା, ତେଣୁ ଡର ଭୟ ମୋର କିଛି ନ ଥାଏ । ମୁଁ ଦେଖିଲି ପଡ଼ିଆ ସେ ପାଖକୁ ତୋଟା, ଗଛକୁ ଗଛ ଲାଗିଛି, ଆଉ ଗଛ ସେ ପାଖରୁ ଆଲୁଅ ଦିଶୁଛି । ମୁଁ ଭାବିଲି ତୋଟା ସେ ପାଖରେ ବି ଶିବିର ସବୁ ଅଛି, ସେହିଯୋଗୁଁ ଏତେ ଆଲୁଅ । ସନ୍ଧ୍ୟାରେ ବୁଲାବୁଲି କରିବା ମୋର ଅଭ୍ୟାସ । ମଥୁରାରେ ଆମେ ସମସ୍ତେ ବୁଲାବୁଲି କରୁ, କେହି କିଛି କହିବାକୁ ନାହିଁ । ସନ୍ଧ୍ୟାରେ ଆମେ ସବୁ ଯମୁନା ଟପି କୂଳ ସେ ପାଖ ବଣକୁ ଯାଉ । ଏ ଗୋଟାଏ ସେହି ଅଭ୍ୟାସ । ମୁଁ ସନ୍ଧ୍ୟାରେ ଶିବିରର ହୋ ହା ଭିତରେ ନ ପଶି ପଡ଼ିଆ ସେ ପାଖ ତୋଟା ଆଡ଼କୁ ଚାଲିଲି । ମୁଁ କଅଣ ଜାଣିଛି ଏତେ ଗୋଳମାଳ ।'

'ଗୋଳମାଳ ଠିକ୍', ଗୋପା କହିଲେ, 'ଆମେ ତୁମକୁ ସାବଧାନ କରି ଦେବାକୁ ସୁଯୋଗ ପାଇଲୁ ନାହିଁ । ବଡ଼ କଥା ତୁମେ ଆମକୁ ଚିହ୍ନ ବା ଜାଣ ଏକଥା ଆମେ ଚାହୁଁ ନ ଥିଲୁ । ଠିକ୍ କଲୁ ଗଛ ଗହଳି ଭିତରେ ସୁବିଧା ଦେଖି ତୁମକୁ ଆମେ ସାବଧାନ କରିଦେବୁ । ତୁମର ଆଗକୁ ନ ଯାଇ ଶିବିରକୁ ଫେରିଯିବା ଦରକାର ।'

ଗୋପା ଅଳ୍ପ ଟିକିଏ ରହି ପୁଣି କହିଲେ – 'ନାଁ, ସେ ସୁବିଧା ହେଲା ନାହିଁ । ଆମେ ତୁମ ପଛେ ପଛେ ଯାଉଥିଲୁ । କିନ୍ତୁ ଆମ ପଛେ ପଛେ ଯେ ଅନ୍ୟ ଲୋକ ଆସୁଥିଲେ ସେକଥା ଆମେ ବୁଝିପାରି ନ ଥିଲୁ । ସେମାନଙ୍କର ନଜର ତୁମ ଉପରେ ନ ଥିଲା, ଆମ ଉପରେ ଥିଲା । ତୁମେ ମଥୁରା ଶିବିର ଲୋକ ଏକଥା ସେମାନେ ନିଶ୍ଚୟ ବୁଝିପାରିଥିଲେ ଆଉ ସେଥିପାଇଁ ସତର୍କ ଥିଲେ । ଜରାସନ୍ଧ ଅତ୍ୟନ୍ତ ଚତୁର । ଆମ୍ଭମାନଙ୍କର ଗୋଷ୍ଠୀ କଥା ସେ ବହୁ ଆଗରୁ ଜାଣନ୍ତି । ମନେହେଉଛି କୁସ୍ତି ଆଖଡ଼ା ଆଗରୁ ଗୋଳମାଳ ହୋଇପାରେ ଏ ବିଷୟରେ ସିପେହୀମାନଙ୍କୁ ସାବଧାନ କରି ଦିଆଯାଇଥିଲା । ଆମେ ତୋଟା ଭିତରୁ ବାହାରି ଖୋଲା ରାସ୍ତାକୁ ଆସିବା ସଙ୍ଗେ

ସଙ୍ଗେ ସେମାନେ ଆସି ଘେରିଗଲେ । ମୁଁ ପଛେଇଗଲି । କିନ୍ତୁ ସିଏ ସେମାନଙ୍କ ମୁହାଁମୁହିଁ ହେଲେ । ତା'ପରେ କ'ଣ ହେଲା ତୁମେ ଜାଣ ।'

ଅରିନ୍ଦମ ମନରେ ସେଦିନ ସନ୍ଧ୍ୟାର ସେହି ନୃଶଂସ ହତ୍ୟା ପୁଣିଥରେ ଭାସିଉଠିଲା । ଗିରିବ୍ରଜରେ ସେମାନେ ପହଞ୍ଚିବାର ଦ୍ୱିତୀୟ କି ତୃତୀୟ ଦିନ ହେବ । କିଛି ନ ଭାବି ନିଜ ଖିଆଲରେ ସେ ଆଗେଇ ଯାଉଥିଲା । ତା'ପରେ ହଠାତ୍ ଏ ଦୃଶ୍ୟ, ଏତେ ଦିନ ପରେ ବି ତା ଦେହ ଶୀତେଇ ଉଠିଲା । ତା' ଜୀବନରେ ଏପରି ଘଟଣା ପ୍ରଥମ । ଗୋପା ନୁହେଁ, ଭାନୁପ୍ରକାଶ କହୁଥାନ୍ତି- 'ଆମେ ସାଙ୍ଗେ ସାଙ୍ଗେ ଖବର ପାଇଥିଲୁ । କିନ୍ତୁ ଆମେ କେହି ଗଲୁନି । କାରଣ ଆମେ ସେ ଘଟଣାକୁ ବଢ଼େଇବାକୁ ଚାହୁଁ ନ ଥିଲୁ । ଦ୍ୱିତୀୟରେ, ଆମେ ଜାଣିଥିଲୁ ସେମାନେ ସେଠି ଜଗିକରି ରହିଥିବେ । ଆମେ ଯିବୁ, ଏ ବିଷୟରେ ସେମାନେ ନିଶ୍ଚିତ ଥିଲେ । ଆମେ ପରେ ସେମାନେ ସବୁ ଗଲାପରେ ଗଲୁ । ଅରିନ୍ଦମ, ଗୋପାଙ୍କ ସ୍ୱାମୀ ମୋର ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କର କ୍ଷତି ଆଉ ପୂରଣ ହୋଇ ପାରିବନି । ତାଙ୍କ ହତ୍ୟାର ଆମେ ପ୍ରତିଶୋଧ ନେବୁ ।'

ସେତେବେଳକୁ ସେମାନେ ମଥୁରା ଶିବିର ପାଖରେ ପହଞ୍ଚି ସାରିଥିଲେ । ରାତି ହୋଇଯାଇଥିଲେ ବି, ଶିବିରରେ ଲୋକେ ଚଳପ୍ରଚଳ ହେଉଥିଲେ । ଅରିନ୍ଦମ ଭାନୁପ୍ରକାଶଙ୍କୁ ଚାହିଁଲା, କହିଲା – 'କାଲି ତ ଆମେ ଫେରିବୁ । ଆଉ ଆପଣଙ୍କ ସାଙ୍ଗରେ ପୁଣି କେବେ ଦେଖାହେବ ?' ଭାନୁପ୍ରକାଶ ଟିକେ କ'ଣ ଭାବି କହିଲେ, 'ଦେଖା ଶୀଘ୍ର ହେବ । ଶିବିର ତୁମର କାଲି ଫେରିଯାଉଛି, କିନ୍ତୁ ତୁମେ ବୋଧହୁଏ କାଲି ଯାଉନା ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, 'ମୁଁ ତେବେ କେବେ ଯିବି ? ମୁଁ ରହିଯିବି କାହିଁକି ?'

'ତୁମେ ଏକା ନୁହଁ, ତୁମ ସାଙ୍ଗରେ ଆଉ ଅଳ୍ପ କିଛି ଲୋକ ରହିବେ । କଂସ ଏକା ଏକା କେବଳ ମଗଧର ସୈନ୍ୟମାନଙ୍କ ସାଙ୍ଗରେ ଫେରିବାକୁ ଚାହେଁ ନା । ତା'ର ଇଚ୍ଛା ତୁମ୍ଭେମାନେ ତା' ସାଙ୍ଗରେ ରହିବ । ତେବେ ଖୁବ୍ ଡେରି ନୁହଁ, ଆଉ ପାଞ୍ଚ ସାତଦିନ ପରେ ତୁମ୍ଭେମାନେ ଏଠୁ ଫେରିବ । ଜରାସନ୍ଧର ଇଚ୍ଛା କଂସ ଶୀଘ୍ର ମଥୁରା ଫେରି ଦାୟିତ୍ୱ ନେଉ ।'

ଏ କି ରାଜନୀତି ଚକ୍ର, ଅରିନ୍ଦମ ମନେ ମନେ ଭାବିଲା । ଭାନୁପ୍ରକାଶଙ୍କ କଥା ସରି ନ ଥିଲା । ସେ କହିଲେ, 'ଆସନ୍ତା କାଲି ସନ୍ଧ୍ୟାରେ ତୁମର ମହାକାଳଙ୍କୁ ଦର୍ଶନ କରିବାର ବନ୍ଦୋବସ୍ତ କରାଯାଇଛି । ଆମ ଲୋକ ଆସିବେ, ତୁମେ ପ୍ରସ୍ତୁତ ଥିବ ।'

ସେମାନେ ଅରିନ୍ଦମଙ୍କୁ ଶିବିର ପାଖରେ ଛାଡ଼ିଦେଇ ଜଙ୍ଗଲର ଅନ୍ଧାର ଭିତରେ ଅଦୃଶ୍ୟ ହୋଇଗଲେ । ଶିବିର ଭିତରକୁ ପଶି ଅରିନ୍ଦମ ଦେଖିଲା ପ୍ରାୟ କେହି ଶୁଆଶୋଇ କରିନାହାନ୍ତି । ଅନେକ ଲୋକ ଗୋଟାଏ ଜାଗାରେ ଏକାଠି ହୋଇ ଚୁପ୍‌ଚାପ୍ ବସିଛନ୍ତି । ତାକୁ ସାମାନ୍ୟ ଆଶ୍ଚର୍ଯ୍ୟ ଲାଗିଲା । ସେ ଶିବିରର ପ୍ରାୟ ମଝାମଝି ଜାଗା, ସମସ୍ତେ ଯେଉଁଠି ଏକାଠି ଖିଆପିଆ କରନ୍ତି । ତାକୁ ଦେଖି କିଛି ଲୋକ ପାଖକୁ ଯିବାକୁ ଡାକିଲେ । ସେ ଦେଖିଲା ଲୋକମାନେ ସବୁ ଯେଉଁଠି ବସିଛନ୍ତି, ତା ମଝିରେ ଅଳ୍ପ ଖୋଲା ଜାଗାରେ ଜଣେ କିଏ ଛିଡ଼ା ହୋଇଛନ୍ତି । ସେ ଭଲ କରି ଚାହିଁଲା । ଆରେ ଏ ତ ଜରାସନ୍ଧର ଜଣେ ବୟସ୍କ ମନ୍ତ୍ରୀ । ତାଙ୍କୁ ଅରିନ୍ଦମ ବିଭିନ୍ନ ଜାଗାରେ ଦେଖିଛି । ମଝିରେ ମଝିରେ ବୁଝାସୁଝା କରିବା ପାଇଁ ତାଙ୍କ ଶିବିରକୁ ସେ ଆସନ୍ତି । ସେଇ ତ କିଛିଦିନ ତଳେ ଜରାସନ୍ଧ ଓ କଂସ ଉଭୟଙ୍କୁ ଖୁବ୍ ଟେକାଟେକି କରି କହୁଥିଲେ । ସେ ଖୁବ୍ ଖୁସି ଯେ ଜରାସନ୍ଧ ମଥୁରାର ଯାଦବମାନଙ୍କ ସହିତ ସମ୍ପର୍କ କଲେ । ବିଶେଷ କରି କଂସ ବିଷୟରେ ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା । ତାଙ୍କ ମତରେ କଂସ ପରି ସାହସୀ ବୁଦ୍ଧିମାନ ଯୁବକ ସମ୍ରାଟ ଜରାସନ୍ଧଙ୍କର ଉପଯୁକ୍ତ ସହକର୍ମୀ । ସେହିହିଁ ଦିନେ ଜରାସନ୍ଧଙ୍କ ପରେ ଆର୍ଯ୍ୟାବର୍ତ୍ତର ସମ୍ରାଟ ହେବେ । ସେ କହୁଥାନ୍ତି - 'ଆପଣମାନେ ମଥୁରାକୁ ସୁରୁଖୁରୁରେ ଫେରିବାକୁ ସବୁ ବନ୍ଦୋବସ୍ତ କରାଯାଇଛି । ସାଙ୍ଗରେ ସୈନ୍ୟସାମନ୍ତ ଯିବେ, ସାହାଯ୍ୟ କରିବାକୁ ଲୋକବାକ ଯିବେ, ଯଥେଷ୍ଟ ଖାଦ୍ୟସାମଗ୍ରୀ ଯିବ । ସମ୍ରାଟଙ୍କର କଡ଼ା ଆଦେଶ ଯେପରି ଜଣକର ବି କିଛି ଅସୁବିଧା ନ ହୁଏ । ଆପଣମାନେ ତାଙ୍କ ଜୋଇଁଙ୍କ ଲୋକ, ଜୋଇଁ ପରି । ଲୋକଙ୍କର ଭୁଲ ଧାରଣା ସେ ନିଷ୍ଠୁର କଡ଼ା ଲୋକ । ହଁ, ସେ ନିଷ୍ଠୁର, କଡ଼ା, କିନ୍ତୁ ସେ କେବଳ ତାଙ୍କର ଶତ୍ରୁମାନଙ୍କ ପାଇଁ । ତାଙ୍କର ଦାନ ଅନୁଗ୍ରହର ସୀମା ନାହିଁ । ତାଙ୍କର ଇଚ୍ଛା ମଥୁରାକୁ ସେ ଦେଶର ଶ୍ରେଷ୍ଠ ରାଜ୍ୟ କରିଦେବେ । ମଗଧ ଓ ମଥୁରା ମିଶିଗଲେ ସମଗ୍ର ଆର୍ଯ୍ୟାବର୍ତ୍ତରେ ଏପରି ରାଜ୍ୟ ନାହିଁ ଯେ କି ସେମାନଙ୍କ ବିରୁଦ୍ଧରେ ଛିଡ଼ା ହୋଇ ପାରିବ । ସମ୍ରାଟ କଂସଙ୍କୁ ତାଙ୍କ ପରେ ତାଙ୍କ ସ୍ଥାନରେ ପ୍ରତିଷ୍ଠା କରିବାକୁ ଚାହାନ୍ତି । ସେହି ହିଁ ଆର୍ଯ୍ୟାବର୍ତ୍ତର ସମ୍ରାଟ ହେବେ । କିନ୍ତୁ ସେଥିପାଇଁ ଆପଣମାନଙ୍କର ସମସ୍ତଙ୍କର ସାହାଯ୍ୟ ସମର୍ଥନ ଲୋଡ଼ା । ସମ୍ରାଟ ଚାହାନ୍ତି ଆପଣମାନେ ମଥୁରା ଲୋକମାନଙ୍କୁ ଏସବୁ କଥା କହନ୍ତୁ । କେବଳ କଂସ ନୁହେଁ, ମଥୁରାର ସବୁ ସୁବିଧା ଅସୁବିଧାରେ ସେ ଆପଣଙ୍କ ପଛରେ ଛିଡ଼ାହେବେ, ଏକଥା ସମସ୍ତେ ଜାଣନ୍ତୁ । ଆପଣମାନେ ଯିବା

ପରେ ରାଜକନ୍ୟାମାନଙ୍କୁ ଧରି କଂସ ଯିବେ । ସେଥିପାଇଁ ସମ୍ରାଟ ବିରାଟ ବନ୍ଦୋବସ୍ତ କରିଛନ୍ତି । ତାଙ୍କର ଇଚ୍ଛା ଦଶଦିନ ପର୍ଯ୍ୟନ୍ତ ମଥୁରାରେ ଉତ୍ସବ ହେବ, ଏପରି ଉତ୍ସବ ଯାହାକି ଲୋକମାନେ ଦେଖି ନ ଥିବେ କି ଜାଣି ନ ଥିବେ । ଉତ୍ସବର ବନ୍ଦୋବସ୍ତ କରିବାକୁ ଲୋକମାନେ ଆପଣଙ୍କ ସାଙ୍ଗରେ ଯିବେ । ସମ୍ରାଟ ନିଜେ ଯାଇଥାନ୍ତେ । କିନ୍ତୁ ଏଠି ଗୁରୁତର ରାଜକାର୍ଯ୍ୟ ଯୋଗୁଁ ତାଙ୍କର ଯିବା ସମ୍ଭବ ନୁହେଁ । ସେଇଥିପାଇଁ ତାଙ୍କର ଅନୁରୋଧ ଆପଣମାନେ ସମସ୍ତେ ସହଯୋଗ କରନ୍ତୁ । କଂସଙ୍କର ମଥୁରା ପ୍ରବେଶ ଏପରି ଭାବରେ ହେଉ ଯେ ସମଗ୍ର ଆର୍ଯ୍ୟାବର୍ତ୍ତରେ ଚହଳ ପଡ଼ିଯିବ । ସେଥିପାଇଁ ସମ୍ରାଟ ସମସ୍ତ ପ୍ରକାର ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ।' ବସିଥିବା ଲୋକମାନଙ୍କ ଭିତରୁ କିଏ ଜଣେ ହଠାତ୍ କହିଲା – 'ସମ୍ରାଟ ଜରାସନ୍ଧଙ୍କର ଜୟ ହେଉ ।' ସାଙ୍ଗେ ସାଙ୍ଗେ ପ୍ରାୟ ଅଧିକାଂଶ ପାଳି ଧରିଲା ପରି ପାଟିକରି ଉଠିଲେ – 'ସମ୍ରାଟ ଜରାସନ୍ଧଙ୍କର ଜୟ ହେଉ' । ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ଚାହିଁଲା । ଜରାସନ୍ଧ ଅତ୍ୟନ୍ତ ଚତୁର ସନ୍ଦେହ ନାହିଁ । ସେ ଜାଣନ୍ତି କିପରି ଭାବରେ ଏ ଲୋକମାନଙ୍କୁ ସନ୍ତୁଷ୍ଟ କରିହେବ । ତାଙ୍କର ଏ ମନ୍ତ୍ରୀ ମଧ୍ୟ ଚତୁର । ବେଶ୍ କଥା କହି ଜାଣନ୍ତି । ଅରିନ୍ଦମର ଇଚ୍ଛା ହେଲା ପଚାରିବ ଯାଦବମାନଙ୍କ ପ୍ରତି ସମ୍ରାଟଙ୍କର ଏ ହଠାତ୍ ଅନୁଗ୍ରହ କାହିଁକି । କିନ୍ତୁ ସେ ନିଜକୁ ସଂଯତ କଲା । ଏପରି ପ୍ରଶ୍ନ ବିପଦଜନକ । ତା'ର ନିଜର ଲୋକମାନେ ବି ନାପସନ୍ଦ କରିବେ । ସବୁ ଯାଦବମାନେ ଯେ ଜୟଜୟକାର କଲେ ତା ନୁହେଁ । ତା'ର ମନେହେଲା ମନ୍ତ୍ରୀଙ୍କ ସାଙ୍ଗରେ ଜରାସନ୍ଧଙ୍କର ବି କିଛି ଲୋକ ଆସି ବସିଛନ୍ତି । ସେ ଉଠି ମନ୍ତ୍ରୀଙ୍କ ପାଖକୁ ଗଲା, ପଚାରିଲା – 'ଆଜ୍ଞା, କଂସଙ୍କ ସାଙ୍ଗରେ କ'ଣ ଆଉ ଦେଖା ହେବନି ?' ମନ୍ତ୍ରୀ ସାମାନ୍ୟ କଣେଇ କରି ଅରିନ୍ଦମକୁ ଚାହିଁଲେ, କହିଲେ – 'ତୁମେ କିଏ ? ତୁମର କଂସଙ୍କ ପାଖରେ କି କାମ ?'

ଅରିନ୍ଦମ ସ୍ୱରକୁ ଯଥାସମ୍ଭବ ନରମ କରି କହିଲା, 'ଆଜ୍ଞା, ମୋ ନାଁ ଅରିନ୍ଦମ । ମୁଁ ମଥୁରାରୁ ଆସିଛି । ମୁଁ ଯୁବରାଜ କଂସଙ୍କର ପରିଚିତ ।' ମନ୍ତ୍ରୀଙ୍କ ସ୍ୱରରେ ଅବହେଳାର ଭାବ ଫୁଟି ଉଠିଲା – 'ଯୁବରାଜ କଂସ ସବୁ ପରିଚିତ ଲୋକଙ୍କୁ ସାକ୍ଷାତ କରନ୍ତିନି' । ତା'ପରେ ଟିକିଏ ରହିଗଲେ, କହିଲେ, 'କଅଣ, କଅଣ, ତୁମ ନାଁ ? କଅଣ କହିଲ ?'

ଅରିନ୍ଦମ ବିନୀତ ଭାବରେ କହିଲା – 'ଆଜ୍ଞା, ଅରିନ୍ଦମ ।'

ମନ୍ତ୍ରୀଙ୍କ ମୁହଁରେ ହସ ଫୁଟି ଉଠିଲା, 'ଓ ହୋ, ସେକଥା କହୁନା କାହିଁକି ? ଅରିନ୍ଦମ, ହଁ, ଅରିନ୍ଦମ । ତୁମ ବାପା ତ ମହାଜ୍ଞାନୀ । ଯୁବରାଜ କଂସ ତ ତୁମକୁ ଭଲ


Digitized by srujanika@gmail.com

ଭାବରେ ଜାଣନ୍ତି । ତାଙ୍କ ସାଙ୍ଗରେ ତୁମର ଦେଖା ହବ କ'ଣ ? ତୁମେ ତ ତାଙ୍କ ସାଙ୍ଗରେ ଯିବ ।'

ଅରିନ୍ଦମ ସାମାନ୍ୟ ବିସ୍ମିତ ହେଲାପରି କହିଲା, 'ଆଜ୍ଞା, କଂସଙ୍କ ସାଙ୍ଗରେ ? ଆମେ ତ କାଲି ସମସ୍ତେ ସାଙ୍ଗ ହୋଇ ଫେରିବା କଥା ?'

'ନାଁ, ନାଁ', ମନ୍ତ୍ରୀ କହିଲେ, 'ତୁମେ ନୁହଁ । ତୁମ ମଥୁରା ଶିବିର କାଲି ଫେରିଯିବ । କିନ୍ତୁ ତୁମେ ଓ ଆଉ କିଛି ଲୋକ ରହିଯିବ । ଆଠ ଦଶଦିନ ପରେ କଂସଙ୍କ ସାଙ୍ଗରେ ଯିବ । କଂସ କଅଣ ଏକା ଏକା ବର ହୋଇ ଫେରିବେ ? ତାଙ୍କ ସାଙ୍ଗରେ ତ ବରଯାତ୍ରୀ ଦରକାର ।' ମନ୍ତ୍ରୀ ନିଜ କଥାରେ ନିଜେ ହସିଲେ ।

ତେଣୁ ମଗଧରୁ ଫେରିଲା ବେଳେ ମଥୁରା ଲୋକେ ଦି'ଭାଗ ହୋଇଗଲେ । ଅଧିକାଂଶ ଲୋକେ ପ୍ରଥମେ ଦଳ କରି ଫେରିଲେ । ପରେ ସେମାନେ ପ୍ରାୟ ଦଶଜଣ ଲୋକ ରହିଗଲେ କଂସ ସାଙ୍ଗରେ ଫେରିବା ପାଇଁ । କିନ୍ତୁ ପ୍ରାୟ ସମସ୍ତେ ଗୋଟାଏ ବିଷୟରେ ଏକମତ ହେଲେ । ସେ ଜରାସନ୍ଧଙ୍କ ପ୍ରଶଂସାରେ, ଆଉ ମଗଧର ମଥୁରା ସହିତ ଯେଉଁ ବୈବାହିକ ସମ୍ପର୍କ ହେଲା ସେ ବିଷୟରେ ବି । ତେବେ ଜରାସନ୍ଧଙ୍କୁ ନିନ୍ଦା କରିବାର ବିଶେଷ କିଛି ନ ଥିଲା । ସେ ଅତିଥିମାନଙ୍କର ଯଥେଷ୍ଟ ଯତ୍ନ ନେଇଥିଲେ, ତାଙ୍କ ଲୋକମାନେ ସବୁ ସମୟରେ ଆସି ମଥୁରାର ଲୋକମାନଙ୍କର ସୁବିଧା ଅସୁବିଧା ଉପରେ ତୀକ୍ଷ୍ଣ ନଜର ରଖିଥିଲେ । ତେବେ ପ୍ରଥମେ ପ୍ରଥମେ ବୁଝି ନ ପାରିଲେ ବି, ପରେ ପରେ ଅରିନ୍ଦମର କିଛି କିଛି ସନ୍ଦେହ ହୋଇଥିଲା । ତା'ର ମନେ ହୋଇଥିଲା ଏ ଖାଲି ସେମାନଙ୍କର ସୁବିଧା ଅସୁବିଧା କଥା ନୁହେଁ, ସେମାନେ କୁଆଡ଼େ ଯିବା ଆସିବା କରୁଛନ୍ତି, କଅଣ କୁହାକୋହି ହେଉଛନ୍ତି ତା' ଉପରେ ବି ନଜର ଥିଲା ।

ସେଦିନ ରାତିରେ ଜରାସନ୍ଧଙ୍କର ମନ୍ତ୍ରୀ ଶିବିର ଭିତରେ ବହୁତ ସମୟ ଧରି ଥିଲେ । ତାଙ୍କ ସାଙ୍ଗରେ ଥିବା ଲୋକମାନେ ମଥୁରାର ଲୋକମାନଙ୍କର ଟିକିନିଖି ବୁଝିବାକୁ ଚେଷ୍ଟା କରୁଥିଲେ । ମନ୍ତ୍ରୀ ମଧ୍ୟ ବହୁତ କଥା କହୁଥିଲେ । ସବୁକଥା ଜରାସନ୍ଧଙ୍କ ସମ୍ପର୍କରେ - ତାଙ୍କର ମହତ୍ତ୍ୱ, ତାଙ୍କର ବୀରତ୍ୱ, ସେ କିପରି ମହାଯୋଦ୍ଧା ଓ ଦିନେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ସେ ଜୟ କରିବେ । ଅରିନ୍ଦମ ତାଙ୍କ ପାଖରେ ବେଶି ସମୟ ବସିଲା ନାହିଁ । ଉଠି ଆସି ନିଜ ଜାଗାରେ ଶୋଇପଡ଼ିଲା । ତା'ପାଖକୁ ଆଉ ଦି'ଜଣ ଲୋକ ବି ଆସି ଶୋଇଛନ୍ତି । ଶୋଉ ଶୋଉ ସେ ଶୁଣିଲା, ପାଖରେ ଶୋଇଥିବା ବନ୍ଧୁଜଣଙ୍କ କହୁଛନ୍ତି - 'ମତଲବ, ମତଲବ, ବୁଝିଲ ଅରିନ୍ଦମ୍, ମତଲବ । ତୁମେ ଉଠିଆସି ଭଲ କଲ । ସେ ଆମ କଥା ବୁଝିବାକୁ ଆସି ନାହାନ୍ତି,

ସେ ଦେଖିବାକୁ ଆସିଛନ୍ତି ଆମେ ସବୁ ଠିକ୍ ଅଛୁ କି ନାହିଁ । ଗଲା ଦୁଇଦିନ ହେବ ମଗଧରେ ବହୁତ ଗୋଳମାଳ ଚାଲିଛି । ଜରାସନ୍ଧଙ୍କର ଅତ୍ୟନ୍ତ ପାଖଲୋକ ତିନିଜଣଙ୍କୁ ଅଜଣା ଲୋକେ ହତ୍ୟା କରି ଦେଇଛନ୍ତି । ଜରାସନ୍ଧଙ୍କର ଖଜଣାଖାନାରୁ ସୁନା ରୂପା, ମଣିମୁକ୍ତା ଲୁଟି ହୋଇ ଯାଇଛି । ଏକଥା ଖୁବ୍ କମ୍ ଲୋକ ଜାଣନ୍ତି । ଜରାସନ୍ଧଙ୍କର କଡ଼ା ଆଦେଶ ସବୁ ଶିବିର ଉପରେ ନଜର ରଖ । ସେଇ ଯୋଗୁଁ ମନ୍ତ୍ରୀ ମହାଶୟ ଏଠି ଆସି ବସିଛନ୍ତି, ଜରାସନ୍ଧଙ୍କର ଗୁଣଗାନ କରୁଛନ୍ତି । ସେ ସାରାରାତି ଏଠି ରହିବେ । ଆମେ ତ ଫେରିଯିବୁ । ତୁମେ ଯେଉଁମାନେ ରହିବ, ସାବଧାନରେ ରହିବ । କିଛି ଠିକଣା ନାହିଁ । ଜରାସନ୍ଧଙ୍କୁ ଆଦୌ ବିଶ୍ୱାସ ନାହିଁ ।’

ଅରିନ୍ଦମ ଆଖିରୁ ନିଦ ଛାଡ଼ିଗଲା । ସେ ଯେ ଗୌରୀମା’ଙ୍କ ମନ୍ଦିରକୁ ଯାଇଥିଲା, ଭାନୁପ୍ରକାଶ ପ୍ରଭୃତିଙ୍କ ସହିତ ମିଶାମିଶି, ସେ କଥା କ’ଣ ଏମାନେ ଜାଣନ୍ତି ? ତା’ ମନ ଭିତରୁ ଯେପରି କିଏ କହି ଉଠିଲା – ଭୟ କର ନା । ଭାନୁପ୍ରକାଶ କଞ୍ଚା ଲୋକ ନୁହନ୍ତି । ଜରାସନ୍ଧଙ୍କର ସବୁ କାମ ତାଙ୍କର ନଖ ଦର୍ପଣରେ । ସେ ଜରାସନ୍ଧଙ୍କୁ ଭୟ କରନ୍ତି ନାହିଁ, ଜରାସନ୍ଧ ତାଙ୍କୁ ଭୟ କରେ । ଅରିନ୍ଦମ ପ୍ରତି ସାମାନ୍ୟ ବିପଦର ସମ୍ଭାବନା ଥିଲେ ସେ ଅନ୍ୟପ୍ରକାର ନିର୍ଦ୍ଦେଶ ଦେଇଥାନ୍ତେ । ସେ ମନରୁ ଭୟ କାଢ଼ିଦେଇ ଶୋଇଲା । ଦେଖିଲା ପାଖର ସେ ବନ୍ଧୁ ନିଘୋଡ଼ ନିଦରେ ଶୋଇଛନ୍ତି । ସେ ଯେ କିଛି ସମୟ ଆଗରୁ ଏତେ କଥା କହିଲେ ଏକଥା ବିଶ୍ୱାସ ହେଉନାହିଁ । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲା । ସେ ଠିକ୍ ଶୁଣିଛି ତ ? ନାଁ ଯା ସେ ଶୁଣିଲା ସେ ବାହାରର କଥା ନୁହେଁ, ତା ମନ ଭିତରର କଥା, ଯା ସେ ଭାବୁଛି ସେହି କଥା ?

ମଥୁରାର ଲୋକମାନେ ଫେରିଯିବା ସବୁ ଠିକ୍‌ଠାକ୍ ହୋଇଗଲା ଓ ଅରିନ୍ଦମ ପ୍ରଭୃତି କେତେଜଣଙ୍କୁ ଛାଡ଼ି ଅନ୍ୟ ସମସ୍ତେ ନିର୍ଦ୍ଧାରିତ ଦିନ ଜରାସନ୍ଧଙ୍କ ବନ୍ଦୋବସ୍ତ ଅନୁଯାୟୀ ଫେରିଗଲେ । ଯୋଗାଡ଼ ଯନ୍ତ୍ରରେ କିଛି ଭୁଲ ନ ଥିଲା, ସୈନ୍ୟମାନେ ସାଙ୍ଗରେ ଗଲେ ଯେପରି ବାଟରେ ବିପଦ ଆପଦ ନ ଘଟେ । ସାହାଯ୍ୟ କରିବାକୁ ଲୋକମାନେ ଗଲେ । ଖାଇବା ପାଇଁ ଯଥେଷ୍ଟ ଖାଇବାପତ୍ର ବି ଦିଆଯାଇଥିଲା । ସେମାନେ ସବୁ ଯିବା ଆଗରୁ ସକାଳୁ ସକାଳୁ କଂସ ବି ଶିବିରକୁ ଆସିଥିଲା । ସମସ୍ତଙ୍କ ସହିତ ହସଖୁସି କଥାବାର୍ତ୍ତା କଲା । ଅତ୍ୟନ୍ତ ନିଜ ଲୋକ ପରି ବିଦାୟ ସମ୍ବର୍ଦ୍ଧନା ବି ଜଣେଇଲା । ସବୁ ଲୋକେ ଖୁବ୍ ଖୁସି । ଜରାସନ୍ଧଙ୍କୁ ବହୁତ ବହୁତ ପ୍ରଶଂସା କଲେ । କଂସକୁ ବି । କହୁ କହୁ କିଛି ଲୋକ ତ କହି ପକେଇଲେ – କଂସ, ତୁମେ ଶୀଘ୍ର ଆସ । ଫେରିଆସି ମଥୁରା କଥା ବୁଝ । ଉଗ୍ରସେନ ବୁଢ଼ା


Digitized by srujanika@gmail.com

ହେଇଗଲେଣି । ସେ ଆଉ ପାରୁନାହାନ୍ତି । ଲୋକମାନଙ୍କର କଥାବାର୍ତ୍ତା, ଢଙ୍ଗଢ଼ାଙ୍ଗ ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗିଲା । ଏଇମାନେ କିଛିଦିନ ତଳେ କଂସ ବିରୁଦ୍ଧରେ, ଜରାସନ୍ଧଙ୍କ ବିରୁଦ୍ଧରେ ନାନା କଥା କହୁଥିଲେ - କଂସ ଉଚ୍ଚଜାତିର, ସେ କାହିଁକି ଜରାସନ୍ଧଙ୍କ ଘରେ ବିଭା ହେଲା ସେ କଥାକୁ ନାପସନ୍ଦ କରୁଥିଲେ । ବିଶେଷ କରି ମଥୁରାର ମୁଖିଆମାନଙ୍କୁ ନ ପଚାରି, ସେମାନଙ୍କର ମତାମତ ନ ନେଇ ଏପରି ଭାବରେ ହଠାତ୍ ହଠାତ୍ ବାହାହୋଇ ପଡ଼ିବା ଆଦୌ ଠିକ୍ ନୁହେଁ, ଏକଥା ବି କହୁଥିଲେ । ଅନ୍ୟ କେତେକ ଭୟ ବି କରୁଥିଲେ । କହୁଥିଲେ ଗୋଟାଏ ମତଲବରେ ଏ ବିଭାଘର କରାଯାଇଛି ଯେପରି ଜରାସନ୍ଧ ମଥୁରାରେ ଆଧିପତ୍ୟ କରିପାରିବ । ସ୍ୱାଧୀନଚେତା ଯାଦବମାନଙ୍କୁ ନିଜ ଅଧିନକୁ ଆଣିବା ପାଇଁ ଏ ଗୋଟାଏ କୌଶଳ । ସେସବୁ କଥା କୁଆଡ଼େ ଗଲା ? ବର୍ତ୍ତମାନ ସେହି ଲୋକମାନେ ଅନ୍ୟ ସ୍ୱରରେ କଥା କହୁଛନ୍ତି । ଯାହାକୁ ପରମ ଶତ୍ରୁ ବୋଲି ଭାବୁଥିଲେ, କହିବାକୁ ପଛୋଉ ନ ଥିଲେ, ବର୍ତ୍ତମାନ ସେ ପରମ ମିତ୍ର । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଆ ମୁହଁକୁ ତା ମୁହଁକୁ ଚାହିଁଲା । ହଁ, ସେହିଲୋକ ସବୁ ତ ? କଅଣ ବଦଳିଲା ? ଗୋଟାଏ ରାତିରେ ଜରାସନ୍ଧଙ୍କର ସେ ମନ୍ତ୍ରୀଟା ଆସି କହିଲା ପରେ ସବୁ ବଦଳିଗଲା ? ନାଁ, ଆଉ କିଛି ? ସେ ଆଉ ଗୋଟାଏ କଥା ଲକ୍ଷ୍ୟ କଲା । ଏ ଲୋକମାନଙ୍କ ସାଙ୍ଗରେ କିଛି କିଛି ଝିଅ ବି ଯାଉଛନ୍ତି । କମ୍ ବୟସର, ଦେଖିବାକୁ ସୁନ୍ଦର, ଲୋକମାନଙ୍କର ସାଙ୍ଗରେ ମିଶିବା ପାଇଁ କୌଣସି ସଂକୋଚ ନାହିଁ । ବରଂ ବେଶ୍ ଆଗ୍ରହୀ । ସେ ପଚାରିଥିଲା - 'ଏ ଝିଅମାନେ କଅଣ ମଥୁରା ଯିବେ ?' 'ଜଣେ କିଏ କହିଥିଲା - ହଁ, ହଁ, ଏମାନେ ସବୁ ଯିବେ । ଏମାନଙ୍କୁ ଆମେ ବିଭା ହେବୁ, ପାଖରେ ରଖିବୁ । କି ହୋ, ଏତେ ସୁନ୍ଦର ଝିଅ ମଥୁରାରେ କୋଉଠି ମିଳିବେ ?' ତଥାପି ଅରିନ୍ଦମ ମନରୁ ସନ୍ଦେହ ଯାଇ ନ ଥିଲା । ଏମାନେ କାହିଁକି ? ଏମାନେ ଏପରି ଭାବରେ ଯିବା ଯେ ମଗଧ ପକ୍ଷରେ ଅପମାନ । କଂସ ଓ ଜରାସନ୍ଧ କ'ଣ ଏକଥା ଜାଣନ୍ତି ? କାହିଁ, ଜରାସନ୍ଧଙ୍କର ଲୋକମାନେ ଥିଲେ । କେହି ତ କିଛି ପ୍ରତିବାଦ କଲେନି । ଆଉ ମଥୁରାର ଲୋକମାନେ ଏ ଝିଅମାନଙ୍କୁ ନେଲେ ବା କେମିତି ? ଏ ତ ଠିକ୍ ନୁହେଁ । ତୁମର ଭୁଲ୍ ଠିକ୍‌ର ବିଚାର ଠାରୁ ଜରାସନ୍ଧର ଭୁଲ୍ ଠିକ୍‌ର ବିଚାର ଅଲଗା, ଏକଥା ବହୁ ଆଗରୁ ଭାନୁପ୍ରକାଶ ଅରିନ୍ଦମକୁ କହିଥିଲେ । ଜରାସନ୍ଧ ମଥୁରା ଲୋକଙ୍କର ନାଡ଼ି ଟିପି ସାରିଲାଣି । ତା ନ ହୋଇଥିଲେ ସେ ଏତେ ଆଡ଼ମ୍ବରରେ ନିଜର ଝିଅମାନଙ୍କ ସହିତ କଂସର ବିଭାଘର କରି ନ ଥାନ୍ତା । କୌଣସି ଉଦ୍ଦେଶ୍ୟ ନ ଥାଇ ଜରାସନ୍ଧ କୌଣସି କାମ କରେ ନା ଏ କଥା ବି ଭାନୁପ୍ରକାଶ କହିଥିଲେ । ଏହି ଝିଅମାନେ

ମଗଧର କାମ କରିବେ, ମଥୁରାର କାମ ନୁହେଁ । ଅରିନ୍ଦମ ଭାବିଲା କଂସ ରାଜା ହେଲାପରେ ଏଇମାନେ ହିଁ ଯାଦବଙ୍କର ଘରଆଡୁ କଂସକୁ ସାହାଯ୍ୟ କରିବେ । ସେଦିନ ମଥୁରାର ସେହି ଚିହ୍ନା ଲୋକମାନଙ୍କର ଢଙ୍ଗଢ଼ାଙ୍ଗ ଦେଖି ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇଯାଇଥିଲା ।

ବାହାରେ ସନ୍ଧ୍ୟାର ଅନ୍ଧାର ଆସି ନ ଥାଏ । ଚାରିଆଡ଼ କିଛି ଫର୍ଚ୍ଚା ଥାଏ । କିନ୍ତୁ ଶିବିର ଭିତରେ ମଶାଲ ଲାଗିଗଲାଣି । ଅରିନ୍ଦମ ଜଣେ ବଂଧୁଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଥାଏ । ସେ ବଂଧୁଜଣକ ବି ଅରିନ୍ଦମ ପରି ରହିଯାଇଥାନ୍ତି । ପରେ ସେ ବି କଂସ ସାଙ୍ଗରେ ମଥୁରା ଫେରିବେ । ଉଭୟ ଗୋଟିଏ ବିଷୟରେ ଚିନ୍ତିତ ଥାଆନ୍ତି । ଯେ ଘଟଣାସବୁ ଯାହା ହେଲାଣି ସେଥିରେ ମଥୁରାର ଭବିଷ୍ୟତ କଅଣ ହେବ । ବନ୍ଧୁ କହିଲେ, 'ଭବିଷ୍ୟତ କଅଣ ହେବ ? ଭବିଷ୍ୟତ ଥିଲେ ବି କଂସ ଉପରେ କଅଣ ନିର୍ଭର କରି ହେବ ? ସେ ତ ନିଜେ ଯାହା, ବର୍ତ୍ତମାନ ଜରାସନ୍ଧ ତା ପଛରେ ଛିଡ଼ା ହେଲାଣି ।' 'ସେଇଟାହିଁ ଚିନ୍ତାର କଥା', ଅରିନ୍ଦମ କହିଲା – 'କଂସ ଯାହା ହବ ନ ହବ, ଜରାସନ୍ଧଙ୍କୁ ବିଶ୍ୱାସ ନାହିଁ ।' 'ତୁମେ କଂସକୁ କମ କରି ଭାବନା ।' ବନ୍ଧୁ କହିଲେ – 'ଜରାସନ୍ଧ ପୁରୁଣା ଲୋକ । ଚତୁର । ସେ ଯାହା କରିବ ସାବଧାନରେ କରିବ, ରଖି ଥୋଇ କରିବ, କିନ୍ତୁ କଂସ... କଂସ କଥା ଅଲଗା । ତା'ର ଅତୀତ ନୁହେଁ, ତା'ର ଭବିଷ୍ୟତ ହିଁ ଚିନ୍ତାର ବିଷୟ । ଜରାସନ୍ଧ ସାହସରେ ସେ କଅଣ ନ କରିବ ସେ କଥା ମୁଁ ଭାବୁଛି ।'

ଦୁଇ ବନ୍ଧୁ ଚୁପ୍ ହୋଇ କିଛି ସମୟ ବସିଲେ ।

ବନ୍ଧୁ ପୁଣି କହିଲେ, 'ଆମେ ମଥୁରାରେ ସବୁବେଳେ ସ୍ୱାଧୀନ । ରାଜା ଥାଇ ନ ଥିଲା ପରି । ଆମ ମୁଖିଆମାନେ ସବୁ ନିଷ୍ପତ୍ତି କରନ୍ତି । ସେସବୁ ରହିବଟି ?'

'ନାଁ, ରହିବନି', ଅରିନ୍ଦମ କହିଲା, 'ଏଣିକି ରାଜା ଆସିବେ । ସେ ରାଜା କଂସ, ତାଙ୍କୁ ମାନିବାକୁ ପଡ଼ିବ, ତାଙ୍କ ଆଦେଶ ମାନିବାକୁ ପଡ଼ିବ ।'

'ଅରିନ୍ଦମ, ଆଉ ଗୋଟାଏ କଥା', ବନ୍ଧୁ କହିଲେ, 'ଯେଉଁ ଦଳ ମଥୁରା ଫେରିଗଲେ ତାଙ୍କ ସାଙ୍ଗରେ ଏତେ ସୈନ୍ୟସାମନ୍ତ କାହିଁକି ? ବାଟରେ ଚୋର ଡକେଇତଙ୍କ ପାଇଁ ? କାଇଁ ଆମେ ଆସିଲା ବେଳେ ତ ଆମ ସାଙ୍ଗରେ କେହି ନ ଥିଲେ । ଆମେ ତ ପୁଣି ଆସିଲୁ । ସେମିତି ଯାଇଥାନ୍ତେ ।' 'ହଁ, ସୈନ୍ୟସାମନ୍ତ ସେମାନଙ୍କ ସାଙ୍ଗରେ ଯାଇଛନ୍ତି', ଅରିନ୍ଦମ କହିଲା – 'ଆମ ସାଙ୍ଗରେ ବି ଯିବେ । ଆହୁରି ବେଶି ଯିବେ । ଜରାସନ୍ଧଙ୍କର ରାକ୍ଷସ ସୈନ୍ୟ ବି ଯିବେ । ସେମାନେ ଯାଇଁ ଫେରିବେନି, ରହିବେ ।'


Digitized by srujanika@gmail.com

'ରହିବେ ?'... ବନ୍ଧୁଙ୍କ ସ୍ୱରରେ ଆତଙ୍କ ଫୁଟି ଉଠିଲା ।

'ହଁ, ରହିବେ', ଅରିନ୍ଦମ କହିଲା, 'ତୁମେ କ'ଣ ଭାବୁଛ ସେମାନେ ଏତେ ବାଟ ଯିବେ ଫେରି ଆସିବା ପାଇଁ ?' ଅରିନ୍ଦମର ଭାନୁପ୍ରକାଶଙ୍କ କଥା ମନେପଡ଼ିଲା - 'ନାଇଁ, ନାଇଁ, ସେମାନେ ରହିବେ ସେଠି । ତୁମେ ଭାବୁଛ ବାଟରେ ଚୋର ଡକେଇତଙ୍କ ପାଇଁ ସୈନ୍ୟସାମନ୍ତ ଯାଉଛନ୍ତି ? ପାଗଳ! ଆମ ପରି ଚାଳିଶ ପଞ୍ଚାଶଟା ଲୋକ ମରିଗଲେ ଭାବୁଛ ଜରାସନ୍ଧ ଦୁଃଖ କରିବେ ? ଏ ତ ସେମିତି ପ୍ରତିଦିନ ତାଙ୍କ ଆଦେଶରେ ଲୋକଙ୍କୁ ମାରି ଦିଆଯାଉଛି । କିଏ ପଚାରୁଛି କିଏ ଗଲା କିଏ ରହିଲା । ଏ ତ ଜରାସନ୍ଧଙ୍କର ନିତିଦିନିଆ ଖେଳ ।'

'ତା ହେଲେ ଏସବୁ ଯାଉଛନ୍ତି ସେଠି ରହିବା ପାଇଁ ?' ବନ୍ଧୁଙ୍କ ସ୍ୱରରେ ସମ୍ପୂର୍ଣ୍ଣ ଆତଙ୍କ । 'ହଁ, ରହିବା ପାଇଁ', ଅରିନ୍ଦମ ତା କଥାରେ ଜୋର ଦେଲା, 'କଂସ ଶୀଘ୍ର ରାଜା ହେବ । ତୁମେ ମଥୁରା ଲୋକେ ତାକୁ ରାଜା ହେବା ପାଇଁ ସାହାଯ୍ୟ କରିବ ? ନାଁ, ଏଇମାନେ ହିଁ କରିବେ । ରାଜା ହେଲା ପରେ ବି ଯେମିତି ଗୋଳମାଳ ନ ହୁଏ ସେକଥା ଏଇମାନେହିଁ ଦେଖିବେ ।'

'ତା ହେଲେ, ମଥୁରା ତ ଜରାସନ୍ଧଙ୍କର କରଦ ରାଜ୍ୟ ହେଇଯିବ...' ବନ୍ଧୁ କହିଲେ । 'ହଁ, ହବ ତ'। ଅରିନ୍ଦମ କହିଲା - ତା'ର ପୁଣି ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା - 'ଜରାସନ୍ଧ ତାଙ୍କର ଦି' ଝିଅଙ୍କୁ କଂସ ସହିତ ବିବାହ କରେଇଲେ କାହିଁକି ? କଂସ କିଏ କି ? କଂସ ଉଗ୍ରସେନଙ୍କ ପୁଅ । ସେ ଯୁବରାଜ ବି ନୁହନ୍ତି, ଆମେ ତାଙ୍କୁ ଯୁବରାଜ କହୁଛୁ । ବାସ୍ ସେତିକି । ଜରାସନ୍ଧ ଆର୍ଯ୍ୟାବର୍ତ୍ତର ପ୍ରଚଣ୍ଡ ସମ୍ରାଟ । ସବୁ ରାଜା ତାଙ୍କୁ ଭୟ କରନ୍ତି । ହସ୍ତିନାପୁରର ଭୀଷ୍ମ ବି ତାଙ୍କୁ ସମ୍ମାନ କରନ୍ତି । କଂସ ତାଙ୍କ ପାଖରେ ତୁଚ୍ଛ, ଅତି ତୁଚ୍ଛ । ଆର୍ଯ୍ୟାବର୍ତ୍ତର ଯେ କୌଣସି ରାଜା ବା ରାଜପୁତ୍ର ତ ଅତି ଆଗ୍ରହରେ ତାଙ୍କର ଜୋଇଁ ହେବେ । ସେ କଂସକୁ ବାଛିଲେ କାହିଁକି ? ସେ କଂସ ପାଇଁ ନା ନିଜ ପାଇଁ ? ତାଙ୍କର ଆଖି କଂସ ଉପରେ ନୁହେଁ, ମଥୁରା ଉପରେ, ଯାଦବମାନଙ୍କ ଉପରେ । କଂସ ଜରିଆରେ ସେ ମଥୁରା ଅଧିକାର କରିବାକୁ ଚାହାନ୍ତି । ତାଙ୍କ ଯୋଜନାରେ ଏ ଅତ୍ୟନ୍ତ ଜରୁରୀ କାମ । ମଥୁରା ଅଧିକାର କରି ପାରିଲେ ସେ ଆର୍ଯ୍ୟବର୍ତ୍ତର ସବୁଠାରୁ ପରାକ୍ରମୀ ଭୀଷ୍ମଙ୍କ ଉପରେ ନଜର ରଖିପାରିବେ । ଆଉ ଯାଦବ ମାନଙ୍କର ଶକ୍ତିକୁ ଭାଙ୍ଗିଦେଲେ ସେ ଆର୍ଯ୍ୟ ମାନଙ୍କର ଗୋଟାଏ ସାହସୀ ଜାତିକୁ ନିଜ ଅଧିନକୁ ଆଣି ପାରିବେ ।' ବନ୍ଧୁ ଆଶ୍ଚର୍ଯ୍ୟ ହେଲେ, 'ଏ ତ ରାଜନୀତିର ଖେଳ ।'

'ହଁ, ରାଜନୀତି ।' ଅରିନ୍ଦମ କହିଲା, 'ଜରାସନ୍ଧ ପାରିବାରିକ ସମ୍ପର୍କ ପାଇଁ


Digitized by srujanika@gmail.com

ନିଜ ଝିଅଙ୍କୁ କଂସ ସହିତ ବିଭା ଦେଲେ ? ନାଁ, ତା ନୁହେଁ । ଏ ଖେଳର ଆରମ୍ଭ । ଆଉ ଗୋଟାଏ କଥା ତୁମେ ଦେଖିଛ । କିନ୍ତୁ ସେ ବିଷୟରେ କିଛି ଭାବିଛ କି ?'

'କୋଉ କଥାଟା କୁହ ତ ?' ବନ୍ଧୁ ପଚାରିଲେ ।

'ମଥୁରା ଲୋକେ ତ ମଥୁରାକୁ ଫେରିଗଲେ', ଅରିନ୍ଦମ କହିଲା, 'ମଗଧର ଏତେଗୁଡ଼ା ଝିଅ ସେମାନଙ୍କ ସାଙ୍ଗରେ ଗଲେ କାହିଁକି । ମଥୁରାରେ କ'ଣ ଝିଅ ନାହାନ୍ତି ? ନା, ଏମାନେ ସମସ୍ତେ ଏ ଝିଅମାନଙ୍କୁ ବିଭା ହେବାକୁ ଅପେକ୍ଷା କରିଥିଲେ ?'

ବନ୍ଧୁ ଟିକିଏ ଚୁପ୍ କରିଗଲେ, ଟିକିଏ ଭାବିଲେ, କହିଲେ, 'ସତେ ତ । ଗୋଟାଏ ଦୁଇଟା ଝିଅ କାହା ସାଙ୍ଗରେ ଚାଲିଗଲେ ସେ ଅଲଗା କଥା, କିନ୍ତୁ ଏତେଗୁଡ଼ା ଝିଅ ! ବେଶ ଖୁସିବାସିରେ ତ ଗଲେ ସେମାନେ !'

'ରାଜଆଜ୍ଞା'। କହିଲା ଅରିନ୍ଦମ, 'ସେମାନେ ଯାଉଛନ୍ତି କ'ଣ ମଥୁରାର ଲୋକମାନଙ୍କ ଘରେ ଖଟିବା ପାଇଁ ? ନାଁ । ପ୍ରତ୍ୟେକ ଯାଦବ ଘରେ ସେମାନେ ଜରାସନ୍ଧଙ୍କର ଗୋଟିଏ ଗୋଟିଏ ଲୋକ । ତୁମେ ଦେଖିବ କଂସ ସାଙ୍ଗରେ ତା ସ୍ତ୍ରୀଙ୍କ ଛଡ଼ା ଆହୁରି କିଛି ସ୍ତ୍ରୀ ଲୋକ ବି ଯିବେ । ସ୍ତ୍ରୀ ଲୋକଙ୍କ ଜରିଆରେ ଲୋକଙ୍କୁ କାବୁ କରିବା, ଏ ତ ବହୁତ ପୁରୁଣା କଥା ।'

'ହଁ', ବନ୍ଧୁ କହିଲେ, 'ମୁନି ଋଷିମାନେ ତ ଭୁଲିଛନ୍ତି । ଆମେ କି ଛାର ।' ଅରିନ୍ଦମ ହସିଲା, କହିଲା, 'ମୁନି ଋଷିମାନେ ଗୋଟାଏ ସମୟରେ ତାଙ୍କର ଭୁଲ ବୁଝିପାରନ୍ତି । ଆମେ ବୁଝିପାରିବା କି ? ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବହି ଯାଇଥିବ ।'

ଅରିନ୍ଦମ ମନରେ ଗୋପାଙ୍କ କଥା ଭାସି ଉଠିଲା । ଗୋପା ତରୁଣୀ, ସୁନ୍ଦରୀ, ଅତ୍ୟନ୍ତ ବୁଦ୍ଧିମତୀ, ଅତ୍ୟନ୍ତ ଦୃଢ଼ମନା । ତାଙ୍କର ସାହସ ଭାନୁପ୍ରକାଶଙ୍କର ଦଳର ବହୁତ ଲୋକଙ୍କର ସାହସ ଠାରୁ ଅଧିକ । ସେ ଶୁଣିଛି ସେ ଜରାସନ୍ଧର ଅନ୍ତଃପୁରରେ ଜରାସନ୍ଧଙ୍କର ରାଣୀମାନଙ୍କ ସାଙ୍ଗରେ ଅଛନ୍ତି । ସେମାନଙ୍କର ଅତ୍ୟନ୍ତ ବିଶ୍ୱସ୍ତ । ସେ କୁଆଡ଼େ ଜରାସନ୍ଧଙ୍କର ଝିଅମାନଙ୍କ ସାଙ୍ଗରେ ମଥୁରା ଯିବେ । ଭାନୁପ୍ରକାଶ କହୁଥିଲେ ମଥୁରାରେ ତାଙ୍କର ନୂତନ କାମ ଆରମ୍ଭ ହେବ । ଅରିନ୍ଦମ ଆଗରେ ଗୋପାଙ୍କ ମୁହଁ ସ୍ପଷ୍ଟ ହୋଇ ଉଠିଲା । ଆଖି ଦିଇଟା ରଡ଼ ନିଆଁ ପରି ଜଳୁଛି । ମୁହଁରେ ପ୍ରତିହିଂସାର ପ୍ରଚଣ୍ଡ ବହ୍ନି ।

ଶିବିରର ରକ୍ଷୀ ଆସି ଖବର ଦେଲା, ଦି'ଜଣ ବାବାଜି କିଏ ଆସି ଅରିନ୍ଦମକୁ ଖୋଜୁଛନ୍ତି । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, ପଚାରିଲା – 'ବାବାଜି ?'

'ଆଜ୍ଞା ହଁ ।' ରକ୍ଷୀ କହିଲା – ଦି'ଜଣ ଡେଙ୍ଗା ଲୋକ, ବାବାଜିଙ୍କର ଗେରୁଆ ପୋଷାକ ପିନ୍ଧିଛନ୍ତି, ମୁଣ୍ଡରେ ଜଟା ଅଛି, ହାତରେ କମଣ୍ଡଳୁ ।

ଅରିନ୍ଦମର ସନ୍ଦେହ ତଥାପି ଗଲା ନାହିଁ । କହିଲା, 'ହେ, ମତେ କାହିଁକି କୋଉ ବାବାଜି ଖୋଜିବ ? ଆଉ କିଏ ହେଇଥିବ ।'

'ଆଜ୍ଞା ନାଁ'। ରକ୍ଷୀ କହିଲା, 'ଆପଣ ଯେମିତି ଦେଖିବାକୁ ସେମାନେ ଠିକ୍ ଠିକ୍ ସେଇଆ କହିଲେ । ଆଉ ନାଁ ବି କହିଲେ ।'

'ନାଁ ।'

'ଆଜ୍ଞା ହଁ, କହିଲେ ମଥୁରାରୁ ଆସିଛନ୍ତି । ସେ ଆଜି ଯାଇ ନାହାନ୍ତି । ତାଙ୍କ ନାଁ ଅରିନ୍ଦମ । ପଚାରି ଦେଖ । ଆପଣଙ୍କ ନାଁ ତ ଅରିନ୍ଦମ । କାଲି ରାତିରେ ଆପଣ ମନ୍ତ୍ରୀଙ୍କୁ କହୁଥିଲେ – ମୁଁ ଶୁଣିଛି ।'

ଏହାପରେ ଆଉ କହିବାର କିଛି ନ ଥିଲା । ମନରେ କିଛି କିଛି ଭୟ ଥିଲେ ବି ସେ ଉଠି ଛିଡ଼ା ହେଲା । ନ ଗଲେ ରକ୍ଷୀର ସନ୍ଦେହ ବଢ଼ିଯିବ । କୋଉଠି କୁଆଡ଼େ କଥା ଯିବ ଠିକଣା ନାହିଁ ।

ବନ୍ଧୁ କହିଲେ, 'ଯାଅ ଦେଖିଆସ, କିଏ ବୁଝ ?

'ହଁ, ଦେଖେ', କହି ଅରିନ୍ଦମ ରକ୍ଷୀ ପଛେ ପଛେ ଶିବିର ବାହାରକୁ ଆସିଲା । ସନ୍ଧ୍ୟା ହୋଇ ଆସିଥିଲା । ତଥାପି କିଛି ଦୂରରୁ ଚିହ୍ନିବାରେ ଅସୁବିଧା ହେଲା ନାହିଁ । ଭାନୁପ୍ରକାଶ ଓ ଭାନୁପ୍ରିୟ ବାବାଜି ବେଶରେ । ସେ ସାଙ୍ଗେ ସାଙ୍ଗେ ସାବଧାନ ହୋଇଗଲା । ହସହସ ମୁହଁରେ ସେ ରକ୍ଷୀ ଆଡ଼କୁ ବୁଲିପଡ଼ିଲା ଓ ରକ୍ଷୀକୁ ଶୁଣେଇଲା ପରି କହିଲା, 'ଆରେ, ଆରେ, ଏମାନେ ତ ମୋର ବାପାଙ୍କର ଶିଷ୍ୟ । ମଥୁରା ଆମ ଘରକୁ ଆସନ୍ତି । ଏଠି କେମିତି ଆସିଲେ ? ଯା'ହେଉ ମତେ ଡାକି ତୁମେ ଭଲ କଲ ।'

'ବାପାଙ୍କର ଶିଷ୍ୟ ? ବାବୁ, ତୁମ ବାପା କଅଣ ବାବାଜି ?' ରକ୍ଷୀ ପଚାରିଲା ।

'ବାବାଜି ? ନାଁ, ନାଁ, ସେ ବାବାଜିଙ୍କ ଉପରେ । ସେ ଜ୍ଞାନୀ, ପଣ୍ଡିତ, ଋଷି ତୁଲ୍ୟ ଲୋକ । ମଥୁରାର ରାଜା ଉଗ୍ରସେନଙ୍କର ଗୁରୁଦେବ ।' ଅରିନ୍ଦମ କହିଲା ।

ରକ୍ଷୀ ହାତଯୋଡ଼ି ପ୍ରଣାମ କଲା, କହିଲା – 'ଆଜ୍ଞା, ଆପଣ ଏଡ଼େ ବଡ଼ ଘରର ପିଲା ! ଆମେ ତଳ ଶ୍ରେଣୀର ଲୋକ, ଆମେ କେମିତି ଜାଣିବୁ । ଯାଆନ୍ତୁ, ଯାଆନ୍ତୁ, ବାବାଜିମାନଙ୍କ ସାଙ୍ଗରେ ଦେଖା କରନ୍ତୁ ।'

ରକ୍ଷୀ ତା ସ୍ଥାନକୁ ଫେରିଗଲା । ଅରିନ୍ଦମ ଭାନୁପ୍ରକାଶଙ୍କ ପାଖକୁ ଆଗେଇ ଗଲା

ଓ ବାବାଜିମାନଙ୍କୁ ଭୂମିଷ୍ଠ ପ୍ରଣାମ କଲା । ବାବାଜିମାନେ ଆଶୀର୍ବାଦ ମୁଦ୍ରାରେ ଅରିନ୍ଦମକୁ ଆଶୀର୍ବାଦ କଲେ ଓ ସମସ୍ତେ ଶିବିରର ମୁହଁରୁ ପଡ଼ିଆ ଭିତରକୁ ଆଗେଇ ଗଲେ ।

ପ୍ରଥମେ ଭାନୁପ୍ରକାଶ କଥା କହିଲେ, 'ଅରିନ୍ଦମ, ମୁଁ ଭାବୁଥିଲି ତୁମେ ରକ୍ଷୀକୁ କିପରି ଭାବରେ ବୁଝେଇବ ? ତୁମେ ଚମତ୍କାର ଭାବରେ ବୁଝେଇଦେଲ ।'

ଭାନୁପ୍ରିୟ ହସିଲେ, କହିଲେ – 'ଏ ତ ଆପଣଙ୍କର ଶିକ୍ଷା ନା !'

ତିନିହେଁ ହସି ଉଠିଲେ ।

ଭାନୁପ୍ରକାଶ କହିଲେ – 'ନାଇଁ, ଏ ରକ୍ଷୀକୁ ଡରିବାର କିଛି ନାହିଁ । ଏ ଜରାସନ୍ଧଙ୍କର ଜଣେ ସାଧାରଣ ରକ୍ଷୀ । ଖାଲି ଜରାସନ୍ଧଙ୍କୁ ଯାହା ଭୟ ।'

ତିନିହେଁ ଶିବିର ଛାଡ଼ି ପଡ଼ିଆ ଭିତରେ କିଛି ବାଟ ଆଗେଇ ଗଲେଣି । ସନ୍ଧ୍ୟା ବି ହୋଇଗଲାଣି । ଏଠି ସେଠି ପଡ଼ିଥିବା ବିଭିନ୍ନ ରାଜ୍ୟର ଶିବିର ସବୁ ଭିତରୁ ଅନେକ ଉଠିଗଲାଣି । ଲୋକମାନେ ସବୁ ନିଜ ନିଜ ରାଜ୍ୟକୁ ଫେରିଗଲେଣି । ମଥୁରା ଶିବିରରୁ ବି ଅଧିକାଂଶ ଚାଲିଯିବା ପରେ ଶିବିର ପ୍ରାୟ ଖାଲି ହୋଇଯାଇଛି । ଆରମ୍ଭର ଗହଳି ଚହଳି ପ୍ରାୟ ଆଉ ନାହିଁ । ସିପେହୀମାନେ ବି ଆଗପରି ବୁଲାବୁଲି କରୁ ନାହାନ୍ତି । ରାଜପ୍ରାସାଦର ଆଲୁଅ ସବୁ ଦିଶୁଛି । ଦୂର ଜଙ୍ଗଲ ଭିତରୁ ଘଣ୍ଟା ଧ୍ୱନି ଶୁଭୁଛି । ବୋଧହୁଏ ମହାକାଳଙ୍କ ମନ୍ଦିରର ସନ୍ଧ୍ୟାର ଆଳତିର ଧ୍ୱନି ହୋଇପାରେ । ଚଢ଼େଇମାନେ ପ୍ରାୟ ଚୁପ୍‌ଚାପ୍ ହୋଇ ଆସିଲେଣି । ପୂର୍ବ ଦିଗର ଟିକିଏ ଉପରକୁ ଉଜ୍ଜ୍ୱଳ ସନ୍ଧ୍ୟାତାରା । ଅରିନ୍ଦମକୁ ବେଶ ଭଲ ଲାଗୁଥାଏ । ଠିକ୍ ମଥୁରାରେ, ଯମୁନା କୂଳର ସନ୍ଧ୍ୟା ପରି । ଦେହ ମନ ଶାନ୍ତ ଶୀତଳ ହୋଇ ଯାଉଥାଏ ।

ଭାନୁପ୍ରକାଶ ପଚାରିଲେ, 'ଖୁବ୍ ଭଲ ଲାଗୁଛି ନା ଅରିନ୍ଦମ ?'

ଅରିନ୍ଦମ ସାମାନ୍ୟ ଲଜ୍ଜିତ ହେଲା । କହିଲା – 'ସନ୍ଧ୍ୟାଟା ଖୁବ୍ ସୁନ୍ଦର ହୋଇଛି ।' ଅରିନ୍ଦମ ଯେଉଁ କଥା ପଚାରିବ ପଚାରିବ ହେଉଥିଲା, ସେହିକଥା କହିଲା – 'ଆପଣମାନେ ଏ ବାବାଜି ବେଶରେ କାହିଁକି ଆସିଛନ୍ତି ?'

ଭାନୁପ୍ରକାଶ ହସିଲେ, କହିଲେ – 'ଆମ୍ଭେମାନେ ତ ବାବାଜି । ଏ ବାବାଜି ବେଶରେ ଦୋଷ କଅଣ ? ବାବାଜିମାନେ ଭଗବାନଙ୍କୁ ଡାକନ୍ତି । ଆମ୍ଭେମାନେ ବି ଭଗବାନଙ୍କୁ ଡାକୁଛୁ । ଏ ପୃଥିବୀରେ ଭଗବାନଙ୍କ ରାଜ୍ୟ କିପରି ଦୃଢ଼ ହେବ ସେଇ କାମ କରୁଛୁ ।'

'ତା ଠିକ୍', ଅରିନ୍ଦମ ଥଙ୍ଗେଇ ଥଙ୍ଗେଇ କହିଲା, 'କିନ୍ତୁ ଆପଣମାନଙ୍କୁ ହଠାତ୍ ଏଇ ବାବାଜି ବେଶରେ ଦେଖି ଟିକିଏ ଅଖାଡୁଆ ଅଖାଡୁଆ ଲାଗୁଛି ।'

'ବାବାଜି ବେଶ ତ ଭଲ ।' ଭାନୁପ୍ରକାଶ କହିଲେ – 'ସମସ୍ତେ ସମ୍ମାନ କରିବେ, ମୁଣ୍ଡିଆ ମାରିବେ, ଦରକାର ବେଳେ ଆଗ୍ରହରେ ସାହାଯ୍ୟ କରିବେ । ବଡ଼ କଥା ଖୁବ୍ କମ୍ ଲୋକ ସନ୍ଦେହ କରିବେ । ଏପରିକି ଜରାସନ୍ଧ ବି ବିଶେଷ ସନ୍ଦେହ କରେ ନା ।'

'ତେବେ ଆଉ ଗୋଟାଏ କଥା ।' ଭାନୁପ୍ରିୟ କହିଲେ – 'ଜରାସନ୍ଧ ବାବାଜିମାନଙ୍କୁ କୌଣସି ଗୁରୁତ୍ୱ ଦିଏ ନା, କାରଣ ସେ ସେମାନଙ୍କୁ ଅତି ତୁଚ୍ଛ ଜୀବ ବୋଲି ଭାବେ ।'

'ତା ଠିକ୍', ଭାନୁପ୍ରକାଶ କହିଲେ, 'ଜରାସନ୍ଧ ମହାମହିମ ସମ୍ରାଟ । ପ୍ରଚୁର ଅର୍ଥ, ପ୍ରଚୁର ଲୋକବଳ, ପ୍ରଚୁର କ୍ଷମତା । ଆର୍ଯ୍ୟାବର୍ତ୍ତର ପ୍ରସିଦ୍ଧ ମୁନି ଋଷିମାନେ ତା' ସଭାକୁ ଆସନ୍ତି, ତାକୁ ଖାତିର କରନ୍ତି, ତାକୁ ଭୟ ବି କରନ୍ତି । ସେ କାହିଁକି ସାଧାରଣ ବାବାଜିଙ୍କ ପରି କ୍ଷୁଦ୍ର ଜୀବମାନଙ୍କୁ ଖାତିର କରିବ । ଆଉ ସେଇଟା ହିଁ ଆମ ସୁଯୋଗ ।'

'ସୁଯୋଗ ?' ଅରିନ୍ଦମ ପଚାରିଲା ।

'ହଁ, ସୁଯୋଗ ।' ଭାନୁପ୍ରକାଶ କହିଲେ, 'ତୁମେ ଏତେଦିନ ଗିରିବ୍ରଜରେ ରହିଲ କିନ୍ତୁ ଗିରିବ୍ରଜର ସବୁଠାରୁ ପୁଣ୍ୟସ୍ଥାନ, ମହାକାଳଙ୍କ ମନ୍ଦିରକୁ ଯାଇପାରିଲ ନାହିଁ । ଆଜି ଯିବା ।'

'ଆଜି ?'

'ହଁ ଆଜି । ଏଇ ସାଙ୍ଗେ ସାଙ୍ଗେ । ପ୍ରତିଦିନ ସନ୍ଧ୍ୟା ଆଳତି ପରେ ମହାକାଳଙ୍କର ଦର୍ଶନ ପାଇଁ ବାହାର ଲୋକଙ୍କୁ ଛାଡ଼ି ଦିଆଯାଏ । ମନ୍ଦିର ଚାରିପଟେ ରକ୍ଷୀମାନେ ଜଗିଥାନ୍ତି । କିନ୍ତୁ ବାହାର ଲୋକେ ଯାଇ ପାରିବେ । ମହାକାଳଙ୍କ ଭୋଗ ବି ପାଇବେ । ଆମେ ସେହି ସମୟରେ ଯିବା । ସେହିଯୋଗୁଁ ଆମର ଏ ବାବାଜି ବେଶ । ଖାଲି ଆମେ ନୁହେଁ । ଆହୁରି ଅନେକ ବାବାଜି ବି ସେହି ସମୟରେ ଆସନ୍ତି । ଚାଲ, ସନ୍ଧ୍ୟା ଆଳତି ପ୍ରାୟ ସରି ଆସଲାଣି । ଏ ସମୟଟା ସାହାଣ ମେଲା । ଆଗେ ମହାକାଳଙ୍କୁ ଦର୍ଶନ କର, ପଛେ କଥାବାର୍ତ୍ତା ।'

ଅରିନ୍ଦମ ତଥାପି ଅତମତ ହେଲା ।

ଭାନୁପ୍ରକାଶ କହିଲେ, 'ତୁମେ ଶିବିରର ରକ୍ଷୀ କଥା ଭାବୁଛ ? ଆମେ ତାକୁ କହିଦେଇଛୁ, ତୁମେ ଆମ ସାଙ୍ଗରେ ମହାକାଳଙ୍କ ଦର୍ଶନକୁ ଯିବ, ଫେରିବାକୁ ଡେରି ହୋଇପାରେ । ସେ ଜାଣେ, ଆସ ।'

ମହାକାଳ ମନ୍ଦିରକୁ ଯିବାକଥା ଭାବି ଏତେଦିନ ପରେ ବି ଅରିନ୍ଦମର ଦେହ


Digitized by srujanika@gmail.com

ଶୀତେଇ ଉଠେ । ଉତ୍ତେଜନା, ଆଗ୍ରହ, ରହସ୍ୟମୟତା ଓ ଭୟ - ଏସବୁ ତା'ମନରେ ଫେଣ୍ଟାଫେଣ୍ଟି ହୋଇ ଏକାଠି ରହିଥିଲା । ଭାନୁପ୍ରକାଶ ଯେତେ ଆଶ୍ୱସ୍ତ କଲେ ବି ଅରିନ୍ଦମ ମନରୁ ଗୋଟାଏ ଅଶ୍ୱସ୍ତି ଭାବ ଆଦୌ ଯାଉ ନ ଥାଏ । ଏ ଅଶ୍ୱସ୍ତି ଭୟ ହେତୁ ନୁହେଁ ବା ସତେ ଯେପରି କୌଣସି ଭୁଲ କାମ ସେ କରିଦେଉଛି ସେଥିପାଇଁ ନୁହେଁ । ଏ ଅଶ୍ୱସ୍ତିର ମୂଳ ଅନ୍ୟପ୍ରକାର, ଯାହାକୁ ହୁଏତ ଠିକ୍ ଭାବରେ କହିହେବ ନାହିଁ, କିନ୍ତୁ ବୁଝି ହେବ । ଭାନୁପ୍ରକାଶ ବା ଭାନୁପ୍ରିୟଙ୍କର ଏ ଅଶ୍ୱସ୍ତି ଭାବ ନାହିଁ । ସେମାନେ ତୀବ୍ର ବାସ୍ତବବାଦୀ, ଯେ କୌଣସି ଘଟଣାର ବାସ୍ତବ ରୂପ ହିଁ ସେମାନେ ଦେଖନ୍ତି ଓ ସେହି ଭାବରେ ନିଜ ନିଜ କାମକୁ ସେମାନେ ବିଚାର କରନ୍ତି । ଅରିନ୍ଦମର ସେହିଠାରେ ହିଁ ପ୍ରଭେଦ । ବାସ୍ତବ ଜଗତ ବାହାରେ ଆଉ ଗୋଟାଏ ଚିନ୍ତା, ଆଉ ଗୋଟାଏ ବିଚାର, ଆଉ ଗୋଟାଏ ଅନୁଭବ - ସେ ବାରମ୍ବାର ନିଜ ଭିତରେ ସେହି ମନୋଭାବ ଲକ୍ଷ୍ୟ କରିଛି । ଏପରି ମନୋଭାବ ସେ ହୁଏତ ବାପାଙ୍କଠାରୁ ପାଇଛି । ବାପା ପୃଥିବୀରେ ଥାଇ ବି ନ ଥିଲା ପରି । ସେ ସବୁ କଥା ଦେଖନ୍ତି, ବୁଝନ୍ତି, ଅନ୍ୟମାନଙ୍କୁ ସେମାନଙ୍କର ସଂକଟପୂର୍ଣ୍ଣ ସମୟରେ ଉପଦେଶ ଦିଅନ୍ତି, ଆଉ ଠିକ୍ ଉପଦେଶ ବି ଦିଅନ୍ତି । ସେଥିପାଇଁ ଲୋକମାନେ ତାଙ୍କୁ ସମ୍ମାନ କରନ୍ତି, ମାନନ୍ତି । କହନ୍ତି ବାପାଙ୍କ ପରି ବାସ୍ତବବାଦୀ ବିଚାରକ ଆଉ କେହି ନାହାନ୍ତି । କିନ୍ତୁ ଏସବୁ ବାହାରେ ବାପାଙ୍କୁ ସେ ଅନ୍ୟ ଭାବରେ ଦେଖିଚି । ଯେଉଁଠି ପୃଥିବୀର କୌଣସି ବାସ୍ତବତା ତାଙ୍କୁ ସ୍ପର୍ଶ କରେ ନା, ଯେଉଁ ସ୍ତରରେ ସେ ନିଜର ଦେବତାମାନଙ୍କ ସହିତ କଥାବାର୍ତ୍ତା କରନ୍ତି, ଓ ଯେ କୌଣସି ଘଟଣାକୁ ସେ ବହୁତ ଦୂର ପର୍ଯ୍ୟନ୍ତ ଦେଖିପାରନ୍ତି ଯାହା ଅନ୍ୟମାନେ ପାରନ୍ତି ନାହିଁ । ସେ ନିଜେ ମହାକାଳଙ୍କୁ ପୂଜା ଅର୍ଚ୍ଚନା କରନ୍ତି । ଅରିନ୍ଦମ ମଗଧ ଆସିବା ଆଗରୁ ସେ ଅରିନ୍ଦମକୁ ସେହିକଥା ସୂଚେଇ ଦେଇଥିଲେ । କହିଥିଲେ - ଜରାସନ୍ଧ ମହାକାଳଙ୍କୁ ପୂଜା କରେ । ତୁ ଗିରିବ୍ରଜରେ ଥିବାବେଳେ ମହାକାଳଙ୍କୁ ଦର୍ଶନ କରିବୁ । ସେ ଭାନୁପ୍ରକାଶଙ୍କୁ ସେକଥା ପଚାରିଲା- 'ମୁଁ ତ ମହାକାଳଙ୍କୁ ଦର୍ଶନ କରିବା କଥା କହି ନ ଥିଲି । ଆପଣ କାହିଁକି ମହାକାଳଙ୍କ ମନ୍ଦିରକୁ ଯିବା କଥା ସ୍ଥିର କଲେ ?'

ଭାନୁପ୍ରକାଶ ହସିଲେ, କହିଲେ, 'ମୁଁ ସ୍ଥିର କରିନାହିଁ । ମହାକାଳ ନିଜେ ସ୍ଥିର କରିଛନ୍ତି । ସେ ପ୍ରତ୍ୟକ୍ଷ ଦେବତା, ବଡ଼ ଅଭିମାନୀ, ତାଙ୍କୁ ଦର୍ଶନ ନ କରି ଫେରିଯିବ କିପରି ।' ଅରିନ୍ଦମ ବୁଝିଲା ଭାନୁପ୍ରକାଶ ସ୍ପଷ୍ଟ ଭାବରେ କହିବାକୁ ଚାହାନ୍ତି ନାହିଁ । ସେମାନେ ପଡ଼ିଆ ଟପି, ଗଛ ଗହଳି ଭିତର ଦେଇ, କ୍ରମଶଃ ଜଙ୍ଗଲ ଆଡ଼କୁ ଚାଲିଲେ । ସନ୍ଧ୍ୟା ଅନ୍ଧାରରେ ଜଙ୍ଗଲ, ପାହାଡ଼ ସବୁ ଏକାକାର । ମଝିରେ ମଝିରେ


Digitized by srujanika@gmail.com

ଆଲୋକର ବିନ୍ଦୁ । ଅରିନ୍ଦମର ଯାହା ମନେହେଲା ରାଜପ୍ରାସାଦରୁ ପ୍ରାୟ କୋଣାକୋଣି ଭାବରେ ମହାକାଳଙ୍କର ଆସ୍ଥାନ । ବାଟ ଅଛି, କିନ୍ତୁ ଜଙ୍ଗଲ ବାଟ । ଆଗରୁ ବାଟ ସହିତ ପରିଚିତ ନ ଥିଲେ ସନ୍ଧ୍ୟା ଅନ୍ଧାରରେ ବାଟ ଚିହ୍ନି ଯିବା ସହଜ ନୁହେଁ । ସେ ଭାନୁପ୍ରକାଶଙ୍କୁ ପଚାରିଲା, 'ଆପଣ ଏ ବାଟକୁ ଚିହ୍ନନ୍ତି ?'

ଭାନୁପ୍ରକାଶ ହସିଲେ, କହିଲେ - 'ହଁ, ଏ ତ ନିତିଦିନିଆ ବାଟ ।'

ଅରିନ୍ଦମ ଚମକି ଉଠିଲା - 'ନିତିଦିନିଆ ବାଟ ? ଆପଣ କ'ଣ ମହାକାଳ ଦର୍ଶନକୁ ସବୁଦିନେ ଯାଆନ୍ତି ?'

ଭାନୁପ୍ରକାଶ ସେମିତି ହସୁଥାନ୍ତି, କହିଲେ - 'ମହାକାଳଙ୍କ ଦର୍ଶନକୁ ଯିବାକୁ ହେଲେ ଏହି ବାଟେ ଯିବାକୁ ହୁଏ । କିନ୍ତୁ ସେ ତ ଗୋଟିଏ କାମ । ଆହୁରି ଅନେକ କାମ ଅଛି । ସେସବୁ ଏହି ବାଟରେ କରିବାକୁ ହୁଏ ।'

ଅରିନ୍ଦମର ବିସ୍ମୟ ଭାବ କଟି ନ ଥାଏ । ଭାନୁପ୍ରକାଶଙ୍କ ସହିତ ସେ ବେଶ୍ କିଛିଦିନ ହେଲା ମିଶିଲାଣି । ତାଙ୍କ ବିଷୟରେ ଅନେକ କଥା ଜାଣିଲାଣି । କିନ୍ତୁ ତା'ର ମନେ ହେଉଛି ଆହୁରି ଅନେକ କଥା ସେ ଜାଣିନାହିଁ । ଅଦ୍ଭୁତ ଚରିତ୍ର, ସେ ମନେ ମନେ ଭାବିଲା ।

ଭାନୁପ୍ରକାଶ ଅରିନ୍ଦମର ମନକଥା ଯେପରି ଜାଣିପାରିଲେ । କହିଲେ - 'ନାଇଁ, ଅରିନ୍ଦମ, ଏତେ ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ତୁମେ ଜାଣ ଆମେ ଯେଉଁ କାମ କରୁ ସେଥିରେ ଅନେକ କଥା ଜାଣିବାକୁ ହୁଏ, ସବୁବେଳେ ସାବଧାନ ରହିବାକୁ ହୁଏ । ଆମର ଯୁଦ୍ଧ ଖାଲି ଦୁଷ୍ଟ, କ୍ଷମତାଶାଳୀ ରାଜାମାନଙ୍କ ବିରୁଦ୍ଧରେ ନୁହେଁ, ମଣିଷର ଲୋଭ, ସ୍ୱାର୍ଥ ବିରୁଦ୍ଧରେ । ଏଇଟାହିଁ ସବୁଠୁଁ ବଡ଼ ବିପଜ୍ଜନକ ଅବସ୍ଥା । ମଣିଷ ନିଜର କ୍ଷମତା, ସ୍ୱାର୍ଥ, ଲୋଭ ପାଇଁ ଯେ କୌଣସି କଥା କରିପାରେ । ତେଣୁ ଆମକୁ ଅନେକ କଥା ଘୋଡ଼େଇ ଘାଡ଼େଇ ରଖିବାକୁ ହୁଏ ।'

ଗୋଟାଏ କଥା ଅରିନ୍ଦମର ମନରେ ଲେଉଟ ପାଉଟ ହେଉଥିଲା । ସେ ପଚାରିଲା, 'ଏପାଖରେ କ'ଣ ଆପଣଙ୍କର ଗୁପ୍ତ ସ୍ଥାନ ଅଛି ?'

'ଅଛି ।' ଭାନୁପ୍ରକାଶ କହିଲେ, 'ଆମର ଗୁପ୍ତ ସ୍ଥାନ ଅନେକ । ଯେଉଁ ଯେଉଁ ସ୍ଥାନରେ ଅଛି, ତୁମେ ଆପାତତଃ ବୁଝି ପାରିବ ନାହିଁ ସେସବୁ ଆମର ଜାଗା ବୋଲି । ଖୁବ୍ କମ୍ ଲୋକଙ୍କୁ ଛାଡ଼ିଦେଲେ ଆମର ଅଧିକାଂଶ ଲୋକ ବି ଜାଣନ୍ତି ନାହିଁ କୋଉଟା ଆମ ଜାଗା କୋଉଟା ଆମ ଜାଗା ନୁହେଁ । ଗୋଟାଏ କଥା ଦେଖ । ତୁମେ ତ ଆମ ସାଙ୍ଗରେ ଏ କେତେଦିନ ମିଶିଲଣି । ତୁମେ କଅଣ ଠିକ୍ ବୁଝିପାରିଲଣି କିଏ ଆମ ଲୋକ କିଏ ଆମ ଲୋକ ନୁହେଁ ।' 'ନାଁ', ଅରିନ୍ଦମ କହିଲା, 'ମୋର ତ

ମନେହୁଏ ସମସ୍ତେ ଆପଣଙ୍କ ଲୋକ ।’ ଭାନୁପ୍ରକାଶ ହୋ ହୋ ହୋଇ ହସିଲେ । ଭାନୁପ୍ରିୟ ବି । ଭାନୁପ୍ରକାଶ କହିଲେ, ‘ତା ହେଲେ ଦେଖ, ଆମର ବନ୍ଦୋବସ୍ତ କେତେ ପକ୍କା । ତୁମପରି ବୁଦ୍ଧିମାନ ପିଲା ଯଦି ଏକଥା ଭାବିବ ଅନ୍ୟମାନଙ୍କ କଥା ଉଠୁଛି କାହିଁ ? କାଲି ରାତିରେ ତୁମ ଶିବିରକୁ ଜରାସନ୍ଧର ଯେଉଁ ମନ୍ତ୍ରୀ ଆସି ଜରାସନ୍ଧଙ୍କୁ ଟେକାଟେକି କରି କହୁଥିଲା, ଜାଣିଛ, ସେ ବି ଆମ ଲୋକ ।’

‘ଏଁ !’ ଅରିନ୍ଦମର ପାଟି ଆଁ ହୋଇଗଲା ।

‘ଶିବିରର ରକ୍ଷୀମାନଙ୍କ କଥା ନ କହିବା ଭଲ’, ଭାନୁପ୍ରକାଶ କହିଲେ, ‘ସେମାନେ ସମସ୍ତେ ଆମ ଲୋକ । ଏଇ ବାଟରେ ତୁମେ ମଝିରେ ମଝିରେ ଆଲୁଅ ଦେଖୁଛ, ଆଉ ସିପେହୀ ଜଗିଥିବା ଦେଖୁଛ । ସେ ବି ଆମ ଲୋକ । ଆହୁରି ଉପରକୁ ଯା । ଗୋପା କାହା ପାଖରେ କାମ କରୁଛନ୍ତି ଜାଣିଛ ? ଜରାସନ୍ଧଙ୍କର ରାଣୀମାନଙ୍କ ପାଖରେ । ତାଙ୍କ ଭିତରୁ ଅନେକ ଆମ ଲୋକ ।’

ଅସମ୍ଭବ, ଅଦ୍ଭୁତ, ଅରିନ୍ଦମ ମନେ ମନେ ଭାବିଲା । ତା’ର ଆଉ କିଛି ପ୍ରଶ୍ନ ପଚାରିବାକୁ ସାହସ ନ ଥିଲା । ସେ କେବଳ କହିଲା, ‘ଜରାସନ୍ଧଙ୍କର ରାକ୍ଷସ ସୈନ୍ୟ ?’

‘ନାଁ, ସେମାନେ ଆମ ଲୋକ ନୁହନ୍ତି । ଜରାସନ୍ଧ ସେମାନଙ୍କ ଛଡ଼ା ଆଉ କାହାକୁ ବିଶ୍ୱାସ କରେନା । ସେମାନେ ଭୟଙ୍କର, ସେମାନଙ୍କର ଜଣେ କର୍ତ୍ତା । ସେ ଜରାସନ୍ଧ । ଆମେ ସେମାନଙ୍କୁ ଯେତେଦୂର ସମ୍ଭବ ଦୂରେଇ ଦୂରେଇ ରଖୁ । ଗୋପାଙ୍କ ସ୍ୱାମୀଙ୍କୁ ସେଇମାନେ ମାରିଛନ୍ତି ।’

ସେଇ ଜଙ୍ଗଲ ବାଟରେ ଅରିନ୍ଦମର ମନେହେଲା ସେମାନେ ଅନେକ ବାଟ ଆସିଲେଣି । ସନ୍ଧ୍ୟାର ଅନ୍ଧକାରରେ ବିଶେଷ କିଛି ବୁଝି ନ ହେଲେ ବି ଦି ପାଖରେ ଘଞ୍ଚ ଜଙ୍ଗଲରୁ ଅନ୍ତତଃ ସେକଥା ବୁଝି ହେଉଥାଏ । ଭାନୁପ୍ରକାଶ ଯାହା କହୁଥିଲେ ନିତିଦିନିଆ ରାସ୍ତା, ସେହିଯୋଗୁଁ ଅନ୍ଧାର ହେଲେ ବି ସେମାନେ ସହଜରେ ଯାଇ ପାରୁଥାନ୍ତି । ଅରିନ୍ଦମ ଲକ୍ଷ୍ୟ କଲା ସେମାନଙ୍କର ଆଗରେ ଓ ପଛରେ ଆଉ କିଛି ଲୋକ ଚାଲିଛନ୍ତି । ଭାନୁପ୍ରକାଶ କହିଲେ, ‘ଏଇ ସନ୍ଧ୍ୟା ସମୟରେ ମହାକାଳଙ୍କର ଭୋଗ ମିଳିଥାଏ । ତୁମ ପାଇଁ କିଛି ଭୋଗ ଆଣିବା ପାଇଁ ମୁଁ କହିଛି । ଦେଖିବ ମହାକାଳଙ୍କ ଭୋଗ ଅନ୍ୟ ଦେବତାଙ୍କ ଭୋଗଠୁଁ ଅଲଗା ।’

‘ଗୋଟାଏ କଥା’, ଅରିନ୍ଦମ କହିଲା – ‘ଏ ତ ସନ୍ଧ୍ୟା । ଅନ୍ଧାର ହେଇଗଲାଣି । ଏ ଅନ୍ଧାରରେ ଜଙ୍ଗଲ ରାସ୍ତାରେ ଯିବା ଅସୁବିଧା । ଦିନରେ ତ ଦର୍ଶନ ପାଇଁ ମନ୍ଦିର ଖୋଲି ପାରନ୍ତେ । ଏ ସନ୍ଧ୍ୟାରେ କାହିଁକି ?’

ଭାନୁପ୍ରକାଶ ହସିଲେ, କହିଲେ - 'ଜରାସନ୍ଧ ଅତି ଚତୁର ନା ସେହିଯୋଗୁଁ । ତା'ର ଧାରଣା ଅନ୍ଧାରରେ ନ ହୋଇ ଦିନ ଆଲୁଅରେ ହେଲେ ଲୋକମାନେ ଯିବା ଆସିବା ରାସ୍ତା ଓ ଚାରିପାଖ ଜାଗା ବିଷୟରେ ଜାଣିଯିବେ । ମୂର୍ଖ ବୁଝିପାରୁ ନାହିଁ ଯେ ଜାଣିବା ଲୋକ ଆଲୁଅ ହେଉ କି ଅନ୍ଧାର ହେଉ ଯାହା ଜାଣିବା କଥା ଜାଣିଯିବ ।'

କିଛି ସମୟ ପରେ ସେମାନେ ଗୋଟାଏ ଦୋଛକି ଜାଗାରେ ପହଞ୍ଚିଲେ । ଆଲୁଅ ଜଳୁଥାଏ । କିଛି ସିପାହୀ ବି ଛିଡ଼ା ହୋଇଥାନ୍ତି ।

ଭାନୁପ୍ରକାଶ କହିଲେ - 'ଏଇ ଦେଖ, ଦି'ଟା ରାସ୍ତା । ବାଁ ପାଖ ରାସ୍ତା ପାହାଡ଼ କଡ଼ରେ ବୁଲି ଜଙ୍ଗଲ ଭିତରକୁ ଯାଇଛି । ଏ ରାସ୍ତାରେ ସ୍ଥାନୀୟ ଲୋକେ ମଝିରେ ମଝିରେ ଜଙ୍ଗଲରୁ କାଠିକୁଟା ଆଣିବାକୁ ଯାଆନ୍ତି । ଟିକିଏ ପରେ ବେଶ୍ ଜଙ୍ଗଲ । ରାସ୍ତା ପ୍ରାୟ ନାହିଁ । ନ ଜାଣିଥିବା ଲୋକ ଦିନରେ ବି ଯିବା ସହଜ ନୁହେଁ । ଜନ୍ତୁଜାନ୍ତୁ ବି ବେଶ୍ ।' ଟିକିଏ ରହି ଅଳ୍ପ ହସିଲେ, ପ୍ରାୟ ଫୁସଫୁସ କରି କହିଲେ, 'ଭୂତପ୍ରେତ ବି । ଆମ ରାସ୍ତା । ଭୂତପ୍ରେତ ଆମକୁ ରକ୍ଷା କରନ୍ତି ।'

'ଭୂତ ପ୍ରେତ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ, ମହାକାଳଙ୍କ ପାଖରେ ଭୂତପ୍ରେତ ରହିବେନି ତ କିଏ ରହିବ ?' ଭାନୁପ୍ରକାଶ କହିଲେ, 'ଏ ପାଖୁ ଦେଖ, ଏ ରାସ୍ତା ପାହାଡ଼ ଖୋଲକୁ ମନ୍ଦିରକୁ ରାସ୍ତା । ଭଲ କରି ଦେଖ । ଏ ରାସ୍ତାର ଚେହେରା ଅନ୍ୟ ପ୍ରକାର ।

ଅରିନ୍ଦମ ଅନେଇ ଦେଖିଲା । ବାସ୍ତବିକ ଅନ୍ୟପ୍ରକାର ଚେହେରା । ଯେଉଁ ଦୋ'ଛକିରେ ସେମାନେ ଆସି ପହଞ୍ଚିଛନ୍ତି, ଅରିନ୍ଦମର ମନେହେଲା, ଖୁବ୍ ପ୍ରଶସ୍ତ ନ ହେଲେ ମଧ୍ୟ ସଂକୀର୍ଣ୍ଣ ନୁହେଁ । ସେମାନେ ଗୋଟିଏ ଛୋଟ ରାସ୍ତା ଦେଇ ଆସୁଥିଲେ । ସେହି ରାସ୍ତାଟି ଏଠାରେ ଚାରିପାଖରେ ଜାଗା ରଖି ଚଉଡ଼ା ହେଇ ଯାଇଛି । ଦି' ପାଖର ଗଛ ସବୁକୁ କିଏ ଯେପରି ଠେଲି ପେଲି ଦୂରକୁ ଘୁଞ୍ଚେଇ ଦେଇଛି, ମଝିଟା ଖୋଲା ହୋଇ ଯାଇଛି । ଅନ୍ୟ ପ୍ରଭେଦ ବି ଅଛି । ଏହି ଛକର ବିଭିନ୍ନ କଣରେ ବେଶ୍ ଉଜ୍ଜ୍ୱଳ ଆଲୁଅ ସବୁ ଜଳୁଛି । ଆଗରୁ ରାସ୍ତାରେ ଆଲୁଅ ପ୍ରାୟ ନ ଥିଲା । ତା' ଛଡ଼ା ବେଶ୍ କିଛି ସିପାହୀ ଏପାଖ ସେପାଖ ହେଉଛନ୍ତି । ଆଗରୁ ସେମାନେ ପ୍ରାୟ କେହି ଦେଖାଯାଉ ନ ଥିଲେ । ସବୁଠାରୁ ବଡ଼ କଥା ହେଲା, ଯାହା ଭାନୁପ୍ରକାଶ କହିଲେ, ବାଁ ପାଖରେ ଗୋଟାଏ ଛୋଟ ଗଳି ରାସ୍ତା ସୁଡ଼ଙ୍ଗ ପରି ଅନ୍ଧାର ଭିତରକୁ ପଶି ଯାଇଛି । କିନ୍ତୁ ଡାହାଣ ପାଖର ରାସ୍ତା ପ୍ରଶସ୍ତ । ଛାଡ଼ି ଛାଡ଼ି ରାସ୍ତା ଦି'ପାଖରେ ଆଲୁଅ ଜଳୁଛି, ଆଉ ଛାଡ଼ି ଛାଡ଼ି ସିପେହୀ ଛିଡ଼ା ହୋଇଛନ୍ତି, ଜଗିଲା ପରି । ରାସ୍ତା ବୁଲି ବୁଲି ପାହାଡ଼ ଉପରକୁ ଉଠିଯାଇଛି, ସିଧା ଦେଖି ହେଉଛି ।

ପବନର ବେଗ ବଢ଼ିଗଲାଣି । ଶୀତଳ, ଅତ୍ୟନ୍ତ ଆରାମଦାୟକ । ସେମାନେ ଯେଉଁ ଘଣ୍ଟା ଧ୍ୱନିର ଶବ୍ଦ ଶୁଣି ଶୁଣି ଆସୁଥିଲେ ସେ ଆହୁରି ସ୍ପଷ୍ଟ ହୋଇଛି । କିପରି ଗୋଟାଏ ଅଜଣା ଫୁଲମାନଙ୍କର ଅପୂର୍ବ ସୁଗନ୍ଧିରେ ଚାରିପାଖ ପୂରିଯାଇଛି । ଭାନୁପ୍ରକାଶ ଓ ଭାନୁପ୍ରିୟ ଛିଡ଼ା ହୋଇଗଲେ । ସେ ବି ଛିଡ଼ା ହେଲା ।

ଭାନୁପ୍ରକାଶ କହିଲେ, 'ଏଠୁ ମନ୍ଦିର ବେଶି ବାଟ ନୁହେଁ । ପ୍ରାୟ ହୋଇଗଲା । ଆମକୁ ଡାହାଣ ପାଖ ରାସ୍ତାରେ ବାଙ୍କି ଯିବାକୁ ହେବ, କିନ୍ତୁ ଆମେ ମନଇଚ୍ଛା ଯେମିତି ଆସୁଥିଲେ ସେମିତି ଯାଇ ପାରିବା ନାହିଁ । ଏଠୁ ମନ୍ଦିର ପର୍ଯ୍ୟନ୍ତ ସିପେହୀମାନେ ଆମ ଦାୟିତ୍ୱ ନେବେ । ସେମାନଙ୍କର କଥା ମାନିବାକୁ ପଡ଼ିବ ।'

'ସିପେହୀଙ୍କ କଥା ମାନିବାକୁ ପଡ଼ିବ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ', ଭାନୁପ୍ରକାଶ କହିଲେ, 'ସେମାନେ ବର୍ତ୍ତମାନ ଆସି ତୁମର ସାରା ଦେହ ତଲାସ କରିବେ । ଜରାସନ୍ଧଙ୍କର କଡ଼ା ଆଦେଶ, କୌଣସି ସନ୍ଦେହୀ ଲୋକକୁ ମନ୍ଦିର ଭିତରକୁ ଛଡ଼ା ଯିବ ନାହିଁ । ସାମାନ୍ୟ ସନ୍ଦେହ ହେଲେ ତୁମର ମୁଣ୍ଡକାଟ ହୋଇଯାଇପାରେ ।' ସେମାନେ ଛିଡ଼ା ହୋଇ ରହିଲେ । ମହାକାଳଙ୍କୁ ଦର୍ଶନ କରିବାକୁ କିଛି ଲୋକ ବି ଆସିଥିଲେ । ସମସ୍ତେ ଛିଡ଼ା ହେଲେ । ଜଣେ ସିପେହୀ ଭାନୁପ୍ରକାଶଙ୍କ ନିକଟକୁ ଲାଗି ଆସିଲା, କହିଲା – 'ଆପଣମାନଙ୍କୁ ଆଉ କିଛି ସମୟ ଅପେକ୍ଷା କରିବାକୁ ପଡ଼ିବ । ସମ୍ରାଟ ଏପର୍ଯ୍ୟନ୍ତ ମନ୍ଦିରରୁ ଯାଇ ନାହାନ୍ତି । ସେ ଗଲାପରେ ଆପଣମାନେ ଯିବା ପାଇଁ ଅନୁମତି ପାଇବେ ।

କିନ୍ତୁ ବେଶି ସମୟ ଅପେକ୍ଷା କରିବାକୁ ହେଲା ନାହିଁ । ଖବର ଆସିଲା ସମ୍ରାଟ ଗଲେଣି । ଲୋକମାନେ ଦର୍ଶନ କରିବାକୁ ଆସନ୍ତୁ ।

ସିପେହୀମାନେ ଚଞ୍ଚଳ ହୋଇ ଉଠିଲେ, ସେମାନେ ଆସିଥିବା ଲୋକମାନଙ୍କୁ ପରୀକ୍ଷା କରି ଜଣକ ପରେ ଜଣେ ମନ୍ଦିର ରାସ୍ତାରେ ଛାଡ଼ିଲେ । ଦି'ଜଣ ଭାନୁପ୍ରକାଶ ଓ ଭାନୁପ୍ରିୟଙ୍କ ପାଖକୁ ଆସି କହିଲେ – 'ଆପଣ ଯାଆନ୍ତୁ'। ତା'ପରେ ଅରିନ୍ଦମକୁ ଦେଖେଇ ପଚାରିଲେ, 'ଇଏ ?' 'ଏ ମଥୁରା ଶିବିରର ଲୋକ, କଂସଙ୍କର ବନ୍ଧୁ', କହିଲେ ଭାନୁପ୍ରକାଶ । 'ଯାଆନ୍ତୁ', 'ସିପାହୀ ଦି'ଜଣ ଫେରିଗଲେ ।

'ସିପେହୀମାନେ ଆପଣଙ୍କୁ ଜାଣନ୍ତି ?' ଅରିନ୍ଦମ ପଚାରିଲା,

'ନାଁ, ମୁହଁ ଚିହ୍ନା' କହିଲେ ଭାନୁପ୍ରକାଶ, 'ଜରାସନ୍ଧର ସିପେହୀମାନଙ୍କ ଭିତରେ ଅନେକ ମୋଟାମୋଟି ଭଲ ଲୋକ ଅଛନ୍ତି । ସେମାନେ ଜରାସନ୍ଧର ଆଜ୍ଞା ପାଳନ କରନ୍ତି, କିନ୍ତୁ ଲୋକଙ୍କୁ ଖୁବ୍ ବେଶୀ ହଇରାଣ କରନ୍ତି ନାହିଁ । ସେମାନଙ୍କର ଆମ କାମ ପ୍ରତି ସହାନୁଭୂତି ଅଛି ।'


Digitized by srujanika@gmail.com

ସେମାନେ ମନ୍ଦିର ରାସ୍ତାରେ ଉପରକୁ ଉଠିଲେ । ରାସ୍ତା ପରିଷ୍କାର, ଦି ପାଖରେ ଆଲୁଅ । ଅରିନ୍ଦମ ଭାବିବାକୁ ଚେଷ୍ଟା କରୁଥିଲା ଏପରି ସତର୍କତା ଆଉ କେଉଁ ମନ୍ଦିରରେ ଅଛି କି ? ନାଁ, ଅନ୍ତତଃ ସେ ଜାଣିବାରେ ନାହିଁ । କିନ୍ତୁ କାହିଁକି ଏ ସତର୍କତା ? ଦେବତା ଦେବତା, ତାଙ୍କୁ ମନ୍ତ୍ରରେ ଆହ୍ୱାନ କରାଯାଏ, ମନ୍ତ୍ରରେ ପୂଜା କରାଯାଏ । ଏସବୁ ଗୋପନୀୟ ଠିକ୍ । କିନ୍ତୁ ଦେବତାଙ୍କର ତ ଗୋପନୀୟତା କିଛି ନାହିଁ । ସେ ବାପାଙ୍କ କଥା ଚିନ୍ତା କଲା । ବାପା ଶୁଦ୍ଧପୂତ ଭାବରେ ପୂଜା କରନ୍ତି । ତାଙ୍କର ପୂଜାର ବିଶ୍ୱାସରେ ଠାକୁର ଜୀବନ୍ୟାସ ପାଆନ୍ତି । କିନ୍ତୁ ଠାକୁର ତ ସମସ୍ତଙ୍କ ପାଇଁ ଉନ୍ମୁକ୍ତ, ସେ ବି ମହାକାଳ । ଯେ କୌଣସି ସମୟରେ ଯେ କୌଣସି ବ୍ୟକ୍ତି ଯାଇ ତାଙ୍କ ନିକଟରେ ଭକ୍ତି ନିବେଦନ କରିପାରିବ । ଏଠି ମହାକାଳଙ୍କ ପାଖରେ ଏ ସାବଧାନତା ସତର୍କତା କାହାପାଇଁ ? କେଉଁଥିପାଇଁ ?

'ମହାକାଳଙ୍କ ପାଇଁ ସତର୍କତା ନୁହେଁ । ସତର୍କତା ଜରାସନ୍ଧର ନିଜ ପାଇଁ ।' ଭାନୁପ୍ରକାଶ କହିଲେ - 'ଦେବତା ପାଇଁ ନୁହେଁ, ସେ ନିଜ ପାଇଁ ବେଶୀ ଚିନ୍ତିତ ।'

'ନିଜ ପାଇଁ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ', ଭାନୁପ୍ରକାଶ କହିଲେ - 'ସବୁ ଦୁଷ୍ଟ ଲୋକର ଯେଉଁ ଚିନ୍ତା ତା'ର ସେହି ଚିନ୍ତା । ଦେବତା କେବଳ ବାହାରକୁ ଢାଲ ପରି । ସବୁକଥା ଦେବତା ଉପର ଦେଇ ପାର ହୋଇଯିବ ।'

'ତା ମାନେ ମହାକାଳଙ୍କ ନାଁ ନେଇ ସେ କିଛି କଥା ଲୁଚେଇବାକୁ ଚାହାନ୍ତି ?' ଅରିନ୍ଦମ କହିଲା ।

'ଠିକ୍', ଭାନୁପ୍ରକାଶ କହିଲେ, 'ସବୁ କଥା ଏଠି ଖୋଲି କହି ହବନି । ଆମେ ବି ବେଶୀ ସମୟ ଏଠି କଥାବାର୍ତ୍ତା କରିବା ନିରାପଦ ନୁହେଁ । ଖାଲି ଏତିକି ମନେ ରଖ ଏ ମନ୍ଦିର ଖାଲି ମନ୍ଦିର ନୁହେଁ । ଏ ପାହାଡ଼ ଖୋଲରେ ଖୋଲରେ ଜରାସନ୍ଧର ଲୁଚିକରି ଯେଉଁ ରାଜପ୍ରାସାଦ ରହିଛି ଏ ତାର ଗୋଟାଏ ଅଂଶ ।'

'ଆଉ ଗୋଟାଏ ରାଜପ୍ରାସାଦ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ, ଆଉ ଗୋଟାଏ ।' ଭାନୁପ୍ରକାଶ କହିଲେ - 'ଯେଉଁ ରାଜପ୍ରାସାଦ ଆମେ ସମସ୍ତେ ଦେଖୁ ସେ ନୁହେଁ । ଆଉ ଗୋଟାଏ । ଏଠିକି କେବଳ ଜରାସନ୍ଧ ଓ ତା'ର ଅତ୍ୟନ୍ତ ବିଶ୍ୱସ୍ତ ଲୋକ ଛଡ଼ା ଆଉ କାହାର ଆସିବାର ଅନୁମତି ନାହିଁ । ଏପରିକି ତା'ର ରାଣୀମାନଙ୍କର ବି ନୁହେଁ । ଏଠାରେ ଜରାସନ୍ଧର ବହୁ ବହୁ ଗୋପନୀୟ କଥା ଲୁଚିକରି ରହିଛି ।'

'ଆଶ୍ଚର୍ଯ୍ୟ !' ଅରିନ୍ଦମ କହିଲା ।


Digitized by srujanika@gmail.com

ଭାନୁପ୍ରକାଶ କିଛି କହିଲେ ନାହିଁ । ଅରିନ୍ଦମ ଦେଖିଲା ପରି ଓଠରେ ଆଙ୍ଗୁଠି ଦେଇ ତାକୁ ଇଙ୍ଗିତ କଲେ କେବଳ । କହିଲେ – 'ମନ୍ଦିର ଆସିଲା । ଆଖି ଖୋଲା ରଖ ।'

ଦୋ'ଛକି ରାସ୍ତାରୁ ଭାଙ୍ଗି ମନ୍ଦିର ରାସ୍ତାରେ ଆସିବା ପରଠାରୁ ଏକ ଅଦ୍ଭୁତ ଘ୍ରାଣ ଅରିନ୍ଦମର ଦେହ ଓ ମନକୁ ଆଚ୍ଛନ୍ନ କରି ରଖିଥିଲା । ସେ ଚାରିପାଖକୁ ଦେଖୁଥିଲା, ଭାନୁପ୍ରକାଶଙ୍କ ସହିତ କଥାବାର୍ତ୍ତା ହେଉଥିଲା, ଉଦ୍‌ବିଗ୍ନ ହେଉଥିଲା, ଆଶ୍ଚର୍ଯ୍ୟ ହେଉଥିଲା । କିନ୍ତୁ ସେ ସବୁକୁ ଅତିକ୍ରମ କରି ବାରମ୍ବାର ତା'ର ମନ ଆଉ ଗୋଟାଏ ସ୍ତରକୁ ଭାସି ଯାଉଥିଲା । ସେଠି ଆଲୋକ ନାହିଁ, ଶବ୍ଦ ନାହିଁ, ରକ୍ଷୀ ନାହାନ୍ତି, ଜରାସନ୍ଧ ନାହିଁ, ଭାନୁପ୍ରକାଶ ନାହାନ୍ତି, କେହି ନାହାନ୍ତି । ଶୂନ୍ୟ, ଶୂନ୍ୟ, ଗୋଟାଏ ଅଦ୍ଭୁତ ଜ୍ୟୋତିରେ ଦିଗବିଦିଗ ପୂରି ଉଠିଛି, ଯାହା ଆଲୋକ ନୁହେଁ, ଅନ୍ଧକାର ବି ନୁହେଁ, ଯେଉଁ ଶବ୍ଦ ଆସୁଛି ସେ କେଉଁ ମହା ଗହ୍ୱରରେ ତରଙ୍ଗାୟିତ ହେଉଛି, ଆସ୍ତେ ଆସ୍ତେ, ସୂକ୍ଷ୍ମ ବୀଣାର ଆଳାପ ପରି, ଆଉ ସେହି ଅଦ୍ଭୁତ ଘ୍ରାଣ, ଅଦ୍ଭୁତ ସ୍ୱାଦ ପରି, ତା'ର ମନ ପ୍ରାଣକୁ ପରିପୂର୍ଣ୍ଣ କରି ରଖିଛି । ଏ ଯେପରି ବାପାଙ୍କର ଗମ୍ଭୀର ସ୍ୱର ବୁଦ୍‌ବୁଦ୍ ପରି ଚାରିପାଖରୁ ଉଠି ଆସୁଛି ...

ସହସ୍ର ଶୀର୍ଷଂ ଦେବଂ ବିଶ୍ୱାକ୍ଷଂ ବିଶ୍ୱ ଶମ୍ଭୁକମ୍‌ତ୍ର୍ୟୁତମ୍
ନାରାୟଣଂ ମହାଜ୍ଞେୟଂ ବିଶ୍ୱାତ୍ମାନଂ ପରାୟନମ୍ ।

ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ, ଜଗତାତ୍ମା, ସର୍ବଦେବ ସ୍ୱରୂପ, ବିକାରହୀନ, ପରମପ୍ରଭୁ, ନିତ୍ୟ ବର୍ତ୍ତମାନ, ପରମ ମଙ୍ଗଳ, ସର୍ବଶ୍ରେଷ୍ଠ ବିଜ୍ଞେୟ...

ନିଜର ଅଜ୍ଞାତରେ ଅରିନ୍ଦମ ଭାନୁପ୍ରକାଶଙ୍କ ହାତ ଧରି ମହାକାଳ ମନ୍ଦିରର ବିସ୍ତୀର୍ଣ୍ଣ ମଣ୍ଡପକୁ ଉଠିଗଲା ଓ ଗର୍ଭଗୃହ ସମ୍ମୁଖରେ ପ୍ରାୟ ଅଜ୍ଞାନ ଅବସ୍ଥାରେ ବସିପଡ଼ିଲା । ମହାକାଳଙ୍କର ସନ୍ଧ୍ୟାଳତି ବନ୍ଦ ହୋଇଗଲାଣି । ପୂଜକର ଶିବାଷ୍ଟକ ଆସ୍ତେ ଆସ୍ତେ ଭାସି ଆସୁଥାଏ । ଅରିନ୍ଦମର ବାହ୍ୟଜ୍ଞାନ ପ୍ରାୟ ନ ଥାଏ । ତା' ଆଖି ଆଗରେ ଅସଂଖ୍ୟ ତାରକାର ଧାଡ଼ି ଓ ଅଗ୍ନି ବଳୟ ପରି ଅସଂଖ୍ୟ ଚକ୍ରର ଧାରା । ଅରିନ୍ଦମ ଶୁଣୁଥାଏ, ଯେପରି ବହୁ ଦୂରରୁ ଶ୍ଳୋକ ଭାସିଆସୁଛି, ସେଇ ପରମ ପୁରୁଷ, ପରମ ଜ୍ଞାନୀ, ପରମ ସତ୍ୟ – ରିତଂ ସତ୍ୟଂ ପରଂ ବ୍ରହ୍ମ ପୁରୁଷଂ କୃଷ୍ଣ ପିଙ୍ଗଳମ୍ / ଊର୍ଦ୍ଧ୍ୱରେତଂ ବିରୂପାକ୍ଷଂ ବିଶ୍ୱରୂପାୟ ବୈ ନମଃ । ତା'ର ମନେହେଲା ସେହି ପରମ ସତ୍ତା ସମଗ୍ର ଆକାଶ ଓ ପୃଥିବୀରେ ପରିବ୍ୟାପ୍ତ ଓ ଆଉ କେହି ନୁହେଁ ସେ ନିଜେ ନିଜେ ହିଁ ଶ୍ଳୋକ ଆବୃତ୍ତି କରୁଛି, ସେହି ପରମପୁରୁଷ ମହାକାଳଙ୍କର ଶ୍ଳୋକ :

ହେ ଚନ୍ଦ୍ରଚୂଡ଼ ମଦନାନ୍ତକ ଶୂଳପାଣେ

ସ୍ଥାଣୋ ଗିରିଶ ଗିରିଜେଶ ମହେଶ ଶମ୍ଭୋ
ଭୂତେଣ ଭୀତଭୟ ସୂଦନ ମାମନାଥଂ
ସଂସାର ଦୁଃଖ ଗହନାଜ୍ଜଗଦୀଶ ରକ୍ଷ ।
ହେ ପାର୍ବତୀ-ହୃଦୟବଲ୍ଲଭ ଚନ୍ଦ୍ରମୌଳେ
ଭୂତାଧିପ ପ୍ରମଥନାଥ ଗିରୀଶଜାପ
ହେ ବାମଦେବ ଭବ ରୁଦ୍ର ପିନାକ ପାଣେ
ସଂସାର-ଦୁଃଖଗହନାଜ୍ଜଗଦୀଶ ରକ୍ଷ ।...

କେତେ ସମୟ ସେ ସେହିପରି ତନ୍ଦ୍ରାଚ୍ଛନ୍ନ ହୋଇ ବସି ରହିଥିଲା ତା'ର ଜ୍ଞାନ ନ ଥିଲା । ତା'ର ମନେ ହେଉଥିଲା ଯେପରି ସେ ଅନନ୍ତ କାଳ ଧରି ବସି ରହିଛି ଓ ପରମ ଜ୍ୟୋତିରେ ଅବଗାହନ କରୁଛି । ଭାନୁପ୍ରକାଶଙ୍କ ସ୍ପର୍ଶରେ ତା'ର ଆଚ୍ଛନ୍ନ ଭାବ କଟିଗଲା । ଭାନୁପ୍ରକାଶ କହୁଥାନ୍ତି- 'ଅରିନ୍ଦମ ଆସ, ମହାକାଳଙ୍କୁ ଦର୍ଶନ କର, ପୂଜକ ଅପେକ୍ଷା କରିଛନ୍ତି, ମନ୍ଦିର ବନ୍ଦ ହେବ ।'

ପରେ, ମହାକାଳଙ୍କୁ ଦର୍ଶନ କରିବାର ସେହି ପ୍ରଥମ ଦିନ କଥା ଭାବି ଅରିନ୍ଦମ ବାରମ୍ବାର ଆଶ୍ଚର୍ଯ୍ୟ ହୋଇଛି । ସେଦିନ ପରେ ମଥୁରା ଫେରିଆସିବା ଭିତରେ ସେ ମହାକାଳଙ୍କୁ ଆହୁରି ଦି'ତିନିଥର ଯାଇ ଦର୍ଶନ କରିଛି । କିନ୍ତୁ ସେଦିନର ସେହି ଅନୁଭୂତି ତା'ର ଆଉ କେବେ ହୋଇନାହିଁ । ମନ୍ଦିର ଚାରିପାଖର ସେହି ଅଦ୍ଭୁତ ଘ୍ରାଣ, ମନ୍ଦିରର ମଣ୍ଡପରେ ଗୋଡ଼ ଦେଉ ଦେଉ ତା'ର ସେହି ତନ୍ଦ୍ରାଚ୍ଛନ୍ନ ଭାବ ଓ ବାପାଙ୍କର ଧ୍ୟାନର ସେହି ଶ୍ଳୋକ ସବୁ ଯାହାକୁ ସେ କେବେହେଲେ ମନେରଖି ପାରେନା, ସେସବୁ ସ୍ପଷ୍ଟ ଭାବରେ ପ୍ରକାଶ ପାଇବା - ଅରିନ୍ଦମ ଯେତେ ଭାବିଛି ସେତେ ଆଶ୍ଚର୍ଯ୍ୟ ହୋଇଛି, ଏ ସବୁ କିପରି ହେଲା ? ସେ ଯେ ବହୁତ ସମୟ ଧରି ତନ୍ଦ୍ରାଚ୍ଛନ୍ନ ହୋଇ ରହିଥିଲା ତା' ନୁହେଁ, ଯଦିଚ ସେ ଭାବିଥିଲା ଦୀର୍ଘ ସମୟ ଧରି ତା'ର ଜ୍ଞାନ ନ ଥିଲା । ପରେ ଭାନୁପ୍ରକାଶ କହୁଥିଲେ ମହାକାଳଙ୍କ ମନ୍ଦିରର ମଣ୍ଡପ ଦିଶିବା ସାଙ୍ଗେ ସାଙ୍ଗେ, ମଣ୍ଡପ ଏଇ ପ୍ରାୟ ଆଗରେ, ସେ ହଠାତ୍ ଭାନୁପ୍ରକାଶଙ୍କ ହାତକୁ ଚାପି ଧରିଲା । ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ, କାରଣ ଅରିନ୍ଦମ ଚାଲିବା ସମୟରେ ସବୁବେଳେ ପାଖେ ପାଖେ ଚାଲେ, ତାଙ୍କ ହାତକୁ କେବେ ହେଲେ ଧରେ ନା । ଏ ଖାଲି ହାତ ଧରି ଚାଲିବା କଥା ନୁହେଁ । ଭାନୁପ୍ରକାଶ କହୁଥିଲେ ତା ହାତ ଥରୁଥାଏ । ସେ ଅରିନ୍ଦମର ମୁହଁକୁ ଚାହିଁଲେ ।

ସେଇ ଅଧା ଆଲୁଅ ଅଧା ଅନ୍ଧାର ଭିତରେ ତାଙ୍କର ମନେ ହୋଇଥିଲା ଯେପରି ଅରିନ୍ଦମର ମୁହଁଟା ବଦଳି ଯାଇଛି । ସେ ଚାହିଁଛି, କିନ୍ତୁ କୁଆଡ଼କୁ ଚାହିଁଛି ସେ କିଛି

ବୁଝି ପାରିଲେ ନାହିଁ । ମନେହେଲା ସେ ଯେମିତି ସବୁ ଦେଖୁଛି କିନ୍ତୁ କିଛି ଦେଖି ପାରୁନାହିଁ, ସେ ଯେପରି ସେଇଠି ଅଛି, କିନ୍ତୁ କୋଉଠି ନାହିଁ । ତାଙ୍କର ଭୟ ହେଲା ଅରିନ୍ଦମ ହଠାତ୍ ହୁଏତ ତାଙ୍କ ହାତ ଛାଡ଼ିଦେଇ ତଳେ ପଡ଼ିଯାଇପାରେ । ଭାନୁପ୍ରିୟ ବି ବ୍ୟସ୍ତ ହୋଇ ଅରିନ୍ଦମର ଆର ପାଖରେ, ପାଖେ ପାଖେ, ସତର୍କ ହୋଇ ଚାଲିଲେ । ନାଁ, କିଛି ହେଲାନି, ଅରିନ୍ଦମ ଅତ୍ୟନ୍ତ ସ୍ୱାଭାବିକ ଭାବରେ ଚାଲି ଚାଲି ମଣ୍ଡପ ଉପରକୁ ଉଠିଲା । କିନ୍ତୁ ତଥାପି ଭାନୁପ୍ରକାଶଙ୍କର ମନେ ହେଉଥିଲା ଏ ସ୍ୱାଭାବିକ ନୁହେଁ । ଅରିନ୍ଦମ ତାଙ୍କ ହାତ ଧରିଥାଏ ଠିକ୍ । କିନ୍ତୁ ସେ ତାଙ୍କ ଉପରେ ନିର୍ଭର କରୁ ନ ଥାଏ । ସେ ନିଜେ ନିଜେ ଆଗକୁ ଯାଉଥାଏ, ମଣ୍ଡପ ଉପରକୁ ଉଠିଲା, ଗର୍ଭଗୃହ ନିକଟକୁ ଗଲା । ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ତାଙ୍କର ବାରମ୍ବାର ମନେହେଲା ଯେପରି ଅରିନ୍ଦମକୁ ଆଉ ଜଣେ କିଏ... ବାଟ କଢ଼େଇ ନେଉଛି । ସେ ଖାଲି ତାଙ୍କର ହାତଟା ଧରିଚି, ବାସ ସେତିକି ।

ହଁ, ଏସବୁ କଥା ଭାନୁପ୍ରକାଶ ତାକୁ ପରେ କହିଥିଲେ । ସେଦିନ ସେମାନେ ତିନି ଜଣ ସ୍ୱାଭାବିକ ଭାବରେ କଥାବାର୍ତ୍ତା କରି କରି ମହାକାଳଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ହଠାତ୍ ମନ୍ଦିର ଦେଖୁ ଦେଖୁ ଅରିନ୍ଦମର ସେ ଯେ କି ପରିବର୍ତ୍ତନ ହେଲା ସେମାନେ ବୁଝିପାରିଲେ ନାହିଁ । ବାହାରକୁ ଦେଖିବାକୁ ସବୁ ଠିକ୍‌ଠାକ୍, କିନ୍ତୁ ଭିତରେ ଭିତରେ ଅରିନ୍ଦମ ଯେମିତି ବଦଳି ଗଲା । ସେ ଆଉ ତାଙ୍କ ଭିତରେ ନୁହେଁ, ସେ ଆଉ କିଏ । କାହିଁ କେତେଦୂରକୁ ଚାଲିଯାଇଛି । ଭାନୁପ୍ରକାଶ ଓ ଭାନୁପ୍ରିୟଙ୍କ ପରି ବୁଦ୍ଧିମାନ ଲୋକ ବି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେମାନେ ପୂର୍ବରୁ ମହାକାଳଙ୍କୁ ଅନେକଥର ଦର୍ଶନ କରିଛନ୍ତି । କିନ୍ତୁ ସେମାନଙ୍କର କେବେ କିଛି ହୋଇନି । ସେମାନେ ଅନ୍ୟାନ୍ୟ ଭକ୍ତମାନଙ୍କ ପରି, ଯାଇଛନ୍ତି, ଦର୍ଶନ କରିଛନ୍ତି, ଭକ୍ତି ନିବେଦନ କରିଛନ୍ତି, ଫେରିଛନ୍ତି । ସମୟ ବେଶି ନୁହେଁ । ଅରିନ୍ଦମର ଏ ପରିବର୍ତ୍ତନ ଅଳ୍ପ ସମୟ ପରେ କଟି ଯାଇଥିଲା । କିନ୍ତୁ ତା'ର ଏ ପରିବର୍ତ୍ତନ ହେଲା କାହିଁକି ? ସେମାନେ ତାକୁ ପରେ ପଚାରିଥିଲେ । କିନ୍ତୁ ସେ ବି ନିଜେ ଜାଣେ ନା ତା'ର ଉତ୍ତର କଅଣ । ମଥୁରା ଫେରି ସେ ବାପାଙ୍କୁ ପଚାରି ଥିଲା । ବାପା କେବଳ ହସିଥିଲେ । କହିଥିଲେ, 'ହଁ, ସେମିତି ହୁଏ । ଏ ବୁଦ୍ଧି ବା ବିଚାରର କଥା ନୁହେଁ । ଏ ଭକ୍ତିର କଥା । ତୁମେ ଦେବାତ୍ମାମାନଙ୍କ ସହିତ କେତେଦୂର ଏକାତ୍ମ ହୋଇ ପାରୁଛ ସେ କଥା । ତୋ ପ୍ରତି ମହାକାଳଙ୍କର ଅସୀମ ଦୟା । ସେ ଯେପରି ତୁ ତାଙ୍କୁ ସେହିପରି ଦର୍ଶନ କଲୁ । ସାଧାରଣ ଭକ୍ତ ସେ ଦର୍ଶନ ପାଏ ନା । ତୋର ବନ୍ଧୁମାନେ ସାଧାରଣ ଭକ୍ତ, ଜରାସନ୍ଧ ସାଧାରଣ ଭକ୍ତ । ସେମାନଙ୍କର ସମସ୍ତଙ୍କର ନିଜର ନିଜର ସ୍ୱାର୍ଥ ଅଛି । ସାଂସାରିକ

ବିଚାରର ଊର୍ଦ୍ଧ୍ୱକୁ ଯାଇ ଦେବଦର୍ଶନ ସେମାନଙ୍କର ଭାଗ୍ୟରେ ଜୁଟେ ନା । ମନ୍ଦିର, ଦେବତାଙ୍କ ମୂର୍ତ୍ତି, ପୂଜକ, ପୂଜା, ସେମାନେ ସବୁ ସେଇଥିରେ ବନ୍ଦ ହୋଇ ଯାଆନ୍ତି । ସେସବୁହିଁ ସେମାନଙ୍କ ପାଇଁ ମୁଖ୍ୟ ।' 'କିନ୍ତୁ ପରେ ମହାକାଳଙ୍କୁ ଦର୍ଶନ କଲେ ବି ସେପରି ଅନୁଭବ ମୋର କେବେ ହୋଇନି ।' ସେ ବାପାଙ୍କୁ କହିଥିଲା ।

'ନାଁ, ହେବନି,' ବାପା କହିଥିଲେ - 'ଆମେ ଇଚ୍ଛା କଲେ ସେପରି ଅନୁଭବ ଆସେ ନା, ସେ ଛାଁ ଛାଁ ଆସେ । ଦେବତା ଇଚ୍ଛା କଲେ ହିଁ ଆସିବ । ଏ କେବଳ ଭକ୍ତି ନୁହେଁ । ଦେବତା ଭକ୍ତିକୁ ଗ୍ରହଣ କରିବା କଥା ।'

....ମହାକାଳଙ୍କ ଦର୍ଶନକୁ ଅରିନ୍ଦମ ପରେ ଯେତେଥର ଯାଇଛି, ସେ ଭାନୁପ୍ରକାଶଙ୍କ ସାଙ୍ଗରେ ଯାଇଛି, ଆଉ ଗୋଟାଏ କଥା ସେ ବାରମ୍ବାର ଲକ୍ଷ୍ୟ କରିଛି, ଭାନୁପ୍ରକାଶ ପ୍ରଭୃତିଙ୍କର ମନ୍ଦିରର ରକ୍ଷୀମାନଙ୍କ ସହିତ ସଦ୍ଭାବ । ଏ ସଦ୍ଭାବ କେବଳ ଔପଚାରିକ ନୁହେଁ, ବେଶ୍ ଆନ୍ତରିକ । ସେମାନେ ଭାନୁପ୍ରକାଶଙ୍କୁ ଦେଖିଲେ ପାଖକୁ ଆସନ୍ତି, ହସଖୁସିରେ କଥା ହୁଅନ୍ତି, ସୁଖଦୁଃଖ ବି ହୁଅନ୍ତି । ଭାନୁପ୍ରକାଶଙ୍କର ବି ସେମାନଙ୍କ ପାଇଁ ବେଶ୍ ଖୋଲା ମନ । ଅତି ସହଜରେ ସେ ମିଶିଯାଆନ୍ତି । ମନେହୁଏନା ଯେ ସେମାନେ ଜରାସନ୍ଧଙ୍କର ରକ୍ଷୀ, ସେମାନଙ୍କର ଦାୟିତ୍ୱ ସେମାନେ ଭୁଲି ଯାଆନ୍ତି । ଭାନୁପ୍ରକାଶଙ୍କର କାର୍ଯ୍ୟରେ ଦୃଢ଼ତା ସେ ଦେଖିଛି । ତାଙ୍କର ଇଚ୍ଛା-ଶକ୍ତି ଓ ସମ୍ପୂର୍ଣ୍ଣ ଅବସ୍ଥା ବୁଝି ତତ୍‌କ୍ଷଣାତ୍ ନିଷ୍ପତ୍ତି ନେବାର ଦକ୍ଷତା ତାକୁ ଆଶ୍ଚର୍ଯ୍ୟ କରିଛି । କିନ୍ତୁ ତାଙ୍କର କାର୍ଯ୍ୟପ୍ରଣାଳୀ ସମାନ ବିସ୍ମୟକର । ସମସ୍ତେ ତାଙ୍କର ବନ୍ଧୁ, ସମସ୍ତେ ତାଙ୍କୁ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ । ସେ ଅନେକ ସମୟରେ ଭାବେ ଏମାନେ କ'ଣ ସେ ଯେ ଜରାସନ୍ଧଙ୍କର ସବୁଠାରୁ ବଡ଼ ଶତ୍ରୁ ଏକଥା ଜାଣନ୍ତି ନାହିଁ । ଜରାସନ୍ଧ ନିଜେ ବି କ'ଣ ଏକଥା ଭାବି ନାହାନ୍ତି । 'ହଁ, ଭାବିଛି', ଭାନୁପ୍ରକାଶ ନିଜେ ଅରିନ୍ଦମର ଏ ଅକୁହା ପ୍ରଶ୍ନର ଉତ୍ତର ଦେଇ ଥରେ କହିଥିଲେ । 'କିନ୍ତୁ ଜରାସନ୍ଧର ପ୍ରକୃତି ସାଧାରଣ ଲୋକର ପ୍ରକୃତି ଠାରୁ ବହୁତ ଅଲଗା । ଜଣେ ସାଧାରଣ ଲୋକ, ଯଦି ତା'ର କ୍ଷମତା ଅଛି ତ, ତା' ଶତ୍ରୁକୁ ଶେଷ କରିଦେବାକୁ ଚାହିଁବ । ଜରାସନ୍ଧ ଠିକ୍ ଓଲଟା । ସେ ନିଜର ଶକ୍ତି ଓ କ୍ଷମତା ବିଷୟରେ ଏତେ ନିଶ୍ଚିତ ଯେ କୌଣସି ଶତ୍ରୁ କେବେହେଲେ ତା'ର କିଛି କ୍ଷତି କରିପାରିବ ନାହିଁ, ଏଇ ଧାରଣା । ସେ ଚାହେଁ ଶତ୍ରୁ ରହନ୍ତୁ, ତା'ହେଲେ ତା'ର କ୍ଷମତା ସେ ଅଧିକତର ଜାହିର କରିପାରିବ ।'


Digitized by srujanika@gmail.com

ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗିଥିଲା । ଏ ନୂଆ ପ୍ରକାରର କଥା । ଯେ କୌଣସି ଅତ୍ୟାଚାରୀ ଶାସକ ତା'ର ଶତ୍ରୁକୁ ଆଗ ନିପାତ କରିବ, କିନ୍ତୁ ଏଠି... 'ହଁ ଠିକ୍', ଭାନୁପ୍ରକାଶ ପୁଣି କହିଥିଲେ, 'ଜରାସନ୍ଧ ଶତ୍ରୁକୁ ନିପାତ କରେ ନା ଉତ୍ସାହିତ କରେ । ମନେରଖ ଏଇଆ ହିଁ ଯେ କୌଣସି ଅତ୍ୟାଚାରୀ ଶାସକ, ଯେ ନିଜକୁ ଖୁବ୍ ବଡ଼ ବୋଲି ଭାବେ, ତା'ର ଲକ୍ଷଣ । କେବଳ ଭୀଷ୍ମଙ୍କୁ ଛାଡ଼ିଦେଲେ, ସେ ଆର୍ଯ୍ୟାବର୍ତ୍ତର କୌଣସି ରାଜାଙ୍କୁ ଭୟ କରେନା, ଆଉ ଆମେ ତ... ଆମର ନା ଅଛି ରାଜ୍ୟ, ନା ସୈନ୍ୟସାମନ୍ତ, ନା ତା ସହିତ ମୁହାଁମୁହିଁ ଯୁଦ୍ଧ କରିବାର ଶକ୍ତି । ଆମକୁ ସେ କୌଣସି ଗୁରୁତ୍ୱ ଦିଏ ନା ।'

'କିନ୍ତୁ ଆପଣମାନେ ଯେ ଏତେ କାମ କରୁଛନ୍ତି, ଆପଣମାନଙ୍କ କାମର ଏତେ ପ୍ରଭାବ...' ଅରିନ୍ଦମ ରହି ରହି କହିଥିଲା ।

'ହଁ, ପ୍ରଭାବ ଅଛି', କହିଥିଲେ ଭାନୁପ୍ରକାଶ, 'କିନ୍ତୁ ତୁମେ ଜାଣ ସେ ରାଜ୍ୟ ଜୟ କରିବା ସ୍ତରର ନୁହେଁ । ସେ ଲୋକଙ୍କୁ ସଚେତନ କରିବା ସ୍ତରର, ମନରେ ସାହସ ଓ ଦମ୍ଭ ଆଣି ଦବା ସ୍ତରର । ଯେ ରାଜାମାନେ ଭଗବାନ ନୁହନ୍ତି । ସେମାନେ ଯାହା କହନ୍ତି ସେ ବେଦବାକ୍ୟ ନୁହେଁ । ଅନ୍ୟ କଥା କୁହାଯାଇ ପାରିବ । ରାଜ୍ୟର ଶକ୍ତି ରାଜାମାନଙ୍କ ପାଖରେ ନୁହେଁ, ସେମାନେ ଯେଉଁମାନଙ୍କୁ ଶାସନ କରୁଛନ୍ତି, ସେହି ପ୍ରଜାମାନଙ୍କ ପାଖରେ । ଏକଥା ଆମେ ବାରମ୍ବାର କହି ଆସୁଛୁ ।'

'କିନ୍ତୁ ଅତ୍ୟାଚାରୀ ରାଜାମାନଙ୍କୁ ଆପଣ ଯଦି ବାହାର କରି ନ ପାରିବେ, ଏସବୁ କଥା ଲୋକମାନଙ୍କୁ କହିବାର ଅର୍ଥ କଅଣ ?' ପଚାରିଥିଲା ଅରିନ୍ଦମ ।

'ଅର୍ଥ ଅଛି ।' ଭାନୁପ୍ରକାଶ କହିଥିଲେ, 'ସମୟ ଆସିବ ଯେତେବେଳେ ଲୋକମାନଙ୍କର ମିଳିତ ଇଚ୍ଛା ତା'ର ନିଜ ଶକ୍ତିରେ ଏହି ଅତ୍ୟାଚାରୀ ରାଜାମାନଙ୍କୁ ଶାସ୍ତି ଦେଇପାରିବ । ଆଜି ଜରାସନ୍ଧ, କାଲି କଂସ, ତା'ପରେ କିଏ ଆସିବ ଆମେ ଜାଣୁନା । କିନ୍ତୁ ଯିଏ ଆସୁ, ଅତ୍ୟାଚାରିତ ଲୋକମାନଙ୍କର ମିଳିତ ଇଚ୍ଛା ଆଗରେ ସେ ରହିପାରିବନି । ସେ ଯିବହିଁ ଯିବ, ଆମେ ସେହି ଦିନକୁ ହିଁ ଅପେକ୍ଷା କରିଛୁ ।'

ମହାକାଳଙ୍କୁ ଦର୍ଶନ ଅରିନ୍ଦମର ଏକ ବିଚିତ୍ର ଅଭିଜ୍ଞତା । କିନ୍ତୁ ଏହି ଘଟଣାର ଦୁଇ ଦିନ ପରେ ଆଉ ଏକ ବିଚିତ୍ର ଅଭିଜ୍ଞତା ତା ପାଇଁ ଅପେକ୍ଷା କରି ରହିଥିଲା । ସକାଳୁ ଭାନୁପ୍ରକାଶଙ୍କ ଠାରୁ ଖବର ପାଇ ସେ ତାଙ୍କ ପାଖକୁ ଚାଲି ଆସିଥିଲା । ସମୟ ପ୍ରାୟ ମଧ୍ୟାହ୍ନ ହେବ, ଓ ସେ ଶିବିରରେ ଖିଆପିଆ କାମ ସାରି ଦେଇଥିଲା । ଆଗ ଦିନ ପରି ସେଦିନ ମଧ୍ୟ ଭାନୁପ୍ରକାଶ ଓ ଭାନୁପ୍ରିୟ ସେହି ସନ୍ୟାସୀ ବେଶରେ ଶିବିର ପାଖକୁ ଆସି ତାକୁ ସାଙ୍ଗରେ ନେଇଯାଇ ଥିଲେ । ପାଖ ପଡ଼ିଆ ଭିତରେ କିଛି ବାଟ


Digitized by srujanika@gmail.com

ଗଲାପରେ ଅରିନ୍ଦମର ମନେହେଲା ଏ ତ ମହାକାଳଙ୍କ ମନ୍ଦିରକୁ ବାଟ । ସେ ସେହି କଥା ଭାନୁପ୍ରକାଶଙ୍କୁ ପଚାରିଲା, 'ଏ ତ ମହାକାଳଙ୍କ ମନ୍ଦିରକୁ ବାଟ । ଆମେ କ'ଣ ମହାକାଳଙ୍କୁ ଦର୍ଶନ କରିବାକୁ ଯାଉଛେ ? ଆପଣ କହୁଥିଲେ ଦିନରେ ଦର୍ଶନ ମିଳେନା ।'

'ନାଁ, ମିଳେ ନା', ଭାନୁପ୍ରକାଶ କହିଥିଲେ, 'ଆମେ ମହାକାଳଙ୍କ ଦର୍ଶନକୁ ଯାଉନୁ । ଅନ୍ୟ ପ୍ରକାର କାମ । ମନ୍ଦିରକୁ ଯିବା ବାଟରେ ସେହି ଦୋ'ଛକି କଥା ତୁମର ମନେ ଅଛି । ଆମେ ତ ମନ୍ଦିର ରାସ୍ତାରେ ଗଲେ, ଆଉ ଗୋଟାଏ ରାସ୍ତା ବାଁ ପାଖରେ ଥିଲା, ଦେଖିଚ । ଆମେ ସେହି ରାସ୍ତାରେ ଆଜି ଯିବା ।'

'ସେହି ରାସ୍ତା ?' ଅରିନ୍ଦମ କହିଲା, 'ସେ ପାଖରେ କ'ଣ ବାଟ ଅଛି ? କୁଆଡ଼କୁ ?'

'ହଁ, ଅଛି ।' ଭାନୁପ୍ରକାଶ କହିଥିଲେ, 'ଖୁବ୍ ଜଙ୍ଗଲିଆ ବାଟ, ଆଉ ଖୁବ୍ ଅଳ୍ପ ଲୋକ ବି ସେ ବାଟେ ଯିବା ଆସିବା କରନ୍ତି ।'

'ରକ୍ଷୀମାନେ ଥିବେ ତ ?' ଅରିନ୍ଦମ ପଚାରିଥିଲା ।

'ନାଁ ଦିନରେ ରକ୍ଷୀମାନେ ପ୍ରାୟ ରହନ୍ତିନି । ସେମାନେ ସେହି ମହାକାଳଙ୍କୁ ଦର୍ଶନ କରିବା ସମୟରେ ହିଁ ରହନ୍ତି । ଆଉ ଯଦିବା ଥିବେ, ଆମର କିଛି ଅସୁବିଧା ନାହିଁ । ସେମାନେ ଆମକୁ ସବୁ ଜାଣନ୍ତି ।'

ସେଦିନ ସନ୍ଧ୍ୟାର ଅନ୍ଧକାରରେ ଯେଉଁ ରାସ୍ତା ଅପରିଚିତ ଓ ଭୀତିପ୍ରଦ ମନେ ହେଉଥିଲା, ଦିନରେ ସେହି ରାସ୍ତା ମନେହେଲା ଖୁବ୍ ଭୀତିପ୍ରଦ ନୁହେଁ । ଜଙ୍ଗଲ ଅଛି, ଗଛସବୁ ଠେଲିଠାଲି ହୋଇ ଛିଡ଼ା ହୋଇଛନ୍ତି, ଗଛର ପତ୍ର ଓ ଡାଳସବୁ ବେଶ ଲଗାଲଗି ଗହଳି ହୋଇ ରହିଛି । କିନ୍ତୁ ରାସ୍ତାରୁ ଛାଡ଼ି ଛାଡ଼ି । ଗଛ ସବୁ କଟାହୋଇ ରାସ୍ତାକୁ ପରିଷ୍କାର କରାହୋଇଛି, ଚୌଡ଼ା କରାଯାଇଛି । ସାଧାରଣ ଭାବରେ ଚାଲି ଚାଲି ଯିବା କ୍ଳାନ୍ତିକାରକ ନୁହେଁ, ଆରାମପ୍ରଦ । 'ଏହି ରାସ୍ତାରେ ଜରାସନ୍ଧ ତା ରଥରେ ବସି ଅନେକ ସମୟରେ ମହାକାଳଙ୍କ ଦର୍ଶନକୁ ଆସେ ?' ଭାନୁପ୍ରକାଶ କହିଲେ, 'ସେଇଥିପାଇଁ ରାସ୍ତାକୁ ପ୍ରଶସ୍ତ ଓ ପରିଷ୍କାର ରଖାଯାଇଛି ।'

'ଜରାସନ୍ଧଙ୍କର କ'ଣ ମନ୍ଦିରକୁ ଯିବାର ଅନ୍ୟ ବାଟ ଅଛି ?' ଅରିନ୍ଦମ ପଚାରିଥିଲା ।

'ହଁ, ଅଛି' ଭାନୁପ୍ରକାଶ କହିଥିଲେ, 'ପାହାଡ଼ ଭିତରେ ସୁଡ଼ଙ୍ଗ ବାଟ । ସେ ବାଟରେ ଜରାସନ୍ଧ ନିଜେ ଯାଏ, ଏକା ଏକା, ଚାଲି ଚାଲି । ଆଉ କାହାରି ଯିବାର ଅନୁମତି ନାହିଁ । ଶୁଣାଯାଏ ସେ ବାଟ ତନ୍ତ୍ରସିଦ୍ଧ ଯୋଗିନୀମାନେ ବ୍ୟବହାର କରନ୍ତି ।


Digitized by srujanika@gmail.com

ଜରାସନ୍ଧ ଛଡ଼ା ଆଉ ଯିଏ ଯିବ ତା'ର ମୃତ୍ୟୁ ନିଶ୍ଚିତ । ଅରିନ୍ଦମର ଦେହ ଶୀତେଇ ଉଠିଲା । ଜରାସନ୍ଧ ବିଷୟରେ ସେ ଯେତେ ଯେତେ ଶୁଣୁଛି ତା'ର ସେତେ ସେତେ ବିଶ୍ୱାସ ହେଉଛି ଯେ ସେ ଏକ ଅଦ୍ଭୁତ ସମ୍ରାଟ । କେବଳ ଆର୍ଯ୍ୟାବର୍ତ୍ତ ନୁହେଁ, ମଣିଷ ଜାତିର ଶତ୍ରୁ, ତା'ର ନିଜର ରାକ୍ଷସ ସୈନ୍ୟଙ୍କ ପରି ନିଜେ ରାକ୍ଷସ, ଅନୀତି, ଅନ୍ୟାୟ ଅଧର୍ମ । ଭାନୁପ୍ରକାଶ ଅରିନ୍ଦମ ମୁହଁକୁ ଚାହିଁ ଅଳ୍ପ ହସିଲେ । କିଛି କହିଲେ ନାହିଁ । ଖାଲି କହିଲେ, 'ହଉ ଆସ, ଆଗରେ ଦୋ'ଛକି, ଆମ ରାସ୍ତା ବଦଳିଯିବ ।'

ଅରିନ୍ଦମ ରାତିରେ ଦୋ'ଛକି ଜାଗାଟିକୁ ଦେଖିଥିଲା । ଦିନରେ ମନେହେଲା ବେଶ୍ ବଡ଼ ଜାଗା । ଗୋଲେଇ କରି ଚାରିପାଖ ଅରମା ଓ ଗଛବୃକ୍ଷ କଟାଯାଇ ଗୋଟିଏ ପ୍ରଶସ୍ତ ଜାଗା ଖୋଲିଦିଆ ଯାଇଛି । ମନ୍ଦିରକୁ ଯିବା ବାଟ ସ୍ପଷ୍ଟ । କିଛି ବାଟ ପରେ ପଥର କଟା ହୋଇ ପାହାଚକୁ ପାହାଚ ଉପରକୁ ଯିବା ପାଇଁ ବାଟ କରିଦିଆ ଯାଇଛି । ସେଦିନ ସନ୍ଧ୍ୟାରେ ଅରିନ୍ଦମର ମନ ତନ୍ଦ୍ରାଛନ୍ନ ହୋଇ ଯାଇଥିଲା । ସେ କେତେ ପାହାଚ ଚଢ଼ି କେତେ ବାଟ ଗଲା କିଛି ଚେତନା ନ ଥିଲା । କିନ୍ତୁ ଦିନରେ ସେ ଦେଖୁଚି ନା ବେଶି ବାଟ ନୁହେଁ । ଖୁବ୍ ବେଶି ପାହାଚ ପ୍ରାୟ ୪୦, ୫୦ ହେବ । ପାହାଚଗୁଡ଼ିକ ଚୌଡ଼ା, ଲମ୍ବା ଲମ୍ବା, ସମତଳ ଓ ଚିକ୍କଣ । ମନ୍ଦିରର ମଣ୍ଡପ ସ୍ପଷ୍ଟ ଦିଶୁଛି । ମନ୍ଦିରର ଖମ୍ବ ସବୁ ବି । ଭାବିଲା ମନ୍ଦିରକୁ ଯିବ କି ? ଭାନୁପ୍ରକାଶ ତା' ହାତକୁ ଟାଣି ଧରିଲେ, କହିଲେ - 'ନାଁ, ରକ୍ଷୀ ଅଛନ୍ତି । ସେ ପାଖକୁ ଦେଖ । ଏ ଯିବା ସମୟ ନୁହେଁ ।' ଅରିନ୍ଦମକୁ ବିବ୍ରତ ଲାଗିଲା । ତା' ହେଲେ ଯିବା କୁଆଡ଼େ ? ଭାନୁପ୍ରକାଶ ତା' ହାତ ଧରି ଗୋଲେଇ ଛକର ଗୋଟାଏ କଣକୁ ଗଛ ଗହଳି ଭିତରକୁ ଟାଣି ନେଲେ । ପଛେ ପଛେ ଭାନୁପ୍ରିୟ । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ଗଛ ଗହଳି ଠିକ୍ । କିନ୍ତୁ ରାସ୍ତା କାହିଁ ?

'ଅଛି', ଭାନୁପ୍ରକାଶ କହିଲେ, 'ଜଙ୍ଗଲ ସରୁ ରାସ୍ତା । ଗଛ ଗହଳି ଭିତରେ । ମୁଁ ଆଗେ ଆଗେ ଯାଉଛି । ତୁମେ ମୋ' ପଛେ ପଛେ ଆସ । ସବା ପଛରେ ଭାନୁପ୍ରିୟ ଆସିବେ । ମୋତେ ଠିକ୍ ଲକ୍ଷ୍ୟ କରି ଆସ । ଏ ପାଖ ସେ ପାଖ ହବନି । କି ଭୟ କରିବନି । ଏଠି ଆଲୁଅ ଅଛି, ଆଉ କିଛି ବାଟ ପରେ ଆଲୁଅ ଚାଲିଯିବ । ଗଛ ତଳେ ତଳେ ପୂରା ଅନ୍ଧାର । ତୁମେ ମୋ' କାନ୍ଧକୁ ଜୋର୍‌ରେ ଧରିବ । ଯା' ଇଚ୍ଛା ତା ଘଟୁ ମୋତେ ଛାଡ଼ିବନି । ପଛରୁ ତୁମକୁ ଭାନୁପ୍ରିୟ ଧରିଥିବେ ।' ସେଇଆ ହେଲା । କିଛି ବାଟ ପରେ ବିରାଟ ବିରାଟ ଗଛ ତଳେ ସୂର୍ଯ୍ୟ କୁଆଡ଼େ ଅଦୃଶ୍ୟ ହୋଇଗଲା । ଅଳ୍ପ ଅଳ୍ପ ଅନ୍ଧାର, ତା'ପରେ ଅମାବାସ୍ୟାର ଅନ୍ଧକାର ପରି ନିରନ୍ଧ୍ର ଅନ୍ଧକାର । ଆଖି ଦି'ଟା ସମ୍ପୂର୍ଣ୍ଣ ଅକାମୀ ହୋଇଗଲା । କେବଳ ହାତ ସ୍ପର୍ଶରେ ସେ

ବୁଝୁଛି ଆଗେ ଆଗେ, ତା' ଦେହକୁ ଲାଗି ଲାଗି, ଆସ୍ତେ ଆସ୍ତେ, ଭାନୁପ୍ରକାଶ ଚାଲିଚନ୍ତି । ଆଉ ପଛେ ପଛେ ଭାନୁପ୍ରିୟ, ସେ ବି ଦେହକୁ ଦେହ ଲାଗି, ତାକୁ ଜୋର୍‌ରେ ଧରିଛନ୍ତି । ହଠାତ୍ ଫଡ଼ଫଡ଼ କରି ଉପରେ କିଏ ଉଡ଼ିଗଲା । ଡାହାଣ ପାଖରେ, ପ୍ରାୟ ଦେହକୁ ଘସି ହୋଇ, କିଏ ଡେଇଁ ପଡ଼ିଲା । ସେ କ'ଣ କହିବାକୁ ଯାଉଥିଲା । ଭାନୁପ୍ରିୟ ପଛରୁ ତା କାନରେ ମୁହଁ ଲଗେଇ ଫିସ୍ ଫିସ୍ କରି କହିଲେ, 'କିଛି କୁହନା, ଚୁପ୍‌ଚୁପ୍ ଚାଲ ।' ବାଁ ପାଖରେ କିଏ ହଠାତ୍ ବିକଟାଳ ଶବ୍ଦ କରି ହସି ଉଠିଲା । ସେ ହସର କର୍‌କର୍ ଶବ୍ଦଟା ଅରିନ୍ଦମର ମନେହେଲା ଯେପରି ସାରା ଜଙ୍ଗଲରେ ବ୍ୟାପିଗଲା । ତା ପଛକୁ ପଛକୁ କୁଆଁ କୁଆଁ ଶବ୍ଦ, ଗୋଟାଏ ଛୋଟ ଛୁଆ ଯେମିତି କାନ୍ଦୁଛି ଓ ତା' ପରେ ପରେ ଗଛକୁ ଗଛ କିଏ ଯେମିତି ଡେଇଁ ଡେଇଁ ଚାଲିଗଲେ । ଅରିନ୍ଦମ ସାରା ଦେହ ଥଣ୍ଡା ହୋଇଗଲା । ପଛରୁ ଭାନୁପ୍ରିୟଙ୍କର ସେହି ଫିସ୍ ଫିସ୍ ଶବ୍ଦ - 'ଭୟ କରନା ।' ହଠାତ୍ ସେ ଅନ୍ଧାରକୁ ଖିନ୍‌ଭିନ୍ କରି ଅତି ପାଖରେ କିଏ ଯେମିତି ଡାକ ଛାଡ଼ିଲା - 'କିଏ ? କିଏ ?' ଆଉ ସେ ଡାକ ଆଗ ପଛ ଚାରିଆଡ଼େ ଖେଳିଗଲା । ସାଙ୍ଗେ ସାଙ୍ଗେ ବିଜୁଳି ମାରିଲା ପରି ଚକ୍ ଚକ୍ ଆଲୁଅ, ଝଣ ଝଣ ଶବ୍ଦ, ତା'ର ମନେହେଲା ସେମାନଙ୍କୁ ଯେପରି କିଏ ଶୂନ୍ୟେ ଶୂନ୍ୟେ ଉଡ଼େଇ ନେଇ ଚାଲିଛି । ନାଁ ତ, ସେମାନେ ଆଗ ପରି ଚାଲିଛନ୍ତି, ସେ ଆଗପରି ଭାନୁପ୍ରକାଶଙ୍କ କାନ୍ଧକୁ ଧରିଛି, ଆଉ ତା କାନ୍ଧ ଭାନୁପ୍ରିୟ ଧରିଛନ୍ତି । ସେ ଶୁଣିଲା ଭାନୁପ୍ରକାଶ କ'ଣ ମନ୍ତ୍ର ପଢୁଛନ୍ତି, ଆସ୍ତେ ଆସ୍ତେ, ନିବାତ ପ୍ରଦୀପ ପରି ତାଙ୍କ ଦେହ ସିଧା ହୋଇ ଯାଇଛି, ଆଉ ତାଙ୍କ ଦେହରୁ ଜ୍ୟୋତିର ଉତ୍ତାପ ତା ଦେହକୁ ଖେଳିଯାଉଛି, ଓ ତା'ର ଥଣ୍ଡା ଦେହ ଉତ୍ତପ୍ତ ହୋଇଉଠୁଛି । ହଠାତ୍ ନଈପାଣି ଭିତରକୁ ଠେଲିହେଲା ପରି ସେ ଠେଲି ହୋଇଗଲା । ମୁହୂର୍ତ୍ତକରେ ଅନ୍ଧାର କଟିଗଲା । ଅପରାହ୍ନ ସୂର୍ଯ୍ୟର ନିର୍ମଳ, ସ୍ନେହଶୀଳ, ପରିପୂର୍ଣ୍ଣ ଆଲୋକରେ ସେ ବୁଡ଼ିଗଲା । 'ଅରିନ୍ଦମ'- ଭାନୁପ୍ରକାଶଙ୍କର ସ୍ନେହର ଡାକ । ସେ ଶୁଣିଲା ସେ କହୁଛନ୍ତି - 'ଅରିନ୍ଦମ, ଆଖି ମେଲା କର । ଦେଖ, ଆମେ କୋଉଠିକି ଆସିଲେ ।'

ବାସ୍ତବିକ ସେମାନେ କୋଉଠିକି ଆସିଲେ ? ସେ ଆଖି ମେଲାକରି ଯାହା ଦେଖିଲା ନିଜ ଆଖିକି ବିଶ୍ୱାସ କରି ପାରିଲା ନାହିଁ । ସେମାନେ ପାହାଡ଼ ଢାଲୁରେ, ପାହାଡ଼ର ପ୍ରାୟ ମଝାମଝି ଜାଗାରେ ଛିଡ଼ା ହୋଇଛନ୍ତି । ସେମାନେ ଯେଉଁ ଅନ୍ଧାର ଜଙ୍ଗଲ ଭିତରେ ଦେଇ ଆସିଲେ ସେ ଜଙ୍ଗଲ ଆଉ ନାହିଁ, ପଛରେ ରହିଲାଣି । ଆଉ କିଛି ବାଟ ଗଡ଼ିଗଲେ ସେମାନେ ପୂରା ତଳ ସମତଳକୁ ଗଡ଼ିଯିବେ । ବାଟ ନାହିଁ, କିନ୍ତୁ ଚଲାବାଟ ଅଛି । ଲୋକ କିଛି କିଛି, ଜଙ୍ଗଲକୁ ବୋଧହୁଏ କାଠିକୁଟା ନେବାକୁ

ଆସିଥିଲେ, ଫେରୁଛନ୍ତି । ସେ ପଛକୁ ଚାହିଁଲା, ନାଁ ମନ୍ଦିରର ଚିହ୍ନବର୍ଣ୍ଣ ନାହିଁ । ଜଙ୍ଗଲ ପଛରେ ରହିଲାଣି । କିନ୍ତୁ ସାମ୍ନାରେ ଏ କଅଣ ? ସେ କାଠ ପରି ସେଇଠି ଛିଡ଼ା ହୋଇଗଲା । ଭାନୁପ୍ରକାଶ ବା ଭାନୁପ୍ରିୟ କଅଣ କହୁଛନ୍ତି ତା କାନରେ ପଶିଲା ନାହିଁ । ସେ ଦେଖୁଥିଲା ତଳ ସମତଳର ବିସ୍ତୃତି - ଏ ଦିଗ୍‌ବଳୟରୁ ସେ ଦିଗ୍‌ବଳୟ । ବିରାଟ ଆକାଶ ଉଜ୍ଜ୍ୱଳ ଚାନ୍ଦୁଆ ପରି ଉପରୁ ଝୁଲିକରି ରହିଛି । ଅପରାହ୍ନର ସୂର୍ଯ୍ୟ ଲାଲ ହୋଇ ପଶ୍ଚିମକୁ ଢଳି ପଡ଼ିଲାଣି । ଦୂରରେ ନଈ । କିଏ ଯେପରି ଗୋଟାଏ ପାଖର ସାବଜା ଦିଗ୍‌ବଳୟ ଭିତରୁ ଆଉ ପାଖର ସାବଜା ଦିଗ୍‌ବଳୟ ଭିତରକୁ ଗୋଟାଏ ଅଙ୍କାବଙ୍କା ମୋଟା ଗାର ଟାଣି ଦେଇଛି । ଆଉ ସେ ନଈ କୂଳେ କୂଳେ ଛୋଟ ବଡ଼ ଗଛର ଧାଡ଼ି, ପଟା ପଟା କିଆରି, ସବୁଜ ଓ ଲାଲ ରଙ୍ଗର କ୍ଷେତ ସବୁ, ଛୋଟ ଛୋଟ କୁଡ଼ିଆ ଘର, ଗୋଟା ଗୋଟା, ପୁଣି କିଛି କିଛି ଏକାଠି, ଆଉ ସେ କୁଡ଼ିଆ ଘର ଭିତରୁ ବୁଲି ବୁଲି ଧୂଆଁ ଉଠୁଚି, ଲୋକ ଚଳପ୍ରଚଳ ହେଉଛନ୍ତି, କ୍ଷୀଣ ହେଲେ ବି ଘଣ୍ଟା ଧ୍ୱନି ଭାସି ଆସୁଛି । ଅରିନ୍ଦମ ମନରେ ମଥୁରାର ଛବି ଭାସି ଉଠିଲା - ମଥୁରାର ଗଛଲତା, ବଗିଚା, ପ୍ରଶସ୍ତ ରାସ୍ତା, ସୁନ୍ଦର ସୁନ୍ଦର କୋଠା, ଯମୁନାର ନୀଳ ପାଣି, ଯମୁନାର ଦି ପାଖର ଗଛ ସବୁ, ଯମୁନା ସେ ପାରି ଗୋପ ଜଙ୍ଗଲ, ସାରାଦିନ ଅସଂଖ୍ୟ ଚଢ଼େଇଙ୍କର ଆତଯାତ, ରାତିରେ ଜନ୍ତୁଜନ୍ତାଙ୍କର ଚମକେଇ ଦେଲାପରି ଡାକ । ମଥୁରାକୁ ସେ ଭଲ ପାଏ, ଯମୁନାକୁ, ଗୋପକୁ, ସବୁ । କିନ୍ତୁ ଏ ଯା ଦେଖୁଛି ଅଲଗା । ଏଥିରେ ଉତ୍ତେଜନା ନାହିଁ, ଅଛି ଶାନ୍ତ, ସ୍ଥିର ଆନନ୍ଦ । ଏକ ପରିପୂର୍ଣ୍ଣ ଆନନ୍ଦରେ ତା'ର ଦେହ, ମନ ଯେପରି ପ୍ଲାବିତ ହୋଇଯାଉଛି । ଅରିନ୍ଦମ ଯାହା ଦେଖିଲା ଭାବି ନ ଥିଲା ଦେଖିବ ବୋଲି, ବିଶେଷ କରି ଜରାସନ୍ଧ ରାଜ୍ୟରେ, ଆଉ ସେ ଘୋର ଅନ୍ଧାର ଭୂତପ୍ରେତ ଜଙ୍ଗଲ ଭିତର ଦେଇ ଆସିଲା ପରେ । ଏ ଅଭାବିତ । ନଈ, ଗଛ, ବୃକ୍ଷ, ଫସଲର କିଆରି, ଛୋଟ ଛୋଟ କୁଡ଼ିଆ, ଦୂର ଦୂର ଗାଁ, ବିସ୍ତୀର୍ଣ୍ଣ ଆକାଶ, ଆଲୋକ ଓ ରଙ୍ଗର ଅପୂର୍ବ ଖେଳ, ଚାରିପାଖରେ ଅସଂଖ୍ୟ ଅସଂଖ୍ୟ ପକ୍ଷୀର ଧାଡ଼ି - ପାହାଡ଼ର ଢାଲୁରୁ ଠିକ୍ ଗୋଟିଏ ଛବି ପରି । ସେ ମୁଗ୍ଧ ହୋଇ ଚାହିଁ ରହିଲା ।

ଭାନୁପ୍ରକାଶ ପ୍ରଥମେ କହିଲେ, 'ଅରିନ୍ଦମ, ଆମେ ବର୍ତ୍ତମାନ ପାହାଡ଼ ଢାଲୁରୁ ଓହ୍ଲେଇ ସେଇ ଜାଗାକୁ ଯିବା, ତମକୁ ବହୁତ ଭଲ ଲାଗିଲା ବୋଧେ । ଭଲ ଲାଗିବା କଥା ତ । ଆଚାର୍ଯ୍ୟ ସତ୍ୟକାମଙ୍କ ଆଶ୍ରମ, ଏ ଅଞ୍ଚଳରେ ବହୁତ ଜଣାଶୁଣା । ଆଚାର୍ଯ୍ୟ ସତ୍ୟକାମଙ୍କୁ ସମସ୍ତେ ସମ୍ମାନ କରନ୍ତି । ଏପରିକି ଜରାସନ୍ଧ ବି । ମୁଁ ଚାହୁଁଥିଲି ତୁମେ ମଥୁରା ଫେରିବା ଆଗରୁ ଆଚାର୍ଯ୍ୟଙ୍କ ସହିତ ପରିଚିତ ହେବା ଦରକାର । ସେହି ଯୋଗୁ ଆଣିଲି ।'

ଆଚାର୍ଯ୍ୟ ସତ୍ୟକାମ ! ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ଆଚାର୍ଯ୍ୟ ସତ୍ୟକାମଙ୍କ ନାଁ ସେ ବାପାଙ୍କ ପାଖରୁ ଶୁଣିଛି । ସେ ତାଙ୍କୁ ବହୁତ ପ୍ରଶଂସା କରନ୍ତି । ବାପାଙ୍କ ମତରେ ତାଙ୍କ ପରି ଆଚାର୍ଯ୍ୟ ଆର୍ଯ୍ୟାବର୍ତ୍ତରେ ଖୁବ୍ ବେଶି ନାହାନ୍ତି । ସେ ଜ୍ଞାନୀ, ତପସ୍ୱୀ, ସାଧକ, ପୁଣି ତୀବ୍ର ବାସ୍ତବବାଦୀ । ସାଧାରଣ ଲୋକଙ୍କ ସହିତ ତାଙ୍କର ବହୁତ ଭଲ ସମ୍ପର୍କ ।

ଅରିନ୍ଦମ ଭାନୁପ୍ରକାଶଙ୍କ ଆଡ଼କୁ ବୁଲି ପଡ଼ିଲା । କହିଲା – 'ଆଚାର୍ଯ୍ୟ ସତ୍ୟକାମଙ୍କ ନାଁ ମୁଁ ବାପାଙ୍କ ପାଖରୁ ଶୁଣିଛି । ସେ ତାଙ୍କୁ ବହୁତ ପ୍ରଶଂସା କରନ୍ତି । କିନ୍ତୁ ସେ ଯେ ଜରାସନ୍ଧଙ୍କ ରାଜ୍ୟରେ ଅଛନ୍ତି, ଆଉ ତାଙ୍କ ପାଖକୁ ଯିବାକୁ ହେଲେ ଏମିତି ଅସୁବିଧା ବାଟ ଦେଇ ଯିବାକୁ ହୁଏ, ଏ ଧାରଣା ମୋର ନ ଥିଲା ।'

'ନାଇଁ, ନାଇଁ', ଭାନୁପ୍ରକାଶ କହିଲେ – 'ବାଟ ଠିକ୍ ଅଛି । ଆଶ୍ରମକୁ ବାଟ ଅନ୍ୟ ଆଡ଼େ, ହେଇ ଯେ ଦେଖୁଛ ନଈ, ନଈ ଉପର ଦେଇ, ଆମେ ସେହିବାଟେ ଫେରିବା ।'

ସେମାନେ ଆସ୍ତେ ଆସ୍ତେ ପାହାଡ଼ର ଢାଲୁରେ ତଳକୁ ଓହ୍ଲେଇଲେ । ଦୂରରୁ ଯେଉଁ ଆଶ୍ରମ ଛବି ପରି ଦିଶୁଥିଲା ପାଖ ପାଖ ହେବାରୁ ବହୁ ଜିନିଷ ସ୍ପଷ୍ଟ ହୋଇ ଦିଶିଲା । ଅରିନ୍ଦମର ମନେହେଲା ପାହାଡ଼ ଉପରୁ ଆଶ୍ରମ ଛୋଟ ଆଶ୍ରମ ପରି ମନେ ହେଉଥିଲେ ବି, ପାଖ ହେଲାରୁ ଆଶ୍ରମର ଚୌହଦି ଯେ ବେଶ ବଡ଼ ତା ବୁଝିହେଲା । ଘରଦ୍ୱାର ଖୁବ୍ ଛୋଟ ନୁହେଁ । ବଡ଼ ବଡ଼ ଘର ଅନେକ ରହିଚି । ଗଛବୃକ୍ଷ ବି ଅନେକ । ଲୋକ ଗହଳି ବେଶୀ ନୁହେଁ, କିନ୍ତୁ ଗହଳି ଅଛି, ଲୋକଙ୍କର ଯିବା ଆସିବା ଲାଗି ରହିଛି । ଗଳାର ହାର ପରି ଯେଉଁ ନଈଟା ଦିଶୁଥିଲା, ସେ ବି ଦୂରକୁ ଘୁଞ୍ଚିଗଲାଣି, ମନେହେଉଛି ବେଶ୍ ଦୂର । ଗାଈମାନେ ବୁଲାବୁଲି କରି ଘାସ ପତ୍ର ଖାଉଛନ୍ତି । ଘୋଡ଼ା ବି କିଛି ବୁଲୁଛନ୍ତି, ସାଙ୍ଗରେ ସଇସ ।

ଭାନୁପ୍ରକାଶ କହିଲେ, 'ଯେଉଁ ନଈ ପାହାଡ଼ ଉପରୁ ଦେଖୁଥିଲ, ସେ ନଈ ଏଠୁ ବେଶ୍ ଦୂର । ପାହାଡ଼ରୁ ନଈ, ଏ ପୂରା ଅଞ୍ଚଳଟା ହିଁ ଆଶ୍ରମ । ମୋଟାମୋଟି ଜରାସନ୍ଧ ରାଜ୍ୟ ଭିତରେ ହେଲେ ବି ଜରାସନ୍ଧ ଏ ଅଞ୍ଚଳଟାକୁ ବିଶେଷ ଆସେ ନା । ଆଚାର୍ଯ୍ୟଙ୍କ ସାଙ୍ଗରେ ତା'ର ସାଧାରଣ ସମ୍ପର୍କ, ବନ୍ଧୁତା ବିଶେଷ ନାହିଁ, କି ଶତ୍ରୁତା ବି ନାହିଁ । ତେବେ ସତ୍ୟକାମଙ୍କ ଆଶ୍ରମ ଉପରେ ଜରାସନ୍ଧର ନଜର ଅଛି । ଆଚାର୍ଯ୍ୟ ସେକଥା ଜାଣନ୍ତି, ଆଉ ସେ ବି ସାବଧାନ ଅଛନ୍ତି ।'

ଟିକିଏ ରହି ଭାନୁପ୍ରକାଶ ପୁଣି କହିଲେ, 'ଏଇ କିଛି ଆଗରେ ଯୋଉ ଖୋଲା, ବଡ଼ ଘର ଦେଖୁଛ ଆଚାର୍ଯ୍ୟ ସେଇଠି ରହନ୍ତି । ସାମ୍ନାରେ ଯଜ୍ଞ ବେଦୀ । ଆଉ ସେ

କଡ଼କୁ ଧାଡ଼ି ଧାଡ଼ି ଘରେ ଶିଷ୍ୟମାନେ ଓ ଶିକ୍ଷାର୍ଥୀମାନେ ଅଛନ୍ତି । ଆଉ ହେଇ ସେପାଖ ଖୋଲା ଜାଗାରେ ଆଚାର୍ଯ୍ୟ ରୋଗୀମାନଙ୍କୁ ଭେଟନ୍ତି ଓ ସେମାନଙ୍କୁ ଔଷଧ ଦିଅନ୍ତି । ଆଉ ଟିକେ ସେ ପାଖ ଖୋଲା ପଡ଼ିଆରେ ସେ ଶିକ୍ଷାର୍ଥୀମାନଙ୍କୁ ଅସ୍ତ୍ର ଶିକ୍ଷା ଦିଅନ୍ତି ।'

'ଅସ୍ତ୍ର ଶିକ୍ଷା ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ', ଭାନୁପ୍ରକାଶ କହିଲେ, 'ଆଚାର୍ଯ୍ୟ ସତ୍ୟକାମ ଦେବତାମାନଙ୍କ ପାଇଁ ଯଜ୍ଞ କରନ୍ତି, ରୋଗୀମାନଙ୍କର ସେବା କରନ୍ତି, ଖାଲି ଆଶ୍ରମରେ ନୁହେଁ, ରୋଗୀମାନଙ୍କୁ ଦେଖିବାକୁ ସେ ଆଶ୍ରମ ବାହାରେ ଗାଁ ଗଣ୍ଡାକୁ ବି ଯାଆନ୍ତି । ସେ ଖାଲି ଛୁଇଁ ଦେଲେ ରୋଗ ଭଲ ହୋଇଯିବ ଏ ବିଶ୍ୱାସ ଶହ ଶହ ରୋଗୀଙ୍କର । ତା' ଛଡ଼ା ସାରା ମଗଧରୁ, ମଗଧ ବାହାରୁ ବହୁ ରାଜ୍ୟରୁ ଲୋକ ଆସନ୍ତି ଅସ୍ତ୍ର ଶିକ୍ଷା କରିବା ପାଇଁ ।'

'ଅସ୍ତ୍ର ଶିକ୍ଷା ?' ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ ଯାଇନାହିଁ, 'ଏ କଥା ଜରାସନ୍ଧ ଜାଣନ୍ତି ?'

'ହଁ, ଜରାସନ୍ଧ ଜାଣେ । ଆଚାର୍ଯ୍ୟ ସତ୍ୟକାମଙ୍କର ଲୁଚାଛପା କିଛି ନାହିଁ । ଜରାସନ୍ଧ ମଝିରେ ମଝିରେ ତା'ର ସେନାପତିମାନଙ୍କୁ ପଠାଏ ଯୁଦ୍ଧର ନୂଆ ନୂଆ କୌଶଳ ଶିଖିବା ପାଇଁ । ମଗଧରୁ, ମଗଧ ବାହାରୁ ରାଜପୁତ୍ରମାନେ ବି ଆସନ୍ତି । ଏ ବିଷୟରେ ସତ୍ୟକାମଙ୍କର ନାଁ ଡାକ । ସେ ଭଗବାନ ପର୍ଶୁରାମଙ୍କର ଶିଷ୍ୟ ଥିଲେ ଓ ତାଙ୍କଠାରୁ ଅସ୍ତ୍ର ବିଦ୍ୟା ଶିକ୍ଷା କରିଥିଲେ ।' ଅରିନ୍ଦମର ଯେପରି ଆଶ୍ଚର୍ଯ୍ୟ ହେବାର ଶେଷ ନାହିଁ । କହିଲା 'ଭଗବାନ ପର୍ଶୁରାମଙ୍କର ଶିଷ୍ୟ ? ଭୀଷ୍ମ ତ ତାଙ୍କର ଶିଷ୍ୟ ।'

'ହଁ', ଭାନୁପ୍ରକାଶ କହିଲେ, 'ଆଚାର୍ଯ୍ୟ ସତ୍ୟକାମଙ୍କର ଭୀଷ୍ମଙ୍କ ସହିତ ଭଲ ପରିଚୟ । ଭୀଷ୍ମଙ୍କର ଇଚ୍ଛା ଥିଲା ସତ୍ୟକାମ ଆଶ୍ରମ କରି ହସ୍ତିନାରେ ରହନ୍ତୁ । କିନ୍ତୁ ବ୍ୟାସଦେବ ମନାକଲେ । କହିଲେ ସତ୍ୟକାମ ମଗଧରେ ଆଶ୍ରମ କରିବେ । ତାଙ୍କର କାମ ସେଠି, ତଥାପି ଭୀଷ୍ମ ରାଜି ନ ଥିଲେ । ସେ ଜରାସନ୍ଧକୁ ଜାଣିଥିଲେ, ଓ ଜରାସନ୍ଧ ଉପରେ ତାଙ୍କର ବିଶ୍ୱାସ ନ ଥିଲା । ତାଙ୍କର ଭୟ ଥିଲା ଜରାସନ୍ଧ ସତ୍ୟକାମଙ୍କର କ୍ଷତି କରିପାରେ । ବ୍ୟାସଦେବ ଦମ୍ଭ ଦେଲେ । କହିଲେ କିଛି ହବନି । ସେ ନିଜେ ଆସି ଏହି ଜାଗାରେ ସତ୍ୟକାମଙ୍କର ଆଶ୍ରମ ଠିକ୍ କଲେ, ମହାକାଳଙ୍କ ମନ୍ଦିରର ଠିକ୍ ତଳକୁ । ସେ ନିଜେ ଯଜ୍ଞ କଲେ, ସ୍ଥାନକୁ ପବିତ୍ର କଲେ । ମହାକାଳ ମନ୍ଦିରରୁ ଏଠିକି ଆସିବାକୁ ଯେଉଁ ସିଧା ବାଟ, ଯେଉଁବାଟେ ତୁମେ ଆସିଲ, ସେ ବାଟକୁ ମହାକାଳଙ୍କୁ ଉତ୍ସର୍ଗ କରି ବନ୍ଦ କରିଦେଲେ, ମନ୍ଦ ଉଦ୍ଦେଶ୍ୟ ରଖି ସେ ବାଟେ କେହି ଆସି ପାରିବନି । ଏ ପାଖରେ, ନଈ ବାଟେ ନୂଆ ବାଟ ଖୋଲିଦେଲେ । ସେ ବାଟକୁ ବି ଯଜ୍ଞ କରି ଶୁଦ୍ଧପୂତ କରିଦେଲେ । ଏ ବାଟେ ବି ମନ୍ଦ ଉଦ୍ଦେଶ୍ୟ ରଖି

କେହି ଆସି ପାରିବନି । ଆଉ ଜରାସନ୍ଧ ପାଇଁ ସମ୍ପୂର୍ଣ୍ଣ ବନ୍ଦ କରିଦେଲେ । ସେ କୋଉ ବାଟେ ହେଲେ ବି ଆଶ୍ରମକୁ ଆଦୌ ଆସି ପାରିବ ନାହିଁ, କୌଣସି ଭାବରେ ବି ସତ୍ୟକାମଙ୍କର କୌଣସି କ୍ଷତି କରି ପାରିବ ନାହିଁ ।'

'ଜରାସନ୍ଧ ଏସବୁ କଥା ଜାଣନ୍ତି ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ, 'ଜରାସନ୍ଧ ଚତୁର ଲୋକ । ସେ ବୁଝିଲା ଆଚାର୍ଯ୍ୟ ସତ୍ୟକାମଙ୍କୁ ଶତ୍ରୁ ଭାବରେ ନ ଭାବି ବନ୍ଧୁ ଭାବରେ ଗ୍ରହଣ କରିବା ଭଲ । ବିଶେଷ କରି ବ୍ୟାସଦେବଙ୍କୁ ସେ ଶତ୍ରୁ କରିବାକୁ ଚାହୁଁ ନ ଥିଲା କି ବ୍ୟାସଙ୍କର ବିଧିବିଧାନ ବିରୁଦ୍ଧରେ ଯିବାର କ୍ଷମତା ତା'ର ନ ଥିଲା । ତେଣୁ ସେ ସତ୍ୟକାମଙ୍କ ଆଶ୍ରମ ପ୍ରତିଷ୍ଠା କରିବାକୁ ସାହାଯ୍ୟ କଲା ଓ ତା'ର ଲୋକମାନେ ଆସି ଆଶ୍ରମର ଘର ଓ ରାସ୍ତାସବୁ ତିଆରି କରିଦେଲେ । ତା' ସାଙ୍ଗେ ସାଙ୍ଗେ ଏକଥା ବି ପ୍ରଚାର ହୋଇଗଲା ଯେ ଜରାସନ୍ଧ କେତେ ଉଦାର, କେତେ ଭଲ, ରାଜ୍ୟରେ ମୁନି ଋଷିମାନଙ୍କର ଆଶ୍ରମ ପ୍ରତିଷ୍ଠା କରିବାରେ କେତେ ଆଗ୍ରହୀ । ଚାଲାକ ଲୋକ ତ । ଯାହା କାମ କଲେ ବି କିଛି ଫାଇଦା ଆସିବା ଦରକାର ।' ଭାନୁପ୍ରକାଶ ହସିଲେ ।

'ଜରାସନ୍ଧ କେବେ କିଛି କ୍ଷତି କରି ନାହାନ୍ତି ? ତାଙ୍କ ପରି ଦୁଷ୍ଟ ଲୋକ, ଏ ତ ତାଜୁବ କଥା... ?' ଅରିନ୍ଦମ କହିଲା ।

'ତାଜୁବ କଥା ନିଶ୍ଚୟ', ଭାନୁପ୍ରକାଶ କହିଲେ – 'ଜରାସନ୍ଧ ଚୁପ୍‌ଚାପ୍ ବସିବା ଲୋକ ନୁହେଁ, ତା ରାଜ୍ୟରେ ଆଚାର୍ଯ୍ୟ ସତ୍ୟକାମଙ୍କର ଆଶ୍ରମ ! ଏ ତ ତା'ର ଶକ୍ତି, ତା'ର ଅଧିକାର ପ୍ରତି ଆହ୍ୱାନ । ସେ ଦି'ତିନିଥର ଆଶ୍ରମକୁ ପଶିବାକୁ ଚେଷ୍ଟା କରିଛି, ଏ ବାଟେ, ତୁମେ ଯେଉଁ ବାଟେ ଆସିଲ, ମହାକାଳଙ୍କର ପାହାଡ଼ର ଜଙ୍ଗଲ ଭିତର ଦେଇ ଓ ସେ ବାଟେ ବି, ନଈ ଟପି । କିନ୍ତୁ କୌଣସି ବାଟେ ବି ସେ ଆଶ୍ରମ ଭିତରକୁ ଆସି ପାରିଲା ନାହିଁ । ଅଦ୍ଭୁତ, ଅଦ୍ଭୁତ କଥା ସବୁ ଘଟିଲା । ପ୍ରଥମ ଥର ସେ ତା'ର ଲୋକମାନଙ୍କୁ ନେଇ ପାହାଡ଼ର ଢାଲୁ ବାଟେ ଆସିବାକୁ ଚେଷ୍ଟା କରୁଥିଲା । ସେଇ ଯେ ମନ୍ଦିରକୁ ଯିବା ବାଟରେ ଦୋ'ଛକି ଦେଖିଲ, ସେଇଠୁ ଜରାସନ୍ଧ ତା'ର କିଛି ବିଶ୍ୱସ୍ତ ଲୋକଙ୍କୁ ନେଇ ଜଙ୍ଗଲ ରାସ୍ତାରେ ପଶିଥିଲା । ବାସ୍, ଜରାସନ୍ଧକୁ ପଶିବା ସମସ୍ତେ ଦେଖିଛନ୍ତି । କିନ୍ତୁ ତା'ପରେ ଯାହା ଘଟିଲା ଯେମିତି ଆଶ୍ଚର୍ଯ୍ୟଜନକ ସେମିତି ରହସ୍ୟମୟ ।'

'ରହସ୍ୟମୟ ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ, 'ଆକାଶରେ ଟୋପାଏ ହେଲେ ମେଘ ନ ଥିଲା । ଚାହୁଁ ଚାହୁଁ ମୋଟା ମୋଟା କଳା କଳା ମେଘ ସବୁ ମାଡ଼ି ଆସିଲା । ଜଙ୍ଗଲ


Digitized by srujanika@gmail.com

ଭିତରୁ ବିକଟାଳ ଶବ୍ଦସବୁ ଶୁଣାଗଲା । ଦିପହର ଆଲୁଅ ସବୁ କୁଆଡ଼େ ଲୁଚିଗଲା, କିଏ ଯେମିତି ଆଲୁଅଟାକୁ ପୂରା ଗିଳି ପକେଇଛି, ସେମିତି...'

'ତାପର...'

'ତାପର ? ତାପର ଯାହା ହବାକଥା ସେଇଆ ହେଲା । ଜରାସନ୍ଧ ବସିଥିବା ଘୋଡ଼ାଟା ଭେଟଣା ହେଲାପରି ବାହାରକୁ ଡେଇଁ ପଳେଇ ଆସିଲା । ତା' ଉପରେ ଜରାସନ୍ଧ ଅଧା ଝୁଙ୍କି ପଡ଼ିଛି, ପୂରା ଅଚେତ । ତା' ସାଙ୍ଗରେ ଯାଇଥିବା ଲୋକମାନଙ୍କ ଅବସ୍ଥା ଆହୁରି ଖରାପ । କେତେକ ଖଣ୍ଡିଆ ଖାବରା ହୋଇ ଘୁସୁରି ଘୁସୁରି ପଳେଇ ଆସିଲେ । ଆଉ କେତେକ ଆଦୌ ଆସିପାରିଲେ ନାହିଁ । ସେମାନଙ୍କର କ'ଣ ହେଲା ଜଣାନାହିଁ ।'

'କାହିଁକି ଏମିତି ହେଲା ?' ଅରିନ୍ଦମ ପଚାରିଲା ।

'ସେ କଥା କିଏ କହିବ ? ପରେ ଜରାସନ୍ଧ ବି ସଠିକ୍ କିଛି କହି ପାରିଲା ନାହିଁ । ଖାଲି କହିଲା କିଛି ବାଟ ଗଲାପରେ ଗୋଟାଏ ପ୍ରଚଣ୍ଡ ଅନ୍ଧାର ଭିତରେ ଲୋକ ଅଣନିଃଶ୍ୱାସୀ ହୋଇ ବୁଡ଼ିଲା ପରି ସେମାନେ ବୁଡ଼ିଗଲେ, ଆଉ ଦୁମ୍‌ଦାମ୍ ମାଡ଼ ମାରିଲା ପରି ଗୋଟାଏ ପ୍ରଚଣ୍ଡ ଅଟ୍ଟହାସ୍ୟ ତାଙ୍କ ଉପରେ ଅଜାଡ଼ିହୋଇ ପଡ଼ିଲା । ତା ପରେ କଅଣ ଘଟିଲା ତାକୁ ଜଣାନାହିଁ । ସେ ଅଚେତ ହୋଇଗଲା । କିନ୍ତୁ ଗୋଟାଏ କଥା ହେଲା । ତା'ପରେ ସେ ସତ୍ୟକାମଙ୍କ ଆଶ୍ରମକୁ ସେବାଟେ ଆସିବାକୁ ଆଉ ଚେଷ୍ଟା କଲାନାହିଁ । ସେ ବାଟ ପଡ଼ିଗଲା । ଏପରିକି କାଠିକୁଟା ଗୋଟେଇବାକୁ ସେ ବାଟେ ଯେଉଁମାନେ ଜଙ୍ଗଲକୁ ଆସୁଥିଲେ ସେମାନେ ବି ଆଉ ଆସିଲେ ନାହିଁ ।'

'କିନ୍ତୁ ଆପଣମାନେ ତ ଆସିଲେ ?' ଅରିନ୍ଦମ ପଚାରିଲା ।

ଭାନୁପ୍ରକାଶ ହସିଲେ, 'ସେ ଅନ୍ୟ କଥା । ଆମ ପାଇଁ ଗୁରୁଦେବଙ୍କର ଆଶୀର୍ବାଦ ଅଛି । ଆମର କିଛି ହବ ନି ।'

'ଜରାସନ୍ଧ କଅଣ ସେତିକିରେ ଛାଡ଼ିଦେଲେ ?' ଅରିନ୍ଦମ ପଚାରିଲା,

'ନାଁ', ଭାନୁପ୍ରକାଶ କହିଲେ, 'ସେ ପୁଣି ଥରେ ଚେଷ୍ଟା କଲା, କିନ୍ତୁ ସେ ଜଙ୍ଗଲ ବାଟରେ ନୁହେଁ । ସେ ଦ୍ୱିତୀୟ ଥର ବୁଲି, ନଈ ଟପି ଆସିବାକୁ ଠିକ୍ କଲା । କିନ୍ତୁ ଏଥର ଆହୁରି ଅଦ୍ଭୁତ କଥା ଘଟିଲା ।'

'ଅଦ୍ଭୁତ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ' ଭାନୁପ୍ରକାଶ କହିଲେ, 'ଏ ଯେଉଁ ନଈ ଦେଖୁଛ ଏ ପାହାଡ଼ର ଗୋଟାଏ ପାଖରୁ ବାହାରି ଆର ପାଖକୁ ବୁଲି ଚାଲିଯାଇଛି । ଗଳାରେ ଚନ୍ଦ୍ରହାର ପରି ଏ ପାହାଡ଼କୁ ଘେରି ରହିଚି । ଆଶ୍ରମକୁ ଆସିବାକୁ ହେଲେ ନଈ ପାରିହୋଇ ଆସିବାକୁ


Digitized by srujanika@gmail.com

ହେବ । ସମସ୍ତେ ସେଇଆ କରନ୍ତି ଓ ଏଇଟା ହିଁ ସାଧାରଣ ବାଟ - ଆଶ୍ରମକୁ ଆସିବା ପାଇଁ ଓ ଆଶ୍ରମରୁ ଯିବା ପାଇଁ । ଜରାସନ୍ଧ ତା ଲୋକମାନଙ୍କୁ ଘେନି ନଈବାଟେ ଆସିବାକୁ ଠିକ୍ କଲା । ନଈ ପ୍ରାୟ ଶୁଖିଲା । ନଈ ମଝିରେ ପାଣିର ଗୋଟାଏ ଛୋଟ ଧାର । ଜରାସନ୍ଧ ଓ ତା ପଛେ ପଛେ ତା ଲୋକମାନେ ଘୋଡ଼ା ଉପରେ ବସି ନଈ ଭିତରକୁ ଗଡ଼ିଲେ । ଆଉ ଠିକ୍ ସେତିକି ବେଳକୁ ଅଘଟଣ ଘଟିଲା ।'

'ଅଘଟଣ ?'

'ହଁ । ଠିକ୍ ସେତିକିବେଳକୁ ଶୁଖିଲା ନଈରେ ହୁ ହୁ ହୋଇ ପ୍ରଚଣ୍ଡ ବଢ଼ି ମାଡ଼ି ଆସିଲା ।'

'ବଢ଼ି ?'

'ହଁ, ବଢ଼ି । ଖରାଦିନେ, ଶୁଖିଲା ନଈରେ । ଯାହା କେବେ ଶୁଣା ନ ଥିଲା କି ଦେଖା ନ ଥିଲା । ସେ ବଢ଼ିର ପ୍ରବଳ ସୁଅରେ ଜରାସନ୍ଧ ଓ ତା' ଲୋକମାନେ କିଏ କୁଆଡ଼େ ଭାସିଗଲେ । ବୁଡ଼ି ମଲେ ଅନେକ । ଜରାସନ୍ଧ ନିଜେ, ପ୍ରାୟ କୋଡ଼ିଏ ଯୋଜନ ତଳେ, ଆଉ ଗୋଟାଏ ଜଙ୍ଗଲ ପାଖରେ, ନଈ କଡ଼ରେ ଅଚେତ ହୋଇ ଅଧାମରା ଅବସ୍ଥାରେ ପଡ଼ିଥିଲା । ଲୋକମାନେ ତାକୁ ଟେକାଟେକି କରି ରାଜପ୍ରାସାଦକୁ ଫେରେଇ ନେଲେ । ଏ ଘଟଣାର ବହୁତ ଦିନ ପର୍ଯ୍ୟନ୍ତ ଜରାସନ୍ଧ ରାଜପ୍ରାସାଦରୁ ପ୍ରାୟ ବାହାରିଲା ନାହିଁ । କିନ୍ତୁ ଏହା ପରେ ଦୁଇଟି କଥା ଘଟିଲା । ଜରାସନ୍ଧ ଓ ତା'ର ଲୋକମାନେ କେହିହେଲେ ଆଚାର୍ଯ୍ୟ ସତ୍ୟକାମଙ୍କ ଆଶ୍ରମକୁ ଆଉ ଆସିବାକୁ ଚେଷ୍ଟା କଲେ ନାହିଁ । ଆଉ ସତ୍ୟକାମଙ୍କ ଆଶ୍ରମ ଯେ ଜରାସନ୍ଧ ପାଇଁ ଅତ୍ୟନ୍ତ ଭୟଙ୍କର ସ୍ଥାନ ଏକଥା ଚାରିଆଡ଼େ ପ୍ରଚାର ହୋଇଗଲା ।'

'ଏ ଘଟଣା ପରେ ଜରାସନ୍ଧ କ'ଣ ଚୁପଚାପ ରହିଲେ' - ଅରିନ୍ଦମ ପଚାରିଲା । 'ହଁ, ପ୍ରାୟ', ଭାନୁପ୍ରକାଶ କହିଲେ, 'କିନ୍ତୁ କହିଛି ଜରାସନ୍ଧ ଅତ୍ୟନ୍ତ ଚତୁର ଲୋକ । ସେ ଏ ଘଟଣାକୁ ଭିନ୍ନ ରଙ୍ଗ ଦେଲା । ପ୍ରଚାର କରାଗଲା ଯେ ଆଚାର୍ଯ୍ୟ ସତ୍ୟକାମ ଜ୍ଞାନୀ, ଗୁଣୀ ଲୋକ, ତାଙ୍କର ଆଶ୍ରମ ମଗଧ ପାଇଁ ଗର୍ବ । ତେଣୁ ସମ୍ରାଟ ଜରାସନ୍ଧ ତାଙ୍କ ଆଶ୍ରମ ପାଇଁ ସବୁ ସୁବିଧା କରିଦେବେ । ତା' ସାଙ୍ଗେ ସାଙ୍ଗେ ଆଉ ଗୋଟିଏ କଥା ଘଟିଲା । ଜରାସନ୍ଧ ଆହୁରି ବେଶି ନିଷ୍ଠୁର ନିର୍ମମ ହୋଇ ଉଠିଲା ଓ ସାଧାରଣ ଲୋକଙ୍କ ପ୍ରତି ତା'ର ଅତ୍ୟାଚାର ବହୁତ ବେଶି ବଢ଼ିଗଲା ।'

କଥା କହୁ କହୁ ସେମାନେ ପ୍ରାୟ ସତ୍ୟକାମଙ୍କ କୁଟୀର ପାଖକୁ ଚାଲି ଆସିଥିଲେ । କୁଟୀରଟି ବଡ଼, ବେଶ୍ ପରିଷ୍କାର ପରିଚ୍ଛନ୍ନ ଓ ଘରର ଦୁଇଟି ବଖରା ଚଳପ୍ରଚଳ ହେବା ପାଇଁ ପ୍ରଶସ୍ତ । ଘର ଚାରିପାଖରେ କିଛି ଖୋଲାଜାଗା, ଫୁଲ ଗଛ


Digitized by srujanika@gmail.com

ଓ ଅଳ୍ପ ଛାଡ଼ି ଯଜ୍ଞ କରିବା ପାଇଁ ବେଦୀ ଓ ଆଉ ଅଳ୍ପ ଦୂରକୁ ଲାଗି ଲାଗି ଆଠ ଦଶ ବଖରା ଘର ଯେଉଁଠି ଶିକ୍ଷାର୍ଥୀମାନେ ରହନ୍ତି ଓ ଅନ୍ୟ ଅତିଥି ଅଭ୍ୟାଗତମାନେ ରାତିରେ ରହିଯାନ୍ତି । ଏସବୁ ଠାରୁ ଆଉ କିଚି ଦୂରରେ ଗଛ ଗହଳି ଭିତରେ ଗୋଟିଏ ଛୋଟ ମନ୍ଦିର । ଭାନୁପ୍ରକାଶ କହିଲେ ମନ୍ଦିର ଲକ୍ଷ୍ମୀନାରାୟଣଙ୍କର, ଓ ମନ୍ଦିରକୁ ଲାଗି ପୂଜକମାନଙ୍କର ରହିବା ପାଇଁ ଜାଗା ଓ ରୋଷେଇବାସ କରିବାର ସ୍ଥାନ । ସବୁ ମିଶେଇ, ଅରିନ୍ଦମର ମନେ ହେଲା, ଗୋଟିଏ ସୁନ୍ଦର ପରିବେଶ, ଶାନ୍ତି ଓ ଆନନ୍ଦ ଯେପରି ଗଛବୃକ୍ଷରୁ ଝରି ପଡୁଛି ।

ଜଣେ କିଏ ଆସି ଖବର ଦେଲା ଆଚାର୍ଯ୍ୟ ଧ୍ୟାନରେ ବସିଛନ୍ତି । ଅପେକ୍ଷା କରିବାକୁ ହେବ । ଭାନୁପ୍ରକାଶଙ୍କୁ ଦେଖି ଅନେକ ଲୋକ ଆସି ପହଞ୍ଚିଲେ । ଅରିନ୍ଦମର ମନେହେଲା ସେ ସମସ୍ତେ ଭାନୁପ୍ରକାଶଙ୍କର ପୂର୍ବ ପରିଚିତ । ସେ ସେଇକଥା ଭାନୁପ୍ରକାଶଙ୍କୁ ପଚାରିଲା – 'ଏ ସମସ୍ତେ ଆପଣଙ୍କର ପରିଚିତ ?'

ଭାନୁପ୍ରକାଶ ଚାରିପାଖକୁ ଅନେଇଲେ । କହିଲେ – 'ହଁ, ପରିଚିତ । ଏ ସମସ୍ତେ ଆମ ଲୋକ ।'

'ଆପଣଙ୍କ ଲୋକ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ, ଆଚାର୍ଯ୍ୟ ସତ୍ୟକାମ ବି ଆମ ଲୋକ । ଏ ଆଶ୍ରମକୁ ଯେତେ ଶିକ୍ଷାର୍ଥୀ ଆସନ୍ତି, ଆମେ ତାଙ୍କ ଭିତରୁ ଲୋକ ସଂଗ୍ରହ କରୁ । ସତ୍ୟକାମ ସେ କାମରେ ସାହାଯ୍ୟ କରନ୍ତି । ଆଉ ଯେଉଁମାନଙ୍କୁ ବଛାଯାଏ ସେମାନଙ୍କୁ ସତ୍ୟକାମ ବିଶେଷ ଭାବରେ ଅନ୍ୟ ଶିକ୍ଷା ଦିଅନ୍ତି । ଅସ୍ତ୍ରଶିକ୍ଷା ସେଇମାନଙ୍କୁ ହିଁ ଦିଆଯାଏ ।'

ଗୋଟାଏ ଚିନ୍ତା ଅରିନ୍ଦମ ମୁଣ୍ଡରେ ଖେଳି ବୁଲୁଥିଲା । ସେ ସେହିକଥା ଭାନୁପ୍ରକାଶଙ୍କୁ କହିଲା – 'ବ୍ୟାସଦେବ ସତ୍ୟକାମଙ୍କୁ ଏହିଠାରେ ଆଶ୍ରମ କରିବାକୁ ନିର୍ଦ୍ଦେଶ ଦେଲେ କାହିଁକି ? ସେ ତ ଜାଣନ୍ତି ଜରାସନ୍ଧ ଯେତେ ହେଲେ ବି ସବୁଦିନେ ଶତ୍ରୁ ହୋଇ ରହିବେ । ସେ ତ ରାଜ୍ୟର ରାଜା । ତାଙ୍କୁ ଶତ୍ରୁ କରି ଆଶ୍ରମର ସାଧାରଣ କାମ ଚାଲିବ କେମିତି ? ଆଶ୍ରମ ତ ଅନ୍ୟ ଯେ କୌଣସି ଜାଗାରେ ହୋଇପାରିଥାନ୍ତା ?'

'ତା ହୋଇ ପାରିଥାନ୍ତା ।' ଭାନୁପ୍ରକାଶ କହିଲେ, 'ଅନେକ ରାଜା ସତ୍ୟକାମଙ୍କୁ ତାଙ୍କ ରାଜ୍ୟକୁ ନେବା ପାଇଁ ଆଗ୍ରହୀ ଥିଲେ । ସତ୍ୟକାମଙ୍କର ଯୋଗ୍ୟତା ଓ ଗୁରୁଦେବଙ୍କର ସମର୍ଥନ, ଏ ଉଭୟ ଏକାଠି ପାଇବା ଦୁର୍ଲଭ । ଅନେକେ ଗୁରୁଦେବଙ୍କୁ ସେଥିପାଇଁ ସତ୍ୟକାମଙ୍କୁ ସେମାନଙ୍କ ରାଜ୍ୟକୁ ପଠେଇବାପାଇଁ ଅନୁରୋଧ କରିଥିଲେ । ଗୁରୁଦେବ ରାଜି ହେଲେନି । ସେ କେବଳ ଗୋଟିଏ କଥା କହିଥିଲେ –

ସତ୍ୟକାମ ମଗଧ ପାଇଁ ଉଦ୍ଦିଷ୍ଟ, ସେଇଠାରେ ହିଁ ତାଙ୍କର କାମ । ମୁଁ ବି ଗୁରୁଦେବଙ୍କୁ କହିଥିଲି । ମଗଧରେ ଜରାସନ୍ଧ ବିରୁଦ୍ଧରେ ଖୋଲାଖୋଲି ଆଶ୍ରମ କରିବା ନିଶ୍ଚୟ ବିପଦଜନକ । ଗୁରୁଦେବ ଯାହା କହିଥିଲେ ତା'ର ଗୂଢ଼ ଅର୍ଥ ମୁଁ ସେତେବେଳେ ବୁଝିପାରି ନ ଥିଲି, ବର୍ତ୍ତମାନ ବି ବୁଝିନାହିଁ ।'

ଅରିନ୍ଦମ ଉତ୍ସୁକ ହୋଇ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲା ।

ଭାନୁପ୍ରକାଶ ଟିକିଏ ଚୁପ କରିଗଲେ । ଭାନୁପ୍ରିୟଙ୍କ ମୁହଁକୁ ଚାହିଁଲେ । କହିଲେ, 'ଗୁରୁଦେବ ଯାହା କହିଥିଲେ, ସେକଥା ମୁଁ ଓ ଭାନୁପ୍ରିୟଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଆମେ ଉଭୟ ତା'ର ଠିକ୍ ଅର୍ଥ କ'ଣ ଜାଣୁ ନା । ବର୍ତ୍ତମାନ ତୁମକୁ କହୁଛି, ଶୁଣ ! ତୁମେ ଯଦି ବୁଝିପାରିବ ! ...ଗୁରୁଦେବ କହିଥିଲେ, ଭୟ କରନା, ଜରାସନ୍ଧ ଓ ସତ୍ୟକାମ କେହି କାହାର କ୍ଷତି କରି ପାରିବେ ନାହିଁ । ଉଭୟଙ୍କର ଜୀବନ ଗୋଟିଏ କାମ ପାଇଁ ଉଦ୍ଦିଷ୍ଟ – ଧର୍ମର ସଂସ୍ଥାପନା ।'

ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଲା । ଏ କି କଥା ? ସତ୍ୟକାମଙ୍କ ସହିତ ଧର୍ମର କଥା ହୁଏତ କୁହାଯାଇ ପାରିବ, କିନ୍ତୁ ଜରାସନ୍ଧ ? – ଧର୍ମ ଓ ଜରାସନ୍ଧ ! ଶୁଣିବାକୁ ବି ଆଶ୍ଚର୍ଯ୍ୟ ଲାଗୁଛି । ସେ ସେହି କଥା ଭାନୁପ୍ରକାଶଙ୍କୁ କହିଲା ।

ଭାନୁପ୍ରକାଶ କହିଲେ, 'ଗୁରୁଦେବଙ୍କ କଥାର ରହସ୍ୟ ମୁଁ ଆଜି ପର୍ଯ୍ୟନ୍ତ ବି ବୁଝି ପାରିନାହିଁ । ତୁମେ ଯାହା ଭାବୁଛ ମୁଁ ବି ସେହିକଥା ଭାବୁଛି । ଜରାସନ୍ଧ ସହିତ ଧର୍ମର ସମ୍ପର୍କ କ'ଣ ? ତା'ଦ୍ୱାରା ଧର୍ମର ସଂସ୍ଥାପନା କିପରି ହେବ ? ସେ ତ ଧର୍ମର ବିରୋଧୀ...' ହଠାତ୍ ଭାନୁପ୍ରକାଶ ରହିଗଲେ । ମୁହୂର୍ତ୍ତକ ପାଇଁ ତାଙ୍କର ଦୁଇ ଆଖି କେଉଁ ଦୂର ଆକାଶକୁ ଭାସିଗଲା । ତା'ପରେ ସେ କହିଲେ, 'ଅରିନ୍ଦମ, ଗୁରୁଦେବଙ୍କ କଥା କେବେ ମିଛ ହେବନି । ସେ ତ୍ରିକାଳଦର୍ଶୀ । ତାଙ୍କର ବିଚାର ଆମ ସମସ୍ତଙ୍କ ବିଚାର ଠାରୁ ଅଲଗା । ସେ ଯାହା କହିଲେ ସେ କଥା ଭାବ । ସେ କହିଲେ ଜରାସନ୍ଧ କିଛି କରିପାରିବ ନାହିଁ । ଖାଲି ସତ୍ୟକାମ ନୁହନ୍ତି, ଜରାସନ୍ଧର କେହି କିଛି କରିପାରିବେ ନାହିଁ, ଏକଥା ବି ସେ କହିଥିଲେ । ଜରାସନ୍ଧର ମୀମାଂସା କରିବା ପାଇଁ ଅପେକ୍ଷା କରିବାକୁ ପଡ଼ିବ, ଦୀର୍ଘ ଦିନ ଅପେକ୍ଷା କରିବାକୁ ପଡ଼ିବ ।'

ଅରିନ୍ଦମର ବିଜୁଳି ପରି ବାପାଙ୍କର ଗୋଟାଏ କଥା ମନେପଡ଼ି ଗଲା । ସେ କହିଥିଲେ ମଣିଷର ଶକ୍ତିରେ ସବୁ କଥା ସମ୍ଭବ ନୁହେଁ । ସେଥିପାଇଁ ଅନ୍ୟ ଶକ୍ତି ଆସିବ । ସେ ଶକ୍ତିକୁ ଅପେକ୍ଷା କର ।

ଭାନୁପ୍ରକାଶ କହୁଥାନ୍ତି – 'ଅରିନ୍ଦମ, ତୁମେ ବୋଧହୁଏ ବାପାଙ୍କ କଥା ଭାବୁଛ । ସେ ବି ତ୍ରିକାଳଦର୍ଶୀ । ମୋର ମନେହୁଏ ଆମେ ସେ ବିଷୟରେ ଏତେ

ଚିନ୍ତା କରିବା ନିରର୍ଥକ । ସେମାନେ ଠିକ୍ ବୁଝିଛନ୍ତି, ଠିକ୍ କଥା ହିଁ କହିଛନ୍ତି । ବିଭିନ୍ନ ଲୋକେ ବିଭିନ୍ନ ଭାବରେ ସେମାନଙ୍କର ନିଜ ନିଜ ଢଙ୍ଗରେ ଧର୍ମର ପ୍ରତିଷ୍ଠା ପାଇଁ ସାହାଯ୍ୟ କରନ୍ତି । ଆମେ କ'ଣ ସମସ୍ତଙ୍କର ସବୁ କଥା ବୁଝି ପାରିବା । ସତ୍ୟକାମଙ୍କର ଧ୍ୟାନ ବୋଧ ହୁଏ ସରିଆସିଲାଣି । ତାଙ୍କ ପାଖକୁ ଯିବା ଆଗରୁ ମୁଁ ତାଙ୍କ ବିଷୟରେ ଆଉ କିଛି କଥା ତୁମକୁ କହେ ।'

ଭାନୁପ୍ରକାଶ ସେଦିନ ସତ୍ୟକାମଙ୍କ ବିଷୟରେ ଅନେକ କଥା ଅରିନ୍ଦମକୁ କହିଥିଲେ । ପ୍ରଥମ କଥା ତାଙ୍କ ଘର ମଗଧରେ, ସେହି ଗିରିବ୍ରଜରେ, ତାଙ୍କର ଭାଙ୍ଗିଯାଇଥିବା ଘରର ଚିହ୍ନ ଏବେ ବି ସହର ଭିତରେ ରହିଛି । ସେ ପିଲାଦିନରୁ ବାପମା'ଙ୍କୁ ହରାଇ ଥିଲେ । କିନ୍ତୁ ପରେ ନିଜ ଚେଷ୍ଟାରେ ସେ ନିଜକୁ ପ୍ରତିଷ୍ଠା କରି ପାରିଥିଲେ । ପିଲାଦିନରୁ ତାଙ୍କର ପଢ଼ାପଢ଼ି ପ୍ରତି ଆଗ୍ରହ ଥିଲା । ମଗଧ ବାହାରେ, ପ୍ରାୟ କାମ୍ପିଲ୍ୟ ପାଖାପାଖି ଅଞ୍ଚଳରେ, ମହର୍ଷି ଜୈମିନିଙ୍କର ଜଣେ ଶିଷ୍ୟଙ୍କର ଆଶ୍ରମ ଥିଲା । ସେ ସେଠାରେ ବେଦ ଅଧ୍ୟୟନ କଲେ, ଶାସ୍ତ୍ର ଅଧ୍ୟୟନ କଲେ, ଯଜ୍ଞର ବିବିଧ ବିଧିବିଧାନ ଶିଖିଲେ, ଜଣେ ଉତ୍ତମ ଜ୍ଞାନୀ ଶିକ୍ଷାର୍ଥୀ ଭାବରେ ପରିଚିତ ହେଲେ ଓ ମଗଧରେ ନିଜର ଆଶ୍ରମ କରିବା ପାଇଁ ଗିରିବ୍ରଜ ଫେରି ଆସିଲେ । ଏହିଠାରେ ହିଁ ଗୋଳମାଳ ଆରମ୍ଭ ହେଲା । ସତ୍ୟକାମ ତରୁଣ ଲୋକ, ମନରେ ଯଥେଷ୍ଟ ଆଗ୍ରହ ଥିଲା । ସେ ଭାବିଥିଲେ ମଗଧରେ ବେଦ ଓ ଶାସ୍ତ୍ରର ପ୍ରଚାର ପାଇଁ ସେ କାମ କରିବେ । କିନ୍ତୁ ସେ ଜରାସନ୍ଧର ପ୍ରକୃତି ବିଷୟରେ ପ୍ରାୟ କିଛି ଜାଣି ନ ଥିଲେ । ସେ ଭାବିଥିଲେ ଜରାସନ୍ଧ ତାଙ୍କୁ ସାହାଯ୍ୟ କରିବେ । କିନ୍ତୁ ପ୍ରଥମ ପ୍ରତିରୋଧ ଜରାସନ୍ଧଙ୍କ ପାଖରୁ ଆସିଲା । ସେ ସତ୍ୟକାମଙ୍କୁ ନିଜର ଆଶ୍ରମ ମଗଧ ବାହାରକୁ ଉଠେଇ ନବାକୁ ଆଦେଶ ଦେଲେ । ସେତେବେଳକୁ ସତ୍ୟକାମ ବିବାହ ହୋଇ ସାରିଲେଣି, ଶିକ୍ଷାର୍ଥୀମାନଙ୍କୁ ନେଲେଣି ଓ ଆଶ୍ରମ କାର୍ଯ୍ୟ ପୂରା ଦମ୍‌ରେ ଆରମ୍ଭ କଲେଣି । ସେ ଜରାସନ୍ଧଙ୍କୁ ଅନୁରୋଧ କଲେ, ବୁଝେଇବାକୁ ଚେଷ୍ଟା କଲେ, ଓ ଶେଷରେ ପ୍ରତିବାଦ କଲେ । ତା'ପରେ ଆଉ ବେଶିଦିନ ଲାଗିଲା ନାହିଁ । ସତ୍ୟକାମଙ୍କର ଆଶ୍ରମ ଓ ତାଙ୍କର ଘରଦ୍ୱାର ସବୁ ଭାଙ୍ଗି ଦିଆଗଲା, ଶିକ୍ଷାର୍ଥୀମାନଙ୍କୁ ଘଉଡ଼େଇ ଦିଆଗଲା, ତାଙ୍କର ସ୍ତ୍ରୀଙ୍କୁ ଜରାସନ୍ଧଙ୍କର ଲୋକେ ହରଣଚାଳ କରି ନେଇଗଲେ ଓ ସତ୍ୟକାମ ଦେଶାନ୍ତରୀ ହେଲେ ।

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇଥିଲା ଯେ ଲୋକମାନେ କିଛି ପ୍ରତିବାଦ କଲେନି । ଭାନୁପ୍ରକାଶ କହିଥିଲେ, 'ଲୋକମାନେ ହୁଏତ ପ୍ରତିବାଦ କରିଥାନ୍ତେ । କିନ୍ତୁ ସତ୍ୟକାମ ସେସବୁ କରିବାକୁ ଦେଲେନି । ସେ ସେତେବେଳକୁ ଜରାସନ୍ଧର ପ୍ରକୃତ

ରୂପ ଦେଖି ସାରିଲେଣି । ଜରାସନ୍ଧର ଦୁର୍ଦ୍ଦାନ୍ତ, ନାରକୀୟ ଶକ୍ତି ଆଗରେ ଲୋକମାନଙ୍କର ପ୍ରତିବାଦର ମୂଲ୍ୟ କ'ଣ ? ଆଉ ସେ ପ୍ରତିବାଦ ଯେତେବେଳେ ସଂଗଠିତ ନୁହେଁ ।' ସତ୍ୟକାମ ଠିକ୍ ବୁଝିଥିଲେ ଭାନୁପ୍ରକାଶ କହିଲେ । ଜରାସନ୍ଧର ବିରୋଧ କରିବାକୁ ଅଧିକା ଶକ୍ତି ଦରକାର । ସେ ସେହି ଶକ୍ତି ସନ୍ଧାନରେ ମଗଧ ଛାଡ଼ି ଚାଲିଗଲେ । ସବୁ ଅତ୍ୟାଚାର ସତ୍ତ୍ୱେ ସତ୍ୟକାମଙ୍କର ମନର ବଳ ଅତୁଟ ଥିଲା । କିନ୍ତୁ ସେତିକି ଯଥେଷ୍ଟ ନୁହେଁ । ସେ ଆର୍ଯ୍ୟାବର୍ତ୍ତର ଅନେକ ରାଜାଙ୍କ ଠାରୁ ସାହାଯ୍ୟ ମାଗିଛନ୍ତି । ଅନେକ ବି ତାଙ୍କୁ ଯଥେଷ୍ଟ ସହାନୁଭୂତି ଦେଖେଇଛନ୍ତି । କିନ୍ତୁ କେହି ଜରାସନ୍ଧଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ସେମାନେ ବରଂ ସେମାନଙ୍କ ରାଜ୍ୟରେ ଆଶ୍ରମ କରିବାକୁ ସତ୍ୟକାମଙ୍କୁ ଅନୁରୋଧ କଲେ ।

'ସତ୍ୟକାମ ଆଶ୍ରମ କଲେ ?'

'ନାଁ,- ସତ୍ୟକାମ ତାଙ୍କର ପାରିବାରିକ ଅପମାନ ଭୁଲିପାରି ନ ଥିଲେ । ତାଙ୍କ ମନରେ ଗୋଟିଏ ଚିନ୍ତା, ସେ ଜରାସନ୍ଧ ଉପରେ କିପରି ପ୍ରତିଶୋଧ ନେବେ । ସେ ଅର୍ଦ୍ଧ ପାଗଳ ପରି ରାଜ୍ୟରୁ ରାଜ୍ୟ ଘୂରି ବୁଲିଲେ । ବହୁ ରାଜା ବହୁ ମୁନି ଋଷିଙ୍କୁ ସାକ୍ଷାତ କଲେ । ସେ ଦେଖିଲେ ସମସ୍ତେ ଜରାସନ୍ଧ ଭୟରେ ଭୟଭୀତ । ଏହିପରି ଅବସ୍ଥାରେ, ଦିନେ ଅବନ୍ତୀରେ ତାଙ୍କର ଗୁରୁଦେବ ବ୍ୟାସଦେବଙ୍କ ସହିତ ଦେଖା ହେଲା । ଗୁରୁଦେବ ସେତେବେଳେ ଅବନ୍ତୀରେ ଥାଆନ୍ତି । ତାଙ୍କର ଗହଣରେ ମୁଁ ବି ଥାଏ । ଦିନେ ସନ୍ଧ୍ୟା ଆହ୍ନିକ ପରେ ଗୁରୁଦେବ ମୋତେ ଡକେଇ ପଠେଇଲେ । ମୁଁ ଯାଇ ଦେଖେ ଯେ ଗୁରୁଦେବଙ୍କ ପାଖରେ ଆଉ ଜଣେ କିଏ ଅଛନ୍ତି । ମୋତେ ଗୁରୁଦେବ ବସିବାକୁ କହିଲେ, ଆଉ ସେ ଲୋକଙ୍କ ସହିତ ପରିଚୟ କରିଦେଲେ । ସେହି ହିଁ ସତ୍ୟକାମ । ପ୍ରଥମ ଦେଖାରେ ହିଁ ମୁଁ ଚମକି ଯାଇଥିଲି । ସତ୍ୟକାମ ଖାଲି ନିଆଁ ପରି ଜଳୁଥାନ୍ତି । ମୋର ମନେହେଲା ବଡ଼ ଅସ୍ଥିର, ବଡ଼ ଅତୃପ୍ତ ଆତ୍ମା । ଗୁରୁଦେବ ବିଶେଷ କିଛି କହିଲେ ନାହିଁ । ଖାଲି କହିଲେ – ଏ ସତ୍ୟକାମ, ମଗଧରୁ ଆସିଛନ୍ତି, ମଗଧରେ ତାଙ୍କ ଆଶ୍ରମ ଜରାସନ୍ଧ ଭାଙ୍ଗିଦେଇଛି । ସେ ଏଠି ଆମ ପାଖରେ ରହିବେ । ତୁମର କାମ ହେଲା ତୁମେ ତାଙ୍କ ପାଖରେ ରହିବ, ତାଙ୍କର ସୁବିଧା ଅସୁବିଧା ସବୁ ବୁଝିବ । ଆଉ ଆଜିଠୁଁ ଦଶଦିନ ପରେ, ପୂର୍ଣ୍ଣମୀରେ, ସନ୍ଧ୍ୟା ଆହ୍ନିକ ପରେ, ଉଭୟ ଆସି ମୋତେ ଦେଖା କରିବ । ବାସ୍, ସେତିକି । ଆମେ ଉଭୟ ଗୁରୁଦେବଙ୍କ ପାଖରୁ ଉଠି ଆସିଲୁ । ଆଉ ତା' ପରେ ଦୀର୍ଘ ଦଶଦିନ କାଳ ମୁଁ ସତ୍ୟକାମଙ୍କର ଛାୟା ପରି ତାଙ୍କର ପାଖେ ପାଖେ ରହିଲି ।'

'ପରିବର୍ତ୍ତନ ?'

'ହଁ, ସତ୍ୟକାମଙ୍କର ସେ କ୍ରୋଧ, ଅଶାନ୍ତି, ଅସ୍ଥିରତା ସବୁ ଚାଲିଗଲା । ଏପରିକି ଜରାସନ୍ଧ ବିରୁଦ୍ଧରେ ପ୍ରତିଶୋଧ ନେବାର ଯେଉଁ ପ୍ରବଳ ଇଚ୍ଛା ତା ବି ନ ଥିଲା । ଯେପରି ଜଣେ ଜ୍ଞାନଦୀପ୍ତ, ସମାହିତ, ଅତ୍ୟନ୍ତ ଧୈର୍ଯ୍ୟବାନ ବ୍ୟକ୍ତି । ମନେହେଲା କାହାରି ପ୍ରତି କିଛି ଅଭିଯୋଗ ନାହିଁ, ସେ ସବୁ ଅଭିଳାଷର ଊର୍ଦ୍ଧ୍ୱରେ । ଏହାହିଁ ପରିବର୍ତ୍ତନ । ଆମେ ଗୁରୁଦେବଙ୍କ ପାଖରେ ପହଞ୍ଚିଲୁ । ସେ ସତ୍ୟକାମଙ୍କୁ ଚାହିଁ ଅଳ୍ପ ହସିଲେ, କହିଲେ – ବସ । ଆମେ ବସିଲୁ । ଗୁରୁଦେବ ତାଙ୍କର ସନ୍ଧ୍ୟାର ସମସ୍ତ କାମ ସାରିଲେ ଓ ଯେତେବେଳେ ତାଙ୍କର ଶୋଇବାକୁ ଯିବାର ସମୟ ହେଲା ଓ ସମସ୍ତେ ଚାଲି ଗଲେଣି, ସେ ସତ୍ୟକାମଙ୍କୁ ପାଖକୁ ଡାକିଲେ ଓ ତାଙ୍କ ହାତକୁ ନିଜ ହାତରେ ଧରି କହିଲେ – ସତ୍ୟକାମ, ମୁଁ ଭଗବାନ ପର୍ଶୁରାମଙ୍କ ପାଖକୁ ଖବର ପଠେଇଛି । ସେ ଗୋମନ୍ତକରେ ଅଛନ୍ତି । ତୁମେ ତାଙ୍କ ପାଖକୁ ଚାଲିଯା, ସେ ତୁମକୁ ଅସ୍ତ୍ରଶିକ୍ଷା ଦେବେ । ତୁମେ ଅସ୍ତ୍ରଶିକ୍ଷା ସାରି ମୋ ପାଖକୁ ଫେରି ଆସିବ । ତା'ପରେ ମୋତେ ଚାହିଁ କହିଲେ – ଭାନୁପ୍ରକାଶ, ତୁମେ ପ୍ରସ୍ତୁତ ହୋଇ ରୁହ । ସତ୍ୟକାମ ଭଗବାନ ପର୍ଶୁରାମଙ୍କ ପାଖରୁ ଫେରିଲା ପରେ ମଗଧରେ ଆଶ୍ରମ କରିବେ । ଆଉ ତୁମେ ଉଭୟ ମଗଧରେ କାମ କରିବ । ଗୁରୁଦେବ ଉଠି ଛିଡ଼ାହେଲେ । ଆମେ ବି ଉଠି ଛିଡ଼ା ହେଲୁ । ଗୁରୁଦେବ ବୁଲିପଡ଼ି ତାଙ୍କର କୁଟୀରକୁ ଯିବା ଆଗରୁ ଆମ ଉଭୟଙ୍କୁ ଗୋଟାଏ ମୁହୂର୍ତ୍ତ ପାଇଁ ଚାହିଁଲେ, କହିଲେ – ଭାନୁପ୍ରକାଶ, ସତ୍ୟକାମ, ତୁମେ ଉଭୟ ଭାଗ୍ୟବାନ । ଧର୍ମ ସଂସ୍ଥାପନା ପାଇଁ ତୁମେ ଉଭୟ ନିମିତ୍ତ ହେବ । ଗୁରୁଦେବ ଶୋଇବାକୁ ଚାଲିଗଲେ । ସତ୍ୟକାମ ଭଗବାନ ପର୍ଶୁରାମଙ୍କ ପାଖକୁ ଚାଲିଗଲେ । ସେ ପର୍ଶୁରାମଙ୍କ ପାଖରୁ ଫେରିଲା ପରେ ଗୁରୁଦେବଙ୍କ ନିର୍ଦ୍ଦେଶରେ ହିଁ ଏହିଠାରେ ଆଶ୍ରମ ତିଆରି ହେଲା ।'

ଆଶ୍ରମର ମଝାମଝି ଜାଗାରେ ସତ୍ୟକାମଙ୍କର ରହିବା କୁଟୀର । ସାମ୍ନାରେ ଯଜ୍ଞବେଦୀ, ଚାରିପାଖରେ ଗଛ ଓ ଗଛର ଛାଇ । ପରିଷ୍କାର ପରିଚ୍ଛନ୍ନ । ଗଛ ତଳେ ଗୋଟିଏ ପ୍ରଶସ୍ତ ପିଣ୍ଡି ଉପରେ ସତ୍ୟକାମ ବସିଥାନ୍ତି । ଭାନୁପ୍ରକାଶ, ଭାନୁପ୍ରିୟ ଓ ଅରିନ୍ଦମ ସେହି ପିଣ୍ଡି ଉପରେ ସତ୍ୟକାମଙ୍କ ପାଖରେ ବସିଲେ । ପ୍ରଥମ ଦେଖାରେ ହିଁ ଅରିନ୍ଦମର ମନେହେଲା ଯେପରି ସେ ସତ୍ୟକାମଙ୍କୁ ବହୁ ଦିନରୁ ଜାଣେ । ସୁନ୍ଦର, ସୁଠାମ ଓ ସୁପୁଷ୍ଟ ଦେହ ଓ ଦେହର ମାଂସପେଶୀ । ଉଜ୍ଜ୍ୱଳ ଗୌରବର୍ଣ୍ଣ । ଶ୍ମଶ୍ରୁ ଗାଢ଼ କଳା ଓ କୁଞ୍ଚିତ । ଆଖିର ଜ୍ୟୋତି ତୀବ୍ର, ବିଦ୍ଧ କଲାପରି । କିନ୍ତୁ ସାରା ଦେହରୁ ଅନୁଭବ କରିହୁଏ ଯେପରି ଗୋଟାଏ ଶାନ୍ତ, ଶୀତଳ ଜ୍ୟୋତି ନିର୍ଗତ ହେଉଛି ଯାହା ଆନନ୍ଦ ଓ ପରିତୃପ୍ତି ଆଣେ ।

ସେ ପ୍ରଥମେ କହିଲେ, 'ଅରିନ୍ଦମ, ମୁଁ ତମର ବାପାଙ୍କୁ ଜାଣେ । ଜ୍ଞାନୀ, ଭକ୍ତ, ଅନମନୀୟ ବ୍ୟକ୍ତିତ୍ୱ । ବ୍ୟାସଦେବଙ୍କ ଆଶ୍ରମରେ ଆମର ପରିଚୟ ହୋଇଥିଲା । ଗୁରୁଦେବ ତାଙ୍କୁ ବୋଧହୁଏ ସବୁଠାରୁ ବେଶି ସ୍ନେହ କରୁଥିଲେ ଓ ଅନେକ ସମୟରେ ମୁଁ ଦେଖିଛି ଅନେକ ଘଟଣାରେ ଗୁରୁଦେବ ତାଙ୍କର ମତାମତ ପଚାରୁଥିଲେ । ତାଙ୍କର ଘଟଣା ବୁଝିବାର କ୍ଷମତା ଓ ଅର୍ନ୍ତଦୃଷ୍ଟି ମୋତେ ଅନେକ ସମୟରେ ବିସ୍ମିତ କରିଛି। ମୋ' ସହିତ ତାଙ୍କର ପ୍ରଥମ ପରିଚୟ କଥା ଶୁଣ । ମୁଁ ମଗଧରୁ କୁରୁକ୍ଷେତ୍ର ବ୍ୟାସଦେବଙ୍କ ଆଶ୍ରମକୁ ଯାଇଥାଏ । ମୋର ପାରିବାରିକ ଦୁର୍ବିପାକ ପରେ ମୋର ମାନସିକ ଅବସ୍ଥା ଭଲ ନ ଥାଏ । ଗୁରୁଦେବ ଭାନୁପ୍ରକାଶଙ୍କ ସହିତ ଯେମିତି ମୋର ପରିଚୟ କରେଇ ଦେଇଥିଲେ, ତୁମ ବାପାଙ୍କ ସହିତ ସେମିତି କରେଇଦେଲେ । ତୁମ ବାପା ସେତେବେଳେ କୁରୁକ୍ଷେତ୍ରରେ ଥାଆନ୍ତି । କହିବାକୁ ଗଲେ ମୋତେ ପ୍ରାୟ ସମ୍ପୂର୍ଣ୍ଣ ଭାବରେ ଗୁରୁଦେବ ତୁମ ବାପାଙ୍କ ଦାୟିତ୍ୱରେ ଛାଡ଼ିଦେଲେ ।

'ବାପା ଅନେକ ସମୟରେ ଆପଣଙ୍କ କଥା କହନ୍ତି' ଅରିନ୍ଦମ କହିଲା, 'ତାଙ୍କ କଥାରୁ ମନେ ହୁଏ ଆପଣ ବାପାଙ୍କର ଖୁବ୍ ଘନିଷ୍ଠ ଥିଲେ ।'

'ହଁ, ପ୍ରାୟ ଥିଲି ।' ସତ୍ୟକାମ କହିଲେ, 'ମଗଧ ଘଟଣା ମୋ ମନକୁ ପ୍ରାୟ ଶୂନ୍ୟ କରି ଦେଇଥିଲା । ବିଶେଷ କରି ସ୍ତ୍ରୀଙ୍କର ସ୍ମୃତି ଓ ତାଙ୍କୁ ହରଣଚାଳ କରି ଯେପରି ମାରି ଦିଆଗଲା ମୁଁ ଭୁଲି ପାରି ନ ଥିଲି । ଜରାସନ୍ଧ ପ୍ରତି ନିଷ୍ଫଳ କ୍ରୋଧ ମୋର ମନକୁ ଦିନରାତି ଅଚଳ କରି ରଖିଥିଲା । ସାରା ସଂସାର ପ୍ରତି ଗୋଟାଏ ତୀବ୍ର ବିରାଗରେ ମୁଁ ପ୍ରାୟ ସବୁ ସ୍ନେହ ଶ୍ରଦ୍ଧା ଭୁଲି ଯାଇଥିଲି । ଗୁରୁଦେବଙ୍କ ପାଖକୁ ଆସି ମୁଁ ଦୀର୍ଘ ସମୟ ଚୁପ୍‌ଚାପ୍ ବସି ରହେ । ଗୁରୁଦେବ କିଛି କହନ୍ତି ନାହିଁ । କିନ୍ତୁ ମଝିରେ ମଝିରେ ସେ ଯେଉଁ ସ୍ନେହଭରା ଆଖିରେ ମୋତେ ଚାହାନ୍ତି ସେଇତକ ମୋର ସାନ୍ତ୍ୱନା ଥିଲା । ଆଶ୍ରମରେ ସବୁବେଳେ ଯାଗଯଜ୍ଞ ଚାଲିଥାଏ । ସାରାଦିନ ବହୁ ଲୋକ ଗୁରୁଦେବଙ୍କ ପାଖକୁ ଆସନ୍ତି । ସାଧାରଣ ଲୋକେ, ରାଜକୀୟ ଅଧିକାରୀମାନେ, ଏପରିକି ରାଜା ମହାରାଜାମାନେ ବି । ପ୍ରତ୍ୟେକ ତାଙ୍କର ସମସ୍ୟା କହନ୍ତି, ଗୁରୁଦେବଙ୍କର ମତାମତ ଚାହାନ୍ତି, ନିର୍ଦ୍ଦେଶ ଚାହାନ୍ତି । ଗୁରୁଦେବ ଅଦ୍ଭୁତ । ମୁଁ ତାଙ୍କୁ କେବେ କ୍ଳାନ୍ତ ହେବାର, ବା ବିରକ୍ତ ହେବାର ଦେଖିନି । ସବୁବେଳେ ସେ ସମସ୍ତଙ୍କୁ ହସି ହସି କଥା କହନ୍ତି, ସାନ୍ତ୍ୱନା ଦିଅନ୍ତି, ଠିକ୍ ବାଟ ବତେଇ ଦିଅନ୍ତି । ସେସବୁ ଦେଖି ଦେଖି ମୋର ଦୁଃଖର ଭାର ମୋର ଅଜାଣତରେ କମି ଆସୁଥିଲା । ମନେ ହେଉଥିଲା ଏହି ସଚରାଚର ପରିବ୍ୟାପ୍ତ ଦୁଃଖ ଆଗରେ ମୋର ଦୁଃଖ କେତେ ତୁଚ୍ଛ । ଏହି ସମୟରେ ତୁମ ବାପାଙ୍କ ସହିତ ଦେଖା । ମୋର ମନେହେଲା ମୁଁ ଯେପରି ତାଙ୍କୁ

ଦୀର୍ଘଦିନ ଧରି ଜାଣେ । ସେ ମୋ' ବିଷୟରେ ସବୁ ଖବର ଜାଣିଥିଲେ । ମଝିରେ ମଝିରେ ସେ ମୋତେ ମୋର ପୁରାତନ କଥାସବୁ କହିବାରେ ଉତ୍ସାହିତ କରନ୍ତି । ମୁଁ କହେ, ସେହି ସେହି କଥାକୁ ବାରମ୍ବାର କହେ । ତାଙ୍କର ଅସୀମ ଧୈର୍ଯ୍ୟ । ସେ ମୋ' କଥାକୁ ବାରମ୍ବାର ଶୁଣନ୍ତି, ସେହି କଥାକୁ ପୁଣି ପୁଣି କହିବାକୁ ଉତ୍ସାହିତ କରନ୍ତି । ଏପରି ଦିନ ନାହିଁ ଯେଉଁଦିନ ମୋ' ଦୁଃଖକଥା ମୁଁ ତାଙ୍କୁ ନ କହିଛି ଓ ସେ ସେକଥା ଆଗ୍ରହରେ ନ ଶୁଣିଛନ୍ତି । ଆମେ ଉଭୟ ଗୁରୁଦେବଙ୍କ ପାଖକୁ ଯାଉ, ଚୁପ୍‌ଚାପ୍ ବସିରହୁ, ସେଠୁ ଉଠିଆସି କଥାବାର୍ତ୍ତା କରୁ । ତା'ପରେ ଗୋଟାଏ ଆଶ୍ଚର୍ଯ୍ୟ କଥା ଲକ୍ଷ୍ୟ କଲି - ଦୁଃଖ କମି ଆସୁଛି । କଥା କହିବା ସମୟରେ ଯେଉଁ ତୀବ୍ର ବେଦନା ଆସୁଥିଲା ସେ ଆଉ ଆସୁନାହିଁ । ଯେପରି ମୁଁ ମୋ ନିଜ ଜୀବନର କଥା କହୁନାହିଁ, ଆଉ କେଉଁ ଦୂରବର୍ତ୍ତୀ ଘଟଣାର କଥା କହୁଛି, ଯେଉଁଥିରେ ସୁଖ ଅଛି ଦୁଃଖ ଅଛି, କିନ୍ତୁ ସେସବୁକୁ ନିରପେକ୍ଷ ଭାବରେ ବିଚାର କରିହେବ, ମତାମତ ବି ଦେଇହେବ । ତୁମର ବାପା ଗୋଟାଏ କଥା ମୋତେ ବାରମ୍ବାର କହୁଥିଲେ, ଯେ ବହୁତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ମୋ' ପାଇଁ ଅପେକ୍ଷା କରି ରହିଛି । ପଛକଥା ଭୁଲି ଯା । ଗୁରୁଦେବ ବି ପ୍ରାୟ ସେହି କଥା କହୁଥିଲେ । କି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ମୁଁ ଜାଣେନା । କିନ୍ତୁ ଗୋଟାଏ କଥା ମୁଁ ସ୍ପଷ୍ଟ ବୁଝିଲି । ମୋର ପୂର୍ବର ଦୁଃଖ, ବେଦନା, ସବୁ କମିଗଲା । ବାପା ମଥୁରା ଫେରିଗଲେ । ଏହି ସମୟରେ ମୋର ଭାନୁପ୍ରକାଶଙ୍କ ସହିତ ଦେଖାହେଲା ଓ ଗୁରୁଦେବ ମୋତେ ଭଗବାନ ପର୍ଶୁରାମଙ୍କ ଆଶ୍ରମକୁ ଅସ୍ତ୍ର ବିଦ୍ୟା ଶିକ୍ଷା କରିବା ପାଇଁ ପଠେଇଦେଲେ ।'

ଅପରାହ୍ନ ପ୍ରାୟ ଗଡ଼ିଗଲାଣି । ସନ୍ଧ୍ୟା ହୋଇ ଆସୁଥାଏ । ଚାରିପାଖର ଗଛମାନଙ୍କରେ ଚଢ଼େଇମାନଙ୍କର ମେଳା ବସିଗଲାଣି । ଗାଈମାନେ ପାଖ ପଡ଼ିଆରୁ ଘାସ ଚରି ଫେରି ଆସୁଥାଆନ୍ତି । ଶିକ୍ଷାର୍ଥୀମାନେ ସନ୍ଧ୍ୟା ଆହ୍ନିକ ପାଇଁ ପ୍ରସ୍ତୁତ ହୋଇଗଲେଣି । ବିଭିନ୍ନ କୁଟୀରରେ ଦୀପସବୁ ଲାଗିଲାଣି । ସତ୍ୟକାମଙ୍କ କୁଟୀରରେ କିଏ ଜଣେ ଆସି ଦୀପ ଥୋଇଦେଇ ଗଲା । ସେମାନେ ସବୁ ବସିଥିବା ଗଛମୂଳ ପିଣ୍ଡିରେ ଅପରାହ୍ନର ଆଲୋକ ସେବେ ବି ରହିଥାଏ ।

ଅରିନ୍ଦମ କହିଲା, 'ଜରାସନ୍ଧ ଆପଣଙ୍କୁ ସହ୍ୟ କରି ରହିଛନ୍ତି, ଆଶ୍ଚର୍ଯ୍ୟ ।'

'ଉପାୟ ନାହିଁ', ସତ୍ୟକାମ କହିଲେ, 'ଜରାସନ୍ଧ ଯେତେ ଶକ୍ତିଶାଳୀ ହେଲେ ବି ବ୍ୟାସଦେବଙ୍କର ବିଧାନର ପ୍ରତିବାଦ କରିବା ଶକ୍ତି ତା'ର ନାହିଁ । ଗୁରୁଦେବଙ୍କର ଆଶୀର୍ବାଦ ଅଭେଦ୍ୟ ଢାଲ ପରି ମୋ' ଚାରିପାଖରେ ଘେରି ରହିଛି । ମୁଁ ଆଶ୍ରମ ବାହାରକୁ ଗଲେ ମଧ୍ୟ ଜରାସନ୍ଧ ମୋର କିଛି କ୍ଷତି କରିପାରିବ ନାହିଁ । ତେବେ ଆଉ

ଗୋଟାଏ କଥା । ମୋର ଜରାସନ୍ଧ ପ୍ରତି ସେ ପୂର୍ବର କ୍ରୋଧ ଆଉ ନାହିଁ । ମୁଁ ଭଗବାନ ପର୍ଶୁରାମଙ୍କର ଶିଷ୍ୟ । ଜରାସନ୍ଧ ମୋର ସମକକ୍ଷ ନୁହେଁ । କିନ୍ତୁ ମୁଁ ଜରାସନ୍ଧ ଉପରେ କୌଣସି ପ୍ରତିଶୋଧ ନେବାକୁ ଚାହେଁ ନାହିଁ । ଗୁରୁଦେବ ଯାହା କହୁଥିଲେ - ଜରାସନ୍ଧର ମୀମାଂସା ଅନ୍ୟ ଲୋକ କରିବ ।'

ଭାନୁପ୍ରକାଶ ହସିଲେ, କହିଲେ – 'ସତ୍ୟକାମ ଠିକ୍ କଥା କହୁଛନ୍ତି । ଜରାସନ୍ଧ ପ୍ରତି ତାଙ୍କର ଆଗର ରାଗ ଓ କ୍ରୋଧ ଆଉ ନାହିଁ । ମୁଁ ତାଙ୍କୁ ପ୍ରଥମେ ଯେତେବେଳେ ଦେଖିଥିଲି ସେ ତାତିଲା ଲୁହା ପରି । ଛୁଇଁ ହେବନି । ଆଜି ଲୁହା ଶୀତଳ ହୋଇଯାଇଛି । କିନ୍ତୁ ଲୁହା ଲୁହା ଅଛି । ତେବେ ସେ ଯେ କହିଲେ ଜରାସନ୍ଧ ପ୍ରତି ସେ ପ୍ରତିଶୋଧ ନେଉନାହାନ୍ତି, ଠିକ୍ ତା ନୁହେଁ । ସେ ପ୍ରତିଶୋଧ ନେଉଛନ୍ତି । କିନ୍ତୁ ଆମ ଜରିଆରେ ।'

'ଆପଣଙ୍କ ଜରିଆରେ ?' ଅରିନ୍ଦମ ପଚାରିଲା ।

'ହଁ', ଭାନୁପ୍ରକାଶ କହିଲେ, 'ଭାବ ତ ଆମର ଆଚାର୍ଯ୍ୟ ସତ୍ୟକାମଙ୍କ ଆଶ୍ରମ ସହିତ ସମ୍ପର୍କ କ'ଣ ? ଆଶ୍ରମ ଠିକ୍ । ଲୋକଙ୍କୁ ଶିକ୍ଷିତ କରିବା, ଚରିତ୍ରବାନ କରିବା, ଆଧ୍ୟାତ୍ମିକ ଭାବର ପ୍ରସାର କରିବା, ଆର୍ଯ୍ୟମାନଙ୍କର ଜୀବନ ଧାରା ବ୍ୟାପକ କରିବା, ଏସବୁ ତ ହେଉଛି । ଗୁରୁଦେବଙ୍କର ନିର୍ଦ୍ଦେଶରେ ସତ୍ୟକାମ ଆଶ୍ରମର ପ୍ରତିଷ୍ଠା କରିଛନ୍ତି ଓ ତାଙ୍କରି ନେତୃତ୍ୱରେ ଜରାସନ୍ଧର ଏହି ରାକ୍ଷସ ରାଜ୍ୟରେ ଆର୍ଯ୍ୟ ଧର୍ମର ପ୍ରସାର ହେଉଛି । କିନ୍ତୁ ଏହା ସହିତ ଆଉ ଗୋଟିଏ କାମ ବି ହେଉଛି । ଆମର ଲୋକେ ସତ୍ୟକାମଙ୍କ ଆଶ୍ରମରେ ଶିକ୍ଷା ପାଆନ୍ତି, ଯୁଦ୍ଧ ବିଦ୍ୟା ବି ଶିଖନ୍ତି, ଜରାସନ୍ଧ ପରି ଦୁର୍ଦ୍ଦାନ୍ତ ଲୋକର ମୁହାଁମୁହିଁ ହେବା ପାଇଁ ଯେଉଁ ମାନସିକ ଓ ଶାରୀରିକ ବଳ ଦରକାର ସେ ଏହି ଆଶ୍ରମରୁ ମିଳେ । ସତ୍ୟକାମ କେବଳ ଏହି ଆଶ୍ରମର ଆଚାର୍ଯ୍ୟ ନୁହନ୍ତି, ସେ ଆମର ଆଚାର୍ଯ୍ୟ । ସେ ଆମକୁ କର୍ମକ୍ଷେତ୍ର ପାଇଁ ପ୍ରସ୍ତୁତ କରନ୍ତି । ଏହାହିଁ ତାଙ୍କର ଜରାସନ୍ଧ ପ୍ରତି ପ୍ରତିଶୋଧ । ସେ ଲୋକ ତିଆରି କରନ୍ତି ଯେଉଁମାନେ ଜରାସନ୍ଧକୁ ଭୟ କରନ୍ତି ନାହିଁ । ଜରାସନ୍ଧ ସେମାନଙ୍କୁ ଭୟ କରେ ।'

ସନ୍ଧ୍ୟା ହୋଇ ଯାଇଥାଏ । ସମସ୍ତେ ରାତ୍ରିର ଖାଦ୍ୟ ଓ ରାତ୍ରିର ବିଶ୍ରାମ ପାଇଁ ପ୍ରସ୍ତୁତ ହେଉଥାନ୍ତି । ଆକାଶରେ ଜ୍ୟୋତ୍ସ୍ନା । ଆଶ୍ରମର ଗଛବୃକ୍ଷ ଓ ଲତାପତ୍ରର ଭିତର ଦେଇ ଅଧା ଅଧା ଜ୍ୟୋତ୍ସ୍ନା ଆଲୋକରେ ଆଶ୍ରମ ବୁଡ଼ି ଯାଇଥାଏ । ଆଶ୍ରମର ଲକ୍ଷ୍ମୀନାରାୟଣଙ୍କ ମନ୍ଦିରରେ ସନ୍ଧ୍ୟା ଆରତି ସରିଗଲାଣି । ମନ୍ଦିରର ଶଙ୍ଖଧ୍ୱନି ଓ ଘଣ୍ଟାଧ୍ୱନି ବି ନିରବ ହୋଇଗଲାଣି । କେବଳ ପୂଜକଙ୍କର ଗମ୍ଭୀର ସ୍ୱରରେ ସ୍ତବ ପାଠ ରହି ରହି ଶୁଣାଯାଉଛି । ଚାରିଆଡ଼େ ଶାନ୍ତି ଓ ଆନନ୍ଦର ପରିବେଶ ।


Digitized by srujanika@gmail.com

ସତ୍ୟକାମ କହିଲେ, 'ଭାନୁପ୍ରକାଶ, ତୁମେମାନେ ତ ଆଜି ମନ୍ଦିରରେ ରହିବ । ମୁଁ ପୂଜକଙ୍କୁ କହି ଦେଇଛି, ସେ ଆଜି ତୁମ୍ଭମାନଙ୍କ ପାଇଁ ଲକ୍ଷ୍ମୀନାରାୟଣଙ୍କର ବିଶେଷ ପ୍ରସାଦ ପ୍ରସ୍ତୁତ କରିଛନ୍ତି । ରାତିରେ ଶୋଇବା ପାଇଁ ମଧ୍ୟ ବନ୍ଦୋବସ୍ତ କରାଯାଇଛି । ସକାଳ ପୂଜାର୍ଚ୍ଚନା ପରେ ତୁମ୍ଭେମାନେ ଗିରିବ୍ରଜ ଫେରିଯିବ । କାଲି ମହାକାଳଙ୍କ ପାଖରେ ଜରାସନ୍ଧର ବିଶେଷ ପୂଜା । କଂସ ଓ ତା'ର ଝିଅମାନେ ମଥୁରା ଯିବା ଆଗରୁ ସେ ଏହି ପୂଜା ଦେବାକୁ ଚାହେଁ ।'

ଭାନୁପ୍ରକାଶ ହସିଲେ, କହିଲେ - 'ଜରାସନ୍ଧର ଏ ହଠାତ୍ ଦେବଭକ୍ତି କାହିଁକି ? ତା'ର କିଛି ମତଲବ ନ ଥିଲେ ସେ ତ ପୂଜା ଅର୍ଚ୍ଚନା କରେନା । ସେ ମହାକାଳ ହୁଅନ୍ତୁ ବା ଯେ ହୁଅନ୍ତୁ ।'

ସତ୍ୟକାମ ବି ହସିଲେ, କହିଲେ - 'ନିଶ୍ଚୟ କିଛି ମତଲବ ଥିବ । ଆସ ଆମେ ସବୁ ମନ୍ଦିରକୁ ଯିବା ।'

ସତ୍ୟକାମଙ୍କ ସହିତ ସମସ୍ତେ ଲକ୍ଷ୍ମୀନାରାୟଣଙ୍କ ମନ୍ଦିରର ମଣ୍ଡପକୁ ଉଠିଗଲେ । ଅରିନ୍ଦମ ନିଜର ଶିବିର କଥା ଭାବୁଥିଲା । କହିଲା, 'ମଥୁରା ଶିବିରର ତ ଅଧିକାଂଶ ଲୋକ ମଥୁରା ଫେରିଗଲେଣି । ଆମେ ଅଳ୍ପ କିଛି ଲୋକ ଅଛୁ । ମୋ' ପାଇଁ ଅନ୍ୟମାନେ ଅପେକ୍ଷା କରିବେ ।'

'ନାଁ', ଭାନୁପ୍ରକାଶ କହିଲେ, 'ମୁଁ ତା'ର ବନ୍ଦୋବସ୍ତ କରି ଆସିଛି । ସେମାନେ ଜାଣନ୍ତି ତୁମେ ସତ୍ୟକାମଙ୍କ ଆଶ୍ରମକୁ ଆସିଛ, କାଲି ସକାଳୁ ଫେରିବ । ଆଜି ରାତିରେ ଆଶ୍ରମରେ ଗୋଟିଏ ସଭା ହେବାର ଅଛି । ମୋର ଇଚ୍ଛା ତୁମେ ସେଥିରେ ଯୋଗ ଦେବ ।'

'ସଭା ?'

'ହଁ, ସଭା, ଗୁପ୍ତ ସଭା କହିପାର । ଆମ କାମ ବିଷୟରେ ତ ତୁମେ କିଛି କିଛି ଧାରଣା କଲଣି । ଏ ଖାଲି ଏଠାରେ ଗିରିବ୍ରଜ ବା ମଗଧରେ ନୁହେଁ । ଆର୍ଯ୍ୟାବର୍ତ୍ତର ବିଭିନ୍ନ ରାଜ୍ୟରେ ଆମ ଲୋକେ ଅଛନ୍ତି ଓ ଏହିପରି କାମ କରୁଛନ୍ତି । ସତ୍ୟକାମଙ୍କର ଆଶ୍ରମ ଆମର ଗୋଟିଏ କେନ୍ଦ୍ର ସ୍ଥାନ । ଏଠାକୁ ସମୟେ ସମୟେ କର୍ମୀମାନେ ଆସନ୍ତି, ଏକାଠି ହୁଅନ୍ତି, ଆଲୋଚନା କରନ୍ତି । ଆଜି ସେହିପରି ଗୋଟିଏ ଦିନ, ବିଭିନ୍ନ ଆଡୁ ଅନେକ କର୍ମୀ ଆସିଛନ୍ତି । ଖିଆପିଆ ସରିବା ପରେ ସମସ୍ତେ ଏକାଠି ହେବେ । ମୋର ବିଶ୍ୱାସ ତୁମକୁ ଭଲ ଲାଗିବ ।'

ସତ୍ୟକାମ କହିଲେ, 'ଏସବୁରେ ମୋର କିଛି କୃତିତ୍ୱ ନାହିଁ, ଅରିନ୍ଦମ । ଏସବୁ


Digitized by srujanika@gmail.com

ଆୟୋଜନ ଭାନୁପ୍ରକାଶଙ୍କର । ସେ ଯେ କେତେ ବଡ଼ ଆୟୋଜକ ତୁମେ ଜାଣ ନା ।'

ଅରିନ୍ଦମ ହସି ଭାନୁପ୍ରକାଶଙ୍କୁ ଚାହିଁଲା, 'ହଁ, କିଛି କିଛି ଜାଣେ । ବୁଦ୍ଧିମାନ, ନିର୍ଭୀକ, ସାହସୀ । ଆଉ କଅଣ କହିବି ?'

'କିଛି କହିବା ଦରକାର ନାହିଁ ।' ଭାନୁପ୍ରକାଶ ହସିଲେ । ସତ୍ୟକାମଙ୍କୁ ଚାହିଁ କହିଲେ 'କର୍ମୀମାନେ ସବୁ ଖାଇଲେଣି କି ?'

ସତ୍ୟକାମ କହିଲେ – 'ହଁ ସବୁ ଠିକ୍ ଅଛି । ଖାଇସାରି ସେମାନେ ମନ୍ଦିର ପଛପାଖ ତୋଟାକୁ ଆସିବେ । ଆଲୁଅ ଦେବାକୁ କହି ଦେଇଛି । ଆସନ୍ତୁ, ଆମ୍ଭେମାନେ ଖାଇଦେବା ।'

ମନ୍ଦିର ମଣ୍ଡପରେ ସମସ୍ତେ ଖାଇ ବସିଲେ ।

ଖାଉ ଖାଉ ଭାନୁପ୍ରକାଶ କହିଲେ, 'ଆଜି ପ୍ରାୟ ବିଭିନ୍ନ ରାଜ୍ୟରୁ ୪୦, ୫୦ କର୍ମୀ ଆସିଛନ୍ତି । ଏଠାରେ କିଛିଦିନ ରହିବେ । ଆର୍ଯ୍ୟମାନଙ୍କର ନୀତି, ନିୟମ, ନୈତିକତା, ସାମାଜିକ ଜୀବନ, ବିଶେଷ କରି ଆର୍ଯ୍ୟ ଧର୍ମ ସମ୍ପର୍କରେ ସେମାନେ ସବୁ ଯାହା ଜାଣିଛନ୍ତି ସେସବୁ ଆଉ ଥରେ ଅଭ୍ୟାସ କରିବେ । ସେମାନେ ଯୁଦ୍ଧ କରିବେ ନାହିଁ । କିନ୍ତୁ ଦରକାର ପଡ଼ିଲେ ନିଜକୁ ଓ ଅନ୍ୟମାନଙ୍କୁ କିପରି ରକ୍ଷା କରିପାରିବେ ସେହି ଶିକ୍ଷା ଦିଆଯାଏ । ଏ ବଡ଼ ଦାୟିତ୍ୱ । ସତ୍ୟକାମ ଓ ତାଙ୍କର ଶିକ୍ଷାର୍ଥୀମାନେ ଅତ୍ୟନ୍ତ ନିଷ୍ଠାପର ଭାବରେ ଏ ଦାୟିତ୍ୱ ତୁଲାନ୍ତି ।'

ସତ୍ୟକାମ କହିଲେ, 'ମୁଁ ଟିକେ କହେ । ଅରିନ୍ଦମ ଭାବନା ସବୁ କାମ ଆମେ କରୁ । ଆମ ଆଶ୍ରମରେ ହୁଏ ଠିକ୍ । କିନ୍ତୁ ଆମର ଅଧା ହେଲେ, ଭାନୁପ୍ରକାଶ ଓ ଭାନୁପ୍ରିୟଙ୍କର ଅଧେ କାମ । ଆମେ ସିନା ଶିକ୍ଷା ଦେଉ ବା ସେମାନେ ଯାହା ସବୁ ଶିଖିଛନ୍ତି ସେସବୁକୁ ଆଉ ଥରେ ଅଭ୍ୟାସ କରଉ, କିନ୍ତୁ ଭାନୁପ୍ରକାଶ ସେମାନଙ୍କୁ ଦମ୍ଭ, ସାହସ ଦିଅନ୍ତି, ସେମାନଙ୍କର ମାନସିକତାକୁ ଦୃଢ଼, ଶକ୍ତ କରନ୍ତି । ମୁଖ୍ୟ ଉଦ୍ଦେଶ୍ୟ ଯେ ଲୋକ ଶକ୍ତିକୁ ଜାଗ୍ରତ କରିବା, ଏହି ଆଦର୍ଶ ସେମାନଙ୍କ ଆଗରେ ସ୍ପଷ୍ଟ ଭାବରେ ରଖନ୍ତି ।'

ସମସ୍ତେ ଖାଇ ସାରିଥିଲେ । ମନ୍ଦିରର ଗର୍ଭଗୃହରେ ଦୀପ ଜଳୁଥାଏ । ପୂଜକ ଠାକୁରଙ୍କର ଜିନିଷପତ୍ର ସଜାଡ଼ି ରଖୁଥାଆନ୍ତି । ଠାକୁରଙ୍କୁ ପ୍ରଣାମ କରି ସମସ୍ତେ ମନ୍ଦିର ବାହାରକୁ ଚାଲି ଆସିଲେ । ଆଶ୍ରମ ଥଣ୍ଡା, ଶୀତଳ ହୋଇଗଲାଣି, ଅଳ୍ପ ଅଳ୍ପ ପବନ ଦେଉଥାଏ । ଶୁକ୍ଳପକ୍ଷର ଜହ୍ନ ଗଛ ଫାଙ୍କରୁ ତଳେ ପଡ଼ି ଅନ୍ଧାର ଆଲୁଅ ଗୋଳେଇ ଗାଳେଇ ମିଶି ଯାଇଥାଏ । ସେମାନେ ମନ୍ଦିର ପଛ ପାଖ ତୋଟାକୁ ଚାଲି ଚାଲି


Digitized by srujanika@gmail.com

ଗଲେ । ବିଭିନ୍ନ ଗଛର ଗହଳି ଭିତରେ ଗୋଟାଏ ପ୍ରଶସ୍ତ ଚଉଖୁଣ୍ଟିଆ ସ୍ଥାନ । ପରିଷ୍କାର ପରିଚ୍ଛନ୍ନ, ଚାରି ପାଖରେ ଆଲୁଅର ମଶାଲ ସବୁ । ତେଣୁ ଗଛ ଗହଳିରେ ଏ ପାଖ ସେପାଖରେ ଜହ୍ନ ମିଶା ଅନ୍ଧାର ଥିଲେ ବି ମଝିରେ ସେହି ସ୍ଥାନଟି ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଥାଏ । ସମସ୍ତେ ଘାସ ଉପରେ ବସିଥାନ୍ତି । ଗୋଟାଏ କଡ଼କୁ ଗୋଟାଏ ଚାଦର ପକେଇ ଦିଆଯାଇଥାଏ । ତା' ଉପରେ ସତ୍ୟକାମ, ଭାନୁପ୍ରକାଶ, ଭାନୁପ୍ରିୟ ଓ ଅରିନ୍ଦମ ଯାଇ ବସିଲେ । ଅରିନ୍ଦମ ଚାରିପାଖକୁ ଚାହିଁଲା । ବେଶ୍ କିଛି ଲୋକ । ଭାନୁପ୍ରକାଶ କହୁଥିଲେ ପ୍ରାୟ ଚାଳିଶ ପଚାଶ ଆସିଛନ୍ତି । ବିଭିନ୍ନ ରାଜ୍ୟରୁ ସମସ୍ତେ ସ୍ଥିର ହୋଇ ବସିଥାନ୍ତି, ନିଜ ନିଜ ଭିତରେ ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା ହେଉଥାନ୍ତି । ଅରିନ୍ଦମର ମନେହେଲା ସମସ୍ତେ ଆଗ୍ରହୀ, ସମସ୍ତେ ସପ୍ରତିଭ । ସତ୍ୟପ୍ରକାଶ ଓ ଭାନୁପ୍ରକାଶଙ୍କୁ ଦେଖି ସମସ୍ତେ ଉଠି ଛିଡ଼ାହେଲେ । ଏମାନେ ବସିଲା ପରେ ବସିଲେ ।

ଏପରି ସଭା ସମିତିରେ ଯୋଗଦେବା ଅରିନ୍ଦମ ପକ୍ଷରେ ପ୍ରଥମ । ଏପରି ସଭାସମିତି ହୁଏ ବୋଲି ତା'ର ବିଶେଷ ଧାରଣା ବି ନ ଥିଲା । ସେ ମଥୁରାରେ ଯାହା ସଭାସମିତି ଦେଖିଛି ସେ ମୁଖିଆ ମାନଙ୍କର । ରାଜା ଦରକାର ହେଲେ ଗୋଷ୍ଠୀ-ମୁଖ୍ୟମାନଙ୍କର ସଭା ଡାକନ୍ତି, ଓ ସେମାନେ କେବଳ ରାଜ୍ୟର ସମସ୍ୟାମାନଙ୍କ ବିଷୟରେ ଆଲୋଚନା କରନ୍ତି । ସଭା, ସଭାର ବିଚାର ଆଲୋଚନା ଓ ସଭାର ନିଷ୍ପତ୍ତି ସେସବୁ ଖୋଲାଖୋଲି କରାଯାଏ । ଏପରିକି ସାଧାରଣ ଲୋକେ ସେମାନଙ୍କର ମତାମତ ଦେବାରେ କିଛି ଅସୁବିଧା ନ ଥାଏ, ଦିଅନ୍ତି ବି, ଓ ଗୋଷ୍ଠୀ-ମୁଖ୍ୟ ନ ହୋଇଥିଲେ ବି ଅନ୍ୟ କିଛି ଲୋକଙ୍କୁ ମଧ୍ୟ ରାଜା ଡାକି ଥାଆନ୍ତି । ଯେପରିକି ବାପା । ସେ ଗୋଷ୍ଠୀ-ମୁଖ୍ୟ ନୁହନ୍ତି, କିନ୍ତୁ ଯେକୌଣସି ସଭା ସମିତିରେ ରାଜା ଉଗ୍ରସେନ ତାଙ୍କୁ ଆଗେ ଡାକନ୍ତି । କିନ୍ତୁ ସେଦିନ ରାତିରେ ଆଚାର୍ଯ୍ୟ ସତ୍ୟକାମଙ୍କର ଆଶ୍ରମର ସେହି ସଭା ଅଲଗା । ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହୋଇଥିଲା । ଏ ଯେପରି ପଚାଶଟା ଭିନେ ଭିନେ ଲୋକ, ହେଇ ସେଠି ଚୁପଚାପ ବସିଛନ୍ତି, ତା ନୁହେଁ, ଏ ଗୋଟାଏ ଲୋକ, ଗୋଟାଏ ନଈ ସୁଅର ପଚାଶଟା ଧାର ଯେମିତି । ପଚାଶଟା ନଈ ତୋଡ଼, ଯେତେବେଳେ ଭସେଇ ନବ ସବୁ ଭସେଇ ନେବ ।

ସତ୍ୟକାମ ଉଠି ଛିଡ଼ା ହେଲେଣି । ତାଙ୍କର ଦୀର୍ଘ ଚେହେରା ଆଲୁଅ ଅନ୍ଧାରରେ ଆହୁରି ଦୀର୍ଘତର ଦିଶୁଥାଏ । ତାଙ୍କର ଗମ୍ଭୀର ସ୍ୱର ସେଇ ଚୁପ୍ ଚାପ୍ ରାତିରେ, ଗଛ ଗହଳି ଭିତରେ ଠେଲିପେଲି ହୋଇ, ଯେମିତି ବହୁ ଦୂରରୁ ଭାସି ଆସିଲା ପରି ଶୁଭୁଥାଏ ।


Digitized by srujanika@gmail.com

ସେ କହୁଥାଆନ୍ତି, ତୁମ୍ଭେମାନେ କେତେ କେତେ ଜାଗାରୁ ଏ ଆଶ୍ରମକୁ ଆସିଛ । ତୁମ୍ଭମାନଙ୍କ ଜାଗାର ସୁଖ ସ୍ୱାଛନ୍ଦ୍ୟ ଏଠାରେ ପାଇବ ନାହିଁ । ସେଥିପାଇଁ ମୁଁ ଆଗରୁ କ୍ଷମା ମାଗିନେଉଛି । କିନ୍ତୁ ତୁମେମାନେ ଆସିଛ ଏଇଟା ହିଁ ବଡ଼ କଥା । ଯେଉଁ ଆଦର୍ଶ ତୁମମାନଙ୍କୁ ଟାଣି ଆଣିଛି, ସେହି ଆଦର୍ଶ କଥା ଚିନ୍ତା କର ।

କ୍ରମେ ସତ୍ୟକାମଙ୍କର ସ୍ୱର ବଦଳିଗଲା । ଏ ଆଉ ଦୂରରୁ ଅଧା ଅଧା ଭାସି ଆସୁଥିବା ସ୍ୱର ନୁହେଁ । ଏ ସ୍ୱର ଅତି ପାଖର, ନିଜ ଭିତରର ସ୍ୱର, ଧ୍ୟାନ ଓ ପ୍ରାର୍ଥନାର ସ୍ୱର ପରି । ସେ କହୁଥାନ୍ତି – 'ଧର୍ମକୁ ତୁମେ କିପରି ବ୍ୟାଖ୍ୟା କରିବ ? ତୁମର ପରିବାର, ଜ୍ଞାତି, କୁଟୁମ୍ବ, ଲୋଭ, ମୋହ, ଲାଳସା, କାମ ପ୍ରବୃତ୍ତି ଏସବୁ ଦିଗରୁ, ନା କ୍ଷମତା, ଅର୍ଥ ସେ ଦିଗରୁ । ମନେରଖ ଧର୍ମ କେବଳ ଆଶା ବା ଉଦ୍ୟମ ନୁହେଁ, କି ଭବିଷ୍ୟତ ଯୋଜନା ନୁହେଁ, ବା ଆମେ ସବୁଦିନେ ଯାହା କରୁ – ଯାଗ, ଯଜ୍ଞ, ଦେବତାର ଆରାଧନା, ଯଜ୍ଞର ହବି, ଦୈନନ୍ଦିନ ପୂଜା ପଦ୍ଧତି, ବିଧିବିଧାନ, ଏସବୁ ନୁହେଁ, ବା ଏପରିକି ଆମର କ୍ରୋଧ, ଲୋଭ, ଭୟରୁ ଯାହା ଉତ୍ପନ୍ନ ତା ବି ନୁହେଁ ।' ସତ୍ୟକାମ ଟିକିଏ ରହିଗଲେ । ସାରା ସଭାରେ ସମସ୍ତଙ୍କ ଆଖି ସତ୍ୟକାମଙ୍କ ଉପରେ । ସମସ୍ତେ ଚୁପ୍, କେବଳ ପତ୍ରର ଖସ ଖସ ଶବ୍ଦ ଓ ରାତି ଚଢ଼େଇର ଡାକ ଛଡ଼ା ଆଉ କିଛି ନାହିଁ । ସତ୍ୟକାମଙ୍କର ଗମ୍ଭୀର ସ୍ୱର ପୁଣି ଥରେ ଶୁଣାଗଲା – 'ସେସବୁ ଧର୍ମ ନୁହେଁ । ଧର୍ମ ନାଁରେ ଛଳନା । ସେସବୁରେ ଧର୍ମ ନ ଥିଲା ଓ  ନାହିଁ । ପ୍ରଥମ କଥା ତୁମର ଦମ୍ଭ, ସାହସ, ନିର୍ଭୟତା । ତୁମେ ତୁମର ଇଚ୍ଛା ଶକ୍ତିରେ କେତେଦୂର ନିଜକୁ ଠିକ୍ ରୂପ ଦେଇପାରୁଛ । କେତେଦୂର ମଣିଷକୁ, ମଣିଷର ଜୀବନକୁ, ମଣିଷ ଚାରିପାଖରେ ଘଟି ଯାଉଥିବା ସବୁ ଘଟଣାକୁ ଠିକ୍ ଭାବରେ ବିଚାର କରି ପାରୁଛ, ଓ ସବୁ ପ୍ରକାର ଦୁର୍ବଳତାର ଉପରକୁ ଉଠି, ସେସବୁକୁ ପ୍ରଚଣ୍ଡ ଶକ୍ତି ଭାବରେ ଏକାଠି କରିପାରୁଛ । ସେ ଶକ୍ତି ଦୁର୍ଦ୍ଦମନୀୟ । ସେ କେବେହେଲେ ପରାଜିତ ହୁଏନା – ତାହାହିଁ ଧର୍ମର ଶକ୍ତି ।'

ଆଚାର୍ଯ୍ୟ ସତ୍ୟକାମ ଧୀରେ ଧୀରେ ଧର୍ମ ଓ ଆର୍ଯ୍ୟଧର୍ମର ବ୍ୟାଖା କଲେ, ଶିକ୍ଷାର୍ଥୀମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଲେ, ଓ ସେମାନଙ୍କୁ ସଚେତ କରିଦେଲେ ଯେ ଆମେ ଧର୍ମକୁ ରକ୍ଷା କଲେ ଧର୍ମ ଆମକୁ ରକ୍ଷା କରିବ ଓ ଆମେ ଧର୍ମକୁ ବିନଷ୍ଟ କଲେ ଆମେ ନିଜେ ବିନଷ୍ଟ ହୋଇଯିବା । ସତ୍ୟକାମଙ୍କୁ ଶିକ୍ଷାର୍ଥୀମାନେ ଅନେକ ପ୍ରଶ୍ନ ପଚାରିଥିଲେ । ସେ ବି ଅରିନ୍ଦମ ପାଇଁ ଗୋଟାଏ ଅଭିଜ୍ଞତା । ସେ ମଥୁରାରେ ନିଜର ବନ୍ଧୁମାନଙ୍କୁ ଦେଖିଛି । ସେମାନେ ବୁଦ୍ଧିମାନ, ସପ୍ରତିଭ, ଆଗ୍ରହୀ, ବହୁ କାର୍ଯ୍ୟରେ ସେମାନଙ୍କର ଉତ୍ସାହ ରହିଛି । କିନ୍ତୁ ଧର୍ମ, ଦର୍ଶନ, ନୈତିକତା, ଚରିତ୍ର ପ୍ରଭୃତି

ବିଷୟରେ ଶିକ୍ଷାର୍ଥୀମାନଙ୍କର ଆଗ୍ରହ ତାକୁ ବିସ୍ମିତ କରିଥିଲା । କେତେକ ସେ ନିଜେ ଭାବିପାରି ନ ଥିବା ପରି ସମସ୍ୟା, ଏବେବି ମନେ ଅଛି । ଯେପରି ଧର୍ମ, ଯଶ, ସୁଖ ବିଷୟରେ, ବା ଲୋଭ, ମୋହ, ଲାଳସା ବିଷୟରେ, ବା କେଉଁ ପରିସ୍ଥିତିରେ ବ୍ୟକ୍ତି ବା ରାଷ୍ଟ୍ରକୁ ମୃତ ବୋଲି କୁହାଯିବ । ବିଦେହରୁ ଆସିଥିବା ଜଣେ ଶିକ୍ଷାର୍ଥୀଙ୍କ ପ୍ରଶ୍ନ ତା'ର ସ୍ପଷ୍ଟ ମନେଅଛି । ସେ ପଚାରିଥିଲେ - ମଣିଷର ମୋହ, ଗର୍ବ, ଆଳସ୍ୟ ଓ ଶୋକକୁ କିପରି ଚିହ୍ନିହେବ । ସତ୍ୟକାମଙ୍କର ଉତ୍ତର ମଧ ସେହିପରି ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ । ସେ ଉତ୍ତର ଦେଇଥିଲେ - ଧର୍ମ ବିଷୟରେ ଅନଭିଜ୍ଞତା ହିଁ ମୋହ, ନିଜର ଆତ୍ମ ଅଭିମାନ ହିଁ ଗର୍ବ, ଧର୍ମାନୁଷ୍ଠାନ ନ କରିବା ହିଁ ଆଳସ୍ୟ, ଓ ଅଜ୍ଞାନତା ହିଁ ଶୋକ । ପରେ ସେ ବାପାଙ୍କୁ ଏକଥା କହିଥିଲା, ରାତିର ସେ ସଭା ଓ ଶିକ୍ଷାର୍ଥୀମାନଙ୍କର ବିଭିନ୍ନ ପ୍ରଶ୍ନ ଓ ସତ୍ୟକାମଙ୍କ ଉତ୍ତର ବିଷୟରେ । ବାପା ସତ୍ୟକାମଙ୍କୁ ପ୍ରଶଂସା କରିଥିଲେ; କହିଥିଲେ ସତ୍ୟକାମ ଜ୍ଞାନୀ ବ୍ୟକ୍ତି, ସେ ଯାହାସବୁ କହିଲେ ଆଶ୍ରମମାନଙ୍କରେ ଯୋଗ୍ୟ ଆଚାର୍ଯ୍ୟମାନଙ୍କ ଦ୍ୱାରା ଏହାହିଁ ଶିକ୍ଷା ଦିଆଯାଏ । କିନ୍ତୁ ବାପା ଦୁଃଖିତ ବି ହୋଇଥିଲେ ଯେ ଅଧିକାଂଶ ରାଜ୍ୟରେ ଦୁଷ୍ଟ ଶାସକମାନଙ୍କ ଦ୍ୱାରା ଏ ରୀତିନୀତି ନଷ୍ଟଭ୍ରଷ୍ଟ ହୋଇ ଯାଉଛି ।

ସେଦିନ ବହୁତ ରାତି ପର୍ଯ୍ୟନ୍ତ ସଭା ଚାଲିଥିଲା । ସତ୍ୟକାମଙ୍କ ପରେ ଶିକ୍ଷାର୍ଥୀମାନେ ଜଣେ ପରେ ଜଣେ ସେମାନଙ୍କର କାର୍ଯ୍ୟର ବିବରଣୀ ଦେଲେ । ଅରିନ୍ଦମ ଆଖିରୁ ନିଦ ଚାଲିଯାଇଥିଲା । ଏତେ ସଂଖ୍ୟାରେ ତରୁଣ ଶିକ୍ଷାର୍ଥୀ - ସାହସୀ, ନିର୍ଭିକ, ସପ୍ରତିଭ - ଏକାଠି ହବା, ଉଦ୍ଦେଶ୍ୟରେ ତାରତମ୍ୟ ନାହିଁ, ଗୋଟିଏ ଲକ୍ଷ୍ୟ, ଗୋଟିଏ ବିଶ୍ୱାସ । ଭବିଷ୍ୟତ ବିଷୟରେ ଚିନ୍ତା ନାହିଁ, ନିଜର କଅଣ ହେବ ନ ହେବ ସେ ବିଷୟରେ ସମ୍ପୂର୍ଣ୍ଣ ନିର୍ବିକାର । ଗୋଟିଏ ଆଦର୍ଶ - ଲୋକଶକ୍ତିକୁ କିପରି ଜାଗ୍ରତ କରିବାକୁ ହେବ, ଅତ୍ୟାଚାରୀ ଶାସକକୁ କିପରି ଶାସନ କରିବାକୁ ହେବ, ଆର୍ଯ୍ୟ ଜୀବନର ଧାରା, ଆର୍ଯ୍ୟ ଧର୍ମ କିପରି ଜୀବନ୍ତ ରହିବ । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ପ୍ରତ୍ୟେକ ବ୍ୟକ୍ତିଙ୍କର ସେହି ଚିନ୍ତା, ନିଜର ସୁବିଧା ଅସୁବିଧା ଗୌଣ, ସେମାନେ ଖୋଜୁଛନ୍ତି ସାହସ, ଦମ୍ଭ, ଉତ୍ସାହ । ସେଦିନ ରାତିରେ ସମ୍ମିଳିତ ଯୁବଶକ୍ତିର ସେହି ଦମ୍ଭ, ଦୃଢ଼ତା ଓ ଘୋଷଣାରେ ଅରିନ୍ଦମ ଯେ କେବଳ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ତା ନୁହେଁ, ସମ୍ପୂର୍ଣ୍ଣ ଭାବରେ ଅଭିଭୂତ ହୋଇଯାଇ ଥିଲା । ତା'ର ବାରମ୍ବାର ମନେ ହୋଇଥିଲା ମଥୁରାରେ ସେ ଯେପରି ବଢ଼ି ଉଠିଛି, ସେ ଓ ତା'ର ବନ୍ଧୁମାନେ ଯେପରି ସମୟ କଟାନ୍ତି, ସେସବୁ ଅର୍ଥହୀନ, ସମୟ ନଷ୍ଟ କରିବା ଛଡ଼ା ଆଉ କିଛି ନୁହେଁ । ସେଦିନ ରାତିରେ ସତ୍ୟକାମଙ୍କ ଆଶ୍ରମରେ, ଜରାସନ୍ଧ ରାଜତ୍ୱର ସବୁ ଭୟ ଓ

ସ୍ୱାର୍ଥପରତା ଭିତରେ ସେ ଯେପରି ହଠାତ୍ ଜୀବନର ଅର୍ଥ ଖୋଜି ପାଇଥିଲା – ଯାହା ଅବିନଶ୍ୱର, ଯାହାକୁ କୌଣସି ଅତ୍ୟାଚାରୀ ଶାସକର ଅତ୍ୟାଚାର ଶେଷକରି ପାରେନା, ଯାହା ଧ୍ରୁବତାରା ପରି ସ୍ଥିର, ନିଶ୍ଚଳ, ଘୋର ଅନ୍ଧକାରରେ ମାର୍ଗ ଦର୍ଶକ ହୋଇ ରହିଥାଏ, ଯାହା ଦମ୍ଭ ଦିଏ, ସାହସ ଦିଏ, ଆଗେଇ ଯିବାକୁ ଶକ୍ତି ଦିଏ – ମଗଧରେ ଭାନୁପ୍ରକାଶଙ୍କ ସହିତ ତା'ର ପରିଚୟ, ଯେତେ ଆଲୋଚନା, ପ୍ରତି ଆଲୋଚନା, ବିଚାର, ସେସବୁର ଅତ୍ୟନ୍ତ ଉଜ୍ଜ୍ୱଳ, ଆନନ୍ଦଦାୟକ ପରିଣତି ।

ସତ୍ୟକାମ ଦର୍ଶନ, ଧର୍ମ ସହିତ ଭକ୍ତି ଓ ଚରିତ୍ର କଥା ମଧ୍ୟ କହିଥିଲେ – କିପରି ସିଧା ହୋଇ ଛିଡ଼ା ହେବାକୁ ହେବ, କଅଣ କରିବାକୁ ହେବ, କିପରି କରିହେବ, ନିଜର ଧର୍ମରେ, ବିଶ୍ୱାସରେ କିପରି ଅଟଳ ରହିବାକୁ ହେବ, ସେସବୁ । ତରୁଣମାନେ ବୟସ୍କମାନଙ୍କ ଠାରୁ ଯେଉଁ ସାହସ ଖୋଜନ୍ତି, ସେଇ ସାହସର ଧାରା ଯେପରି ସୂର୍ଯ୍ୟର ତେଜ ପରି ଶିକ୍ଷାର୍ଥୀମାନଙ୍କୁ ଘେରିଗଲା । ଆଗରେ ଅନ୍ଧାର ରହିଲା ନାହିଁ, ରାତି ରହିଲା ନାହିଁ, ଯାହା ରହିଲା ସେହି ତେଜର ଦୀପ୍ତି । ଆଉ ପ୍ରତ୍ୟେକଙ୍କ ଭାଷଣରେ ସେହି ଦୀପ୍ତି ଉଦ୍ଭାସିତ ହେଲା, ପ୍ରସାରିତ ହେଲା । ଆଜି, ଏତେ ବର୍ଷ ପରେ ସେକଥା ଭାବିଲେ, ଅରିନ୍ଦମର ରୋମାଞ୍ଚିତ ହୁଏ । ସେହି ଜ୍ୟୋତ୍ସ୍ନାପ୍ଲାବିତ ଅର୍ଦ୍ଧାଂଧକାର ରଜନୀରେ ସେ ଯାହା ଦେଖିଲା ସେ ସମଗ୍ର ଆର୍ଯ୍ୟାବର୍ତ୍ତ – କେଉଁ ସୁଦୂର ଗାନ୍ଧାରରୁ ଯାହା ପୂର୍ବର ମଣିପୁର, ନାଗଲୋକ ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । କୁରୁକ୍ଷେତ୍ର, ମତ୍ସ୍ୟ, ପାଞ୍ଚାଳ, ସୁରସେନ, କାଶୀ, କୋଶଳ, ବିଦେହ, ବିଦର୍ଭ, ଭୋଜ, ବିଦିଶା, ଚେଦୀ, ଦଶାର୍ଣ୍ଣ, ଅବନ୍ତୀ ଓ ଆହୁରି କେତେ ରାଜ୍ୟ, ଯେଉଁ ରାଜ୍ୟମାନଙ୍କ ବିଷୟରେ ଅରିନ୍ଦମ ପ୍ରଥମଥର ପାଇଁ ଶୁଣିଲା ।

ଶେଷ ରାତିକୁ ଅରିନ୍ଦମ ଯେତେବେଳେ ଶୋଇବାକୁ ଗଲା, ତା' ଆଖିର ନିଦଠାରୁ ମନର ଉତ୍ତେଜନା ଯଥେଷ୍ଟ ଅଧିକ ଥିଲା । ସେ ଯେପରି ଗୋଟାଏ ନିଆଁ କୁଣ୍ଡ ଭିତରେ ବସିଛି ସେହିପରି ମନେ ହେଉଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ସେ ନିଆଁ ପୋଡ଼ିଦିଏ ନା, ଦେହକୁ ଶାନ୍ତ ଶୀତଳ କରେ, ମନକୁ ଦମ୍ଭ କରେ । ସେ ଆସି ଶୋଇଲା, ବିଛଣାରେ ଏପାଖ ସେ ପାଖ ହେଉ ହେଉ ପାହାନ୍ତା ପହରକୁ ନିଦ ଆସିଗଲା । ସ୍ୱପ୍ନରେ ବି ସେହି ଉତ୍ତେଜନା, ଯେପରି ଶୂନ୍ୟରେ ଗୋଟାଏ କେଉଁ ଆବର୍ତ୍ତ ଭିତରେ ସେ ଘୂରି ଘୂରି ଚାଲିଛି । ତା'ର ନିଦ ଭାଙ୍ଗିଲା ବେଳକୁ ବେଶ୍ ସକାଳ ହୋଇଯାଇଥିଲା । ଆଶ୍ରମରେ ସକାଳର ଦୈନନ୍ଦିନ କାର୍ଯ୍ୟ ଆରମ୍ଭ ହୋଇଯାଇଥିଲା । ଲକ୍ଷ୍ମୀନାରାୟଣଙ୍କ ମନ୍ଦିରରେ ଘଣ୍ଟ ବାଜୁଥିଲା । ସତ୍ୟକାମ ସକାଳର ଉପାସନା ସାରି ପାଖ ପଡ଼ିଆରେ ଶିକ୍ଷାର୍ଥୀମାନଙ୍କୁ ଅସ୍ତ୍ରଶିକ୍ଷା ଦେବାକୁ ଆରମ୍ଭ


Digitized by srujanika@gmail.com

କରିଥିଲେ । ଆଶ୍ରମର ଗୋରୁମାନଙ୍କୁ ରକ୍ଷକମାନେ ଅଡ଼େଇ ଅଡ଼େଇ ନଈ ବନ୍ଧ ଆଡ଼କୁ ନେଇ ଯାଉଥିଲେ । ଆଶ୍ରମର ଅନ୍ତେବାସୀମାନେ, ଅନେକ ଶିକ୍ଷାର୍ଥୀ ବି, ବିଭିନ୍ନ କାମରେ ବ୍ୟସ୍ତ ଥିଲେ । ବେଶ୍ ଗହଳ ଚହଳର ପରିବେଶ - ସୂର୍ଯ୍ୟ ଉଠିବା ସାଙ୍ଗେ ସାଙ୍ଗେ ସମସ୍ତେ ଚଞ୍ଚଳ ହୋଇ ଉଠିଛନ୍ତି । ଅରିନ୍ଦମ ଟିକିଏ ଲଜ୍ଜିତ ହେଲା । ସେ ଅନେକ ସମୟ ଶୋଇ ପଡ଼ିଲା । ସେ ଚାରିପାଖକୁ ଚାହିଁଲା - ଭାନୁପ୍ରକାଶ କାହାନ୍ତି ? ଭାନୁପ୍ରିୟ ବି ଦିଶୁ ନାହାନ୍ତି । ଦୂରରୁ ଭାନୁପ୍ରକାଶଙ୍କ ପାଟି ଶୁଭିଲା - ଅରିନ୍ଦମ ମୁଁ ଏଇଠି ଅଛି । ତୁମେ କାମଦାମ ସାର ।' ଅରିନ୍ଦମ ଚାହିଁ ଦେଖିଲା । ହଁ, କିଛି ଦୂରରେ ଭାନୁପ୍ରକାଶ ବସିଛନ୍ତି, ଭାନୁପ୍ରିୟ ବି, ପାଖରେ କିଛି ଶିକ୍ଷାର୍ଥୀ । ଅରିନ୍ଦମକୁ ଚାହିଁବା ଦେଖି ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ କାମଦାମ ସାରି ଏଇଠିକି ଆସ । ଆମେ ଅପେକ୍ଷା କରିଛୁ । ସକାଳର ପ୍ରସାଦ ଖାଇସାରିବା ପରେ ଆମେ ତୁମ ଶିବିରକୁ ଫେରିବା ।' ଅରିନ୍ଦମ ବୁଝିପାରିଲା ନାହିଁ ଭାନୁପ୍ରକାଶ ରାତିରେ ଶୋଇଛନ୍ତି କି ନାହିଁ । ଖୁବ୍ ସମ୍ଭବ ନୁହେଁ । ରାତିରେ ସେ ସଭା ଛାଡ଼ି ଆସିଲା ବେଳେ ଭାନୁପ୍ରକାଶ କି ଭାନୁପ୍ରିୟ କେହି ତା ସାଙ୍ଗରେ ଆସି ନ ଥିଲେ । ସେମାନେ ସଭାରେ ରହି ଶିକ୍ଷାର୍ଥୀମାନଙ୍କ ସାଙ୍ଗରେ ଆଲୋଚନା କରୁଥିଲେ । ଅଥଚ ସକାଳୁ ତାଙ୍କର କଥାବାର୍ତ୍ତା ବା କାମରୁ ସେ ଯେ ଗତ ରାତିରେ ହୁଏତ ଆଦୌ ଶୋଇ ନାହାନ୍ତି ସେକଥା ବୁଝିବାର ଉପାୟ ନାହିଁ । ଆଶ୍ଚର୍ଯ୍ୟ ।

ନିତ୍ୟକର୍ମ ସାରି ଅରିନ୍ଦମ ଭାନୁପ୍ରକାଶଙ୍କ ପାଖକୁ ଆସିଲା । ଦୁଇଟି ଗହଳିଆ ଗଛ ମଝିରେ ମାଟିରେ ଲିପାପୋଛା ହୋଇ ଗୋଟିଏ ନାତି ଉଚ୍ଚ ସୁନ୍ଦର ପରିଷ୍କାର ବସିବା ଜାଗା । ଭାନୁପ୍ରକାଶ ଓ ଭାନୁପ୍ରିୟ ସେଇଠି ବସିଥିଲେ । ସେମାନଙ୍କ ପାଖରେ ଚାରି ପାଞ୍ଚ ଜଣ ଅନ୍ୟ କେହି ଲୋକ । ଦୂରରୁ ଅରିନ୍ଦମ ଭାବିଥିଲା ସେମାନେ ଶିକ୍ଷାର୍ଥୀ । ପାଖକୁ ଆସି ଦେଖିଲା ପରେ ଅରିନ୍ଦମର ମନେହେଲା ସେମାନେ ଶିକ୍ଷାର୍ଥୀ ନୁହନ୍ତି, ଅନ୍ୟ ଲୋକ । ବୟସରେ ଶିକ୍ଷାର୍ଥୀ ମାନଙ୍କ ଠାରୁ ବଡ଼ । ଚେହେରା ମଧ୍ୟ ସେମାନଙ୍କ ଠାରୁ ଯଥେଷ୍ଟ ଅଧିକ ହୃଷ୍ଟପୁଷ୍ଟ । ସେ ଗତ କାଲି ଅନ୍ତତଃ ଏପରି ଲୋକଙ୍କୁ ଆଶ୍ରମରେ ଦେଖି ନାହିଁ, ଅରିନ୍ଦମ ଭାବିଲା ।

'ତୁମେ ଠିକ୍ ଭାବୁଛ ।' ଭାନୁପ୍ରକାଶ କହିଲେ, 'ଏମାନେ ଆଶ୍ରମର ଅନ୍ତେବାସୀ ନୁହନ୍ତି କି ଶିକ୍ଷାର୍ଥୀ ନୁହନ୍ତି । ଏମାନେ ସକାଳୁ ସକାଳୁ ଆସିଛନ୍ତି ମୋତେ ଓ ଭାନୁପ୍ରିୟଙ୍କୁ ଦେଖା କରିବା ପାଇଁ' । ତା'ପରେ ସେ ଟିକିଏ ରହିଗଲେ । ସେ ଲୋକମାନଙ୍କୁ ଚାହିଁଲେ ଓ କହିଲେ, 'ଏମାନେ ଜରାସନ୍ଧର ବ୍ୟକ୍ତିଗତ ରକ୍ଷୀ । ଏମାନେ ତିନିଦିନ ପରେ କଂସ ଓ ଜରାସନ୍ଧର ଝିଅମାନଙ୍କ ସାଙ୍ଗରେ ମଥୁରା ଯିବେ

ଓ ସେଇଠି ରହିବେ କଂସର ରକ୍ଷୀ ଭାବରେ ।

ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । କହିଲା, 'କିନ୍ତୁ ଆପଣଙ୍କ ସାଙ୍ଗରେ... ?'

ଭାନୁପ୍ରକାଶ ହସିଲେ, 'ହଁ, ଆମ ସାଙ୍ଗରେ । ବ୍ୟସ୍ତ ହୁଅନା, ଏମାନେ ଆମ ଲୋକ । ବସ, କଥା ଅଛି । ତୁମେ ମଥୁରା ଫେରିବା ଆଗରୁ ଏମାନଙ୍କ ସହିତ ଚିହ୍ନାଚିହ୍ନି ହୁଅ ।'

ଅରିନ୍ଦମ ବସିଲା । ଭାନୁପ୍ରକାଶ ପୁଣି କହିଲେ, 'ଆଉ ତିନିଦିନ ପରେ ତୁମେ ସମସ୍ତେ ମଥୁରା ଯିବ । ଏମାନେ ତ ଯିବେ, ଆଉ କିଛି ରକ୍ଷୀ ଓ ସୈନ୍ୟସାମନ୍ତ ବି ଅଛନ୍ତି । ସମସ୍ତେ, ଏପରିକି ଗୋପା ବି । ସେ ଜରାସନ୍ଧର ଝିଅମାନଙ୍କର ବନ୍ଧୁ ଓ ସାହାଯ୍ୟକାରିଣୀ ଭାବରେ ଯିବେ । ଜରାସନ୍ଧ ନିଜେ ବି ତୁମମାନଙ୍କ ସାଙ୍ଗରେ ବେଶ୍ କିଛି ବାଟ ଯିବ । ଝିଅ ଜୋଇଁକି ବାଟରେ ବଳେଇ ଦେଇ ଆସିବାକୁ ।'

'ଏସବୁ ବନ୍ଦୋବସ୍ତ କଅଣ ଠିକ୍ ହୋଇଗଲାଣି ?' ଅରିନ୍ଦମ ପଚାରିଲା ।

'ହଁ, ପ୍ରାୟ ।' କହିଲେ ଭାନୁପ୍ରକାଶ, 'ସେହିଯୋଗୁଁ ତୁମର ଏମାନଙ୍କୁ ଚିହ୍ନି ରଖିବା ଦରକାର । ଆମର ଆହୁରି ଅନେକ ଲୋକ ଅଛନ୍ତି । କିନ୍ତୁ ଏହିମାନେ ତୁମ ସହିତ ସମ୍ପର୍କ ରଖିବେ । ଏମାନେ ଆଗରୁ ମଥୁରା ଯାଇଛନ୍ତି । ମଥୁରାର ଅନେକ କଥା ଜାଣନ୍ତି । ତୁମର ନିଜେ ନିଜେ କିଛି କରିବା ଦରକାର ନାହିଁ । ତୁମେ ଖାଲି ଆଖି କାନ ଖୋଲା ରଖିବ । ଯେଉଁ ସାଙ୍କେତିକ ଶବ୍ଦରେ ତୁମ ସହିତ ସମ୍ପର୍କ ରହିବ ସେ ହେଲା 'ଦୁର୍ଗା'। ବୁଝିବ 'ଦୁର୍ଗା' କହୁଥିବା ଲୋକ ହିଁ ଆମ ଲୋକ । କେତେବେଳେ କ'ଣ କରିବାକୁ ହେବ ତୁମେ ତାଙ୍କରି ଠାରୁ ହିଁ ନିର୍ଦ୍ଦେଶ ପାଇବ । ଗୋଟିଏ କଥା ମନେ ରଖିବ । କଂସ ତୁମର ସାଙ୍ଗ ହୋଇପାରେ । କିନ୍ତୁ ସେ ଅତ୍ୟନ୍ତ ନିଷ୍ଠୁର, ନିର୍ଦ୍ଦୟ, ଏପରିକି ଜରାସନ୍ଧଠାରୁ ଅଧିକ, ତା'ର ସ୍ୱାର୍ଥ ପାଇଁ ସେ ଯେ କୌଣସି କାମ କରିପାରେ । ତା'ର କୌଣସି ଦୟାମାୟା ନାହିଁ । ତା' ନିକଟରେ ବାପା ମା, ଭାଇ ବନ୍ଧୁ କାହାରି ମୂଲ୍ୟ ନାହିଁ ।

ଭାନୁପ୍ରକାଶ ଟିକେ ରହିଗଲେ । ପୁଣି କହିଲେ, 'ଜରାସନ୍ଧ ସହିତ ବ୍ୟବହାରରେ ଆମକୁ ସାବଧାନ ହେବାକୁ ହେଉଥିଲା । ସେ ନିଷ୍ଠୁର ନିର୍ଦ୍ଦୟ ଠିକ୍, କିନ୍ତୁ ଅତ୍ୟନ୍ତ ଚତୁର । କଂସ ଜରାସନ୍ଧ ପରି ଏତେ ଚତୁର ନୁହେଁ । ସେ ଜରାସନ୍ଧ କଥାରେ ହିଁ ଚାଲିବ । ଜରାସନ୍ଧ କଥାରେ ହିଁ ସେ ଦେଶ ଜୟ କରିବ । ଜରାସନ୍ଧ ନିଜେ ଯାହା କରିବାକୁ ଚାହେଁ ନା, ସେସବୁ କଂସ କରିବ ।'

'ଆପଣ କ'ଣ ନିଜେ ମଥୁରା ଆସିବେ ?' ଅରିନ୍ଦମ ପଚାରିଲା,

'ନାଁ, ଏବେ ନୁହେଁ । ମୁଁ ଏବେ କୁରୁକ୍ଷେତ୍ର ଯିବି । ଜରାସନ୍ଧ ଓ କଂସ ଏ


Digitized by srujanika@gmail.com

ଉଭୟଙ୍କୁ ଏକାଠି କରି ଦେଖିବାକୁ ହେବ ଓ ଆମ ଯୋଜନା ସେମିତି ହେବ । ମୁଁ ଗୁରୁଦେବଙ୍କ ସହିତ ଆଲୋଚନା କରି କ'ଣ କରିବାକୁ ହେବ ଠିକ୍ କରିବି । ତେବେ ଭାନୁପ୍ରିୟ ନିକଟରେ ମଥୁରା ଯିବେ । ଗୋପା ତ ତୁମମାନଙ୍କ ସାଙ୍ଗରେ ଯିବେ । ଆଉ ଏ ବଂଧୁମାନେ ସମସ୍ତେ ଯିବେ । ମଥୁରା ବାହାରେ, ଯମୁନାର ତଳ ଆଡ଼କୁ, ଯମୁନା ଦେବୀଙ୍କ ମନ୍ଦିର ତୁମେ ଦେଖିଥିବ । ସେଇଠି ବର୍ତ୍ତମାନ ପାଇଁ ଆମର ଭେଟିବା ପାଇଁ ସ୍ଥିର ହୋଇଛି । କିନ୍ତୁ ତୁମର ସେଠିକି ବର୍ତ୍ତମାନ ଆସିବା ଦରକାର ନାହିଁ । ଖବର ପାଇଲେ ଆସିବ । ମନେ ରଖିଥା ଆମର ସାଙ୍କେତିକ ଶବ୍ଦ 'ଦୁର୍ଗା' ।'

ଅରିନ୍ଦମ ଦେଖିଲା ବେଶ ଦିନ ହୋଇ ଆସିଲାଣି । ପୂରା ଆଶ୍ରମ ସକାଳର ଉଜ୍ଜ୍ୱଳ କିରଣରେ ପୂରିଗଲାଣି । ଗତ ରାତିରେ ଅଧା ଆଲୁଅ ଅଧା ଅନ୍ଧାରରେ ଆଶ୍ରମର ସେ ଚୁପ୍‌ଚାପ୍ ଧ୍ୟାନ କଲାପରି ରୂପ ଆଉ ନାହିଁ ଯେଉଁଠି ସବୁ ରହସ୍ୟମୟ ମନେ ହେଉଥିଲା, ଅଧା ବୁଝିଲେ ଅଧା ବୁଝି ହେଉ ନ ଥିଲା । ଆଜି ସବୁ ଖୋଲା, ମୁକ୍ତ, ପରିପୂର୍ଣ୍ଣ ସୌନ୍ଦର୍ଯ୍ୟରେ ଉଦ୍ଭାସିତ । ସତ୍ୟକାମଙ୍କର ଅସ୍ତ୍ରଶିକ୍ଷା କାମ ସରିଗଲାଣି । ସେ ଆସି ପହଞ୍ଚିଲେ । କହିଲେ, 'ଆସ, ସକାଳର ପ୍ରସାଦ ସମସ୍ତେ ଖାଇଦବା । ଆଜି ମହାକାଳଙ୍କ ମନ୍ଦିରରେ ଜରାସନ୍ଧର ବିଶେଷ ପୂଜା । ବହୁ ବ୍ରାହ୍ମଣ ଆସୁଛନ୍ତି । ଆମର ପୂଜକମାନେ ବି ଯିବେ ।'

ଅରିନ୍ଦମକୁ ଟିକେ ଖଟକା ଲାଗିଲା । କହିଲା, 'ଆପଣଙ୍କର ପୂଜକ ? ଲକ୍ଷ୍ମୀନାରାୟଣଙ୍କ ମନ୍ଦିରର ବ୍ରାହ୍ମଣମାନେ ? ଜରାସନ୍ଧ ଜାଣନ୍ତି ? ସେଠି କିଛି ଅସୁବିଧା ହେବ ନାହିଁ ତ ?'

ସତ୍ୟକାମଙ୍କ ପାଇଁ ଭାନୁପ୍ରକାଶ ଉତ୍ତର ଦେଲେ, 'ଜରାସନ୍ଧ ଜାଣେ କି ନା ଠିକ୍ କହିହେବ ନି । ତେବେ ଭୟ କରିବାର କିଛି ନାହିଁ । ଜରାସନ୍ଧ ସଜ୍ଞାନରେ ବ୍ରାହ୍ମଣମାନଙ୍କର କିଛି କ୍ଷତି କରିବ ନାହିଁ । ତା ଛଡ଼ା ଆମର ବି ଉଦ୍ଦେଶ୍ୟ ଅଛି । ଜରାସନ୍ଧ ଏ ବିଶେଷ ପୂଜା କାହିଁକି ଦେଉଛି ଆମର ବି ଜାଣିବା ଦରକାର । ମହାକାଳ ପ୍ରତ୍ୟକ୍ଷ ଦେବତା । ଜରାସନ୍ଧ ବିନା ମତଲବରେ କିଛି କାମ କରେନା ।'

ସତ୍ୟକାମ କହିଲେ, 'ଭାନୁପ୍ରକାଶ ଠିକ୍ କହୁଛନ୍ତି । ଆମେ ଜାଣୁ ଜରାସନ୍ଧ ବି ଜାଣେ, ଗୁରୁଦେବଙ୍କ ଆଶୀର୍ବାଦରୁ ସେ ଆମର କିଛି କ୍ଷତି କରିପାରିବ ନାହିଁ । କିନ୍ତୁ ତା ରାଜ୍ୟରେ, ତା ଆଖି ଆଗରେ, ତାକୁ ଅବଜ୍ଞା କରି ଆମେ ଯେ ଆଶ୍ରମ କରିପାରିଛୁ ଏକଥା ସେ କେବେହେଲେ ଭୁଲିପାରିବ ନାହିଁ । ତେଣୁ ଆମକୁ ସବୁବେଳେ ସତର୍କ ରହିବାକୁ ପଡୁଛି । କିନ୍ତୁ ଜରାସନ୍ଧର ଏ ପୂଜା ଆମ ସମ୍ପର୍କରେ ବୋଲି ମୁଁ ଭାବୁନି । ଅନ୍ୟ କିଛି ଉଦ୍ଦେଶ୍ୟ ଅଛି ।'

'ମଗଧ ବାହାରୁ କିଛି କିଛି ନୂଆ ଲୋକେ ଏ ପୂଜା ପାଇଁ ଆସିଛନ୍ତି', ଭାନୁପ୍ରକାଶଙ୍କ ପାଖକୁ ଆସିଥିବା ଜରାସନ୍ଧଙ୍କ ରକ୍ଷୀଙ୍କ ଭିତରୁ ଜଣେ କହିଲେ, 'ନୂଆ ଲୋକ, ଆମେ ସେମାନଙ୍କୁ କେବେ ଏଠାରେ ଦେଖିନୁ । ମନେହେଉଛି ତନ୍ତ୍ରସାଧକ । ଆଉ ଏ ପୂଜା ଦିନେ ନୁହେଁ, ଦି ଦିନ ହେଉଛି, ଆଜି କାଲି । କଂସ ପ୍ରଧାନ ଭୋକ୍ତା । ସେ ଦି ଦିନ ପୂରା ଉପବାସ କରି ରହିବେ । ତାଙ୍କ ପାଖରେ ଜରାସନ୍ଧଙ୍କର ଝିଅମାନେ ବି ଆସି ବସୁଛନ୍ତି । ମହାକାଳଙ୍କ ଗର୍ଭଗୃହରେ କ'ଣ ହେଉଛି ଜାଣିବାର ଉପାୟ ନାହିଁ । ସେଠି କେବଳ ଜରାସନ୍ଧ, କଂସ ଓ ଦୁଇଜଣ ପୂଜକ, ବାସ୍ ।'

'ଜରାସନ୍ଧ ଓ କଂସ ମଧ୍ୟରେ ବୟସର ପ୍ରଭେଦ ଅଛି ।' ଭାନୁପ୍ରକାଶ କହିଲେ, 'ଜରାସନ୍ଧ ଯା ପାରିବନି କଂସ ତା ପାରିବ । ସେ କଂସ ଜରିଆରେ ନିଜର ଯା କିଛି ଯୋଜନା ସଫଳ କରିବାକୁ ଚାହେଁ, ଏକଥା ବୁଝି ହେଉଛି । ସେଥିପାଇଁ ଏ ଯେତେ ଯାହା ଆୟୋଜନ । ମୋର ମନେହୁଏ କଂସକୁ ସମ୍ପୂର୍ଣ୍ଣ ଭାବରେ ନିଜର ଅଧୀନକୁ ଆଣିବା ପାଇଁ ଏସବୁ ବନ୍ଦୋବସ୍ତ ।'

'ହୋଇପାରେ...' କଅଣ କହୁ କହୁ ସତ୍ୟକାମ ରହିଗଲେ, 'ଭାନୁପ୍ରକାଶ, ଥରେ ଗୁରୁଦେବ ଆମକୁ ଏ ବିଷୟରେ ବୁଝଉଥିଲେ । ମଣିଷର ମନ ଗୋଟାଏ ଅଦ୍ଭୁତ ବସ୍ତୁ । ତା'ର ନିଜର ଅମାପ ଶକ୍ତି । କିନ୍ତୁ ସେହି ମନକୁ ବଶୀଭୂତ କରିବା ବି ଅତି ସହଜ । ସତ ମିଛ କଥା କହି, ଅର୍ଥ ଲୋଭ, ବିଳାସ ବ୍ୟସନର ଲୋଭ, କ୍ଷମତାର ଲୋଭ ଏସବୁ ଦେଖେଇ, ସାଧାରଣ ଭାବରେ ବା ପୂଜା ଅର୍ଚ୍ଚନା, ତନ୍ତ୍ରମନ୍ତ୍ର ଜରିଆରେ ଏ କାମ କରାଯାଇପାରେ । ମୋର ମନେହୁଏ କଂସକୁ ମଥୁରା ଯିବା ଆଗରୁ ସମ୍ପୂର୍ଣ୍ଣ ଭାବରେ ନିଜର ବଶୀଭୂତ କରି ରଖିବା ପାଇଁ ଏସବୁ ବ୍ୟବସ୍ଥା । ମହାକାଳ କେବଳ ଉପଲକ୍ଷ୍ୟ ।'

'ମୁଁ ବି ସେହିକଥା ଭାବୁଛି ।' ଭାନୁପ୍ରକାଶ କହିଲେ ।

ଅନେକ ଶିକ୍ଷାର୍ଥୀ ଆସିଗଲେଣି । ସମସ୍ତେ ଉଠି ମନ୍ଦିରକୁ ପ୍ରସାଦ ଖାଇବାକୁ ଗଲେ । ଅରିନ୍ଦମ କିଛି ଶିକ୍ଷାର୍ଥୀଙ୍କ ସହିତ କଥାବାର୍ତ୍ତା ହେଲା । ସେମାନେ ବିଭିନ୍ନ ଆଡୁ ଆସିଛନ୍ତି । ସେଇଟା ହିଁ ତାକୁ ଭଲ ଲାଗୁଥାଏ । ସେମାନେ ସମସ୍ତେ ପ୍ରାୟ ତାରି ବୟସର । କିନ୍ତୁ ସେମାନଙ୍କର ସମସ୍ତଙ୍କର ଯେ ସମାନ ଅବସ୍ଥା ତା ନୁହେଁ । କେତେକଙ୍କର ସ୍ୱଚ୍ଛଳ ପରିବାର, ବାପା ରାଜକର୍ମଚାରୀ ବା ଧନୀ ଲୋକ, ଆଉ କିଛି ଧନୀ ନ ହେଲେ ମଧ୍ୟ ସ୍ୱଚ୍ଛଳ, କୃଷିଜୀବୀ ପରିବାର ବା ବ୍ୟବସାୟୀ । କିଛି ଦରିଦ୍ର ପରିବାରର ଶିକ୍ଷାର୍ଥୀ ମଧ୍ୟ ଅଛନ୍ତି । କିନ୍ତୁ ଆଶ୍ରମରେ ସେସବୁ ପ୍ରଭେଦ ନାହିଁ । ବିଭିନ୍ନ ଜାତି କର୍ମର ପ୍ରଭେଦ ମଧ୍ୟ ନାହିଁ । ସମସ୍ତେ ଏକ । ସମସ୍ତଙ୍କର ଉଦ୍ଦେଶ୍ୟ ମଧ୍ୟ ସମାନ

- ନୂଆ ସମାଜ, ନୂଆ ସଂଗଠନ, ମଣିଷର ସମ୍ମାନ, ମନର ମୁକ୍ତି । ଭାନୁପ୍ରକାଶ, ଭାନୁପ୍ରିୟ, ସତ୍ୟକାମ ଓ ସମସ୍ତଙ୍କ ପଛରେ ଶ୍ରେଷ୍ଠ ଜ୍ଞାନୀ ବ୍ୟାସଦେବ । ତା' ଆଖି ଆଗରେ ନୂଆ ନୂଆ ଦିଗନ୍ତ ଖୋଲିଗଲା ଯାହା ମଥୁରାର ସୀମା ଭିତରେ ଜାଣିବାର ସୁବିଧା ନ ଥିଲା ।

ଭାନୁପ୍ରକାଶ ସତ୍ୟକାମଙ୍କ ଆଶ୍ରମରୁ ଫେରିବା ପାଇଁ ପ୍ରସ୍ତୁତ ହେଲେ । ଅରିନ୍ଦମ ଲକ୍ଷ୍ୟ କଲା ସେ, ଭାନୁପ୍ରିୟ ଓ ସତ୍ୟକାମ ନିଭୃତରେ ବସି ଅନେକ ସମୟ ଧରି କ'ଣ ସବୁ ଆଲୋଚନା କଲେ । ପରେ ସତ୍ୟକାମ ବାହାରି ଆସି ଅରିନ୍ଦମକୁ ପାଖକୁ ଡାକିଲେ, କହିଲେ, 'ଅରିନ୍ଦମ, ଶୁଣ । ଆମେ ଗୋଟାଏ କଥା ନିଷ୍ପତ୍ତି କରିଛୁ । ତୁମର ମତାମତ ଦରକାର ।' କିଛି ନ କହି ଅରିନ୍ଦମ ଶୁଣିବା ପାଇଁ ଅପେକ୍ଷା କଲା । ସତ୍ୟକାମ କିଛି ସମୟ ଚୁପ୍ ରହି କହିଲେ, 'ଆମେ ନିଷ୍ପତ୍ତି କରିଛୁ ତୁମେ ଆଶ୍ରମରେ ଆସି କିଛିଦିନ ରହିବ ।

'ଏବେ ?' ଅରିନ୍ଦମ ପଚାରିଲା ।

'ନାଁ, ଏବେ ନୁହେଁ', ସତ୍ୟକାମ କହିଲେ, 'ତୁମେ ଏବେ କଂସ ସାଙ୍ଗରେ ମଥୁରା ଫେରିଯିବ । ମଥୁରା ଫେରି କଂସ କୋଉ ଢଙ୍ଗରେ କାମ କରିବ ସେ କଥା ସ୍ପଷ୍ଟ ହେଲା ପରେ ତୁମର ଏଠିକି ଆସିବା କଥା ଉଠିବ । ଆମର ଆଶଙ୍କା କଂସ ଖୁବ୍ ଶୀଘ୍ର ତା କାମ ଆରମ୍ଭ କରିଦେବ । କାରଣ ଜରାସନ୍ଧର ତାହାହିଁ ଯୋଜନା । ସେ ଶୀଘ୍ର ଶୀଘ୍ର କାମ କରିବାକୁ ଚାହେଁ, ଯେପରି ଆର୍ଯ୍ୟାବର୍ତ୍ତର ରାଜାମାନେ ଭୟରେ ତା ବଶୀଭୂତ ହେବେ । କଂସର ପ୍ରଥମ କାମ ହେବ ଉଗ୍ରସେନଙ୍କୁ ତଡ଼ି ନିଜେ ମଥୁରାର ରାଜା ହେବା । ସେଥିପାଇଁ ସେ ମଗଧରୁ ସୈନ୍ୟସାମନ୍ତ ଧରି ପ୍ରସ୍ତୁତ ହୋଇ ଯାଉଛି । କିନ୍ତୁ ସେତିକି ଯଥେଷ୍ଟ ନୁହେଁ । ଉଗ୍ରସେନ ରାଜା ଠିକ୍, କିନ୍ତୁ ମଥୁରାର ଶାସନର ମୂଳ ରାଜା ନୁହନ୍ତି, ଗୋଷ୍ଠୀ-ମୁଖ୍ୟମାନେ । ସେମାନଙ୍କୁ ନିଜ ଅଧୀନକୁ ନ ଆଣିଲେ ବା ସେମାନଙ୍କୁ ତଛନଛ କରି ଭାଙ୍ଗି ନ ଦେଲେ କଂସ ରାଜା ହୋଇ ବି ରାଜା ହୋଇ ପାରିବନି । କ୍ଷମତା ଆସିବନି । ସେମାନଙ୍କ ବିଷୟରେ କଂସ କ'ଣ କରିବ ଆମର ସ୍ପଷ୍ଟ ଧାରଣା ନାହିଁ । ତେବେ କଂସ ଯେ ସେମାନଙ୍କର କ୍ଷମତା ଭାଙ୍ଗିଦେବାକୁ ଚେଷ୍ଟା କରିବ ସେ ବିଷୟରେ ଆମର ସନ୍ଦେହ ନାହିଁ । କିନ୍ତୁ କେମିତି ସେ କଥା ଆମେ ଭାବୁଛୁ । କଂସ କିଛିଦିନ ରାଜା ହେବାପରେ ସେ କଥା ବୁଝି ହେବ । ତେବେ ଆମର ମନେହୁଏ, ପ୍ରଥମ ମାଡ଼ ବୋଧହୁଏ ବସୁଦେବଙ୍କ ଉପରେ ପଡ଼ିବ ।'

'ବସୁଦେବ ? ସେ ତ ଖୁବ୍ ଶାନ୍ତଶିଷ୍ଟ ଚୁପ୍‌ଚାପ୍ ଲୋକ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, 'ବାପାଙ୍କର ତାଙ୍କ ବିଷୟରେ ଖୁବ୍ ଭଲ ଧାରଣା । ବାପା କହନ୍ତି ବସୁଦେବ


Digitized by srujanika@gmail.com

ଦେବପ୍ରତିମ ଲୋକ । ମଥୁରାରେ ଏପରି ଲୋକ ନାହାନ୍ତି । ବସୁଦେବଙ୍କ ପ୍ରତି ଆମ ସମସ୍ତଙ୍କର ଭଲ ଧାରଣା । ସେ ମାଛିକୁ ମ କହନ୍ତିନି, ଆଉ ତାଙ୍କର ମଥୁରାରେ ଜଣେ ହେଲେ ଶତ୍ରୁ ନାହାନ୍ତି ।'

'ସେସବୁ ଠିକ୍', ସତ୍ୟକାମ କହିଲେ, 'ବସୁଦେବ ସାଧୁ, ସତ୍ୟନିଷ୍ଠ, ଦେବତାରେ ଅଚଳା ଭକ୍ତି । ଭଲ ମଣିଷ କହିଲେ ଯାହା ବୁଝାଯାଏ ସେ ସେହି ଭଲ ମଣିଷ । କିନ୍ତୁ ସେଇଟା ହିଁ ତାଙ୍କର ଅସୁବିଧା । କଂସ ଯାହା କରୁ, ଯେତେ ଅତ୍ୟାଚାର, ଦୁର୍ନୀତି କରୁ ସେ ତା'ର ପ୍ରତିବାଦ କରିପାରିବେନି । ଅଥଚ ତାଙ୍କର ସୁର ଗୋଷ୍ଠୀ ମଥୁରାର ସବୁଠାରୁ ଶକ୍ତିଶାଳୀ ଗୋଷ୍ଠୀ । କଂସ ପ୍ରଥମେ ସେହି ଗୋଷ୍ଠୀକି ଭାଙ୍ଗିଦେବାକୁ ଚେଷ୍ଟା କରିବ ।'

'ମଥୁରାରେ ସୁର ଗୋଷ୍ଠୀ ତ ପ୍ରଧାନ ଗୋଷ୍ଠୀ', ଅରିନ୍ଦମ କହିଲା, 'ଆମେ ସମସ୍ତେ ତ ସୁର ଗୋଷ୍ଠୀର । ବସୁଦେବ ଗୋଷ୍ଠୀର ନେତା । ସମସ୍ତେ ତାଙ୍କୁ ମାନନ୍ତି । ଏ ଗୋଷ୍ଠୀ ବିରୁଦ୍ଧରେ ଯାଇ କଂସ କ'ଣ ରାଜତ୍ୱ କରି ପାରିବ ?'

'ପାରିବ', ସତ୍ୟକାମ କହିଲେ, 'କଂସ ପାଖରେ କ୍ଷମତା, ଅର୍ଥ, ବଳ । ଏ ତିନି ଅସ୍ତ୍ରକୁ ସେ ବ୍ୟବହାର କରିବ । ମଥୁରା ଲୋକେ ଏସବୁ ସହିତ ଅଭ୍ୟସ୍ତ ହୋଇ ନାହାନ୍ତି । କଂସର ଅତ୍ୟାଚାର ଓ ଜରାସନ୍ଧର ଚତୁରତା ଏ ଉଭୟ ସହିତ ସେମାନଙ୍କୁ ଲଢ଼ିବାକୁ ପଡ଼ିବ ।'

ସେଦିନ ଆହୁରି ଅନେକ କଥାବାର୍ତ୍ତା ହେଲା । ଗୋଟିଏ କଥା ଅରିନ୍ଦମ ସ୍ପଷ୍ଟ ବୁଝିଲା ଯେ ଉଭୟ ସତ୍ୟକାମ ଓ ଭାନୁପ୍ରକାଶ ମଗଧଠାରୁ ମଥୁରା ବିଷୟରେ ବେଶି ଚିନ୍ତିତ ଓ ଜରାସନ୍ଧ ନୁହେଁ କଂସ ହିଁ ସେମାନଙ୍କର ସବୁ ଭବିଷ୍ୟତ କାର୍ଯ୍ୟର ଲକ୍ଷ୍ୟ । ତେବେ ଗୋଟାଏ କଥା ତା ମନରେ ଗୋଳମାଳ ହୋଇ ରହିଗଲା । ସେ ବସୁଦେବଙ୍କ କଥା । ଏମାନଙ୍କର ଧାରଣା କଂସ ରାଜା ହେବା ସାଙ୍ଗେ ସାଙ୍ଗେ ସୁର ଗୋଷ୍ଠୀ ବସୁଦେବଙ୍କ ପ୍ରତି ପ୍ରଥମେ ନଜର ଦେବ । କିନ୍ତୁ କେମିତି ? ତା'ହେଲେ ତ ମଥୁରା ଭିତରେ କଳହ ଆରମ୍ଭ ହୋଇଯିବ ।

'ହଁ ହେଇଯିବ ।' ଅରିନ୍ଦମର ମନ କଥା ଜାଣିବା ପରି ଭାନୁପ୍ରକାଶ ଉତ୍ତର ଦେଲେ, 'ଆମେ ବି ସେହିକଥା ଭାବୁଛୁ । କେମିତି ? କଂସ ନିଶ୍ଚୟ ଆରମ୍ଭରୁ ଗୋଳମାଳ କରିବାକୁ ଇଚ୍ଛା କରିବନି । ଆରମ୍ଭରୁ ସେ ବିଭିନ୍ନ ଗୋଷ୍ଠୀର ଲୋକଙ୍କୁ ନିଜ ପକ୍ଷକୁ ଆଣିବାକୁ ଚେଷ୍ଟା କରିବ ।'

'ତାହାହିଁ ମନେ ହେଉଛି ସମ୍ଭବ ।' ସତ୍ୟକାମ କହିଲେ, 'ତା'ଛଡ଼ା ସେ ଯଦି ରାଜ୍ୟ ଜୟ ପ୍ରଭୃତି କାମ ଆରମ୍ଭ କରିଦିଏ, ଯାହା ଜରାସନ୍ଧର ଇଚ୍ଛା, ତା ହେଲେ


Digitized by srujanika@gmail.com

ତା'ରି ବୟସର ତରୁଣମାନଙ୍କୁ ସେ ନିଜର ସୈନ୍ୟସାମନ୍ତ କରି ନବ ଓ ସେ ସେମାନଙ୍କର ସମର୍ଥନ ପାଇବ ।' ଅରିନ୍ଦମର ମନେହେଲା ସତ୍ୟକାମ ଠିକ୍ କହୁଛନ୍ତି । ସେ କହିଲା, 'ଆପଣ ଯାହା କହୁଛନ୍ତି ତା' ସମ୍ଭବ । ବର୍ତ୍ତମାନ ବି ମୋରି ବୟସର ତରୁଣ ଗୋଷ୍ଠୀର ଲୋକମାନେ କଂସକୁ ସମର୍ଥନ କରନ୍ତି । ସେମାନେ ସବୁ ଉଗ୍ରସେନଙ୍କୁ ଖୁବ୍ ବେଶି ପସନ୍ଦ କରନ୍ତି ନାହିଁ । ସମସ୍ତେ ଚାହାନ୍ତି ଜଣେ ଟାଣୁଆ, ଯୋଦ୍ଧା ରାଜା ଯେ କି ମଥୁରାକୁ ଗୌରବ ଆଣିଦେବ ।'

'ମୁଁ ବସୁଦେବଙ୍କ କଥା ଭାବୁଛି', ଭାନୁପ୍ରକାଶ କହିଲେ, 'କଂସ ବସୁଦେବଙ୍କ ପାଖରୁ ତା'ର ଯୋଜନା ଆରମ୍ଭ କରିବ ଏ ବିଷୟରେ ମୁଁ ନିଶ୍ଚିତ । ବସୁଦେବଙ୍କୁ ତା ଅଧୀନକୁ ଆଣିପାରିଲେ, ସମୁଦାୟ ସୁର ଗୋଷ୍ଠୀ ତା ଅଧୀନକୁ ଆସିଯିବେ । କଂସ ସେହି ଚେଷ୍ଟା କରିବ । ଯେପରି ଭାବରେ ହେଉ ସେ ବସୁଦେବଙ୍କୁ ବଶୀଭୂତ କରିବ ।'

'ଅତ୍ୟାଚାର କରି ?' ଅରିନ୍ଦମ ପ୍ରାୟ ନିଜକୁ ନିଜେ କହିଲା ।

'ତା ବି ସମ୍ଭବ', ଭାନୁପ୍ରକାଶ କହିଲେ ।

ସତ୍ୟକାମଙ୍କ ଆଶ୍ରମ ଛାଡ଼ି ଭାନୁପ୍ରକାଶ, ଭାନୁପ୍ରିୟ ଓ ଅରିନ୍ଦମ ଆସିଲା ବେଳକୁ ସକାଳ ପ୍ରାୟ ଗଡ଼ି ଯାଇଥିଲା ଓ ସୂର୍ଯ୍ୟ ଗଛ ବୃକ୍ଷ ଉପରକୁ ଉଠି ଆସିଲେଣି । ଶରତ ସମୟର ପରିଷ୍କାର ଦିନ । ଅରିନ୍ଦମ ଭାବିଥିଲା ସେମାନେ ମହାକାଳଙ୍କ ମନ୍ଦିର ପାଖ ଯେଉଁ ଜଙ୍ଗଲ ଦେଇ ଆସିଥିଲେ ସେହି ବାଟେ ଫେରିବେ । କିନ୍ତୁ ନାଁ, ଭାନୁପ୍ରକାଶ ନଈଆଡ଼କୁ ଚାଲିଲେ । ସେ କହିଲେ, 'ଆମେ ନଈ ଟପିବା ନାହିଁ । ନଈ ଏ ପାଖରେ ଆଉ ଗୋଟିଏ ଜଙ୍ଗଲ ବାଟ ଅଛି । ଟିକିଏ ବୁଲାଣି ପଡ଼ିବ । ଆମେ ସେହିବାଟେ ଗିରିବ୍ରଜ ଫେରିଯିବା । ବାଟରେ ମହିଷମର୍ଦ୍ଦିନୀଙ୍କର ପିଠସ୍ଥାନ, ତୁମେ ଦେବୀଙ୍କୁ ଦର୍ଶନ କରିବ । ଏ ବହୁତ ପୁରୁଣା ପୀଠ, ଗୁରୁଦେବ କହନ୍ତି ବ୍ରହ୍ମର୍ଷି ବଶିଷ୍ଠଙ୍କ ଦିନରୁ ଏ ପୀଠ ସ୍ଥାପିତ ହୋଇଛି ଓ ସେହି ଦିନଠାରୁ ଏ ପୀଠର ମାହାତ୍ମ୍ୟ',

'ଜରାସନ୍ଧ ଏ ପୀଠକୁ ଆସନ୍ତି ?'

'ନାଁ, ସେ ମହାକାଳଙ୍କର ଭକ୍ତ । କିନ୍ତୁ ଗିରିବ୍ରଜକୁ ଯେତେ ମୁନିଋଷି ଆସନ୍ତି ସମସ୍ତେ ଦେବୀଙ୍କୁ ଦର୍ଶନ କରି ଫେରନ୍ତି । ତୁମେ ପୀଠ ସ୍ଥାନକୁ ଚାଲ, ଦେବୀଙ୍କର ମାହାତ୍ମ୍ୟ ବୁଝିପାରିବ ।'

ଦେବୀଙ୍କର ମାହାତ୍ମ୍ୟ କି କ'ଣ ସେ ଜାଣେ ନା, କିନ୍ତୁ ଦେବୀଙ୍କୁ ଦର୍ଶନ କରି ଅରିନ୍ଦମ ଅଭିଭୂତ ହୋଇ ଯାଇଥିଲା । ଦେବୀ ବାରଭୁଜା, ପଦରେ ମହିଷାସୁରକୁ ଦଳିତ କରି ଦେବୀ ପ୍ରଚଣ୍ଡ ତେଜରେ ଦେଦୀପ୍ୟମାନ । ତେଜ ଯେପରି ଦେବୀଙ୍କର

ସମଗ୍ର ଶରୀରରୁ ନିର୍ଗତ ହେଉଛି । ଅରିନ୍ଦମର ମନେହେଲା ଆଖି ମେଲାକରି ସେ ଦେବୀଙ୍କୁ ସମ୍ପୂର୍ଣ୍ଣ ଭାବରେ ଦେଖିପାରିବ ନାହିଁ । ସେ ଦେଖିଲା ଭାନୁପ୍ରକାଶ ଓ ଭାନୁପ୍ରିୟ ବିନୀତ ଭାବରେ ଯୋଡ଼ହସ୍ତ ହୋଇ ଦେବୀଙ୍କ ପାଖରେ ବସିଲେ । ସେ ବି ବସିଲା । ଏକ ଅପୂର୍ବ ସୁଗନ୍ଧିରେ ସାରା ପୀଠସ୍ଥାନ ପୂରି ଉଠିଥାଏ, ତା'ର ମନେହେଲା ଦୂରରୁ କେଉଁଠୁ ଅସ୍ପଷ୍ଟ ଭାବରେ ଦେବୀଙ୍କର ସ୍ତୋତ୍ର ଭାସି ଆସୁଥାଏ । ତା'ର ସାରା ଦେହ ଉଲ୍ଲସିତ ହୋଇ ଉଠିଲା, ସାରା ମନ ଅପୂର୍ବ ଆନନ୍ଦରେ ପୂରିଗଲା । କିନ୍ତୁ ଦେବୀଙ୍କ ମନ୍ଦିରରେ ଆଡ଼ମ୍ବର କିଛି ନାହିଁ । ଛୋଟ ମନ୍ଦିର । ଚାରିପାଖର ଆଲୁଅ ଆସୁ ନ ଥିବା ଘଞ୍ଚ ଜଙ୍ଗଲ ମଝିରେ ଦେବୀ ଚୁପଚାପ ବସି ରହିଛନ୍ତି । ଜଣେ ପୂଜକ, ସେ ବି ରହେନା, ଦେବୀଙ୍କର ପୂଜା ଅର୍ଚ୍ଚନା ସମୟରେ ଆସେ ଓ ପ୍ରାୟ ସନ୍ଧ୍ୟା ସନ୍ଧ୍ୟା ଦେବୀଙ୍କର ପହଡ଼ ପଡ଼ିଯାଏ । ଦେବୀଙ୍କର ପୂଜା ଅର୍ଚ୍ଚନା ଭୋଗରାଗ ପାଇଁ ଯାହା ଖର୍ଚ୍ଚ ପୂଜକ ପାଖରେ ମାସ ଆରମ୍ଭରୁ ପହଞ୍ଚିଯାଏ । ପୂଜକ ବି ଜାଣେନା କେଉଁଠୁ ଆସେ । କିନ୍ତୁ ପୂଜକ କହେ କୌଣସି ମାସରେ ଥରେ ହେଲେ ବି କେବେ ବ୍ୟତିକ୍ରମ ହୋଇନି । ଜରାସନ୍ଧ ବା ତାଙ୍କ ଲୋକେ ଗୋଳମାଳ କରନ୍ତିନି ତ ? - ଅରିନ୍ଦମ ଜାଣିବାକୁ ଚାହିଁଥିଲା । ନାଁ, ସେମାନେ ମନ୍ଦିର ପାଖକୁ କେବେ ଆସନ୍ତି ନାହିଁ, ପୂଜକ କହିଥିଲେ । କୌଣସି ମନ୍ଦ ଉଦ୍ଦେଶ୍ୟ ରଖି କେହି ଦେବୀଙ୍କ ପାଖକୁ ଆସିପାରିବ ନାହିଁ । ପୂଜକ ହାତଯୋଡ଼ି ଦେବୀଙ୍କୁ ନମସ୍କାର କରିଥିଲା - ଏ ଦେବୀଙ୍କର ମାହାତ୍ମ୍ୟ । ଭାନୁପ୍ରକାଶ କହିଥିଲେ ଅରିନ୍ଦମ, ତୁମେ ଦେବୀଙ୍କ ପାଖରେ ମାନସିକ କରିପାର । ଦେବୀଙ୍କ ପାଖରେ ଯାହା ମାନସିକ କରାଯାଏ, ତା ପୂର୍ଣ୍ଣ ହୁଏ । ଅରିନ୍ଦମର ମନେ ଅଛି ସେ ହସି ଭାନୁପ୍ରକାଶଙ୍କୁ ନମସ୍କାର କରିଥିଲା ଓ କହିଥିଲା ମୋର ମାନସିକ ଆପଣଙ୍କ କାର୍ଯ୍ୟ ସଫଳ ହେଉ ।

ଭାନୁପ୍ରକାଶ ବି ହସିଥିଲେ, କହିଥିଲେ, 'ଅରିନ୍ଦମ ମୁଁ ତୁମଠାରେ ତୁମ ବାପାଙ୍କୁ ଦେଖୁଛି । ଦେବୀଙ୍କ ଦୟାରେ ସବୁ ଅନ୍ୟାୟ, ଅତ୍ୟାଚାରର ଶେଷ ହେବ ।'

ଦେବୀଙ୍କର ଗର୍ଭଗୃହରୁ ପୂଜକର ଉଦାତ୍ତ କଣ୍ଠସ୍ୱରରେ ବୈଦିକ ଦେବୀସୁକ୍ତମ ଭାସି ଆସିଲା । ସେହି ସୁକ୍ତର ଅପରୂପ ଆବାହନୀରେ ସମଗ୍ର ବନଭୂମି ପୂର୍ଣ୍ଣ ହୋଇଗଲା... "ଯଂ କାମହେ ତଂ ତମୁଗ୍ରଂ କୃନୋମି ତଂ ବ୍ରହ୍ମାନଂ ତମୃଷିଂ ତଂ ସୁମେଧାମ୍ ।" .....ମୁଁ ଯାହାକୁ ରକ୍ଷା କରିବାକୁ ସେହି ପୁରୁଷମାନଙ୍କୁ ସର୍ବଶ୍ରେଷ୍ଠ କରେ, ତାହାଙ୍କୁ ବ୍ରହ୍ମା କରେ, ତାହାଙ୍କୁ ଋଷି କରେ, ତାହାଙ୍କୁ ଉତ୍ତମ ପ୍ରଜ୍ଞାଶାଳୀ କରେ..... ଅରିନ୍ଦମ ଶୁଣିଲା ଭାନୁପ୍ରକାଶ ଚକ୍ଷୁ ମୁଦ୍ରିତ କରି ଆସ୍ତେ ଆସ୍ତେ ଉଚ୍ଚାରଣ କରୁଛନ୍ତି - "ଯଂ କାମଯେ ତଂ ତମୁଗ୍ରଂ କୃନୋମି ତଂ ବ୍ରହ୍ମାନଂ ତମୃଷିଂ ତଂ

ସୁମେଧାମ ।" ସେମାନେ ମଧ୍ୟାହ୍ନ ପୂର୍ବରୁ ଶିବିରକୁ ଫେରି ଆସିଲେ ଓ ଏହାର ଦୁଇଦିନ ପରେ କଂସ ଗହଣରେ ଅରିନ୍ଦମ ମଥୁରା ଫେରିଆସିଲା ।

ଆଜି ଏତେ ବର୍ଷ ପରେ ସେସବୁ ଚିନ୍ତାକରି ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗୁଛି । ଘଟଣା ସବୁ କେତେ ଶୀଘ୍ର ଶୀଘ୍ର ଘଟିଗଲା । ତା'ର ମଗଧ ଯିବା ପାଇଁ ସେପରି କିଛି ଯୋଜନା ନ ଥିଲା । ହଠାତ୍ ଠିକ୍ ହେଲା । ମଗଧର ମଲ୍ଲକୁସ୍ତିରେ ଯୋଗ ଦେବା ପାଇଁ ଜରାସନ୍ଧଙ୍କ ପାଖରୁ କଂସକୁ ନିମନ୍ତ୍ରଣ ଆସିଲା । ସେ ବି ଟିକିଏ ଆଶ୍ଚର୍ଯ୍ୟ କଥା । ବିଶେଷ କରି କଂସକୁ ଯିବା ପାଇଁ ନିମନ୍ତ୍ରଣ ଆସିଥିଲା । କଂସ ଯିବା ପାଇଁ ପ୍ରସ୍ତୁତ ହେଲା । କିନ୍ତୁ ସେ ଏକା ଯିବ କେମିତି ? ସେ ଯେତେହେଲେ ରାଜପୁତ୍ର । ସସମ୍ମାନେ ସେ ଯିବ ଓ ତା ସାଙ୍ଗରେ ତା'ର ସମବୟସୀ ଅନ୍ୟମାନେ ବି ଯିବେ ବୋଲି ଗୋଷ୍ଠୀ-ମୁଖ୍ୟମାନେ ସ୍ଥିର କଲେ । ତେଣୁ ଅନ୍ୟମାନଙ୍କ ସାଙ୍ଗରେ ଅରିନ୍ଦମ ବି ବଛା ହେଲା । ଆଶ୍ଚର୍ଯ୍ୟ, ବାପା ବି ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ଜାଣିଲା ପରି ସେ କହିଲେ ଯା, ମଗଧରେ ତୋର କାମ ଅଛି । ମୋର ସେଠି କିଛି ପରିଚିତ ଲୋକ ଅଛନ୍ତି, ସେମାନେ ତୋତେ ଦେଖାକରି ପାରନ୍ତି । ଆଉ କଂସ ସାଙ୍ଗରେ ଗଲେ ବି କଂସଠାରୁ ଦୂରେଇ ଦୂରେଇ ରହିବୁ । ଅରିନ୍ଦମ ଗିରବ୍ରଜ ଯିବା ଦିନରୁ ଫେରି ଆସିବା ପର୍ଯ୍ୟନ୍ତ ଯାହା ଯାହା ଘଟିଗଲା, ଯେତେ କଥା ସେ ଜାଣିଲା, ତା'ର ମନେହେଲା ଏ ଗୋଟାଏ ନୂଆ ଜୀବନ, ଯେଉଁ ଜୀବନ ସହିତ ତା'ର ପରିଚୟ ନ ଥିଲା, ନୂଆ ନୂଆ ଜାଣିବା, ବୁଝିବା, ନିଷ୍ପତ୍ତି ନେବାର ଯେଉଁ ଶକ୍ତି, ଏ ଶକ୍ତି ତା'ର ଆଗରୁ ନ ଥିଲା । ବାପା ବୋଧହୁଏ ଏହିପରି କିଛି ଆଶା କରିଥିଲେ । ତେଣୁ ସେ ଫେରି ଯେତେବେଳେ ବାପାଙ୍କୁ ଦେଖାକଲା ବାପା ଆଶୀର୍ବାଦ କଲେ ଓ କହିଲେ, ଆଗରେ ବହୁତ ଜଞ୍ଜାଳ ଅଛି । ଯାହା କରିବୁ ମୁଣ୍ଡଟେକି, ଦମ୍ଭରେ କରିବୁ । ବାପାଙ୍କ କଥା ସବୁଦିନେ ସେହିପରି, ଅଧା ବୁଝି ହୁଏତ ଅଧା ବୁଝି ହୁଏନା, କିନ୍ତୁ ସେ ଯେପରି ଭାବରେ ନୂଆ ଅଭିଜ୍ଞତା ନେଇ ଫେରି ଆସିଲା ବାପା ଯେ ସେଥିରେ ବହୁତ ଖୁସି ଏକଥା ସେ ସ୍ପଷ୍ଟ ବୁଝି ପାରିଲା ।

ମଗଧରୁ ସ୍ତ୍ରୀ ଓ ସୈନ୍ୟସାମନ୍ତ ଧରି କଂସ ଫେରିଆସିବା ପରେ, ମଥୁରାରେ ବେଶ କିଛିଦିନ ଗୋଟାଏ ଉତ୍ସବ ଯେମିତି ଲାଗିଗଲା । କଂସ ଜରାସନ୍ଧଙ୍କର ଦି ଝିଅଙ୍କୁ ଯେ ବିଭାହେବ ଏକଥା କେହି ଭାବି ନ ଥିଲେ । ଜରାସନ୍ଧ ପ୍ରସିଦ୍ଧ ରାଜା, ମଗଧ ଶକ୍ତିଶାଳୀ ରାଜ୍ୟ । ଏ କେବଳ କଂସ ନୁହେଁ, ଜରାସନ୍ଧ ଯେପରି ମଥୁରାର ଅଭିଭାବକ ହୋଇଗଲେ, ଏହି ଭାବନା । କଂସ ଯେତେ ଜାନିଯୌତୁକ ଆଣିଥିଲା, ଜରାସନ୍ଧଙ୍କର ସୈନ୍ୟମାନଙ୍କର ପୋଷାକପତ୍ରର ବିଳାସିତା, କଂସ ସାଙ୍ଗରେ


Digitized by srujanika@gmail.com

ଜରାସନ୍ଧଙ୍କର ଯେଉଁ ମନ୍ତ୍ରୀମାନେ ଆସିଥିଲେ ସେମାନଙ୍କର ରାଜକୀୟ ବ୍ୟବହାର, ଉଚ୍ଚ ମିଜାଜ, ଏସବୁ ମଥୁରାର ଲୋକମାନଙ୍କୁ ବେଶ୍ ଅଭିଭୂତ କରିଥିଲା । ବିଶେଷ କରି ତରୁଣ ଗୋଷ୍ଠୀର ଲୋକମାନେ କଂସକୁ ଗୋଟାଏ ଆଦର୍ଶ ପରି ଗ୍ରହଣ କରିନେଲେ । କଂସ ସେମାନଙ୍କୁ ବିଭିନ୍ନ କାମରେ ଡକେଇ ପଠେଇଲା, ସେମାନଙ୍କୁ ଧରି ସଭାସମିତି କଲା, ସେମାନଙ୍କୁ ବିଭିନ୍ନ ଭାବରେ ଆପ୍ୟାୟିତ କଲା । ସମସ୍ତେ ଖୁସି, ସବୁଆଡ଼େ ସେମାନେ କଂସର ଜୟଜୟକାର କରି ବୁଲିଲେ, ଅନେକେ କଂସର କିଣା ଗୋଲାମ ପରି ହୋଇଗଲେ । ବୟସ୍କ ଲୋକମାନଙ୍କୁ ବି କଂସ ଆଶ୍ଚର୍ଯ୍ୟ ଭାବରେ ସମ୍ମାନ ଦେଖେଇବାକୁ ଆରମ୍ଭ କଲା, ଯାହାକି ସେ ଆଗେ କେବେ କରୁ ନ ଥିଲା । ସେ ଗୋଷ୍ଠୀ ମୁଖ୍ୟମାନଙ୍କ ଘରକୁ ବାରମ୍ବାର ଗଲା, ସେମାନଙ୍କର ଘରକୁ ନାନା ଉପଢ଼ୌକନ ପଠାଇଲା । ସେମାନଙ୍କର ସଭାସମିତିରେ ବିନା ନିମନ୍ତ୍ରଣରେ ଯାଇ ଯୋଗଦେଲା ଓ ସେସବୁରେ ଅତ୍ୟନ୍ତ ବିନୀତ ଭାବରେ ନିଜର ମତାମତ ଦେଲା । ଏପରିକି ଉଗ୍ରସେନ ଯେତେବେଳେ କୌଣସି ରାଜକୀୟ ବିଚାର ଆଲୋଚନା ପାଇଁ ଗୋଷ୍ଠୀ ମୁଖ୍ୟମାନଙ୍କର ସଭା ଡାକୁଥିଲେ, ସେ ପ୍ରାୟ ଏକାକୀ ସମସ୍ତଙ୍କର ଚର୍ଚ୍ଚା କରୁଥିଲା । ସେତେବେଳେ କି ବିନୟ ଭାବ, ସମସ୍ତେ ଆଶ୍ଚର୍ଯ୍ୟ ହେଉଥିଲେ ଏ କ'ଣ ପୂର୍ବର ସେହି ଦୁର୍ବନୀତ, ଉଚ୍ଛୃଙ୍ଖଳ କଂସ, ଯାର ମାନ ସମ୍ମାନ ଜ୍ଞାନ କେବେ ନ ଥିଲା – ଅସାମାଜିକ, ଚରିତ୍ରହୀନ । ବାସ୍ତବିକ କଂସର ଏ ପରିବର୍ତ୍ତନରେ ସେ ନିଜେ ବି ଆଶ୍ଚର୍ଯ୍ୟ ହୋଇ ଯାଇଥିଲା, ଭାବିଲା ଅରିନ୍ଦମ । ତା'ର ବାରମ୍ବାର ସନ୍ଦେହ ହୋଇଥିଲା ସେ ଯାହା ଦେଖୁଛି ଏ ସତ କି ! ଜରାସନ୍ଧଙ୍କ ସମ୍ପର୍କରେ ଭାନୁପ୍ରକାଶଙ୍କ ମତାମତ ତା'ର ବାରମ୍ବାର ମନେ ପଡୁଥିଲା, ଯେ ଜରାସନ୍ଧଙ୍କର ସବୁ କାମ ପଛରେ ଗୋଟାଏ ଉଦ୍ଦେଶ୍ୟ ଥାଏ । ଏ ସେହିପରି କଥା ନୁହେଁ ତ ? ଜରାସନ୍ଧଙ୍କର ମନ୍ତ୍ରୀମାନେ କଂସ ସାଙ୍ଗରେ ସବୁବେଳେ ରହୁଛନ୍ତି । କଂସର ଆପାତତଃ ପରିବର୍ତ୍ତନ ପଛରେ କିଛି ଗୋଟାଏ କାରସାଦି ନାହିଁ ତ ? କିନ୍ତୁ କ'ଣ ସେ, କ'ଣ ସେ କାର୍‌ସାଦି ? ସେ ନିଜର ସନ୍ଦେହ କଥା ବାପାଙ୍କୁ କହିଥିଲା । ବାପା ହସିଥିଲେ, କହିଥିଲେ, ମଣିଷର ପ୍ରକୃତି କ'ଣ ଏତେ ଶୀଘ୍ର ବଦଳେ । ତୁ ଚୁପ୍ ରହ, ସାବଧାନ ରହ, ଅନେକ କଥା ଘଟିବ । ଅରିନ୍ଦମ ଲକ୍ଷ୍ୟ କରିଥିଲା ବୟସ୍କ ଗୋଷ୍ଠୀ-ମୁଖ୍ୟମାନେ ମଧ୍ୟ କଂସର ଏ ପରିବର୍ତ୍ତନକୁ ସହଜେ ଗ୍ରହଣ କରିପାରୁ ନ ଥିଲେ । ସେମାନେ ଖୋଲାଖୋଲି କିଛି କହୁ ନ ଥିଲେ, କିନ୍ତୁ କ'ଣ ଗୋଟାଏ ଘଟିପାରେ ଏହିପରି ଆଶଙ୍କା କରୁଥିଲେ ।

ଏହିପରି ସମୟରେ ଦିନେ ହଠାତ୍ ଅରିନ୍ଦମର ଗୋପାଙ୍କ ସହିତ ଦେଖା


Digitized by srujanika@gmail.com

ହୋଇଗଲା । ଠିକ୍ ହଠାତ୍ କି ନାହିଁ କହି ହେବନି । ଅରିନ୍ଦମ ପାଇଁ ହଠାତ୍ ନିଶ୍ଚୟ । ଗିରିବ୍ରଜରୁ କଂସ ଗହଣରେ ଅରିନ୍ଦମ ଆସିଥିଲା, ଗୋପା ବି ଆସିଥିଲେ । କିନ୍ତୁ ଗୋପା କଂସର ସ୍ତ୍ରୀମାନଙ୍କ ସାଙ୍ଗରେ ଥିଲେ ଓ ମଥୁରା ଆସି ସେ କଂସର ଉଆସ ଭିତରେ ରହିଲେ । ତେଣୁ ତାଙ୍କ ସହିତ ଦେଖା ହେବାର କୌଣସି ସମ୍ଭାବନା ବି ନ ଥିଲା । ଏହିପରି ସମୟରେ ଗୋପାଙ୍କ ସହିତ ଦେଖା ହେବା ଅତ୍ୟନ୍ତ ଆକସ୍ମିକ, ଅନ୍ତତଃ ତା'ର ତାହାହିଁ ମନେ ହୋଇଥିଲା । କିନ୍ତୁ ତା'ର ସନ୍ଦେହ ହେଲା ଗୋପା ବୋଧହୁଏ ତା' ସହିତ ଦେଖା କରିବାକୁ ବନ୍ଦୋବସ୍ତ କରି ଆସିଥିଲେ । ସନ୍ଧ୍ୟା ଗଡ଼ି ଯାଇଥିଲା । ସେ ଯମୁନାର ଯେଉଁ ଘାଟରେ ପ୍ରାୟ ଗାଧୁଆ ପାଧୁଆ କରେ, ସେଠାକୁ ପୋଛାପୋଛି ହେବାକୁ ଆସିଛି । ଯେଉଁମାନେ ସନ୍ଧ୍ୟାରେ ଧୁଆଧୋଇ ହେବାକୁ ଯାଆନ୍ତି ସେମାନେ ସବୁ ଆସି ଚାଲିଗଲେଣି । ଘାଟ ପ୍ରାୟ ଖାଲି । ଆକାଶରେ ଜହ୍ନ ଥିଲା, କିନ୍ତୁ ମଇଳା ଜହ୍ନ, ନଈ ପାଣିରେ ଆଲୁଅ ଅନ୍ଧାରର ଗୋଟାଏ ମିଶାମିଶି ଅବସ୍ଥା । ସେ ଘାଟରୁ ଗଡ଼ି ପ୍ରାୟ ଅଣ୍ଟାଏ ପାଣିକୁ ଚାଲିଗଲା, ଦେହରୁ ଗାମୁଛା କାଢ଼ି ପୋଛା ପୋଛି ହେବାକୁ ଯାଉଛି ତା'ର ହଠାତ୍ ମନେହେଲା କିଏ ଯେପରି ତା ନାଁ ଧରି ଡାକୁଛି –

'ଅରିନ୍ଦମ... ଅରିନ୍ଦମ୍...'

ସେ ଆଶ୍ଚର୍ଯ୍ୟ ହୋଇ ଚାରିପାଖକୁ ଚାହିଁଲା । କିଏ ଡାକିଲା ? କେହି କୁଆଡ଼େ ନାହାନ୍ତି । ଟିକିଏ ଦୂରରେ ନଈ ପାଣି ଛଳଛଳ କରି ବହିଯାଉଛି, ମାଛ ବାଡ଼େଇ ହଉଛନ୍ତି । ଟିକିଏ ଦୂରରେ ଗୋଟାଏ ଡଙ୍ଗା, କିଏ କ'ଣ କହୁଛି, ଆଲୁଅ ଦିଶୁଛି, ଦୂରରୁ କାହାର କଥା ଶୁଭୁଛି । କିନ୍ତୁ କିଏ ଡାକିଲା ? କେହି କୁଆଡ଼େ ନାହାନ୍ତି । ତା'ର ଦେହ ସାମାନ୍ୟ ଶୀତେଇ ଉଠିଲା । ପୁଣି ସେହି ଡାକ, ଆଶ୍ଚର୍ଯ୍ୟ, ନାରୀ କଣ୍ଠରେ – 'ଅରିନ୍ଦମ, ଏଆଡ଼େ ଚାହାଁ'...

ତା'ର ମନେହେଲା ଶବ୍ଦ ନଈ ଭିତରୁ ଆସୁଛି । ସେ ଶବ୍ଦ ଲକ୍ଷ୍ୟକରି ଚାହିଁଲା । ମନେହେଲା ନଈ ଭିତରେ ପ୍ରାୟ ଛାତିଏ ପାଣିରେ କିଏ ଯେପରି ଛିଡ଼ା ହୋଇଛି । ଉପରକୁ ମୁଣ୍ଡଟା ଦିଶୁଛି । ସେ ନଈ ଭିତରେ ପାଖକୁ ଯିବାକୁ ଚେଷ୍ଟା କଲା । ପୁଣି ଶୁଭିଲା – 'ନାଁ, ସେଇଠି ଛିଡ଼ା ହୁଅ । କିଛି କଥା କୁହନି, ମୁଁ ଯାହା କହୁଛି ଶୁଣ ।' ଅରିନ୍ଦମର ହଠାତ୍ ମନେହେଲା ଏ ସ୍ୱର ତା'ର ପରିଚିତ । ଏ ତ ଗୋପା ! ଅରିନ୍ଦମ ଛିଡ଼ା ହୋଇଥିବା ଜାଗାରେ ସ୍ଥିର ହୋଇ ଛିଡ଼ାହୋଇ ରହିଲା । ଗୋପା କଂସ ଗହଣରେ ମଥୁରା ଆସିଥିଲେ ସେ ଜାଣେ, ଓ ସେ କଂସର ଉଆସରେ ଜରାସନ୍ଧଙ୍କର ଝିଅମାନଙ୍କ ସାଙ୍ଗରେ ଅଛନ୍ତି, ତା ବି ଜାଣେ । କିନ୍ତୁ ଆଜି, ଏ ସମୟରେ, ଏପରି ଭାବରେ, ଏଠି ! ସେ କାବା ହୋଇ କେବଳ କହିଲା – 'ଗୋପା ?' 'ହଁ,

ଗୋପା', ପ୍ରାୟ ଅଧା ଅନ୍ଧାରରେ, ଛାତିଏ ପାଣିରେ ବୁଡ଼ି ରହିଥିବା ସେହି ସ୍ତ୍ରୀ ଲୋକଟି ପାଖରୁ ଶୁଭିଲା – 'କାଲି ସନ୍ଧ୍ୟା ପରେ ନଈ ତଳର ଯମୁନା ଦେବୀଙ୍କ ମନ୍ଦିରକୁ ଆସିବ । ସନ୍ଧ୍ୟା ପରେ ମନେ ରଖ, ଏକା ଏକା ।' ବାସ୍, ସେତିକି । ଅରିନ୍ଦମ କୂଳକୁ ଲାଗି ଆସି ଭଲକରି ଚାରିପାଖକୁ ଚାହିଁଲା । ନାଁ, ଗୋପାଙ୍କର ଚିହ୍ନ ବର୍ଣ୍ଣ ନାହିଁ । ଟିକିଏ ଦୂରରେ ଛାତିଏ ପାଣିରେ କିଛି ସମୟ ଆଗରୁ ସେ ଛିଡ଼ା ହୋଇଥିଲେ। ସେକଥା ଜାଣିବାର ଉପାୟ ନାହିଁ । ଅଳ୍ପ ଦୂରରେ ଟିକିଏ ତଳକୁ ସ୍ତ୍ରୀ ଲୋକମାନଙ୍କର ଘାଟ । ମନେ ହେଉଛି ସେଠି କେହି ନାହାନ୍ତି । ତା ଛଡ଼ା ସ୍ତ୍ରୀ ଲୋକମାନେ ସନ୍ଧ୍ୟା ପରେ ପ୍ରାୟ ନଈକି ଆସନ୍ତି ନାହିଁ । ସନ୍ଧ୍ୟା ଆଗରୁ ଗାଧୁଆ ପ୍ରଭୃତି କାମଦାମ ସାରି ସେମାନେ ଫେରି ଯାଆନ୍ତି । ଅରିନ୍ଦମ ଘାଟ ଉପରକୁ ଉଠିଗଲା । ଲୁଗାପଟା ଚୁପୁଡ଼ି ସେ କେଇ ମୁହୂର୍ତ୍ତ ଛିଡ଼ା ହୋଇ ଭାବିଲା, କଂସର ଉଆସ ଛାଡ଼ି ଏ ସମୟରେ ଗୋପା ଏଠି । ତା'ର ଆଦୌ ବିଶ୍ୱାସ ହେଲା ନାହିଁ । ସେ ଠିକ୍ ଶୁଣିଛି ତ ? ନାଁ, ମନର ଭୁଲ ? 'ଦୁର୍ଗା'– ସେ ଚମକି ପଡ଼ି ପଛକୁ ଚାହିଁଲା, ମନେ ହେଲା ପାଖ ଅନ୍ଧାର ଭିତରେ କିଏ ତରତର ହୋଇ ଚାଲିଯାଉଛି । ମୁହୂର୍ତ୍ତକ ପାଇଁ । ତା'ପରେ ଆଗପରି ଅନ୍ଧାର । ଚାରିଆଡ଼ ଶୂନଶାନ । କିନ୍ତୁ 'ଦୁର୍ଗା'! ଏ ତ ଭାନୁପ୍ରକାଶଙ୍କ ସାଙ୍କେତିକ ଶବ୍ଦ ! ଆଶ୍ଚର୍ଯ୍ୟ ଲାଗିଲେ ବି ସେ ଠିକ୍ ଶୁଣିଛି । ଏ ନିଶ୍ଚୟ ଗୋପା । ଗୋପାଙ୍କ ବିଷୟରେ ସେ ଯାହା ଶୁଣିଛି ଓ ଜାଣିଛି, ତାଙ୍କ ପକ୍ଷରେ ଅସମ୍ଭବ କିଛି ନୁହେଁ । ସେ ଭାନୁପ୍ରକାଶଙ୍କ ପରି ସମାନ ଦକ୍ଷ ।

ଅରିନ୍ଦମ ସନ୍ଧ୍ୟାରେ ଆହ୍ନିକ ପ୍ରଭୃତି ସାରି ଘରକୁ ଫେରି ଆସିଲା । ଗୋଟିଏ କଥା ସେ ସ୍ପଷ୍ଟ ବୁଝିପାରିଲା । ସେ ଯେ ଭାବିଥିଲା ଭାନୁପ୍ରକାଶ ମଥୁରାରେ ତାଙ୍କ କାମ କିଛି ପରେ, ସମୟ ସୁବିଧା ଦେଖି ଆରମ୍ଭ କରିବେ, ତା ନୁହେଁ । କଂସ ମଥୁରା ଫେରି ଆସିବା ସାଙ୍ଗେ ସାଙ୍ଗେ ତାଙ୍କର କାମ ଆରମ୍ଭ ହୋଇଛି । ଅନ୍ତତଃ ତାଙ୍କ ଲୋକମାନେ କଂସର ସବୁ କାମ ଉପରେ ନଜର ରଖିଛନ୍ତି । ଆଉ ଗୋପା ଯେ ଏକା ତା ନୁହେଁ । ତାଙ୍କ ସାଙ୍ଗରେ ଅନ୍ୟ ଲୋକ ଅଛନ୍ତି । ଆଉ ସେ ବିଶେଷ ନ ଭାବି ସ୍ଥିର କଲା ପରଦିନ ଯମୁନା ଦେବୀଙ୍କ ମନ୍ଦିରକୁ ଯିବ । ହୁଏତ ଭାନୁପ୍ରକାଶଙ୍କ କିଛି ନିର୍ଦ୍ଦେଶ ଅଛି, ବା ସେ ନିଜେ ବି ଆସି ପାରନ୍ତି ।

ସନ୍ଧ୍ୟାରେ ଅରିନ୍ଦମ ପ୍ରସ୍ତୁତ ହୋଇ ଯମୁନାଦେବୀଙ୍କ ମନ୍ଦିରକୁ ଗଲା । ମନ୍ଦିର ମଥୁରା ବାହାରେ, ନଈର ତଳ ଆଡ଼କୁ । ଦୁଇ ପାଖରେ ଧାନ ବିଲ, ଗଛ ଗହଳି, ଗୋଟେ ଅଧେ ଘର ଏଠି ସେଠି, ମଝିରେ ଚଲା ରାସ୍ତା । ଖୁବ୍ ଦୂର ନ ହେଲେ ବି, କିଛି ଦୂର । ତେବେ ସେ ଅଞ୍ଚଳ ସବୁ ଅରିନ୍ଦମର ଚିହ୍ନା । ବହୁତ ଥର ସେ ଓ ତା'ର

ସାଙ୍ଗମାନେ ଯମୁନା ଦେବୀଙ୍କ ମନ୍ଦିରକୁ ଯାଇଛନ୍ତି, ମନ୍ଦିରରେ ସାରା ଦିନ ରହି ଭୋଜିଭାତ କରି ଖାଇଛନ୍ତି । ମନ୍ଦିରର ପୂଜକ ତା'ର ଚିହ୍ନା, ବାପାଙ୍କୁ ସେ ସମ୍ମାନ ଓ ଭକ୍ତି କରେ ।

ମନ୍ଦିର ପାଖ ହେଲାରୁ ତା'ର ମନେହେଲା ମନ୍ଦିର ଚୁପଚାପ, ଲୋକବାକ ଦିଶୁନାହାନ୍ତି । ଗୋପା ତାକୁ ଆସିବାକୁ କହିଲେ କାହିଁକି ? ତା'ର ସନ୍ଦେହ ହେଲା ସେ ଠିକ୍ ଶୁଣିଛି ତ ? ସେ ଠିକ୍ ଗୋପା ତ ? ନାଁ ସବୁ ତା'ର ମନର ଭୁଲ ? ପୁଣି ତାକୁ ଏକା ଏକା ଆସିବାକୁ କୁହାଯାଇଛି । କିନ୍ତୁ ଗୋଟାଏ କଥା ସ୍ଥିର । ଯିଏ କହୁ ବଡ଼ କଥା 'ଦୁର୍ଗା' ସାଙ୍କେତିକ ଶବ୍ଦ କୁହାଯାଇଛି । ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା – 'ଦୁର୍ଗା' ସାଙ୍କେତିକ ଶବ୍ଦକୁ ଲକ୍ଷ୍ୟ ରଖିଥିବ । ଯିଏ କହିବ ସେ ଆମ ଲୋକ । ସେ ମନରୁ ସବୁ ସନ୍ଦେହ ବାହାର କରିଦେଲା । ମନ୍ଦିର ଓ ତା ଆଖପାଖ ଜାଗା ଚିହ୍ନା ଜାଗା, ମଥୁରା ତା ନିଜ ସହର, ଭୟ କରିବାର କିଛି କାରଣ ନାହିଁ । ସେ ମନ୍ଦିର ପାଖକୁ ଆସି ମଣ୍ଡପ ଉପରକୁ ଉଠିଗଲା । ନାଁ, ଆଉ କେହି ଥାଉ ନ ଥାଉ ପୂଜକ ଅଛି, ଦେବୀଙ୍କର ସନ୍ଧ୍ୟା ଆଳତି ପାଇଁ ବନ୍ଦୋବସ୍ତ କରୁଛି । ଅରିନ୍ଦମକୁ ଦେଖି ସେ ଖୁସୀ ହେଲା, କହିଲା, 'ଅରିନ୍ଦମ, ଆସ, ଆସ । ତୁମେ ଆସିବ ବୋଲି ମୁଁ ଖବର ପାଇଛି ।'

'ହୁଁ, କିଏ ଖବର ଦେଇଛି ?' ଅରିନ୍ଦମ ପଚାରିଲା ।

ପୂଜକ ହସିଲା, କହିଲା – 'ଯେଉଁମାନେ ଖବର ଦେଇଛନ୍ତି ସେମାନେ ଏବେ ଆସିବେ । ବସ, ଭଲ ହେଲା ଦେବୀଙ୍କର ସନ୍ଧ୍ୟା ଆଳତି ବେଳେ ତୁମେ ଆସିଲ । ଭୋଗ ବି ତିଆରି ହୋଇଛି ।'

ଅରିନ୍ଦମ ଦେବୀଙ୍କ ପାଖକୁ ଯାଇ ଦର୍ଶନ କରି ପ୍ରଣାମ କଲା । ଦେବୀ ସୁନ୍ଦର କଳା ମୁଗୁନି ପଥରର ମୂର୍ତ୍ତି । ଦେବୀ ପ୍ରସ୍ଫୁଟିତ ପଦ୍ମ ଉପରେ ବସିଛନ୍ତି, ଗୋଟିଏ ହାତରେ ପଦ୍ମ ଫୁଲ, ଅନ୍ୟ ହାତରେ ଜଳପୂର୍ଣ୍ଣ ଘଟ । ବହୁତ ପୁରୁଣା ଦେବୀ ପୀଠ । କେତେକ କହନ୍ତି ଭଗବାନ ପର୍ଶୁରାମ ମଥୁରା ଆସିଥିବା ବେଳେ ଏଇଠି ଦେବୀଙ୍କ ପୀଠ ସ୍ଥାପନା କରିଥିଲେ । ଆଉ କେତେକ କହନ୍ତି ନାଁ, ତା'ର ବହୁ ଆଗରୁ, ଯେତେବେଳେ ଚକ୍ରବର୍ତ୍ତୀ ଭାରତ ଅଭିଯାନ କରୁଥିଲେ, ସେ ଯମୁନାର ଏହି ସ୍ଥାନରେ ନିଜର ସୈନ୍ୟସାମନ୍ତ ଘେନି ଶିବିର ପକେଇଥିଲେ ଓ ସେହି ସମୟରେ ଦେବୀଙ୍କ ପୀଠ ସ୍ଥାପନା କରିଥିଲେ । ପୂଜକ ଦେବୀଙ୍କ ମନ୍ତ୍ର ବୋଲି ସନ୍ଧ୍ୟା ଆଳତି ଆରମ୍ଭ କରିଦେଲାଣି । ଅରିନ୍ଦମ ହାତ ଯୋଡ଼ି ଗର୍ଭଗୃହର ନିକଟରେ ଅଭିଭୂତ ହୋଇ ଛିଡ଼ା ହୋଇ ରହିଲା । ଆଳତି ସରିବା ପରେ ଅରିନ୍ଦମର ଯେତେବେଳେ ଚେତା ଆସିଲା

ସେ ଦେଖିଲା ସେ ଆଉ ଏକା ନୁହେଁ । ତା' ପାଖରେ ଭାନୁପ୍ରକାଶ ଓ ଆଉ ଜଣେ କିଏ ଛିଡ଼ା ହୋଇଛନ୍ତି । ଟିକିଏ ପଛରେ ଗୋପା ।

ଭାନୁପ୍ରକାଶ ହସିଲେ, କହିଲେ, 'ମୋତେ ଦେଖି ତୁମେ ନିଶ୍ଚୟ ଆଶ୍ଚର୍ଯ୍ୟ ହେଉଥିବ । ତୁମେମାନେ ଗିରିବ୍ରଜରୁ ଆସିବା ପଛେ ପଛେ ମୋର କୁରୁକ୍ଷେତ୍ର ଯିବାର ଥିଲା । କିନ୍ତୁ ଗୁରୁଦେବ ଖବର ପଠେଇଲେ କୁରୁକ୍ଷେତ୍ର ନ ଯାଇ ମଥୁରା ଆସିବା ପାଇଁ । କଂସ ଫେରିବା ପରେ ମଥୁରାର ଖବର ସେ ଜାଣିବାକୁ ଚାହାନ୍ତି । ତେଣୁ ତୁମମାନଙ୍କ ପଛେ ପଛେ ମୁଁ ମଥୁରା ଚାଲିଆସିଲି ଓ ସେଇଠଉଁ ଏଠି ଅଛି । ବସ ।' ସମସ୍ତେ ବସିଲେ । ଭାନୁପ୍ରକାଶ କହିଲେ, 'ମୋର ଏ ବନ୍ଧୁଙ୍କୁ ତୁମେ ଚିହ୍ନିନା । ଚିହ୍ନ, ଏ ମଥୁରାରେ ହିଁ ଥାଆନ୍ତି । କିନ୍ତୁ ମଥୁରା ଲୋକ ନୁହନ୍ତି । ସେଇ ଯୋଗୁଁ ତୁମେ ହୁଏତ ଜାଣି ନ ଥିବ । କିନ୍ତୁ ବାପା ଜାଣନ୍ତି । ଆଉ ମଥୁରାର ବହୁ ଲୋକଙ୍କ ସହିତ ତାଙ୍କର ପରିଚୟ । ଆଉ ମଥୁରାର ବହୁତ କଥା ସେ ଜାଣନ୍ତି ଯାହା ତୁମେ ଜାଣି ନ ଥିବ, ଆଉ କେବେହେଲେ ଜାଣିପାରିବ ନାହିଁ ।' ଭାନୁପ୍ରକାଶ ତାଙ୍କ ବନ୍ଧୁଙ୍କ ଆଡ଼କୁ ଚାହିଁ ହସିଲେ, ଓ କହିଲେ, 'ଅରିନ୍ଦମ, ତୁମେ କେବେ ମଥୁରାରେ ସୌରଦେବଙ୍କ ନାଁ ଶୁଣିଛ ?'

ଅରିନ୍ଦମ ଚମକି ଉଠିଲା - ସୌରଦେବ ! -'ହଁ ସେ ତ ମଥୁରାର ସବୁଠୁ ପ୍ରସିଦ୍ଧ ବ୍ୟକ୍ତି - ଜ୍ଞାନୀ, ଗୁଣୀ, ଧନବାନ, ମଥୁରା ଓ ତା ଆଖପାଖର ସବୁ ଦେବ ମନ୍ଦିର ତ ତାଙ୍କରି ସାହାଯ୍ୟରେ ଚାଲେ । ମଥୁରାର ଶହ ଶହ ଅଭାବୀ ଲୋକଙ୍କୁ ସେ ସାହାଯ୍ୟ କରନ୍ତି । ମଥୁରାର ଯେତେ ଗୁରୁକୁଳ ଆଶ୍ରମ, ମଥୁରା ରାଜ୍ୟର ଯେତେ ଉନ୍ନତି ସବୁ ପଛରେ ତ ସେ । ଯାଦବମାନଙ୍କର ତାଙ୍କଠାରୁ ବଡ଼ ଆଉ କେହି ଶୁଭାକାଂକ୍ଷୀ ଅଛନ୍ତି ବୋଲି ମୁଁ ଜାଣେ ନା ।'

ଗୋପା ହସୁଥାଆନ୍ତି । 'ତୁମେ ତାଙ୍କୁ କେବେ ଦେଖିଛ ?' ଭାନୁପ୍ରକାଶ ପଚାରିଲେ ।

'ନାଁ', ଅରିନ୍ଦମ ଉତ୍ତର ଦେଲା । 'ବାପା ତାଙ୍କ କଥା ମୋତେ ଅନେକଥର କହିଛନ୍ତି । ବନ୍ଧୁମାନଙ୍କ ଠାରୁ ବି ତାଙ୍କ କଥା ଶୁଣିଛି । କିନ୍ତୁ ଦେଖିନାହିଁ କେବେ । ଶୁଣିଛି ରାଜା ଉଗ୍ରସେନ ବାପାଙ୍କୁ ଯେମିତି ସମ୍ମାନ କରନ୍ତି ତାଙ୍କୁ ବି ସେମିତି କରନ୍ତି । ଖାଲି ସମ୍ମାନ ନୁହେଁ । ଦରକାର ସମୟରେ ସେ ଉଗ୍ରସେନଙ୍କୁ ଟଙ୍କା ପଇସା ଦେଇ ସାହାଯ୍ୟ କରନ୍ତି ।'

ଭାନୁପ୍ରକାଶ କ'ଣ କହିବାକୁ ଯାଉଥିଲେ । ତାଙ୍କର ବନ୍ଧୁ ଭାନୁପ୍ରକାଶଙ୍କୁ ବନ୍ଦ କରିଦେଲେ । କହିଲେ, 'ଭାନୁପ୍ରକାଶ ରୁହ । ଅରିନ୍ଦମ ପିଲା ଲୋକ । ତାଙ୍କୁ ଏତେ


Digitized by srujanika@gmail.com

ବ୍ୟସ୍ତ କରିବା ଉଚିତ ନୁହେଁ ।' ତା'ପରେ ସେ ଅରିନ୍ଦମ ଆଡ଼କୁ ବୁଲି ପଡ଼ିଲେ । କହିଲେ - 'ଅରିନ୍ଦମ, ଲୋକେ ସୌରଦେବଙ୍କ ସମ୍ପର୍କରେ ବହୁତ ବଢ଼େଇ ବଢ଼େଇ କହନ୍ତି । ସବୁ ଠିକ୍ ନୁହେଁ । କିନ୍ତୁ ଯାଦବମାନଙ୍କ ପ୍ରତି ମୋର ବହୁତ ସମ୍ମାନ । ଯେତେବେଳେ ଯାହା ସମ୍ଭବ ମୁଁ ଯାଦବମାନଙ୍କୁ ସାହାଯ୍ୟ କରେ । ମୋର ବିଶ୍ୱାସ ଦିନେ ଏହି ଯାଦବମାନେ ହିଁ ସମଗ୍ର ଆର୍ଯ୍ୟାବର୍ତ୍ତକୁ ରକ୍ଷା କରିବେ ।'

ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କଟି ନ ଥାଏ । ସେ କେବଳ କହିଲା - 'ଆପଣ ସୌରଦେବ ! ଆପଣ ଭାନୁପ୍ରକାଶଙ୍କର ବନ୍ଧୁ...'

'ଗୋପାଙ୍କର ବି...' ସୌରଦେବ ହସିକରି କହିଲେ ।

'ନାଁ ନାଁ, ଅରିନ୍ଦମ, ଭୁଲ କର ନା', ଭାନୁପ୍ରକାଶ କହିଲେ, 'ସୌରଦେବ ଆମ ଲୋକ ନୁହନ୍ତି । ସେ ଆମକୁ ସାହାଯ୍ୟ କରନ୍ତି । ତାଙ୍କରି ସାହସରେ ହିଁ ଆମେ ଏଠି କାମ କରିବାକୁ ଆରମ୍ଭ କରିଛୁ । ଗୋପା ଆସିଛନ୍ତି, ମୁଁ ଆସିଛି, ଅନ୍ୟମାନେ ବି ଆସିଛନ୍ତି । ଆସିବେ । ଗୁରୁଦେବ ବି ଆସିବେ । ସୌରଦେବ ଆମ ମଥୁରା କାମର ମୂଳପିଣ୍ଡ ।'

ସେଦିନ ସୌରଦେବଙ୍କ ସହିତ ଅରିନ୍ଦମର ଯେଉଁ ପରିଚୟ ହେଲା ତାହା ଯେପରି ଅପ୍ରତ୍ୟାଶିତ ସେହିପରି ଆନନ୍ଦଦାୟକ । ସୌରଦେବଙ୍କ କଥା ସେ ଅନେକ ଶୁଣିଥିଲା । କିନ୍ତୁ ସେ ଯେମିତି ସେମିତି, ବହୁତ କମ ଲୋକ ତାଙ୍କୁ ଚାକ୍ଷୁସ ଦେଖିଛନ୍ତି । ସେ ଖୋଲାଖୋଲି କିଛି କରିବାକୁ ପସନ୍ଦ କରନ୍ତିନି । ସେ ସବୁ କାମ ପଛରେ କରନ୍ତି, ମନେହେବ ଯେମିତି ସେ କେଉଁଠି ନାହାନ୍ତି, କିନ୍ତୁ ସବୁ ଭଲ କାମ ପଛରେ ସେ ।

ସେଦିନ ଦେବୀଙ୍କ ଭୋଗ ଖାଇ ସାରିବା ପରେ ଅନେକ ସମୟ ସେମାନେ କଥାବାର୍ତ୍ତା କଲେ । ମଝିରେ ଖାଲି ଅରିନ୍ଦମ ସାମାନ୍ୟ ବ୍ୟସ୍ତ ହୋଇଥିଲା - ଗୋପା ଫେରିବାକୁ ଅସୁବିଧା ହେବ । ସୌରଦେବ କହିଥିଲେ, କିଛି ବ୍ୟସ୍ତ ହୁଅନା ସେ ଦାୟିତ୍ୱ ମୋର ।

ହଁ, ଅନେକ କଥାବାର୍ତ୍ତା ହେଲା । ତେବେ ସେମାନେ - ଭାନୁପ୍ରକାଶ, ସୌରଦେବ ଓ ଗୋପା ମୁଖ୍ୟତଃ କଥାବାର୍ତ୍ତା ହେଲେ, ଅରିନ୍ଦମ ଶ୍ରୋତା, ବିଶେଷ କରି କଂସ ବିଷୟରେ ଓ ମଥୁରାରେ କ'ଣ ଘଟିପାରେ ସେ ବିଷୟରେ ।

ପ୍ରଥମେ ଗୋପା କଥା ଆରମ୍ଭ କଲେ । କହିଲେ, 'ଅନ୍ତଃପୁରରୁ ମୁଁ ଅନେକ ଅନେକ କଥା ଶୁଣୁଛି । ପ୍ରତିଦିନ ନୂଆ ନୂଆ କଥା । ଜରାସନ୍ଧର ଝିଅମାନେ ଅସ୍ଥିର ହେଲେଣି । ସେମାନଙ୍କର ଇଚ୍ଛା କଂସ ଶୀଘ୍ର ରାଜା ହେଉ । ଜରାସନ୍ଧ ପାଖୁ ବି ଖବର

ଗଲାଣି ଓ ଖବର ଆସିଲାଣି । ମୋର ମନେ ହେଉଛି କିଛି ଗୋଟାଏ ଶୀଘ୍ର ଘଟିବ ।'

'ମୋର ବି ସେଇଆ ହିଁ ମନେ ହେଉଛି', କହିଲେ ସୌରଦେବ, 'କଂସ ଉଗ୍ରସେନଙ୍କୁ ବାହାର କରି ନିଜେ ରାଜା ହେବା ଯୋଗାଡ଼ରେ ଅଛି । ଯାଦବମାନଙ୍କ ସାଙ୍ଗରେ ନିଜ ଲୋକ ପରି ମିଶିବା, ଗୋଷ୍ଠୀ-ମୁଖ୍ୟମାନଙ୍କୁ ନାନା ଭାବରେ ନିଜ ଆଡ଼କୁ ଟାଣିବା ସେହି ଯୋଗୁ । କିନ୍ତୁ ମୋର ସନ୍ଦେହ ସେ ଏତେ ଶୀଘ୍ର ସାହସ କରିବ କି ?'

'କରିବ ।' କହିଲେ ଭାନୁପ୍ରକାଶ, 'ସେଇଟା ଜରାସନ୍ଧ ସହିତ ତା'ର ପ୍ରଥମ ଚୁକ୍ତି । ସେହି ଯୋଗୁଁ ଜରାସନ୍ଧର ଦି'ଜଣ ମନ୍ତ୍ରୀ ଏଠି ବସି ରହିଛନ୍ତି । ଜରାସନ୍ଧର ସୈନ୍ୟସାମନ୍ତ ପ୍ରସ୍ତୁତ ହୋଇ ରହିଛନ୍ତି । ଜରାସନ୍ଧ ଚାହେଁ ସେ ଯେତେ ଶୀଘ୍ର ରାଜା ହେଉ । ଦରକାର ହେଲେ ଉଗ୍ରସେନଙ୍କୁ ଶେଷ କରିଦିଅ । ତା'ହେଲେ, ଏବେ ମେଘ ଛାଡ଼ି ଆସିଲାଣି, ସେ ସାଙ୍ଗେ ସାଙ୍ଗେ ରାଜ୍ୟ ଜୟରେ ବାହାରିଯିବ ।'

'କଂସ ମଗଧରୁ ଫେରିବା ବେଶିଦିନ ହୋଇନି, କିନ୍ତୁ ଏହା ଭିତରେ ସେ ବେଶ୍ ଲୋକପ୍ରିୟ ହୋଇ ଉଠିଲାଣି' କହିଲା ଅରିନ୍ଦମ, 'ବିଶେଷକରି ତରୁଣ ଗୋଷ୍ଠୀ ପୂରାପୂରି ତା ଆଡ଼େ ।'

'ସେ ଗୋଟାଏ କୌଶଳ', ସୌରଦେବ କହିଲେ, 'ତରୁଣମାନଙ୍କୁ ମନେଇନେବା ସହଜ । ସେଇ କାମ କଂସ କରିଛି । କିନ୍ତୁ ମୁଁ ଯା ଦେଖୁଛି ବୟସ୍କ ଲୋକମାନେ ବି ଅନେକ କଂସ ସପକ୍ଷରେ । ଗୋଷ୍ଠୀ ମୁଖ୍ୟମାନେ ଯେ ସମ୍ପୂର୍ଣ୍ଣ ବିରୋଧୀ ତା ନୁହେଁ । ମୋଟାମୋଟି ଯାଦବମାନଙ୍କୁ ମୁଁ ଯାହା ଜାଣେ କଂସ ଯଦି ଉଗ୍ରସେନଙ୍କୁ ବାହାର କରି ନିଜେ ରାଜା ହୁଏ ଖୁବ୍ ବେଶି ପ୍ରତିବାଦ ହେବନି । ବିଶେଷ କରି କଂସ ଅନ୍ୟ ରାଜ୍ୟ ଜୟ କରି ଗୌରବ ଓ ଅର୍ଥ ପାଇବାର ଯେଉଁ ଲୋଭ ଯାଦବମାନଙ୍କ ଆଗରେ ଆଣି ଥୋଇଲାଣି, ଏ ଲୋଭ କମ୍ ନୁହେଁ ।'

'ବଡ଼ କଥା କଂସ ମଥୁରାର ରାଜା ହେବା ନୁହେଁ । ସେ ନିଶ୍ଚୟ ହେବ ଓ ଶୀଘ୍ର ହେବ ।' ଭାନୁପ୍ରକାଶ କହିଲେ – 'ଏଇଟା ହିଁ ଜରାସନ୍ଧର ପ୍ରଧାନ ଇଚ୍ଛା, କଂସ ଜରାସନ୍ଧକୁ ଅମାନ୍ୟ କରିପାରିବ ନାହିଁ । କିନ୍ତୁ ତା' ପରେ ?'

ଗୋପା କହିଲେ, 'ମୁଁ ଉଆସର କଥାବାର୍ତ୍ତାରୁ ଆଉ ଗୋଟାଏ କଥା ଶୁଣୁଛି । ସେ ବସୁଦେବଙ୍କ ସମ୍ପର୍କରେ ।'

'ତା ସମ୍ଭବ ।' ସୌରଦେବ କହିଲେ, 'ବସୁଦେବ ସୁର ଗୋଷ୍ଠୀର ମୁଖ୍ୟ । ଆଉ ସୁର ଗୋଷ୍ଠୀ ଯାଦବମାନଙ୍କର ପ୍ରଧାନ ଗୋଷ୍ଠୀ । ତା ଛଡ଼ା ମଥୁରାରେ ବସୁଦେବଙ୍କୁ ସମସ୍ତେ ମାନନ୍ତି, ସମ୍ମାନ କରନ୍ତି । ଯାଦବମାନଙ୍କୁ ଅଧିନକୁ ଆଣିବାକୁ


Digitized by srujanika@gmail.com

ହେଲେ ବସୁଦେବଙ୍କୁ ନିଜ ଆଡ଼କୁ ଆଣିବାକୁ ହେବ, ଏ ନିଶ୍ଚିତ ।'

'ଗୋପା, ବସୁଦେବଙ୍କ ବିଷୟରେ କ'ଣ କ'ଣ ଶୁଣୁଛ ?' ପଚାରିଲେ ଭାନୁପ୍ରକାଶ ।

'ସେମିତି ନିର୍ଦ୍ଦିଷ୍ଟ କିଛି ନୁହେଁ । କିନ୍ତୁ କଂସର ଲୋକମାନେ ଯାହା କଥାବାର୍ତ୍ତା ହେଲେ ବି ବସୁଦେବଙ୍କ କଥା ଉଠୁଛି । ମୋର ମନେହେଉଛି କଂସ ଏପରି କିଛି ଯୋଜନା କରୁଛି ଯେଉଁଥିରେ ବସୁଦେବ ମୂଳ ଲୋକ ।'

ସୌରଦେବ ଓ ଭାନୁପ୍ରକାଶ ଚୁପ୍ ହୋଇ ଶୁଣିଲେ । ଭାନୁପ୍ରକାଶ ନିଜକୁ ନିଜେ କହିଲାପରି କହିଲେ - 'କ'ଣ ହୋଇପାରେ ? ବସୁଦେବଙ୍କୁ ମାରିଦେବାକୁ ଯୋଜନା ନୁହେଁ ତ ?'

'ନାଁ, ତା ସମ୍ଭବ ନୁହେଁ । ଏ ଅନ୍ୟ କିଛି ।' ସୌରଦେବ କହିଲେ । ସେ ଗୋପାଙ୍କୁ ପଚାରିଲେ - 'ଆଚ୍ଛା ଗୋପା, ବସୁଦେବ କେବେ କଂସର ଉଆସକୁ ଆସିଛନ୍ତି କି ?'

'ନାଁ ।'

'ତାଙ୍କୁ କେବେ ଡକା ହୋଇଛି କି ? ଏଇ ନିମନ୍ତ୍ରଣ କଲା ପରି ?'

'ନାଁ, ସେମିତି ତ କିଛି ମନେ ହେଉନି...' ହଠାତ୍ ଗୋପା ରହିଗଲେ, କହିଲେ - 'ହଁ ବୋଧହୁଏ ଥରେ, ମୋର ଯା' ମନେପଡୁଛି, ଉଆସରେ କ'ଣ ପୂଜା ହେଉଥିଲା । କଂସ ନିଜେ ଆସି ବସୁଦେବଙ୍କୁ ନିମନ୍ତ୍ରଣ ପଠେଇବାକୁ କହିଦେଇ ଗଲେ ।'

'ନିମନ୍ତ୍ରଣ ଗଲା କି ?' ସୌରଦେବ ପଚାରିଲେ ।

'ତା ଠିକ୍ କହିପାରିବିନି ।' ଗୋପା କହିଲେ ।

'ବସୁଦେବ ଆସିଥିଲେ କି ?'

'ତା ବି ମୁଁ ଠିକ୍ ଜାଣେ ନା ।'

'ଆଉ କିଏ କିଏ ପୂଜାକୁ ଆସିଥିଲେ ? ମନେ ପକା ତ ।'

ଗୋପା କିଛି ସମୟ ଭାବିଲେ - 'ଅନେକ ତ ଥିଲେ । କଂସ ପରିବାରର ପ୍ରାୟ ସମସ୍ତେ । ଉଗ୍ରସେନଙ୍କ ପରିବାର ବି ।'

'କଂସ ପରିବାର କାହାକୁ କହୁଛ ? ତା'ର ରାଣୀମାନେ ?'

'ହଁ, ରାଣୀମାନେ । ତା'ଛଡ଼ା ତାଙ୍କ ଭଉଣୀ ଦେବକୀ ବି ।' ଗୋପା କହିଲେ ।

'ଦେବକୀ ! ହୁଁ !' ସୌରଦେବ ଗୁମ୍ ମାରିଲା ପରି ରହିଗଲେ ।


Digitized by srujanika@gmail.com

'ଦେବକୀ କଂସର ଭଉଣୀ । ଅର୍ଥାତ୍ ଉଗ୍ରସେନଙ୍କ ଝିଅ । ଦେଖିବାକୁ କେମିତି ?' ଭାନୁପ୍ରକାଶ ପଚାରିଲେ ।

'ସୁନ୍ଦର ।'

'ବୟସ କେତେ ହେବ ?'

'ଏଇ ଷୋଳ ସତର ।'

'ପ୍ରକୃତି ?'

'ଅତି ଉତ୍ତମ । କଂସ, ଉଗ୍ରସେନ ଉଭୟଙ୍କ ଉଆସରେ ଦେବକୀଙ୍କୁ ସମସ୍ତେ ସ୍ନେହ କରନ୍ତି । ଠାକୁର, ମୁନିଋଷି, ବ୍ରାହ୍ମଣ - ସମସ୍ତଙ୍କ ପ୍ରତି ସମାନ ଭକ୍ତି । ସେ ବିଷ୍ଣୁଭକ୍ତ । ଅଧିକାଂଶ ସମୟ ତାଙ୍କର ପୂଜା ପ୍ରାର୍ଥନାରେ ଯାଏ । କଂସ ପ୍ରକୃତି ଭଲ ନୁହେଁ । କିନ୍ତୁ ସେ ଦେବକୀଙ୍କୁ ବହୁତ ସ୍ନେହ କରେ ।'

'ହୁଁ ।' କ'ଣ ଭାବି ଭାନୁପ୍ରକାଶ ଚୁପ୍ କରି ଗଲେ ।

ମନ୍ଦିର ବାହାରେ ସନ୍ଧ୍ୟାର ଅନ୍ଧାର ଫିକା ପଡ଼ିଗଲାଣି । ମନ୍ଦିରକୁ ଲାଗି ନଈ । ନଈର କଳକଳ ଶବ୍ଦ ଚାରିପାଖର ବନଭୂମିର ନିରବତା ଭିତରେ ସ୍ପଷ୍ଟ ଭାସି ଆସୁଛି । ଗୋଟାଏ ଚଢ଼େଇ ଟେଁ ଟେଁ ଶବ୍ଦ କରି ଉଡ଼ିଗଲା । ପାଖରେ ଶଙ୍ଖ ଫୁଙ୍କିଲା ପରି ଶବ୍ଦ । ଦୂରରେ କିଏ ଗୀତ ଗାଉଛି । ଖଣ୍ଡ ଖଣ୍ଡ ପଦ ଭାସି ଆସୁଥାଏ ।

ହଠାତ୍ ଭାନୁପ୍ରକାଶ ପଚାରିଲେ, 'ଆଚ୍ଛା ଗୋପା, ତୁମର ଦେବକୀଙ୍କ ସହିତ ସଦ୍ଭାବ ଅଛି ?'

'ଅଛି ।' ଗୋପା କହିଲେ ।

'ତାଙ୍କର ତ ବିଭା ବୟସ ହେଲାଣି । ବିଭା ହେବାର ବନ୍ଦୋବସ୍ତ ହେଉଛି କି ?' ଭାନୁପ୍ରକାଶ ପଚାରିଲେ, 'ତୁମକୁ ଦେବକୀ ଏ ବିଷୟରେ କିଛି କହନ୍ତି କି ? ତାଙ୍କର ମତାମତ ?'

'ନାଁ, ମୋତେ ସେ କେବେ କିଛି କହି ନାହାନ୍ତି । ତେବେ ବିଭାଘର ବିଷୟରେ ତାଙ୍କର କିଛି ମତାମତ ଅଛି ବୋଲି ମୁଁ ଭାବୁନି । ମୋର ମନେହୁଏ ତାଙ୍କର ବାପା, ଭାଇ ଯେଉଁଠି ସ୍ଥିର କରିବେ ସେ ରାଜି । ତେବେ ଗୋଟାଏ କଥା, କଂସର ପରିବାରରେ, ମୋର ମନେହୁଏ, ବାହାଘରର ଗୋଟାଏ ଯୋଗାଡ଼ଯନ୍ତ ହେଉଛି । ସେ ଦେବକୀଙ୍କର କି ଆଉ କାହାର ମୁଁ କହି ପାରିବିନି । କିନ୍ତୁ ଯୋଗାଡ଼ଯନ୍ତ ଠିକ୍, ଲୋକ ଯିବା ଆସିବା କରୁଛନ୍ତି, ଜିନିଷ ପତ୍ର ଆସୁଛି, ବ୍ରାହ୍ମଣମାନେ ଆସୁଛନ୍ତି । ଜ୍ୟୋତିଷ, ଗଣତକାର ବି । ବାହାଘରର ଯେଉଁ ହୋ ହୋ କିଛି କିଛି ବୁଝିହେଉଛି ।'

'କଂସ ଓ ଉଗ୍ରସେନଙ୍କର ପରିବାରରେ ବିଭା ହେବାକୁ ଆଉ କେହି ଅଛନ୍ତି ?'


Digitized by srujanika@gmail.com

ଭାନୁପ୍ରକାଶ ପଚାରିଲେ ।

'ହଁ' ଗୋପା କହିଲେ – 'ଅନ୍ୟ ଭଉଣୀମାନେ ଅଛନ୍ତି ।'

ସୌରଦେବ ଚୁପ୍ ହୋଇ ଥିଲେ । ସେ ଭାନୁପ୍ରକାଶଙ୍କୁ ଚାହିଁ ସାମାନ୍ୟ ହସିଲେ, କହିଲେ, 'ଭାନୁପ୍ରକାଶ, ଆମେ ବୋଧହୁଏ ଆମ ପ୍ରଶ୍ନର ଉତ୍ତର ପାଇଗଲେ' ।

'ମାନେ ?', ଭାନୁପ୍ରକାଶ ପଚାରିଲେ ।

'ସେଇ ଯୋଉ ପ୍ରଶ୍ନ, କଂସ ତ ରାଜା ହେବ, ତା ପରେ ?'

'ତା ପରେ ?'

'ତା ପରେ ଦେବକୀଙ୍କର ବିଭାଘର ।' ସୌରଦେବ କହିଲେ ।

ଭାନୁପ୍ରକାଶ କିଛି ସମୟ ଚୁପ୍ ହୋଇ ରହିଲେ । କ'ଣ ଯେପରି ଭାବିଲେ । ତା'ପରେ ସୌରଦେବଙ୍କୁ କହିଲେ, 'ଆପଣ ଯା କହୁଛନ୍ତି ତା' ସମ୍ଭବ । ଯୁକ୍ତିଯୁକ୍ତ ବି ମନେ ହେଉଛି । ଆଜିକାଲି ରାଜ ପରିବାରରେ ବିଭାଘର ତ ନାନା ଉଦ୍ଦେଶ୍ୟରେ କରାଯାଉଛି- ନିଜର ସ୍ୱାର୍ଥ ପାଇଁ, ନିଜର ଦଳ ବଢ଼ାଇବା ପାଇଁ । କିଏ କାହାକୁ ବିଭା ହେଲା ବଡ଼ କଥା ନୁହେଁ, କି ଯେଉଁମାନେ ବିଭା ହେଲେ ସେମାନଙ୍କର ଇଚ୍ଛା ଅନିଚ୍ଛା ମୂଲ୍ୟହୀନ । କ'ଣ ଲାଭ ହେବ, ସେଇଟା ହିଁ ବଡ଼କଥା । କିନ୍ତୁ ଦେବକୀର ବିଭାଘର, ଯଦି ହୁଏ, କାହା ସାଙ୍ଗରେ ହେବ ? କଂସର ଲାଭ ?'

'ଯେଉଁକଥା ଆମେ ଭାବୁଥିଲେ ସେହି ଲାଭ । ଦେବକୀର ବିଭାଘର ବସୁଦେବଙ୍କ ସାଙ୍ଗରେ ହେବ ।' ସୌରଦେବ କହିଲେ ।

'ବସୁଦେବଙ୍କ ସାଙ୍ଗରେ ?' ଭାନୁପ୍ରକାଶ ସାମାନ୍ୟ ଏପାଖ ସେପାଖ ହୋଇ କହିଲେ – 'ହଁ, କାହିଁକି ନୁହେଁ ? ଆମେ ଯାହା ଶୁଣୁଛେ ସେଇଟା ହିଁ ସବୁଠୁ ସ୍ୱାଭାବିକ । ଏକା ମାଡ଼ରେ ଦି'ଟା କଥା ହେଇଯିବ । ବସୁଦେବଙ୍କ ପରି ଜଣେ ସର୍ବମାନ୍ୟ ଲୋକ କଂସ ବିରୁଦ୍ଧରେ କିଛି କରିବେ ନାହିଁ କି କରିପାରିବେ ନାହିଁ । କଂସର ଅଧୀନ ହୋଇ ରହିଯିବେ । ଆଉ ଯାଦବଙ୍କର ସବୁଠାରୁ ବଡ଼ ଗୋଷ୍ଠୀ ସୁର ଗୋଷ୍ଠୀ ବି ଚୁପ୍ ହୋଇ ରହିବେ, ଦରକାର ହେଲେ କଂସକୁ ସାହାଯ୍ୟ କରିବେ ।

...କିନ୍ତୁ ବସୁଦେବ କ'ଣ ରାଜି ହେବେ ? ତାଙ୍କ ଲୋକମାନେ କ'ଣ ରାଜି ହେବେ ? ବସୁଦେବ ତ ବିବାହିତ ।' ଭାନୁପ୍ରକାଶଙ୍କ ସନ୍ଦେହ ତଥାପି ଯାଇ ନ ଥାଏ ।

'ଆଃ', ସୌରଦେବ କହିଲେ, 'ସେ ଅନ୍ୟକଥା । ବସୁଦେବ ରାଜି ନ ହେବାର କିଛି କାରଣ ନାହିଁ । ତାଙ୍କର ଲେକମାନେ କାହିଁକି ଆପତ୍ତି କରିବେ ?


Digitized by srujanika@gmail.com

ବସୁଦେବ ଗୋଷ୍ଠୀ-ମୁଖ୍ୟ ସିନା, ରାଜା ତ ନୁହନ୍ତି । ରାଜ ପରିବାରରେ ବିଭା ହେବା ତ ଗୋଟାଏ ଗୌରବ । ତା'ଛଡ଼ା ବସୁଦେବ ବିଭା ହୋଇଛନ୍ତି, ଏ କିଛି କଥା ନୁହେଁ । ଏକାଧିକ ସ୍ତ୍ରୀ ଲୋକଙ୍କୁ ବିଭା ହେବା ତ ସାଧାରଣ କଥା । କଂସ ନିଜେ ବିଭା ହୋଇଛି, ଉଗ୍ରସେନ ବିଭା ହୋଇଛନ୍ତି, ସମସ୍ତେ ବିଭା ହୁଅନ୍ତି ।'

'ମୁଁ ଆଉ ଗୋଟାଏ କଥା ଭାବୁଛି ।' ଭାନୁପ୍ରକାଶ କହିଲେ, 'କଂସ ଯେଉଁ ପ୍ରକୃତିର ଲୋକ, ଅନ୍ତତଃ ତା' ବିଷୟରେ ଆମେ ଯାହା ଜାଣିଛେ, ଆଉ ତା' ପଛରେ ଯେଉଁ ଅତ୍ୟନ୍ତ ଚତୁର, ଅତ୍ୟନ୍ତ ନିଷ୍ଠୁର ଲୋକଟି ରହିଛି, ସେ କ'ଣ ଏତେ ସହଜରେ ଏତେ ଖୋଲାଖୋଲି ଏ ଜିନିଷଟାର ସମାଧାନ କରିଦେବାକୁ ଚାହିଁବ ?'

ସୌରଦେବ କିଛି ସମୟ ଚୁପ କରି ରହିଲେ । କହିଲେ, 'ଏ ପ୍ରଶ୍ନର ଉତ୍ତର ଦେବା ମୋ' ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ବସୁଦେବଙ୍କ ସହିତ ଦେବକୀର ଯେ ବିଭାଘର ହେବ, ଅନ୍ତତଃ କଂସ ଯେ ତାହାହିଁ କରିବାକୁ ଚାହିଁବ, ଏ ବିଷୟରେ ମୁଁ ନିଶ୍ଚିତ ।'

ଗୋପା ଆଲୋଚନାରେ ଯୋଗ ଦେଲେ । କହିଲେ, 'ସୌରଦେବ ବୋଧହୁଏ ଠିକ୍ କହୁଛନ୍ତି । ମୁଁ ଆଉ ଗୋଟାଏ କଥା କହେ । କଂସର ତା' ସ୍ତ୍ରୀମାନଙ୍କ ସହିତ ସଂପର୍କ ସାଧାରଣ ସମ୍ପର୍କ । କିନ୍ତୁ ସେ ସେମାନଙ୍କୁ ଡରେ । ଏ ଜରାସନ୍ଧଙ୍କର ଡର, ଆଉ କିଛି ନୁହେଁ । ତେଣୁ ସେ ଅନେକ କଥା ନିଜ ସ୍ତ୍ରୀମାନଙ୍କୁ ଲୁଚେଇଲେ ବି, ଅନେକ କଥା କହେ । କିଛିଦିନ ତଳେ, ଦିନେ ସକାଳେ ମୁଁ କାମରେ ବ୍ୟସ୍ତ ଅଛି, ଦି' ଭଉଣୀଙ୍କ ପାଖରୁ ଖବର ଆସିଲା ଶୀଘ୍ର ଆସ । ମୁଁ ସାଙ୍ଗେ ସାଙ୍ଗେ ଗଲି । କଂସର ଉଆସ ଉଗ୍ରସେନଙ୍କର ଉଆସ ଠାରୁ ଅଲଗା, ରାଜବାଟୀର ଗୋଟାଏ ପାଖକୁ । ମଝିରେ ଗୋଟାଏ ବଡ଼ ଅଗଣା । ସେ ପାଖକୁ କେହି ଯାଆନ୍ତି ନାହିଁ, ଯିବାକୁ ମନା । କେବଳ ଡକେଇ ପଠେଇଲେ ହିଁ ଯିବ । ମୁଁ ସକାଳୁ ପ୍ରାୟ ସେ ପାଖକୁ ଯାଏ ନା ମୋର ଯିବା ସମୟ ସନ୍ଧ୍ୟାପରେ । ସକାଳୁ ବହୁତ ସମୟ ସେ ପାଖରେ କଂସ ଥାଏ । ଦି ପହର ଖାଇ ସାରିବା ପରେ ସେ ରାଜବାଟୀର ସାମ୍ନା ପାଖର ଦରବାର ଘର ଆଡ଼କୁ ଚାଲିଯାଏ, ଲୋକଙ୍କୁ ଭେଟା ଭେଟି କରେ ଓ ବହୁତ ରାତିରେ ଫେରେ । ତେଣୁ ସକାଳୁ ହଠାତ୍ ଡାକରା ପାଇ ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହେଲି । ଗଲି । ଗଲାବେଳକୁ ଦେଖେ କଂସ ସେ ପାଖରୁ ବାହାରି ଆସୁଛି । ମୁହଁ ଥମଥମ, ବୋଧହୁଏ କୌଣସି କଥାରେ ଖୁବ୍ ବିରକ୍ତ ହୋଇଛି । ମୁଁ ଆଡ଼େଇ କରି ଛିଡ଼ା ହେଲି । ସେ ମୋତେ ଦେଖି ନ ଦେଖିଲା ପରି ବାହାରି ଚାଲିଗଲା । ମୁଁ ଯାଇ ଦେଖେ ରାଣୀମାନେ ତାଙ୍କ ବସିବା ଘରେ ନୁହେଁ, ଯେଉଁଠି ଆମେ ପ୍ରାୟ ବସି କଥାବାର୍ତ୍ତା ହେଉ, ଶୋଇବା ଘରେ

ପଲଙ୍କ ଉପରେ ବସିଛନ୍ତି । ମୁଁ ଯାଇ ପାଖରେ ଛିଡ଼ା ହେଲି । ଦେଖିଲି ସେମାନଙ୍କର ମୁହଁ ବି ସଫା ନୁହେଁ, କୌଣସି କଥାରେ ସେମାନେ ବି ବିରକ୍ତ । ବଡ଼ ମୋ ଆଡ଼କୁ ଚାହିଁ କହିଲେ, 'ବସ' । ମୁଁ ତଳେ ବସିଲି ।

- ବଡ଼ ମୋ' ଆଡ଼କୁ ଅନେଇ କହିଲେ, 'ଆଚ୍ଛା ରମା - ମୋତେ ସେମାନେ ରମା ବୋଲି ଜାଣନ୍ତି - ଆମ ବାପାଙ୍କୁ ତମେ ଦେଖିଛ ?'

ଏ ଆଶ୍ଚର୍ଯ୍ୟ ପ୍ରଶ୍ନ । ମୁଁ କହିଲି, 'ଏ କି କଥା ? ଚକ୍ରବର୍ତ୍ତୀଙ୍କୁ ମୁଁ ଦେଖିନି ?'

'ତମେ ବାପାଙ୍କୁ ତ ଜାଣିଛ । ସେ କ'ଣ ଖୁବ୍ ଖରାପ ଲୋକ ?'

ମୁଁ ସାବଧାନ ହୋଇଗଲି । ଏ ପ୍ରଶ୍ନ ଠିକ୍ ନୁହେଁ ।

ମୁଁ କହିଲି, 'ଚକ୍ରବର୍ତ୍ତୀ କେତେ ବଡ଼, ମୁଁ କେତେ ସାନ, ମୁଁ ତାଙ୍କ ବିଷୟରେ କ'ଣ କହିବି ?'

- 'ଠିକ୍' ସାନ କହିଲେ, 'ବାପାଙ୍କ ବିଷୟରେ ରମା କ'ଣ କହିବେ ଅପା ? ଯାହାଙ୍କୁ ସେ ଜୋଇଁ କରି ନେଲେ ତାଙ୍କ ଢଙ୍ଗ ତ ଦେଖୁଛ । ଆଙ୍କର କି ଯୋଗ୍ୟତା ଥିଲା ଚକ୍ରବର୍ତ୍ତୀ ଜରାସନ୍ଧଙ୍କର ଜୋଇଁ ହେବା ପାଇଁ ? ପୁଣି ଦି ଝିଅଙ୍କୁ ବିଭା ହେଲେ । ଆଜି ଯଦି ବାପା ଆଙ୍କ ପଛରେ ଛିଡ଼ା ନ ହେବେ, ସାହସ ନ ଦେବେ, ବୁଦ୍ଧି ନ ବତେଇବେ, ଏ କୋଉଠି ? ନାଇଁ, ନାଇଁ, ଅପା, ତମେ ଯାହା କୁହ ଆଙ୍କର ମୁଣ୍ଡ ଖରାପ ହେଲାଣି । ତା ନ ହେଲେ ଏ ଚକ୍ରବର୍ତ୍ତୀ ଜରାସନ୍ଧଙ୍କର ଉପଦେଶ ନ ମାନି ନିଜ ମନ ଇଚ୍ଛାରେ କାମ କରିବାକୁ ଭାବନ୍ତେ ।'

- ଦି ଭଉଣୀ କିଛି ସମୟ ଚୁପ କରିଗଲେ । ତା'ପରେ ବଡ଼ ସାନକୁ କହିଲେ, 'ସୋମା - ସାନଙ୍କ ନାଁ ସୋମା - ଆମେ ବୋଧେ ବେଶି ଭାବୁଛେ । ଏ ତ ସବୁକଥା ଆମକୁ କହନ୍ତିନି । ଯେତିକି କହନ୍ତି ମୋର ମନେ ହେଉଛି ଏ ବାପାଙ୍କ କଥା ବେଖାତିର କରୁ ନାହାନ୍ତି, ସାବଧାନରେ କରୁଛନ୍ତି ।' ସାନଙ୍କର ରାଗ ତଥାପି କମି ନ ଥିଲା । କହିଲେ, 'କେତେ ସାବଧାନ ? ଡର କାହାକୁ ? ରାଜା ହବା କଥା ତ ଚଟପଟ କାମ ସାର । ଏ ଉଗ୍ରସେନ, ଏ ଯାଦବ, ଆଙ୍କୁ ଭୟ କଅଣ ? ମଗଧର ଏତେ ସୈନ୍ୟସାମନ୍ତ ଏଠି ଅଛନ୍ତି କାହିଁକି ? ମତେ ଏମିତି କଂସଙ୍କର ସ୍ତ୍ରୀ ହୋଇ ରହିବାକୁ ଭଲ ଲାଗୁ ନାହିଁ । ଏଥିରେ ସମ୍ମାନ ନାହିଁ ।' ସେ କିଛି ସମୟ ଚୁପ୍ କରିଗଲେ । ପୁଣି କହିଲେ, 'ଆଉ ଦେଖ ଏ ଦେବକୀଙ୍କର ବିଭାଘର କଥା ? ଭାରି ଭଉଣୀ ! ଦେବକୀ ଦେବକୀ କହି ମଥୁରା ଲୋକେ ତାଙ୍କୁ ମୁଣ୍ଡରେ ବସେଇଛନ୍ତି । ଆଉ ତାଙ୍କର ଭଉଣୀ ସୋଗ ଏତେ, କଥା କହିଲେ ଚିହିଁଙ୍କି ଉଠୁଛନ୍ତି । ଅତ୍ୟନ୍ତ ଚତୁରୀ ସ୍ତ୍ରୀ ଲୋକ ।' ଭାନୁପ୍ରକାଶ, ସୌରଦେବ, ଅରିନ୍ଦମ ଚୁପ୍ ହୋଇ ଗୋପାଙ୍କ କଥା

ଶୁଣୁଥାନ୍ତି । ଅରିନ୍ଦମର ମନେହେଲା ଗୋପା ଏସବୁ ସତକଥା କହୁଛନ୍ତି ତ ? କିନ୍ତୁ ସେ ସନ୍ଦେହଟା ମନରୁ ବାହାର କରିଦେଲା । ଗୋପା ସାଧାରଣ ସ୍ତ୍ରୀ ଲୋକ ନୁହନ୍ତି । ସେ ଭାନୁପ୍ରକାଶଙ୍କର ଅନ୍ତରଙ୍ଗ, ସହଜେ ଅତ୍ୟନ୍ତ ବୁଦ୍ଧିମତୀ ଓ ଏହି କାମ ପାଇଁ ନିଜ ଜୀବନକୁ ବିପନ୍ନ କରି ମଥୁରାରେ କଂସର ଉଆସ ଭିତରେ ରହିଛନ୍ତି । ଗୋପା କହୁଥାନ୍ତି : ବଡ଼ ବୋଧହୁଏ ସାନଙ୍କ କଥା ବିଶେଷ ପସନ୍ଦ କଲେନି, ବା ସେ ହୁଏତ ଚାହୁଁ ନ ଥିଲେ ସାନ ଏତେ କଥା କହନ୍ତୁ । ସେ କହିଲେ, 'ସୋମା ଚୁପ କର । ଏଠି ରମା ଅଛି । ତା' ଆଗରେ ଏଆଡୁ ସେଆଡୁ କ'ଣ କହୁଛୁ ?' ସାନ ଶୁଣିବା ଲୋକ ନୁହନ୍ତି । ସେ କହିଲେ, 'ରମା ଥାଉ । ସେ ତ ଆମ ଲୋକ । ସେ କ'ଣ ନ ଜାଣିଛି ?' ତାପର ସେ ମୋ' ଆଡ଼କୁ ବୁଲି ପଡ଼ିଲେ, କହିଲେ, 'ରମା, ତୁମେ କୁହ, ମୁଁ କଅଣ ଭୁଲ କହିଲି ? ଦେବକୀ ଅଧା ଦିନରୁ ବେଶି ସମୟ ବସି ଖାଲି ପୂଜା କରୁଛନ୍ତି । କ'ଣ ଏତେ ପୂଜା କରୁଛନ୍ତି ? କାହାକୁ ? କିନ୍ତୁ ସବୁ ବୁଦ୍ଧି ତ ଟନଟନ ଅଛି । ଯାଙ୍କୁ ତ ବେଶ୍ ପଟେଇ ରଖିଛନ୍ତି । ଆଉ ବାହାରେ ଏମିତି ପ୍ରଚାର ଯେ ସେ ଯେପରି ସତରେ ଜଣେ ସାକ୍ଷାତ ଦେବୀ ! ଦେବୀ ଦେବକୀ ! ବର୍ତ୍ତମାନ ସେ କୋଉ ଭଗବାନଙ୍କୁ ବିଭା ହେବେ କେଜାଣି ? ଯାଙ୍କର ତ ନିଦ ନାହିଁ । ରମା, ତୁମେ ତ ବାହାରକୁ ଯାଉଛ । ମଥୁରାର ଲୋକଙ୍କ ସାଙ୍ଗରେ ମିଶୁଛ । ତୁମେ କୁହ ମୁଁ ଯାହା କହିଲି ମିଛ ?'

– ମୁଁ ଦେଖିଲି ମୋତେ ସାବଧାନରେ କଥା କହିବାକୁ ହେବ । ମୁଁ କହିଲି, 'ନାଁ, ରାଣୀମା, ଆପଣ ଯାହା କହୁଛନ୍ତି ମିଛ ନୁହେଁ । ଦେବକୀ ତ ସବୁବେଳେ ପୂଜାଘରେ ବସିଛନ୍ତି । ସେ କ'ଣ କରନ୍ତି, କାହାକୁ ଏତେ ସମୟ ପୂଜା କରନ୍ତି ମୁଁ ଜାଣେନା । ମୋର ତ ମନେହୁଏ ସେ ସେଇଠି ଶୋଇଶାଇ ପଡ଼ନ୍ତି । ଆଉ ମଥୁରାର ସମସ୍ତେ ଯେ ତାଙ୍କୁ ଟେକାଟେକି କରି କହନ୍ତି ତା' ନୁହେଁ । ଅନେକ ସ୍ତ୍ରୀ ଲୋକ ତାଙ୍କୁ ପସନ୍ଦ କରନ୍ତିନି ।'

– ସାନ କହିଲେ, 'ଅପା, ଶୁଣୁଛ, ଶୁଣୁଛ, ରମା କ'ଣ କହୁଛି । କିନ୍ତୁ ମଥୁରା ଲୋକେ ପସନ୍ଦ ନ କଲେ କ'ଣ ହେଲା ଇଏ ଆମର ବହୁତ ପସନ୍ଦ କରନ୍ତି । ସେହିଯୋଗୁଁ ତାଙ୍କର କେମିତି ବିଭାଘର ହେବ ଯାଙ୍କର ନିଦ ନାହିଁ ? ସେହିଯୋଗୁଁ ଏତେ ଯୋଗାଡ଼ଯନ୍ତ, ଏତେ ଲୋକ ଯିବା ଆସିବା । ସତେ ଯେପରି ରାମରାବଣ ଯୁଦ୍ଧ ଲାଗିବାକୁ ଯାଉଛି । କୋଉ ଦେଶର କୋଉ ରଜାପୁଅ ଆସିବ ଦେବକୀଙ୍କ ପାଇଁ କେଜାଣି ? ମୁଁ ତ ଭାବୁଛି ବାପା ବି ବୋଧେ ଚାଲି ଆସିବେ, ଏ ଯେଉଁ ଅବସ୍ଥା ।'

– ବଡ଼ କହିଲେ, 'ସୋମା, ତୁ ଚୁପ କରିବୁ କି ? ଏତେ ଉତ୍ତେଜିତ ହେବା

ଠିକ୍ ନୁହେଁ । ତୁ ଜାଣୁ ମୁଁ ଜାଣେ ଦେବକୀଙ୍କ ସହିତ ଯାଙ୍କର ଏତେ ବେଶି ସମ୍ପର୍କ ନାହିଁ । ଅନ୍ତତଃ ଦେବକୀଙ୍କ ପାଇଁ ଏ ବ୍ୟସ୍ତ ହବା ଆମେ କେବେ ଦେଖିନୁ । କିନ୍ତୁ ବାହାଘର ପାଇଁ ଏ ବହୁତ ବ୍ୟସ୍ତ, ବହୁତ ଯୋଗାଡ଼ଯନ୍ତ୍ର ଚାଲିଛି । କେତେ ଲୋକ ଆସୁଛନ୍ତି ଯାଉଛନ୍ତି । କାହିଁକି ? ମୋର ମନେହୁଏ ଏ ଖାଲି ବିଭାଘର ନୁହେଁ, ତା ପଛରେ ଅନ୍ୟ କିଛି କଥା ଅଛି । ସେହିଯୋଗୁଁ ଆମେ ବେଶି ବ୍ୟସ୍ତ ହେବା ଉଚିତ ନୁହେଁ । ଚୁପ ରହିବା ଭଲ । ଯାହା ହବ ଶୀଘ୍ର ଜଣାଯିବ ।'

ଗୋପା ଚୁପ ହେଲେ, ଭାନୁପ୍ରକାଶ ଓ ସୌରଦେବ ବି କିଛି କହିଲେ ନାହିଁ । କିଛି ସମୟ ଚୁପ ହୋଇ ରହିଲେ । ତା'ପରେ ସୌରଦେବ କହିଲେ, 'ଭାନୁପ୍ରକାଶ, କଂସ ବିଷୟରେ ଆମେ ଯାହା ଜାଣିଲେଣି ସେଥିରୁ ତିନୋଟି କଥା ଆସୁଛି । ପ୍ରଥମ କଥା ଉଗ୍ରସେନଙ୍କୁ କାଢ଼ି କଂସ ରାଜା ହେବ । ଏକଥା ତୁମେ ନିଶ୍ଚିତ ମୁଁ ବି ନିଶ୍ଚିତ । ଖୁବ୍ ଶୀଘ୍ର ଏକଥା ଘଟିବ । କଂସ ମଥୁରା ଫେରିବା ପୂର୍ବରୁ ଏ ଆୟୋଜନ ହୋଇସାରିଛି । ଏଥିରେ ସନ୍ଦେହ ନାହିଁ ।'

'ନାଁ', ଭାନୁପ୍ରକାଶ କହିଲେ ।

'ଦ୍ୱିତୀୟ କଥା' ସୌରଦେବ କହିଲେ, 'କଂସ ଦେବକୀର ବିଭାଘର ପାଇଁ ମନ ସ୍ଥିର କରି ସାରିଲାଣି ଓ ସେଥିପାଇଁ ପ୍ରସ୍ତୁତ ହେଉଛି । କିନ୍ତୁ ଦେବକୀର ବିଭାଘର ପାଇଁ ଏତେ ତରବର କାହିଁକି ? କଂସ ରାଜା ହେଲା ପରେ ତ ଧୀରେ ସୁସ୍ଥେ ଏ ବିଭାଘର କରାଯାଇ ପାରନ୍ତା । ଦେବକୀର ଏମିତି ତ ବୟସ ହେଇନି ବା ଏମିତି ତ ଅବସ୍ଥା ଆସିନି, ଯେ ଜରୁରୀ ବିଭାଘର ହେବା ଦରକାର । ଗୋପାଙ୍କ କଥାରୁ ମନେ ହେଉଛି ସତେ ଯେପରି କଂସର ମଥୁରାର ରାଜା ହେବାଠାରୁ ଏ ଆହୁରି ବେଶି ଗୁରୁତର । ଏଇଟା ହିଁ ମତେ ସନ୍ଦେହ ଲାଗୁଛି । ତା ଛଡ଼ା ଆଉ ଗୋଟେ କଥା ଭାବ । କା' ସାଙ୍ଗରେ ବିଭାଘର ହେବ ?'

'ବୋଧହୁଏ ବସୁଦେବ...' ଭାନୁପ୍ରକାଶ କହିଲେ ।

'ହଁ', କହିଲେ ସୌରଦେବ, 'ତାଙ୍କ ନାଁ ଉଠୁଛି । କିନ୍ତୁ ସେ ତ ବିବାହିତ । ଦେବକୀ ଠାରୁ ସେ ବୟସରେ ଅନେକ ବଡ଼ । ତା' ଛଡ଼ା ବସୁଦେବ ସହିତ ଦେବକୀର ବିଭାଘର ହେଲେ କଂସର କ'ଣ ଲାଭ ? ବସୁଦେବ ଯେଉଁ ନିର୍ମାୟା ସେ କଂସକୁ କ'ଣ ସାହାଯ୍ୟ କରିବେ ? ନାଁ, ନାଁ, ଠିକ୍ ଲାଗୁନି । କଂସର ମଥୁରାର ରାଜା ହେବା ଓ ଦେବକୀର ବିଭାଘର ଏ ଉଭୟର ସମ୍ପର୍କ କ'ଣ ? କଂସ ଯୋଉ ଲୋକ ଆମେ ଜାଣୁ ସେ ତ ଗୁପଚୁପରେ କାମ କରିବା ଲୋକ ନୁହେଁ । ସେ ତ ଧରାଧରି, ପିଟାପିଟିରେ ବେଶ୍ ପାରଙ୍ଗମ । ଗୋଟାଏ ଲୋକକୁ ତାକୁ ମାରିଦେବାକୁ କହିଲେ ସେ

ତ ଶହେଟା ଲୋକଙ୍କୁ ମାରିଦବ । ଗୋଟାଏ ସ୍ତ୍ରୀ ଲୋକ ଉପରେ ଆଖି ପଡ଼ିଲା ତ ସେ ତିରିଶଟା ସ୍ତ୍ରୀ ଲୋକଙ୍କୁ ଧରି ଆଣିବ । ଦେବକୀ ପାଇଁ ତା'ର ଏତେ ସ୍ନେହ, ଶ୍ରଦ୍ଧା କେଉଁଠୁ ଆସିଲା ? ତା'ର ସ୍ତ୍ରୀମାନେ ଯାହା କହୁଛନ୍ତି ତା ଠିକ୍ । ଏସବୁ ପଛରେ ଅନ୍ୟ କିଛି ମତଲବ ଅଛି ।

'ଜରାସନ୍ଧର ଝିଅମାନେ କ'ଣ ବୁଝିପାରୁ ନାହାନ୍ତି ? ଗୋପାଙ୍କ କଥାରୁ ମନେ ହେଉଛି ସେମାନେ ସଠିକ୍ କଥା ବୁଝିବାକୁ ବ୍ୟସ୍ତ ।' କହିଲେ ଭାନୁପ୍ରକାଶ ।

'ସଠିକ୍ କଥାଟା କ'ଣ ?' କହିଲେ ସୌରଦେବ, 'ତା ଉପରେ ସେ କଥାଟା କାହାକୁ କେତେଦୂର କୁହାଯାଇପାରେ ସେ ଅନ୍ୟକଥା । ଜରାସନ୍ଧର ଝିଅ, କଂସର ରାଣୀ, ସେକଥା ଠିକ୍ । ତା ମାନେ ନୁହେଁ ଯେ ସେମାନେ ସବୁ କଥା ଜାଣିବେ ବା ସେମାନଙ୍କୁ ସବୁ କଥା କୁହାଯିବ । ଏପରି ଅନେକ କଥା ଅଛି ଯାହା କି ଦି କାନରୁ ତିନି କାନ ହେବା କଥା ନୁହେଁ । ଜରାସନ୍ଧ ମୂର୍ଖ ନୁହେଁ । ମୋର ମନେ ହେଉଛି ଜରାସନ୍ଧ ଓ କଂସ ଭିତରେ ଏପରି କିଛି ଗୂଢ଼ ନିଷ୍ପତ୍ତି ହୋଇଛି ଯାହା ଅନ୍ୟ କେହି ଜାଣିବା ବିପଦଜନକ । ବିଭାଘର କଥା ସମସ୍ତଙ୍କୁ ଜଣେଇ ଦିଆଯାଉଛି । କାରଣ ବିଭାଘରଟା ସର୍ବସାଧାରଣ କଥା, ତାକୁ ଲୁଚେଇ ହବ ନାହିଁ, ଲୁଚେଇବା ବି ଦରକାର ନାହିଁ । ବରଂ ବିଭାଘର କଥାଟା ଯେତେ ବେଶି ପ୍ରଚାର କରାଯିବ ସେତେ ଭଲ । ସମସ୍ତଙ୍କ ଆଖି ବିଭାଘରର ଆଡ଼ମ୍ବର ଉପରେ ରହିବ । ତା' ଭିତରର ଉଦ୍ଦେଶ୍ୟ କ'ଣ ପୂରା ଲୁଚିଯିବ ।'

'ଆପଣ ଯାହା କହିଲେ ଠିକ୍', ଗୋପା କହିଲେ, 'ବିଭାଘରର ଆଡ଼ମ୍ବର ଉପରେ ସମସ୍ତଙ୍କର ଆଖି । କଂସର ବିଭାଘର ତ ବାହାରେ ମଗଧରେ ହେଲା । ମଥୁରାରେ, ରାଜପରିବାରରେ, ଏ ପ୍ରଥମ ବାହାଘର । ସମସ୍ତେ ଉତ୍ତେଜିତ । ରାଜ ପରିବାରର ଲୋକେ, ରାଜ ପରିବାର ବାହାରେ ମଥୁରାର ବହୁ ଲୋକେ । ସମସ୍ତେ ବ୍ୟସ୍ତ, କାହାରି ଆଖିକି ନିଦ ନାହିଁ । କଂସ ବି ଆଦେଶ ଦେଇଛି ଯେତେ ଆଡ଼ମ୍ବରରେ ସମ୍ଭବ ଏ ବିଭାଘର କରାଯିବ । କଂସର ରାଣୀମାନେ ବି ଯେତେ ବିରକ୍ତ ହେଲେ ବି, ଲାଗି ପଡ଼ିଛନ୍ତି ।'

'ଆଚ୍ଛା ଗୋପା', ଭାନୁପ୍ରକାଶ ପଚାରିଲେ, 'ତୁମେ ବସୁଦେବଙ୍କ ଛଡ଼ା ଆଉ କାହା ନାଁ ଶୁଣୁଛ କି ?'

ଗୋପା ଟିକିଏ ଚୁପ କରିଗଲେ । କହିଲେ – 'ନାଁ, ପ୍ରାୟ ନୁହେଁ । ବସୁଦେବଙ୍କ ନାଁ ବି କେହି ଖୋଲାଖୋଲି କହୁନାହାନ୍ତି । ଚୁପଚୁପ, ନିଜ ନିଜ ଭିତରେ ଯାହା କଥାବାର୍ତ୍ତା ହେଉଛନ୍ତି । ମତେ ବି ଆସି ପଚାରୁଛନ୍ତି । ଏ ଉଡ଼ା ଖବର


Digitized by srujanika@gmail.com

ଠିକ୍ । କିନ୍ତୁ ବସୁଦେବଙ୍କ ନାଁ ଟା ହିଁ ଲୋକେ ମଝିରେ ମଝିରେ କହୁଛନ୍ତି ।'

'କଂସର ରାଣୀମାନେ ?' ଭାନୁପ୍ରକାଶ ପଚାରିଲେ ।

'ନାଁ, ସେମାନେ ବି ଠିକ୍ ଜାଣିଲା ପରି ମନେ ହେଉନି ।' କହିଲେ ଗୋପା । 'ମୁଁ ଲକ୍ଷ୍ୟ ରଖିଛି । ନାଁ, ସେମାନେ ବି ଠିକ୍ ଜାଣନ୍ତିନି ।'

'ଭାନୁପ୍ରକାଶ', କହିଲେ ସୌରଦେବ, 'ମୋର ମନେହେଉଛି, ଦେବକୀର କାହା ସାଙ୍ଗରେ ବିଭାଘର ହେବ ଆମେ ନ ଭାବିବା ଭଲ । ଏକଥା କଂସ ବେଶିଦିନ ଲୁଚେଇ ରଖିପାରିବନି । ମୁଁ ନିଶ୍ଚିତ କଂସ ଦି ତିନି ଦିନ ଭିତରେ ନିଜର ସୁବିଧା ଦେଖି ଏକଥା ଘୋଷଣା କରି ଜଣେଇ ଦେବ । ଦେବକୀର ବିଭାଘର କାହା ସାଙ୍ଗରେ ହେବ ସେଟା ଅସଲ କଥା ନୁହେଁ । ଅସଲ କଥା ସେହି ନିର୍ଦ୍ଧିଷ୍ଟ ଲୋକ ସାଙ୍ଗରେ କାହିଁକି ହେବ । ତୃତୀୟ କଥା, ଏ ବିଭାଘରଟା ଏତେ ଆଡ଼ମ୍ବରରେ କାହିଁକି କରାହେଉଛି । ଆଉ ଏ ବାହାଘରଟା ଶେଷକଥା ନାଁ ତା ପରେ ଆଉ କିଛି ଅଛି ।'

'ଗୋପା, ଏ ବିଭାଘର ପାଇଁ ତ ବହୁତ ଲୋକ ଯିବା ଆସିବା କରୁଥିବେ ?' ଭାନୁପ୍ରକାଶ ପଚାରିଲେ ।

'ହଁ, ନାନା ପ୍ରକାର ଲୋକ ଆସୁଛନ୍ତି । ତେବେ ଉଆସ ଭିତରକୁ ବା ରାଣୀମାନଙ୍କ ମହଲକୁ ଖୁବ୍ ପାଖ ଲୋକ ନ ହେଲେ ବିଶେଷ କେହି ଆସନ୍ତିନି । ସମସ୍ତେ ବାହାରେ, ସେଇ ଦରବାର ଘରେ ବା ତା' ପାଖ ଘର ମାନଙ୍କରେ କଂସ ସହିତ କଥାବାର୍ତ୍ତା କରି ଯାଆନ୍ତି । ତେବେ ଗୋଟାଏ କଥା ମୁଁ ଦେଖିଛି । କଂସ ଯେତେବେଳେ ଅନ୍ୟମାନଙ୍କ ସାଙ୍ଗରେ କଥାବାର୍ତ୍ତା କରେ ସେ ଏକା ଏକା କରେ, ଆଉ କେହି ସେଠି ନ ଥାନ୍ତି, ଅନ୍ୟମାନଙ୍କୁ ସେଠାକୁ ମନା ।'

'ଆଚ୍ଛା, ଗୋପା', ଭାନୁପ୍ରକାଶ ପୁଣି ପଚାରିଲେ, 'ଟିକେ ଭାବିଲ । ତୁମେ ତ ବିଭିନ୍ନ ଲୋକଙ୍କୁ ଆସିବାର ଦେଖିଛ । ତା' ଭିତରେ କାହାକୁ କେମିତି ଅନ୍ୟପ୍ରକାର ମନେ ହେଲା କି ? ଟିକେ ସାଧାରଣ ଲୋକଙ୍କ ଠାରୁ ଅଲଗା ?'

ଗୋପା ଟିକିଏ ଭାବିଲେ, କହିଲେ – 'ସେମିତି ତ କାହିଁ ମନେ ହେଉନି ।' ସେ ହଠାତ୍ ରହିଗଲେ । ଭାନୁପ୍ରକାଶଙ୍କୁ ଚାହିଁ କହିଲେ, 'ଆପଣ କହିଲାରୁ ମନେ ହେଉଛି । ସନ୍ଧ୍ୟା ହବ ହବ । ଜଣେ ଅଦ୍ଭୁତ ଚେହେରାର ଲୋକଙ୍କୁ ଦେଖିଲି ।'

'ଅଦ୍ଭୁତ ?'

'ହଁ ପ୍ରାୟ, ଡେଙ୍ଗା, ତ୍ରିପଣ୍ଡ କଳା, ଲମ୍ବା ବାଳ, ଆଖି ଦି'ଟା ଲାଲ ଲାଲ ଯେମିତି ସେଥିରୁ ନିଆଁ ବାହାରୁଛି ।'

'ଦାଢ଼ି ?'


Digitized by srujanika@gmail.com

'ନାଁ, ଦାଢ଼ି ନାହିଁ । ଦେହ ଫୁଙ୍ଗୁଳା । ଛାତିରେ ଗୋଟା ମୋଟା ହାର । କଉଡ଼ି ହାର ପରି ମନେହେଲା । ଗୋଟାଏ ଲାଲ ଲୁଗା ପିନ୍ଧିଛି, ମୁଣ୍ଡରେ ଗୋଟାଏ ଲାଲ ଚାଦର ଭିଡ଼ା ହୋଇଛି । ହାତରେ ଗୋଟାଏ ଛୋଟ ବାଡ଼ି । ତେବେ ବେଶି ସମୟ ମୁଁ ତାଙ୍କୁ ଦେଖିନି, କି ତାଙ୍କ କଥା ଶୁଣିନି । କଂସ କୋଉଠି ଥିଲେ ଚଟପଟ ବାହାରି ଆସି ତାଙ୍କୁ ଗୋଟାଏ ବାହାର ନିଛାଟିଆ ଘରକୁ ଟାଣି ନେଇଗଲେ ।'

'ତାଙ୍କୁ ଆଗରୁ କେବେ ଦେଖିଥିଲ ?' ଭାନୁପ୍ରକାଶ ପଚାରିଲେ ।

'ନା'। ପରେ ବି କେବେ ଦେଖିନି ।' ଗୋପା ଉତ୍ତର ଦେଲେ ।

ସୌରଦେବ ଉଠି ଛିଡ଼ା ହେଲେ । କହିଲେ, 'ଭାନୁପ୍ରକାଶ, ଯିବା । ମୋତେ ପୁଣି ଗୋପାଙ୍କୁ ଛାଡ଼ିବାକୁ ହେବ । ନିଶ୍ଚୟ ଗୋଟା କିଛି ଯୋଗାଡ଼ ଯନ୍ତ୍ର ଚାଲିଛି । ମୋର ବିଶ୍ୱାସ ଆଉ ଦି ତିନି ଦିନ ଭିତରେ ଜଣା ପଡ଼ିଯିବ ।'

ସନ୍ଧ୍ୟା ଗଡ଼ି ଯାଇଥିଲା । ଚାରିଆଡ଼ ଚୁପଚାପ । ପୂଜକ ମନ୍ଦିର ବନ୍ଦ କରିଦେଲା । ସୌରଦେବ, ଭାନୁପ୍ରକାଶ, ଗୋପା ଆଗେ ଆଗେ ଗଲେ । ଅରିନ୍ଦମ ସେହି ନିର୍ଜନ ବାଟରେ, ନଈ କୂଳେ କୂଳେ ଘରକୁ ଫେରି ଆସିଲା ।

ଏହି ଭେଟ ହେବାର ଚାରି ପାଞ୍ଚ ଦିନ ପରେ, ସନ୍ଧ୍ୟା ହେଇ ଆସିଲାଣି, ଅରିନ୍ଦମ ଯମୁନା ଘାଟକୁ ନିଜର ସନ୍ଧ୍ୟା ଆହ୍ନିକ ପ୍ରଭୃତି ସାରିବାକୁ ଯାଉଛି, ତା ପାଖ ଦେଇ ପାଞ୍ଚ ଛଅ ଜଣ ସ୍ତ୍ରୀ ଲୋକ କିଏ ଆଗେଇ ଗଲେ । ସେ ଅନ୍ୟମନସ୍କ ଥିଲା । ହଠାତ୍ ଶୁଣିଲା 'ଦୁର୍ଗା'। ସେ ସାଙ୍ଗେ ସାଙ୍ଗେ ସଚେତ ହୋଇ ଉଠିଲା । ଚାରିପାଖକୁ ଚାହିଁଲା । କାହିଁ କେହି କୁଆଡ଼େ ଦିଶୁନାହାନ୍ତି । ଟିକେ ଆଗରେ ସେହି ସ୍ତ୍ରୀଲୋକମାନେ ଚାଲିଯାଉଛନ୍ତି । ନିଜ ଭିତରେ କ'ଣ କଥାବାର୍ତ୍ତା ହେଉଛନ୍ତି ଶୁଭୁଛି । ନିଶ୍ଚୟ ତାଙ୍କ ଭିତରୁ କେହି, ବୋଧହୁଏ ଗୋପା, ତାଙ୍କରି ପାଟି ପରି ମନେହେଲା । ସେ ଟିକିଏ ଜୋର ଜୋର ପାଦ ପକେଇ ସ୍ତ୍ରୀଲୋକମାନଙ୍କ ପଛେ ପଛେ ପାଖକୁ ଲାଗିଗଲା । ସେମାନେ ନିଜ ଭିତରେ କଥାବାର୍ତ୍ତା ହେଉଛନ୍ତି । ଅରିନ୍ଦମର ମନେହେଲା କିଏ ଯେପରି କହୁଛି, ଫିସ୍‌ଫିସ୍ କରି, ଆସ୍ତେ ଆସ୍ତେ, 'ମନ୍ଦିର, ଆଜି ସନ୍ଧ୍ୟା ।' ଅରିନ୍ଦମ ଆଉ ଆଗକୁ ଗଲା ନାହିଁ । ସେଇଠୁ ବୁଲିପଡ଼ି ନିଜର କାମ ଦାମ ସାରିବାକୁ ନଈ ଭିତରକୁ ପଶିଗଲା । ଏ ନିଶ୍ଚୟ ଗୋପା ।

ସେଦିନ ସନ୍ଧ୍ୟାରେ ଯମୁନା ଦେବୀଙ୍କ ମନ୍ଦିରରେ ସେମାନେ ପୁଣି ଏକାଠି ହେଲେ । ଅରିନ୍ଦମ ପହଞ୍ଚିବା ଆଗରୁ ସୌରଦେବ, ଭାନୁପ୍ରକାଶ ଓ ଗୋପା ଆସି ଯାଇଥଲେ । ପୂଜକ ମନ୍ଦିର ଭିତରେ ଆଳତି କରୁଥଲେ । ବାହାରେ କେହି କୁଆଡ଼େ ନାହିଁ । କେବଳ ନଦୀର କଳକଳ ଧ୍ୱନି ଓ ସନ୍ଧ୍ୟା ଚଢ଼େଇମାନଙ୍କର ରାବ । ଅରିନ୍ଦମ

ଚାହିଁ ଦେଖିଲା ମନ୍ଦିର ଚାରିପାଖ ଆଜି ପରିଷ୍କାର କରାଯାଇଛି । ଅନ୍ୟଦିନ ଠାରୁ ଦେବୀଙ୍କୁ ବି ଆଜି ଅଧିକ ଆଡ଼ମ୍ବରରେ ସଜା ଯାଇଛି । ସବୁଦିନିଆ ସନ୍ଧ୍ୟା ଭୋଗ କିଛି ଅଧିକ କରାଯାଇଛି । ସେ ଭାବିଲା ଦେବୀଙ୍କର ଆଜି କିଛି ପୂଜା ବୋଧେ । ସେ ଚୁପ ହୋଇ ବସିଲା ।

ଆଳତି ସରିଗଲା । ସମସ୍ତେ ଦେବୀଙ୍କୁ ଭୂମିଷ୍ଠ ପ୍ରଣାମ କରି ଗର୍ଭଗୃହ ପାଖରୁ ଖୋଲା ମଣ୍ଡପକୁ ଉଠି ଆସିଲେ । ପ୍ରଥମେ ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ଆମେ ଭାବିଲୁ ଗୋପା ବୋଧହୁଏ ତୁମକୁ ଖବର ଠିକ୍ ଭାବରେ ଦେଇପାରି ନାହାନ୍ତି । ତୁମେ ବୋଧହୁଏ ନ ଆସିପାର ।'

ଅରିନ୍ଦମ କହିଲା, 'ନାଁ, ମୁଁ ଖବର ଠିକ୍ ପାଇଛି । ତେବେ ହଠାତ୍ ଖବରଟା ଏତେ ଶୀଘ୍ର ଆସିବ ବୋଲି ମୁଁ ଭାବି ନ ଥିଲି । ତେବେ ଆଜି ଆସିବାକୁ ଡେରି ହେବାର ଆଉ ଗୋଟାଏ କାରଣ । ମଥୁରାର ସାହି ସାହିରେ କେମିତି ଗୋଟାଏ ଗୁମସୁମ ଭାବ । ଯେପରି ଲୋକେ କ'ଣ କହିବାକୁ ଚାହୁଁଛନ୍ତି କହିପାରୁ ନାହାନ୍ତି । ରାସ୍ତାରେ ପ୍ରାୟ ଲୋକ ନାହାନ୍ତି । ଅଧିକାଂଶ ଘରର କବାଟ ସବୁ ସନ୍ଧ୍ୟା ଆଗରୁ ବନ୍ଦ ହୋଇଗଲା । ସନ୍ଧ୍ୟା ଆଗରୁ ପିଲାମାନେ ଯୋଉ ରାସ୍ତାରେ ଖେଳାଖେଳି କରନ୍ତି ତା ବି ଆଜି ନାହିଁ । ଦିନରେ କିଛି ସାଙ୍ଗ ଘରକୁ ଆସିଥିଲେ । ଦେଖିଲି ସେମାନେ ବି ବ୍ୟସ୍ତ । କଥା ସାରି ଶୀଘ୍ର ଶୀଘ୍ର ସେମାନେ ଫେରିଗଲେ । ଆହୁରି ଆଶ୍ଚର୍ଯ୍ୟ, ବାପା ଆଜି ପ୍ରାୟ ସାରାଦିନ ଠାକୁର ଘରେ ରହିଛନ୍ତି । ଏପର୍ଯ୍ୟନ୍ତ ବି ବାହାରି ନାହାନ୍ତି । ଏମିତି ମୁଁ ପ୍ରାୟ ଦେଖିନି । ବାପା ଠାକୁର ପୂଜା କରନ୍ତି, ଅନ୍ୟ କାମଦାମ ବି କରନ୍ତି । ଯେମିତି ପିଲାଙ୍କୁ ପଢ଼େଇବା । ଏ ସବୁଦିନିଆ କାମ । ଆଜି ବନ୍ଦ । ମୁଁ ଭାବି ପାରୁନି କ'ଣ ଘଟିଛି । 'ଘଟିଛି ନୁହେଁ, ଘଟିବ', କହିଲେ ସୌରଦେବ, 'ତୁମେ ରାସ୍ତାରେ କାହାକୁ ଦେଖିନା କହୁଛ । ଠିକ୍ ମନେ ପକେଇଲ, କାହାକୁ ଦେଖି ନା ?'

ଅରିନ୍ଦମ ଟିକେ ମନେ ପକେଇଲା । କହିଲା, 'ନାଁ, ମଥୁରା ଲୋକ ତ କାହାକୁ ବିଶେଷ ଦେଖିଲିନି...' ତା ପରେ ସେ ହଠାତ୍ ରହିଗଲା, କହିଲା – 'ହଁ, ଚିହ୍ନାଜଣା ଲୋକ ନୁହେଁ । ମଗଧର ଯୋଉ ସୈନ୍ୟମାନେ ଆମ ସାଙ୍ଗରେ ଆସିଥିଲେ, ଆଉ ସେଇ ଦିନଠୁଁ ଏଠି ଅଛନ୍ତି, ଲମ୍ବା ଲମ୍ବା ଡାଗଡ଼ା ଡାଗଡ଼ା, ସେହିମାନଙ୍କୁ ଦେଖିଲି ଦଳଦଳ ହୋଇ ସାହି ବସ୍ତିରେ ବୁଲୁଛନ୍ତି । ତେବେ ସେମାନେ ଅନେକ ସମୟରେ ବୁଲାବୁଲି କରନ୍ତି, ଲୋକମାନଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି, ତେଣୁ ମୁଁ କିଛି ଭାବି ନ ଥିଲି । ଆପଣ କହିଲାରୁ ଭାବୁଛି । ଆଜି କେମିତି ଅଲଗା ଅଲଗା । ଲୋକମାନେ ବି ନାହାନ୍ତି । ସମସ୍ତଙ୍କର କବାଟ ଝରକା ବନ୍ଦ । ହଁ, କିଛି ସୈନ୍ୟଙ୍କ ହାତରେ ଖଣ୍ଡା


Digitized by srujanika@gmail.com

ତଲୁଆର ବି ।'

'ତୁମେ ଠିକ୍ ଦେଖିଛ, ଅରିନ୍ଦମ । ଶୁଣ', କହିଲେ ଭାନୁପ୍ରକାଶ, 'ଆମେ ସବୁ ଯାହା ଆଶଙ୍କା କରୁଥିଲେ ସେସବୁ ଘଟିବାକୁ ଯାଉଛି । କଂସ ମଗଧର ସେହି ନୃଶଂସ ସୈନ୍ୟମାନଙ୍କୁ ମଥୁରାର ସାହି ବସ୍ତିରେ ଛାଡ଼ି ଦେଇଛି । ଆଗେ ସେମାନେ, ତୁମେ ଯାହା କହୁଛ, ମଥୁରାରେ ବୁଲାବୁଲି କରୁଥିଲେ, ଲୋକମାନଙ୍କ ସାଙ୍ଗରେ ମିଶାମିଶି କରୁଥିଲେ । କିନ୍ତୁ ଭାବ ନା ଏସବୁ ବିନା ଉଦ୍ଦେଶ୍ୟରେ ହେଉଥିଲା । ଉଦ୍ଦେଶ୍ୟ ଥିଲା ମଥୁରା ବିଷୟରେ ଧାରଣା କରିବା । ମଥୁରାର ଲୋକମାନଙ୍କ ବିଷୟରେ ଧାରଣା କରିବା, ସେ କାମ ହୋଇଗଲା । ବର୍ତ୍ତମାନ କଂସ ବାସ୍ତବ କାମ ଉପରକୁ ଆସିଲାଣି । ମଗଧର ଦି'ଟା ମନ୍ତ୍ରୀ ଏଠି ବସି ରହିଛନ୍ତି । ଭାବୁଛ ମାଗଣାରେ ବସିଛନ୍ତି । ନାଇଁ । ଜରାସନ୍ଧର ନିର୍ଦ୍ଦେଶ କାମ ଆରମ୍ଭ କର । କାମ ଆରମ୍ଭ ହେଲା । ଆଜି ମଗଧର ସୈନ୍ୟମାନଙ୍କୁ ହେଟାବାଘ ପରି ମଥୁରାର ରାସ୍ତାମାନଙ୍କରେ ଛାଡ଼ିଦିଆ ଯାଉଛି । ବୁଲାବୁଲି ପାଇଁ ନୁହେଁ ।'

'କାହିଁକି ?' ଅରିନ୍ଦମ ଅସ୍ଫୁଟ ସ୍ୱରରେ କହିଲା । ଭାନୁପ୍ରକାଶଙ୍କର କଥାର ଢଙ୍ଗରେ ସେ ଡରିଗଲାଣି ।

'ଲୋକଙ୍କୁ ଡରେଇବା ପାଇଁ, ଭୟଭୀତ କରିବା ପାଇଁ, କାରଣ ଦିନେ ଦି ଦିନ ଭିତରେ କଂସ....ମଥୁରାର ରାଜଗାଦି ନେଇଜିବ ।'

'ରାଜା ଉଗ୍ରସେନ ? ଗୋଷ୍ଠୀ ମୁଖ୍ୟମାନେ ? ଆଉ ମଥୁରାର ଲୋକେ ? ନାଁ, ନାଁ, ଏ ଏତେ ଶୀଘ୍ର ସମ୍ଭବ ନୁହେଁ ।' ଅରିନ୍ଦମ ସନ୍ଦେହ କଲା ।

'ଏଥିରେ ସନ୍ଦେହର କିଛି ନାହିଁ, ଅରିନ୍ଦମ', କହିଲେ ଭାନୁପ୍ରକାଶ, 'ଲୋକଙ୍କୁ ତ ଦେଖିଲ । ସେମାନେ କବାଟ ଝରକା ବନ୍ଦ କରି ଘରେ ପଶିଲେଣି । ଆଉ ଗୋଷ୍ଠୀ - ମୁଖ୍ୟ ? ଅଧିକାଂଶ କିଣା ହୋଇ ସାରିଲେଣି । ଯେଉଁମାନେ ଏ ପର୍ଯ୍ୟନ୍ତ ମାନି ନାହାନ୍ତି ସେମାନଙ୍କ ପାଇଁ ଅନ୍ୟ ବନ୍ଦୋବସ୍ତ ହେଉଛି । କିଛି ମୁଖିଆଙ୍କୁ ଶେଷ କରି ଦିଆଯିବ । ବିଶେଷ କରି ବୁଢ଼ା ବୁଢ଼ା ବୟସ୍କ ଲୋକଙ୍କୁ, ଯେଉଁମାନେ ଭାବୁଛନ୍ତି ଏବେ ବି ସେଇ ପୁରୁଣା କଥା ରହିଛି । ବୟସ୍କ ଲୋକଙ୍କୁ ଲୋକେ ସମ୍ମାନ କରିବେ, ତାଙ୍କ କଥା ଶୁଣିବେ ।'

'ଆଉ ଉଗ୍ରସେନ ?' ସୌରଦେବ କହିଲେ, 'ସେ ତ ହାତ ଟେକାରେ ଅଛନ୍ତି । ଯୋଉଦିନ କଂସ ଆଙ୍ଗୁଠିଟା ନଇଁ ଦବ ସେ ଯିବେ । ଆଉ କିଏ ରହିଲା ?' ସୌରଦେବ ଅରିନ୍ଦମକୁ ଚାହିଁଲେ, 'ତୁମ ପରି ଟୋକାଟାକଳିଆ । ସେମାନେ ତ ଗୋଡ଼ ଟେକି ବସିଛନ୍ତି । କଂସ କହିବା ସାଙ୍ଗେ ସାଙ୍ଗେ ଡେଇଁ ପଡ଼ିବେ ।'


Digitized by srujanika@gmail.com

'କିନ୍ତୁ ସମସ୍ତେ ତ ନୁହନ୍ତି...' ଅରିନ୍ଦମ ରହି ରହି କହିଲା ।

'ନାଁ, ସମସ୍ତେ ନୁହନ୍ତି, ଆମେ ଜାଣୁ ।' ଭାନୁପ୍ରକାଶ କହିଲେ, 'କେତେକ ଅଛନ୍ତି କଂସକୁ ନାପସନ୍ଦ କରନ୍ତି, ବିରୋଧ କରନ୍ତି, କିନ୍ତୁ ସେମାନେ କେତେ ? ସେମାନେ କ'ଣ କରିପାରିବେ ? ଖାଲି ବିରୋଧ ଯଥେଷ୍ଟ ନୁହେଁ । ବିରୋଧ କରିବା ପାଇଁ ଶକ୍ତିଥିବା ଦରକାର ।'

'ତାପରେ ଆଉ ଗୋଟାଏ କଥା । କଂସ ଶୀଘ୍ର ରାଜ୍ୟ ଜୟ କରିବାର ଅଭିଯାନରେ ବାହାରିବ । ଏଇଟା ହିଁ ଜରାସନ୍ଧର ମୂଳ ଇଚ୍ଛା । ସେଥିପାଇଁ ମଥୁରାରେ କଂସ ସମ୍ପୂର୍ଣ୍ଣ କ୍ଷମତା ପାଇବା ଦରକାର ।' କହିଲେ ସୌରଦେବ ।

'ଆପଣଙ୍କର କିଛି ବିପଦ ନାହିଁତ ?' ଅରିନ୍ଦମ ସୌରଦେବଙ୍କୁ ଚାହିଁ ପଚାରିଲା । ସୌରଦେବ ହସିଲେ, କହିଲେ, 'ମୁଁ ତ ଭାବୁଛି ନାହିଁ । ଯାହା ଘଟୁ ପଛେ ତୁମ ବାପାଙ୍କର ଯେମିତି ବିପଦ ନାହିଁ, ମୋର ବି ସେମିତି ନାହିଁ । ଆମେ ନିରପେକ୍ଷ ଲୋକ । କଂସ ଜାଣେ । ଆହୁରି ବି କିଛି ଲୋକ ଅଛନ୍ତି ଯେଉଁମାନଙ୍କୁ ସେ କ୍ଷତି କରିବାକୁ ଚାହିଁବନି । ଯେପରି ବୃଷ୍ଣି ଗୋଷ୍ଠୀର ମୁଖ୍ୟ ଅକ୍ରୂର । ଆମ କଥା ଛାଡ଼, ମଥୁରା କଥା ଭାବ । ଯେଉଁ ଭୟଙ୍କର ଦୁର୍ଯୋଗ ମଥୁରା ଉପରେ ଘୋଟି ଆସୁଛି, ତା'ର ପ୍ରତିକାର କିଏ କରିବ ? ଏ ଖାଲି କଂସ ନୁହେଁ, କଂସ ଓ ଜରାସନ୍ଧ ଉଭୟ । ନୀତି, ନିୟମ, ଧର୍ମ, ଆଦର୍ଶ ଏସବୁ ଚାଲିଗଲେ କେତେବେଳେ କ'ଣ ଘଟିବ କିଏ କହିପାରିବ ?'

'ଗୋପା', ଭାନୁପ୍ରକାଶ ଗୋପାଙ୍କୁ ଚାହିଁଲେ, 'ତୁମେ ଆଉ କିଛି ଖବର ପାଇଛ ?'

'ହଁ', ଗୋପା କହିଲେ, 'କଂସ ଯେ ଶୀଘ୍ର ମଥୁରାର ରାଜା ହେବ ଏକଥା ନଅରରେ ସମସ୍ତେ ଫୁସ୍‌ଫୁସ୍ କରି କଥା ହେଉଛନ୍ତି । କଂସ ରାଜା ହେଲା ପରେ ବେଶ ବଡ଼ ଉତ୍ସବ ହେବ, ସେଥିପାଇଁ ଯୋଗାଡ଼ ଚାଲିଛି । ତେବେ ମୋର ନିର୍ଦ୍ଦିଷ୍ଟ ଖବର, ଯାହା ହବାର କଥା ଶୀଘ୍ର ହେବ । କାହିଁକି ନା ଜରାସନ୍ଧଙ୍କ ପାଖରୁ ଖବର ଆସିଛି । ତାଙ୍କର ଆଉ ଜଣେ ମନ୍ତ୍ରୀ ଆସୁଛନ୍ତି, ଆଉ ଅଧିକ ସୈନ୍ୟସାମନ୍ତ ବି ।'

'ଦେବକୀ ବିଭାଘର ?' ଭାନୁପ୍ରକାଶ ପଚାରିଲେ ।

'ବିଭାଘରର ବିଶେଷ କଥାବାର୍ତ୍ତା ନାହିଁ । ତେବେ ମୋର ମନେହେଉଛି ଭିତରେ ଭିତରେ ବନ୍ଦୋବସ୍ତ ଚାଲିଛି । ବସୁଦେବଙ୍କ ସହିତ ଦେବକୀର ବିଭାଘର କଂସ ରାଜା ହେବା ପରେ ପରେ ହେବା ସମ୍ଭବ ।'

'ଖୁବ୍ ସମ୍ଭବ', ସୌରଦେବ କହିଲେ, 'ମୋର ଯାହା ଖବର, ମୋର


Digitized by srujanika@gmail.com

ଦୃଢ଼ବିଶ୍ୱାସ କଂସ ଦେବକୀର ବିଭାଗର ବସୁଦେବଙ୍କ ସହିତ କରିବା ପାଇଁ ସ୍ଥିର କରିଛି । ତା'ର ଦିଇଟା ଲାଭ । ପ୍ରଥମ ହେଲା ସେ ଯାଦବମାନଙ୍କ ସବୁଠାରୁ ବଡ଼ ସୁର ଗୋଷ୍ଠୀକୁ ନିଜ ଅକ୍ତିଆରକୁ ନେଇ ଆସିବ । ଦ୍ୱିତୀୟ ହେଲା ବସୁଦେବଙ୍କ ସହିତ ସମ୍ପର୍କ କରି ସେ ଲୋକଙ୍କୁ ଜଣେଇ ଦେବାକୁ ଚାହେଁ ସେ କେତେ ଭଲ, କେତେ ନୀତିନିଷ୍ଠ ।'

'ବସୁଦେବଙ୍କ ସ୍ତ୍ରୀ ରୋହିଣୀ ନଅରକୁ ଦି ତିନି ଥର ଆସି କଂସର ରାଣୀମାନଙ୍କ ସାଙ୍ଗରେ ଦେଖା କଲେଣି । ମନେହୁଏ ତାଙ୍କର ବି ଇଚ୍ଛା ବସୁଦେବ ଦେବକୀଙ୍କୁ ବିଭା କରନ୍ତୁ ।' ଗୋପା କହିଲେ ।

'ଏ ଗୁରୁତର କଥା', ଭାନୁପ୍ରକାଶ କହିଲେ, 'କଂସର ରୋହିଣୀଙ୍କ ପ୍ରତି ବ୍ୟବହାର ?' 'ଭଲ', ଗୋପା କହିଲେ ।

'କିନ୍ତୁ ରୋହିଣୀ କେବେ କଂସ ସହିତ କଥାବାର୍ତ୍ତା ହେବା ଶୁଣିଛ ?' ଭାନୁପ୍ରକାଶ ପଚାରିଲେ ।

'ନାଁ', ଗୋପା କହିଲେ, 'ସେ ବରଂ କଂସକୁ ଛାଡ଼ି ଛାଡ଼ି ରହନ୍ତି ।'

'ଆଉ ଉଗ୍ରସେନଙ୍କ ମତାମତ ?' ଭାନୁପ୍ରକାଶ ପୁଣି ପଚାରିଲେ ।

'ଉଗ୍ରସେନଙ୍କ କଥା ମୁଁ କହୁଛି ଶୁଣ ।' କହିଲେ ସୌରଦେବ, 'ଉଗ୍ରସେନ ଭଲ ଲୋକ । କିନ୍ତୁ ତାଙ୍କର କୌଣସି ମତାମତ ନାହିଁ, କି କଂସ ତାଙ୍କର ମତାମତକୁ କୌଣସି ଗୁରୁତ୍ୱ ଦିଏ ନା ।'

'ତା ଠିକ୍', ଭାନୁପ୍ରକାଶ କହିଲେ, 'ବାପ ପୁଅର ସମ୍ପର୍କ, ବା ମଥୁରାରେ କିଏ ରାଜା ହେବ, କଥା ସେତିକିରେ ନାହିଁ । ଏ ପୂରା ରାଜନୀତିର ବ୍ୟାପାର, ଆଉ ଏ ରାଜନୀତିର ଖେଳ କଂସର ନୁହେଁ, ଜରାସନ୍ଧର ।' ଭାନୁପ୍ରକାଶ ଗୋପାଙ୍କ ଆଡ଼କୁ ବୁଲି ପଡ଼ିଲେ, କହିଲେ 'ଗୋପା, ତୁମେ କହିଲ ଜରାସନ୍ଧର କିଏ ଜଣେ ମନ୍ତ୍ରୀ ଆସୁଛି । ନାଁ ଶୁଣିଛକି ?'

'ନାଁ । ତେବେ ଜଣେ କିଏ ବଡ଼ ମନ୍ତ୍ରୀ ।' ଗୋପା କହିଲେ ।

ଭାନୁପ୍ରକାଶ କିଛି ସମୟ ଭାବିଲେ । କହିଲେ, 'ଜରାସନ୍ଧର ଅନେକ ମନ୍ତ୍ରୀ ଅଛନ୍ତି । ସେ ସେମାନଙ୍କୁ ବିଭିନ୍ନ ଦାୟିତ୍ୱ ଦେଇଥାଏ । କିନ୍ତୁ ସେ ବିଶ୍ୱାସ କରୁଥିବା, ଅତ୍ୟନ୍ତ ଘନିଷ୍ଠ ମନ୍ତ୍ରୀ ଦୁଇ ତିନି ଜଣ, ଯେଉଁମାନେ ଜରାସନ୍ଧ ପରି ସମାନ କୁଚକ୍ରୀ, ଆଉ ଯେଉଁମାନଙ୍କର ଜରାସନ୍ଧ ପରି ସମାନ ସଇତାନୀ ବୁଦ୍ଧି ।'

'ଏ ଯେଉଁ ଦୁଇଜଣ ମନ୍ତ୍ରୀ ଆସି ମଥୁରାରେ ଅଛନ୍ତି ?' ସୌରଦେବ ପଚାରିଲେ ।

'ନାଁ, ଏମାନେ ସାଧାରଣ ମନ୍ତ୍ରୀ । ଏମାନଙ୍କର କାମ ହେଉଛି କଂସ ଉପରେ ନଜର ରଖିବା, ଆଉ ଜରାସନ୍ଧର ନିର୍ଦ୍ଦେଶ କଂସ ଠିକ୍ ଭାବରେ ମାନୁଛି କି ନାହିଁ ଦେଖିବା । ମୋର ମନେ ହେଉଛି ଜରାସନ୍ଧ ତା'ର ଏଇ ଦି ତିନିଜଣ ଘନିଷ୍ଠ ମନ୍ତ୍ରୀଙ୍କ ଭିତରୁ ଜଣେ କାହାକୁ ପଠଉଛି । ଖୁବ୍ ସମ୍ଭବ... ଖୁବ୍ ସମ୍ଭବ କ'ଣ ? ନିଶ୍ଚୟ ସେଇ ଲୋକଟା । ତା ନାଁ ରଞ୍ଜନଦେବ । ଅତ୍ୟନ୍ତ ଚତୁର, ଅତ୍ୟନ୍ତ ବିବେକହୀନ, ସେ ଅଜଗର ପରି କଂସକୁ ବେଢ଼ି ଧରିବ ।'

'ରଞ୍ଜନଦେବ ? ହଁ, ମୁଁ ତା ନାଁ ଶୁଣିଛି ।' କହିଲେ ଗୋପା, 'ସେ ତ ଅତ୍ୟନ୍ତ ଭୟଙ୍କର । ଜରାସନ୍ଧ ଠାରୁ ବି ଭୟଙ୍କର । ସେ ଲୋକଟାର ହୃଦୟ ବୋଲି କିଛି ନାହିଁ । ସେ ଜରାସନ୍ଧଙ୍କ ପାଇଁ ଯାହା କିଛି କରିପାରିବ । ତା ନାଁ କେହି ଜୋରରେ କହନ୍ତି ନାହିଁ, ଫୁସ୍ ଫୁସ୍ କରି କହନ୍ତି । ଜରାସନ୍ଧଙ୍କ ପାଇଁ ରାକ୍ଷସ ସୈନ୍ୟଗୁଡ଼ା ସେହି ହିଁ ଅଣେଇଥିଲା ।'

'ହଁ, ସେଇ ଲୋକଟା ନିଶ୍ଚୟ ଆସୁଛି ।' କହିଲେ ଭାନୁପ୍ରକାଶ, 'ସୌରଦେବ, ଆମେ ଏଠି ଯାହା ସବୁ ଘଟିବ ବୋଲି ଭାବୁଛେ, ତା' ଠାରୁ ଆଉ କିଛି ଭୟଙ୍କର ଘଟିବାକୁ ଯାଉଛି ।'

ସନ୍ଧ୍ୟା ଗଡ଼ି ରାତି ଆସି ଯାଇଥିଲା । ପ୍ରସାଦ ପ୍ରସ୍ତୁତ ଥିଲା । ସେମାନେ ସବୁ ଖାଇ ନେଲେ । ଚାରିଆଡ଼ ଚୁପଚାପ । ସନ୍ଧ୍ୟାବେଳେ ମଥୁରା ସହରର ଯେଉଁ କୋଳାହଳ ଭାସି ଆସୁଥାଏ ତା ବି ନାହିଁ । ନଈରେ ଡଙ୍ଗା ଯିବା ଛଡା ଆଉ କିଛି ଶବ୍ଦ ନାହିଁ । ମନ୍ଦିର ପାଖ ଦେଇ ଗୋଟାଏ ରାତି ଚଢ଼େଇ ଡାକି ଡାକି ଉଡ଼ିଗଲା । ବହୁତ ଦୂରରେ କେଉଁଠି ଗୋଟାଏ ଉଜ୍ଜ୍ୱଳ ମଶାଲ ଆଲୁଅ ଜଳୁଛି । ବାସ ସେତିକି ।

ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ ଆଜି ରାତିରେ ଆମ ସାଙ୍ଗରେ ରହିବ ।'

'ଆପଣଙ୍କ ସାଙ୍ଗରେ ? ବାପାଙ୍କୁ କୁହା ହୋଇନି । ସେ ଅପେକ୍ଷା କରିବେ ।' କହିଲା ଅରିନ୍ଦମ ।

'ବାପାଙ୍କୁ କୁହାହୋଇଛି । ସେ ଜାଣନ୍ତି ।' କହିଲେ ସୌରଦେବ, 'ଆଜି ରାତିରେ ମଥୁରା ନିରାପଦ ନୁହେଁ । କଂସର ସୈନ୍ୟମାନେ ମଥୁରାର ଗଳି କନ୍ଦିରେ ବୁଲୁଛନ୍ତି । ସାବଧାନ ହେବା ଭଲ ।'

'ଆମେ ଏଠି ରହିବା ନାହିଁ', କହିଲେ ଭାନୁପ୍ରକାଶ । 'କିଛି ତଳେ ଆମ ଡଙ୍ଗା ଅଛି । ଆମେ ନଈ ଟପି ଗୋପ ଗୋକୁଳକୁ ଯିବା । ସେଇଠି ରହିବା ।'

'ସେ ତ ଗୋପାଳମାନଙ୍କ ଗାଁ', କହିଲା ଅରିନ୍ଦମ । 'ବେଶ ବଡ଼ ଗାଁ । ନନ୍ଦଙ୍କ

ଘର ।'

'ହଁ, ଆମେ ସେହି ନନ୍ଦଙ୍କ ଘରେ ରହିବା । ମୁଁ ସେଇଠି ଅଛି ।' କହିଲେ ଭାନୁପ୍ରକାଶ ।

ଅରିନ୍ଦମ ମୁଣ୍ଡରେ ଗୋଟାଏ ପରେ ଗୋଟାଏ ଅନେକ ଚିତ୍ର ଖେଳିଗଲା । ଗୋକୁଳ ତା'ର ଚିହ୍ନା ଜାଗା । କେତେଥର ସେ ସାଙ୍ଗମାନଙ୍କ ସାଙ୍ଗରେ ଯମୁନା ଟପି ଗୋକୁଳକୁ ଯାଇଛି । ବୁଲିବା ପାଇଁ, ବଣଭୋଜି କରିବା ପାଇଁ, ଗୋକୁଳର ଚିହ୍ନା ଗୋପାଳମାନଙ୍କ ଘରେ ଉତ୍ସବରେ ଯୋଗ ଦେବା ପାଇଁ । ବିଶେଷ କରି ନନ୍ଦଙ୍କ କଥା ସେ ଭାବିଲା । ନନ୍ଦ ଗୋପାଳମାନଙ୍କର ମୁଖ୍ୟ । କିନ୍ତୁ ସେ ଆଉ ଜଣେ ଗୋପାଳ । ଗୋପାଳମାନଙ୍କର ସବୁ କାମ ସେ ହାତେ ହାତେ କରନ୍ତି । ବଣକୁ ଗାଇଗୋରୁ ନେବା ଠାରୁ ଗାଇ ଦୁହିଁବା ପର୍ଯ୍ୟନ୍ତ । ଅନେକ ଥର ସେ ବାପାଙ୍କ ପାଖକୁ ଆସିଛନ୍ତି । ଯେତେବେଳେ ଆସନ୍ତି ସାଙ୍ଗରେ ସର, ଲହୁଣୀ ଘେନି କରି ଆସିବେ । ବାପାଙ୍କ ପାଖରେ ସେ ଅନେକ ସମୟ ବସି ରହନ୍ତି, ତାଙ୍କ ପୂଜା ଘରେ ପୂଜା ବି କରନ୍ତି । ଖୁବ୍ ସ୍ନେହୀ, ତାଙ୍କର ସ୍ତ୍ରୀ ଯଶୋଦା ମଧ୍ୟ ଖୁବ୍ ସ୍ନେହୀ । ସେମାନଙ୍କର ପିଲାପିଲି ନାହିଁ । କିନ୍ତୁ ପିଲାମାନଙ୍କୁ ଖୁବ୍ ସ୍ନେହ କରନ୍ତି । ଅରିନ୍ଦମ ଓ ତାଙ୍କ ସାଙ୍ଗମାନଙ୍କ ପାଇଁ ତ ସେ ମା । ଯେତେବେଳେ ଦେଖାହେବ ସେମିତି ଛାଡ଼ିବେ ନାହିଁ, ଖୋଇପେଇ ଛାଡ଼ିବେ, ସେ ସକାଳ ହେଉ, ଦିପହର ହେଉ କି ରାତି ହେଉ । ଦିନକର କଥା ତା'ର ମନେ ଅଛି । ସେଦିନ ଦିନ ସରି ଆସିଲାଣି । ତା'ର ସାଙ୍ଗମାନେ ହଠାତ୍ କହିଲେ ଚାଲ ଗୋପ ଗୋକୁଳକୁ ଯିବା । କଥା ତ କାମ, ସାଙ୍ଗେ ସାଙ୍ଗେ ସେମାନେ ହୋ ହୋ ହେଇ ଯମୁନା ପାରି ହୋଇ ଗୋକୁଳରେ । ସେତେବେଳକୁ ସନ୍ଧ୍ୟା ଗଡ଼ିଗଲାଣି । କିନ୍ତୁ ପୂର୍ଣ୍ଣମୀ ପାଖ, ଜହ୍ନରାତି, ଜହ୍ନ ଅସଂଖ୍ୟ ଧଳା ଫୁଲ ପରି ସବୁଆଡ଼େ ବିଛାଡ଼ି ହୋଇ ପଡ଼ିଛି । ସେମାନେ ଛଅ ସାତ ଜଣ । କିନ୍ତୁ କୁଆଡ଼େ ଯିବା, କ'ଣ କରିବା, କା'ର ସୁବିଧା ହେବ କି ଅସୁବିଧା ହେବ, ଏସବୁ ନ ଭାବି ସିଧା ଯାଇ ଯଶୋଦା ମା'ଙ୍କ ଘରେ ପହଞ୍ଚି ଗଲେ । ତାଙ୍କୁ ସବୁ ଦେଖି ଯଶୋଦା କି ଖୁସି । ସାଙ୍ଗେ ସାଙ୍ଗେ ପାଖ ପଡ଼ିଶାରୁ ମାଉସୀମାନଙ୍କୁ ଡାକିଆଣି ରୋଷେଇବାସ ଆରମ୍ଭ କରିଦେଲେ । ଖାଇପିଇ ମଥୁରା ଫେରିଲା ବେଳକୁ ବେଶ୍ ରାତି । ତା'ର ମନେଅଛି ବହୁତ ଦିନ ପର୍ଯ୍ୟନ୍ତ ସେମାନେ ସେହି କଥାହିଁ କଥାବାର୍ତ୍ତା କରୁଥିଲେ । ଏତେ ଖୁସି ସେମାନେ ଆଉ ବି କେବେ ହୋଇ ନାହାନ୍ତି । ଗୋପ ସେପାଖୁ ଲାଗିକରି ମହାବନ, ବେଶ୍ ବଡ଼ ଜଙ୍ଗଲ, ବହୁ ଜନ୍ତୁଜନ୍ତା । ତା'ର ମନେ ଅଛି ଯଶୋଦା ତାଙ୍କୁ ସବୁବେଳେ ମନା କରନ୍ତି ମହାବନକୁ ଯିବା ପାଇଁ, କହନ୍ତି ପିଲାମାନେ ତୁମେ ମହାବନକୁ ଯାଅ ନା,


Digitized by srujanika@gmail.com

ବହୁତ ଜନ୍ତୁଜୁନ୍ତୁ । ସେମାନେ ଯେବେ ଯାଆନ୍ତି, ସେ ଦେଖିଚି, ଯଶୋଦା ସବୁବେଳେ ଗାଁ ମୁଣ୍ଡକୁ ଆସି ସେମାନଙ୍କୁ ଅପେକ୍ଷା କରି ବସିଥିବେ । ନାଁ, ନାଁ, ନନ୍ଦ ଓ ଯଶୋଦାଙ୍କ ପରି ଲୋକ ହେବେନି । ଦେବ ଦ୍ୱିଜରେ ଭକ୍ତି, ସମସ୍ତଙ୍କୁ ସ୍ନେହ । ନନ୍ଦ ବୋଧହୁଏ ବସୁଦେବଙ୍କର କ'ଣ ହେବେ । ସେମାନଙ୍କର ସମ୍ପର୍କ ବହୁତ ଭଲ । ସେ ବସୁଦେବଙ୍କ ସ୍ତ୍ରୀ ରୋହିଣୀଙ୍କୁ ନନ୍ଦଙ୍କ ଘରେ ଯାଇ ରହିବାର ଅନେକ ଥର ଦେଖିଛି । କିନ୍ତୁ ନନ୍ଦଙ୍କ ସମ୍ପର୍କରେ ବାପାଙ୍କର ଗୋଟାଏ କଥା ବଡ଼ ଅଦ୍ଭୁତ ମନେ ହେଇଥିଲା । ସେ ସେତେବେଳେ ତ ବୁଝି ନ ଥିଲା, ଏବେ ବି ସେ ଜାଣେନା ତା'ର ମାନେ କ'ଣ ବା କ'ଣ ହୋଇପାରେ । ଦିନେ ବାପା ତାକୁ ହଠାତ୍ ପଚାରିଲେ – ତୁ ନନ୍ଦ ଯଶୋଦାଙ୍କ ଘରକୁ ଯାଉ କି ? ସେ ହଁ କଲା । ତୋର ସାଙ୍ଗ ମାନେ ବି ? ସେ ପୁଣି ହଁ କଲା । ସେମାନେ କେମିତି ଲାଗନ୍ତି ତୁମକୁ । ବାପା ପୁଣି ପଚାରିଲେ । ଖୁବ୍ ଭଲ, ସେ କହିଥିଲା । ତାଙ୍କ ଘର ତ ଆମକୁ ନିଜ ଘର ପରି ଲାଗେ । ଖୁବ୍ ସ୍ନେହୀ । ବାପା ଟିକିଏ ରହିଗଲେ । କ'ଣ ଭାବିଲେ । କହିଲେ, ସେମାନେ ଦେବତା ପରି ଲୋକ । ସେହିମାନଙ୍କ ଯୋଗୁହିଁ ମଥୁରା ବଞ୍ଚିଯିବ । ସେ ଅନେକ ଥର ଭାବିଛି ବାପାଙ୍କୁ ଏ କଥାର ମାନେ ପଚାରିବ । କିନ୍ତୁ କେବେ ସେ ସାହସ କରିପାରି ନାହିଁ, ଆଜି ବି ନୁହେଁ ।

ଭାନୁପ୍ରକାଶଙ୍କ କଥାରେ ତା'ର ଧ୍ୟାନ ଭାଙ୍ଗିଗଲା । ଭାନୁପ୍ରକାଶ କହୁଥାନ୍ତି, 'ଅରିନ୍ଦମ, କଅଣ ଏତେ ଭାବୁଛ ? ନନ୍ଦଙ୍କ ଘରେ ଗୋଟାଏ ରାତି ରହିବା ତୁମର କିଛି ଅସୁବିଧା ହେବନି । ସେମାନେ ଖୁବ୍ ଭଲ ଲୋକ, ଆମ ଲୋକ ।'

'ନାଁ, ନାଁ, ମୁଁ ସେକଥା ଭାବୁନି', ଅରିନ୍ଦମ କହିଲା, 'ନନ୍ଦ ଓ ଯଶୋଦାଙ୍କୁ ମୁଁ ଭଲ କରି ଜାଣେ । ତାଙ୍କ ଘରେ ମୁଁ ଓ ମୋ' ସାଙ୍ଗମାନେ ଯାଇ ଅନେକଥର ରହିଛୁ । ସେ ବି ବାପାଙ୍କ ପାଖକୁ ଅନେକଥର ଆସନ୍ତି ।'

'ତୁମ ବାପାହିଁ ମୋତେ ସେଠି ରହିବାର ବନ୍ଦୋବସ୍ତ କରି ଦେଇଛନ୍ତି', କହିଲେ ଭାନୁପ୍ରକାଶ ।

'ମୁଁ ବାପାଙ୍କ କଥାହିଁ ଭାବୁଛି', କହିଲା ଅରିନ୍ଦମ, 'ଥରେ ସେ ନନ୍ଦ ଓ ଯଶୋଦାଙ୍କ ବିଷୟରେ ଏପରି ଗୋଟାଏ କଥା କହିଲେ ଯାର ମାନେ ମୁଁ ସେତେବେଳେ ବୁଝିପାରି ନ ଥିଲି, ଏବେ ବି ବୁଝି ପାରୁନି ।'

'କ'ଣ ? କି କଥା ?' ଭାନୁପ୍ରକାଶ ପଚାରିଲେ ।

'ଥରେ ବାପା ନନ୍ଦ ଓ ଯଶୋଦାଙ୍କ ବିଷୟରେ କହୁ କହୁ କହିଲେ, ସେମାନେ ଦେବତା ପରି ଲୋକ । ସେଇମାନଙ୍କ ଯୋଗୁଁ ହିଁ ମଥୁରା ବଞ୍ଚିଯିବ ।'

ଭାନୁପ୍ରକାଶ, ସୌରଦେବ, ଗୋପା ସମସ୍ତେ ଆଶ୍ଚର୍ଯ୍ୟ ହେଲେ । କିଛି ସମୟ ପରେ ସୌରଦେବ କହିଲେ, 'ଏ କଥାର ମାନେ କ'ଣ ?'

ଭାନୁପ୍ରକାଶ କହିଲେ, 'ମାନେ ବୁଝିବା ସମ୍ଭବ ନୁହେଁ । କିନ୍ତୁ ବାପା ଯେତେବେଳେ କହିଛନ୍ତି ଏ କଥାର ଗୂଢ଼ ଅର୍ଥ ଅଛି, ଯାହା କେବଳ ଭବିଷ୍ୟତରେ ହିଁ ଜଣାଯିବ ।'

ସେମାନେ ସବୁ ଉଠିଲେ । ଭାନୁପ୍ରକାଶ ଜଣେଇଦେଲେ ଯମୁନାର ଟିକେ ତଳ ଆଡ଼କୁ ଯିବାକୁ ହେବ । ଡଙ୍ଗା ସେଇଠି ଅଛି । ସେଇଠି ଯମୁନା ପାରି ହବାକୁ ହେବ । ଗୋପକୁ ସେ ସିଧା ରାସ୍ତା, ଅଳ୍ପ ବାଟ ।

ଅରିନ୍ଦମ କହିଲା, 'ଯମୁନାର ଉପର ଆଡ଼କୁ ଆଉ ଗୋଟାଏ ଘାଟ ଅଛି । ସେଇ ବାଟେ ପ୍ରାୟ ଲୋକ ଯିବା ଆସିବା କରନ୍ତି । ଗୋପାଳୁଣୀମାନେ ଗୋପରୁ ମଥୁରାକୁ ଦୁଧ ଦହି ନେଇ ସେଇବାଟେ ଆସନ୍ତି । ଆମେ ବି ଗୋପ ଗଲେ ସେଇବାଟେ ଯାଉ । ସେ ତଳ ଆଡ଼ର ଘାଟ ଉପରେ ଗୋଟାଏ ପୁରୁଣା ବଡ଼ ଘର ଅଛି । ସେଠି କେହି ରହିବା ମୁଁ ଦେଖିନାହିଁ । ସେ ଘର ଚାରିପାଖରେ ଉଚ୍ଚା ପାଚିରି, କବାଟ ଝରକା ପ୍ରାୟ ବନ୍ଦ ଥାଏ । ବାହାରୁ ଦେଖିଲେ ମନେହେବ ଯେମିତି ଗୋଟାଏ ବନ୍ଦୀଶାଳା । ଲୋକମାନେ ସେ ବାଟେ ଯିବାକୁ ଡରନ୍ତି ।'

'ଡରିବାର କିଛି ନାହିଁ', କହିଲେ ସୌରଦେବ, 'ଘରଟା ପୁରୁଣା ଠିକ୍, ତେବେ ବହୁତ ପୁରୁଣା ନୁହେଁ । ଭଲ ଅବସ୍ଥାରେ ବି ଅଛି । ଉଗ୍ରସେନ ତାଙ୍କର ବିଭାଘର ପରେ ପରେ ଘରଟା ତିଆରି କରିଥିଲେ । ନାଁ ଦେଇଥିଲେ ଯମୁନା ନିବାସ । ମଝିରେ ମଝିରେ ଆସି ବି ରହୁଥିଲେ । ବିଶେଷ କରି ତାଙ୍କ ସ୍ତ୍ରୀ ଅନେକ ସମୟରେ ଆସି ରହୁଥିଲେ । କଂସ ହେଲା ପରେ ସେ ପ୍ରାୟ ଏଠାକୁ ଆସି ନାହାନ୍ତି । ତେବେ ଘରଟା ମୋଟାମୋଟି ଭଲ ଅବସ୍ଥାରେ ଅଛି ।'

'ରାଜ ନଅରଠାରୁ ଘରଟା ଏତେ ଦୂରରେ କାହିଁକି କଲେ ?' ପଚାରିଲା ଅରିନ୍ଦମ ।

'ନାଁ ଖୁବ୍ ଦୂର ନୁହେଁ ।' କହିଲେ ସୌରଦେବ, 'ଆମେ ଯମୁନା କୂଳେ କୂଳେ ବୁଲିକରି ଆସୁଛେ, ସେଇଥିପାଇଁ ଦୂର ଜଣାଯାଉଛି । ସେ ପାଖରେ ସହର ଭିତରକୁ ସିଧା ବାଟ ଅଛି । ଯମୁନା ନିବାସ ପାଖରେ ଛିଡ଼ା ହେଲେ ରାଜାଙ୍କ ନଅର ଦିଶିବ । ବେଶି ବାଟ ନୁହେଁ । ଯମୁନା ଉପରେ । ଗୋପକୁ ସିଧାବାଟ । ଏହିସବୁ କାରଣ ଯୋଗୁଁ ଉଗ୍ରସେନ ସେ ଘର କରିଥିଲେ । କିଛିଦିନ ତଳେ, ମୋର ଯାହା ଖବର, ଘରଟାର ମରାମତି ହେଉଥିଲା । ମୋର ମନେ ହେଉଛି ସେ ଘର


Digitized by srujanika@gmail.com

ପାଇଁ କଂସର କ'ଣ ମତଲବ ଅଛି ।'

'ହୋଇପାରେ', ଭାନୁପ୍ରକାଶ କହିଲେ, 'ସହର ବାହାରେ । ଚୁପଚାପ ଜାଗା । ମନେ ହେଉଛି କିଛି ଗୋଟାଏ ବଦମାସିଆ ମତଲବ ଥିବ ।'

ସେତେବେଳକୁ ସେମାନେ ଚାଲି ଚାଲି ଯାଇ ଯମୁନାର ଘାଟ ପାଖରେ ପହଞ୍ଚି ଗଲେଣି । ଘାଟ ତଳକୁ ଡଙ୍ଗା, ନଈ ସେପାରି ଗୋପର ଆଲୁଅ ଦିଶୁଛି । ଅରିନ୍ଦମ ଚାହିଁ ଦେଖିଲା ଉଚ୍ଚା ପାଚିରି ଘେରା ଘରଟା ଘାଟ ପାଖରୁ କିଛି ବାଟ ଛାଡ଼ି ଡାହାଣ ପାଖକୁ ଖେଳେଇ ହୋଇ ରହିଛି । ହତା ଭିତରେ ବଡ଼ ବଡ଼ ଗଛ । ତା'ର ଡାଳ ସବୁ ଚାରିପାଖକୁ ମେଲେଇ ହୋଇ ରହିଛି । ତା' ମଝିରେ ଘରଟା ଗୋଟାଏ ଭୂତକୋଠି ପରି ଡେଙ୍ଗା ହୋଇ ଛିଡ଼ା ହୋଇଛି । ଅରିନ୍ଦମର ଅନେକ ଦିନ ତଳର ଗୋଟାଏ କଥା ମନେପଡ଼ିଲା । ଦିନେ ସେ ଓ ତା'ର କିଛି ସାଙ୍ଗ ବୁଲୁ ବୁଲୁ ଏଇ ଘରଟା ପାଖରେ ଆସି ପହଞ୍ଚି ଯାଇଥିଲେ । ଏବେ ଏ ପାଖକୁ କେତେବେଳେ କେମିତି ଲୋକମାନେ ଯିବା ଆସିବା କରୁଛନ୍ତି । ଯମୁନା ଦେବୀଙ୍କ ମନ୍ଦିରକୁ ଆସିବା ଲୋକମାନେ ମଝିରେ ମଝିରେ ଏ ପାଖକୁ ଆସନ୍ତି । କିନ୍ତୁ ସେତେବେଳେ କେହି ପ୍ରାୟ ଏ ପାଖକୁ ଆସୁ ନ ଥିଲେ । ଘରଟା ବିଷୟରେ ସତମିଛ କେତେ କଥା ଶୁଣା ଯାଉଥିଲା । ଲୋକେ କହୁଥିଲେ ଉଗ୍ରସେନଙ୍କ ସ୍ତ୍ରୀ ବହୁତ ସମୟରେ ଏଇ ଘରେ ଆସି ରହୁଥିଲେ । ତାଙ୍କୁ କିଏ କେତେ ଭେଟୁଥିଲେ କେଜାଣି । କଂସ ଏଇଠି ଜନ୍ମ ହେଇଥିଲା । ସେଇ ଯୋଗୁଁ ତା' ପ୍ରକୃତି ଏଇ ଘର ପ୍ରକୃତି ପରି, ଭୂତ-ପ୍ରକୃତି । ସେଦିନ ଅରିନ୍ଦମ ଓ ତା ସାଙ୍ଗମାନେ ଏଇ ଘର ପାଖରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହେଇ ନ ଥିଲା । ବେଶ୍ ଦିନ ଆଲୁଅ ଥିଲା । ଘରେ କେହି କୁଆଡ଼େ ନାହାନ୍ତି । ସେମାନେ ପାଚିରି ଫାଟକ ଡେଇଁ ଭିତରକୁ ପଶିଲେ । ବାହାରୁ ବୁଝି ହଉ ନ ଥିଲା । କିନ୍ତୁ ଭିତରେ ଖୁବ୍ ଖୋଲାଜାଗା । କେତେ ପ୍ରକାର ଗଛ । ଫୁଲଗଛ ବି । ତେବେ ହତା ବହୁତ ଦିନ ହେଲା ସଫା ହେଇ ନ ଥିଲା । ଅଧା ଜଙ୍ଗଲ, ସାପ ଫାପ ବି ବୁଲୁଥାଆନ୍ତି । ସେମାନେ ଏଆଡ଼େ ସେଆଡ଼େ ବୁଲାବୁଲି କଲେ, ଗଛ ଡାଳରେ ଡିଆଁଡ଼େଇଁ କଲେ । ଶେଷକୁ କିଛି ସାଙ୍ଗ କହିଲେ ଚାଲ, ଘର ଭିତରେ କ'ଣ ଅଛି ଦେଖିବା । ଘରର ସବୁ ଝରକା ବନ୍ଦ । କିନ୍ତୁ ଘର ଭିତରକୁ ପଶିବା ପାଇଁ ମୁଖ୍ୟ ଦରଜା, ବେଶ ବଡ଼ ଦରଜା ଓ ଦମ୍ଭ ଦରଜା, ବନ୍ଦ ନ ଥାଏ । ଆଉଜା ହୋଇଥାଏ । କିଛି ସାଙ୍ଗ ପଛେଇ ଗଲେ, କହିଲେ ହେ, ସବୁ ଝରକା କବାଟ ତ ବନ୍ଦ ଅଛି । ଏଇଟା କାଇଁ ଖୋଲା ଅଛି ? ନିଶ୍ଚୟ କେହି ଯିବା ଆସିବା କରୁଛି କି ଭିତରେ ଅଛି । ଗୋଳମାଳ ହେବ, ଯିବାନି । ଆଉ କେତେକ କହିଲେ ଯା, ଯା, ଗୋଳମାଳ


Digitized by srujanika@gmail.com

କ'ଣ ? ଆମେ ଏତେ ଅଛେ । ଯଦି ଆଉ କିଏ ଯାଇଛି ଆମେ କାହିଁ ଯିବାନି ? ଦି ଜଣ ସାଙ୍ଗ ଯାଇ କବାଟଟାକୁ ଅଧା ମେଲା କରିଦେଲେ, ଭିତରକୁ ଟିକେ ଅନେଇଲେ, ଆଉ ସାଙ୍ଗେ ସାଙ୍ଗେ ଦୌଡ଼ି ପଳେଇ ଆସିଲେ । କିରେ କଥା କ'ଣ ? ସେମାନେ କହିଲେ ଘର ଭିତରୁ କଅଣ ଗୋଟାଏ କେମିତିଆ ଶବ୍ଦ ହେଉଛି, ଡର ଲାଗିଲା । ସମସ୍ତେ ଗୋଡ଼ ଚିପି ଚିପି ସେ ଅଧା ମେଲା କବାଟ ପାଖରେ ପହଞ୍ଚିଲେ । ଭିତରଟା ଅନ୍ଧାରିଆ ଅନ୍ଧାରିଆ ଦିଶୁଥାଏ । କିଛି ବୁଝି ହେଉ ନ ଥାଏ । ତାପର ହଠାତ୍ କିଏ ଗୋଟାଏ ହୋ ହୋ ହୋଇ ହସି ଉଠିଲା, କିଏ ସବୁ ଦୌଡ଼ିକରି ପଳେଇଲେ, ସେଇ ଅନ୍ଧାର ଭିତରୁ ଗୋଟାଏ ଭୟଙ୍କରିଆ ରଡ଼ି ଉଠି ଆସିଲା, କିଏ ଯେମିତି କହୁଛି ଯା, ଯା । ଏକା ଡିଆଁକେ ସମସ୍ତେ ଫାଟକ ପାଖକୁ ପଳେଇ ଆସିଲେ । ତଥାପି ଜଣେ ଦି' ଜଣ କହୁଥାନ୍ତି ରହ, ରହ, କିଏ ଅଛି ଦେଖିବା । ଅନ୍ୟମାନେ ସେମାନଙ୍କ କଥା ନ ଶୁଣି ଫାଟକ ଡେଇଁ ବାହାରକୁ ପଳେଇ ଆସିଲେ । ସନ୍ଧ୍ୟା ହେଇଯାଇଥିଲା । ଅରିନ୍ଦମ ମନେ ପକେଇଲା ସେମାନେ ଆଉ ସେଠି ନ ରହି ଶୀଘ୍ର ଶୀଘ୍ର ମଥୁରାକୁ ଫେରିଗଲେ । ଏବେ ସେକଥା ମନେପକାଇ ଅରିନ୍ଦମକୁ ହସ ଲାଗିଲା । କିନ୍ତୁ ସେଦିନ ସେମାନେ ବାସ୍ତବିକ ଡରି ଯାଇଥିଲେ । ସେମାନେ ସେଠିକି ଆଉ କେବେ ଯାଇ ନାହାନ୍ତି । ଗୋଟାଏ ନିଛାଟିଆ ଘର । ସାଧାରଣ ଲୋକଙ୍କର ଧାରଣା ଘରଟା ଠିକଣା ନୁହେଁ, ଭୂତକୋଠି ପରି । ସେଇ ଯୋଗୁଁ ବିଶେଷ ଲୋକ ସେ ପାଖକୁ ଯାଆନ୍ତି ନାହିଁ । ଗୋକୁଳକୁ ଯିବାକୁ ନଈ ଘାଟଟା ବି, ମଥୁରାକୁ ପାଖ ହେଲେ ବି, ଯିବା ଆସିବା କମିଗଲା । ଲୋକେ ଉପର ଘାଟଟାକୁ ବେଶି ବ୍ୟବହାର କଲେ ।

ତୁଠ ତଳେ ବନ୍ଧା ହୋଇଥିବା ଡଙ୍ଗା ପାଖୁ ଯାଉ ଯାଉ, ଭାନୁପ୍ରକାଶ ହଠାତ୍ ଛିଡ଼ା ହୋଇ ପଛକୁ ଚାହିଁଲେ । ଗଛ ଉହାଡ଼ରେ ଉଗ୍ରସେନଙ୍କର ସେଇ ପୁରୁଣା ଘରଟା ଅନ୍ଧାର ନେସି ହେଲା ପରି ଦିଶୁଛି । ସେ ସୌରଦେବଙ୍କ ଆଡ଼କୁ ବୁଲି ପଡ଼ିଲେ, କହିଲେ – 'ସୌରଦେବ, ମୁଁ ଏଇ ବାଟେ ଯିବା ଆସିବା କରିବା ସମୟରେ ଏ ଘରଟାକୁ ବାରମ୍ବାର ଦେଖିଛି । ଘରଟା ପ୍ରାୟ ବନ୍ଦ ଥାଏ । କିନ୍ତୁ ଏ ଘରଟା କଥା ମୁଁ କେବେ ଭାବିନି । ଆପଣଙ୍କ କଥା ଶୁଣିଲା ପରେ ଭାବୁଛି । ରାଜା ଉଗ୍ରସେନ ତା' ହେଲେ ଏ ଘରଟା ତିଆରି କରିଥିଲେ ?'

'ହଁ, କିନ୍ତୁ ସେ ନିଜେ ତ ରହିଲେ ନି, ବିଶେଷ ବ୍ୟବହାର ବି ହୋଇନାହିଁ । ଘରଟା ସେମିତି ସେମିତି ପଡ଼ିଛି । ମଥୁରାରେ ରାଜାଙ୍କର ଅନେକ ଘର ଅଛି । ଏ ତା ଭିତରୁ ଗୋଟାଏ ।'

'କିନ୍ତୁ ବେଶ ଭଲ ଅଛି ତ', ଭାନୁପ୍ରକାଶ କହିଲେ ।

'ହଁ, ପ୍ରାୟ ଭଲ ଅବସ୍ଥାରେ ଅଛି । ମଝିରେ ମଝିରେ ମରାମତି ହୁଏ, ଏବେ ତ, ମୋର ଖବର, କିଛି ଲୋକ ଆସି ଘରଟା ମରାମତି ଫରାମତି କରୁଛନ୍ତି । କାହିଁକି କେଜାଣି ? କିଏ ରହିପାରେ ।' କହିଲେ ସୌରଦେବ ।

ଭାନୁପ୍ରକାଶ କିଛି ସମୟ ସେ ଘରଟାକୁ ଅନ୍ଧାରରେ ଚାହିଁ ଛିଡ଼ା ହୋଇ ରହିଲେ । ତା'ପରେ କହିଲେ, 'ସୌରଦେବ, ଏ ଘରଟା ମୋତେ କେମିତି କେମିତି ଲାଗୁଛି । ନିଛାଟିଆ ଜାଗାରେ ଗୋଟିକିଆ ଘର, ଉଚ୍ଚା ଉଚ୍ଚା ପାଚିରି, କବାଟ ଝରକା ସବୁ ନିବୁଜ ହୋଇ ରହିଛି । କାହାକୁ ବନ୍ଦକରି ରଖିବାକୁ ଚାହିଁଲେ ବେଶ୍ ପ୍ରଶସ୍ତ ଜାଗା । ଲୋକ ସହଜେ ଖସି ପାରିବ ନାହିଁ କି ବାହାର ଲୋକ ଟେର ପାଇବେ ନାହିଁ ।'

ଗୋପା ଏ ପର୍ଯ୍ୟନ୍ତ ଚୁପ ଥିଲେ । ସେ କହିଲେ, 'ଜରାସନ୍ଧଙ୍କର ଏମିତି ଦି' ତିନିଟା ଘର ଗିରିବ୍ରଜ ସହର ବାହାରେ ଅଛି । ଏମିତି ଲୋକବାକ ନ ଥିବା ଜାଗା, ଏମିତି ଉଚ୍ଚା ଉଚ୍ଚା ପାଚିରି । ବଡ଼ ବଡ଼ ବଖରା । ତା' ଭିତରେ କିଏ ଅଛି ବା କ'ଣ ହେଉଛି ବାହାରୁ ଜାଣିବାର ଉପାୟ ନାହିଁ । ସବୁବେଳେ ସୈନ୍ୟମାନେ ଜଗିକରି ରହିଛନ୍ତି, ଠିକ୍ ବନ୍ଦୀଘର ପରି । ଜରାସନ୍ଧଙ୍କ ନଅରରେ ଲୋକମାନେ ଫୁସ୍‌ଫାସ୍ ହୁଅନ୍ତି ସେଠି କୁଆଡ଼େ ରଜା ଓ ରଜାପୁଅମାନେ ଅଛନ୍ତି । ସତ କି ମିଛ ମୁଁ ଜାଣେନା । କିନ୍ତୁ ଦେଖିଛି ରାଣୀମାନେ କେତେବେଳେ କେମିତି ଯଦି କହି ପକାନ୍ତି, ଜରାସନ୍ଧ ବଡ଼ ବିରକ୍ତ ହୁଅନ୍ତି ।'

'ଆଚ୍ଛା, ଜରାସନ୍ଧ ଢଙ୍ଗରେ ଏଠି ବି ଗୋଟାଏ କିଛି ହବ ମନେ ହେଉଛି ।' କହିଲେ ଭାନୁପ୍ରକାଶ । ତା'ପରେ ସେ ବୁଲିପଡ଼ି ଘାଟ ତଳକୁ ଓହ୍ଲେଇଲେ । ତାଙ୍କ ପଛେ ପଛେ ସୌରଦେବ, ଗୋପା ଓ ଅରିନ୍ଦମ । ଗୋକୁଳରେ ନନ୍ଦଙ୍କ ଘରେ ଭାନୁପ୍ରକାଶ ପ୍ରଭୃତିଙ୍କ ସାଙ୍ଗରେ ସେ ଗୋଟାଏ ରାତି ଅରିନ୍ଦମର ସବୁଦିନେ ମନେରହିବ । ସେମାନେ ସମସ୍ତେ ଅରିନ୍ଦମଠାରୁ ବୟସରେ ବଡ଼ । କିନ୍ତୁ ସେମାନେ ସମସ୍ତେ ଅରିନ୍ଦମକୁ ତାଙ୍କ ଭିତରୁ ଜଣେ କରି ମିଶେଇ ନେଲେ । ବୟସର ପ୍ରଭେଦ କିଛି ରହିଲା ନାହିଁ । ସେମାନେ ଗଲାରୁ ନନ୍ଦଙ୍କର ପଡ଼ୋଶୀ ଅନ୍ୟ ଗୋପାଳମାନେ, ଯେପରି ଉପାନନ୍ଦ, ସୁନନ୍ଦ, ଆୟାନ ପ୍ରଭୃତି, ଓ ତାଙ୍କର ପରିବାରମାନେ ସମସ୍ତେ ଆସି ପହଞ୍ଚିଲେ । ଘରୁ ରନ୍ଧାରନ୍ଧି ହୋଇଥିବା ଜିନିଷ ସବୁ ନେଇ ଆସିଲେ । କଥାବାର୍ତ୍ତା, ଗୀତ ବୋଲାବୋଲି, ପିଲାମାନଙ୍କର ନଚାନଚି, ହସ ଖୁସିରେ ସାରା ରାତି କଟିଗଲା । ତଥାପି ଏସବୁ ନଚାନଚି, ହସଖୁସି ଭିତରେ ଅରିନ୍ଦମ ଲକ୍ଷ୍ୟ କଲା କିଛି ଲୋକ, ଯେପରି ଭାନୁପ୍ରକାଶ, ସୌରଦେବ ଓ ନନ୍ଦ ପ୍ରଭୃତି ବେଶ ଚିନ୍ତିତ । ମଥୁରାରେ ବିଭିନ୍ନ

ଗୋଷ୍ଠୀର ଲୋକ ଅଛନ୍ତି, ଯେପରି ଭୋଜ, ଯଦୁ, ଅନ୍ଧକ, ଓ ମଥୁରା କେବଳ ମଥୁରା ସହର ନୁହେଁ, ସହରକୁ ଲାଗି ଯମୁନାର ଦୁଇ ପାଖରେ ବହୁ ଲୋକାଳୟ ଓ ବନାଞ୍ଚଳ । ତେବେ ଭାନୁପ୍ରକାଶ ପ୍ରଭୃତିଙ୍କର ଚିନ୍ତା ସେଥିପାଇଁ ନୁହେଁ । ତା'ର ମନେହେଲା ମଥୁରାରେ ଯାହାସବୁ ଘଟିବାକୁ ଯାଉଛି ସେହି ଚିନ୍ତା ହିଁ ସେମାନଙ୍କୁ ବେଶି ବିବ୍ରତ କରୁଛି । ଗୋଟାଏ ସମୟରେ ଭାନୁପ୍ରକାଶ ନନ୍ଦଙ୍କୁ ପଚାରିଲେ, 'ନନ୍ଦ, ମଥୁରା ବିଷୟରେ ଆଉ କିଛି ଖବର ପାଇଛ କି ?'

'ନାଁ', ନନ୍ଦ କହିଲେ, 'ଆଜି ସନ୍ଧ୍ୟାରୁ କଂସର ସୈନ୍ୟମାନେ ରାସ୍ତାରେ ରାସ୍ତାରେ ବୁଲିବାକୁ ଆରମ୍ଭ କଲେଣି, ଏଇ ଖବର । ଏ ଖବର ଆପଣ ବି ଜାଣନ୍ତି ।'

'ହଁ', ଜାଣେ', କହିଲେ ଭାନୁପ୍ରକାଶ, 'କଂସର ଆଉ ଅପେକ୍ଷା କରିବାକୁ ଧୈର୍ଯ୍ୟ ନାହିଁ । ସେ ଶୀଘ୍ର ରାଜା ହେବ । ସେହିଯୋଗୁ ଏ ସୈନ୍ୟସାମନ୍ତ, ଏ ଆୟୋଜନ, ଉଦ୍ଦେଶ୍ୟ ଲୋକମାନେ ଭୟଭୀତ ହୋଇ ରହନ୍ତୁ । ଏକଥା ବୁଝି ହେଉଛି । କିନ୍ତୁ ତା ପରେ ଦେବକୀର ବିଭାଘର ପାଇଁ ଏତେ ଆଗ୍ରହ କାହିଁକି ? ବିଭାଘର ତ ପରେ ଧୀରେ ସୁସ୍ଥେ ହେଇପାରନ୍ତା । ମଥୁରାର ରାଜା ହେବା ଓ ଦେବକୀର ବିଭାଘର, ଏ ତ ଦିଇଟା ଅଲଗା ଅଲଗା କଥା । ଏ ଉଭୟର ସମ୍ପର୍କ କଅଣ ? ପୁଣି, ଯାହା ଆମେ ଶୁଣୁଛୁ, ବସୁଦେବଙ୍କ ସାଙ୍ଗରେ ବିଭାଘର । ବସୁଦେବ କାହିଁକି ? ବସୁଦେବ ତ ବିବାହିତ ଲୋକ ।'

'ରୋହିଣୀଙ୍କୁ ମୁଁ ପଚାରିଥିଲି ।' ନନ୍ଦ କହିଲେ, 'ତୁମପରି ମୋର ବି ସନ୍ଦେହ ହୋଇଥିଲା । ବସୁଦେବ କାହିଁକି ? ରୋହିଣୀ କହିଥିଲେ - ହଁ ଖୁବ୍ ସମ୍ଭବ ବସୁଦେବଙ୍କ ସାଙ୍ଗରେ ବିଭାଘର । କିନ୍ତୁ ଯେ ବସୁଦେବଙ୍କ ସାଙ୍ଗରେ କାହିଁକି ହେବ ତା'ର ଉତ୍ତର ସେ ଦେଇପାରିଲେ ନାହିଁ ।'

'ବସୁଦେବ ଜାଣନ୍ତି କି ? ସେ ରାଜି କି ?' ଭାନୁପ୍ରକାଶ ପୁଣି ପଚାରିଲେ । 'ନାଁ', ନନ୍ଦ କହିଲେ, 'ସେ ବିଷୟରେ ରୋହିଣୀ କିଛି କହିପାରିଲେନି ।' ସୌରଦେବ କହିଲେ, 'ଜିନିଷଟା ଗୋଳମାଳିଆ ନିଶ୍ଚୟ । ଖଣ୍ଡ ଖଣ୍ଡ ଖବର ଆସୁଛି । କିନ୍ତୁ ଏସବୁ ମିଶେଇ ଗୋଟାଏ ନିର୍ଦ୍ଦିଷ୍ଟ ଗଢ଼ଣ ଏ ପର୍ଯ୍ୟନ୍ତ ତିଆରି ହୋଇନାହିଁ । ମୋର ବିଶ୍ୱାସ ଶୀଘ୍ର ହେବ ।'

'ଆଚ୍ଛା, ନନ୍ଦ, ଗୋପାଳୁଣୀମାନେ ତ ସବୁଦିନେ ଦହି, ଦୁଧ ବିକିବା ପାଇଁ ମଥୁରା ଯାଉଛନ୍ତି । ସେମାନଙ୍କର ପାଖରୁ କିଛି ଖବର... ?' ସୌରଦେବ ପୁଣି କହିଲେ ।

'ରୁହ, ରୁହ, ମୁଁ ଯଶୋଦାଙ୍କୁ ଡାକେ ସେ କହିବେ', ନନ୍ଦ କହିଲେ ।


Digitized by srujanika@gmail.com

ଯଶୋଦା ଯାହା କହିଲେ ଗୋଳମାଳ ଆହୁରି ବଢ଼ିଗଲା ।

ସେ କହିଲେ, 'ହଁ, ଗୋପାଳୁଣୀମାନେ ସବୁଦିନେ ଯାଆନ୍ତି । ଦୁଧ, ଦହି, ଲବଣୀ ତ ବିକିବାକୁ ହେବ । କିନ୍ତୁ ସେମାନେ ଆଉ ଯିବାକୁ ରାଜି ନୁହନ୍ତି । ନ ଗଲେ ଏତେ ଦୁଧ, ଦହି, ସର କ'ଣ ହେବ ? ଖର୍ଚ୍ଚ କୋଉଠୁ ଆସିବ ?'

ଭାନୁପ୍ରକାଶ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ । କହିଲେ, 'ଯିବେ ନାହିଁ କାହିଁକି ? କଂସର ସୈନ୍ୟମାନଙ୍କ ପାଇଁ ?'

'ହଁ, ସେ ଗୋଟାଏ ବଡ଼ କାରଣ', ଯଶୋଦା କହିଲେ - 'ମଥୁରାର ସୈନ୍ୟମାନଙ୍କର ଟିକିଏ ବାଗସାଗ ଅଛି । ସେମାନେ ଆମକୁ ସବୁ ଜାଣନ୍ତି, ସବୁଦିନେ ଦେଖୁଛନ୍ତି । ଗୋଳମାଳ କଲେ ବି ସେ ପ୍ରାୟ ଚଳିଯିବ । କିନ୍ତୁ କଂସର ଶଶୁର ଘର ସୈନ୍ୟମାନଙ୍କର ବ୍ୟବହାର ବଡ଼ ଖରାପ । ସେମାନେ ସର, ଲବଣୀ ଖାଇ ଯାଆନ୍ତି, କଉଡି ଦିଅନ୍ତି ନାହିଁ । ତା' ଛଡ଼ା ସେମାନଙ୍କର ନଜର ବି ଭଲ ନୁହେଁ । ବଡ଼ ବେଢ଼ଙ୍ଗ । ଖାଲି ଗୋପାଳୁଣୀ ନୁହନ୍ତି, ମଥୁରାର ଘରୋଇ ଲୋକମାନଙ୍କ ସହିତ ବି ସେମାନଙ୍କର କଥାବାର୍ତ୍ତା ବ୍ୟବହାର ବଡ଼ ଖରାପ । କେହି ଡରି କିଛି କହନ୍ତି ନାହିଁ । ଚୁପ ରହନ୍ତି । ଗୋପାଳୁଣୀମାନେ ଯାଇ ଉଗ୍ରସେନଙ୍କ ଦରବାରରେ କେତେଥର ଗୁହାରି କଲେଣି । କିଛି ନାହିଁ । ଉଗ୍ରସେନ କହନ୍ତି କଂସକୁ କୁହ । କଂସର ବ୍ୟବହାର ଆହୁରି ଖରାପ । ସେ ସବୁବେଳେ ତା ଶଶୁର ଘର ସୈନ୍ୟଙ୍କ ଆଡ଼େ । ଏଥିରେ ଗୋପାଳୁଣୀମାନେ କ'ଣ ଦୁଧ ଦହି ବିକିବାକୁ ଯିବେ ? ସେମାନେ ଆଉ ଯିବାକୁ ରାଜି ନୁହନ୍ତି । ସେଦିନ ସେ ଝିଅଟାକୁ ଯେ ନେଇଗଲେ ତାପରେ ଆଉ କେହି ରାଜି ହଉ ନାହାନ୍ତି ।'

'ନେଇଗଲେ ? ଝିଅଟାକୁ ?' ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହେଲେ ।

'ହଁ, ସେ ପାଖ ସାହିର ଅଳ୍ପ ବୟସର ଝିଅଟା । ଟେକି ନେଇଗଲେ, ସେ ଆଉ ଫେରିଲାନି । କହୁଛନ୍ତି ତାକୁ ମାରିଦେଲେ ।' ଯଶୋଦା କହିଲେ ।

ସମସ୍ତେ ଚୁପ କରିଗଲେ । ନନ୍ଦ କହିଲେ, 'ଆମେ ତ ଭୟ କରୁଛୁ ମଗଧର ସେ ସୈନ୍ୟଗୁଡ଼ା ଯମୁନା ଟପି ହୁଏତ ଏଠିକି ଚାଲିଆସି ପାରନ୍ତି । ଆମେ ତ ଡରି ଡରି ଅଛୁ । କିଛି ଠିକଣା ନାହିଁ । ମଝିରେ ମଝିରେ କଂସର ଲୋକମାନେ ଆସି ପହଞ୍ଚୁଛନ୍ତି । ଆ ଦିଅ, ତା ଦିଅ । ଆମେ ଦେଇ ଦଉ । ଆମ ଗୋପାଳମାନେ ତ ପ୍ରତିଦିନ ଯାଇ କଂସ ନଅରରେ ମାଗଣା ଦୁଧ ଦହି ଦେଇ ଆସନ୍ତି ।'

'ମଥୁରାର ସବୁ ଘରେ ସମସ୍ତେ ଡରରେ ଅଛନ୍ତି । ସମସ୍ତେ କହୁଛନ୍ତି କଂସ ଶୀଘ୍ର ରାଜା ହବ । କେହି ଡରରେ ମୁହଁ ଖୋଲୁ ନାହାନ୍ତି । ସବୁବେଳେ କବାଟ


Digitized by srujanika@gmail.com

ଝରକା ବନ୍ଦ କରି ରହୁଛନ୍ତି । ସେ ଆଗ ମଥୁରା ଆଉ ନାହିଁ ।' କହିଲେ ଯଶୋଦା ।

'ଏ ଠିକ୍ କଥା ।' ସୌରଦେବ କହିଲେ, 'ମୁଁ ତ ମଥୁରା ଭିତରେ ଅଛି । ମୁଁ ଦେଖୁଛି । ଉଗ୍ରସେନଙ୍କର କିଛି କ୍ଷମତା ନାହିଁ । ଯାହା କରିବା କଥା କଂସହିଁ କରୁଛି । ସେ ରାଜା ହେବାଟା କେବଳ ବାହାରକୁ ଘୋଷଣା କରିବା କଥା । ମୋର ମନେ ହେଉଛି କଂସ ଦି' ତିନିଟା କଥା ଏକା ସାଙ୍ଗରେ କରିବାକୁ ଚାହୁଁଛି । ସେ ରାଜା ହେବ ଏ ପ୍ରଥମ କଥା । ସେଥିପାଇଁ ସେ ଲୋକଙ୍କୁ ଭୟଭୀତ କରି ରଖିବାକୁ ଚାହୁଁଛି । ଯେପରି କିଛି ପ୍ରତିବାଦ ନ ହୁଏ । ସାଧାରଣ ଲୋକେ ଡରି ଯେପରି କଥାଟାକୁ ମାନି ନିଅନ୍ତି । କିନ୍ତୁ ମୁଖିଆମାନଙ୍କୁ ସେ ଡରେଇବାକୁ ଚାହେଁ ନା । ସେମାନଙ୍କ ସାଙ୍ଗରେ ସେ ନିଉନ ହୋଇ କଥାବାର୍ତ୍ତା କରୁଛି । ସତ ମିଛ ତ ନିଶ୍ଚୟ କହୁଛି । କିନ୍ତୁ ଦେଖେଇବାକୁ ଚାହେଁ ତା'ର ଯେପରି କୌଣସି ଖରାପ ଉଦ୍ଦେଶ୍ୟ ନାହିଁ । ସେ ସମସ୍ତଙ୍କ ସାଙ୍ଗରେ ମିଳିମିଶି ଚଳିବାକୁ ଚାହେଁ । ମଥୁରାକୁ ସେ ଉଠେଇବ । ସେ ରାଜ୍ୟ ଜୟ କରିବ । ସମସ୍ତେ ତା' ସାଙ୍ଗରେ ମିଶନ୍ତୁ । ମଥୁରାକୁ ସମସ୍ତେ ମାନନ୍ତୁ, ଭୟ କରନ୍ତୁ, ଏଇ ତା'ର ଇଚ୍ଛା । ତରୁଣ ମୁଖିଆମାନେ ଭାବୁଛନ୍ତି କ'ଣ ନା କ'ଣ ଗୋଟାଏ ହୋଇଯିବ । ସମସ୍ତେ ତା ଆଡ଼େ । ବୟସ୍କମାନେ ଏପାଖ ସେପାଖ ହେଉଛନ୍ତି । କିନ୍ତୁ ସେ ବି ମାନିବେ । ସେ ବି ଭୟ ।' ସୌରଦେବ ଟିକିଏ ରହିଗଲେ । ତା'ପରେ କହିଲେ, 'ଚାରିଦିନ ତଳେ ଏହିପରି ଗୋଟାଏ ଘଟଣା ଘଟିଛି । ଅନ୍ଧକ ଗୋଷ୍ଠୀର ରାଜଦେବଙ୍କୁ ପ୍ରାୟ ନବେ ବର୍ଷ ଉପରେ । କିନ୍ତୁ ସେ ଦମ୍ଭ ଅଛନ୍ତି, ସିଧା ସିଧା ଚାଲୁଛନ୍ତି, ସମସ୍ତେ ତାଙ୍କୁ ମାନନ୍ତି । ସେ କଂସର ଢଙ୍ଗଢ଼ାଙ୍ଗକୁ ପ୍ରତିବାଦ କରିଥିଲେ । ସେ ନଅରକୁ ଯାଇ କଂସର ମୁହଁ ଉପରେ କହି ଆସିଥିଲେ । ବାସ୍ ସେତିକି । ରାଜଦେବ ନଅରକୁ ଯାଇଥିଲେ, ଆଉ ଫେରି ନାହାନ୍ତି । ଚାରିଦିନ ହୋଇଗଲା, ତାଙ୍କର ଚିହ୍ନବର୍ଣ୍ଣ କୋଉଠି ନାହିଁ । ତାଙ୍କର ପୁଅ ନାତି ମାନଙ୍କୁ ପଚାରିଲେ ସେ ବି ଚୁପ, କିଛି କହୁ ନାହାନ୍ତି । ଦେବକୀ ବସୁଦେବ ବିଭାଘର ସେମିତି ଗୋଟାଏ କାରବାର । ମତଲବ ମୁଖିଆମାନଙ୍କୁ ଖୁସି କରେଇବା ।'

'ଦେବକୀ ବସୁଦେବ ବାହାଘର ତ ମଥୁରା ଯାକ ସମସ୍ତେ ସବୁଆଡ଼େ କହୁଛନ୍ତି', କହିଲେ ଯଶୋଦା, 'କହୁଛନ୍ତି ବାହାଘର ଶୀଘ୍ର ହବ ଓ ଖୁବ୍ ଜାକଜମକରେ ହବ । ସେଥିପାଇଁ ବନ୍ଦୋବସ୍ତ ଚାଲିଛି । କୁଆଡ଼େ ମଗଧରୁ ସେଥିପାଇଁ ବ୍ରାହ୍ମଣ ଓ ପୁରୋହିତମାନେ ଆସିଛନ୍ତି । ବହୁତ ଲୋକ ବି ଆସିଛନ୍ତି, ଟଙ୍କା ପଇସା ଓ ଜିନିଷପତ୍ର ବି ଆସିଛି । ରାଜା ଜରାସନ୍ଧ ବି କୁଆଡ଼େ ନିଜେ ଆସିବେ । କଂସ ତାଙ୍କର ଜୋଇଁ ନା ।'

ନନ୍ଦ ଉଠି ଛିଡ଼ା ହେଲେ । କହିଲେ, 'ଛାଡ଼ ଛାଡ଼ । ଆଜି ରାତିଯାକ କ'ଣ ଖାଲି କଂସ କଥା ଗପିବ ? ସେ ତ ସମସ୍ତଙ୍କୁ ଖାଇବାକୁ ବସିଲାଣି । ଦେବକୀ ବସୁଦେବ ବିଭାଘର ବିଭାଘର ନା ଆଉ କିଛି ? ଦିହେଁ, ବସୁଦେବ ଓ ଦେବକୀ ଖୁବ୍ ଭଲ ଲୋକ । କ'ଣ ହେଉଛି ଶେଷ ପର୍ଯ୍ୟନ୍ତ ଦେଖ । ମତେ ତ ବହୁତ ଭୟ ଲାଗୁଛି । ଆସ, ଆସ, ବାହାରକୁ ଯିବା, ଗୋପାଳମାନେ ସବୁ ଆସିଗଲେଣି ।'

ନନ୍ଦଙ୍କ ଘର ସାମ୍ନାରେ ପ୍ରଶସ୍ତ ଖୋଲା ପଡ଼ିଆ । ସମସ୍ତେ ଉଠି ବାହାରକୁ ଗଲେ । ବାହାରେ ପରିପୂର୍ଣ୍ଣ ଜ୍ୟୋତ୍ସ୍ନା ତଳେ ପଡ଼ିଆର ବିଭିନ୍ନ ଜାଗାରେ ଦଶ ବାରଟା ଉଜ୍ଜ୍ୱଳ ମଶାଲ । ବାଜା ବଜେଇବା ଓ ଗୀତ ଗାଇବାର ସମସ୍ତ ଉପକରଣ ଗଲାଣି । ଗୋପାଳମାନେ ଖେଳେଇ ହୋଇ ବସିଛନ୍ତି । ଗୋପାଳୁଣୀମାନେ ବି । ସମସ୍ତେ ବସିଲେ । ଅରିନ୍ଦମ ଗୋପାଳମାନଙ୍କ ଗୀତ ଆଗରୁ ଶୁଣିଛି । କିନ୍ତୁ ସେଦିନ ରାତିର ଚେହେରା ଅଲଗା । ଗୀତ ପରେ ସମସ୍ତେ ଉଠି ନଚାନଚି କଲେ । ଗୋପାଳୁଣୀମାନେ ବେଶି, ସେ ବି । ଗୋଟାଏ ରାତି ପାଇଁ କଂସର ଭୂତ ସେମାନଙ୍କ ମୁଣ୍ଡରୁ ଚାଲିଗଲା । ସକାଳୁ ସକାଳୁ ସୌରଦେବ, ଗୋପା ଓ ଅରିନ୍ଦମ ମଥୁରା ଫେରିଗଲେ । ଭାନୁପ୍ରକାଶ କହିଲେ, 'ଆଜି କୁରୁକ୍ଷେତ୍ରରୁ ଗୁରୁଦେବଙ୍କ ଲୋକ ଆସିବାକୁ ଅଛି । ସେମାନଙ୍କ ସହିତ ଜରୁରୀ କଥା ଅଛି । ମୁଁ ପରେ ଖବର ଦେବି ।'

ଅରିନ୍ଦମ ଭାବୁଥିଲା । ଗୋକୁଳରେ ନନ୍ଦଙ୍କ ଘରେ ସେ ରାତି ପରେ ଘଟଣାସବୁ ଶୀଘ୍ର ଶୀଘ୍ର ଘଟିଗଲା । କଂସ ଉଗ୍ରସେନଙ୍କୁ ସିଂହାସନରୁ ବାହାର କରି ନିଜେ ରାଜା ହେଲା ଓ ମୁଖିଆମାନଙ୍କୁ ଦରବାରକୁ ଡାକି ସେକଥା ଘୋଷଣା କରିଦେଲା । ଅରିନ୍ଦମର ମନେ ଅଛି ସେଦିନ ମଥୁରାର କେହି ସୈନ୍ୟ ନୁହନ୍ତି, ମଗଧର ସୈନ୍ୟମାନେ, ବିଶେଷ କରି ଜରାସନ୍ଧଙ୍କର ରାକ୍ଷସ ସୈନ୍ୟମାନେ ଦରବାର ଘରର ଚାରିପାଖ ଜଗି ନେଇଥିଲେ । ଆଉ ମଥୁରାର ରାସ୍ତାରେ ରାସ୍ତାରେ ସୈନ୍ୟମାନଙ୍କର ପଲଟଣ । ମୁଖିଆମାନେ ଚୁପଚୁପ ଆସିଲେ, କଂସର ଘୋଷଣା ଶୁଣିଲେ, ଆଉ ଚୁପଚୁପ ଘରକୁ ଫେରିଗଲେ । କାହାରି ହୁଁ ଚୁଁ ନାହିଁ, ପ୍ରତିବାଦ ନାହିଁ, ସମସ୍ତେ ମାନିନେଲେ । ପାଣିରେ ମାଛ ପହଁରିଲା ପରି କଂସ ଆରାମରେ ଉଗ୍ରସେନଙ୍କୁ ରାଜଗାଦିରୁ ବାହାର କରିଦେଲା । ଅରିନ୍ଦମର ମନେ ଅଛି ଜଣେ କିଏ ବୟସ୍କ ମୁଖିଆ ବୋଧେ କହି ଆସିଥିଲେ – ଏ କ'ଣ ଠିକ୍ ହେଲା ? କଂସ ହୋ ହୋ ହୋଇ ହସି ଉଠିଥିଲା । ବୋଧହୁଏ କହିଥିଲା – ନାଁ, ଠିକ୍ ହେଲାନି । ତା'ପରେ ତା' ଦୁଇଜଣ ରାକ୍ଷସ ସୈନ୍ୟଙ୍କୁ ଇଙ୍ଗିତ କରି ଡାକିଥିଲା ଓ କହିଥିଲା – ଆଙ୍କର ଏକା ଏକା ଯିବାକୁ ଅସୁବିଧା ହେଉଛି । ସାଙ୍ଗରେ ଯାଅ, ଘରେ ଛାଡ଼ିଦେଇ ଆସ । ମୁଖିଆ ଆଉ ଘରକୁ

ଫେରି ନ ଥିଲେ । ଖାଲି ଜଣେ ମୁଖିଆ ନୁହନ୍ତି । ମଥୁରାର ଆଉ କିଛି ଲୋକେ ବି ହଠାତ୍ ନିଖୋଜ ହୋଇଗଲେ । କିଛି ସ୍ତ୍ରୀଲୋକ ବି, ବାସ୍ । ସାରା ମଥୁରା ଚୁପ ହୋଇଗଲା । ଦି ଦିନ ପରେ କଂସ ଯେତେବେଳେ ଘୋଡ଼ା ଝପଟେଇ ମଥୁରାର ରାସ୍ତା, ଗଳି କନ୍ଦିରେ ବୁଲି ଆସିଲା, ସବୁଆଡ଼େ ତା'ର ଜୟଜୟକାର । ମଥୁରାର ରାଜା କଂସ, ଯାଦବଙ୍କର ରାଜା କଂସ, ଉଗ୍ରସେନ ନୁହନ୍ତି ।

ଅରିନ୍ଦମ ଭାବୁଥିଲା ମଥୁରା ଲୋକେ ଯେ ସହଜରେ ଏକଥା ଗ୍ରହଣ କରି ନେଇଥିଲେ ତା ନୁହେଁ । ସେମାନେ ଆଜି ପର୍ଯ୍ୟନ୍ତ ଯେମିତି ଚଳି ଆସିଥିଲେ, ମିଶିମାଶି, କୌଣସି ଘଟଣା ଘଟିଲେ, କିଛି ନିଷ୍ପତ୍ତି ନେବା ଦରକାର ହେଲେ, ସମସ୍ତେ ମତାମତ ଦେଉଥିଲେ, ସେ ଢଙ୍ଗ ଭାଙ୍ଗିଗଲା । ରାଜା ରାଜା, ବାକି ସମସ୍ତେ ପ୍ରଜା, ରାଜାଙ୍କର ଆଦେଶ ମାନିବେ । କଂସ ରାଜା, ଏକମାତ୍ର ରାଜା । ସମସ୍ତେ ବୁଝିଲେ, ବାହାରକୁ ଜଣାଯାଉ ନ ଥିଲେ ବି, କଂସର ଆଦେଶ ଅମାନ୍ୟ କଲେ ବିପଦ । କଂସର ସୈନ୍ୟମାନେ ସ୍ପଷ୍ଟ ଭାବରେ ତା ବୁଝେଇଦେଲେ । ମଥୁରା ଲୋକେ ଯେ ଆଲୋଚନା ନ କରୁଥିଲେ ତା ନୁହେଁ । କିନ୍ତୁ ଚୁପଚୁପ, ନିଜ ନିଜ ଭିତରେ, କବାଟ ବନ୍ଦକରି ଘର ଭିତରେ, ବାହାରକୁ ଶାନ୍ତଶିଷ୍ଟ, ଅତ୍ୟନ୍ତ ବାଧ୍ୟ ପ୍ରଜା, ଏହି ମନୋଭାବ । ଡର, ଭୟଙ୍କର ଡର, ନିଛିଦ୍ର ଧୂଳି ପଟଳ ପରି ଡରର ନୀରନ୍ଧ୍ର ପଟଳ ମଥୁରା ଆକାଶକୁ ଆଚ୍ଛାଦିତ କରିଦେଲା । ଏ ଯେପରି ଗୋଟାଏ ଅତିକାୟ ବ୍ରହ୍ମରାକ୍ଷସ, କାହାରି ଉଦ୍ଧାର ନାହିଁ । ବାପା ଅରିନ୍ଦମକୁ ସାବଧାନ କରି ଦେଇଥିଲେ । ସେ ନିଜେ ବି ସାବଧାନ ଥିଲା । ଏହି ସମୟରେ ଦ୍ୱିତୀୟ ଘଟଣା ଘଟିଲା ।

ଠିକ୍ ଘଟଣା ନୁହେଁ, ଗୋଟାଏ ନିଷ୍ପତ୍ତି, ଗୋଟାଏ ଘୋଷଣା । କଂସ ଦେବକୀ ଓ ବସୁଦେବଙ୍କର ବିଭାଘର ମଥୁରାରେ ଘୋଷଣା କରିଦେଲା । ଏ କଂସ ଚରିତ୍ରର ଆଉ ଗୋଟାଏ ଦିଗ । ଭାନୁପ୍ରକାଶ କହନ୍ତି ଏ ଆଉ ଗୋଟାଏ ଦିଗ ନୁହେଁ, ଗୋଟାଏ ଦିଗ, କେବଳ ଭିନ୍ନ ଭିନ୍ନ କୌଶଳ । ସେ ମୁଖିଆମାନଙ୍କୁ ଦରବାର ଘରକୁ ଡାକି ଅତି ବିନୀତ ଭାବରେ ଏ ବିଭାଘରର ପ୍ରସ୍ତାବ ଦେଇଥିଲା । କିନ୍ତୁ ଅରିନ୍ଦମ ଜାଣେ ଏ ପ୍ରସ୍ତାବ ନୁହେଁ, ନିଷ୍ପତ୍ତି । ଆଗ ପରି ସୈନ୍ୟସାମନ୍ତ ସବୁଆଡ଼େ ଜଗି ରହିଥିଲେ । ଆଗ ପରି ମଥୁରାର ଗଳି କନ୍ଦିରେ ସୈନ୍ୟମାନଙ୍କର ଦର୍ପିତ ଯାତ୍ରା । ମୋର ନିଷ୍ପତ୍ତି, ମଥୁରାକୁ ମାନି ନବାକୁ ହବ । ହେଲା ବି, ବିଭାଘର କଥା ସମସ୍ତେ ମାନିନେଲେ । କିନ୍ତୁ ଯେଉଁକଥା ସମସ୍ତଙ୍କୁ ତଟସ୍ଥ କରିଥିଲା ସେ ଗୋଟିଏ ପ୍ରଶ୍ନ - ଏ ବିଭାଘର କାହିଁକି ? କଂସର ଉଦ୍ଦେଶ୍ୟ କ'ଣ ? ଅରିନ୍ଦମର ସାଙ୍ଗମାନେ ଏକଥା ଆଲୋଚନା କଲେ, ମଥୁରାର ଲୋକମାନେ ଚୁପଚାପ ହେଲେ । ଭାନୁପ୍ରକାଶ କହିଲେ, ଏ ରାଜନୀତି,

କଂସ ରାଜ୍ୟ ଜୟରେ ଯିବ, ସେ ମଥୁରା ଭିତରେ ଶତ୍ରୁ ରଖିବାକୁ ଚାହେଁନା । ଏହାହିଁ ଜରାସନ୍ଧର ଉପଦେଶ । ସୌରଦେବ କହିଲେ କଂସ ନିଜର ଅତ୍ୟାଚାରକୁ ଏ ବିଭାଘର ପ୍ରସ୍ତାବରେ ଘୋଡ଼େଇ ପକେଇବାକୁ ଚାହେଁ । ଏ ଆଦର୍ଶ ବିଭାଘର ନ ହେଲେ ବି, ଏ ବିଭାଘରରେ କାହାରି ଆପତ୍ତି ନାହିଁ, ଉଭୟ ଦେବକୀ ଓ ବସୁଦେବ ମଥୁରା ଲୋକଙ୍କର ପ୍ରିୟ । ବାପା କିନ୍ତୁ କହିଲେ ଏହାହିଁ ପ୍ରାରମ୍ଭ । ଏହାହିଁ ଘଟିବାର କଥା, ଘଟିଲା ।

ସେସବୁ କଥା ଭାବିଲେ ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗେ । କଂସର ରାଜା ହେବା କଥା ପ୍ରାୟ ସମସ୍ତେ ଧରି ନେଇଥିଲେ । ତେଣୁ ସେ ରାଜା ହେବା ପରେ କେହି ଆଶ୍ଚର୍ଯ୍ୟ ହେଲେ ନାହିଁ, ଉଗ୍ରସେନଙ୍କ ପାଇଁ ଅନେକ ଦୁଃଖିତ ହେଲେ କେବଳ । କିନ୍ତୁ ଦେବକୀ ବସୁଦେବ ବିଭାଘର କଥା ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥିଲା, ଚିନ୍ତିତ ବି କରିଥିଲା । ଦେବକୀର ବିଭାଘର କଥା ଶୁଣାଯାଉଥିଲା, ସେଥିପାଇଁ ଆୟୋଜନ ବି ଚାଲିଥିଲା । କିନ୍ତୁ ବସୁଦେବଙ୍କ ସହିତ ବିଭାଘର ହଠାତ୍ ଜଣାଗଲା । ଅରିନ୍ଦମର ମନେଅଛି ସେଦିନ କଂସର ଦରବାର ଘରୁ ଫେରିଲା ପରେ ଅନେକ ମୁଖିଆଙ୍କୁ ସେ ବିବ୍ରତ ଭାବରେ କଥାବାର୍ତ୍ତା କରିବା ଶୁଣିଥିଲା । ବିଭାଘର ପାଇଁ ନୁହେଁ । କଂସର ଅସଲ ଉଦ୍ଦେଶ୍ୟ କଅଣ ସେଇଟା ହିଁ ସେମାନଙ୍କୁ ଭୟଭୀତ କରି ଦେଇଥିଲା । ବସୁଦେବଙ୍କ ପାଇଁ ସେମାନେ ଚିନ୍ତା କରୁଥିଲେ । କଂସକୁ ବିଶ୍ୱାସ କରିବାକୁ କେହି ପ୍ରସ୍ତୁତ ନ ଥିଲେ । ସେମାନେ ଭୟ କରୁଥିଲେ କିଛି ଗୋଟାଏ ଘଟିପାରେ ।

ଏହିପରି ସମୟରେ ଦିନେ ସକାଳେ ଅରିନ୍ଦମ ଘରେ ଦୁଇ ବନ୍ଧୁ ଦେବପ୍ରିୟ ଓ ସୁରଂଜନ ଆସି ପହଞ୍ଚିଲେ । ତିନି ବନ୍ଧୁ ବସିଲେ । ଅରିନ୍ଦମ ଦେଖିଲା ଦେବପ୍ରିୟ ବେଶ୍ ଉତ୍ତେଜିତ । ପଚାରିଲା, 'ଦେବ, ତୁ ଏତେ ଉତ୍ତେଜିତ କାହିଁକି ଦିଶୁଛୁ ? ଆଉ କିଛି ଘଟିଲା କି ?'

'ନାଁ । ଯାହା ଘଟିଲା ସେ କ'ଣ କମ କି ? ମୁଁ ଭାବୁଛି ଆମେ କ'ଣ କରିପାରିବା । ତୁ କ'ଣ ଭାବୁଛୁ ?' ଦେବପ୍ରିୟ କହିଲା ।

ଅରିନ୍ଦମ ହସିଲା, 'କିରେ ମୁଁ କ'ଣ କହିବି ? ଯାହା ଘଟୁଛି ସେ କ'ଣ ଆମ ନିଷ୍ପତ୍ତିରେ ହେଉଛି । ଆମେ ବଦଳେଇ ଦେଇ ପାରିବା କି ?'

'ନାଁ', ଦେବପ୍ରିୟ କହିଲା ।

'ତା ହେଲେ ଆମେ ବ୍ୟସ୍ତ ହବା କାହିଁକି ?' ଅରିନ୍ଦମ କହିଲା - ତା'ର ବାପାଙ୍କ କଥା ମନେପଡ଼ିଲା : ଧୈର୍ଯ୍ୟ ଧର, ସ୍ଥିର ରହ, ଆମେ ନ ବୁଝିଲା ପରି ଅନେକ ଘଟଣା ଘଟେ । 'ମୋର ମନେ ହେଉଛି ଆମେ ଚୁପଚାପ ରହିବା

ଦରକାର ।'

'କେମିତି ଚୁପଚାପ ରହିବା ?' ଦେବପ୍ରିୟର ଉତ୍ତେଜନା କମି ନ ଥାଏ । 'ଯାହା ହେଉ ପଛେ ଆମର କିଛି କରିବା ଦରକାର । କଂସକୁ ତୁ ଜାଣୁ, ଆମେ ଜାଣୁ- ଅସାଧୁ, ଅତ୍ୟାଚାରୀ, ଚରିତ୍ରହୀନ, ଅଯୋଗ୍ୟ । ସେ କ'ଣ ମଥୁରାର ରାଜା ହବା ଲୋକ, ଖାଲି ଜରାସନ୍ଧ ସାହସରେ ସେ ଇନ୍ଦ୍ରଚନ୍ଦ୍ର ମାନୁନି । ମଥୁରାଟା ମଗଧର କରଦ ରାଜ୍ୟ ହେଇଗଲା । ତୁ କହୁଛୁ ଆମେ କିଛି କରିବାନି, ଚୁପ ହୋଇ ବସିବା ?'

ଅରିନ୍ଦମର ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା - ଲୋକଶକ୍ତି ଜାଗ୍ରତ ନ ହେଲେ କଂସକୁ ହଟେଇ ହବ ନି, ତା'ର ଶକ୍ତି ଲୋକର ଲୋଭ ଓ ସ୍ୱାର୍ଥପରତାର ଶକ୍ତି, ତାକୁ ହଟେଇବାକୁ ହେଲେ ତା'ଠାରୁ ବଡ଼ ଓ ଅନ୍ୟପ୍ରକାର ଶକ୍ତି ଦରକାର ।

'ନାଁ, ଆମେ ଚୁପ୍‌ହୋଇ ବସିବାନି', ଅରିନ୍ଦମ କହିଲା, 'କିନ୍ତୁ ତା ସାଙ୍ଗରେ ଆମେ ମୁହାଁମୁହିଁ ବି ଲଢ଼େଇ କରି ପାରିବାନି । ସେ ଶକ୍ତି ଆମର ନାହିଁ । କଂସ ପଛରେ ଜରାସନ୍ଧ ଅଛି ଠିକ୍ । କିନ୍ତୁ ଯାହା କରିବା କଥା ସେ ନିଜେ ବି ପ୍ରସ୍ତୁତ ହୋଇ କରୁଛି । ଆଜି ଯଦି ମଥୁରାର ସମସ୍ତେ ଏକାଠି ହୋଇ ଦମ୍ଭରେ ତା ବିରୁଦ୍ଧରେ ଛିଡ଼ା ହୁଅନ୍ତେ ତେବେ ଅବସ୍ଥା ବଦଳି ଯାଆନ୍ତା । କଂସ ସେକଥା ଜାଣେ । ସେଥିପାଇଁ ସେ ଗୋଟାଏ ଆଡ଼େ ରାକ୍ଷସ ସୈନ୍ୟଗୁଡ଼ାକୁ ଚାରିଆଡ଼େ ଖେଦି ଦେଇ ଲୋକଙ୍କୁ ଭୟଭୀତ କରୁଛି । ଅନ୍ୟଆଡ଼େ ସେ ଅତ୍ୟନ୍ତ ବିନୀତ ହୋଇ ମୁଖିଆମାନଙ୍କ ସାଙ୍ଗରେ କଥାବାର୍ତ୍ତା କରୁଛି । ଆଉ ତା ସାଙ୍ଗରେ ଯେତେ ଛୋଟ ଛୋଟ ସ୍ୱାର୍ଥ, ଛୋଟ ଛୋଟ ଅନୁଗ୍ରହ ବାଣ୍ଟି ଦଉଛି । କହ, ମଥୁରା ଲୋକେ କଂସ ବିରୁଦ୍ଧରେ ଏକାଠି ହୋଇ ପାରିବେ କି ?

'ନାଁ', ଦେବପ୍ରିୟ କହିଲା, 'ସେମାନଙ୍କ ଭିତରେ ତ ପଚାଶ ଦଳ । ଆଉ ଅଧିକାଂଶ କଂସ ଆଡ଼େ । କଂସ ତରୁଣ, ସାହସୀ, ସେ ମଥୁରାର ଅନେକ ଉନ୍ନତି କରିପାରିବ, ଏହି ଧାରଣା ସେମାନଙ୍କର ।'

'ଏ ଧାରଣା ସେମାନଙ୍କର ନୁହେଁ, ଏ ଧାରଣା ସେମାନଙ୍କୁ ଦିଆଯାଇଛି ।' ଅରିନ୍ଦମ କହିଲା । ତାକୁ ଆଶ୍ଚର୍ଯ୍ୟ ଲାଗିଲା ସେ ଅତି ସ୍ୱାଭାବିକ ଭାବରେ ଭାନୁପ୍ରକାଶଙ୍କ କଥା ହିଁ କହୁଛି - 'ସେ ଅତି କୌଶଳରେ ନିଜ ସମ୍ପର୍କରେ ପ୍ରଚାର କରୁଛି, ଲୋକଙ୍କୁ ବିଶ୍ୱାସ କରାଉଛି । କୌଣସି ଯୋଗ୍ୟ ରାଜା ନିଜ ସମ୍ପର୍କରେ ପ୍ରଚାର କରେ ନା । ଅନ୍ୟମାନେ ତା ସମ୍ପର୍କରେ ପ୍ରଚାର କରନ୍ତି । କଂସର ପ୍ରଚାରରେ କୌଣସି ମଳିଧୂଳି ନାହିଁ । ଆଉ ଦୁଃଖର କଥା ମଥୁରାର ଲୋକମାନେ ସେହି

ପ୍ରଚାରଟାକୁ ହିଁ ବିଶ୍ୱାସ କରୁଛନ୍ତି । ସେମାନଙ୍କର ବିଚାରରେ କଂସ ଯୋଗ୍ୟ ରାଜା । ଏ ଅବସ୍ଥାରେ ଆମେ କ'ଣ କରିପାରିବା, କହ ? କାହାକୁ ନେଇ ଆମେ ଛିଡ଼ା ହେବା ?'

'ଅରିନ୍ଦମ, ତୋ କଥା ମୁଁ ମାନୁଚି', ଦେବପ୍ରିୟ କହିଲା, 'କିନ୍ତୁ ଚୁପ୍‌ଚାପ୍ ରହିବାକୁ ବାଧୁଚି । ସବୁ ଜାଣି ବି ଆମେ କିଛି କରିପାରିବାନି ?'

'କିଛି କରିବାର ସମୟ ଆସିନି, ଦେବ । ଆମେ ଯାହା ଭାବୁଚୁ ସେ ବିଷୟରେ ଲୋକଙ୍କୁ ସଚେତ କରିବା ଛଡ଼ା ଆଉ କିଛି ବର୍ତ୍ତମାନ କରିବା ସମ୍ଭବ ନୁହେଁ । ମୋର ଯାହା ଖବର ଶୁଣ । ଦେବକୀ ବସୁଦେବଙ୍କର ବିଭାଘର କଥା ସିନା କଂସ ଘୋଷଣା କରିଦେଲା, ବିଭାଘର ବର୍ତ୍ତମାନ ହେଉନି । ସେ ଖାଲି ଲୋକଙ୍କର ମତାମତ ଜାଣିବାକୁ ଚାହୁଁଥିଲା । ସମସ୍ତେ ତ ମାନିନେଲେ, ଆଉ ବ୍ୟସ୍ତ ହେବାର କ'ଣ ଅଛି ? ବିଭାଘର ନିଷ୍ପତ୍ତି ବର୍ତ୍ତମାନ ଝୁଲିକରି ରହିବ । ସେ ରାଜ୍ୟ ଜୟରେ ଚାଲିଯିବ । ରାଜ୍ୟ ଜୟରୁ ଫେରି ଯେତେବେଳେ ତା ବିରୁଦ୍ଧରେ କାହାରି କିଛି କହିବାର ନ ଥିବ, ସବୁଆଡ଼େ ଜୟଜୟକାର, ସେତିକିବେଳେ ବିଭାଘର ହେବ ।' ଅରିନ୍ଦମ ଚୁପ କରିଗଲା । ତା ମୁଣ୍ଡରେ ଭାନୁପ୍ରକାଶଙ୍କର ଗୋଟାଏ କଥା ବାରମ୍ବାର ଧକ୍କା ଦେଉଥିଲା - ଭାନୁପ୍ରକାଶଙ୍କର ସନ୍ଦେହ, ଯେ ଏ ବାହାଘର ପଛରେ କଂସର କିଛି ଗୂଢ଼ ଉଦ୍ଦେଶ୍ୟ ଅଛି । ସେ କଥା ସେ ବନ୍ଧୁମାନଙ୍କୁ କହିଲା, 'ଦେବ, ସୁରଂଜନ, ତୁମେ ଆଉ ଗୋଟାଏ କଥା ଭାବ । ଏ ବିଭାଘର ନିଷ୍ପତ୍ତିଟା ଏତେ ସରଳ ନିଷ୍ପତ୍ତି ନୁହେଁ । ଏହା ପଛରେ କଂସର କିଛି ଗୂଢ଼ ଉଦ୍ଦେଶ୍ୟ ଅଛି ।'

'କି ଉଦ୍ଦେଶ୍ୟ ଅଛି ?' ସୁରଂଜନ ପଚାରିଲା ।

'ସେକଥା ବର୍ତ୍ତମାନ କହିବା ସମ୍ଭବ ନୁହେଁ ।' ଅରିନ୍ଦମ କହିଲା, 'ଆଉ କିଛି ଘଟଣା ନ ଘଟିଲେ ସେକଥା ସ୍ପଷ୍ଟ ଭାବରେ ବୁଝି ହେବନି । କିନ୍ତୁ ଅଛି ନିଶ୍ଚୟ । ତା ନ ହେଲେ କଂସ ପାଖକୁ ଏତେ ଲୋକ ଆସୁଛନ୍ତି କାହିଁକି ? ମଗଧ ତ ମଗଧ, ମଗଧ ତା'ର ଶଶୁରଘର, ସେଠୁ ତ ଲୋକ ଆସିବେ । କିନ୍ତୁ ବାହାରୁ ବି ଅନେକ ଲୋକ ଆସୁଛନ୍ତି । ଅଦ୍ଭୁତ ଅଦ୍ଭୁତ ଲୋକ ସବୁ - ଜ୍ୟୋତିଷ, ଗଣତକାର, ତାନ୍ତ୍ରିକ, ଯାଦୁକର । ମୋର ମନେହେଉଛି ବେଶ୍ ଗୋଟାଏ ଗୋଳମାଳ ଘଟଣାର ଯୋଜନା ଚାଲିଛି ଯାହାକୁ କି ସମ୍ପୂର୍ଣ୍ଣ ଗୋପନୀୟ କରି ରଖା ହୋଇଛି ।

'ତୁ ଭାବୁଛୁ ଅରିନ୍ଦମ, ବିଭାଘର ବର୍ତ୍ତମାନ ନ ହୋଇପାରେ । ଖାଲି ଘୋଷଣା କରିଦିଆଗଲା ।' ଦେବପ୍ରିୟ କହିଲା ।

'ହଁ', ଅରିନ୍ଦମ କହିଲା, 'ଏ ଉଡ଼ା ଖବର ନୁହେଁ । ଜାଣିବା ଶୁଣିବା

ଲୋକଙ୍କଠୁଁ ମୁଁ ଏହା ଶୁଣିଛି । ଜରାସନ୍ଧଙ୍କର ଇଚ୍ଛା କଂସ ଶୀଘ୍ର ରାଜ୍ୟ ଜୟ ଅଭିଯାନରେ ବାହାରି ଯାଉ । ସେଥିପାଇଁ ତାଙ୍କର ବରିଷ୍ଠ ମନ୍ତ୍ରୀ ରଂଜନଦେବ ଏଠି ଆସି ବସିଛନ୍ତି । କଂସ ନ ଥିବା ସମୟରେ ସେହି ହିଁ ମଥୁରା ଦାୟିତ୍ୱରେ ରହିବେ । ଅନେକ ସୈନ୍ୟସାମନ୍ତ ବି ଆସିଛନ୍ତି । କିଛି କଂସ ସାଙ୍ଗରେ ଯିବେ, ଆଉ କିଛି ମଥୁରାରେ ରହିବେ । ତେଣୁ ବିଭାଘର ବର୍ତ୍ତମାନ ନୁହେଁ, ପରେ । ତୁମେମାନେ ବର୍ତ୍ତମାନ ବ୍ୟସ୍ତ ହୁଅନା'- ଅରିନ୍ଦମ ଦେବପ୍ରିୟ ଓ ସୁରଂଜନକୁ ଆଶ୍ୱାସନା ଦେଲା । 'ଖାଲି ନଜର ରଖ ।'

ଅନ୍ୟମାନେ ବି ନଜର ରଖିଥିଲେ । ଯେପରି ଭାନୁପ୍ରକାଶ, ସୌରଦେବ, ଗୋପା । ଏହା ଭିତରେ ଭାନୁପ୍ରକାଶ କୁରୁକ୍ଷେତ୍ର ଯାଇଁ ଫେରି ଆସିଲେଣି । ସେଇଠି, ଗୋକୁଳରେ ନନ୍ଦଙ୍କ ଘରେ ସେ ରହିଥାନ୍ତି । ଯମୁନା ଦେବୀଙ୍କ ମନ୍ଦିରରେ ସେମାନେ ପୁଣି ଥରେ ଏକାଠି ହୋଇଥିଲେ । ସମସ୍ତେ ବ୍ୟାସଦେବଙ୍କ ମତାମତ ଜାଣିବାକୁ ଚାହିଁଥିଲେ । 'ନାଁ, ବିଶେଷ ନାହିଁ ।' ଭାନୁପ୍ରକାଶ କହିଥିଲେ, 'ସବୁ ଶୁଣି ଗୁରୁଦେବ ଖାଲି କହିଥିଲେ ଅପେକ୍ଷା କର । ଘଟିବ ।' ଅରିନ୍ଦମର ମନେହେଲା ଭାନୁପ୍ରକାଶ ଯେପରି କ'ଣ କହୁ କହୁ କହିଲେ ନାହିଁ । ସେ ସେଇକଥା ପଚାରିଲା । 'ନାଁ ସେମିତି କିଛି କଥା ନୁହେଁ । ଗୁରୁଦେବ ତ ଅରିନ୍ଦମ, ତୁମର ବାପାଙ୍କ ପରି ସଂକ୍ଷେପରେ କଥା କହନ୍ତି । ସେ ଗୋଟାଏ କଥା କହିଲେ ଯାହା ମୁଁ ଭାବୁଛି । ସେ କହିଲେ ବସୁଦେବ ଓ ଦେବକୀ ଭାଗ୍ୟବାନ, କିନ୍ତୁ ସେମାନଙ୍କୁ ବହୁତ କଷ୍ଟ ଭୋଗିବାକୁ ହେବ ।'

'ବ୍ୟାସଦେବ ନିଜେ ଏ ପାଖକୁ ଆସିବେ କି ?' ସୌରଦେବ ପଚାରିଥିଲେ ।

'ନାଁ, ଏବେ ନୁହେଁ, ପରେ ।' ଭାନୁପ୍ରକାଶ କହିଥିଲେ ।

ବସୁଦେବ ଓ ଦେବକୀଙ୍କ କଥା ଅରିନ୍ଦମ ଭୁଲି ପାରି ନ ଥିଲା । କ'ଣ ଏପରି ଘଟିବ ଯେ ସେମାନଙ୍କୁ ବହୁତ କଷ୍ଟ ଭୋଗିବାକୁ ପଡ଼ିବ । ପରବର୍ତ୍ତୀ ଘଟଣାସବୁ ଯାହା ହେଲା ବ୍ୟାସଦେବ ଯେ କେତେ ସ୍ପଷ୍ଟ ଭାବରେ ଭବିଷ୍ୟତ ବିଷୟରେ କହିଥିଲେ ସେକଥା ଭାବି ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗେ ।

ଭାନୁପ୍ରକାଶ ଯାହା କହିଥିଲେ ଠିକ୍, ଅରିନ୍ଦମ ସେହି କଥା ତା ସାଙ୍ଗମାନଙ୍କୁ କହିଥିଲା । କଂସ ରାଜା ହେଲା । ଦେବକୀ ବସୁଦେବଙ୍କର ବିଭାଘର ଘୋଷଣା କରିଦେଲା । ତା'ପରେ ଚୁପ । ବିଭାଘର କଥା କଂସ ଯେପରି ଭୁଲିଗଲା । ଆରମ୍ଭ ହେଲା ବାହାର ରାଜ୍ୟ ଜୟ କରିବା ପାଇଁ ଅଭିଯାନର ପ୍ରସ୍ତୁତି । ମଥୁରା ଓ ମଗଧରେ ଶୀଘ୍ର ଖବର ନବା ଆଣିବା ପାଇଁ ଯୋଗ୍ୟ, ସାହସୀ ଘୋଡ଼ା ସବାର ସୈନିକମାନଙ୍କୁ ନିଯୁକ୍ତ କରାଗଲା । ଯଥେଷ୍ଟ ରସଦ ସଂଗ୍ରହ କରାଗଲା । ପୁରୁଣା ଅସ୍ତ୍ରସବୁକୁ ଘସିମାଜି

ତୀକ୍ଷ୍ଣ କରାଗଲା । ନୂଆ ଅସ୍ତ୍ର ତିଆରି ହେଲା, ରଥ ତିଆରି ହେଲା, ନୂଆ ତେଜୀ ଅଶ୍ୱମାନଙ୍କୁ ସଂଗ୍ରହ କରାଗଲା, ତରୁଣ ଯାଦବମାନଙ୍କୁ ସୈନିକ ଭାବରେ ନିଯୁକ୍ତ ଦିଆଗଲା ଓ ଜରାସନ୍ଧର ସୈନ୍ୟମାନେ ସେମାନଙ୍କୁ ଯୁଦ୍ଧବିଦ୍ୟା ସମ୍ପର୍କରେ ଶିକ୍ଷା ଦେଲେ । ସବୁଆଡ଼େ ସାଜ ସାଜ ରବ, ଉତ୍ତେଜନା । ଆଉ ସବୁକଥା ମେଘ ଘୋଡ଼େଇଲା ପରି ଘୋଡ଼େଇ ହୋଇଗଲା । ଏପରିକି ଗୋପା ମଧ୍ୟ କୌଣସି ନୂଆ ଖବର ପାଇପାରିଲେ ନାହିଁ । କେବଳ ଗୋଟିଏ ଖବର - ରାଜ୍ୟ ଜୟ । ଏହିପରି ଅବସ୍ଥାରେ ଦିନେ ଗୋଟାଏ ଅଭାବିତ ଘଟଣା ଘଟିଲା । କଂସ ସାଙ୍ଗରେ ଆସିଥିବା ମଗଧର ସୈନ୍ୟମାନଙ୍କ ଭିତରୁ ଜଣକୁ କିଏ ବା କେଉଁମାନେ ରାତିରେ ମାରି ଯମୁନା କୂଳରେ ଫିଙ୍ଗିଦେଇ ଆସିଥିଲେ । ସକାଳୁ ଖବର ଜଣାଗଲା ଓ କଂସକୁ କୁହାଗଲା । ଏ ଭୟାନକ ଅବସ୍ଥା । ସାରା ମଥୁରା ତଟସ୍ଥ ହୋଇଗଲା । କଂସ ଯେ ଗୋଟାଏ କିଛି ଭୟଙ୍କର କରିବ ଏ ବିଷୟରେ କାହାରି ସନ୍ଦେହ ନ ଥିଲା । କିନ୍ତୁ ନାଁ, କିଛି ହେଲାନି । କଂସ ଶୁଣିଲା ଆଉ ଚୁପ ରହିଲା । ଖାଲି କହିଲା ସୈନ୍ୟକୁ ଆଣି ସତ୍କାର କରିଦିଅ । ତା'ପରେ ରାଜ୍ୟ ଜୟ ଅଭିଯାନର ଯୋଗାଡ଼ ଯନ୍ତ୍ର ଯେମିତି ଚାଲିଥିଲା ସେମିତି ଚାଲିଲା । ଅରିନ୍ଦମ ଓ ତା'ର ସାଙ୍ଗମାନେ ବେଶ୍ ଆଶ୍ଚର୍ଯ୍ୟ ହୋଇଥିଲେ । ଏ କି କଥା । ଏ ତ କଂସ ପରି କଥା ହେଲା ନାହିଁ । ଅରିନ୍ଦମ ଭାନୁପ୍ରକାଶ ଓ ସୌରଦେବଙ୍କୁ ପଚାରିଥିଲା । ଉଭୟ ଭାନୁପ୍ରକାଶ ଓ ସୌରଦେବ ଗୋଟିଏ ଉତ୍ତର ଦେଇଥିଲେ । କହିଥିଲେ କଂସ ବର୍ତ୍ତମାନ ରାଜ୍ୟ ଜୟ ଅଭିଯାନରେ ବାହାରିଛି । ସେ ଏପରି ଛୋଟ ମୋଟ କଥାରେ ମୁଣ୍ଡ ପୂରେଇବାକୁ ଚାହେଁନା । ତା ଛଡ଼ା ସେ ବର୍ତ୍ତମାନ ମଥୁରାରେ କିଛିଦିନ ରହିବନି । ତେଣୁ ସେ ନ ଥିବା ବେଳେ ଏଠି ତା ପଛରେ ଶତ୍ରୁ ରଖିଯିବାକୁ ଚାହେଁନା । କିନ୍ତୁ ସେ ପ୍ରତିଶୋଧ ନେବ, ଭୟଙ୍କର ପ୍ରତିଶୋଧ ନେବ, ଫେରି ଆସିଲେ । ତାହାହିଁ ହୋଇଥିଲା । କଂସ ନିଜର ଅଭିଯାନରୁ ଫେରିଆସି, ସେ ସୈନ୍ୟର ହତ୍ୟାକାରୀମାନଙ୍କୁ ସନ୍ଧାନ କରିଥିଲା ଓ କେବଳ ସେମାନଙ୍କୁ ନୁହେଁ, ସେହି ମହଲାରେ ରହୁଥିବା ସମସ୍ତ ଲୋକଙ୍କୁ ତା'ର ଲୋକମାନେ ଯାଇ ଚିକିନିଖି କରି ହତ୍ୟା କରିଥିଲେ ।

ବେଶ୍ କିଛିଦିନ ଅଭିଯାନ ପାଇଁ ଯୋଗାଡ଼ ଯନ୍ତ୍ର ଚାଲିଲା । ତା'ପରେ ଦିନେ ସକାଳେ କଂସ ତାହାର ସୈନ୍ୟସାମନ୍ତଙ୍କୁ ଧରି ନିଜର ରାଜ୍ୟ ଜୟ ଅଭିଯାନରେ ବାହାରିଗଲା । ଜରାସନ୍ଧଙ୍କର ବରିଷ୍ଠ ମନ୍ତ୍ରୀ ରଂଜନଦେବ ଯେ ଆସି କଂସ ପାଖରେ ଥିଲେ, ସେ ମଥୁରା ଦାୟିତ୍ୱରେ ରହିଲେ । ମଥୁରାର ଗଳି କନ୍ଦିରେ କଂସର ସୈନ୍ୟମାନେ ଯେ ଦିନରାତି ବୁଲୁଥିଲେ ଓ ଜଗି ରହିଥିଲେ ସେ ସେହିପରି ରହିଲା,

କିନ୍ତୁ ସୈନ୍ୟମାନଙ୍କର ସଂଖ୍ୟା କମିଗଲା ଓ ସେମାନେ ଦିନରେ ପ୍ରାୟ ବୁଲାବୁଲି ବନ୍ଦ କରିଦେଲେ । ଏହି ସମୟରେ ଅରିନ୍ଦମ ବିଶେଷ କରି ଗୋଟାଏ ଯୋଡ଼ାଏ କଥା ଲକ୍ଷ୍ୟ କଲା । ଯମୁନା ଦେବୀଙ୍କ ମନ୍ଦିର ପାଖରେ, ଯମୁନା ଘାଟ ପାଖରେ ଉଗ୍ରସେନର ଯେଉଁ ପୁରୁଣା ଘର, ବେଶ୍ କିଛି ଲୋକ ଲାଗି ସେ ଘରକୁ ମରାମତି କରାହେଉଛି, ନୂଆ ଦମ୍ଭ କବାଟ ସବୁ ଲଗାଯାଉଛି, ଚାରିପାଖର ପାଚେରିକୁ ବହୁତ ଉଚ୍ଚା କରା ହେଉଛି । ଆଉ ପାଖରେ ଲାଗିଥିବା ଘାଟର ତଙ୍ଗାସବୁକୁ ସେଠି ଘାଟ ବନ୍ଦ କରି ଉପରକୁ ଯାଇ ଘାଟ କରିବାକୁ କୁହାଯାଉଛି । ଦ୍ୱିତୀୟରେ, ସହର ଭିତରେ ବସୁଦେବଙ୍କ ଘରେ ବେଶ କିଛି ସୈନ୍ୟ ଜଗୁଆଳୀ ଭାବରେ ରହିଛନ୍ତି । କାହିଁକି ? ମଥୁରାରେ ତ ବସୁଦେବଙ୍କ ଘରେ ଜଗୁଆଳୀର ଦରକାର ନାହିଁ, ସମସ୍ତେ ତାଙ୍କୁ ସ୍ନେହ କରନ୍ତି, ସମ୍ମାନ କରନ୍ତି । ସେ ସେକଥା ବି ଭାନୁପ୍ରକାଶ ଓ ସୌରଦେବଙ୍କୁ ପଚାରିଥିଲା । ମନେହେଲା ସେମାନେ ବି ଅନିଶ୍ଚିତ । ତେବେ ଗୋଟାଏ କଥା ବୁଝି ହେଉଥାଏ, କଂସ ଅଭିଯାନରେ ଯିବା ଆଗରୁ ଏ କାମ ପାଇଁ ଆଦେଶ ଦେଇ ଯାଇଛି । ଏ ରଂଜନଦେବଙ୍କର ଆୟୋଜନ ନୁହେଁ । ଆଉ ଗୋଟାଏ କଥା ବି ଅରିନ୍ଦମ ଲକ୍ଷ୍ୟ କଲା । ଅଧିକାଂଶ ମୁଖିଆ ଯେଉଁମାନେ ବାହାରେ କିଛି ନ କହିଲେ ବି ଭିତରେ ଭିତରେ କଂସର ବିରୁଦ୍ଧରେ ଥିଲେ, ସେ ପ୍ରାୟ ସମସ୍ତଙ୍କର ମନ ବଦଳି ଗଲାଣି । କଂସ ହିଁ ମଥୁରାର ଓ ଯାଦବମାନଙ୍କର ପୂର୍ବ ଗୌରବ ଫେରେଇ ଆଣିବ, ଏହାହିଁ ସମସ୍ତଙ୍କର ଧାରଣା ଓ କଂସ ବିପକ୍ଷରେ ନୁହେଁ କଂସ ସପକ୍ଷରେ ହିଁ ବର୍ତ୍ତମାନ ଅଧିକାଂଶ ମତ ।

ବେଶ୍ କିଛି ମାସ ଚାଲିଗଲା । ଖବର ଆସିଲା କଂସ ଯେଉଁ ଯେଉଁ ରାଜ୍ୟକୁ ଯାଇଛି ସବୁ ଜାଗାରେ ବିଜୟୀ ହୋଇଛି ଓ ରାଜାମାନଙ୍କୁ ପରାସ୍ତ କରି ପ୍ରଚୁର ଧନରତ୍ନ ଘେନି ମଥୁରା ଫେରୁଛି । ମଥୁରାର ମୁଖିଆମାନେ ସ୍ଥିର କଲେ କଂସ ଫେରି ଆସିଲେ ତାକୁ ସହର ପକ୍ଷରୁ ଓ ଯାଦବମାନଙ୍କ ପକ୍ଷରୁ ସମ୍ବର୍ଦ୍ଧନା ଦିଆଯିବ । ଏହି ସମୟରେ ଦିନେ ସାଙ୍ଗମାନେ ଅରିନ୍ଦମ ଘରେ ଆସି ପହଞ୍ଚିଲେ । ସମସ୍ତେ ଉତ୍ତେଜିତ । ଦେବପ୍ରିୟ କହିଲା, 'ଅରିନ୍ଦମ, ଏ କି କଥା ? କଂସ ପରି ଗୋଟାଏ ଚରିତ୍ରହୀନ, ଲମ୍ପଟ, ଅତ୍ୟାଚାରୀକୁ ସମ୍ବର୍ଦ୍ଧନା ! କ'ଣ ତା'ର ଯୋଗ୍ୟତା ? କେତେଗୁଡ଼ା ରାଜ୍ୟ ଜୟ କରିଚି, ଏଇତ ? ମଥୁରା ଲୋକଙ୍କ ପାଇଁ ଏ ରାଜ୍ୟ ଜୟର ମୂଲ୍ୟ କ'ଣ ଅଛି ? ସେମାନେ ତ ନିଜ ଘରେ ଭଲରେ ରହିପାରୁ ନାହାନ୍ତି । କେତେବେଳେ କାହାର କି ଅବସ୍ଥା ହେବ ଜଣାନାହିଁ, ଆଉ ରାଜ୍ୟ ଜୟ ? ଏ ମୁଖିଆମାନଙ୍କର ମୁଣ୍ଡ ଖରାପ ହେଇଗଲାଣି, ନହେଲେ ଏ ନିଷ୍ପତ୍ତି ? ସମ୍ବର୍ଦ୍ଧନା ? ମଥୁରା ଛାଡ଼ି

ଚାଲିଯିବାକୁ ପଡ଼ିବ ।'

ଅରିନ୍ଦମ ଦେଖିଲା ଦେବପ୍ରିୟ ବହୁତ ଉତ୍ତେଜିତ । ସେ ସବୁବେଳେ ଏମିତି । କୌଣସି ଅନ୍ୟାୟ କଥା କି କାମ ସହ୍ୟ କରିପାରେନା । କହିଲା, 'ଦେବପ୍ରିୟ, ସୁରଂଜନ, ତୁମେ ସବୁ ବସ । କିଛି ଖାଇବା, ପାନୀୟ ଆଣିବା କି ? ମୁଣ୍ଡ ଥଣ୍ଡା କର । ଦେବପ୍ରିୟ ତୁ ଯା କହିଲୁ ମୁଁ ତୋ ସହିତ ସମ୍ପୂର୍ଣ୍ଣ ଏକମତ । କିନ୍ତୁ ଆମେ କରିବା କ'ଣ ?'

'ତା ମାନେ, ଆମେ ଏସବୁ କଥାକୁ ମାନି ନବା ? ଏ ଅନ୍ୟାୟ, ଅଧର୍ମ ?' କହିଲା ଦେବପ୍ରିୟ ।

'ନାଁ, ମୁଁ ସେକଥା କହୁନାହିଁ ।' କହିଲା ଅରିନ୍ଦମ । ତା'ର ମନେ ପଡ଼ିଲା ସେ ଠିକ୍ ଏମିତି ଭାନୁପ୍ରକାଶଙ୍କୁ କହିଥିଲା । ଉତ୍ତରରେ ଭାନୁପ୍ରକାଶ କେବଳ ହସିଥିଲେ । କହିଥିଲେ - ତୁମେ କ'ଣ ଭାବୁଛ ଆମେ ସେକଥା ଭାବୁନାହୁଁ । ଆମେ ବି ସେମିତି ଭାବୁଛୁ । ସେମିତି ନ ଭାବିଲେ ଆମେ ତ କାମ କରିପାରିବୁ ନାହିଁ । କିନ୍ତୁ ସବୁ କାମର ଗୋଟାଏ ସମୟ ଥାଏ । ସେ ଠିକଣା ସମୟ ନ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ । ସେ କହିଲା, 'ଶୁଣ, କଂସ କ'ଣ ସେକଥା କ'ଣ ଆମେ ଆଜି ଜାଣିଲେ ? ତାକୁ ତ ଆମେ କେବେଠୁଁ ଜାଣିଛେ । ସେ ଅଧର୍ମ, ସେହି ଅଧର୍ମରେ ହିଁ ରହିବ, ଏ ତ ଜଣାକଥା । କିନ୍ତୁ ସେ ତ ଏକା ନୁହେଁ । ଏକା ଥିଲେ ଭାବି ଦେଖନ୍ତ କ'ଣ କରାଯିବ । ତା' ପଛରେ ଯେ ଜରାସନ୍ଧ ଛିଡ଼ା ହୋଇଛି । ମଥୁରା ଜରାସନ୍ଧ ସାଙ୍ଗରେ ଲଢ଼ିପାରିବ ତ ? କଂସ ଜରାସନ୍ଧର ଜୋଇଁ । କଂସର ସାମାନ୍ୟ ଅସୁବିଧା ହେଲେ ତମକୁ ଜରାସନ୍ଧ ସହିତ ମୁକାବିଲା କରିବାକୁ ପଡ଼ିବ । ନାଇଁ, ନାଇଁ, ଦେବପ୍ରିୟ, ଏ ଖାଲି ଉତ୍ତେଜନା ବା ଆବେଗର କଥା ନୁହେଁ । ଏ ବାସ୍ତବ ଅବସ୍ଥା । ମୁଁ ଜାଣେନା କଂସ ପରି ଦୁର୍ଦ୍ଦଶାକୁ କେତେଦିନ ସହ୍ୟ କରିବାକୁ ପଡ଼ିବ । କିନ୍ତୁ ସହ୍ୟ କରିବାକୁ ହିଁ ହେବ । ଠିକଣା ସମୟ ନ ଆସିଲା ପର୍ଯ୍ୟନ୍ତ ।'

'ସେ ଠିକଣା ସମୟ କେତେ ଆସିବ ? ତା'ମାନେ ଆମେ କିଛି କରିପାରିବା ନାହିଁ ?' କହିଲା ଦେବପ୍ରିୟ । 'ନାଁ, ତା ଠିକ୍ ନୁହେଁ, କହିଲା ଅରିନ୍ଦମ, 'ଆମେ କଂସ ବା ଜରାସନ୍ଧ ସହିତ ଲଢ଼ି ପାରିବା ନାହିଁ, ସେକଥା ଠିକ୍ । କିନ୍ତୁ ଅନ୍ୟ ବାଟ ଅଛି । ଆମେ ନିଜକୁ ପ୍ରସ୍ତୁତ କରିପାରିବା । ଅନ୍ୟମାନଙ୍କୁ ପ୍ରସ୍ତୁତ କରେଇ ପାରିବା । ତୁ ଭାବୁଛୁ ସେ ସହଜ ? ନାଁ, ସହଜ ନୁହେଁ । ପଡ଼ିଆରେ ଯାଇ ଯୁଦ୍ଧ କରିବା ଠଉଁ ସେ ଆହୁରି କଷ୍ଟ । ଅନ୍ୟାୟ, ଅଧର୍ମ ଘଟୁଛି ଠିକ୍ । କିନ୍ତୁ ସେ ଅନ୍ୟାୟ,


Digitized by srujanika@gmail.com

ଅଧର୍ମକୁ ଯେତେ ଯାହା ଲୋଭ ଆସୁ ଆମେ ଗ୍ରହଣ କରିବା ନାହିଁ । ଏଇଟା ହିଁ ଶକ୍ତି । ଏଇଟା ହିଁ ପ୍ରସ୍ତୁତ ହେବା । ଯେତେବେଳେ ଠିକଣା ସମୟ ଆସିବ, ଆମେ ସେହି ସମୟ ପାଇଁ ପ୍ରସ୍ତୁତ ରହିବା ।'

'କିନ୍ତୁ କଂସ ରାଜ୍ୟ ଜୟ କରି ଫେରିବା ପରେ ତା'ର ଅତ୍ୟାଚାର ଆହୁରି ବଢ଼ିଯିବ ।' କହିଲା ଦେବପ୍ରିୟ ।

'ବଢ଼ିବ ତ', ଅରନ୍ଦମ କହିଲା, 'ନିଜର ଜୟଜୟକାର ଶୁଣିଲେ ମୁଣ୍ଡ ଠିକ୍ ରହେ ନା । ଅତ୍ୟାଚାରୀ ଭାବେ ସେ ଯାହା କରୁଛି ଠିକ୍ କରୁଛି । ସେ ଭାବିପାରେନା ଅତ୍ୟାଚାରର ବି ଶେଷ ଅଛି, ଅତ୍ୟାଚାର ଶେଷ ହୁଏ । ଦେବପ୍ରିୟ, ତୁ ବ୍ୟସ୍ତ ହ'ନା । ଏ ନିଆଁରେ ପଶିବା ପରି ଅବସ୍ଥା । ନିଆଁରେ ପୋଡ଼ିଯିବା ନିଶ୍ଚୟ । କିନ୍ତୁ ବାହାରି ଆସିଲେ ଉଜ୍ଜ୍ୱଳ ହୋଇ ବାହାରି ଆସିବା । ମଥୁରା ଲୋକେ ବହୁତ ଆରାମରେ ଥିଲେ । ବର୍ତ୍ତମାନ କିଛି ଦୁଃଖ ଭୋଗନ୍ତୁ । ଏ ଦରକାର । ତା ହେଲେ ନୂଆ ପ୍ରକାର ଜୀବନ ସମ୍ଭବ ହେବ ?'

ବନ୍ଧୁମାନେ ବସି ବହୁତ ସମୟ ନିଜ ଭିତରେ ଆଲୋଚନା କଲେ । ଠିକ୍ ହେଲା କଂସର ସମ୍ବର୍ଦ୍ଧନା ସଭାରେ ସେମାନେ ଅଂଶ ଗ୍ରହଣ କରିବେ ନାହିଁ । କିନ୍ତୁ ପ୍ରତିବାଦ କରିବେ ନାହିଁ । ବିଜୟ ଉଲ୍ଲାସରେ ଫେରୁଥିବା କଂସ ପାଇଁ ସମ୍ବର୍ଦ୍ଧନା ହେଉ । ସେମାନେ ଚୁପ୍‌ଚାପ୍ ରହିବା ଭଲ । ଜରାସନ୍ଧର ସୈନ୍ୟମାନଙ୍କର ଅତ୍ୟାଚାରର କଥା ବି ଉଠିଲା । କେବଳ ସାଧାରଣ ଅତ୍ୟାଚାର ନୁହେଁ । ଲୋକମାନଙ୍କର ଘରେ ବି ସେମାନେ ପଶି ଯାଉଛନ୍ତି । ଠିକ୍ ହେଲା ଏପରି ଘଟିଲେ ସେମାନେ ପ୍ରତିବାଦ କରିବେ । ଯାହା ଘଟୁ । ବସୁଦେବଙ୍କ ଘର ଚାରିପାଖରେ ଅଧିକ ଜଗୁଆଳୀ ରହିବା ଓ ଯମୁନା ଦେବୀଙ୍କ ମନ୍ଦିର ପାଖରେ ଉଗ୍ରସେନଙ୍କର ସେ ପୁରୁଣା କୋଠା ମରାମତି ହେବା ଅନେକ ବନ୍ଧୁ ବି ଲକ୍ଷ୍ୟ କରିଛନ୍ତି । କାରଣଟା ଠିକ୍ ବୁଝି ହେଉନାହିଁ ।

ଦେବପ୍ରିୟ କହିଲା, 'ବସୁଦେବଙ୍କ ଘରେ ଜଗୁଆଳୀ ବଢ଼େଇ ଦିଆ ହୋଇଛି ବୋଧହୁଏ ବସୁଦେବଙ୍କର ଯେପରି କେହି କିଛି କ୍ଷତି ନ କରନ୍ତି ସେଥିପାଇଁ । କଂସ ଫେରିବା ପରେ ବସୁଦେବ ଦେବକୀଙ୍କର ବିଭାଘର ବେଶି ଡେରି ହେବନାହିଁ ମନେହେଉଛି, ଆଉ ସେ କୋଠାଟା ବୋଧହୁଏ ବସୁଦେବ ଦେବକୀ ରହିବା ପାଇଁ ଦିଆଯାଇ ପାରେ ।'

ଅରିନ୍ଦମକୁ କେମିତି ଖଟଖଟ ଲାଗିଲା । ଦେବପ୍ରିୟ ଯାହା କହୁଛି ସେ ସାଧାରଣ ବୁଦ୍ଧିର କଥା । କିନ୍ତୁ ସେଇଆ କି ? ବସୁଦେବଙ୍କର ତ ନିଜର ଘର ଅଛି । ବେଶ୍ ଭଲ ଘର । ଆଉ ତାଙ୍କୁ କିଏ ବା କାହିଁକି କ୍ଷତି କରିବ ? ସମସ୍ତେ ତ ତାଙ୍କୁ

ମାନନ୍ତି, ସ୍ନେହ କରନ୍ତି । ତା'ର ଗୋପାଙ୍କ କଥା ମନେ ପଡ଼ିଲା । ଗୋପା ଦେବକୀଙ୍କ କଥା କହୁଥିଲେ । ଦେବକୀ ବହୁତ ସରଳ ପ୍ରକୃତିର । ସେ ସମସ୍ତଙ୍କୁ ବିଶ୍ୱାସ କରନ୍ତି । ଦେବତାଙ୍କ ଠାରେ ଅଚଳା ଭକ୍ତି । ସେ ବି ବସୁଦେବଙ୍କୁ ବିଭା ହେବା ପାଇଁ ରାଜି, କିନ୍ତୁ କଂସର ଢଙ୍ଗଢ଼ାଙ୍ଗରେ ସେ ବହୁତ ଡରି ଯାଇଛନ୍ତି । କଂସକୁ ସେ ବିଶ୍ୱାସ କରିପାରୁ ନାହାନ୍ତି । ସେ କହିଲା, 'ବସୁଦେବ ଦେବକୀଙ୍କର ବିଭାଘର ତ ଗୋଟାଏ ଆଦର୍ଶ ବିଭାଘର । ଦେଖ କ'ଣ ହେଉଛି ।'

'ସେ ଯାହା ହେଉ', ଦେବପ୍ରିୟ କହିଲା, 'ବସୁଦେବ ଦେବକୀଙ୍କ ପରି ଭଲ ଲୋକଙ୍କର ବିଭାଘର ନିଶ୍ଚୟ ମଙ୍ଗଳକର ହେବ ।'

ଅରିନ୍ଦମର ଭାନୁପ୍ରକାଶ କହୁଥିବା ବ୍ୟାସଦେବଙ୍କ କଥା ମନେ ପଡ଼ିଲା – ବସୁଦେବ ଓ ଦେବକୀଙ୍କୁ ବହୁତ କଷ୍ଟ ଭୋଗିବାକୁ ହେବ । ସେ କହିଲା, 'ତାହାହିଁ ହେଉ । ଭଗବାନ କରନ୍ତୁ, ଏ ବିଭାଘର ମଙ୍ଗଳକର ହେଉ ।'

କଂସର ମଥୁରାକୁ ଫେରିବା ନିକଟ ହୋଇ ଆସିଲା । ପ୍ରତିଦିନ ପ୍ରାୟ ଖବର ଆସୁଥାଏ । ମୁଖିଆମାନେ ପୂର୍ବ ଦ୍ୱାର ପାଖରେ ଅତି ଆଡ଼ମ୍ବରରେ ସମ୍ବର୍ଦ୍ଧନା ସଭାର ଆୟୋଜନ କଲେ । ଏହି ସମୟରେ ଦିନେ ଅରିନ୍ଦମ ପାଖକୁ ଗୋକୁଳ ନନ୍ଦଙ୍କ ଘରକୁ ଯିବାପାଇଁ ଖବର ଆସିଲା । ସେଦିନ ପୂର୍ଣ୍ଣମୀ, ଗୋକୁଳରେ କ'ଣ ଉତ୍ସବ ଥାଏ । ଉପର ଘାଟରେ ନଈ ପାରି ହୋଇ ଗୋକୁଳରେ ସନ୍ଧ୍ୟା ସନ୍ଧ୍ୟା ଅରିନ୍ଦମ ପହଞ୍ଚିଲା । ଉତ୍ସବ ଆରମ୍ଭ ହେବାକୁ ଡେରି ଥାଏ । ସମସ୍ତେ ନନ୍ଦଙ୍କ ଘର ବାହାରେ ଘାସ ପଡ଼ିଆରେ ଗୋଲ ହୋଇ ବସିଥାନ୍ତି । ଅରିନ୍ଦମ ଦେଖିଲା ଭାନୁପ୍ରକାଶ ଗିରିବ୍ରଜରୁ ଫେରି ଆସିଲେଣି । ଭାନୁପ୍ରିୟ ଆସିଛନ୍ତି, ସୌରଦେବ ଓ ଗୋପା ବି, ଏବଂ ଆଉ ଜଣେ । ସେ ପାଖକୁ ଯାଇ ଦେଖି ଆଶ୍ଚର୍ଯ୍ୟ ହେଲା - ସତ୍ୟକାମ ! ସତ୍ୟକାମ କାହିଁକି ଆସିଛନ୍ତି ? ତାଙ୍କର ଆଶ୍ରମ ? ସେ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲା ।

ଭାନୁପ୍ରକାଶ ସାମାନ୍ୟ ହସିଲେ । କହିଲେ, 'ଅରିନ୍ଦମ, ତୁମେ ସତ୍ୟକାମଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଉଛ ବୋଧେ । ସତ୍ୟକାମ ଏଠି ନୂଆ ନୁହନ୍ତି । ସେ ଆଗରୁ ବି ଆସିଛନ୍ତି । ତୁମେ ତାଙ୍କୁ କେବେ ଆଗରୁ ଦେଖି ନ ଥିଲ, ସେହି ଯୋଗୁଁ । ସତ୍ୟକାମ, ତୁମେ ଅରିନ୍ଦମକୁ କୁହ, କାହିଁକି ଆସିଛ ।'

ସତ୍ୟକାମ ହସହସ ମୁହଁରେ ଅରିନ୍ଦମକୁ ଚାହିଁଲେ, କହିଲେ – 'ଭାନୁପ୍ରକାଶ ଠିକ୍ କହୁଛନ୍ତି । ମୁଁ ଏଠାକୁ ଆଗରୁ ଆସିଛି । ସୌରଦେବ, ନନ୍ଦ, ଯଶୋଦା, ଅନ୍ୟ ଗୋପାଳମାନେ ଓ ଅନ୍ୟାନ୍ୟମାନେ ମଧ୍ୟ ମୋର ପୂର୍ବ ପରିଚିତ । ମୋର ଘରଦ୍ୱାର ଉଚ୍ଛନ୍ନ ହେଲାପରେ ମୁଁ ଯେତେବେଳେ ପାଗଳଙ୍କ ପରି ଏଆଡ଼େ ସେଆଡ଼େ ବୁଲୁଥିଲି,

ବ୍ୟାସଦେବଙ୍କ ସହିତ ମୋର ଦେଖାହେବା ଆଗରୁ, ମୁଁ ବେଶ୍ କିଛିଦିନ ଏଇ ମଥୁରାରେ ନନ୍ଦ ଓ ଯଶୋଦାଙ୍କ ଆଶ୍ରୟରେ ଥିଲି । ତେଣୁ ମଥୁରା ତୁମ ଘର, ମୋ' ଘର ବି ଧରିନେଇ ପାର । ତୁମ ବାପାଙ୍କ ସହିତ ମୋର ସେହି ସମୟରେ ଦେଖା । ସେ ମୋତେ ବ୍ୟାସଦେବଙ୍କ ପାଖକୁ ପଠେଇଲେ ଓ ବ୍ୟାସଙ୍କୁ ମୋ' ବିଷୟରେ କହିଥିଲେ ।'

ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲା ସମ୍ପର୍କ ସବୁ କିପରି ଲମ୍ବି ଆସେ । ଆମେ ଜାଣି ନ ଥିବା ବା ବୁଝିପାରୁ ନ ଥିବା ଘଟଣାସବୁ ଘଟେ ଓ ତା'ର ପ୍ରଭାବ ସବୁ ଦୀର୍ଘ ଦିନ ଧରି ରହେ । କିଏ ଏସବୁ କରେ, କେମିତି କରେ, କାହିଁକି କରେ, ଏସବୁ ପ୍ରଶ୍ନର ବୋଧେ ସମାଧାନ ନାହିଁ । ଖାଲି ଘଟେ, ଏଇଟା ହିଁ ସତ୍ୟ । ନଚେତ୍, ସତ୍ୟକାମଙ୍କର ମଥୁରା ସହିତ ସମ୍ପର୍କ, ନନ୍ଦ ଯଶୋଦାଙ୍କ ସହିତ ସମ୍ପର୍କ, ଏକଥା ସେ ସ୍ୱପ୍ନରେ ସୁଦ୍ଧା ଭାବିପାରି ନ ଥିଲା ।

ସତ୍ୟକାମ କହୁଥାନ୍ତି – 'ଜରାସନ୍ଧ କଂସକୁ ନିଜର ଜୋଇଁ କରିନେବ, ନିଜର ଦି ଝିଅଙ୍କୁ ତା ସହିତ ବିଭା ଦେବ ଏକଥା ଆମେ କେହି ଭାବି ନ ଥିଲୁ । କାରଣ କଂସ ଜରାସନ୍ଧର ଜୋଇଁ ହେବାର ସମାସ୍କନ୍ଧ ଲୋକ ନୁହେଁ । ଜରାସନ୍ଧ ଚକ୍ରବର୍ତ୍ତୀ । ଆର୍ଯ୍ୟାବର୍ତ୍ତର ଯେ କୌଣସି ରାଜା ବା ରାଜପୁତ୍ର ଜରାସନ୍ଧ ଘରେ ବନ୍ଧୁ କରିବା ପାଇଁ ଖୁସିରେ ରାଜି ହେବେ । ମଥୁରା ରାଜ୍ୟର ବିଶେଷ ପ୍ରଭାବ ନାହିଁ । ଉଗ୍ରସେନଙ୍କୁ ରାଜା କୁହାଗଲେ ବି ସେ ରାଜା ନୁହନ୍ତି, ଗୋଷ୍ଠୀ ମୁଖ୍ୟ । ତା' ଛଡ଼ା କଂସର ଜନ୍ମ ଘେନି ନାନା କଥା ଶୁଣାଯାଏ । କଂସ ଯେତେବେଳେ ମଲ୍ଲ କୁସ୍ତିରେ ଯୋଗ ଦେବାକୁ ଆସିଲା ଆମେ କେହି ଗୁରୁତ୍ୱ ଦେଇ ନ ଥିଲୁ । ପାଞ୍ଚାଳର ସୂର୍ଯ୍ୟସଂକାଶ ଆର୍ଯ୍ୟାବର୍ତ୍ତର ଜଣାଶୁଣା ଶ୍ରେଷ୍ଠ ମଲ୍ଲ । କିନ୍ତୁ ଯେତେବେଳେ ତାଙ୍କୁ ମାରିଦିଆଯାଇ କଂସକୁ ଶ୍ରେଷ୍ଠ ମଲ୍ଲ ଭାବରେ ଘୋଷଣା କରାଗଲା ଆମ ସମସ୍ତଙ୍କର ସନ୍ଦେହ ଆସିଲା । ଭାନୁପ୍ରକାଶ କହିଥିଲେ – ଏ ଗୋଟାଏ ଲମ୍ବା ଯୋଜନାର କଥା । ମୋର ବି ସେଇଆ ମନେହେଲା । ତା'ପରେ ଯେତେବେଳେ କଂସ ଜରାସନ୍ଧର ଝିଅଙ୍କୁ ବିଭାହେବ ଏକଥା ଜଣାଗଲା ଆମ ମନରେ ଆଉ ସନ୍ଦେହ ରହିଲା ନାହିଁ । ଏ ନିଶ୍ଚୟ ଗୋଟାଏ ମତଲବର କଥା । ଜରାସନ୍ଧ ପରି ଜଣେ ଅତ୍ୟନ୍ତ ଚତୁର ଲୋକ କଂସକୁ ନିଜର ଜୋଇଁ କରି ବାଛିବା ରାତିରେ ଶୋଇ ସକାଳେ ଉଠିବା କଥା ନୁହେଁ । ଅନ୍ୟ ଉଦ୍ଦେଶ୍ୟ ଅଛି । କଂସ ବିଷୟରେ ମଥୁରା ଲୋକଙ୍କର ଧାରଣା ଆଦୌ ଭଲ ନୁହେଁ ଆମେ ଜାଣିଥିଲୁ । ସେ ଯେ ଅତ୍ୟନ୍ତ ନିଷ୍ଠୁର, ନିର୍ଦ୍ଦୟ, ଯେ କୌଣସି କୁତ୍ସିତ କାମ ବିନା ଦ୍ୱିଧାରେ


Digitized by srujanika@gmail.com

କରିପାରିବ, ଆଉ ଜରାସନ୍ଧର ସମ୍ପୂର୍ଣ୍ଣ ବଚସ୍କର ହେବ, ଏଇଟାହିଁ ବଡ଼ କଥା । ନିଜେ ଧରା ନ ପଡ଼ି ତା ଜରିଆରେ ଯେ କୌଣସି କାମ ସେ କରେଇ ପାରିବ ଏଇଟା ହିଁ ସେ ଚାହୁଁଥିଲା । ତା ବି ହେଲା । କଂସ ମଥୁରାକୁ ଫେରି ଯାହା ଯାହା ସବୁ ଘଟୁଛି ସେ ସବୁ ପଛରେ ଜରାସନ୍ଧ । ଖାଲି ମଥୁରା ଭିତରେ ନୁହେଁ, କଂସ ଯେ ସୈନ୍ୟସାମନ୍ତ ଧରି ରାଜ୍ୟ ଜୟ କରିବା ପାଇଁ ଗଲା ସେ ବି ସେହି ଯୋଜନା । ସେ ରାଜ୍ୟ ସବୁ ମଥୁରାର ଅଧୀନ ହେବେନି, ମଗଧର ଅଧୀନ ହେବ ।'

ସତ୍ୟକାମ କିଛି ସମୟ ଚୁପ କରିଗଲେ । ଅରିନ୍ଦମ ମନରେ ଗୋଟାଏ ପ୍ରଶ୍ନ ବାରମ୍ବାର ଉଙ୍କି ମାରୁଥିଲା । ଏସବୁ ଠିକ୍, କିନ୍ତୁ ସେ ନିଜର ଆଶ୍ରମ ଛାଡ଼ି ମଥୁରା ଆସିଲେ କାହିଁକି ? ଆଶ୍ରମର ଦାୟିତ୍ୱ ଏତେ ବେଶି ଯେ ସାଧାରଣ ଭାବରେ ସେ ଆଶ୍ରମ ଛାଡ଼ି ଆସନ୍ତି ନାହିଁ । ଏକଥା ଭାନୁପ୍ରକାଶ ବି ଜାଣନ୍ତି । ସତ୍ୟକାମ ଆଶ୍ରମ ଛାଡ଼ି ଆସିବା କଥା ଖାଲି ମଥୁରା ବୁଲି ଆସିବା କଥା ନୁହେଁ ।

ଅରିନ୍ଦମର ମନୋଭାବ ସତ୍ୟକାମ ଯେପରି ବୁଝି ପାରିଲେ । କହିଲେ, 'ତୁମର ମନୋଭାବ ମୁଁ ବୁଝିଛି ଅରିନ୍ଦମ । ମୁଁ କାହିଁକି ଆସିଲି ? ଭାନୁପ୍ରକାଶ ଚାହୁଁଥିଲେ ମୁଁ ଆସେ, ତା ଛଡ଼ା କୁରୁକ୍ଷେତ୍ରରୁ ଗୁରୁଦେବ ନିର୍ଦ୍ଦେଶ ଦେଲେ ଆସିବା ପାଇଁ । ତୁମ ବାପା ବି ଆସିବା ପାଇଁ ଖବର ଦେଲେ । ତା ଛଡ଼ା ଅନ୍ୟ କଥା ବି ଅଛି । କଂସର ବିଭାଘର ପରେ ଜରାସନ୍ଧ ଯେତେବେଳେ ଜୋଇଁ ବିଦା କଲା, ସୁନା ରୁପା ତ ଯଥେଷ୍ଟ ଦେଲା, ତା ସାଙ୍ଗରେ ସୈନ୍ୟସାମନ୍ତ, ବିଶେଷ କରି ଜରାସନ୍ଧର ରାକ୍ଷସ ସୈନ୍ୟ ବି ଆସିଲେ । ଆଉ ଜରାସନ୍ଧର ଦି' ଜଣ ମନ୍ତ୍ରୀ କାହିଁକି ? ଉତ୍ତର ପାଇବାକୁ ଡେରି ହେଲାନି । ଆମେ ଯାହା ଆଗରୁ ଭାବୁଥିଲୁ ଯେ ଜରାସନ୍ଧ କଂସ ମଥୁରାର ରାଜା ହେବାପାଇଁ ଯୋଗାଡ଼ଯନ୍ତ୍ର କରୁଛି, ତାହାହିଁ ଘଟିଲା । କଂସ ରାଜା ହେଲା । ହୁଏତ ଏଥିରେ ଆମର କିଛି କରିବାର ନ ଥିଲା । ଆମେ ବି ଚୁପ ରହିଲୁ । କିନ୍ତୁ ତା' ପରର ଘଟଣା ଗୋଳମାଳିଆ ।'

'ତା ପରର ଘଟଣା ?' ଅରିନ୍ଦମ ପଚାରିଲା ।

'ହଁ', ସତ୍ୟକାମ କହିଲେ, 'କିଛିଦିନ ପରେ ଖବର ପାଇଲି ଆହୁରି ଅଧିକ ସୈନ୍ୟ ମଥୁରାକୁ ଯାଉଛନ୍ତି । ଭାବିଲି କଂସ ଅଭିଯାନରେ ଯିବ, ସେଇଥିପାଇଁ ବୋଧହୁଏ । କିନ୍ତୁ ତା' ପରେ ପରେ, ବସୁଦେବ ଓ ଦେବକୀର ବିଭାଘର ପାଇଁ କଂସର ଘୋଷଣାର ଖବର ଯାଇ ପହଞ୍ଚିଲା ଓ ପ୍ରାୟ ଏକା ସମୟରେ ଜରାସନ୍ଧର ସବୁଠାରୁ ଦୁଷ୍ଟ ମନ୍ତ୍ରୀ ରଂଜନ ଦେବକୁ ମଥୁରା ପଠାଗଲା । ଏସବୁ ଅଲଗା ଅଲଗା

କଥା । କିନ୍ତୁ ଏ ସବୁକୁ ମିଶେଇ ଦେଲେ ମନେହେଲା ଗୋଟାଏ କିଛି ଭୟଙ୍କର ଦୁଷ୍ଟ ଯୋଜନା ଚାଲିଛି । ଭାନୁପ୍ରକାଶ ଓ ମୁଁ ଆଲୋଚନା କଲୁ । ସ୍ଥିରକଲୁ କଂସ ତା ରାଜ୍ୟ ଜୟ ଅଭିଯାନରୁ ଫେରିଲା ବେଳକୁ ଆମେ ଉଭୟ ମଥୁରାରେ ରହିବା । କ'ଣ ଘଟିବାକୁ ଯାଉଛି ଚାକ୍ଷୁସ ଦେଖିଲା ପରେ ସେ ବିଷୟରେ ଯାହା କିଛି ପ୍ରତିବିଧାନର ବିଚାର କରିବା ।'

ସତ୍ୟକାମ ଚୁପ କଲେ । ସମସ୍ତେ ଚୁପଚାପ ତାଙ୍କ କଥା ଶୁଣୁଥାନ୍ତି । ଭାନୁପ୍ରକାଶ ଅରିନ୍ଦମକୁ ଚାହିଁ କହିଲେ, 'ଶୁଣିଲ ତ, ଆମେ ଭାବିଲୁ ଏଠି ରହିବା ଜରୁରୀ । କଂସ ଆଉ ତିନି ଚାରିଦିନ ଭିତରେ ଫେରି ଆସିବ । ପୂର୍ବ ଦ୍ୱାର ପାଖରେ ସେଥିପାଇଁ ପ୍ରଚୁର ଆୟୋଜନ ଚାଲିଛି । ତା'ପରେ କ'ଣ ଘଟିବ ଜାଣିବା ଦରକାର ।'

'ମୁଁ ଭାବୁଛି କଂସ ସାଙ୍ଗେ ସାଙ୍ଗେ କିଛି କରିବନି ।' କହିଲେ ସୌରଦେବ । 'ସେ କିଛିଦିନ ସମୟ ନେବ । ତାପରେ ଯାହା ହେବ । ମଥୁରାର କିଛି କିଛି ପୁରୁଣା ବୟସ୍କ ସୈନ୍ୟ ଫେରିଆସିଲେଣି । ସେମାନେ କଂସର ଅଭିଯାନ ବିଷୟରେ ଯାହା କହୁଛନ୍ତି ଯା ଇଚ୍ଛା ତା, ଶୁଣି ହେବନି ।'

'ମାନେ ?' ସତ୍ୟକାମ କହିଲେ - 'କଂସର ଅଭିଯାନ ସମ୍ପର୍କରେ ଯାହାସବୁ ଖବର ଆସୁଛି ସେସବୁ ମିଛ ?'

'ନା, ତା ନୁହେଁ ।' କହିଲେ ସୌରଦେବ । 'ସେ ରାଜ୍ୟ ଜୟ କରିଛି ତା ଠିକ୍ । କିନ୍ତୁ ପ୍ରତ୍ୟେକ ରାଜ୍ୟରେ ସେ ଯେଉଁ ଭୟଙ୍କର ଅତ୍ୟାଚାର କରିଛି ତା'ର ତୁଳନା ନାହିଁ । ସେ ସୈନ୍ୟମାନେ ବି ସେସବୁ ବର୍ଣ୍ଣନା କଲାବେଳେ କାନ୍ଦି ପକଉଥାନ୍ତି । ସୈନ୍ୟମାନେ ଯୁଦ୍ଧରେ ପରସ୍ପରକୁ ମାରିବେ, ସେ ତ ଘଟିବ । ସେଥିରେ ଭାବିବାର କିଛି ନାହିଁ । କିନ୍ତୁ ବିନା କାରଣରେ ଶହ ଶହ ସାଧାରଣ ଲୋକଙ୍କୁ ମାରି ପକେଇବା - ପିଲା, ବୁଢ଼ା, ସ୍ତ୍ରୀ ଲୋକ, ଆଶ୍ଚର୍ଯ୍ୟ ! ଏକଥା ଶୁଣା ନ ଥିଲା । ଲୋକ ଅତ୍ୟନ୍ତ ନୃଶଂସ ନ ହେଲେ ତା କରେ ନା । ସେ ଯେତେ ରାଜ୍ୟକୁ ଯାଇଛି ଏକା କଥା । ରାଜାମାନଙ୍କୁ ତ ହାଣିଛି କାଟିଛି । ଅନେକଙ୍କୁ ବନ୍ଦୀକରି ଆଣିଛି । ତା' ଛଡ଼ା ଶହ ଶହ ସଂଖ୍ୟାରେ ସାଧାରଣ ନିରୀହ ଲୋକଙ୍କୁ ହତ୍ୟା କରିଛି, ଘରଦ୍ୱାର ଜାଳି ଦେଇଛି, ଆଉ ତା'ର ସେ ରାକ୍ଷସ ସୈନ୍ୟଗୁଡ଼ା ମନଇଚ୍ଛା ସ୍ତ୍ରୀଲୋକମାନଙ୍କୁ ବେଢ଼ିତ କରିଛନ୍ତି ଓ ସେମାନଙ୍କର ସତୀତ୍ୱ ନେଇଛନ୍ତି । କଂସ ଯୁଆଡ଼େ ଯାଇଛି ସେଆଡ଼େ ହାହାକାର ପଡ଼ି ଯାଇଛି, ଲୋକମାନେ ଗାଁ ଗଣ୍ଡା ଛାଡ଼ି ଜଙ୍ଗଲକୁ ପଳେଇଛନ୍ତି, ସହରକୁ ସହର ପଦା ହୋଇଯାଇଛି ।'


Digitized by srujanika@gmail.com

ସମସ୍ତେ ସ୍ତବ୍ଧ ହୋଇ ଶୁଣୁଥାନ୍ତି । କାହାରି ମୁହଁରେ କଥା ନାହିଁ । ଗୋଟାଏ କଡ଼କୁ ବସି ଯଶୋଦା ଓ ରୋହିଣୀଙ୍କ ଆଖିରୁ ଝରଝର ଲୁହ ବହି ଯାଉଥାଏ । 'ଏ ତ ଜରାସନ୍ଧକୁ ବି ଟପିଗଲା ।' ଅସ୍ଫୁଟ ସ୍ୱରରେ କହିଲେ ସତ୍ୟକାମ । 'ନାଁ, ଏ ଜରାସନ୍ଧର ଶିକ୍ଷା', କହିଲେ ଭାନୁପ୍ରକାଶ, 'ଜରାସନ୍ଧ ଏଇଆ ହିଁ ଚାହୁଁଥିଲା ।'

'ଆହୁରି ଅଛି', କହିଲେ ସୌରଦେବ, 'ଗୋଟାଏ ରାଜ୍ୟରେ, ନାଗକୂଟ ପାଖରେ ହବ, ଛୋଟ ରାଜ୍ୟ, କିନ୍ତୁ ରାଜା ବଡ଼ ତେଜୀ । ସେ କଂସକୁ ହେଣ୍ଟି ଦେଲା - ସେ କାହାର ଅଧୀନରେ ନାହିଁ, ସେ କର ଦେଇପାରିବନି । କଂସ ପ୍ରଥମେ କିଛି କହିଲା ନାହିଁ । ସେ ରାଜ୍ୟର ସୀମା ବାହାରେ ନିଜ ସୈନ୍ୟସାମନ୍ତଙ୍କୁ ରଖିଲା । ଠିକ୍ ରାତି ଅଧରେ ତା'ର ସୈନ୍ୟମାନେ ସାରା ରାଜ୍ୟକୁ ଖେଦି ଗଲେ ଓ ପ୍ରାୟ ଚାଳିଶ ପଚାଶ ଜାଗାରେ ନିଆଁ ଲଗେଇଦେଲେ ଓ ସେ ନିଆଁ ଭିତରୁ ଯେ ବାହାରି ଆସିଲା ତାକୁ ନିର୍ଦ୍ଦୟ ଭାବରେ ହତ୍ୟା କଲେ । ସକାଳକୁ ସେ ରାଜ୍ୟରେ ଆଉ କେହି ରହିଲେ ନାହିଁ । କିଏ ନିଆଁରେ ପୋଡ଼ିଯାଇଛି ତ, କିଏ ଅଧାପୋଡ଼ା ହୋଇଛି, କାହାର ଗଣ୍ଡିରୁ ମୁଣ୍ଡ ଛିଣ୍ଡି ଯାଇଛି ତ କା'ର ହାତ ଗୋଡ଼ ନାହିଁ । କି ବିକଟାଳ ଦୃଶ୍ୟ ! ମଥୁରାର କିଛି ପୁରୁଣା ସୈନ୍ୟ କଂସକୁ ଅନୁରୋଧ କଲେ ଏସବୁ ନ କରିବା ପାଇଁ, ସାଧାରଣ ଲୋକଙ୍କୁ ନ ମାରୁ । ତା ଫଳ ତାଙ୍କୁ ଭୋଗିବାକୁ ହେଲା । କଂସର ଆଦେଶରେ କିଛି ପୁରୁଣା ସୈନ୍ୟଙ୍କୁ ହାଣି ଦିଆଗଲା ।' ସୌରଦେବ ଆଉ କ'ଣ କହିବାକୁ ଯାଉଥିଲେ । ନନ୍ଦ କହିଲେ, 'ସୌରଦେବ ଥାଉ । ଆଉ କ'ଣ ଜାଣିବା ? ଯାହା ଜାଣିବା କଥା ଜାଣିଗଲେ । ଏଇ ଆମର ମଥୁରାର ରାଜା ! ଇଏ ଆମକୁ କ'ଣ ରକ୍ଷା କରିବ ? ଏ ତ ଆମ ସମସ୍ତଙ୍କୁ ଜଣେ ପରେ ଜଣେ ଶେଷ କରିଦେବ ।'

'ଆଉ ଗୋଟାଏ ଘଟଣା ଶୁଣ', ସୌରଦେବ କହିଲେ – 'ଏ କଂସ ଫେରିବା ସମୟର ଘଟଣା । ଯମୁନା ତଳ ଆଡ଼କୁ କେଉଁଠି ହେବ । ଗୋଟାଏ କୋଉ ବଡ଼ ଗାଁ ପାଖରେ ଯମୁନା କୂଳରେ, କଂସର ଶିବିର ପଡ଼ିଥାଏ । ସକାଳେ ଗାଁର ସ୍ତ୍ରୀଲୋକମାନେ ନଈକୁ ଗାଧେଇବା ପାଇଁ ଆସିଥାନ୍ତି । କଂସର ସୈନ୍ୟମାନଙ୍କର ନଜର ପଡ଼ିଗଲା । ତା'ପର ସେ କି ଅବସ୍ଥା । ଯେମିତି ମିଠେଇ ଖିଆ ହଉଛି କି ଟଙ୍କା ପଇସା ଲୁଟି ହଉଛି । ସବୁ ସୈନ୍ୟମାନେ ଗାଧୁଆ ଘାଟକୁ ଝାମ୍ପି ପଡ଼ିଲେ । କିଏ ଗାଧେଇବାକୁ ଯାଉଛି, କିଏ ଗାଧୋଇଛି, କିଏ ଅଧା ଗାଧୁଆ ହେଇଛି, ସବୁ ସ୍ତ୍ରୀ ଲୋକଙ୍କୁ ଟେକି ଆଣିଲେ । ଟୋକୀ, ବୁଢ଼ୀ, ଅଧାବୁଢ଼ୀ କି ପିଲା, କିଛି ପ୍ରଭେଦ ରହିଲା ନାହିଁ । ଜଣେ ଦି'ଜଣ କିଏ ପୁରୁଣା ସୈନ୍ୟ ଯାଇ କଂସ ପାଖରେ ଆପତ୍ତି କଲେ, କହିଲେ ଏ ଭଲ କାମ ନୁହେଁ, ବନ୍ଦ କର । କଂସ ଟିକେ ଚାହିଁଲା, କହିଲା –

ମରିବାକୁ ଇଚ୍ଛା ଅଛି କି ? ଯାଅ । ବାସ୍ । ହରିଲୁଟ୍ ହେଇଗଲା । ସେଇ ଅଜଣା ଗାଁରୁ ଗାଧେଇବାକୁ ଆସିଥିବା ସ୍ତ୍ରୀଲୋକମାନଙ୍କ ଭିତରୁ ଜଣେ ହେଲେ କେହି ଫେରିଯାଇ ପାରିଲା ନାହିଁ । କୁଢ଼ କୁଢ଼ ଶବ ସେଇଠି ପଡ଼ି ରହିଲା ।'

'ଆଜି ଏଇ ଲୋକକୁ ସମ୍ବର୍ଦ୍ଧନା ଦିଆଯାଉଛି ! ଏ ତ କାନ୍ଥା କଥା ? ଗୋଟାଏ କିଛି କରିବାକୁ ହେବ ।' କହିଲା ଅରିନ୍ଦମ ।

'କିଛି କରିବାକୁ ହବନି, ଅରିନ୍ଦମ । ତୁମେ ପାଗଳ ହେଲ କି ?' କହିଲେ ଭାନୁପ୍ରକାଶ, 'ତୁମକୁ ଖଣ୍ଡ ଖଣ୍ଡ କରି ହାଣିଦେବେ । ତୁମେ ଭାବୁଛ କି କଂସ ତୁମର ଚିହ୍ନା, ତୁମର ବାପାଙ୍କୁ ସମସ୍ତେ ଜାଣନ୍ତି, ମାନନ୍ତି, ତୁମକୁ କେହି କିଛି କହିବେ ନାହିଁ । ଭୁଲ । କଂସ ପାଖରେ ଚିହ୍ନା ପରିଚୟର ମୂଲ୍ୟ ନାହିଁ । ମାନସମ୍ମାନର ପ୍ରଭେଦ ନାହିଁ । ସେ ରାଜ୍ୟ ଜୟ କରି ଫେରିଛି । କଡ଼ା ମଦ ପିଇଲା ପରି ତା'ର ଅବସ୍ଥା । ସେ ନିଜକୁ ଜରାସନ୍ଧ ଠାରୁ ବଡ଼ ବୋଲି ଭାବୁଛି । ତମ ପରି ପାଞ୍ଚ ଦଶଟାକୁ ସେ ଆଙ୍ଗୁଠିରେ ଚିପିଲା ପରି ଚିପିଦବ । ଆଉ ତୁମେ କ'ଣ କରି ପାରିବ ? ତୁମେ ଓ ତମର ସାଙ୍ଗମାନେ ଯୁଦ୍ଧ କରି ପାରିବ ? କଂସକୁ ତା ଗାଦିରୁ ହଟେଇଦେଇ ପାରିବ ? ତା' ଛଡ଼ା ତୁମର ଯୋଉ ମୁଖିଆମାନେ କଂସ ପାଇଁ ସମ୍ବର୍ଦ୍ଧନା ଉତ୍ସବ କରିବାକୁ ଯାଉଛନ୍ତି, ତୁମେମାନେ ଯଦି ପାଟିଗୋଳ କରି ତାଙ୍କ ଉତ୍ସବକୁ ଭଣ୍ଡୁର କର, ସେମାନେ ସହ୍ୟ କରିବେ ତ ? ସେମାନେ କ'ଣ କରିପାରିବେ ଭାବ । ତାଙ୍କ ଭିତରେ କଂସର ଲୋକମାନେ ବି ଅଛନ୍ତି । ନାଁ, ନାଁ, ଏସବୁ ପାଇଁ ବର୍ତ୍ତମାନ ସମୟ ନୁହେଁ ।  କଂସ କ'ଣ କରି ଆସିଲା ସେଇଟା ବଡ଼ କଥା ନୁହେଁ, ସେ କ'ଣ କରିବାକୁ ଯାଉଛି ସେଇଟା ହିଁ ବଡ଼ କଥା । ତାକୁ ଦେଖି ଆମେ କ'ଣ କରିପାରିବା ବିଚାର କରିବା । ଏ ହୁ ହା କଥା ନୁହେଁ । ଆମର ରାଗର କଥା ନୁହେଁ । ଗୁରୁଦେବ ବି କହିଛନ୍ତି ପ୍ରଚଣ୍ଡ ବିପଦ ଆସିବ । ଧୈର୍ଯ୍ୟ ଧରି କ'ଣ କରିବ ବିଚାର କରିବ । କଂସକୁ ବାହାର କରିବା ବେଳ ଆସିନି ।'

ସୌରଦେବ ବି ସେହି ଏକା କଥା କହିଲେ - 'କଂସକୁ ବାହାର କରିବା ବେଳ ଆସିନି । ତାକୁ ବାହାର କରିବାକୁ ହେଲେ ଆମେ ଶକ୍ତିଶାଳୀ ହେବା ଦରକାର । ମୁଁ ତ ଯାହା କହିଲି ସେ ଅଳ୍ପ, ଆହୁରି ବହୁତ କଥା ଅଛି । କିନ୍ତୁ ସେତିକିରୁ ଅନ୍ତତଃ କଂସ କୋଉ ଢଙ୍ଗ ନେଲାଣି ବା ନବ ସେକଥା ବୁଝି ହେଉଛି ।'

ସତ୍ୟକାମ କହିଲେ - 'ଏ ଠିକ୍ କଥା । ଯାହା ମନେହେଉଛି କଂସକୁ ଏକମାତ୍ର ଜରାସନ୍ଧ ହିଁ ସଂଯତ କରିପାରେ । କିନ୍ତୁ ସେ ଅତ୍ୟନ୍ତ ଚତୁର । ସେ ବିଚାର କରିବ ତା'ର ସ୍ୱାର୍ଥ କେତେ ଓ ସେହିପରି କାମ କରିବ । ଅତୀତରେ ଯେ ଏପରି ଘଟଣା

ନ ଘଟିଛି ତା ନୁହେଁ । ମହିଷାସୁର କଥା ଭାବ, ବା ରାବଣ, ବା ଏପରିକି ସହସ୍ରାର୍ଜୁନ । ସେ ସମସ୍ତଙ୍କୁ ଆଉ ଗୋଟାଏ ପ୍ରବଳ ଶକ୍ତି ଆସି ଦମନ କରିଚି । ମୋର ବିଶ୍ୱାସ ଏ କଂସ, ଜରାସନ୍ଧ ପାଇଁ ସେହିକଥା ହିଁ ହେବ ।'

ଗୋପା ଚୁପଚାପ ଶୁଣୁଥିଲେ । ସେ କହିଲେ - 'କଂସ ବିଷୟରେ ସୌରଦେବ ଯାହାସବୁ କହିଲେ ସେହିପରି କିଛି କିଛି କଥା ଅନ୍ତଃପୁର ସ୍ତ୍ରୀଲୋକଙ୍କ ପାଖକୁ ବି ଗଲାଣି । କଂସର ଦି ରାଣୀ ଚୁପ୍‌ଚାପ୍ ରହୁଛନ୍ତି, ପ୍ରାୟ କିଛି କଥା କହୁ ନାହାନ୍ତି । କିନ୍ତୁ ତାଙ୍କ ଢଙ୍ଗଢ଼ାଙ୍ଗରୁ ମନେହେଉଛି ସେମାନେ କଂସର ଏ ହଣାକଟାକୁ ପସନ୍ଦ କରୁନାହାନ୍ତି । ଦେବକୀ କିନ୍ତୁ ବହୁତ ଡରି ଯାଇଛନ୍ତି । ସେ କଂସକୁ ବିଶ୍ୱାସ କରିପାରୁ ନାହାନ୍ତି । ତାଙ୍କର ଭୟ ବସୁଦେବଙ୍କ ସହିତ ତାଙ୍କ ବିଭାଘରର ନିଶ୍ଚୟ କୋଉଠି ଗୋଳମାଳ ହେବ ।'

'ବିଭାଘର ସମ୍ପର୍କରେ ଆଉ କିଛି କଥା ଉଠିଲାଣି କି ?' ଭାନୁପ୍ରକାଶ ପଚାରିଲେ ।

'ନାଁ', କହିଲେ ଗୋପା, 'କିଛି ନାହିଁ । ମନେ ହେଉଛି ବିଭାଘର କଥା ସମସ୍ତେ ଯେମିତି ଭୁଲିଗଲେ ?'

ସେମାନେ ସମସ୍ତେ ଗୋକୁଳରେ ଯେଉଁଦିନ ଏକାଠି ହୋଇଥିଲେ ତା'ର ଦୁଇଦିନ ପରେ କଂସର ସମ୍ବର୍ଦ୍ଧନା ଉତ୍ସବର ଦିନ ଠିକ୍ ହୋଇଥିଲା । ଗୋକୁଳରୁ ଫେରି ଅରିନ୍ଦମ ତା'ର ସାଙ୍ଗମାନଙ୍କ ସାଙ୍ଗରେ କଥା ହେଲା । କଂସର ବର୍ବରତା ସମ୍ପର୍କରେ ସମସ୍ତେ କିଛି କିଛି ଶୁଣିଚନ୍ତି । ସେମାନଙ୍କ ମନରେ ବି ପ୍ରଚଣ୍ଡ କ୍ରୋଧ । ସମସ୍ତେ ବି ଭାବୁଥାନ୍ତି କିଛି କରିବା ଦରକାର । କିନ୍ତୁ କେମିତି କ'ଣ କରିହେବ ସେ ବିଷୟରେ କାହାର କିଛି ଧାରଣା ନ ଥିଲା । ବନ୍ଧୁମାନେ ଅନେକ ସମୟ ବସି ଆଲୋଚନା କଲେ । ଗୋଟିଏ କଥା ସ୍ପଷ୍ଟ ହେଲା । ସବୁ ମୁଖିଆମାନେ କଂସକୁ ସମ୍ବର୍ଦ୍ଧନା ଦେବା ସପକ୍ଷରେ ନୁହନ୍ତି । ବିଶେଷ କରି ବୟସ୍କ ମୁଖିଆମାନେ ଖୋଲାଖୋଲି ସମ୍ବର୍ଦ୍ଧନା ଉତ୍ସବକୁ ନାପସନ୍ଦ ନ କଲେ ବି, ଭିତରେ ଭିତରେ ତା'ର ବିରୋଧୀ । ଅଳ୍ପ କିଛି କମ ବୟସର ମୁଖିଆ କଂସର ସମ୍ବର୍ଦ୍ଧନା ଉତ୍ସବ ପାଇଁ ଅତ୍ୟନ୍ତ ଆଗ୍ରହୀ । କାରଣ ବି ସ୍ପଷ୍ଟ । ସେମାନେ କଂସକୁ ପ୍ରଶଂସା କରି ନିଜ ନିଜ ପାଇଁ ସୁବିଧା ପାଇବାକୁ ଚାହାନ୍ତି ।

ଦେବପ୍ରିୟ କହିଲା, 'ଏ ବତୀପେଲାଙ୍କ ପାଇଁ ଗୋଟାଏ ବାଟ । ପ୍ରହାର, ପ୍ରଚଣ୍ଡ ପ୍ରହାର ଦରକାର, ଯେମିତି ଗୋଡ଼ହାତ ଭାଙ୍ଗି ପାଞ୍ଚ ଛଅ ମାସ ଘରେ ପଡ଼ି ରହିବେ ।' ସୁରଂଜନ କହିଲା, 'ଅରିନ୍ଦମ, ତୁ ଯଦି ରାଜି ହବୁ, ଆମେ ତା ବନ୍ଦୋବସ୍ତ


Digitized by srujanika@gmail.com

କରିବୁ ।' ଅରିନ୍ଦମର ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା – ସାବଧାନ ଗ୍ରହ, ସମୟ ଆସି ନାହିଁ ।

ସେ ସାବଧାନ ହୋଇଗଲା । କହିଲା, 'ଶୁଣ, ଯା କହୁଛ ଠିକ୍ । କିନ୍ତୁ ତୁମେ ମୁଖିଆମାନଙ୍କ ବିରୁଦ୍ଧରେ ଯାହା କରିବ, କଂସ ଭାବିବ ତା ବିରୁଦ୍ଧରେ କରାଗଲା । ସେ ଆଉ ଯାହା ବିରୁଦ୍ଧରେ ଯାହା କରୁ, ଅନ୍ତତଃ ଆମ୍ଭମାନଙ୍କ ବିରୁଦ୍ଧରେ କିଛି କରିନାହିଁ । ସେ ଏବେ ବି ଭାବୁଚି ଆମେ ତା' ସପକ୍ଷରେ । ଆମେ କଂସର କେବେ ବନ୍ଧୁ ହୋଇ ପାରିବାନି, ସେକଥା ସେ ଜାଣେ । କିନ୍ତୁ ତା'ର କିଛି ଅନିଷ୍ଟ ନ କଲେ ସେ ଆମକୁ ଘାଣ୍ଟିବାକୁ ଚାହେଁନା । ଏକଥା ଭାବି ଦେଖ, ବର୍ତ୍ତମାନର କଂସ ଆଗ କଂସ ନୁହେଁ । ତା ହାତରେ ବହୁତ କ୍ଷମତା, ତା' କଥା ଶୁଣିବାକୁ ବହୁତ ଲୋକ ପ୍ରସ୍ତୁତ ହୋଇ ରହିଛନ୍ତି । ସେ ଖାଲି ଏଠି ରାଜା ହୋଇଛି ତା ନୁହେଁ । ସେ ରାଜ୍ୟ ଜିଣି ଆସିଛି । ତା ପଛରେ ଜରାସନ୍ଧ । ସେ ବିନା ଦ୍ୱିଧାରେ ରାଜ୍ୟକୁ ରାଜ୍ୟ ପଦା କରିଦେଇ ଆସିଛି, ଶହ ଶହ ଲୋକଙ୍କୁ ହାଣି ଦେଇଛି । ଭାବନା ଏଇଟା ଖାଲି ବାହାରେ ଘଟିଲା । ଏ ଆମ ପାଇଁ ବି ଚେତାବନୀ । ଦରକାର ହେଲେ ସେ ଏଠି ବି ସେଇଆ କରିବ । ଆମର ଶକ୍ତି ନାହିଁ ତା ବିରୁଦ୍ଧରେ ଛିଡ଼ାହୋଇ ପାରିବା । କଥାରେ କାମ ହୁଏନା । କଂସ ବିରୁଦ୍ଧରେ କିଛି କରିବାକୁ ହେଲେ ଆମକୁ ଶକ୍ତି ସଂଗ୍ରହ କରିବାକୁ ହେବ, ପ୍ରସ୍ତୁତ ହେବାକୁ ହେବ । ନାଁ, ନାଁ, ମରାମରି ପିଟାପିଟି ବାଟ ନୁହେଁ । ଆମର ହିଁ କ୍ଷତି ହେବ । ଅନ୍ୟ କଥା ଭାବ ।'

ପୁଣି ଆଲୋଚନା ହେଲା । ଅନ୍ୟ ବାଟ କ'ଣ ହୋଇପାରେ ଚିନ୍ତା କରାଗଲା । ସମସ୍ତେ ଅରିନ୍ଦମ କଥା ମାନିନେଲେ – ସାପ ଦେହରେ ହାତ ମାରି ଲାଭ ନାହିଁ । ନିଜର ହିଁ କ୍ଷତି ହେବ । କିନ୍ତୁ ଚୁପଚାପ ରହିବା ଠିକ୍ ନୁହେଁ, ଗୋଟାଏ କିଛି କରିବାକୁ ହେବ, ଏ ବିଷୟରେ ବି ସମସ୍ତେ ଏକମତ ହେଲେ । ଅରିନ୍ଦମ ପୁଣି କହିଲା, 'ମୁଁ ଗୋଟାଏ କଥା ଭାବୁଛି । ଭାବି ଦେଖ ।'

'ହଁ, କହ', ସମସ୍ତେ ଏକା ସାଙ୍ଗରେ କହିଲେ ।

ଅରିନ୍ଦମ ସଂକ୍ଷେପରେ ଭାନୁପ୍ରକାଶ ଓ ତାଙ୍କର ଲୋକମାନଙ୍କ କଥା କହିଲା । ସେମାନେ କିପରି ମଗଧ ଓ ଅନ୍ୟାନ୍ୟ ରାଜ୍ୟରେ କାମ କରୁଛନ୍ତି । ଏବେ ସେମାନେ ମଥୁରାରେ ଆସି କାମ କରିବେ । ସେମାନେ କେଉଁଠି ମୁହାଁମୁହିଁ ଲଢ଼େଇ କରନ୍ତିନି । କିନ୍ତୁ ଆର୍ଯ୍ୟାବର୍ତ୍ତର ଅତ୍ୟାଚାରୀ ରାଜାମାନଙ୍କ ବିଷୟରେ ଲୋକମାନଙ୍କୁ କହନ୍ତି, ସେମାନଙ୍କୁ ସଚେତ କରନ୍ତି । ସାଧାରଣ ଭାବରେ ଲୋକମାନେ ରାଜାମାନଙ୍କର ସବୁକଥା ମାନି ନିଅନ୍ତି । ସେମାନେ କହନ୍ତି ସେଇଟା ହିଁ ଭୁଲ । ରାଜାମାନେ ଭଲ

କାମ କଲେ ତାକୁ ସମର୍ଥନ କର । କିନ୍ତୁ ଭୁଲ କାମ କଲେ, ପ୍ରଜାମାନଙ୍କର ଅନିଷ୍ଟ କଲେ ତାକୁ ପ୍ରତିବାଦ କର । ଲୋକମାନଙ୍କୁ ସେମାନଙ୍କର ଶକ୍ତି ବିଷୟରେ ସେମାନେ ସଚେତ କରନ୍ତି । ରାଜଶକ୍ତି ଠାରୁ ଲୋକଶକ୍ତି ଯେ ଯଥେଷ୍ଟ ବଡ଼, ଯଥେଷ୍ଟ ଅଧିକ ଶକ୍ତିଶାଳୀ, ଏକଥା ସେମାନେ ବୁଝନ୍ତୁ, ଏହାହିଁ ଉଦ୍ଦେଶ୍ୟ । ରାଜଶକ୍ତି ଜଣକର, ସେହି ଜଣେ ଲୋକର ସ୍ୱାର୍ଥରେ ତାହା ବ୍ୟବହାର ହୁଏ । କିନ୍ତୁ ଲୋକଶକ୍ତି ହଜାର ହଜାର ଲୋକଙ୍କର ମିଳିତ ଶକ୍ତି । ସେ ସ୍ୱାର୍ଥ ସମସ୍ତଙ୍କର । ଥରେ ଲୋକ ଶକ୍ତି ଚେଇଁ ଉଠିଲେ କୌଣସି ରାଜଶକ୍ତିର କ୍ଷମତା ରହେ ନାହିଁ ତା ଆଗରେ ଛିଡ଼ା ହୋଇପାରିବ, ସେ ଜରାସନ୍ଧର ହେଉ, କି କଂସର ହେଉ, କି ଯେ କୌଣସି ଲୋକର ହେଉ ।

ସମସ୍ତେ ଅରିନ୍ଦମ କଥା ଶୁଣୁଥାନ୍ତି ।

ଅରିନ୍ଦମ ପୁଣି କହିଲା, 'ଭାନୁପ୍ରକାଶଙ୍କ ସହିତ ମୋର ମଗଧରେ ପରିଚୟ ହୋଇଥିଲା । କେମିତି ପରିଚୟ ହେଲା, କ'ଣ ହେଲା ମୁଁ ସେ କଥା କହୁନାହିଁ । କିନ୍ତୁ ତାଙ୍କ ସହିତ ପରିଚୟ ହେଲାପରେ ତାଙ୍କ କାମ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମଗଧର ସବୁଆଡ଼େ ତାଙ୍କ ଲୋକ । ଏପରିକି ଜରାସନ୍ଧର କର୍ମଚାରୀମାନଙ୍କ ଭିତରେ, ତାଙ୍କ ସୈନ୍ୟମାନଙ୍କ ଭିତରେ, ଏପରିକି ତାଙ୍କ ଅନ୍ତଃପୁରରେ ସ୍ତ୍ରୀ ଲୋକମାନଙ୍କ ଭିତରେ ବି ତାଙ୍କ ଲୋକ । ଜରାସନ୍ଧଙ୍କର ଏପରି କାମ ନାହିଁ ଯା ଉପରେ ତାଙ୍କର ନଜର ନାହିଁ, ଏପରି ରହସ୍ୟ ନାହିଁ ଯାହାକୁ ସେ ନ ଜାଣନ୍ତି । ପାଣି ତଳେ ତଳେ ପ୍ରବଳ ସ୍ରୋତ ପରି ମଗଧରେ ଭାନୁପ୍ରକାଶଙ୍କର ଆନ୍ଦୋଳନ । ତା'ର ଫଳ ମୁଁ ଯାହାକୁ କହୁଥିଲି ଲୋକଶକ୍ତି, ପ୍ରଚଣ୍ଡ ଲୋକଶକ୍ତି । ତା' ନ ହେଲେ ଜରାସନ୍ଧ ପରି ନିଷ୍ଠୁର ନିର୍ମମ ଲୋକକୁ ପ୍ରତିବାଦ କରିବା ସହଜ ନ ଥିଲା ।'

'ଜରାସନ୍ଧ କ'ଣ ଏକଥା ଜାଣି ନ ଥିଲା ?' ଦେବପ୍ରିୟ ପଚାରିଲା ।

'ହଁ, ଜାଣିଥିଲା । କିନ୍ତୁ ଜାଣିଥିଲେ ବି କ'ଣ କରି ପାରିବ ? ଲୋକଙ୍କୁ ମାରିବ ହାଣିବ, ଏଇ ତ ? କିନ୍ତୁ କେତେ ଲୋକଙ୍କୁ ମାରିବ, କେତେ ଜାଗାରେ ଲୋକଙ୍କୁ ଧରିବ ? ଏ ତ ଜଣେ ଦି' ଜଣ ନୁହଁ । ଧର, ମୁଣ୍ଡ କାଟି ପକା । ସାରା ରାଜ୍ୟର ଲୋକମାନେ ସଚେତ । ତୁମେ ରାଜା ହୁଅ । କିନ୍ତୁ ରାଜାଙ୍କ ପରି ବ୍ୟବହାର କର । କୌଣସି ଦୁର୍ବ୍ୟବହାର କଲେ, ଲୋକଙ୍କର ଅନିଷ୍ଟ କଲେ ଆମେ ସହିବାକୁ ରାଜି ନୋହୁଁ । ଏଇଆ ହେଲା କଥା । ଭାନୁପ୍ରକାଶ ସାଧାରଣ ଲୋକ । କିନ୍ତୁ ତାଙ୍କ ଆନ୍ଦୋଳନ ସାଧାରଣ ଆନ୍ଦୋଳନ ନୁହେଁ ।'

'ତା ହେଲେ ଆମେ ଏଠି କ'ଣ କରିବା ? ଭାନୁପ୍ରକାଶଙ୍କ ସହ ମିଶିବା ?'

ଜଣେ ବନ୍ଧୁ ପଚାରିଲେ ।

'ଭାନୁପ୍ରକାଶଙ୍କ ସହିତ ଆମେ ମିଶିପାରୁ ।' ଅରିନ୍ଦମ କହିଲା, 'କିନ୍ତୁ ବର୍ତ୍ତମାନ ତା'ର ଦରକାର ନାହିଁ । ଭାନୁପ୍ରକାଶ ତାଙ୍କର ସମୟ ଓ ସୁବିଧା ଦେଖି କାମ ଆରମ୍ଭ କରିବେ । ଆମେ ତାଙ୍କରି ଆଦର୍ଶରେ କାମ କରିବା । କିନ୍ତୁ ତାଙ୍କଠାରୁ ଅଲଗା ହୋଇ ଆମେ ଆମର କାମ କରିବା ଭଲ । ଆମର ଉଦ୍ଦେଶ୍ୟ ଗୋଟିଏ - କଂସର ଅତ୍ୟାଚାର ଓ ଦୁର୍ବ୍ୟବହାରକୁ ସଂଯତ କରିବା ।'

ସମସ୍ତେ ରାଜି ହେଲେ । ଏଇଟା ହିଁ ଉଦ୍ଦେଶ୍ୟ । ଆମେ ଚାହୁଁନା କଂସ ସମସ୍ତଙ୍କ ସାଙ୍ଗରେ ଯା ଇଚ୍ଛା ତା ବ୍ୟବହାର କରୁ । ମଥୁରାର ନାଁ ଅଛି, ମାନସମ୍ମାନ ଅଛି, ପରମ୍ପରା ଅଛି । ସମଗ୍ର ଆର୍ଯ୍ୟାବର୍ତ୍ତରେ ମଥୁରା ଗୋଟାଏ ଆଦର୍ଶ ରାଜ୍ୟ । ଏଠିକାର ଲୋକମାନେ ସ୍ୱାଧୀନଚେତା, ଅତ୍ୟନ୍ତ ଖୋଲାମେଲା ଭାବରେ ସେମାନେ ବଞ୍ଚି ଆସିଛନ୍ତି । ସେସବୁ ଯେପରି ନଷ୍ଟ ନ ହୁଏ । କଂସ ସେସବୁ ନଷ୍ଟ କରିବାକୁ ଚେଷ୍ଟା କଲେ ପ୍ରତିବିଧାନ କରିବାକୁ ହେବ ।

ଅରିନ୍ଦମ ବନ୍ଧୁମାନଙ୍କୁ ଚାହିଁଲା । ଅନେକ ଆସିଛନ୍ତି । ସେ ସେମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣେ । କିନ୍ତୁ ମଣିଷର ଲୋଭ, ସ୍ୱାର୍ଥ ତା'ର ବଡ଼ ଦୁର୍ବଳତା । ସେ ଦେଖିଲା ସମସ୍ତେ ଉତ୍ସୁକରେ ତା' ଆଡ଼କୁ ଚାହିଁଛନ୍ତି । ଏ ନୂଆ, ତରୁଣ ଶକ୍ତି । ଏ ଶକ୍ତି ଦମ୍ଭ ହୋଇ ଛିଡ଼ାହେଲେ କୌଣସି କଂସର ଅତ୍ୟାଚାର ବେଶୀଦିନ ଚାଲିପାରିବ ନାହିଁ । ଏହି ଶକ୍ତିରୁ ହିଁ ନୂଆ ଦେଶ, ନୂଆ ଜାତି ତିଆରି ହୁଏ । ଏହି ଶକ୍ତିରୁହିଁ ଦେବତା ଜନ୍ମ ହୁଅନ୍ତି । ତା'ର ଭାନୁପ୍ରକାଶ କହୁଥିବା ବ୍ୟାସଦେବଙ୍କ କଥା ମନେ ପଡ଼ିଲା । ବ୍ୟାସଦେବ କହୁଥିଲେ ମଥୁରାରେ ଦେବତା ଜନ୍ମ ହେବେ । ମଥୁରା ଆର୍ଯ୍ୟାବର୍ତ୍ତକୁ ନୂଆ ବାଟ ଦେଖେଇବ ।

ସେ କହିଲା, 'ଦେଖ, ତୁମ ଭିତରୁ ଯଦି କେହି ଅନ୍ୟ କିଛି ଭାବୁଥାଅ, କୁହ । ମନରେ ଦ୍ୱିଧା ରଖି ଏସବୁ କାମରେ ମିଶିବା ଉଚିତ ନୁହେଁ । ଅସୁବିଧା ଅଛି ।'

'ନାଁ' - ସମସ୍ତେ ଏକ ସ୍ୱରରେ ଜଣେଇଦେଲେ ।

'ଠିକ୍', ଅରିନ୍ଦମ କହିଲା, 'ଆଉ ଗୋଟାଏ କଥା ଅଛି । ଆମେ କ'ଣ କରିବା ନ କରିବା, ସେକଥା ହୁଏତ ସତ ମିଛ କରି କିଏ କିଏ ଯାଇ କଂସ ପାଖରେ କହିପାରନ୍ତି...'

'ଅସମ୍ଭବ'- ଅରିନ୍ଦମକୁ କଥା ଶେଷ କରିବାକୁ ନ ଦେଇ ଦେବପ୍ରିୟ, ସୁରଂଜନ ଓ ଆହୁରି ଚାରି ପାଞ୍ଚଜଣ ଏକା ସାଙ୍ଗରେ ଗର୍ଜି ଉଠିଲେ - 'ଯଦି କେହି ସେମିତି

କରେ, ଆମେ କଥା ଦଉଛୁ ଅରିନ୍ଦମ, ସେ ସତ ମିଛ କହିବାକୁ ବଞ୍ଚି ରହିବ ନାହିଁ ।'

ଅରିନ୍ଦମ ହସିଲା । କହିଲା, 'ନାଇଁ, ନାଇଁ, ଏତେ ଦୂରକୁ ଯିବା ଦରକାର ନାହିଁ । କିନ୍ତୁ ଏମିତି ଘଟିପାରେ । ସେଥିପାଇଁ ସାବଧାନ ରହିବା ଭଲ । ବର୍ତ୍ତମାନ ଶୁଣ । ତୁମେମାନେ ଛୋଟ ଛୋଟ ଦଳ ହୋଇ ସାରା ମଥୁରାରେ ବାଣ୍ଟି ହୋଇଯାଅ, ଘରେ ଘରେ ଲୋକମାନଙ୍କୁ, ମୁଖିଆମାନଙ୍କୁ, ଗୋଟାଏ କଥା କହିବା ଦରକାର, ଯେ କଂସ କ'ଣ, କିପରି ଅତ୍ୟାଚାରୀ, କିପରି ରକ୍ତ ପିପାସୁ । ରାଜ୍ୟ ଜୟ କରିବା ଆଳରେ ସେ ଶହ ଶହ ନିରୀହ ଲୋକଙ୍କୁ ହତ୍ୟା କରିଛି, ପିଲା, ବୁଢ଼ା, ସ୍ତ୍ରୀ ଲୋକ ସମସ୍ତଙ୍କୁ । ସେ ଅନ୍ୟ ରାଜ୍ୟରେ ଯାହା କରିଛି କାଲି ଦରକାର ହେଲେ ମଥୁରାରେ ବି କରିବ । ତା'ର ବିବେକ ନାହିଁ । ସେ ନିଜର ସ୍ୱାର୍ଥ ଓ କ୍ଷମତା ପାଇଁ ଯେ କୌଣସି କାମ କରିପାରେ । ମଥୁରାରେ ଜରାସନ୍ଧର ସୈନ୍ୟ, ବିଶେଷ କରି ରାକ୍ଷସ ସୈନ୍ୟମାନେ ଅଛନ୍ତି କାହିଁକି ? ମଥୁରା କ'ଣ ଜରାସନ୍ଧର ଅଧୀନ ? ମଥୁରାରେ ତ କଂସ ବିରୁଦ୍ଧରେ କିଛି କଥା ନାହିଁ । ତା'ହେଲେ ସେମାନେ ଏଠି କରୁଛନ୍ତି କ'ଣ ? ମଥୁରାର ଲୋକମାନଙ୍କ ସାଙ୍ଗରେ ଖରାପ ବ୍ୟବହାର କରୁଛନ୍ତି, ସେମାନଙ୍କୁ ଭୟଭୀତ କରୁଛନ୍ତି । ଲୋକମାନେ ଜାଣନ୍ତୁ କଂସ କ'ଣ । ସେମାନେ ଯଦି ଭାବୁଥାନ୍ତି କଂସ ଦ୍ୱାରା ମଥୁରାର ମାନସମ୍ମାନ ବଢ଼ିବ, ଭୁଲ । ମାନସମ୍ମାନ ତଳେ ଲୋଟିବ । କଂସ ଫେରି ଆସୁଛି । ସେ ଯୋଉ ଲୋକ ସେ ଚୁପ୍ ହୋଇ ବସିବନି । ସେ ନିଶ୍ଚୟ ମଥୁରାରେ କିଛି କରିବାକୁ ଚେଷ୍ଟା କରିବ । ସେ ମଥୁରା ଲୋକଙ୍କୁ ବିଶ୍ୱାସ କରେ ନା । ସେ ଭାବେ ମଥୁରାରେ ସମସ୍ତେ ତା'ର ଶତ୍ରୁ । ଲୋକମାନେ ବୁଝନ୍ତୁ, ସାବଧାନ ରୁହନ୍ତୁ ।'

ଅରିନ୍ଦମ ଚୁପ୍ କଲା । ଏକା ସାଙ୍ଗରେ ଏତେଗୁଡ଼ା କଥା କହିବା ତା'ର ଅଭ୍ୟାସ ନୁହେଁ । କିନ୍ତୁ ଏ ଜୀବନ ମରଣ କଥା । କଂସ ନାଁରେ ଯେଉଁ ଭୟଙ୍କର ଦୁର୍ଯୋଗ ମଥୁରା ଉପରକୁ ମାଡ଼ି ଆସୁଛି ଲୋକେ ସେ ବିଷୟରେ ସଚେତ ହେବା ଦରକାର ।

ସମସ୍ତେ ଚୁପ୍, ଜଣେ କିଏ ବନ୍ଧୁ ପଚାରିଲା, 'ଅରିନ୍ଦମ, ତୁମେ ଭାବୁଛ କଂସ ମଥୁରାର ବଡ଼ ଶତ୍ରୁ ?'

ଅରିନ୍ଦମ କହିଲା, 'ମୁଁ ଭାବୁନାହିଁ । ଏଇଟା ହିଁ ସତ । ଅପେକ୍ଷା କର । ତୁମେ ବି ଭାବିବ । ବିପଦ ଆସିବା ଆଗରୁ ବିପଦ ବିଷୟରେ ସତର୍କ ହେବା ବୁଦ୍ଧିମାନ ଲୋକର କାମ ।'

ଦେବପ୍ରିୟ କହିଲା, 'ଅରିନ୍ଦମ, ତୁ ଠିକ୍ କହୁଛୁ । କଂସ ନାଗସାପ ପରି,


Digitized by srujanika@gmail.com

ତାକୁ ବିଶ୍ୱାସ ନାହିଁ । ଜରାସନ୍ଧର ଖାଲି ସୈନ୍ୟ ନୁହନ୍ତି । ତିନି ତିନିଟା ମନ୍ତ୍ରୀ ଆସି ବସିଛନ୍ତି । କାହିଁକି ? ତା ସୈନ୍ୟମାନେ ମଥୁରାରେ ସାରା ରାତି ପଇଁତରା ମାରୁଛନ୍ତି । କାହିଁକି ? ମୁଁ ଶୁଣିଲି ସେ ଖବର ପଠେଇଛି ତା' ସମ୍ବର୍ଦ୍ଧନା ସଭାରେ ତା'ର ସୈନ୍ୟମାନେ ଚାରିପାଖରେ ଜଗି କରି ରହିବେ, ମଥୁରା ଲୋକଙ୍କୁ ତା'ର ବିଶ୍ୱାସ ନାହିଁ । ଆଉ ଯେତେ ଲୋକ କହିବେ ସମସ୍ତେ ଯେପରି ତାକୁ ପ୍ରଶଂସା କରି କହନ୍ତି, ଅନ୍ୟ କଥା ନୁହେଁ ।'

'ହୁଁ, ମୁଁ ବି ସେ କଥା ଶୁଣିଛି', ଅରିନ୍ଦମ କହିଲା, 'କଂସ ସେଇ ସଭାରେ କି ତା ପରେ ପରେ ହୁଏତ ବସୁଦେବ ଦେବକୀ ବିଭାଘର କଥା ଘୋଷଣା କରିବ । ମଥୁରାରେ ଏଇଟା ତା'ର ପ୍ରଥମ ବଡ଼ କାମ । ସେଇଠୁ, ମୋର ମନେହୁଏ, ତା'ର ମତଲବ କଥା ବୁଝିହେବ ।'

'ଆଚ୍ଛା, ଅରିନ୍ଦମ, ଆମେ ସେଇ ସଭାକୁ ଯିବା କି ?' ସୁରଂଜନ ପଚାରିଲା ।

'ହଁ, ଯିବା ଦରକାର'। ଅରିନ୍ଦମ କହିଲା, 'ଯା' ବିରୁଦ୍ଧରେ ଆମେ ଲଢ଼େଇ କରିବା ତା'ର ଟିକିନିଖି କଥା ଜାଣିବା ଦରକାର ।'

ବନ୍ଧୁମାନେ ଗୋଟାଏ ସଂଗଠନର ନକ୍ସା ତିଆରି କଲେ । ଛୋଟ ଛୋଟ ଦଶଟା ଦଳ ଗଢ଼ା ହେଲା ଓ କିଏ କୋଉ ଦଳରେ ରହିବେ ଠିକ୍ ହେଲା । ଏ ସମସ୍ତଙ୍କୁ ଦେଖାଶୁଣା କରିବାକୁ ଦେବପ୍ରିୟ ଓ ସୁରଂଜନ ଗୋଟିଏ ଦି'ଜଣିଆ ଦଳ କଲେ ଓ ଠିକ୍ ହେଲା ସେଇମାନେ ଅରିନ୍ଦମ ସହିତ ସମ୍ପର୍କ ରଖିବେ ଓ କାମକୁ ଆଗେଇ ନେବେ । ଅରିନ୍ଦମ ଭାନୁପ୍ରକାଶ ପ୍ରଭୃତିଙ୍କ ସହ ସମ୍ପର୍କ ରଖି ଯାହା କରିବା କଥା କରିବ ।

ବନ୍ଧୁମାନେ ଗଲାପରେ ଅରିନ୍ଦମ ଅନେକ ସମୟ ସ୍ଥିର ହୋଇ ବସି ରହିଲା । ଏ ତ କାମର ଆରମ୍ଭ, ଶେଷ କେଉଁଠି ? ଆଉ ଦି ଦିନ ପରେ କଂସର ସମ୍ବର୍ଦ୍ଧନା ସଭା । ଛାମୁଡ଼ିଆ ବନ୍ଧା ହୋଇ ସଭା ମଣ୍ଡପ ତିଆରି ସରିଲାଣି । କଂସ ନିଜେ ବି ଚାହେଁ ତା'ର ସଭା ଖୁବ୍ ଜାକଜମକରେ ହେଉ । ସେ ପାଖଆଖ ରାଜ୍ୟରୁ ତା'ର ବନ୍ଧୁ ରାଜା ଓ ରାଜପୁତ୍ରମାନଙ୍କୁ ନିମନ୍ତ୍ରଣ କରିଛି । ଶୁଣାଯାଉଛି ଜରାସନ୍ଧଙ୍କର ବଡ଼ପୁଅ ଯୁବରାଜ ସହଦେବ ଆସିପାରନ୍ତି । ଅରିନ୍ଦମ ଉଠି ଛିଡ଼ାହେଲା । ଆଜି ତା'ର ବନ୍ଧୁମାନେ ଯାହା ନିଷ୍ପତ୍ତି କଲେ, ଭାନୁପ୍ରକାଶ ଓ ସୌରଦେବଙ୍କୁ ଜଣେଇଦବା ଦରକାର ।

କଂସର ସମ୍ବର୍ଦ୍ଧନା ସଭା ଦିନସାରା ମଥୁରାରେ ଉତ୍ସବ ଲାଗିଗଲା । ସମ୍ବର୍ଦ୍ଧନା ସଭା ଦି ପହର ପରେ ପରେ ହବାପାଇଁ ଠିକ୍ ହୋଇଥିଲା, ଯେପରି ଲୋକମାନେ


Digitized by srujanika@gmail.com

ଦି ପହର ଖିଆସାରି ସଭାକୁ ଆସିପାରିବେ ଓ ସନ୍ଧ୍ୟାରେ ଅନ୍ଧକାର ହେବା ଆଗରୁ ସଭା ଶେଷ ହେବ । ଏପରି ସଭା ମଥୁରାରେ ନୂଆ କଥା । ତା' ଛଡ଼ା ମଥୁରା ପକ୍ଷରୁ କଂସ ରାଜ୍ୟ ଜୟକରି ଫେରିଚି, ସେ ବି ନୂଆ କଥା । ମଥୁରାର କୌଣସି ରାଜା ଏ ପର୍ଯ୍ୟନ୍ତ ମଥୁରାକୁ ସେ ସମ୍ମାନ ଆଣି ଦେଇ ନ ଥିଲେ । ଉଦ୍ୟୋକ୍ତାମାନେ କେବଳ ସଭା କରିବା ବା ଲୋକମାନଙ୍କୁ ବହୁ ସଂଖ୍ୟାରେ ସଭାକୁ ଆଣିବାର ବନ୍ଦୋବସ୍ତ କରି ନ ଥିଲେ । ସେମାନେ ସଭା ହେଉଥିବା ଜାଗାରେ ଖିଆପିଆର ଆୟୋଜନ ବି କରିଥିଲେ । ମାଂସ ଓ ଯମୁନାରୁ ବଡ଼ ବଡ଼ ମାଛ ପର୍ଯ୍ୟାପ୍ତ ପରିମାଣରେ ଆସିଥିଲା ଓ ରୋଷେଇବାସର ଏପରି ବନ୍ଦୋବସ୍ତ କରାଯାଇଥିଲା ଯେପରିକି ସଭା ହେବା ଆଗରୁ ନୁହେଁ, ଏକମାତ୍ର ସଭା ସରିବା ପରେ ହିଁ ଲୋକମାନେ ଖାଇବାର ସୁଯୋଗ ପାଇବେ । ପ୍ରଚାର କରାହୋଇଥାଏ ଯେ ସମ୍ବର୍ଦ୍ଧନା ସଭାରେ କଂସ ମଥୁରା ସମ୍ପର୍କରେ କ'ଣ ସବୁ ଘୋଷଣା କରିବେ । ସେ ଚାହାନ୍ତି ମଥୁରା ଆର୍ଯ୍ୟାବର୍ତ୍ତରେ ଶ୍ରେଷ୍ଠ ରାଜ୍ୟର ସମ୍ମାନ ପାଉ ଓ ମଥୁରାର ଯାଦବମାନେ ଶ୍ରେଷ୍ଠ ଜାତି ଭାବରେ ଗଣାହୁଅନ୍ତୁ ।

ଅରିନ୍ଦମ, ଦେବପ୍ରିୟ, ସୁରଂଜନ ଓ ଆହୁରି ତିନି ଚାରିଜଣ ସାଙ୍ଗ ସକାଳୁ ସକାଳୁ ସଭା ମଣ୍ଡପ ଆଡ଼କୁ ଯିବାକୁ ସ୍ଥିର କଲେ । ଏ ସମ୍ବର୍ଦ୍ଧନା ସଭା ପଛରେ ମଥୁରାର କୌଣସି ମୁଖିଆ ନୁହନ୍ତି, କଂସ ନିଜେ, ଏକଥା ସ୍ପଷ୍ଟ ବୁଝିହେଉଛି । କିନ୍ତୁ ସଭାକୁ ଦେଖିବା ଦରକାର, ଆଉ ଆଉ କଥା ଜାଣିବା ଦରକାର, ତେଣୁ ସେମାନେ ସକାଳୁ ସକାଳୁ ଯିବା ପାଇଁ ଠିକ୍ କଲେ । ସହର ବାହାରେ, ପୂର୍ବ ଦ୍ୱାରର ବେଶ କିଛି ଦୂରରେ, ଗୋଟାଏ ବିରାଟ ପଡ଼ିଆରେ ସଭାର ଆୟୋଜନ ହେଉଥାଏ । କିଛି ଦୂରରେ ପାହାଡ଼ ମୁଣ୍ଡିଆ ଓ ବଡ଼ ବଡ଼ ଗଛ ସବୁ । ପଡ଼ିଆଟାକୁ ପରିଷ୍କାର କରି ଦିଆଯାଇ ଥାଏ । ବଡ଼ ବଡ଼ ତମ୍ବୁ ସବୁ ଟଣା ହୋଇଥାଏ, ଚାରି ପାଖରେ ଫୁଲ, ସାବଜା ପତ୍ରର ଡାଳ ସବୁ, ଓ ରଙ୍ଗବେରଙ୍ଗର କଟାକଟା କାଗଜସବୁ ଝୁଲା ହୋଇଥାଏ । ତମ୍ବୁ ଭିତରକୁ ଯିବା ପାଇଁ ଓ ବାହାରିବା ପାଇଁ ଚୌଡ଼ା ଚୌଡ଼ା ବାଟସବୁ ରଖା ହୋଇଥାଏ । ତମ୍ବୁ ଭିତରେ ସଭା ହେବା ଜାଗାର ଗୋଟାଏ ପାଖରେ ଚୌଡ଼ା, ଉଚ୍ଚା ମଣ୍ଡପ ଓ ମଣ୍ଡପ ଉପରେ ସୁଦୃଶ୍ୟ, ଆରାମଦାୟକ ଆସନ ସବୁ, ଯେଉଁଠି କଂସ ଓ ତା'ର ଅନ୍ୟାନ୍ୟ ରାଜକୀୟ ଅତିଥିମାନେ ବସି ପାରିବେ । ସଭାକୁ ଯେତେ ଲୋକ ଆସିବେ ସେମାନେ ମଣ୍ଡପ ସାମ୍ନାରେ ବସିବେ ବା କଡ଼କୁ ଛିଡ଼ା ହୋଇପାରିବେ । କଂସ ଓ ତା'ର ଅତିଥିମାନଙ୍କୁ ଦେବାପାଇଁ ଗୋଟାଏ ପାଖରେ ସୁନ୍ଦର ସୁନ୍ଦର ଫୁଲମାଳ ଓ ଉପଢୌକନ ସବୁ ରଖା ହୋଇଥାଏ । ମନେହେଲା

ଉଦ୍ୟୋକ୍ତାମାନେ ସେମାନଙ୍କର ଆୟୋଜନରେ କୌଣସି କିଛି ତ୍ରୁଟି ରଖି ନାହାନ୍ତି । ଦେବପ୍ରିୟ କହିଲା, 'ଅରିନ୍ଦମ ଦେଖୁଛୁ । କି ବ୍ୟାପାର !'

'ହଁ, ଭଲ ଆୟୋଜନ ହୋଇଛି', କହିଲା ଅରିନ୍ଦମ, 'କଂସ ଖୁସି ହେବ ।'

ପାଖରେ ଅଳ୍ପ ଛାଡ଼ି ବଡ଼ ବଡ଼ ଦିଇଟା ତମ୍ବୁ ଟଣାଯାଇଛି, ଯେଉଁଠି ରୋଷେଇବାସ ଚାଲିଛି । ପତ୍ର, ପାଣି ପ୍ରଭୃତି ଯଥେଷ୍ଟ ମହଜୁଦ କରି ରଖାଯାଇଛି ଓ ଖାଇବା ଜାଗା ବି ପରିଷ୍କାର କରାଯାଇଛି, ଯେମିତି ଏକା ସାଙ୍ଗରେ ଶହ ଶହ ଲୋକ ବସି ଖାଇପାରିବେ । ମାଛ, ମାଂସ ଉଭୟ ରୋଷେଇ ହେଉଛି । ରୋଷେଇର ସୁଗନ୍ଧିରେ ସାରା ଅଞ୍ଚଳ ପୂର୍ଣ୍ଣ ।

'ସଭା ପରେ ଖାଇବାକୁ ଦିଆଯିବ ।' ଦେବପ୍ରିୟ କହିଲା,

ଅରିନ୍ଦମ ହସିଲା, କହିଲା – 'ତା ନ ହେଲେ ସଭା ହୋଇପାରିବନି ଯେ ।'

ବନ୍ଧୁମାନେ ବୁଲି ବୁଲି ଦେଖିଲେ । ସଭା ସମୟ ପାଖେଇ ଆସିଲାଣି । ଦଳ ଦଳ ଲୋକ ତାଙ୍କର ପେଡ଼ି ଲୁଗାପଟା ପିନ୍ଧି ଆସିବାକୁ ଆରମ୍ଭ କଲେଣି । ମଝିରେ ମଝିରେ ରୋଷେୟା ଡାକୁଥାନ୍ତି – 'ଆସ, ଆସ, ଚାଖିଯାଅ ।' ଜଣେ ଚିହ୍ନା ରୋଷେୟା ଆସି ଅରିନ୍ଦମ ପ୍ରଭୃତିଙ୍କୁ ଧଇଲା, କହିଲା, 'ବଢ଼ିଆ ଯମୁନା ରୋହୀ, ଆସି ଦି'ଟା ଭଜା ଖାଇଦିଅ ।' ସବୁଆଡ଼େ ଚଳଚଞ୍ଚଳ । ଲୋକମାନେ ଆସୁଛନ୍ତି ଯାଉଛନ୍ତି । ବେଶ କିଛି ଲୋକେ ମଣ୍ଡପ ପାଖାପାଖି ଜାଗାରେ ସୁବିଧା ଦେଖି ବସିଗଲେଣି । ପିଲାମାନେ ଦଳ ଦଳ ହୋଇ ଖେଳୁଛନ୍ତି । ରଙ୍ଗ ବେରଙ୍ଗ ଶାଢ଼ି ପିନ୍ଧି ସ୍ତ୍ରୀ ଲୋକମାନେ ବି ଆସିଛନ୍ତି । ତମ୍ବୁର ଗୋଟାଏ କଡ଼ରେ ଏକାଠି ହୋଇ ସେମାନେ ବି ବସିଗଲେଣି । ଅରିନ୍ଦମ ଚାରିଆଡ଼େ ଚାହିଁ ଦେଖିଲା । ଚାରିପାଖରେ ବେଶ୍ ଗୋଟାଏ ଉତ୍ସବର ଧାରା ।

ଦେବପ୍ରିୟ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ କହିଲା – 'କଂସର ସମ୍ବର୍ଦ୍ଧନା ପାଇଁ ଏତେ ଲୋକ ଆସିଛନ୍ତି ?'

'ଆସି ନାହାନ୍ତି', ଅରିନ୍ଦମ କହିଲା, 'ଅଣା ହୋଇଛନ୍ତି । ଗତ ଚାରି ପାଞ୍ଚ ଦିନ କଂସର ଲୋକମାନେ ଯେଉଁ ପରିଶ୍ରମ କରିଥିଲେ ଏ ତା ଫଳ । କଂସ ରାଜ୍ୟ ଜୟ କରି ଫେରିଛି, ଗୋଟାଏ ଛୋଟମୋଟ ସଭା କେମିତି ହେବ ? ତେଣୁ ଲୋଭ ଓ ଭୟ ଉଭୟକୁ ବେଶ ଉଦାର ଭାବରେ ବ୍ୟବହାର କରାଯାଇଛି ।'

ସୂର୍ଯ୍ୟ ମୁଣ୍ଡ ଉପରୁ ପଶ୍ଚିମ ଆଡ଼କୁ ଢଳି ପଡ଼ିଲେଣି । ବର୍ଷା ଦିନ ପାଖେଇ ଆସିଲେ ବି ଆକାଶକୁ କିଏ ଯେପରି ଘର ଓଳେଇଲା ପରି ପରିଷ୍କାର କରିଦେଇଛି । ଖଣ୍ଡେ ହେଲେ ମେଘ କୋଉଠି ନାହିଁ । ପଡ଼ିଆ ଉପରେ, ତମ୍ବୁ ଉପରେ, ଚାରିପାଖର ଗଛବୃକ୍ଷ ଉପରେ, ପାଖ ମୁଣ୍ଡିଆ ଉପରେ – ସବୁଆଡ଼େ ଟାଣ ଟାଣ ଖରା । ପବନ

ନାହିଁ । ଦେହ ହାତ କାଣ୍ଟି କାଣ୍ଟି ହୋଇଯାଉଛି । ଲୋକ ଗହଳି ଆଡ଼େଇ, ଅରିନ୍ଦମ ଓ ତା' ସାଙ୍ଗମାନେ, ଶିବିର ମୁହଁରେ ଗୋଟାଏ କଡ଼କୁ ଛିଡ଼ା ହୋଇ ରହିଲେ । କଂସ ଆସିବା ସମୟ ହୋଇଗଲା ।

ଦୂରରୁ ଦାମାମାର ଶବ୍ଦ, ଅଶ୍ୱ ଟାପୁର ଶବ୍ଦ, ରଥ ଚକର ଶବ୍ଦ - ସମସ୍ତେ ସଜାଗ ହୋଇ ଉଠିଲେ । ଜୟଜୟକାର ଧ୍ୱନି ଶୁଭୁଛି । ତମ୍ବୁ ବାହାରେ, ତମ୍ବୁ ମୁହଁ ପାଖରେ ଧ୍ୱନି ଶତଗୁଣିତ ହୋଇଗଲା । ଜୟ ଜୟ କଂସ, ଧ୍ୱନିରେ ସାରା ଅଞ୍ଚଳ କଂପି ଉଠିଲା । କଂସ ଓ ତା'ର ରାଜକୀୟ ବନ୍ଧୁମାନେ ମଣ୍ଡପ ଉପରକୁ ଉଠିଗଲେ । ଚାରିଆଡୁ ଫୁଲ ବୃଷ୍ଟି, ଶଙ୍ଖଧ୍ୱନି, ସ୍ତ୍ରୀ ଲୋକମାନଙ୍କର ହୁଳହୁଳି ଶବ୍ଦ - ସମ୍ବର୍ଦ୍ଧନା ସଭା ଆରମ୍ଭ ହେଲା । କଂସ ହାତଯୋଡ଼ି ମଣ୍ଡପ ଉପରେ ଛିଡ଼ା ହେଲା । ମୁଣ୍ଡ ନଇଁ, ଚାରିପାଖକୁ ମୁହଁ ବୁଲେଇ ବୁଲେଇ ଯୋଡ଼ ହାତରେ ସମସ୍ତଙ୍କୁ ନମସ୍କାର କଲା । ଘୋଷଣା କଲା ମଥୁରା ତା'ର, ସେ ମଥୁରା ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ । ଜୟ ଜୟ ଧ୍ୱନି ଓ ଶହ ଶହ ହାତର ତାଳି ମାଡ଼ରେ ବିରାଟ ତମ୍ବୁର ଭିତରଟା ପୂରିଗଲା- କଂସର ଭାଷଣ ଆରମ୍ଭ ହେଲା । ସେ ପ୍ରଥମରୁ ଘୋଷଣା କଲା ଯେ ନିଜର ବିଜୟ ଅଭିଯାନର ସ୍ମାରକୀ ରୂପେ, ଯେପରି ସମସ୍ତେ ମନେ ରଖିବେ ଓ ଖୁସି ହେବେ, ସେ ମଥୁରାର ଶ୍ରେଷ୍ଠ ପୁରୁଷ ବସୁଦେବଙ୍କ ସହିତ ତା'ର ଭଉଣୀ ଦେବକୀର ବିଭାଘର ଖୁବ୍ ଶୀଘ୍ର ଦେବ, ଓ ସେଥିପାଇଁ ମଥୁରାର ଜନତାର ସହମତି ପ୍ରାର୍ଥନା କରୁଛି । ପୁଣି ଜୟ ଜୟକାର ଧ୍ୱନି, ପୁଣି ତାଳି ମାଡ଼ । ସେ ପୁଣି କହିଲା ଆସନ୍ତା ପୂର୍ଣ୍ଣିମା ଦିନ ଏ ବିଭାଘର ହେବ, ଓ ସେଥିପାଇଁ ସମସ୍ତଙ୍କୁ ନିମନ୍ତ୍ରଣ ରହିଲା । ପୁଣି ପୁଣି ତାଳିମାଡ଼ ।

ଦେବପ୍ରିୟ କହିଲା, 'ଅରିନ୍ଦମ, ଆଉ କ'ଣ ଶୁଣିବା ? ଯିବା ।'

'ହଁ', ଅରିନ୍ଦମ କହିଲା ।

ତମ୍ବୁ ଭିତରର ଭିଡ଼ ଠେଲି ସବୁ ବନ୍ଧୁମାନେ ବାହାରକୁ ବାହାରି ଆସିଲେ । ଭିତରେ କଂସର ଭାଷଣ ଚାଲୁଥାଏ । ସେ ଆନୁପୂର୍ବିକ ବର୍ଣ୍ଣନା କରୁଥାଏ କିପରି ଶତ୍ରୁ ରାଜ୍ୟମାନଙ୍କୁ ପରାସ୍ତ କଲା, କିପରି ପ୍ରଚୁର ଧନରତ୍ନ ମଥୁରାକୁ ନେଇ ଆସିଛି, ସେ ପୁଣି ଶୀଘ୍ର କିପରି ଦେବକୀ ବସୁଦେବଙ୍କ ବିଭାଘର ପରେ ପରେ ରାଜ୍ୟ ଜୟରେ ଯିବ, କିପରି ଚକ୍ରବର୍ତ୍ତୀ ଜରାସନ୍ଧ ତା' ଉପରେ ଖୁବ୍ ସନ୍ତୁଷ୍ଟ ଓ ସେ ନିଜେ କିପରି ମଥୁରାକୁ ଆସିବେ ଇତ୍ୟାଦି ଇତ୍ୟାଦି । ବନ୍ଧୁମାନେ ବାହାରକୁ ଆସି ଖୋଲା ପବନରେ ନିଃଶ୍ୱାସ ନେଲେ । ରନ୍ଧା ହୋଇଥିବା ଖାଦ୍ୟର ସୁଗନ୍ଧି ଭାସି ଆସୁଥାଏ । କିଛି ଲୋକ ମଧ୍ୟ ସଭା ଭିତରୁ ବାହାରି ଆସି ଖାଇବା ଜାଗା ଆଡ଼କୁ ଗଲେଣି । ଆଉ କିଛି

ବାହାରି ଆସୁଥାଆନ୍ତି । ଦେବପ୍ରିୟ କହିଲା, 'ଖାଇଦେଇ ଯିବା କି ?'

ଅରିନ୍ଦମ ଅନ୍ୟ କଥା ଭାବୁଥିଲା । କହିଲା – 'ଦେବପ୍ରିୟ, ଦେଖତ, କିଛି ସମୟ ଆଗରୁ ବେଶ୍ ଖରା ଥିଲା । ଆକାଶ ବି ବେଶ୍ ପରିଷ୍କାର ଥିଲା । ବର୍ତ୍ତମାନ ଟିକେ ଅନ୍ଧାର ଅନ୍ଧାର ଲାଗୁଛି ।' ସତେ ତ ! ସମସ୍ତେ ଚାରିଆଡ଼କୁ ଚାହିଁଲେ । ଖରା ଚାଲିଗଲାଣି । ଚାରିଆଡ଼େ କିପରି ମଇଳା ମଇଳା ଅନ୍ଧାର । ପବନଟା ପୂରା ବନ୍ଦ ହୋଇଗଲାଣି । ଚାରିଆଡ଼ ଗୁମ୍‌ସୁମ୍ । 'ଆକାଶରେ ତ ମେଘଫେଘ ନାହିଁ', ଜଣେ ବନ୍ଧୁ କହିଲେ । 'ନାଁ ପଶ୍ଚିମକୁ ଅନା । ମେଘ ଉଠେଇ ଆସିଲା ପରି ମନେ ହେଉଛି ', କହିଲା ଅରିନ୍ଦମ । ସମସ୍ତେ ପଶ୍ଚିମକୁ ଚାହିଁଲେ । ଠିକ୍ ତ ? ଯେଉଁଠି କିଛି ଆଗରୁ ଆକାଶରେ ଖଣ୍ଡେ ବି ବାଦଲ ନ ଥିଲା, ସେଠି ଗୋଟାଏ ବେଶ୍ ବଡ଼ କଳା ମେଘ ଉଠେଇ ଆସୁଛି । ଆସ୍ତେ ଆସ୍ତେ ସେହି ମେଘ ଖଣ୍ଡ ପୂର୍ବକୁ ଆସିବାକୁ ଆରମ୍ଭ କଲା । ତା' ପଛେ ପଛେ ଆହୁରି ମେଘ, ଆହୁରି ମେଘ, ଦେଖୁ ଦେଖୁ କଳା କଳା ବାଦଲରେ ସାରା ଆକାଶ ଛାଇଗଲା । ଖରା ଲିଭି ଚାରିଆଡ଼େ ଅନ୍ଧାର – ହୋଇଗଲା । ପବନଟା ସ୍ଥିର ଥିଲା । ହଠାତ୍ ଝଟକା ଦେଇ ପବନ ବହିବାକୁ ଆରମ୍ଭ କଲା । ତା' ସାଙ୍ଗରେ ଘଡ଼ଘଡ଼ି – ଗୋଟାଏ, ଦିଇଟା, ତିନିଟା । କଂସର ଭାଷଣ ଚାଲିଥାଏ । କିନ୍ତୁ ଅଧିକରୁ ଅଧିକ ଲୋକ ବାହାରି ଆସିବାକୁ ଆରମ୍ଭ କଲେଣି । କବାଟ ଘୋଡ଼େଇଲା ପରି ଆକାଶ ଯାକ ଗାଢ଼, କଳା ମେଘ, ପବନ, ଅନ୍ଧାର– ନିଶ୍ଚୟ ପ୍ରଚଣ୍ଡ ଭାବରେ ବର୍ଷା ହେବ । 'ଆରେ, ଏ ତ କାଳ ବୈଶାଖୀ ।' କହିଲା ଦେବପ୍ରିୟ, 'ଏ ସମୟରେ ତ ଏମିତି ବର୍ଷା ହୁଏ ।' 'ହଁ, ଖୁବ୍ ବର୍ଷା ହୁଏ । ଚାଲ ଚାଲ, ସାମ୍ନା ମୁଣ୍ଡିଆ ପାଖରେ କୋଉଠି ରହିଯିବା ।' ଜଣେ କିଏ କହିଲା । 'ଆରେ, ସଭା ?' ଆଉ ଜଣେ କିଏ ପଚାରିଲା । 'ସଭା ପାଇଁ ମୁଣ୍ଡ ଖେଳାନା । ସଭା କଥା କଂସ ବୁଝୁ । ଡେରି କରନା, ଆଗ ମୁଣ୍ଡିଆ ପାଖକୁ ଶୀଘ୍ର ଚାଲ ।'

ସେମାନେ ଦୌଡ଼ି ଦୌଡ଼ି ମୁଣ୍ଡିଆ ପାଖକୁ ଗଲେ । ଆହୁରି ବି ଅନେକ ଦୌଡ଼ି ଦୌଡ଼ି ଯାଉଥାନ୍ତି । କୌଣସି ଗଛ ମୂଳେ ରହିଯିବେ । କିନ୍ତୁ ପହଞ୍ଚ ହେଲା ନାହିଁ । ପ୍ରଥମେ ବରକୋଳି ପରି ବଡ଼ ବଡ଼ ଟୋପା । ତା'ପରେ ପରେ ଆକାଶ ଯେପରି ଭାଙ୍ଗି ପଡ଼ିଲା । ହାତୀ ଶୁଣ୍ଢ ପରି ପ୍ରବଳ ମେଘ ଓ ମେଘର ଗର୍ଜନ । ତା' ସାଙ୍ଗରେ ପବନ । ପବନ ଆଉ ସିଧା ହୋଇ ବହୁ ନ ଥାଏ । ପବନ ଚକ ପରି ଘୂରି ଘୂରି ବୁଲୁଥାଏ । ପ୍ରଚଣ୍ଡ ବର୍ଷା, ପବନ, ଘଡ଼ଘଡ଼ି । କିଏ କୁଆଡ଼େ ଗଲେ ଠିକଣା ନାହିଁ । ସଭା ତ ଭାଙ୍ଗିଗଲା । ତମ୍ବୁଯାକ ଛିଣ୍ଡା କନା ପରି କୁଆଡ଼େ


Digitized by srujanika@gmail.com

ସବୁ ଉଡ଼ିଗଲା । ଯେତେ ସଜାସଜି ଚିହ୍ନବର୍ଣ୍ଣ ରହିଲା ନାହିଁ । ଗାଈମାନେ, ଘୋଡ଼ାମାନେ ପ୍ରଚଣ୍ଡ ଭୟରେ ଦୌଡ଼ି ପଳେଇଲେ । ରଥସବୁ ଓଲଟି ପଡ଼ିଲା । ଖାଇବା ଜିନିଷ ସବୁ ପ୍ରବଳ ପାଣି ସୁଅରେ କୁଆଡ଼େ କୁଆଡେ ଭାସିଗଲା । ପ୍ରାୟ ଅର୍ଦ୍ଧ ଘଟିକା କାଳ ଭୟଙ୍କର କାଳ ବୈଶାଖୀର ତାଣ୍ଡବରେ କଂସର ସମ୍ବର୍ଦ୍ଧନା ସଭା ଛିନ୍ନଛତର ହୋଇ ଉଡ଼ିଗଲା । ହଁ, ପ୍ରାୟ ଅର୍ଦ୍ଧ ଘଟିକା ହେବ । ତା'ପରେ ବର୍ଷା ବନ୍ଦ ହେଲା, ଝଡ଼ ବନ୍ଦ ହେଲା, ଘଡ଼ଘଡ଼ି ବନ୍ଦ ହେଲା । ଖଣ୍ଡ ଖଣ୍ଡ ମେଘ ଆକାଶରୁ ଆସ୍ତେ ଆସ୍ତେ ଘୁଞ୍ଚିଗଲା । ଆକାଶ ପରିଷ୍କାର ହୋଇଗଲା । ଆଗପରି ଆସ୍ତେ ଆସ୍ତେ ଶୀତଳ, ଆରାମଦାୟକ ପବନ ବହିବାକୁ ଆରମ୍ଭ କଲା । ଆଗ ପରି ଗଛ, ବୃକ୍ଷ, ମୁଣ୍ଡିଆ ଉପରେ ଉଜ୍ଜ୍ୱଳ ସୂର୍ଯ୍ୟକିରଣ ଲହଡ଼ିମାରି ଖେଳିବାକୁ ଲାଗିଲା । ମନେ ହେବ ଯେପରି କିଛି ସମୟ ଆଗରୁ ଯାହା ଘଟିଗଲା ସେସବୁ କିଛି ଘଟିନାହିଁ । ଯୋଉ ନୀଳ ଆକାଶକୁ ସେହି ନୀଳ ଆକାଶ, ଯୋଉ ସୂର୍ଯ୍ୟ କିରଣକୁ ସେହି ସୂର୍ଯ୍ୟ କିରଣ । କେବଳ ଦଳାଚକଟା ହୋଇ ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଥିବା ରଣ କ୍ଷେତ୍ର ପରି ଚାରିପାଖ ପଡ଼ିଆର ଦୃଶ୍ୟ । ଭାବି ହଉନି ଏଇଠି କିଛି ସମୟ ଆଗରୁ ମହା ଆଡ଼ମ୍ବରରେ ସମ୍ବର୍ଦ୍ଧନା ସଭାର ଆୟୋଜନ ହୋଇଥିଲା । ଶହ ଶହ ଲୋକଙ୍କ ପାଇଁ ଖାଇବା ପିଇବାର ବନ୍ଦୋବସ୍ତ ହୋଇଥିଲା । ଏଇଠି କଂସ ରାଜା ନିଜସ୍ୱ ଗୌରବରେ ଭାଷଣ ଦେଉଥିଲେ ।

ଅରିନ୍ଦମର ଚିନ୍ତାଧାରା ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା । ସତେ ତ? କଂସ ଓ ରାଜକୀୟ ବନ୍ଧୁମାନେ ଗଲେ କୁଆଡ଼େ ? କୌଣସି ଚିହ୍ନବର୍ଣ୍ଣ ନାହିଁ । ସେ ଦେବପ୍ରିୟକୁ ଚାହିଁଲା । ତା ମନରେ ମଧ୍ୟ ସେହି ଚିନ୍ତା । ସେ କହିଲା, 'ସତେ ଅରିନ୍ଦମ, ଲୋକଗୁଡ଼ା ଗଲେ କୁଆଡ଼େ ?' 'ଛାଡ଼', ଅରିନ୍ଦମ କହିଲା, 'ଯୁଆଡ଼େ ଯାଆନ୍ତୁ । ଚାଲ, ଫେରିବା । ଶାସ୍ତି ଦେବା ଲୋକ ଶାସ୍ତି ଦେଇଦେଲା ।' ବନ୍ଧୁମାନେ ସହରକୁ ଫେରି ଆସିଲେ । ଅରିନ୍ଦମ ମନରେ ଗୋଟାଏ କଥା ବାରମ୍ବାର ଉଙ୍କି ମାରୁଥିଲା । ସେ ଘରୁ ବାହାରିବା ସମୟରେ ବାପା ପଚାରିଥିଲେ - କୁଆଡ଼େ ଯାଉଛୁ ? ସମ୍ବର୍ଦ୍ଧନା ସଭାକୁ ? ସେ 'ହଁ' କହିଥିଲା । ବାପା କହିଥିଲେ - ହଉ ଯା, ସାବଧାନ ଥିବୁ । ଏହିପରି କିଛି ଘଟିପାରେ ବୋଲି ବାପା କ'ଣ ସୁରାକ ପାଇଥିଲେ ? ଅସମ୍ଭବ ନୁହେଁ । ଅନେକ କଥା ବାପା ବୁଝିପାରନ୍ତି । ସେମାନେ ସହର ଭିତରକୁ ଫେରି ଆସିଲେ । ସହର ଭିତରେ ପାଗ ଭଲ, ଝଡ଼ ବର୍ଷାର କୌଣସି ସୂଚନା ନାହିଁ । ଲୋକମାନେ ଯେମିତି ଚଳପ୍ରଚଳ ହୁଅନ୍ତି, ସେମିତି ଚଳପ୍ରଚଳ ହେଉଛନ୍ତି । ପିଲା

ଖେଲୁଛନ୍ତି, ଦୋକାନ ବଜାର ଚାଲିଛି, ଲୋକ ଯିବା ଆସିବା କରୁଛନ୍ତି, ପାଟି ଗୋଳ, ହୋ ହଲ୍ଲା । ସହର ବାହାରେ ଗୋଟାଏ ଏତେ ବଡ଼ ଘଟଣା ଘଟିଗଲା, କଂସ ଓ ଉଦ୍ୟୋକ୍ତାମାନେ ଲାଙ୍ଗୁଡ଼ଯକା କୁକୁର ପରି କିଏ କୁଆଡ଼େ ପଳେଇଲେ, ଯିଏ ଶୁଣିଲା ସେ ବିଶ୍ୱାସ କରି ପାରିଲା ନାହିଁ । 'ବୁଝିଲୁ, ଅରିନ୍ଦମ', ଦେବପ୍ରିୟ କହିଲା, 'କଂସ ମହାରାଜାଙ୍କର ଚମତ୍କାର ଗୃହପ୍ରବେଶ ହୋଇଗଲା ।' ସବୁ ବନ୍ଧୁ ହୋ ହୋ ହସି ଉଠିଲେ ।

ଏହି ଘଟଣାର ତିନିଦିନ ପରେ, ସନ୍ଧ୍ୟାରେ, ଅରିନ୍ଦମର ଭାନୁପ୍ରକାଶ ପ୍ରଭୃତିଙ୍କ ସହିତ ଯମୁନା ଦେବୀଙ୍କ ମନ୍ଦିରରେ ଭେଟ ହେଲା । ସୌରଦେବ ଓ ଗୋପା ବି ଥାଆନ୍ତି । ଅରିନ୍ଦମକୁ ଦେଖି ଭାନୁପ୍ରକାଶ ହସିଲେ । କହିଲେ, 'ଅରିନ୍ଦମ, ତୁମେମାନେ ସେଦିନ କ'ଣସବୁ କଲ, କଂସର ମିଜାଜ ଏକଦମ ଖରାପ । ଗୋପା, କୁହ ।'

ଗୋପା ବି ହସିଲେ । କହିଲେ, 'କ'ଣ କହିବି ? ସମ୍ବର୍ଦ୍ଧନା ସଭା ହବ ବୋଲି କଂସ ନଅରରେ କାହାକୁ ନିଦ ନ ଥାଏ । ସେଦିନ ସବୁ କାମ ବନ୍ଦ । ସକାଳୁ ସକାଳୁ ଯା ତା କିଛି ଖାଇଦେଇ ପ୍ରାୟ ସମସ୍ତେ ପୂର୍ବ ଦରଜା ପାଖକୁ ଚାଲିଗଲେ । ସ୍ତ୍ରୀ ଲୋକମାନେ ବି । ଖାଲି କଂସର ଦି ରାଣୀଯାକ କୋଉଠିକି ଯାଇପାରିଲେ ନାହିଁ । ସେମାନଙ୍କର ବୟସ ବା କେତେ । ଦିହେଁଯାକ ଉଛନ୍ନ ହେଉଥାନ୍ତି । ଘରୁ ବାହାରକୁ, ବାହାରୁ ଘରକୁ । ମତେ ଦଶଥର ପଚାରୁଥାନ୍ତି । ସଭା ଆରମ୍ଭ ହେଲାଣି ? ସଭା ସଇଲାଣି ? କ'ଣ ସବୁ ହେଲା ? କେତେ ଲୋକ ? କଂସ କ'ଣ କହିଲେ ? ମୁଁ ବା କ'ଣ ଉତ୍ତର ଦେବି । ଯାହା ମନକୁ ଆସୁଥାଏ କହୁଥାଏ । ମୁଁ ତାଙ୍କର ପାଖେ ପାଖେ ଥାଏ । ଦେଖିଲି ସେମାନେ ବଡ଼ ଉତ୍ତେଜିତ । କିଏ ଯଦି ଯା ବୋଲି କହିଦେବ ସାଙ୍ଗେ ସାଙ୍ଗେ ସଭାକୁ ଦୌଡ଼ିଯିବେ, ଏଇମିତି ଅବସ୍ଥା । ମୁଁ ଟିକେ ଆଶ୍ଚର୍ଯ୍ୟ ହେଲି । ସମ୍ବର୍ଦ୍ଧନା ସଭାକୁ ଯିବା ପାଇଁ ସେମାନଙ୍କର ଏତେ ଆଗ୍ରହ କାହିଁକି ? କଂସକୁ ସେମାନେ ଯେ ଖୁବ୍ ଶ୍ରଦ୍ଧା ଓ ସମ୍ମାନ କରନ୍ତି ତା ନୁହେଁ, ବରଂ ଭୟ କରନ୍ତି । ସେ ଯାହାହେଉ, ମୁଁ ସେମାନଙ୍କର ପାଖେ ପାଖେ ରହିଲି । ସେଠି ରୋଷେଇବାସ ହେଉଛି, ସମସ୍ତେ ଖାଇପିଇ ଆସିବେ ବି ଶୁଣିଥିଲି । ଆଉ କିଛି ଖବର ନାହିଁ । ଦି ପହର ଗଡ଼ି ସନ୍ଧ୍ୟା ହେବାକୁ ଚାଲିଲା । ମଝିରେ ଖାଲି କେତେବେଳେ କିଛିସମୟ ପାଇଁ ପାଗ ମେଘୁଆ ମେଘୁଆ କରିଥିଲା । ବାସ ସେତିକି । ଭାବିଲି ସଭା ବୋଧହୁଏ ସରି ଯାଇଥିବ ସେମାନେ ଏବେ ଆସିବେ । ସେମାନେ ସବୁ ଆସିଲେ ବି । କିନ୍ତୁ କି ଖବର ।'... ଗୋପା ଚୁପ କରିଗଲେ ।

'ଖବର କ'ଣ ?' ସୌରଦେବ କହିଲେ, 'ସଭା ହେଲା ନାହିଁ, ଏଇ ଖବର ତ'। 'ସେତିକି ହେଲେ ତ କଥା ନ ଥିଲା।' ଗୋପା ପୁଣି କହିବାକୁ ଆରମ୍ଭ କଲେ – 'ସେ ତ ସିଧା ଖବର। କିନ୍ତୁ ଏ ସିଧା ଖବରଟା ଦବ କିଏ ? ନଅରର ଯେତେ ଲୋକ ଫେରି ଆସିଲେ ସମସ୍ତେ ଅଲଗା ଅଲଗା କଥା କହୁଥାନ୍ତି। କାହାରି ସାଙ୍ଗରେ କାହାରି କଥା ମିଶୁ ନ ଥାଏ। ରାଣୀମାନେ ତ ପାଗଳାଙ୍କ ପରି ହେଲେ। କଂସ କାହାନ୍ତି ? ଏଇ ପ୍ରଶ୍ନର ଉତ୍ତର କେହି ଦେଇପାରୁ ନ ଥାନ୍ତି। ତାଙ୍କର ସୈନ୍ୟସାମନ୍ତ, ତାଙ୍କର ରଥ ଘୋଡ଼ା ? ତାଙ୍କର ଆଉ ସବୁ ବନ୍ଧୁ ? କିଛି ନାହିଁ, କିଛି ନାହିଁ, କାହାକୁ କିଛି ଜଣାନାହିଁ। ସମସ୍ତେ ଭୟରେ କାକୁସ୍ତ, ପ୍ରାଣ ବଞ୍ଚେଇ ପଳେଇ ଆସିଛନ୍ତି, ସେତିକି ଯଥେଷ୍ଟ। ଏ ତ ଅଦ୍ଭୁତ କଥା ! ମୁଁ ଆକୁ ତାକୁ ପଚାରି ଶେଷକୁ ଯାହା ବୁଝିଲି ଯେ ପ୍ରଚଣ୍ଡ ଝଡ଼, ବର୍ଷା, ଘୂର୍ଣ୍ଣି ହେଲା, ସମ୍ବର୍ଦ୍ଧନା ସଭା ସେହି ଝଡ଼ ବର୍ଷାରେ ଭାଙ୍ଗିଗଲା। କିନ୍ତୁ କଂସ କାହାନ୍ତି ? ମୁଁ ବାହାରକୁ ମନ୍ତ୍ରୀମାନଙ୍କ ପାଖକୁ ଖବର ପଠେଇଲି, ଉଗ୍ରସେନଙ୍କ ପାଖକୁ ଖବର ପଠେଇଲି, ସେମାନେ ସବୁ ଖବର ପାଇ ସାରିଥିଲେ। ଗୋଟାଏ ଘୋଡ଼ା ସବାର ଦଳ ସାଙ୍ଗେ ସାଙ୍ଗେ କଂସଙ୍କ ସନ୍ଧାନରେ ବାହାରିଗଲେ। କିନ୍ତୁ ବେଶି ବାଟ ନୁହେଁ। ସେମାନେ ବୋଧହୁଏ ଅଧା ବାଟରେ ହୋଇଥିବେ, କଂସ ନିଜେ ଆସି ନଅରରେ ପହଞ୍ଚିଗଲେ।'

ଅରିନ୍ଦମ କ'ଣ କହିବାକୁ ଯାଉଥିଲା, ଭାନୁପ୍ରକାଶ ତାକୁ ବନ୍ଦ କଲେ, କହିଲେ, 'ଗୋପାଙ୍କ କଥା ସରି ନାହିଁ, ସବୁ ଶୁଣିସାର।'

ଗୋପା କହୁଥାନ୍ତି – 'କଂସଙ୍କର ସେ କି ଅବସ୍ଥା ! ପୋଷାକପତ୍ରର ଠିକ୍ ନାହିଁ, ମୁହଁ କଳାକାଠ ପଡ଼ିଯାଇଛି। ଆଖିରେ ଭୂତ ଦେଖି ଡରିଗଲା ପରି ଭୟଙ୍କର ଭୟ। ନିଃଶ୍ୱାସ ଘର ଧରୁନାହିଁ, ହାବୁକା ମାରିଲା ପରି ହଉଛି। ଗୋଡ଼ ଠିକ୍ କରି ପଡୁନାହିଁ। ସାରା ଦେହ ଥରୁଛି। ଆଉ ସାରା ଦେହରୁ ଗମଗମ ଝାଳ ବହି ଯାଉଛି। ଦି'ଜଣ ଚାକର ଆସି ତାଙ୍କୁ ଦି ପାଖରୁ ଧଇଲେ। ସେ ନାତ୍ ମାରି ଦି ଜଣଙ୍କୁ ଫୋପାଡ଼ି ଦେଲେ। ଦି ରାଣୀ ଦଉଡ଼ି ଆସି ତାଙ୍କ ଦି ବାହୁକୁ ଧଇଲେ। ସେ ଗୋଟାଏ ବିକୃତ ଶବ୍ଦ କରି ବଡ଼ ରାଣୀଙ୍କର ବେକକୁ ଚିପି ଧଇଲେ। ସେ ଆଉ ଦି ଜଣଙ୍କୁ ଦି ପାଖକୁ ଠେଲି ଦେଲେ। ଅନ୍ୟମାନେ ଡରି ପାଖକୁ କେହି ଗଲେ ନାହିଁ। ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ କରି, ସେମିତି ଟଳି ଟଳି ଘର ଭିତରକୁ ପଶି, ଭିତରୁ ଧଡ଼ଧାଡ଼ କରି କବାଟ ବନ୍ଦ କରିଦେଲେ। ଆମେ ସମସ୍ତେ ଆଶ୍ଚର୍ଯ୍ୟ ହେଇଗଲୁ ସେ ଆସିଲେ କେମିତି ? ଗୋଟାଏ ଅଧାଭଙ୍ଗା ରଥରେ ସେ ଆସିଛନ୍ତି,

ରଥଟା ବାହାରେ ଥୁଆ ହୋଇଛି । କିନ୍ତୁ ରଥଟା ଚଳେଇଲା କିଏ ? ଘୋଡ଼ା ଦିଟାର ବି ଅବସ୍ଥା ନାହିଁ । ସେମାନଙ୍କୁ ରଥରେ ଯୋଚିଲା କିଏ ? କଂସର ରାଜାରାଜୁଡ଼ା ଅତିଥିମାନେ ଗଲେ କୁଆଡ଼େ ? ତାଙ୍କର ନିଜର ଦେହରକ୍ଷୀ ସୈନ୍ୟ ସାମନ୍ତ ? କାହାରି ଦେଖା ନାହିଁ । ସେଇ ଯେ କଂସ କବାଟ ବନ୍ଦକରି ଘରେ ପଶିଲେ ଆଉ ବାହାରିଲେ ନାହିଁ । ସନ୍ଧ୍ୟା ଆସିଗଲା । ରାତି ହେଲା । ଦି ରାଣୀ ବାହାରେ ବସି ରହିଥାନ୍ତି । ମୁଁ ତାଙ୍କ ପାଖରେ । କାହାରି ମୁହଁରେ କଥା ନାହିଁ । ମଝିରେ ମଝିରେ ରାଣୀମାନେ କାନ୍ଦୁ ଥାଆନ୍ତି । ଗୋଟାଏ ସମୟରେ ବଡ଼ ରାଣୀ ମୋତେ ପଚାରିଲେ, 'ରମା, ଏମିତି କାହିଁକି ହେଲା ?' ମୁଁ ତାଙ୍କୁ ସାନ୍ତ୍ୱନା ଦେଲି, କହିଲି, 'ଝଡ଼ ବର୍ଷା ଉପରେ କାହାର ହାତ ଅଛି । ଖରାଦିନେ ତ ପ୍ରାୟ ଏମିତି ହୁଏ । ଝଡ଼ ଘୂର୍ଣ୍ଣି ହଠାତ୍ ଆସେ ହଠାତ୍ ଯାଏ । ମଣିଷ ସାଙ୍ଗରେ ସିନା ମଣିଷ ଲଢ଼େଇ କରିବ । ବର୍ଷା, ଝଡ଼, ଘୂର୍ଣ୍ଣି ସାଙ୍ଗରେ କିଏ ଲଢ଼େଇ କରିବ ?' ବଡ଼ ରାଣୀ ପୁଣି ସେଇକଥା ପଚାରିଲେ - 'ଏମିତି କାହିଁକି ହେଲା ? ଇଏ କି ଶାସ୍ତି ?' ମୁଁ ମନେ ମନେ ସେଇକଥା ଭାବୁଥିଲି - ଏ ଠିକ୍ ଶାସ୍ତି । ଭଗବାନ ଦୁଷ୍ଟ ଲୋକଙ୍କୁ ଏମିତି ଶାସ୍ତି ଦିଅନ୍ତି । କଂସ ପରି ଦୁର୍ଦ୍ଦାନ୍ତ ଲୋକକୁ ଏ ଯଥେଷ୍ଟ ନୁହେଁ । ଆହୁରି ଶାସ୍ତି ଦରକାର । କିନ୍ତୁ ମୁଁ ଅନ୍ୟକଥା କହିଲି - 'ନାହିଁ ରାଣୀମା, ଆପଣ କାହିଁକି ଏମିତି ଭାବୁଛନ୍ତି । ଏ ଶାସ୍ତି କାହିଁକି ହେବ ? ଏଥିରେ କଂସଙ୍କର କ'ଣ କରିବାର ଅଛି ? ଝଡ଼ ବର୍ଷାରେ ସଭା ଭାଙ୍ଗିଗଲା । ଏ ଯେ କୌଣସି ସମୟରେ ଯେ କୌଣସି ଲୋକ ପାଇଁ ହୋଇପାରେ । ସମ୍ବର୍ଦ୍ଧନା ଉତ୍ସବ ଆଜି ନ ହେଲା କାଲି ହବ । କଂସ ସିନା ବର୍ତ୍ତମାନ ମନ କଷ୍ଟକରି କବାଟ ଦେଇ ଘରେ ପଶିଛନ୍ତି । ଆପଣ ଦେଖିବେ ସେ ପୁଣି ଭଲ ମନରେ ବାହାରି ଆସିବେ । ସବୁ କାମ ଠିକ୍ ଚାଲିବ । ଆପଣଙ୍କ ଭାଇ ଯୁବରାଜ ସହଦେବ ସିନା ଆସିପାରିଲେ ନାହିଁ, ଅନ୍ୟ ଲୋକେ ଆସିଛନ୍ତି । ଚକ୍ରବର୍ତ୍ତୀ ସବୁ ଖବର ରଖୁଛନ୍ତି । ଯେତେଦିନ ପର୍ଯ୍ୟନ୍ତ ସେ କଂସଙ୍କ ପଛରେ ଅଛନ୍ତି, ତାଙ୍କୁ ସାହସ ଦେଉଛନ୍ତି, କଂସଙ୍କର କେହି କିଛି କରିପାରିବ ନାହିଁ - ସେ ମଣିଷ ହୁଅନ୍ତୁ କି ଦେବତା ହୁଅନ୍ତୁ ।'

ଗୋପାଙ୍କ କଥା ସମସ୍ତେ ମନଦେଇ ଶୁଣୁଥାନ୍ତି । ଏକ ସମୟରେ ସୌରଦେବ କହିଲେ, 'ଗୋପା ଠିକ୍ କହୁଛନ୍ତି । କଂସ ପଛରେ ଅସଲ ବଳ ଜରାସନ୍ଧର । କଂସ ଯେଉଁ ଅତ୍ୟାଚାରୀ, ନରପିପାସୁ, ସମସ୍ତଙ୍କୁ ବେଖାତିର କରିବା ଲୋକ, ତାକୁ ଠିକ୍ ମାଡ଼ ହୋଇଛି । ଏଥିରେ ସନ୍ଦେହ ନାହିଁ । ସେ ଆକସ୍ମିକ ଝଡ଼, ଘୂର୍ଣ୍ଣି ଯୋଗୁଁ ହେଉ, ବା ଦେବତାଙ୍କର ଶାସ୍ତି ହେଉ । କିନ୍ତୁ ସେ କେତେଦିନ ? ସେ ପୁଣି ଉଠିବ, ପୁଣି


Digitized by srujanika@gmail.com

ସେ ଆଗ ଢଙ୍ଗକୁ ଫେରିଯିବ ।'

'ଫେରିଯିବ କ'ଣ ? ଫେରି ଗଲେ ।' କହିଲେ ଗୋପା, 'ସେଇ ରାତିକ ସେ ଘର ଭିତରେ ଚୁପଚାପ ରହିଲେ । କିନ୍ତୁ ତା ପରଦିନ ସକାଳୁ ସେ ଠିକ୍ । ସେଦିନ ସଭାରେ ତ ସେ କହି ଦେଇଥିଲେ ଆଶ୍ୱିନ ପୂର୍ଣ୍ଣମୀ ଦିନ ଦେବକୀ ବସୁଦେବଙ୍କ ବିଭାଘର ହେବ । ତାରି ଯୋଗାଡ଼ଯନ୍ତ ଆରମ୍ଭ ହୋଇଗଲାଣି ।'

'ହଁ, ବିଭାଘର' କହିଲେ ଭାନୁପ୍ରକାଶ, 'ମୁଁ ବି ସେକଥା ଶୁଣିଲି । ଆଶ୍ୱିନ ପୂର୍ଣ୍ଣିମା !' ସେ ଟିକେ ରହିଗଲେ ଓ କ'ଣ ଭାବିଲା ପରି କହିଲେ, 'ଆଶ୍ୱିନ ପୂର୍ଣ୍ଣିମା କାହିଁକି ? ସେ ତ ଅନେକ ଦିନ ଅଛି । ଏତେ ଆଗରୁ ଏ ଘୋଷଣା କାହିଁକି ?' ଯାଦବମାନଙ୍କୁ ଖୁସି କରିବା ପାଇଁ, ନାଁ ଆଉ କିଛି ?'

'ଯାଦବମାନଙ୍କୁ ଖୁସି କରିବା ପାଇଁ ହୋଇପାରେ । ଅନ୍ୟ କିଛି ମତଲବ ଥିବା ବି ଅସମ୍ଭବ ନୁହେଁ ।' କହିଲେ ସୌରଦେବ – 'ତେବେ ବିଭାଘର ଆଗରୁ ବି ହୋଇପାରେ ।'

'ଅଦ୍ଭୁତ ଅଦ୍ଭୁତ ଚେହେରାର ଲୋକ ସବୁ କଂସଙ୍କ ପାଖକୁ ଆସୁଛନ୍ତି', କହିଲେ ଗୋପା, 'ସେମାନେ ସବୁ ଆମ ଏ ଅଞ୍ଚଳର ଲୋକ ନୁହନ୍ତି । କେଉଁ ଦୂର ଦୂର ଅଞ୍ଚଳର । ମୁହଁ ସବୁ ଚେପ୍ଟା ଚେପ୍ଟା, ଆଖି ସବୁ କଟା କଟା, ବାଳ କହରା, ଦେହର ରଙ୍ଗ ଲାଲ । ମୁଁ ପଚାରି ବୁଝିଥିଲି । କେହି କିଛି କହି ପାରିଲେ ନାହିଁ । ସେମିତିଆ ଲୋକଙ୍କୁ ଏ ପାଖରେ କେହି କେବେ ଦେଖିନାହାନ୍ତି ।'

'ଆଶ୍ଚର୍ଯ୍ୟ କଥା, ଗୋପା ?' ଭାନୁପ୍ରକାଶ କହିଲେ, 'ତୁମେ ଜାଣନା ଯଦି, ଏ ପାଖରେ କେହି କିଛି ଜାଣି ନ ଥିବେ । ତୁମେ ତ ମଥୁରା ଏବେ ଆସିଲ । ତା ପୂର୍ବରୁ ବହୁତ ବହୁତ ରାଜ୍ୟ କଥା ଜାଣିଛ । ମଗଧ, ପାଞ୍ଚାଳ, ହସ୍ତିନାପୁର, କୁରୁକ୍ଷେତ୍ର, ବିଦର୍ଭ, ଅବନ୍ତୀ ଏପରିକି ସରସ୍ୱତୀ ନଦୀ କୂଳର ବହୁ ରାଜ୍ୟ । ତା ହେଲେ ସେମାନେ କିଏ ? କାହିଁକି ଆସୁଛନ୍ତି ?' ଭାନୁପ୍ରକାଶ ଚୁପ କରି କ'ଣ ଭାବିଲେ ।

ଗୋପା କହିଲେ, 'ମୋର ମନେ ହେଉଛି ସେମାନେ ବହୁତ ଦୂରର, ଗାନ୍ଧାର ସେ ପାଖର, ଯବନମାନଙ୍କର ରାଜ୍ୟ ସେ ପାଖର, ସେହି ଯବନ ଗୋଷ୍ଠୀର ଲୋକ ।'

ଭାନୁପ୍ରକାଶ କହିଲେ, 'ତା ଯଦି ହୁଏ, ତା ହେଲେ ଏ କଂସର ସମ୍ପର୍କ ନୁହେଁ, ଜରାସନ୍ଧର ସମ୍ପର୍କ । କାରଣ ଜରାସନ୍ଧର ଯବନମାନଙ୍କ ସହିତ ସମ୍ପର୍କ ଅଛି ।'

'ତା ହବ', କହିଲେ ଗୋପା, 'ସେମାନଙ୍କ ସାଙ୍ଗରେ ପ୍ରାୟ ଜରାସନ୍ଧଙ୍କର

ଲୋକ ଆସନ୍ତି । ସେମାନଙ୍କୁ କଂସ ଖାତିର କରନ୍ତି । ସେମାନେ ରହିବା ପାଇଁ ଅଲଗା କରି ବନ୍ଦୋବସ୍ତ କରାହୋଇଛି । ଖାଇବାର ବି ଅଲଗା ବନ୍ଦୋବସ୍ତ । ସେମାନଙ୍କ ଘର ଚାରିପାଖରେ ସୈନ୍ୟମାନେ ସବୁବେଳେ ଜଗି ରହିଛନ୍ତି । ମଥୁରାର କେହି ସୈନ୍ୟ ନୁହନ୍ତି । ସମସ୍ତେ ଜରାସନ୍ଧଙ୍କର ଲୋକ । ସେଠିକି କେବଳ କଂସ ଓ ରଂଜନଦେବ ଛଡ଼ା ଅନ୍ୟ କେହି ଯିବା ସମ୍ପୂର୍ଣ୍ଣ ମନା । ଆଉ ମୁଁ ଲକ୍ଷ୍ୟ କରି ଦେଖିଛି ସେମାନଙ୍କ ପାଖକୁ କଂସ ବା ରଂଜନଦେବ କେହି ଦିନରେ ଯାଆନ୍ତି ନାହିଁ । କେବଳ ରାତିରେ ।'

'ସେମାନଙ୍କ କାମ ?' ସୌରଦେବ ପଚାରିଲେ ।

'ମୁଁ ଜାଣେନା, କେହିବି ଜାଣନ୍ତିନି, ନାଁ, ରାଣୀମାନେ ବି ନୁହନ୍ତି ।' ଗୋପା କହିଲେ ।

ସମସ୍ତେ ଚୁପ କରି ବସି ରହିଲେ । ଏତେ ଗୋପନୀୟତାରେ ଯେଉଁ କାମ ଚାଲେ ତା ପଛରେ କିଛି ଗଭୀର ଉଦ୍ଦେଶ୍ୟ ଥାଏ ।

ଗୋପା ପୁଣି କହିଲେ, 'ବାହାରୁ ମଧ୍ୟ କିଛି ବୁଝିବାର ଉପାୟ ନାହିଁ । ସବୁଆଡ଼ କବାଟ ବନ୍ଦକରି ଦିଆହୋଇଛି ।'

'କବାଟ ଭିତରେ ବି ଫାଙ୍କ ଥାଏ', ଭାନୁପ୍ରକାଶ ହସିଲେ, 'କିନ୍ତୁ ବାସ୍ତବିକ ତୁମେ ଯାହା କହୁଛ ଠିକ୍ । ମୁଁ ବି ଅନ୍ୟ ସୂତ୍ରରୁ କିଛି କିଛି ଖବର ପାଇଛି । ସେଠି ଗୋଟାଏ କିଛି ହଉଛି । କିନ୍ତୁ କଅଣ ହେଉଛି ଜାଣିବା ସମ୍ଭବ ନୁହେଁ । ମୋର ମନେ ହେଉଛି ଏପରି କିଛି କାମ ହେଉଛି ଯାହା ସମ୍ପର୍କରେ ଆମର କାହାର କିଛି ଧାରଣା ନାହିଁ । କାମ ବାହାରକୁ ଆସିଲେ ହିଁ ଆମେ ଜାଣି ପାରିବା' ।

'କଂସ କ'ଣ ଏତେ ବୁଦ୍ଧିମାନ ଲୋକ ?' କହିଲେ ସୌରଦେବ ।

'ନାଁ', ଭାନୁପ୍ରକାଶ କହିଲେ, 'ଏ ଜରାସନ୍ଧ । ଜରାସନ୍ଧର ଯୋଜନା । ରଂଜନଦେବ ପରି ଲୋକ ଯା ପଛରେ ଅଛନ୍ତି । କାମ ଯେମିତି ହବା କଥା ହବ, କିନ୍ତୁ ଦାୟିତ୍ୱ କାହା ଉପରକୁ ଆସିବ ନାହିଁ, ବାଏଁ ବାଏଁ ଶୂନ୍ୟରେ ଯିବ ।'

ଭାନୁପ୍ରକାଶ ପୁଣି କହିଲେ, 'ଆପଣ ଆଉ ଗୋଟାଏ କଥା ଲକ୍ଷ୍ୟ କରିଛନ୍ତି, ସୌରଦେବ । ତଳ ଘାଟ ବାଟେ ଯିବା ସମୟରେ ମୁଁ ବାରମ୍ବାର ଦେଖୁଛି । ଉଗ୍ରସେନଙ୍କର ସେଇ ପୁରୁଣା କୋଠାରେ ଅନେକ କାମ ଚାଲିଛି, ବହୁତ ଲୋକ ଲାଗିଛନ୍ତି । ମନେହେଉଛି କଂସ ନିଜେ ଆସି ରହିବ ।'

'ହୁଏତ, ବସୁଦେବ ଦେବକୀଙ୍କର ବିଭାଘର ପରେ କଂସ ସେମାନଙ୍କୁ ଏ

ଘରଟା ଦେଇଦେବ', କହିଲେ ସୌରଦେବ ।

'ସମ୍ଭବ', ଭାନୁପ୍ରକାଶ ନିଜକୁ ନିଜେ କହିଲା ପରି କହିଲେ । ତା'ପରେ ସେ ଅରିନ୍ଦମ ଆଡ଼କୁ ବୁଲି ପଡ଼ିଲେ, କହିଲେ, 'ଅରିନ୍ଦମ ତୁମର ସାଙ୍ଗମାନଙ୍କର କାମ କେତେଦୂର ଗଲା ?'

'ଭଲ', ଅରିନ୍ଦମ କହିଲା, 'ମୋର ସାଙ୍ଗମାନେ ତ କଂସକୁ ଅତ୍ୟନ୍ତ ଘୃଣା କରନ୍ତି । ସେମାନଙ୍କ ହାତରେ ଯଦି ସୁଯୋଗ ଥାଆନ୍ତା ସେମାନେ ଗୋଟାଏ ସୂର୍ଯ୍ୟୋଦୟ ଯାଇ ଆଉ ଗୋଟାଏ ସୂର୍ଯ୍ୟୋଦୟ ଆସିବା ଆଗରୁ କଂସକୁ ବିଦା କରିଦିଅନ୍ତେ । ମୁଁ ସେମାନଙ୍କୁ ଅତ୍ୟନ୍ତ ସାବଧାନରେ କାମ କରିବାକୁ କହିଛି, ଯେପରି କଂସକୁ କିଛି ଜଣା ନ ପଡ଼େ ।'

'ଠିକ୍', ଭାନୁପ୍ରକାଶ  କହିଲେ, 'ଯାହା ଜଣାଯାଉଛି କଂସ ଆହୁରି ନୃଶଂସ, ଆହୁରି ଅତ୍ୟାଚାରୀ ହେବ । ସେ ଦେଶ ଜୟ କରି ଆସିଛି । ତା'ର ଗର୍ବର ସୀମା ନାହିଁ । ସେ କ'ଣ କରିବ ନ କରିବ ଠିକଣା ନାହିଁ । ଖୁବ୍ ସାବଧାନ ହେବାକୁ ପଡ଼ିବ ।'

'କିନ୍ତୁ ସେଇଟାହିଁ ଆମର ସୁବିଧା ହୋଇଛି । କଂସର ଚରିତ୍ର କ'ଣ, ସେ କେତେ ନୃଶଂସ ହୋଇପାରେ, ଏ ବିଷୟରେ ଆଉ ଲୋକଙ୍କୁ କହିବା ଦରକାର ନାହିଁ', କହିଲା ଅରିନ୍ଦମ, 'ସେମାନେ ଛାଏଁ ଛାଏଁ ବୁଝି ଯାଉଛନ୍ତି ।'

ଭାନୁପ୍ରକାଶ ପୁଣି ଗୋପାଙ୍କ ଆଡ଼କୁ ବୁଲି ପଡ଼ିଲେ, କହିଲେ, 'ଗୋପା, ଗୋଟାଏ କଥା ମତେ ଠିକ୍ ଲାଗୁନି । ଆଶ୍ୱିନ ପୂର୍ଣ୍ଣିମା କାହିଁକି ? ଦେବକୀ ବସୁଦେବଙ୍କର ବିଭାଘର ଅନ୍ୟ ଯେ କୌଣସି ଦିନ ବି ହୋଇ ପାରିଥାନ୍ତା । ଏତେ ଦିନ ବି ଅପେକ୍ଷା କରିବା ଦରକାର ନାହିଁ ।

'ହଁ, ଆପଣ ଯାହା କହିଲେ ଠିକ୍ କଥା', ଗୋପା କହିଲେ, 'କିଛି କାରଣ ହୁଏତ ଅଛି । କିନ୍ତୁ କ'ର କାରଣ ହୋଇପାରେ ? ମୁଁ ଭାବୁଛି ବୋଧେ କିଛି ନାହିଁ । ସେଦିନ ଗୋଟାଏ ଶୁଭଦିନ । ମା' ଲକ୍ଷ୍ମୀଙ୍କର ପୂଜା । ଆଉ ସେଦିନ ଜହ୍ନ ଆଲୁଅ ସାରା ବର୍ଷରେ ସବୁଠାରୁ ଉଜ୍ଜ୍ୱଳ, ସବୁଠାରୁ ପରିଷ୍କାର । ଝିଅମାନେ ଚନ୍ଦ୍ର ବନ୍ଦାପନା କରନ୍ତି, ସାରା ରାତି ଗୀତ ଗାଆନ୍ତି । ଲୋକଙ୍କର ବିଶ୍ୱାସ ସେଦିନର ସେହି ଉଜ୍ଜ୍ୱଳ ଚନ୍ଦ୍ର କିରଣରେ ଦେବତାମାନେ ପୃଥିବୀକୁ ଓହ୍ଲେଇ ଆସନ୍ତି, ମା' ଲକ୍ଷ୍ମୀଙ୍କୁ ଦର୍ଶନ କରନ୍ତି ଓ ଲୋକମାନଙ୍କର କାମନା ପୂର୍ଣ୍ଣ କରନ୍ତି ।'

'ଏ ସବୁରେ କ'ଣ କଂସ ଓ ଜରାସନ୍ଧର ବିଶ୍ୱାସ ଅଛି, ସୌରଦେବ ?


Digitized by srujanika@gmail.com

ଆପଣ କ'ଣ କହୁଛନ୍ତି ?' ଭାନୁପ୍ରକାଶ ପଚାରିଲେ ।

'ନାଁ, ମୋର ତା ମନେ ହେଉନି', ସୌରଦେବ କହିଲେ, 'ସେମାନେ ଯେଉଁ ପ୍ରକାର ଲୋକ, ସାମାନ୍ୟ ସମ୍ମାନବୋଧ କାହା ପ୍ରତି ନାହିଁ, ସେମାନେ ଏ ସବୁକୁ ଗୁରୁତ୍ୱ ଦେବା ସମ୍ଭବ ନୁହେଁ । ବିଶେଷ କରି ବସୁଦେବ ଦେବକୀର ବିଭାଘରରେ ଏ ପୂର୍ଣ୍ଣିମା ବା ସେ ପୂର୍ଣ୍ଣିମାର ମୂଲ୍ୟ କିଛି ନାହିଁ । ଗୋପା ବୋଧହୁଏ ଠିକ୍ କହିଲେ, ଏ ଗୋଟାଏ କାକତାଳୀୟ ନିଷ୍ପତ୍ତି । ଅନ୍ୟଦିନ ହୋଇପାରି ଥାଆନ୍ତା, ଆଶ୍ୱିନ ପୂର୍ଣ୍ଣିମା ଦିନ ହେଲା ।'

'ବୋଧହୁଏ', କହିଲେ ଭାନୁପ୍ରକାଶ । ମନେହେଲା ସେ ଅନ୍ୟ କିଛି କଥା ଭାବୁଥାନ୍ତି । ସେ ଅରିନ୍ଦମକୁ ଚାହିଁଲେ, କହିଲେ, 'ଅରିନ୍ଦମ, ତୁମ ବାପା ଏ ବିଷୟରେ କିଛି କହୁଥିଲେ କି ?'

'ବାପା ତ ବେଶି କଥା କହନ୍ତି ନାହିଁ ।' ଅରିନ୍ଦମ କହିଲା, 'ତଥାପି ମୁଁ ତାଙ୍କୁ ଏ ବିଷୟରେ କହିଥିଲି । ବିଭାଘର ଘୋଷଣା, ଆଶ୍ୱିନ ପୂର୍ଣ୍ଣିମା ଦିନ ବିଭାଘର, ଏସବୁ କଥା । ସେ କହିଲେ ବସୁଦେବ ଦେବକୀର ବିଭାଘର, ବିଭାଘର କେବେ ହେବ, ବିଭାଘର ପରେ କ'ଣ ହେବ, ଏସବୁ କଂସର ନିଷ୍ପତ୍ତି ନୁହେଁ, ଏସବୁ ପ୍ରାରବ୍ଧ ।

'ପ୍ରାରବ୍ଧ' ?' ଉଭୟ ଭାନୁପ୍ରକାଶ ଓ ସୌରଦେବ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ ।

'ହଁ, ବାପା ତ ସେଇଆ କହିଲେ', ଅରିନ୍ଦମ କହିଲା ।

'ଏସବୁ ବାହାଘର ଫାହାଘର କଥା ଉଠିବା ଆଗରୁ ଗୁରୁଦେବ ବି ପ୍ରାୟ ସେହିକଥା କହିଥିଲେ । ସେ କହିଥିଲେ ମଥୁରାରେ ଅନେକ କଥା ଘଟିବାକୁ ଯାଉଛି, ଅପେକ୍ଷା କର । ତା' ପରେ ପରେ ସେ ଆମକୁ ମଥୁରାରେ କାମ ଆରମ୍ଭ କରିବାକୁ କହିଥିଲେ ।' କହିଲେ ଭାନୁପ୍ରକାଶ ।

ଗୋପା କହିଲେ, 'ଆଉ ଗୋଟାଏ କଥା । କଂସଙ୍କ ପାଖକୁ ଅନେକ ଜ୍ୟୋତିଷ ଓ ଗଣତ୍କାର ବି ଆସୁଛନ୍ତି । ପ୍ରାୟ ଅଧିକାଂଶ ମଥୁରା ବାହାରର ଲୋକ । ମୁଁ ଥରେ ଜଣେ ମଥୁରାର ଚିହ୍ନା ଜ୍ୟୋତିଷଙ୍କୁ ପଚାରିଥିଲି । ସେ କହିଲେ କଂସ ଆମକୁ ବିଶ୍ୱାସ କରନ୍ତିନି । ବିଭାଘର ବିଷୟରେ ସେ କହୁଥିଲେ ବସୁଦେବଙ୍କର ବର୍ତ୍ତମାନ ବିଭାଘର ଯୋଗ ନାହିଁ, ଆଶ୍ୱିନ ପୂର୍ଣ୍ଣିମା ପରେ ଆରମ୍ଭ ହେବ ।'

'ତା ହେଲେ ଏ ଗୋଟା ପୂରା ଜ୍ୟୋତିଷ ବ୍ୟାପାର ।' ସୌରଦେବ କହିଲେ ।

'ମୁଁ ଆଉ ଗୋଟା କଥା ଭାବୁଛି', କହିଲେ ଭାନୁପ୍ରକାଶ । 'ଆମେ ଯେତେ


Digitized by srujanika@gmail.com

ଯେତେ ଖଣ୍ଡ ଖଣ୍ଡ ଖବର ପାଉଛେ ସେସବୁ ମିଶେଇ ଦେଖିଲେ ମନେହେବ ଏ ଖାଲି ବିଭାଘର ପାଇଁ ବିଭାଘର ନୁହେଁ । କାରଣ କଂସ ବା ଜରାସନ୍ଧ କେହି ସିଧା ବା ସୁବିଧା ଲୋକ ନୁହନ୍ତି । ଆମେ ଆଗରୁ ଯାହା ଭାବୁଥିଲେ, ଏ ବିଭାଘର ପଛରେ ଗୋଟାଏ କି ଉଦ୍ଦେଶ୍ୟ ଅଛି, ଆଉ ଭଲ ଉଦ୍ଦେଶ୍ୟ ନୁହେଁ । ସବୁପ୍ରକାର ଯୋଗାଡ଼ଯନ୍ତ୍ର କରିବାକୁ ସମୟ ଲାଗୁଛି ଯେପରି ବାହାରୁ କେହି ସନ୍ଦେହ ନ କରନ୍ତି । ସେଇଥିପାଇଁ ଗୋଟାଏ ଲମ୍ବା ସମୟ ନିଆଗଲା । ଯେମିତି ସବୁ ଗଣ୍ଡିଯାକ ଠିକ୍ ଜାଗାରେ ପଡ଼ିବ ।'

ଅରିନ୍ଦମ, ଦେବପ୍ରିୟ ଓ ସେମାନଙ୍କର ସାଙ୍ଗମାନେ ଭାନୁପ୍ରକାଶଙ୍କ ପ୍ରେରଣାରେ ମଥୁରାରେ ଯେଉଁ ଲୋକ ସମ୍ପର୍କ କାମ ଆରମ୍ଭ କରିଥିଲେ, ଅରିନ୍ଦମର ମନେହେଲା ସେ କାମ ଯେପରି ସେମାନଙ୍କର ଆଖି ଖୋଲିଦେଲା । ମଥୁରା ଖାଲି ସହର ନୁହେଁ, ଗୋଟାଏ ରାଜ୍ୟ, ଓ ବେଶ ବିସ୍ତୃତ ଅଞ୍ଚଳରେ ମଥୁରା ରାଜ୍ୟ ବ୍ୟାପିକରି ରହିଥିଲା । ବିଶେଷ କରି ଯମୁନାର ଦକ୍ଷିଣ କୂଳରେ ମଥୁରା ସହରର ଆୟତନ ବି କମ ନ ଥିଲା । ଅରିନ୍ଦମ ପ୍ରଭୃତି ମଥୁରା ସହର ସହିତ ପୂର୍ବରୁ ପରିଚିତ ଥିଲେ । କିନ୍ତୁ ନିଜର କାମ ପାଇଁ ସେମାନେ ଯେତେବେଳେ ମଥୁରାର ବିଭିନ୍ନ ଅଞ୍ଚଳକୁ ଯିବାକୁ ଆରମ୍ଭ କଲେ ସେମାନେ ଆଶ୍ଚର୍ଯ୍ୟ ହେଲେ ଯେ ମଥୁରାର ବହୁ ବହୁ ବିଭାଗସହିତ ସେମାନେ ପରିଚିତ ନୁହନ୍ତି । ଏ କେବଳ ସହରର ରାସ୍ତା, ଗଳିକନ୍ଦି ବା ଗୋଷ୍ଠୀ-ମୁଖ୍ୟ ମାନଙ୍କର ସୁରମ୍ୟ ହର୍ମ୍ୟ ସବୁ ନୁହେଁ, ସହରର ଜନଜୀବନ, ନାଗରିକ ପରିବାରମାନଙ୍କର ଜୀବନ ଯାତ୍ରା, ସେମାନଙ୍କର ପର୍ବ ପର୍ବାଣୀ, ଧର୍ମ ଧାରଣା, ବିଶ୍ୱାସ ଅବିଶ୍ୱାସ, ହର୍ଷ ବିଷାଦ, ଆନନ୍ଦ ଉଲ୍ଲାସ ଏସବୁ ସହିତ ସେମାନଙ୍କର ପରିଚୟ ହେଲା । ଯାହା ବୁଝିହେଲା, ଲୋକମାନେ ଅତ୍ୟନ୍ତ ସରଳ ଓ ନିରୀହ, ସବୁ କଥାକୁ ବିଶ୍ୱାସ କରନ୍ତି, ଓ ଧର୍ମଭୀରୁ । ରାଜା ସେମାନଙ୍କ ପାଇଁ ଦେବତାଙ୍କ ପରି, ରାଜାଙ୍କ ପାଇଁ ଉଭୟ ଭୟ ଓ ଭକ୍ତି । ସେମାନେ ରାଜାଙ୍କ ସହିତ ବାଦ ବିସମ୍ବାଦ କରିବାକୁ ଚାହାନ୍ତି ନାହିଁ, ଓ ରାଜାଙ୍କର ସବୁ କଥାକୁ ମାନିନବାକୁ ପ୍ରସ୍ତୁତ । ନିଜ ଭିତରେ ଆଲୋଚନା କରୁ କରୁ ଦେବପ୍ରିୟ ଅରିନ୍ଦମକୁ ସେହିକଥା କହିଲା – 'ଅରିନ୍ଦମ ଦେଖୁଛୁ ତ । ଏ ଲୋକମାନେ ଏମିତି । ଏମାନଙ୍କ ଭିତରେ କ'ଣ ଆମେ କାମ କରିବା, କ'ଣ ଆମେ କହିବା ?'

'ଏହିପରି ଲୋକଙ୍କ ଭିତରେ ହିଁ କାମ କରିହୁଏ, ଦେବପ୍ରିୟ' କହିଲା ଅରିନ୍ଦମ ।' 'ଯେଉଁମାନେ ସରଳ ବିଶ୍ୱାସୀ, ଧର୍ମଭୀରୁ, ମଣିଷର ଭଲ ମନ୍ଦ କଥା ଭାବନ୍ତି । ମୁଁ ମଗଧରେ ଦେଖିଛି କିପରି ଭାନୁପ୍ରକାଶ ଲୋକଙ୍କ ସାଙ୍ଗରେ ସମ୍ପର୍କ ରଖନ୍ତି । ଆମେ ଏଠି ଠିକ୍ ସେମିତି କାମ କରିପାରିବା । ସାଧାରଣ ଲୋକେ ପରର

ଭଲ ମନ୍ଦ ବିଷୟରେ ବେଶି ଭାବନ୍ତି ନାହିଁ । ନିଜ ବିଷୟରେ ହିଁ ବେଶି ଭାବନ୍ତି । କିପରି ନିଜେ ନିଜର ପିଲାମାନଙ୍କ ସହିତ ଦୁଃଖ କଷ୍ଟ ନ ଭୋଗି ଭଲରେ ଚଳି ପାରିବେ । ରାଜା ଉଗ୍ରସେନଙ୍କ ସମୟରେ ସବୁ ସହଜ ଥିଲା । ସେ ଲୋକଙ୍କୁ ବିଶ୍ୱାସ କରୁଥିଲେ, ଲୋକେ ବି ତାଙ୍କୁ ବିଶ୍ୱାସ କରୁଥିଲେ । ସବୁ ଭଲ ମନ୍ଦରେ ସେ ଲୋକଙ୍କୁ ଚଳେଇ ନେଉଥିଲେ । କଂସ ଉଗ୍ରସେନଙ୍କ ପରି ନୁହେଁ । ସେ ସ୍ୱାର୍ଥପର, ନୃଶଂସ, ଅତ୍ୟାଚାରୀ । ଲୋକଙ୍କ ପାଇଁ ତା'ର କୌଣସି ଚିନ୍ତା ନାହିଁ । ଲୋକେ ମଲେ କି ଗଲେ ସେ ସମାନ ନିର୍ବିକାର ।'

ଅରିନ୍ଦମର ଭାନୁପ୍ରକାଶଙ୍କ କଥା ମନେପଡ଼ିଲା । ସେ କହିଥିଲେ କଂସ ଜରାସନ୍ଧ ଠାରୁ ଆହୁରି ଅତ୍ୟାଚାରୀ, ଆହୁରି ନୃଶଂସ ହେବ । ସେ ପୁଣି କହିଲା, 'ଯାହା ଜରାସନ୍ଧ କରିପାରି ନ ଥିଲା, କଂସ କଲା । ଡର । ପ୍ରଚଣ୍ଡ ଡରର ହାୱା ସାରା ରାଜ୍ୟରେ ବୁଲି ଯାଇଛି । ଆମେ ଏହାର ସୁବିଧା ନବା ଦରକାର । ମୋର ବିଶ୍ୱାସ ସେମାନେ ଆମ କଥା ଶୁଣିବେ ଓ କଂସ ବିରୁଦ୍ଧରେ ଯାହା କୁହାଯିବ ବିଶ୍ୱାସ କରିବେ ।

'କଂସର ପ୍ରଚାର କିଛି କମ ନୁହେଁ, ଅରିନ୍ଦମ', ସୁରଂଜନ କହିଲା, 'କଂସ ସପକ୍ଷରେ କହିବା ପାଇଁ ଅନେକ ଲୋକ, ଆଉ ସେମାନଙ୍କ କଥା ବି ଅନେକ ଲୋକ ଶୁଣନ୍ତି ଓ ବିଶ୍ୱାସ କରନ୍ତି । ସେମାନେ ଭାବନ୍ତି କଂସ ଗୋଟାଏ ଆଦର୍ଶ ରାଜା, ସେ ଯାହା କରୁଛି ସବୁ ମଥୁରାର ଭଲ ପାଇଁ ଓ ଲୋକଙ୍କ ଭଲ ପାଇଁ ।' 'ତା ହବ', ଅରିନ୍ଦମ କହିଲା, 'ତା ହାତରେ କ୍ଷମତା । ତା' ହାତରେ ଅର୍ଥ । ସେ ଲୋକଙ୍କୁ ଭୟଭୀତ କରି ପାରିବ, ନାନା ପ୍ରକାର ଅନୁଗ୍ରହ କରି ପାରିବ । ସମ୍ପୂର୍ଣ୍ଣ ଅଯୋଗ୍ୟ ଲୋକଙ୍କୁ ଅତ୍ୟନ୍ତ ଯୋଗ୍ୟ ଭାବରେ ଲୋକଙ୍କ ପାଖରେ ଥୋଇ ପାରିବ । ଲୋକେ ବି ନିଜ ସ୍ୱାର୍ଥରେ କଂସକୁ ସମର୍ଥନ କରିବେ, ତା ସପକ୍ଷରେ କହିବେ ।'

'ତୁ ଠିକ୍ କହୁଛୁ, ଅରିନ୍ଦମ' ଦେବପ୍ରିୟ କହିଲା ।

'ଏ ଠିକ୍ ଭୁଲ କଥା ନୁହେଁ, ଦେବ । ଏ ସ୍ୱାଭାବିକ କଥା ।' ଅରିନ୍ଦମର ଭାନୁପ୍ରକାଶଙ୍କ କଥା ପୁଣି ମନେପଡ଼ିଲା । ଭାନୁପ୍ରକାଶ ଏହି କଥାହିଁ କହୁଥିଲେ । ଜଣେ ଅତ୍ୟାଚାରୀ ଶାସକକୁ ଥୋକେ ଲୋକ ନିଜ ସ୍ୱାର୍ଥରେ ସବୁବେଳେ ସମର୍ଥନ କରିବେ । 'ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ', ସେ କହିଲା, 'କଂସ ଯେ ଉଗ୍ରସେନଙ୍କୁ ରାଜଗାଦିରୁ ତଡ଼ିଦେଲା, ନିଜେ ରାଜା ହୋଇ ଆଜି ପର୍ଯ୍ୟନ୍ତ ରହିଛି, ତାକୁ ଯଦି ଆମ ଭିତରୁ ଥୋକେ ଲୋକ ସମର୍ଥନ ନ କରୁଥାନ୍ତେ ଏକଥା କ'ଣ ସମ୍ଭବ ହୁଅନ୍ତା ? ତା' ବିରୁଦ୍ଧରେ ଆଜି ଯଦି ଦଶଟା ଲୋକ ଦମ୍ଭ ହୋଇ ଛିଡ଼ା

ହୁଅନ୍ତେ ଅବସ୍ଥା ବଦଳି ଯାଆନ୍ତା । ସେ କ'ଣ କରନ୍ତା ? ହାଣନ୍ତା, ମାରନ୍ତା, ଅଜସ୍ର ଅର୍ଥ ଖର୍ଚ୍ଚ କରନ୍ତା । କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ହାରନ୍ତା ହିଁ ହାରନ୍ତା । ଏହାହିଁ ଶାସ୍ତ୍ରର କଥା । ବ୍ୟାସଦେବ ଏକଥା କହିବାର ମୁଁ ଭାନୁପ୍ରକାଶଙ୍କ ପାଖୁ ଅନେକ ଥର ଶୁଣିଛି । ଅତୀତରେ ଏହାହିଁ ଘଟିଛି, କଂସ ପାଇଁ ମଧ୍ୟ ତାହାହିଁ ହେବ ।'

ଅରିନ୍ଦମ ଚୁପ କରିଗଲା । ଅନ୍ୟ ବନ୍ଧୁମାନେ ବି ଚୁପ୍ ହୋଇ ତା କଥା ଶୁଣୁଥାନ୍ତି । ସେ ପୁଣି କହିଲା, 'ମୁଁ ଏତେକଥା କହୁଛି ବୋଲି ଭାବନା । ଏସବୁ ଆଲୋଚନା ପାଇଁ । କାମ ଆମର ଯେମିତି ଚାଲୁଥିଲା ସେମିତି ଚାଲୁ । କେବଳ ସାବଧାନ ରୁହ । ଲୋକଶକ୍ତି ହିଁ ଶ୍ରେଷ୍ଠ ଶକ୍ତି । ଦିନେ ନା ଦିନେ ସେ ଶକ୍ତି କଂସ ବିରୁଦ୍ଧରେ, କଂସ ବା ଜରାସନ୍ଧ ପରି ଅତ୍ୟାଚାରୀଙ୍କୁ ଶାସ୍ତି ଦେବା ପାଇଁ ଉଠିବ ହିଁ ଉଠିବ । ଯେଉଁମାନେ ଜ୍ଞାନୀ, ଦିବ୍ୟଦ୍ରଷ୍ଟା ସେମାନଙ୍କର ଏ ବିଶ୍ୱାସ କେବେହେଲେ ଭୁଲ ହେବ ନାହିଁ । ଆମ କାମ ସେହି ଶକ୍ତି ପାଇଁ ଲୋକଙ୍କୁ ପ୍ରସ୍ତୁତ କରି ରଖିବା ।'

ଅରିନ୍ଦମ ନିଜେ ନିଜ କଥାରେ ଆଶ୍ଚର୍ଯ୍ୟ ହେଲା । କାହିଁ, ଏସବୁ କଥା, ଏପରି ଭାବରେ ତ ସେ କେବେ ଭାବୁ ନ ଥିଲା । ଖାଲି ମଥୁରାର ରାଜ୍ୟଶାସନ ନୁହେଁ, ତା'ର ନିଜର ଚିନ୍ତାଧାରା ବି ବଦଳି ଯାଇଛି । ସେ ସ୍ପଷ୍ଟ ଭାବରେ ଅନେକ କଥା ଦେଖିପାରୁଛି ଯାହାକି ପୂର୍ବେ ଏତେ ସ୍ପଷ୍ଟ ନ ଥିଲା । ଲୋକ ଚରିତ୍ର, ସେମାନଙ୍କର ଜୀବନ ଯାତ୍ରାର ଧାରା, ସେମାନଙ୍କର ଭୟ ଆନନ୍ଦ, ନାଁ, ସେ ଠିକ୍ ଭାବରେ ବୁଝିଥିଲା ବୋଲି କହିହବନି । ବିଶେଷ କରି ମଥୁରା ଓ ମଗଧର ସାଧାରଣ ଲୋକଙ୍କର ସରଳତା ଓ ନିରୀହତାର ସୁଯୋଗ ନେଇ କଂସ ବା ଜରାସନ୍ଧ ପରି ଚତୁର ଲୋକେ କ'ଣ କରିପାରନ୍ତି, ସେ ଭାବି ଆଶ୍ଚର୍ଯ୍ୟ ହେଲା । ମନେ ମନେ ସେ ଭାନୁପ୍ରକାଶଙ୍କୁ ନମସ୍କାର କଲା ।

ଆସ୍ତେ ଆସ୍ତେ ମେଘଦିନ ଚାଲିଗଲା । ଆକାଶ ପରିଷ୍କାର ହୋଇ ଆସିଲା । ଧଳା ବାଦଲ ସବୁ ଆକାଶରେ ପିଲାଙ୍କ ପରି ଦୌଡ଼ାଦୌଡ଼ି ଆରମ୍ଭ କରିଦେଲେ । କାଦୁଅ ଶୁଖି ରାସ୍ତାଘାଟରେ ଯିବା ଆସିବା ସୁବିଧା ହୋଇଗଲା । ଯମୁନାର ପାଣି ବି କମିଗଲା । ଗୋଟିଏ ଘରୋଇ ସ୍ତ୍ରୀ ଲୋକ ପରି ଯମୁନା ଆଗ ପରି ମଥୁରା ପାଖ ଦେଇ ବହି ଚାଲିଲା । ଅସଂଖ୍ୟ ସବୁଜ ବୃକ୍ଷଲତା ଓ ନାନା ବର୍ଣ୍ଣର ଫୁଲ ପତ୍ରରେ ମଥୁରାର ଭିତର ଓ ବାହାର ଭରିଗଲା । ଦିନରେ ସୂର୍ଯ୍ୟକିରଣ ଉଜ୍ଜ୍ୱଳତର ହେଲା । ରାତିରେ ଚନ୍ଦ୍ରକିରଣ ଆହୁରି ପରିଷ୍କାର ହେଲା । ଆକସ୍ମିକ ଝଡ଼ ବର୍ଷାରେ କଂସର ସମ୍ବର୍ଦ୍ଧନା ସଭା ଭାଙ୍ଗିଯିବାର ଦୁର୍ଯୋଗ ଲୋକମାନେ ଶୀଘ୍ର ଭୁଲିଗଲେ ।


Digitized by srujanika@gmail.com

ତିନି ଚାରିଦିନ ପରେ କଂସର ନିଜର ଭୀତତ୍ରସ୍ତ ଓ ନିରାଶ ମନୋଭାବ ବି ବଦଳିଗଲା । ସେ ଆଗପରି ନିଜର ଦରବାରକୁ ଆସି ଲୋକଙ୍କୁ ଭେଟିବାକୁ ଆରମ୍ଭ କଲା । ତା'ର ବିଭିନ୍ନ ରାଜ୍ୟ ଜୟ କରି ଆସିବାର ଗର୍ବ ଗୌରବ ମଥୁରାରେ ପ୍ରଚାରିତ ହେଲା ଓ ମଥୁରା ଲୋକେ ସେଥପାଇଁ ଗର୍ବିତ ହୋଇ ଉଠିଲେ । ବସୁଦେବ ଦେବକୀଙ୍କର ବିଭାଘର କଥା ମଧ୍ୟ ବହୁମୁଖରେ ପ୍ରଚାରିତ ହେଲା । ଏ ବିଭାଘର ପାଇଁ କଂସକୁ ଲୋକେ ପ୍ରଶଂସା କଲେ । ବିଭାଘର ଯେ ଗୋଟାଏ ଖୁବ୍ ବଡ଼ ଉତ୍ସବ ହେବ ଲୋକେ ସେକଥା କୁହାକୋହି ହେଲେ ଓ ଅତ୍ୟନ୍ତ ଆଗ୍ରହରେ ଆଶ୍ୱିନ ପୂର୍ଣ୍ଣିମା ଦିନକୁ ଅପେକ୍ଷା କରି ରହିଲେ ।

ଭାନୁପ୍ରକାଶ ଗୁରୁଦେବ ବ୍ୟାସଦେବଙ୍କୁ ଭେଟିବା ପାଇଁ କୁରୁକ୍ଷେତ୍ର ଗଲେ । ସାଙ୍ଗରେ ଗୋପା ବି । ସେମାନେ ଫେରିବା ସମୟରେ ହସ୍ତିନାପୁରରେ ମହାରାଣୀ ସତ୍ୟବତୀ ଓ ମଗଧରେ ସତ୍ୟକାମଙ୍କୁ ଭେଟି ଆଶ୍ୱିନ ପୂର୍ଣ୍ଣିମା ଆଗରୁ ଫେରି ଆସିବା ଠିକ୍ ହେଲା । ସମ୍ଭବ ସତ୍ୟକାମ ବି ଭାନୁପ୍ରକାଶଙ୍କ ସାଙ୍ଗରେ ମଥୁରା ଆସିପାରନ୍ତି । ମଥୁରାରେ ଅରିନ୍ଦମ ଓ ତା'ର ସାଙ୍ଗମାନେ ଦରକାର ସମୟରେ ସୌରଦେବଙ୍କ ସହିତ ପରାମର୍ଶ କରି ଓ ତାଙ୍କର ଉପଦେଶରେ ନିଜର କାମ ଚାଲୁ ରଖିଲେ ।

ନିଜର କାମ ଯେ କ୍ରମଶଃ କେତେ ଜଟିଳ ହୋଇପାରେ ଏକଥା ଅରିନ୍ଦମ ପ୍ରଭୃତି କାମ ଆରମ୍ଭ କରିବା ସମୟରେ ଭାବିପାରି ନ ଥିଲେ । ବିଶେଷ କରି କଂସର ମଥୁରାରେ କୌଣସି ସ୍ଥିରତା ନାହିଁ, କିଛି ସ୍ଥିର ନୁହେଁ, ପ୍ରତ୍ୟେକ ଦିନ ଯାହା ଘଟୁଛି ତାହା ସହିତ ନିଜର କାମକୁ ମିଶେଇବାକୁ ପଡ଼ିବ, ଏହାହିଁ ବଡ଼ କଥା । ସକାଳର ନିଷ୍ପତ୍ତି ସଂଜକୁ ବଦଳି ଯାଉଛି । ଯାହା ସାଧାରଣ ଭାବରେ ମନେହେଉଛି ଘଟିବା କଥା ଠିକ୍ ତା'ର ବିପରୀତ ଘଟୁଛି । ସମସ୍ତଙ୍କର କଂସକୁ ଭୟ, ସମସ୍ତେ ସବୁ କଥାରେ କଂସର ନିଷ୍ପତ୍ତିକୁ ଚାହିଁ ରହୁଛନ୍ତି । କିନ୍ତୁ କଂସର କିଛି ନିଷ୍ପତ୍ତି ନାହିଁ, ସବୁ ତାତ୍କାଳିକ । କୌଣସି ନିଷ୍ପତ୍ତିରେ ସତତା ନାହିଁ, କୌଣସି ନିଷ୍ପତ୍ତି କେତେଦୂର ମଥୁରା ବା ମଥୁରାର ଲୋକଙ୍କ ପାଇଁ ମଙ୍ଗଳକର ସେ ଚିନ୍ତା ନାହିଁ, ପ୍ରତ୍ୟେକ ନିଷ୍ପତ୍ତିର ଉଦ୍ଦେଶ୍ୟ ନିଜ ପାଇଁ, କେତେଦୂର ନିଜର ଓ ନିଜର ଅନୁଗୃହୀତ ଲୋକମାନଙ୍କର ସ୍ୱାର୍ଥ ପୂରଣ ହୋଇ ପାରିବ । ଅରିନ୍ଦମ ଯେତେ ଭାବିଛି ସେତେ ବିସ୍ମିତ ହୋଇଛି । ଏପରି କାହିଁକି ଘଟିଲା ? ଶାସନ ବଦଳି ଗଲା ଠିକ୍ । କିନ୍ତୁ ଏ ତ ଶାସନ ବଦଳିବା କଥା ନୁହେଁ । ନୂଆ ଶାସନକର୍ତ୍ତା ଆସିଲେ ଶାସନ ବଦଳିବ । କିନ୍ତୁ ଏ ତ ଶାସନ ଓଲଟିଗଲା । ଅଧର୍ମ, ଅସତ୍ୟ, ମିଛ, ଯାହା କେବଳ କୁଶାସନ ନୁହେଁ, ଅଶାସନ ।


Digitized by srujanika@gmail.com

ଶାସନର କୌଣସି ନିଷ୍ପତ୍ତି ଲୋକମାନଙ୍କର ସପକ୍ଷରେ ନୁହେଁ, ସବୁ ସେମାନଙ୍କର ବିପକ୍ଷରେ । ମନେ ହେଉଛି ମଥୁରା କଂସର ଦାୟିତ୍ୱ ନୁହେଁ, କଂସ ମଥୁରାର ଦାୟିତ୍ୱ । ତେଣୁ ସାରା ମଥୁରାରେ ଯାହା ଭୟଙ୍କର କୁହୁଡ଼ି ପରି ବ୍ୟାପିଯାଇଛି, କାଳ ରଢ଼ି ପରି ଲୋକଙ୍କୁ ଭୟଭୀତ କରୁଛି, ସେ ଦୁଃଖ, ନିର୍ଯାତନା - ଯେପରି ବିଚାରବନ୍ତ, ମଙ୍ଗଳକାମୀ ମଣିଷର ଶାସନ ନୁହେଁ, ରାକ୍ଷସର ଶାସନ, ଯେଉଁଠି କେହି ନିରାପଦ ନୁହେଁ, ସମସ୍ତେ ଅସହାୟ । ମନେହେଉଛି ଯେପରି ମଣିଷର କୌଣସି ଶକ୍ତି ଲୋକଙ୍କୁ ରକ୍ଷା କରି ପାରିବ ନାହିଁ, ଏକମାତ୍ର ଦୈବୀଶକ୍ତିହିଁ ରକ୍ଷା କରିବ ।

ପର ପର ତିନୋଟି ଘଟଣା ଘଟିଯାଇଥିଲା, ଅରିନ୍ଦମ ମନେ ପକାଇବାକୁ ଚେଷ୍ଟା କଲା । ପ୍ରତ୍ୟେକ ଘଟଣାରେ ସେମାନେ ଯେ କେତେ ଅସହାୟ ବୁଝିବାକୁ କଷ୍ଟ ହେଲା ନାହିଁ । ଘଟଣା ଘଟିଯାଉଛି । ସେମାନଙ୍କର କିଛି କରିବାର ନାହିଁ, କରିବାର ଉପାୟ ବି ନାହିଁ । ସେମାନଙ୍କର ମନୋଭାବ, ଆବେଗ, ଅନୁଭୂତି ବା ଇଚ୍ଛା ଅନିଚ୍ଛାର ମୂଲ୍ୟ କିଛି ନାହିଁ । କେବଳ ନିଷ୍ଫଳ କ୍ରୋଧ - ଦେଖିବା, ଶୁଣିବା, ଚୁପ ରହିବା । କିନ୍ତୁ ଏ ଗୋଟିଏ ଦିଗ । ଅନ୍ୟ ଦିଗରେ ସେ ଦେଖିଲା ଏଇ ଅସହାୟତା ହିଁ ତା'ର ଓ ତା'ର ସାଙ୍ଗମାନଙ୍କର ଶକ୍ତି । ତାତ୍କାଳିକ ଘଟଣାରେ ସେମାନଙ୍କର କ୍ରୋଧ ନିଷ୍ଫଳ । କିନ୍ତୁ କ୍ରୋଧ ଆସିଲା, କ୍ରୋଧ ହିଁ ସେମାନଙ୍କର ମନୋବଳକୁ ଦୃଢ଼ କଲା । ଯାହା ଘଟୁ, ଯେତେ ବିପଦ ଆସୁ, ସେମାନେ ସ୍ଥିର କଲେ କାମ ଚାଲୁ ରହିବ, ଲୋକମାନଙ୍କୁ ଜଣେଇ ଦେବାକୁ ହେବ ଯେ ସେମାନେ ଶକ୍ତିହୀନ ନୁହନ୍ତି, ସେମାନେ ଧୈର୍ଯ୍ୟ ହରାନ୍ତୁ ନାହିଁ । ଆଜି ଯେଉଁ ଦୁର୍ଯୋଗ ଆସିଛି ସେ ଚିରସ୍ଥାୟୀ ନୁହେଁ, ଲୋକମାନଙ୍କର ମିଳିତ ଶକ୍ତି ଆଗରେ ସେ ସ୍ଥିର ହୋଇ ରହିପାରିବ ନାହିଁ । ସେ ଯିବହିଁ ଯିବ । ଆଜି ନ ହେଲେ କାଲି ଯିବ । ଲୋକମାନେ ମନ ଦମ୍ଭ କରନ୍ତୁ । ନିଆଁରେ ସୁନା ଝଟକି ଉଠେ, ନଷ୍ଟ ହୋଇ ଯାଏନା, ଦୃଢ଼ ହୁଅ, ଅବସ୍ଥାକୁ ସହ୍ୟ କର, ଆମେ ତୁମର ପାଖେ ପାଖେ ଅଛୁ ।

ସେଇଆହିଁ ହେଲା । କଂସର ନିର୍ଯାତନା ବଢ଼ି ବଢ଼ି ଚାଲିଲା । ମଥୁରା ଯେ ଗୋଟାଏ ରାଜ୍ୟ, ତା'ର ଅତୀତ ଥିଲା, ଭବିଷ୍ୟତ ବି ଅଛି, ଆର୍ଯ୍ୟାବର୍ତ୍ତରେ ମଥୁରାକୁ ବଞ୍ଚିବାକୁ ହେଲେ ଦମ୍ଭରେ ବଞ୍ଚିବାକୁ ହେବ, ଏକଥା କଂସ ଭୁଲିଗଲା । ଯେପରି ମଥୁରାର ଜୀବନ ନାହିଁ, ମଥୁରାର ଲୋକମାନଙ୍କର ଜୀବନ ଯେପରି ମାଟି ଗରଡ଼ା ଠାରୁ ବି ମୂଲ୍ୟହୀନ । ସେ ମାଂସକୁ ଟିକି ଟିକି କରି କାଟିଲା ପରି ମଥୁରାକୁ କାଟିବାକୁ ଆରମ୍ଭ କଲା । କିନ୍ତୁ ଆଉ କଥା ବି ଘଟିଲା । ଲୋକମାନଙ୍କୁ ଯେତିକି ନିର୍ଯାତନା


Digitized by srujanika@gmail.com

ଦିଆଗଲା, ସେମାନଙ୍କର ଜୀବଜୀବିକା ଯେତିକି ନଷ୍ଟଭ୍ରଷ୍ଟ କରି ଦିଆଗଲା, ସେମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେବାକୁ ଯେତିକି ଚେଷ୍ଟା ହେଲା, ସେମାନେ ସେତିକି ବାଙ୍କି କରି ଛିଡ଼ାହେଲେ, ସେତିକି ସିଧା ହେଲେ, କଂସ ପ୍ରତି ସେମାନଙ୍କର ଘୃଣା ସେତିକି ବଢ଼ି ବଢ଼ି ଚାଲିଲା । ବଣ ନିଆଁ ପରି ତଳେ ତଳେ ନିଆଁ ସାରା ମଥୁରାରେ ବ୍ୟାପିଗଲା । କେବଳ କଂସ ନୁହେଁ, ଅଦୃଶ୍ୟ ନାୟକ ଜରାସନ୍ଧ ପ୍ରତି ମଧ୍ୟ ଘୃଣା ତୀବ୍ର ଦୁର୍ଗନ୍ଧ ପରି ଚାରିଆଡ଼େ ମାଡ଼ି ଗଲା ।

ପ୍ରଥମ ଘଟଣା କଂସ ତା'ର ରାଜ୍ୟ ଜୟ ଅଭିଯାନରୁ ଫେରିଲା ପରେ ଘଟିଲା । ମଥୁରାର ବହୁ ତରୁଣ ବ୍ୟକ୍ତି ଟଙ୍କା ପଇସା ଲୋଭରେ କଂସର ସୈନ୍ୟ ଦଳରେ ଯୋଗ ଦେଇଥିଲେ । ସେମାନଙ୍କୁ ମଥୁରାର ପୁରୁଣା ଓ ବୟସ୍କ ସୈନ୍ୟମାନେ କିଛି କିଛି ଶିକ୍ଷା ଦେଇଥିଲେ । କିନ୍ତୁ ଅଧିକାଂଶ ସାଧାରଣ ଭାବରେ ଯୁଦ୍ଧ କରିବା ଛଡ଼ା ଯୁଦ୍ଧ ବିଦ୍ୟାରେ ମଥୁରା ବାହାରେ ଦୀର୍ଘ ଦିନ ଧରି ଯୁଦ୍ଧ କରିବାରେ ଅଭ୍ୟସ୍ତ ହୋଇ ନ ଥିଲେ । ନବୀନ ବର୍ମା ଏହିପରି ଜଣେ ସୈନିକ । ବୟସ ଚବିଶ ପଚିଶ ହେବ । ଦକ୍ଷିଣ ମଥୁରାର ବସ୍ତି ଅଞ୍ଚଳର ଲୋକ । ବାପ ମା' ନାହାନ୍ତି । ଘରେ ନିଜର ସାନ ଭଉଣୀ, ବୟସ ସତର ଅଠର ହେବ ଓ ତରୁଣ ସ୍ତ୍ରୀ, ବୟସ ଏକେଇଶ ବାଇଶ ହେବ । କଂସର ପ୍ରଚାରରେ ଓ ଅନ୍ୟ ପରିଚିତ ଲୋକଙ୍କର ଉତ୍ସାହରେ ସେ କଂସର ସୈନ୍ୟ ଦଳରେ ଯୋଗ ଦେଲା । କଂସର ଲୋକମାନେ ବି ତା'ର ସ୍ତ୍ରୀ ଓ ଭଉଣୀ ଘରେ ଚଳିବା ପାଇଁ କିଛି ମୁଦ୍ରା ଦେଇଗଲେ । କଂସ ସୈନ୍ୟ ଦଳଙ୍କୁ ଘେନି ଅଭିଯାନରେ ବାହାରିଗଲା । ବେଶ କିଛିଦିନ ଚାଲିଗଲା । ନବୀନର ସ୍ତ୍ରୀ ଓ ଭଉଣୀ ତା ବିଷୟରେ କୌଣସି ଖବର ପାଇଲେ ନାହିଁ । କଂସର ଲୋକମାନେ ଦେଇଥିବା ଟଙ୍କା ପଇସା ମଧ୍ୟ ସରିଗଲା । ବଡ଼ କଷ୍ଟରେ ସେମାନେ ଚଳୁଥାନ୍ତି । ନବୀନର ସ୍ତ୍ରୀର ଭାଇମାନେ କେତେବେଳେ କେମିତି ସାହାଯ୍ୟ କରୁଥାନ୍ତି । ବିଶେଷ କରି ଅରିନ୍ଦମର ସାଙ୍ଗମାନେ ମଧ୍ୟ ମଝିରେ ମଝିରେ ସାହାଯ୍ୟ କରୁଥାନ୍ତି । ଏହି ସମୟରେ କଂସ ନିଜର ଅଭିଯାନରୁ ଫେରି ଆସିଲା । ନବୀନର ସ୍ତ୍ରୀ ଖୁସି ହେଲା ଯେ ଯାହାହେଉ ନବୀନ କିଛି ଟଙ୍କା ପଇସା ନେଇ ଫେରିବ । କିନ୍ତୁ ନବୀନ ଫେରିଲା ନାହିଁ । କିଛିଦିନ ଚାଲିଗଲା । ନବୀନର ସ୍ତ୍ରୀ ଏଠି ସେଠି ବୁଝିବାକୁ ଚେଷ୍ଟା କରି ମଧ୍ୟ କୌଣସି ଖବର ପାଇଲା ନାହିଁ । କଂସର ଲୋକମାନେ କୌଣସି ଖବର ଦେଲେ ନାହିଁ । ଅରିନ୍ଦମର ସାଙ୍ଗମାନେ ଚେଷ୍ଟା କରି ମଧ୍ୟ କୌଣସି ଖବର ପାଇପାରିଲେ ନାହିଁ । ସମସ୍ତେ ଧରିନେଲେ, ନବୀନ ନିଶ୍ଚୟ ଯୁଦ୍ଧରେ ହାଣ ଖାଇ ଯାଇଛି । ନବୀନର

ସ୍ତ୍ରୀ ଦେଖିବାକୁ ଭଲ, ସ୍ୱାସ୍ଥ୍ୟବତୀ । ଅରିନ୍ଦମ ଓ ତା'ର ସାଙ୍ଗମାନେ ଠିକ୍ କଲେ ଯଦି ସମ୍ଭବ ହେବ ନବୀନର ସ୍ତ୍ରୀକୁ ଆଉ ଥରେ ବିଭା କରିଦେବେ, ବା ତାକୁ ଓ ନବୀନର ଭଉଣୀ ଉଭୟଙ୍କ ପାଇଁ କୌଣସି ଭଦ୍ର କାମର ବ୍ୟବସ୍ଥା କରିଦେବେ । କିନ୍ତୁ ଏହି ସମୟରେ ଅନ୍ୟ କିଛି ଲୋକ ସେମାନଙ୍କୁ ଅନ୍ୟ ଉପଦେଶ ଦେଲେ । କହିଲେ, ସେମାନେ କଂସ ପାଖକୁ ଯାଆନ୍ତୁ । କଂସ ଦୟାଳୁ । ନବୀନ କଂସର ସୈନ୍ୟଦଳରେ ଯୋଗ ଦେଇଥିଲା । କଂସ ନିଶ୍ଚୟ ସେମାନଙ୍କ ପାଇଁ କିଛି ଗୋଟାଏ ଭଲ ବନ୍ଦୋବସ୍ତ କରିବ । ସେମାନେ ଗଲେ – ସ୍ତ୍ରୀ ଓ ଭଉଣୀ । ସାଙ୍ଗରେ ଦି ତିନି ଜଣ ଉତ୍ସାହୀ ଲୋକ ବି ଗଲେ । ସେମାନେ ସମସ୍ତେ କଂସକୁ ସକାଳେ ତା ଦରବାରରେ ଦେଖାକଲେ । ନବୀନର ସ୍ତ୍ରୀ କଂସକୁ ନିଜର ଦୁର୍ଦ୍ଦଶା କଥା କହିଲେ, ନିଜର ଦୁଃଖ କଷ୍ଟ ଜଣେଇଲେ । ନବୀନ କିପରି ଆଗ୍ରହରେ କଂସର ସୈନ୍ୟ ଦଳରେ ଯୋଗ ଦେଇଥିଲେ ଓ ନିଜର ମନ୍ଦ ଭାଗ୍ୟରୁ ଆଉ ଫେରିଲେ ନାହିଁ ସେ କଥା ବି କହିଲେ । କଂସ ସବୁ ଶୁଣିଲା । ଯଥେଷ୍ଟ ସହାନୁଭୂତି ଦେଖେଇଲା । ନବୀନର ସ୍ତ୍ରୀ ଓ ଭଉଣୀକୁ ଲକ୍ଷ୍ୟ କରି କହିଲା – ତୁମ ସାଙ୍ଗରେ ଯେଉଁ ଅନ୍ୟ ଲୋକମାନେ ଆସିଛନ୍ତି ସେମାନେ ଯାଆନ୍ତୁ । ତୁମେ ଉଭୟ ମୋର ବାହାର ଘରକୁ ଚାଲି ଯା । ସେଠି ଖାଇବାର ବନ୍ଦୋବସ୍ତ ଅଛି, ଖାଇ ନିଅ । ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କର । ମୁଁ ସନ୍ଧ୍ୟାରେ ତୁମ କଥା ବୁଝିବି । ସେମାନେ ସାମାନ୍ୟ ଇତସ୍ତତଃ କଲାରୁ, ପୁଣି କହିଲା – ଭୟ କରନା । ବେଶି ରାତି ହୋଇଗଲେ ମୋ ଲୋକ ସାଙ୍ଗରେ ଯାଇ ଘରେ ଛାଡ଼ିଦେଇ ଆସିବେ । ସାଙ୍ଗ ଲୋକମାନେ ବସ୍ତିକୁ ଫେରି ଆସିଲେ । ସେମାନେ କଂସର ବାହାର ଘରକୁ ଗଲେ । ବାସ୍ । ସେମାନେ ରାତିରେ ଘରକୁ ଫେରିଲେ ନାହିଁ । ସକାଳୁ ନବୀନର ବୁଢ଼ା ବାପ ଆଉ କିଛି ଲୋକଙ୍କୁ ସାଙ୍ଗରେ ନେଇ କଂସର ଦରବାର ଘର ପାଖକୁ ଯାଇ ପଚରାଉଚରା କଲା । କେହି କିଛି କହି ପାରିଲେ ନାହିଁ । ସେମାନେ କଂସର ବାହାର ଘରକୁ ବି ଯାଇଥିଲେ । ସେଠି ସେମାନେ କହିଲେ ଏଠିକି ସ୍ତ୍ରୀ ଲୋକ ଝିଲୋକ କେହି ଆସି ନାହାନ୍ତି । କଂସକୁ ପଚାର । ସେମାନେ କଂସ ପାଖକୁ ଯାଇ ଗୁହାରି ହୋଇଥିଲେ । କହିଥିଲେ ନବୀନର ସ୍ତ୍ରୀ ଓ ଭଉଣୀ କୁଆଡ଼େ ଗଲେ । ଘରେ ବୁଢ଼ାବୁଢ଼ୀ ଦି ଜଣ । ରୋଗୀଣା । ତାଙ୍କ ସେବା କରିବ କିଏ ? ସେମାନେ ନ ଖାଇ ନ ପିଇ ମରିଯିବେ । ଦୟା କରି ନବୀନର ସ୍ତ୍ରୀ ଓ ଭଉଣୀକୁ ଫେରେଇ ଦିଅ । ବୁଢ଼ା ବାପ ବି କନ୍ଦାକଟା କଲା । କଂସ ଗର୍ଜି ଉଠିଥିଲା । ଅଶ୍ରାବ୍ୟ ଭାଷାରେ ଗାଳିଦେଇ କହିଲା – ମୁଁ କ'ଣ ତାଙ୍କୁ ବାନ୍ଧି କରି ରଖିଛି ନା ଖାଇଗଲି । ଯା, ଯା, କୁଆଡ଼େ ଗଲେ ଖୋଜିକରି ଦେଖ । ଅରିନ୍ଦମର

ସାଙ୍ଗମାନେ ଖୋଜାଖୋଜି କରିଥିଲେ । ସେମାନେ ଯାଇ ସୌରଦେବଙ୍କୁ କହିଥିଲେ । ସୌରଦେବ ସେମାନଙ୍କୁ ଚୁପ୍ ରହିବାକୁ କହି ନିଜେ ଲୋକ ପଠେଇ ଖୋଜାଖୋଜି କଲେ । ତିନିଦିନ ପରେ ଯମୁନା କୂଳରୁ ଗୋଟାଏ ନିଛାଟିଆ ବୁଦା ମୂଳୁ ଦି'ଟା ସ୍ତ୍ରୀଲୋକଙ୍କର ଶବର ସନ୍ଧାନ ମିଳିଲା । କମ ବେଶି ବୟସର । ଚିହ୍ନିବାର ଉପାୟ ନ ଥିଲା । ଶବର ଅଧିକାଂଶ ଅଂଶ ବିଲୁଆ ଶାଗୁଣା ଖାଇଯାଇ ଥିଲେ । ପ୍ରଚଣ୍ଡ ଦୁର୍ଗନ୍ଧରେ ସେ ଖଣ୍ଡମଣ୍ଡଳ ଫାଟି ପଡୁଥିଲା । ସୌରଦେବ ଆଉ ଅନୁସନ୍ଧାନ କଲେ ନାହିଁ । ସେ ଶବ ଦୁଇଟାକୁ ସେମିତି ପଡ଼ି ରହିବାକୁ ଛାଡ଼ିଦେଲେ । କିଛିଦିନ ପରେ ଲୋକମାନେ ଫୁଟଫାଟ ହେଲେ କଂସ ସେ ଭାଉଜ ନଣନ୍ଦଙ୍କୁ ତାର ରାକ୍ଷସ ସୈନ୍ୟଙ୍କୁ ଦେଇ ଦେଇଥିଲା । ସେମାନେ ଯାହା ଅତ୍ୟାଚାର କରିବା କଥା କରି ଦିହିଁଙ୍କି ଜୀବନରୁ ମାରିଦେଲେ ।

ଦ୍ୱିତୀୟ ଘଟଣା ଆହୁରି ନୃଶଂସ । ଏଇ ଘଟଣାର ପ୍ରାୟ ପାଖାପାଖି ସମୟରେ ଘଟିଥିଲା । କଂସର ମଗଧ ସୈନ୍ୟମାନଙ୍କୁ ନେଇ । ଏଇ ଘଟଣା ତ ଲୋକେ ଜାଣିପାରିଲେ ନାହିଁ । ତାଙ୍କ ଆଖି ଆଢୁଆଳରେ ଘଟିଗଲା । ଦ୍ୱିତୀୟ ଘଟଣା ଆଢୁଆଳରେ ନୁହେଁ । ଲୋକଙ୍କ ଆଖି ସାମ୍ନାରେ, ଦିନ ଦିପହରେ । ଏ ମଥୁରାର ବସ୍ତି ଅଞ୍ଚଳରେ ନୁହେଁ, ଉତ୍ତର ମଥୁରା, ଧନୀ, ଜଣାଶୁଣା ମୁଖିଆ ଲୋକମାନଙ୍କର ଅଞ୍ଚଳରେ । କଂସ ରାଜାହେଲା ପରେ ତାର ଗୋଟାଏ ପ୍ରଥମ କାମ ହେଲା ମଥୁରାର ଅନେକ ଅଂଚଳରେ, ବିଶେଷ କରି ସ୍ୱଚ୍ଛଳ ଲୋକମାନଙ୍କ ଅଞ୍ଚଳରେ ତା' ସାଙ୍ଗରେ ଆସିଥିବା ଜରାସନ୍ଧର ସୈନ୍ୟମାନଙ୍କୁ ମୁତୟନ କରିଦେବା । ସୈନ୍ୟମାନଙ୍କ କାମ ଅନ୍ତତଃ ବାହାରକୁ ଖୁବ୍ ସରଳ ଓ ଦରକାରୀ ବୋଲି ଘୋଷଣା କରାଗଲା । ମଥୁରା ବେଶ୍ ବଡ଼ ଅଞ୍ଚଳ । ମଥୁରାର ଦକ୍ଷିଣରୁ ଦକ୍ଷିଣକୁ ଜଙ୍ଗଲ ଭର୍ତ୍ତି । ଜଙ୍ଗଲରେ ଯେ ଖାଲି ବଣ ଜନ୍ତୁ ଅଛନ୍ତି ତାହା ନୁହେଁ, ବହୁ ଦସ୍ୟୁ, ତସ୍କର ମଧ, ଯେଉଁମାନେ ରାତି ହୋଇଗଲେ ମଥୁରାର ବହୁ ଅଞ୍ଚଳରେ ଉତ୍ପାତ କରନ୍ତି, ବିଶେଷ କରି ଟଙ୍କାପଇସା ଥିବା ସ୍ୱଚ୍ଛଳ ଲୋକମାନଙ୍କର ଘରଦ୍ୱାର ରାତିରେ ଜମା ନିରାପଦ ନୁହେଁ । ତେଣୁ ସୈନ୍ୟମାନଙ୍କୁ ବିଭିନ୍ନ ମହଲାରେ ରଖାଗଲା, ଯେପରି ସେହି ସେହି ମହଲାରେ ସେମାନେ ଜଗାରଖା କରିପାରିବେ ଓ ଦସ୍ୟୁ ତସ୍କର, ଏପରିକି ବନ୍ୟଜନ୍ତୁଙ୍କ ପାଖରୁ ଲୋକେ ନିରାପଦରେ ରହି ପାରିବେ । ପ୍ରଥମେ ପ୍ରଥମେ ଲୋକମାନେ ସନ୍ଦେହ କରିଥିଲେ । ବଣ ଜଙ୍ଗଲ କାଟି ନୂଆ ନୂଆ ବସତି କରାଯାଉଛି । ସବୁଦିନେ ଜନ୍ତୁଜନ୍ତା, ଦସ୍ୟୁ ତସ୍କର ରହିଛନ୍ତି । ମଥୁରାର ମହଲାମାନଙ୍କରେ ସେମିତି ଯେ ଗୋଟାଏ ବଡ଼ ଦୁର୍ଘଟଣା କେବେ ଘଟିଛି ତା ନୁହେଁ । ଛୋଟ ଛୋଟ ଚୋରିମୋରୀ ତ ସବୁଦିନେ

ଲାଗି ରହିଛି । ସେଥିପାଇଁ ଲୋକମାନେ ବ୍ୟସ୍ତ ନୁହନ୍ତି । ତା ଛଡ଼ା ମଗଧର ସୈନ୍ୟମାନେ କାହିଁକି ? ସେମାନେ ଅଜଣା, ଅଶୁଣା - ସ୍ଥାନୀୟ ଲୋକମାନଙ୍କୁ ଚିହ୍ନନ୍ତି ନାହିଁ, ସ୍ଥାନୀୟ ଭାଷା ବି ବୁଝନ୍ତି ନାହିଁ । ମଥୁରାର ପୁରୁଣା ସୈନ୍ୟମାନଙ୍କୁ ମୁତୟନ କରାଯାଇ ପାରିଥାନ୍ତା । ସେମାନେ ମହଲାରୁ, ବସ୍ତିମାନଙ୍କରୁ ଯାଇ ସୈନ୍ୟ ଦଳରେ ମିଶିଛନ୍ତି । ସେମାନେ ସ୍ଥାନୀୟ ବାସିନ୍ଦା ପରି । ସେମାନଙ୍କ ଉପରେ ନିର୍ଭର କରିହେବ । ଏମାନେ କିଏ ? ସେମାନଙ୍କୁ ଛାଡ଼ି ଏମାନଙ୍କୁ କାହିଁକି ରଖାଗଲା ? ପ୍ରଥମେ ପ୍ରଥମେ ଏସବୁ କଥା ଉଠିଥିଲା । କିନ୍ତୁ ଘୋଷଣା କରାଗଲା ଲୋକମାନେ ବ୍ୟସ୍ତ ହୁଅନ୍ତୁ ନାହିଁ । ଏମାନେ ବି ମଥୁରାର ପୁରୁଣା ସୈନ୍ୟମାନଙ୍କ ପରି, ଏମାନଙ୍କ ଉପରେ ବି ସମାନ ନିର୍ଭର କରିହେବ । ଆଉ କିଛି କରିବାର ନ ଥିଲା । ଲୋକମାନେ ଚୁପଚାପ ରହିଲେ । କିନ୍ତୁ ତଣ୍ଟିରେ କଣ୍ଟା ଲାଗିଲା ପରି ମନ ଭିତରେ ଭିତରେ ଅସ୍ୱସ୍ତି ଭାବ ରହିଗଲା । କିଛିଦିନ ଗଲା । ମଗଧର ସୈନ୍ୟମାନେ ରାତିରେ ତ ବୁଲାବୁଲି କରୁଥିଲେ, ଦିନରେ ବି ବୁଲାବୁଲି କରିବାକୁ ଆରମ୍ଭ କଲେ । ଘରୋଇ ଲୋକମାନଙ୍କ ସହିତ ସମ୍ପର୍କ ରଖି ସେମାନଙ୍କ ଘରେ ଖିଆପିଆ କରିବାକୁ ଆରମ୍ଭ କଲେ । ସେମାନଙ୍କ ଢଙ୍ଗଢ଼ାଙ୍ଗ ସମ୍ପର୍କରେ ମଝିରେ ମଝିରେ ଅଖାଡୁଆ କଥାସବୁ ଶୁଣାଯାଉଥାଏ । କିନ୍ତୁ କଂସ ଡରରେ କେହି କିଛି ଖୋଲାଖୋଲି କହୁ ନ ଥାନ୍ତି । ପ୍ରାୟ ଚୁପଚାପ ଥାଆନ୍ତି । ଏହି ସମୟରେ ସେ ଘଟଣା ଘଟିଲା ।

ଉତ୍ତର ମଥୁରାରେ ରଶ୍ମିରାୟ ଜଣେ ସମ୍ପନ୍ନ ଗୃହସ୍ଥ । ସେ ଉଗ୍ରସେନଙ୍କ ରାଜଦରବାରରେ ଜଣେ ଦାୟିତ୍ୱସମ୍ପନ୍ନ ଅଧିକାରୀ ଭାବରେ କାର୍ଯ୍ୟ କରୁଥିଲେ । କଂସ ଆସିବା ପରେ ଉଗ୍ରସେନଙ୍କ ଦରବାରର ଅନେକ କର୍ମଚାରୀ ଅବସର ନେଇ ବାହାରି ଆସିଥିଲେ । ରଶ୍ମିରାୟ ସେମାନଙ୍କ ମଧ୍ୟରୁ ଜଣେ । କଂସ ବିରୁଦ୍ଧରେ ତାଙ୍କର କିଛି ଅଭିଯୋଗ ନ ଥିଲା । କିନ୍ତୁ ସେ ଆଉ କାର୍ଯ୍ୟ କରିବାକୁ ଚାହିଁଲେ ନାହିଁ । ଖୁବ୍ ନରମ ପ୍ରକୃତିର ବ୍ୟକ୍ତି, ତାଙ୍କର ପାରିବାରିକ ଆବଶ୍ୟକତା ମଧ୍ୟ ଖୁବ୍ ବେଶି ନ ଥିଲା । ସେ, ତାଙ୍କର ସ୍ତ୍ରୀ ଓ ଦୁଇ ବଡ଼ ଝିଅ । ଝିଅ ଦୁଇଟି ବିଭାହୋଇ ନ ଥିଲେ । ବିଭାଘର ପାଇଁ ସେମାନେ ଆଗ୍ରହୀ ବି ନ ଥିଲେ । ବାପା, ମା ଓ ଝିଅମାନେ ଲୋକମାନଙ୍କ ସହ ମିଶାମିଶି କରୁଥିଲେ, ଦୁଃଖି ଦରିଦ୍ରଙ୍କୁ ସାହାଯ୍ୟ କରୁଥିଲେ, କିଛି କିଛି ସାମାଜିକ କାର୍ଯ୍ୟ ବି କରୁଥିଲେ । ମୋଟାମୋଟି ଭାବରେ ମଥୁରାର ଯେଉଁ ପରିବାରମାନେ ମଥୁରାର ଉନ୍ନତି ପାଇଁ ଚିନ୍ତା କରୁଥିଲେ ଓ କଂସ ଯେପରି ଭାବରେ ରାଜଗାଦି ଅକ୍ତିଆର କଲା ସେଥିପାଇଁ ଖୁସି ନ ଥିଲେ, ରଶ୍ମିରାୟଙ୍କ ପରିବାର ସେମାନଙ୍କ ଭିତରୁ ଗୋଟିଏ । କିନ୍ତୁ କଂସ ବିରୁଦ୍ଧରେ ଖୋଲାଖୋଲି ପ୍ରତିବାଦ କରିବା ବା କଂସର


Digitized by srujanika@gmail.com

କାର୍ଯ୍ୟ ସମ୍ପର୍କରେ ମତାମତ ଦେବା, ସେ କାମ ସେ କରୁ ନ ଥିଲେ । କୁହାଯାଇପାରେ ଜଣେ ନିର୍ବିବାଦୀ ଭଦ୍ର ପରିବାର, ଯାହାଙ୍କ କଥା ଲୋକମାନେ ଶୁଣୁଥିଲେ ଓ ସମ୍ମାନ କରୁଥିଲେ । ସୌରଦେବଙ୍କ ସହିତ ତାଙ୍କର ପରିଚୟ ଥିଲା ଓ ସୌରଦେବଙ୍କ ମତରେ ରଶ୍ମି ରାୟ ଜଣେ ବିଶ୍ୱାସଯୋଗ୍ୟ ବ୍ୟକ୍ତି । ଅରିନ୍ଦମର ସାଙ୍ଗମାନେ ମଧ୍ୟ ରଶ୍ମି ରାୟଙ୍କ ଘରକୁ ମଝିରେ ମଝିରେ ଯାଉଥିଲେ । ଏପରିକି ଅରିନ୍ଦମ ମଧ୍ୟ ଦି' ତିନି ଥର ଯାଇଛି । ଯେତେବେଳେ ସେମାନେ ଯାଆନ୍ତି ସେମାନଙ୍କୁ ନ ଖୋଇ ନ ପେଇ ରଶ୍ମିରାୟଙ୍କ ପରିବାର ଛାଡୁ ନ ଥିଲେ । ତେଣୁ ରଶ୍ମିରାୟଙ୍କ ପରିବାରକୁ ଗୋଟାଏ କିଛି ଅଘଟଣ ଘଟିବ ଏକଥା କେହି ଆଶଙ୍କା କରୁ ନ ଥିଲା । କିନ୍ତୁ ଘଟିଲା ।

ଦିନେ ପ୍ରାୟ ସନ୍ଧ୍ୟା ଲାଗି ଲାଗି ଆସୁଛି, ରଶ୍ମି ରାୟ ଓ ତାଙ୍କ ପରିବାର ଘର ଭିତରେ ଅଛନ୍ତି, କିଏ ବା କେଉଁମାନେ ଆସି ତାଙ୍କର ଦାଣ୍ଡ କବାଟ ବାଡ଼େଇଲେ । ରଶ୍ମି ରାୟ କବାଟ ଖୋଲି ଦେଖିଲେ ଚାରିଜଣ ମଗଧ ସୈନିକ । ତାଙ୍କ ଭିତରୁ ଜଣେ ତାଙ୍କର ଦୋ ଦୋ ଚିହ୍ନା, ଅର୍ଥାତ୍ ତାକୁ ସେ ଆଗରୁ ଦେଖିଛନ୍ତି । ବାକି ତିନିଜଣ ଅଚିହ୍ନା । ବେଶ୍ ତଗଡ଼ା ତଗଡ଼ା । ଚେହେରା ପରି ମୁହଁ, ଆଖି ଦେଖିଲେ ଜଣେ ଲୋକ ଡରିଯିବ । ସେ ଆଶ୍ଚର୍ଯ୍ୟ ହେଲେ । ଏମାନେ କାହିଁକି ଏ ଅସମୟରେ ତାଙ୍କ ଘରକୁ ଆସିଛନ୍ତି ? ଏମାନେ ରାସ୍ତାରେ ବୁଲାବୁଲି କରିବା ସେ ଦେଖିଛନ୍ତି । ମଝିରେ ମଝିରେ ଲୋକମାନଙ୍କ ଘରକୁ ସେମାନେ ଯାଆନ୍ତି । ସେମାନଙ୍କ ବିଷୟରେ ବହୁତ ଖରାପ କଥା ଶୁଣାଯାଏ । ସେମାନଙ୍କ ବ୍ୟବହାର ଆଦୌ ଭଲ ନୁହେଁ । ଅଭିଯୋଗ କଲେ ମଧ୍ୟ କଂସ ଏମାନଙ୍କର ବିରୁଦ୍ଧରେ କୌଣସି କଥା ଶୁଣେ ନା, ବରଂ ଅଭିଯୋଗ କରିବା ଲୋକ ଅପମାନ ପାଇ ଫେରେ । ତେଣୁ ସନ୍ଧ୍ୟାବେଳେ ଏମାନେ କାହିଁକି ତାଙ୍କ ଘରକୁ ଆସିଛନ୍ତି ସେ ଭାବିପାରିଲେ ନାହିଁ । ତାଙ୍କୁ ଭୟ ଲାଗିଲା । ତାଙ୍କ ଘରେ ସେ, ତାଙ୍କ ସ୍ତ୍ରୀ ଓ ଦୁଇ ଝିଅଙ୍କ ଛଡ଼ା ଆଉ କେହି ନାହାନ୍ତି । ଦିନରେ ଯେଉଁ ଲୋକମାନେ ତାଙ୍କ ଘରେ ରହି ତାଙ୍କୁ ଘର କାମରେ ସାହାଯ୍ୟ କରନ୍ତି ସେମାନେ ସବୁ ଚାଲିଗଲେଣି । ତାଙ୍କର ଏପରି କିଛି ଟଙ୍କା ପଇସା ନାହିଁ ଯାହାକୁ କି ବାହାର ଲୋକ ଲୋଭ କରିବ । ଏ ଲୋକମାନେ ଦିନେ କେବେ ଘରକୁ ଆସି ନାହାନ୍ତି । ହଠାତ୍ ଗୋଟାଏ କଥା ତାଙ୍କ ମନକୁ ଆସି ସେ ସଂକୁଚିତ ହୋଇଗଲେ । ତାଙ୍କର ଦୁଇ ଝିଅ ଦେଖିବାକୁ ଭଲ, ସୁନ୍ଦରୀ ଭାବରେ ତାଙ୍କର ନାଁ ଡାକ ଅଛି । ସେ ସେମାନଙ୍କର ବିବାହ ପାଇଁ ଅନେକ ଚେଷ୍ଟା କରିଛନ୍ତି । କିନ୍ତୁ ସେମାନେ ବିବାହ ହେବାପାଇଁ ରାଜି ହୋଇ ନାହାନ୍ତି । ଲୋକମାନଙ୍କର ସହିତ ମିଳି ମିଶି, ସେମାନଙ୍କର ଭଲ ମନ୍ଦରେ କାମ କରିବାକୁ ସେମାନେ ଭଲ ପାଆନ୍ତି ।

ସେଥିପାଇଁ ସେମାନଙ୍କର ଖ୍ୟାତି ବି ଅଛି, ଆଉ ଲୋକମାନେ ସେମାନଙ୍କ କଥା ଶୁଣନ୍ତି ଓ ସେମାନଙ୍କୁ ସ୍ନେହ କରନ୍ତି । ତିନି ଚାରିଥର ସେମାନେ ଲୋକଙ୍କୁ ସାଙ୍ଗରେ ନେଇ କଂସ ପାଖକୁ ଯାଇଛନ୍ତି, ଏଇ ସୈନ୍ୟମାନଙ୍କର କାମ ବିରୁଦ୍ଧରେ ପ୍ରତିବାଦ କରିଛନ୍ତି । କଂସ ଅବଶ୍ୟ ଖୋଲାଖୋଲି କିଛି କହିନାହିଁ । ଏମାନଙ୍କ କଥା ଶୁଣିଛି, ବୁଝାବୁଝି କରିବ ବୋଲି କହିଛି । କିନ୍ତୁ କଂସ କଂସ । ସେ କେବେହେଲେ ସତ କଥା କହେନା, ଯାହା କହେ ଠିକ୍ ତା'ର ବିପରୀତ କରେ । ଲୋକଙ୍କ ଭଲମନ୍ଦ କଥା ବୁଝିବ, ପ୍ରତିକାର କରିବ, କଂସକୁ ଏତେ ଦୂର ବିଶ୍ୱାସ କରିବାକୁ ସେ ରାଜି ନୁହନ୍ତି । ଏକଥା ସେ ଝିଅମାନଙ୍କୁ କହିଛନ୍ତି । କଂସ ପାଖକୁ ବାରମ୍ବାର ଯିବା ଭଲ ନୁହେଁ, ଏକଥା ବି ସେ କହିଛନ୍ତି । କିନ୍ତୁ ଝିଅମାନେ ଶୁଣି ନାହାନ୍ତି । ଖାଲି ତାଙ୍କର କଥା ନୁହେଁ, ସେମାନଙ୍କ ମା' ବି କଂସ ପାଖକୁ ନ ଯିବା ପାଇଁ ବା ଆପାତତଃ କଂସ ବିରୁଦ୍ଧରେ କିଛି କହିବା ବା କରିବା ପାଇଁ ସେମାନଙ୍କୁ ମନା କରିଚନ୍ତି । ସେମାନେ ଶୁଣି ନାହାନ୍ତି । ଗୋଟିଏ କଥା ସବୁବେଳେ କହନ୍ତି – ଏତେ ଡରିଲେ ଚଳିପାରିବ ନାହିଁ । ଗୋଟାଏ ଅତ୍ୟାଚାରୀର ଅନ୍ୟାୟ କାମ ବିରୁଦ୍ଧରେ ପ୍ରତିବାଦ କରିବା ଦରକାର । ସେମାନଙ୍କୁ ସୌରଦେବ ବି ସାବଧାନ କରି ଦେଇଛନ୍ତି । କଂସ ଅତ୍ୟାଚାରୀ, କିନ୍ତୁ ଚତୁର, ତାକୁ ବିଶ୍ୱାସ ନାହିଁ । ମଥୁରା ଓ ମଥୁରା ଲୋକଙ୍କର ସେ ପ୍ରଧାନ ଶତ୍ରୁ ।

ସନ୍ଧ୍ୟାର ଅନ୍ଧାରରେ ନିଜ ଘରର ଦୁଆର ମୁହଁରେ, ଚାରିଟା ଅଚିହ୍ନା ଷଣ୍ଢା ପରି ଲୋକଙ୍କୁ ଦେଖି ରଶ୍ମି ରାୟଙ୍କ ମନରେ ଏହିସବୁ କଥା ଖେଳିଗଲା । ଏମାନେ କାହିଁକି ଆସିଛନ୍ତି ? କିଛି ଦୁଷ୍ଟ ଉଦ୍ଦେଶ୍ୟ ନାହିଁ ତ ? ସେ ନିଜର ଭୟ ମନରେ ଚାପିରଖି, ଅଧା ଅଧା ଜାଣିଥିବା ଲୋକଟାକୁ ହସି ହସି ପଚାରିଲେ – 'ବାବୁ, କ'ଣ ହେଲା ? କ'ଣ କାମ ଅଛି ? ଏମାନେ କିଏ ?' ସେ ଲୋକଟି ବି ହସିଲା । କହିଲା – 'ନାହିଁ ନାହିଁ, ସେମିତି କିଛି କଥା ନାହିଁ । ମୋର ଆଜି ଏହି ମହଲାରେ ପହରା । ମୁଁ ରାତିଯାକ ରହିବି । ମୁଁ ଏମାନଙ୍କୁ ସାଙ୍ଗରେ ନେଇ ଆସିଛି । ଏମାନେ ଏବେ ମଗଧରୁ ଆସିଛନ୍ତି । ମଥୁରା ବିଷୟରେ କିଛି ଜାଣନ୍ତି ନାହିଁ । ମୁଁ ତ ଆପଣଙ୍କୁ ଜାଣେ । ଆପଣଙ୍କ ଝିଅମାନଙ୍କୁ କଂସଙ୍କ ଦରବାରରେ କେତେଥର ଦେଖିଛି । ଭାବିଲି ଆପଣଙ୍କ ଘରକୁ ସେମାନଙ୍କୁ ନେଇ ଆସିଲେ ଠିକ୍ ହେବ । ଆପଣଙ୍କ ସାଙ୍ଗରେ କଥାବାର୍ତ୍ତା କଲେ ସେମାନେ ମଥୁରା ବିଷୟରେ ଅନେକ କଥା ଜାଣିପାରିବେ । ଆପଣଙ୍କ ଝିଅଙ୍କ ସାଙ୍ଗରେ ବି କଥାବାର୍ତ୍ତା ହେବେ । କଂସ ତ ସେମାନଙ୍କୁ ବହୁତ ପ୍ରଶଂସା କରନ୍ତି । କହନ୍ତି ଏପରି ସାହସୀ ଝିଅ ମଥୁରାରେ ନାହାନ୍ତି । ସେଇ ଯୋଗୁଁ


Digitized by srujanika@gmail.com

ମୁଁ ଭାବିଲି ସାରା ରାତି ତ ପଡ଼ିଛି । ଆପଣଙ୍କ ଘରେ କିଛି ସମୟ ବସି, କିଛି ଖିଆପିଆ କରି ଆମେ ଚାଲିଯିବୁ ।'

ରଶ୍ମି ରାୟ ବୁଝିଲେ ଏଗୁଡ଼ା ସବୁ ଫମ୍ପା କଥା । ଲୋକଟାର ଅନ୍ୟ କିଛି ଉଦ୍ଦେଶ୍ୟ ଅଛି । କିନ୍ତୁ କରିବାର କିଛି ନ ଥିଲା । ଯେଉଁଠି ଶାସନ ନାହିଁ, ଶାସନଟା କେବଳ କର୍ତ୍ତାଙ୍କ ମର୍ଜି ଉପରେ, ସେଠି ସାଧାରଣ ଲୋକଙ୍କୁ କିଏ ରକ୍ଷା କରିବ? ସେମାନଙ୍କର ଜୀବନର ମୂଲ୍ୟ କ'ଣ ? ସେ ହସିକରି କବାଟ ଖୋଲିଦେଲେ । କହିଲେ – 'ହଁ, ଆସ, ଆସ । ଟିକେ ଜଳଖିଆ ଫଳିଖିଆ ଖାଇ କରିଯିବ । ଏମାନେ ତ ବାହାର ଲୋକ, ମଥୁରା ସେମାନଙ୍କୁ କେମିତି ଲାଗୁଛି ?' ସେହି ଲୋକଟା ପୁଣି କହିଲା, 'ଭଲ, କଂସଙ୍କ ଶାସନରେ ସବୁ ଭଲ ।' 'ଠିକ୍, ଠିକ୍', ରଶ୍ମି ରାୟ କହିଲେ । ସେମାନଙ୍କୁ ସମସ୍ତଙ୍କୁ ସେ ବସିବା ଜାଗାକୁ ନେଇଗଲେ । ସମସ୍ତେ ବସିଲେ । ରଶ୍ମିରାୟ ସ୍ତ୍ରୀଙ୍କୁ ଡାକିଲେ, କହିଲେ, 'ଦେଖ, କିଏ ଆସିଛନ୍ତି । ମଗଧର ଲୋକ । କିଛି ଖାଇବାର ବନ୍ଦୋବସ୍ତ କର ।' ତାଙ୍କ ସ୍ତ୍ରୀ ଘର ଭିତରୁ ବାହାରି ଆସି ଏମାନଙ୍କୁ ଦେଖି ସାଙ୍ଗେ ସାଙ୍ଗେ ଚାଲିଗଲେ, କହିଲେ, 'ହଁ, କରୁଛି ।' ଦାଣ୍ଡ କବାଟ ମେଲା ଥିଲା । ସେହି ଲୋକଟା ଉଠି କବାଟ ଭିତରୁ ବନ୍ଦ କରିଦେଲା, କହିଲା, 'ସନ୍ଧ୍ୟାରେ କବାଟଟା ବନ୍ଦ ଥାଉ ।' ତା'ପରେ ରଶ୍ମି ରାୟଙ୍କୁ ପଚାରିଲା, 'ଆପଣଙ୍କର ଝିଅମାନଙ୍କର ଆମେ ବହୁତ ପ୍ରଶଂସା ଶୁଣୁଛୁ । ସେମାନେ କ'ଣ ନାହାନ୍ତି ?' ରଶ୍ମି ରାୟ କହିଲେ, 'ହଁ, ଅଛନ୍ତି । ସେମାନେ ବୋଧେ କେଉଁଠିକି ଯିବା ପାଇଁ ଲୁଗାପଟା ପିନ୍ଧୁଛନ୍ତି । ଆସିବେ ।'

କିଛି ସମୟ ପରେ ଦି' ଝିଅ, ଛାୟା ମାୟା, ବାହାରକୁ ଯିବାପାଇଁ ପ୍ରସ୍ତୁତ ହୋଇ ବାହାରି ଆସିଲେ ଓ ବସିବା ଘରେ ଅଚିହ୍ନା ଲୋକଙ୍କୁ ଦେଖି ଚମକି ଛିଡ଼ା ହୋଇପଡ଼ିଲେ । ବଡ଼ ଛାୟା ବାପାଙ୍କୁ ପଚାରିଲା, 'ଏମାନେ କିଏ ?' ରଶ୍ମି ରାୟ ସୈନ୍ୟମାନଙ୍କୁ ଚାହିଁଲେ । ଲକ୍ଷ୍ୟ କଲେ ଝିଅମାନଙ୍କୁ ଦେଖି ସେମାନଙ୍କର ଆଖି ଯେମିତି ଜଳି ଉଠିଲାଣି । କିନ୍ତୁ ସେ ଶାନ୍ତ ସ୍ୱରରେ କହିଲେ, 'ଏମାନେ ? ଏମାନେ କଂସଙ୍କର ସୈନ୍ୟ । ମଗଧରୁ ଆସିଛନ୍ତି ।'

'ମଗଧରୁ ଆସିଛନ୍ତି ତ ଏଠି କ'ଣ କାମ ? ଘର ଭିତରକୁ କାହିଁକି ଆସିଛନ୍ତି ?'

ଟାଣ ସ୍ୱରରେ ମାୟା ପଚାରିଲା ।

ଯେଉଁ ଲୋକଟି ରଶ୍ମିରାୟଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲା ସେ ଟିକିଏ ହସିଲା । କହିଲା, 'ଆ ହା, ବ୍ୟସ୍ତ କାହିଁକି ? କାମ ଅଛି ବୋଲି ଆସିଲୁ ନା । ତୁମ ସାଙ୍ଗରେ କାମ ।'

'ଆମ ସାଙ୍ଗରେ ? କି କାମ ?' ମାୟା ସ୍ୱର ସମାନ ଟାଣ ।

'ଅଛି, ଅଛି', ଲୋକଟି କହିଲା – 'ମଥୁରାରେ ତୁମର ବହୁତ ନାଁ ଡାକ, କଂସ ତ ତୁମ ଉପରେ ବହୁତ ଖୁସି । ଆମେ ତ ସେହିଯୋଗୁଁ ଆସିଲୁ । ଟିକେ ବସି କଥାବର୍ତ୍ତା କରିବା ।'

ରଶ୍ମି ରାୟ ସେତେବେଳକୁ ନିର୍ବାକ ହୋଇଗଲେଣି । ଏ ଲୋକଗୁଡ଼ାଙ୍କର ମନ୍ଦ ଉଦ୍ଦେଶ୍ୟ ସ୍ପଷ୍ଟ । ତାଙ୍କ ସ୍ତ୍ରୀ ହାତରେ ଥାଳିଆରେ ଖାଇବା ଜିନିଷ ଧରି ବାହାରକୁ ଆସୁଥିଲେ । ସେ ବି ଏସବୁ କଥା ଶୁଣି ଥକା ହୋଇଗଲେଣି । ସେ ଲୋକଟି ରଶ୍ମି ରାୟଙ୍କୁ ଚାହିଁଲା ଓ ଅତ୍ୟନ୍ତ ରକ୍ଷ ଭାବରେ କହିଲା, 'ତୁମେ ଓ ତୁମର ସ୍ତ୍ରୀ ଘର ଭିତରକୁ ଯାଅ । ଶୀଘ୍ର । ବେଶୀ ଗୋଳମାଳ କଲେ ଆମ ଲୋକ ବାହାରେ ଅଛନ୍ତି, ଘର ଭିତରକୁ ପଶି ଆସିବେ । ତୁମ ଝିଅମାନଙ୍କର କେତେ ସାହାସ ବର୍ତ୍ତମାନ ବୁଝାଯିବ ।' ସେ ବୁଲିପଡ଼ି ଅଣ୍ଟାରୁ ସୁସୁରି କାଢ଼ି ସଂକେତ ଦେଲା । ସାଙ୍ଗେ ସାଙ୍ଗେ ସେମାନଙ୍କ ପରି ଆଉ ତିନିଜଣ ଷଣ୍ଢା ଷଣ୍ଢା ଲୋକ ଘର ଭିତରକୁ ପଶି ଆସିଲେ ।

ତା'ପରେ ଯାହା ଘଟିଲା ସେକଥା ଆଉ ଥରେ ଭାବିବାକୁ ବି ଅରିନ୍ଦମକୁ କଷ୍ଟ ଲାଗେ । ମଣିଷ ମଣିଷ ପ୍ରତି ଯେ କେତେ ନୃଶଂସ ହୋଇପାରେ, ମଣିଷର ପଶୁ ପ୍ରବୃତ୍ତି ମଣିଷକୁ ପଶୁଙ୍କ ଠାରୁ ଯେ କେତେ ହୀନ କରିପାରେ ସେ ଚାକ୍ଷୁସ ପ୍ରମାଣ ନ ପାଇଲେ ବୁଝି ହେବ ନାହିଁ । ସେଦିନ ରଶ୍ମି ରାୟଙ୍କ ପରେ ଯାହା ଘଟିଲା ତାହାହିଁ କ'ଣ ରାଜାର କର୍ତ୍ତବ୍ୟ । ଭଲ ମନ୍ଦ ପାଇଁ ରଜା ଉପରେ ନିର୍ଭର କରୁଥିବା ପ୍ରଜାମାନେ ରାଜାର କ'ଣ ? ଆଶ୍ରିତ ? ବନ୍ଧୁ ? ଶତ୍ରୁ ?

ସେଦିନ ରଶ୍ମି ରାୟଙ୍କ ଘରେ ଘଟିଥିବା ଘଟଣାକୁ ମନେପକାଇ ତା'ର ସାରା ଦେହଯାକ ଯେପରି ନିଆଁହୁଳା ଖେଳିଗଲା । ଯେଉଁଠି ରାଜାର କେବଳ ଗୋଟିଏ ଉଦ୍ଦେଶ୍ୟ, ଗୋଟିଏ ଲକ୍ଷ୍ୟ – ନିଜର ସ୍ୱାର୍ଥ । ଯେଉଁଠି ରାଜା ସାରା ରାଜ୍ୟକୁ ନିଜର ଶତ୍ରୁ ବୋଲି ଭାବେ, ସାମାନ୍ୟ ସୁଯୋଗ ପାଇଲେ ରାଜ୍ୟଟାକୁ ଚୋବେଇ ଚୋବେଇ ଖାଏ, ତାକୁ କ'ଣ କରାଯିବ, କ'ଣ କୁହାଯିବ ? ତାକୁ ଲଢ଼େଇ କର, ବାହାର କରିଦିଅ, ଜୀବନରେ ମାରିଦିଅ, ଭାନୁପ୍ରକାଶ କହୁଥିଲେ । ନାଁ, ତୁମେ ପାରିବ ନାହିଁ, ଅପେକ୍ଷାକର, ବାପା କହୁଥିଲେ, ପରମ ଶକ୍ତିକୁ ଅପେକ୍ଷା କର, ସେହି ଶକ୍ତି ହିଁ ତାକୁ ଶାସ୍ତି ଦବ । କଂସ ପରି ଶହ ଶହ ଅତ୍ୟାଚାରୀ ରାଜା, ଅତ୍ୟାଚାରୀ ଶାସକ ଦେଶଯାକ ସବୁଆଡ଼େ । ଦେଶର ସ୍ୱାର୍ଥ ନୁହେଁ, ନିଜର ସ୍ୱାର୍ଥ ହିଁ ସେମାନଙ୍କର ଏକମାତ୍ର ଧ୍ୟେୟ । ଆଉ ଖାଲି ଆଜି ନୁହେଁ, ସବୁଦିନେ, ସବୁ ସମୟରେ । ଧୈର୍ଯ୍ୟ ଧର, ଅପେକ୍ଷା କର, ସେମାନେ ଶେଷ ହେବେ, ଆଜି ନ ହେଲେ କାଲି ।


Digitized by srujanika@gmail.com

ସେଦିନ ରଶ୍ମିରାୟଙ୍କ ଘରେ ଯାହା ଘଟିଲା ଚଟପଟ ଘଟିଗଲା । ସେମାନେ ରଶ୍ମି ରାୟ ଓ ତାଙ୍କ ସ୍ତ୍ରୀଙ୍କୁ ପାଟିରେ ବିଣ୍ଡା ଦେଇ ଦିଇଟା ଖୁଣ୍ଟରେ ନିବିଡ଼ କରି ବାନ୍ଧି ଦେଲେ । ତା'ପରେ ବାପ ମା'ଙ୍କ ସାମ୍ନାରେ ସାତଟା ରାକ୍ଷସ ହରିଣ ଛୁଆ ଉପରେ ବାଘ ଝାମ୍ପିଲା ପରି ଦି ଝିଅଙ୍କ ଉପରେ ଝାମ୍ପି ପଡ଼ିଲେ, ଦି'ଟା ନିରାଶ୍ରୟ, ନିରୂପାୟ ଝିଅଙ୍କର ମାସଂକୁ ଟିକି ଟିକି କରି ଖାଇଲେ । କେତେ ସମୟ ଏ ତାଣ୍ଡବ ଚାଲିଥିଲା ଠିକ୍ ନାହିଁ । ବାହାରେ ସେମାନଙ୍କର ଅନ୍ୟ ଲୋକ ଜଗିଥିଲେ । ଯେତେବେଳେ ସବୁ କାମ ସାରି ସେ ମହଲା ଛାଡ଼ି ସେମାନେ ବାହାରି ଚାଲିଗଲେ, ପାଖ ପଡ଼ୋଶୀ ଡରି ଡରି ଘର ଭିତରକୁ ଗଲେ । ଯାହା ଦେଖିଲେ ବିଭତ୍ସ, ଅବର୍ଣ୍ଣନୀୟ । ଦିଟା ସ୍ତ୍ରୀ ଲୋକଙ୍କର ଲଙ୍ଗଳା ଦେହ କିମା କାଟିଲା ପରି ଖଣ୍ଡ ଖଣ୍ଡ ହୋଇ କଟା ହୋଇ ପଡ଼ିଛି । ଘରର ସାରା ଚଟାଣଟା ରକ୍ତରେ ଭାସୁଛି । ଆଉ ସେହି ବନ୍ଧା ହେବା ଅବସ୍ଥାରେ ରଶ୍ମି ରାୟ ଓ ତାଙ୍କର ସ୍ତ୍ରୀଙ୍କର ପିଣ୍ଡରୁ ପ୍ରାଣ ଛାଡ଼ି ଯାଇଛି ।

ଏ ଘଟଣା ହୁଏତ ସେତିକିରେ ସରିଥାନ୍ତା । କିନ୍ତୁ ଏ ଘଟଣା ଏତେ ନାରକୀୟ ଯେ ସାରା ମଥୁରାରେ ଏ ବିଷୟରେ ଚର୍ଚ୍ଚା ହେଲା, ଲୋକେ ଉତ୍ତେଜିତ ହୋଇ ଉଠିଲେ । କିଛି ଲୋକ ଓ ମୁଖିଆ ଲୋକେ କଂସ ପାଖରେ ଅଭିଯୋଗ କଲେ - 'ଏ କଅଣ, ତା ହେଲେ ଆମେ ତ କେହି ରହିପାରିବା ନାହିଁ, ତୁମର ସୈନ୍ୟମାନଙ୍କୁ ଶାସ୍ତି ଦିଅ, ମଗଧର ସୈନ୍ୟମାନେ ମଗଧ ଫେରି ଯାଆନ୍ତୁ, ଏଠି କାହିଁକି ?' କଂସ ହୋ ହୋ ହୋଇ ହସିଥିଲା । କହିଥିଲା 'ବୁଝିବି, ବୁଝିବି । ସେନାପତିମାନଙ୍କୁ ଡାକି ବୁଝିବି କ'ଣ ଘଟିଛି । ମଗଧର ସୈନ୍ୟମାନେ ତ ବହୁତ ଭଲ, ବହୁତ ଦାୟିତ୍ୱବାନ୍, ଯାହା କୁହାଯାଏ ସେଇ ସେଇ କାମ କରନ୍ତି । ସେମାନେ ସବୁ ଖରାପ କାମ କରିଛନ୍ତି, ବିଶ୍ୱାସ ହେଉନାହିଁ । ଠିକ୍ ଅଛି, ତୁମେମାନେ ଯାଅ । ମୁଁ ବୁଝିବି । ରଶ୍ମି ରାୟ କିଏ ? ସେ କ'ଣ ଜଣେ ମୁଖିଆ ? କୋଉ ଗୋଷ୍ଠୀ ? ତାଙ୍କ ଝିଅମାନେ କ'ଣ କରିଥିଲେ ? ବୟସ କେତେ ? ମୋ' ପାଖକୁ ଆସିଥିଲେ ? କାହିଁକି ? କେବେ ? ମୋର ତ ମନେ ପଡୁନି । ଠିକ୍ ଅଛି । ମୁଁ ବୁଝିବି, ତୁମେମାନେ ଯାଅ ।' ତା'ପରେ ସେ ସେନାପତି ପ୍ରଦ୍ୟୋତକୁ ଡକେଇ ପଠେଇଲା । ପ୍ରଦ୍ୟୋତ ବେଶ କିଛି ସୈନ୍ୟସାମନ୍ତ ଧରି ଦରବାର ଘରର ମୁହଁ ପାଖରେ ଅପେକ୍ଷା କରିଥିଲା । ସେ ନିଜର ସୈନ୍ୟମାନଙ୍କୁ ଧରି ଦରବାର ଘର ଭିତରକୁ ପଶି ଆସିଲା । ଯେଉଁମାନେ ଅଭିଯୋଗ କରିବାକୁ ଯାଇଥିଲେ ସେମାନେ ଆଉ ଉଚ୍ଚବାଚ ନ କରି ଚୁପଚୁପ ଫେରି ଆସିଲେ । କିନ୍ତୁ କଥା ସେତିକିରେ ସରିଲା ନାହିଁ । ସେହିଦିନ ଠାରୁ ରଶ୍ମି ରାୟଙ୍କ ମହଲା ଓ

ପାଖ ଆଖ ମହଲାରେ ମଗଧ ସୈନ୍ୟମାନଙ୍କର ଚୌକିଦାରୀ ଦୁଇଗୁଣ ବଢ଼ିଗଲା । ସେମାନେ ଦିନ ରାତି ଯେ କୌଣସି ସମୟରେ ରାସ୍ତାରେ ଆସି ଦଳଦଳ ହୋଇ ବୁଲିଲେ । କୌଣସି କାରଣ ନ ଥାଇ ଯିବା ଆସିବା ଲୋକଙ୍କ ସହିତ ଖରାପ ବ୍ୟବହାର କଲେ ଓ ଗୃହସ୍ଥ ଘର ମାନଙ୍କରେ କବାଟମାନଙ୍କରେ ବାରମ୍ବାର ଧଡ଼ ଧଡ଼ କଲେ ଓ ମଝିରେ ମଝିରେ ଆ ଉପରେ ତା' ଉପରେ ଅତ୍ୟାଚାର ହେବା କଥା ଶୁଣାଗଲା ଓ ଏ ମରିଗଲା ସେ ମରିଗଲା କଥା ବି । ସମସ୍ତେ ଡରିଗଲେ । ସ୍ତ୍ରୀ ଲୋକ ଓ ପିଲାମାନେ ତ ଘରୁ ବାହାରିଲେ ନାହିଁ । ବୟସ୍କ ଲୋକମାନେ ନିହାତି ଦରକାର ହେଲେ ବାହାରକୁ ଯାଇ ଶୀଘ୍ର ଶୀଘ୍ର ଘରକୁ ଫେରିଆସି କବାଟ ଝରକା ବନ୍ଦ କରି ଦେଉଥାନ୍ତି । ଗୋଟାଏ କୋକୁଆ ଭୟ ପରି ପ୍ରଚଣ୍ଡ ଭୟ ମଥୁରାରେ ବ୍ୟାପିଗଲା ।

ତୃତୀୟ ଘଟଣା ଏହି ଘଟଣା ଘଟିବାର ଅଳ୍ପଦିନ ପରେ ଘଟିଲା । ଏ ଘଟଣାର ଢଙ୍ଗ ଅନ୍ୟ ପ୍ରକାର । ଏ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ପରିବାର କଥା ନୁହେଁ, ସାଧାରଣ ଭାବରେ ମଥୁରାର ଲୋକମାନଙ୍କ ସମ୍ପର୍କରେ, ବିଶେଷ କରି ଯେଉଁମାନେ ଆର୍ଥିକ ଦୃଷ୍ଟିରୁ ଅପେକ୍ଷାକୃତ ଦୁର୍ବଳ, ଯେଉଁମାନେ ଅନ୍ୟ ଧନୀ ବର୍ଗର ଲୋକଙ୍କ ଉପରେ ନିଜର ଭରଣପୋଷଣ ପାଇଁ ନିର୍ଭର କରନ୍ତି, ଯେଉଁମାନଙ୍କର ଗୋଷ୍ଠୀ ସଂହତି ନାହିଁ ଓ ଯେଉଁମାନେ ଏକାଠି ହୋଇ ରାଜ ଦରବାରରେ ଖୁବ୍ ଜୋରରେ ପ୍ରତିବାଦ କରିପାରିବେ ନାହିଁ । ମଥୁରାର ଦକ୍ଷିଣ ଜଙ୍ଗଲ କଡ଼େ କଡ଼େ ଦକ୍ଷିଣ ଅଞ୍ଚଳ ଏହିପରି ଗୋଟିଏ ଅଞ୍ଚଳ ଯେଉଁଠି ବହୁ ଲୋକେ ନିଜ ନିଜ ଚେଷ୍ଟାରେ ଜଙ୍ଗଲ କାଟି, ନିଜ ନିଜର ଛୋଟ ଛୋଟ ଘରମାନ କରି, ବହୁତ ଦିନ ହେଲା ରହି ଆସିଛନ୍ତି ଓ କ୍ରମଶଃ ଏହି ଅଞ୍ଚଳ ବଢ଼ି ବଢ଼ି ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ହୋଇଗଲାଣି । ଅରିନ୍ଦମ ଓ ତା'ର ବନ୍ଧୁମାନେ ଅନେକ ସମୟରେ ଏହି ଅଞ୍ଚଳକୁ ଯାଆନ୍ତି । ଏଠାରେ ଅନେକ ପରିଚିତ ଲୋକ । ସମସ୍ତେ ଏମାନଙ୍କୁ ସ୍ନେହ କରନ୍ତି ଓ ବିଶେଷ କରି ପୁଅ ଝିଅମାନେ ଏମାନଙ୍କ ସହିତ ମିଶି ସେହି ଅଞ୍ଚଳକୁ ଉନ୍ନତ କରିବା ପାଇଁ ଅନେକ କାମ କରନ୍ତି । ହଠାତ୍ ଦିନେ ସକାଳେ ଦେବପ୍ରିୟ ଆସି ଅରିନ୍ଦମ ପାଖରେ ପହଞ୍ଚିଲା । ମନେହେଲା ସେ ଖୁବ୍ ଉତ୍ତେଜିତ ଅବସ୍ଥାରେ ଅଛି । କହିଲା – 'ଅରିନ୍ଦମ, ଏଇ ସାଙ୍ଗେ ସାଙ୍ଗେ ଦକ୍ଷିଣ ମଥୁରାରୁ ଜରୁରୀ ଖବର ଆସିଛି । ସେଠି କ'ଣ ଗୋଳମାଳ ହୋଇଛି । ମୁଁ ସୁରଂଜନ ଓ ଆଉ ଦି ତିନି ଜଣଙ୍କୁ କହିଆସିଛି । ସେମାନେ ଆସୁଛନ୍ତି । ଶୀଘ୍ର କାମ ସାର ଯିବା ।' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । କହିଲା – 'ଆମେ ତ କାଲି ରାତିରେ

ଯାଇଥିଲେ । ଡେରି କରି ଫେରିଛେ । କିଛି ତ ଖବର ନ ଥିଲା । ଆଜି ହଠାତ୍ କ'ଣ ହେଲା । କଂସ ବ୍ୟାପାର ?'

'ମୁଁ ଠିକ୍ ବୁଝିପାରୁନି କ'ଣ ହେଲା ।' ଦେବପ୍ରିୟ କହିଲା, 'କଂସର କିଛି ଲୋକ ଆସିଛନ୍ତି । ତା' ସୈନ୍ୟମାନେ ବି ଆସିଛନ୍ତି । ଯାହା ମୁଁ ଶୁଣୁଛି ଦକ୍ଷିଣ ମଥୁରାର ସାରା ଅଞ୍ଚଳ ଖାଲି ହବ ।'

'ଖାଲି ହବ ମାନେ ?' ଅରିନ୍ଦମ ପଚାରିଲା ।

'ମୁଁ ଜାଣେନା', ଦେବପ୍ରିୟ କହିଲା, 'ସବୁ ଲୋକଙ୍କୁ ସେଠୁ କୁଆଡ଼େ ବାହାର କରି ଦିଆଯିବ ।'

'ବାହାର କରି ଦିଆଯିବ ? କି ବ୍ୟାପାର ?' - ଅରିନ୍ଦମ ଆଉ ଉଚ୍ଚବାଚ୍ୟ କଲା ନାହିଁ । ଶୀଘ୍ର ଶୀଘ୍ର ପ୍ରସ୍ତୁତ ହୋଇଗଲା । ସୁରଂଜନ ପ୍ରଭୃତି ମଧ୍ୟ ଆସିଯାଇଥାନ୍ତି । ସବୁ ସାଙ୍ଗଯାକ ବ୍ୟସ୍ତ ହୋଇ ଦକ୍ଷିଣ ଅଞ୍ଚଳକୁ ବାହାରିଗଲେ । ଅରିନ୍ଦମକୁ ଖଟ ଖଟ ଲାଗୁଥାଏ । ଏ କଂସର କି ନୂଆ ଚାଲ । ସେ ଅଞ୍ଚଳ ଖାଲି ହେବ ! କେମିତି ? କାହିଁକି ? ଘରଦ୍ୱାର କୁଆଡ଼େ ଯିବ ? ଶହ ଶହ ଲୋକ କୁଆଡ଼େ ଯିବେ । ସ୍ତ୍ରୀଲୋକ, ପିଲା, ବୁଢ଼ାମାନେ ? ସେମାନେ କେହି ଟଙ୍କା ପଇସାବାଲା ନୁହନ୍ତି । ପ୍ରତିଦିନ ମୂଲ ଲାଗି ଚଳନ୍ତି । ଯେଉଁମାନଙ୍କର ଜମିବାଡ଼ି ଅଛି, ସେମାନେ ଜମିରେ ଫସଲ କରନ୍ତି, ସାରାଦିନ ଖଟନ୍ତି । ଜମିବାଡ଼ି କୁଆଡ଼େ ଯିବ ? ଫସଲ ଯିବ, ସେମାନେ ଖାଇବେ କ'ଣ ? ମଥୁରାର କୌଣସି ରାଜା ସେମାନଙ୍କ ପାଇଁ କିଛି କରିନାହାନ୍ତି । ସେମାନେ ନିଜେ ନିଜେ ଘରଦ୍ୱାର, ଜମିବାଡ଼ି ଯାହା କରିଛନ୍ତି । ତେବେ ଉଗ୍ରସେନଙ୍କର ତାଙ୍କ ପ୍ରତି ସହାନୁଭୂତି ଥିଲା । ସେ ମଝିରେ ମଝିରେ ଯାଉଥିଲେ । ରାଜ ଦରବାରରୁ ସାହାଯ୍ୟ ସମର୍ଥନ ଦେଉଥିଲେ । ଆଜି ହଠାତ୍ କଂସର କ'ଣ ଦୁଷ୍ଟ ବୁଦ୍ଧି ଜୁଟିଲା ?

ଦକ୍ଷିଣ ଅଞ୍ଚଳରେ ପହଞ୍ଚିବାକୁ ବେଶି ସମୟ ଲାଗିଲାନି । କେବଳ ଅରିନ୍ଦମ ନୁହେଁ, ସବୁ ବନ୍ଧୁ ଉତ୍ତେଜିତ ଅବସ୍ଥାରେ ଥାଆନ୍ତି । ଲୋକଙ୍କୁ ହାଣିବା, କାଟିବା, ବନ୍ଦୀଶାଳାରେ ପୂରେଇବା, ଏସବୁ ପ୍ରାୟ ଘଟେ । ଏସବୁ କଥା ସେମାନେ ଜାଣନ୍ତି । ବିଶେଷ କରି ମଗଧର ସୈନ୍ୟମାନେ ଆସି ମଥୁରାରେ ରହିବା ପରଠାରୁ ଏ ପ୍ରକାର ଘଟଣା ବହୁତ ବଢ଼ି ଯାଇଛି । କାରଣ କିଛି ନ ଥାଏ, କାହାରି କିଛି ଲାଭ ନ ଥାଏ, କେବଳ ଯେଉଁ ଲୋକଟି ଉପରେ ଅତ୍ୟାଚାର ହୁଏ ତା'ର ଦୁର୍ଦ୍ଦଶା ବଢ଼ିଯାଏ । କାହାକୁ କହିବ ? କଂସ ତା'ର ଲୋକମାନଙ୍କ ବିଷୟରେ, ବିଶେଷ କରି ତା'ର ସୈନ୍ୟମାନଙ୍କ ବିଷୟରେ କିଛି ଶୁଣେନା । ସେମାନେ ସମସ୍ତେ ତା ପାଇଁ ସୁନା

ମୁଣ୍ଡା, ଯେଉଁମାନେ ଅଭିଯୋଗ କରିବାକୁ ଯାଇଥାନ୍ତି, ସେମାନେ କାନମୁଣ୍ଡ ଆଉଁସି ଫେରନ୍ତି, ଅଧିକାଂଶ ସମୟରେ ମାଡ଼ ଗାଳି ବି ଖାଆନ୍ତି । ତେଣୁ ସମସ୍ତେ ଏ ପ୍ରକାର ଘଟଣା ସହିତ ନିଜକୁ ମିଶେଇ ନବାକୁ ଚେଷ୍ଟା କରନ୍ତି । କଂସର ସୈନ୍ୟମାନେ ବା ଲୋକମାନେ ମହଲାରେ ଆସି ଘୂରାଘୂରି କଲେ ସମସ୍ତଙ୍କ ଘରେ କବାଟ ଝରକା ବନ୍ଦ ହୋଇଯାଏ । ସେମାନେ ମହଲା ଛାଡ଼ି ନ ଗଲା ପର୍ଯ୍ୟନ୍ତ କେହି ବାହାରକୁ ବାହାରନ୍ତି ନାହିଁ । ମଝିରେ ମଝିରେ ଯେ ସେମାନେ ଆ ଘରେ ତା' ଘରେ ପଶିବାକୁ ଚେଷ୍ଟା ନ କରନ୍ତି ତା ନୁହେଁ, ପଶନ୍ତି ବି । ସକାଳେ, ଦି ପହରେ, ସନ୍ଧ୍ୟାରେ, ଏପରିକି ରାତି ଅଧରେ ବି ଏଠୁ ସେଠୁ ପାଟିଗୋଳ ଶୁଭେ, କନ୍ଦାକଟା ଶୁଭେ । କିନ୍ତୁ ଲୋକେ କେହି ବାହାରକୁ ବାହାରନ୍ତି ନାହିଁ । ନିଜ ଇଷ୍ଟଦେବତାଙ୍କୁ ସ୍ମରଣ କରି ଚୁପ୍‌ଚାପ୍ ରହନ୍ତି । ସୈନ୍ୟଫନ୍ୟ ସେ ମହଲାରୁ ବାହାରି ଗଲାପରେ ଲୋକମାନେ ଡରି ଡରି ନିଜ ନିଜ ଘରୁ ବାହାରନ୍ତି, କ'ଣ ଘଟିଛି ଦେଖିବାକୁ ଚେଷ୍ଟା କରନ୍ତି । କିନ୍ତୁ ଯାହା ଘଟିବାର ତା ଘଟି ଯାଇଥାଏ । କରିବାର କିଛି ନ ଥାଏ । ପିଲାମାନେ ଡରିକରି ରଡ଼ି କରନ୍ତି, ସ୍ତ୍ରୀ ଲୋକମାନେ କାନ୍ଦନ୍ତି, ଲୋକମାନେ ଆହା ଆହା ଚୁ ଚୁ କରନ୍ତି, ବାସ୍ ସେତିକି । ଅରିନ୍ଦମ ପ୍ରଭୃତି ମଝିରେ ମଝିରେ ଅନ୍ୟ ପ୍ରକାର ଚେଷ୍ଟା କରିଛନ୍ତି । ଲୋକମାନଙ୍କୁ ବୁଝେଇଛନ୍ତି, ସେମାନଙ୍କୁ ଏକାଠି କରି ପ୍ରତିବାଦ କଲାପରି ଯଦି ଅନ୍ୟ କିଛି କରାଯାଇପାରେ ସେ ଚେଷ୍ଟା କରିଛନ୍ତି । କିନ୍ତୁ ନାଁ, ବିଶେଷ କିଛି ଘଟିନି । ସୈନ୍ୟମାନଙ୍କ ଭୟ, କଂସର ଭୟ, ଖାଲି ଭୟ ନୁହେଁ, ପ୍ରାଣାନ୍ତକ ଭୟ, ତତଲା ଷଣ୍ଢୁଆସୀ ପରି ଲୋକଙ୍କୁ ଚାପି ଧରିଥାଏ । ଭୟ, ଭୟ, ଚାରିପାଖ ପବନରେ ଭୟ, ନିଃଶ୍ୱାସ ପ୍ରଶ୍ୱାସରେ ଭୟ, ଜଙ୍ଗଲରୁ ବାଘ ଡେଇଁ ହଠାତ୍ ମାଡ଼ି ବସିଲା ପରି ଭୟ । ତା ଛଡ଼ା ଅରିନ୍ଦମ ଓ ତା'ର ସାଙ୍ଗମାନେ ଯେ ଖୋଲାଖୋଲି କିଛି କରିପାରିବେ ତା'ର ସମ୍ଭାବନା ନ ଥିଲା । ସେମାନଙ୍କ ଉପରେ ବି କଂସର ଓ କଂସର ଲୋକମାନଙ୍କର ନଜର ଥିଲା । ଖାଲି କଂସ ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଭାବରେ ସେମାନଙ୍କ ବିରୁଦ୍ଧରେ କିଛି କରିନି, ଏତିକି ଯା । ଅରିନ୍ଦମ ଭାବେ କଂସ ସେମାନଙ୍କ ବିରୁଦ୍ଧରେ କିଛି କରିନି ତା'ର ଗୋଟେ କାରଣ ହୋଇପାରେ ତା'ର ବାପା । କାରଣ ଯାହା ଥାଉ ସେ ବାପାଙ୍କୁ ଭୟ କରେ । କିନ୍ତୁ କଂସ ଯେଉଁ ଲୋକ ସେ କେତେ ଦିନ । ଦିନେ ହଠାତ୍ ଯେ ସେମାନଙ୍କ ବିରୁଦ୍ଧରେ ସେ କିଛି ନ କରିବ, ସେକଥା କିଏ କହିବ । ଆକାଶର କେଉ କୋଣରୁ ମେଘଟା ଯେ ହଠାତ୍ ବର୍ଷିଯିବ କିଏ ଜାଣେ ? ତେଣୁ ସେମାନେ ସତର୍କ ଥାଆନ୍ତି । କିନ୍ତୁ ଆଜି କଥା ସ୍ୱତନ୍ତ୍ର । ଲୋକଙ୍କୁ ତାଙ୍କ ଘରୁ ବାହାର

କରି ଦିଆଯାଉଛି । ମଥୁରାର ଦକ୍ଷିଣ ଅଞ୍ଚଳ ବିସ୍ତୃତ ଜଙ୍ଗଲ । ଗଛ କାଟି ଜଙ୍ଗଲ ସଫାକରି ଯେଉଁମାନେ ଘରଦ୍ୱାର କରି ରହିଛନ୍ତି, ସେ ଆଜିକା କଥା ନୁହେଁ, ଅନେକ ଦିନ ଧରି ଚାଲି ଆସିଛି । ରାଜା ଖଜଣା ନିଅନ୍ତି, ଦରକାର ହେଲେ ଲୋକମାନଙ୍କୁ ବିପଦ ଆପଦରୁ ରକ୍ଷା କରନ୍ତି । ଏହାହିଁ ଚାଲି ଆସୁଛି । ଆଜି ହଠାତ୍ ଏ କି ନୂଆ କଥା । ଲୋକମାନେ ଉଠିବେ କାହିଁକି ?

ଦକ୍ଷିଣ ଅଞ୍ଚଳର ଅବସ୍ଥା ଅବର୍ଣ୍ଣନୀୟ । ଗୋଟିଏ ପାଖରେ ସ୍ଥାନୀୟ ଲୋକେ, ପୁରୁଷ, ସ୍ତ୍ରୀ, ଛୋଟ ଛୋଟ ପିଲାମାନେ ଗୋଟାଏ ଜାଗାରେ ଏକାଠି ରୁଣ୍ଡ ହୋଇଛନ୍ତି । ସ୍ତ୍ରୀ ଲୋକମାନେ କାନ୍ଦୁଛନ୍ତି, ପିଲାମାନେ କାନ୍ଦୁଛନ୍ତି, ପୁରୁଷମାନେ କାକୁସ୍ଥ ହୋଇ ଚୁପଚାପ ବସିଛନ୍ତି । ସେମାନଙ୍କର ଆଖିରୁ ଦରଦର ଲୁହଧାର ବହିଯାଉଛି । ନିକଟରେ ସାମାନ୍ୟ ଘରକରଣା ଜିନିଷ - ଡାଲି, ଚାଉଳ, ହାଣ୍ଡି, ଅଳ୍ପ ଲୁଗାପଟା - ବାସ୍ । ସେମାନଙ୍କୁ ଚାରିପାଖରୁ କଂସର ସୈନ୍ୟମାନେ ଜଗିଛନ୍ତି । ହାତରେ ଲମ୍ୱା ଲମ୍ୱା ଖୋଲା ତରୁଆଲ । ସେମାନଙ୍କ ଆଖି ସାମ୍ନାରେ ସେମାନଙ୍କର ଘରସବୁ ବାଡ଼େଇ ଭାଙ୍ଗି ଦିଆଯାଉଛି । ଯେପରି ଠୁଣଠୁଣକା କାଚ ଜିନିଷ । ଛାତ, କାନ୍ଥ ସବୁ ଝୁପଝୁପ କରି ଖସିପଡୁଛି । ଅରିନ୍ଦମ ମୁହୂର୍ତ୍ତେ ଚୁପ ହୋଇ ଛିଡ଼ା ହେଲା, ଚାରିପାଖକୁ ଚାହିଁ ଦେଖିଲା । ବେଶ୍ କିଛି ସୈନ୍ୟ ଭର୍ତ୍ତିହୋଇ ରହିଛନ୍ତି । ଘର ସବୁ ଭଙ୍ଗା ଚାଲିଛି । ଅରିନ୍ଦମ ଭାବିଲା, ଏ ସାରା ଅଞ୍ଚଳ ଘେରି ଜଙ୍ଗଲ, ହେଟାବାଘ ଓ ଭାଲୁରେ ଭର୍ତ୍ତି । ଏମାନେ ଆସି, ଜଙ୍ଗଲ କାଟି, ହେଟା ଓ ଭାଲୁମାନଙ୍କୁ ଘଉଡ଼େଇ ଛୋଟ ଛୋଟ ଘର ହେଲେ ବି, ଘର ତିଆରି କଲେ, ପିଲାପିଲିଙ୍କି ଧରି ରହିଲେ । କ୍ରମେ ଏ ଅଞ୍ଚଳ ବଢ଼ିଲା, ଲୋକ ସଂଖ୍ୟା, ଘର ସଂଖ୍ୟା ବି ବଢ଼ିଲା । ଏ ଅଞ୍ଚଳ ମଥୁରା ଭିତରେ, ମଥୁରା ବି ବଢ଼ିଲା । ଏ ଅଞ୍ଚଳର ଦକ୍ଷିଣକୁ ଏବେ ବି ଘଞ୍ଚ ଜଙ୍ଗଲ, ନାଗ ମାନଙ୍କ ରାଜ୍ୟ । ତା ଦକ୍ଷିଣକୁ ଯେଉଁଠିକି କେହି ଯାଆନ୍ତି ନାହିଁ, ଶୁଣାଯାଏ, ରାକ୍ଷସମାନଙ୍କର ରାଜ୍ୟ । ଅରିନ୍ଦମ ଓ ତା'ର ସାଙ୍ଗମାନେ ଅନେକ ଥର ଭାବନ୍ତି ସେହି ଅଗମ୍ୟ ଜଙ୍ଗଲକୁ ଯିବା ପାଇଁ । କିନ୍ତୁ କେବେ ଯିବାକୁ ସାହସ କରିନାହାନ୍ତି । କିନ୍ତୁ ଆଜି ଏ କ'ଣ ! ବେଶ୍ ଯୋଜନା କରି ଘରଭଙ୍ଗା ଚାଲିଛି । କାଳେ ଲୋକମାନେ ଗୋଳମାଳ କରିବେ, ସେଥିପାଇଁ ସୈନ୍ୟମାନେ ଜଗି ରହିଛନ୍ତି । ମନେହେଲା ଜରାସନ୍ଧଙ୍କର କିଛି ରାକ୍ଷସ ସୈନ୍ୟ ବି ଅଛନ୍ତି । ସେହିମାନେ ହିଁ ଘର ଭାଙ୍ଗିବାରେ ମୁଖ୍ୟ । ଅରିନ୍ଦମ ଚାରିପାଖକୁ ଚାହିଁଲା । ଚାରିପାଖରେ ହୋ ହୋ, କନ୍ଦାକଟା, ପାଟିଗୋଳ । ତା' ଭିତରେ ଘରସବୁ ଭାଙ୍ଗି ଝୁପଝୁପ ତଳେ ପଡ଼ିବାର ଶବ୍ଦ ଓ

କଂସର ସୈନ୍ୟମାନଙ୍କର, ବିଶେଷ କରି ରାକ୍ଷସ ସୈନ୍ୟମାନଙ୍କର ଅଶ୍ଳୀଳ ଚିତ୍କାର । କଂସ ଆସିଛି କି ? ନାଁ, ତା'ର ମୁଖ୍ୟ ସେନାପତି ପ୍ରଦ୍ୟୋତ । ସେ ଦୂରରେ ଛିଡ଼ା ହୋଇଛି । କ'ଣ ସବୁ ପାଟିକରି କହୁଛି । ଅରିନ୍ଦମ ତାକୁ ଚିହ୍ନେ । ଅରିନ୍ଦମ ତାରି ପାଖକୁ ଗଲା ।

ପ୍ରଦ୍ୟୋତର ପାଖରେ ମେଳା ମେଳା ସୈନ୍ୟ । ସେ ସେମାନଙ୍କୁ ଘର ଭାଙ୍ଗିବାକୁ ନିର୍ଦ୍ଦେଶ ଦେଉଥାଏ ଓ ସେମାନେ ଘର ଭାଙ୍ଗୁଥାନ୍ତି । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ଘରସବୁ ଭାଙ୍ଗିବାରେ, ଲୋକମାନଙ୍କୁ ଗାଳିମନ୍ଦ କରିବାରେ, ସ୍ତ୍ରୀଲୋକମାନଙ୍କୁ ବେଜିତ୍ କରି କଥା କହିବାରେ ସେମାନଙ୍କର କି ଆନନ୍ଦ । ଠିକ୍ ମଣିଷଖିଆ ବାଘର ଅନନ୍ଦ ପରି । କିନ୍ତୁ କାହିଁକି ? ଏତେ ଲୋକଙ୍କୁ ଘରୁ ବାହାର କରି ସେମାନଙ୍କର ଘରସବୁ ଛିନ୍‌ଛତର କରି ଭାଙ୍ଗି ଦିଆଯାଉଛି କାହିଁକି ? ସେ ସେହି ପ୍ରଶ୍ନ ପ୍ରଦ୍ୟୋତକୁ ପଚାରିଲା, କହିଲା, 'ପ୍ରଦ୍ୟୋତଭାଇ, ଏସବୁ ଭଙ୍ଗା ଯାଉଛି କାହିଁକି ? କଂସଙ୍କର ଆଦେଶ ?' 'ହଁ', ପ୍ରଦ୍ୟୋତ ସଂକ୍ଷେପରେ ଉତ୍ତର ଦେଲା, ଓ ପୂର୍ବ ପରି ଆଦେଶ ଚାଲୁ ରଖିଲା । ଅରିନ୍ଦମ କିଛି ସମୟ ଚୁପ୍ ରହି ନିଜ ପ୍ରଶ୍ନର ପୁନରାବୃତ୍ତି କଲା, ଟିକିଏ ଜୋରରେ କହିଲା - 'କାହିଁକି ?' ଏ ଗରିବ ଲୋକଗୁଡ଼ା କଲେ କ'ଣ ?'

'କିଛି ନାହିଁ ।' ପ୍ରଦ୍ୟୋତ ଉତ୍ତର ଦେଲା । 'ଏଠି ବହୁତ ଦିନ ରହିଲେଣି । ଅନ୍ୟ ଆଡ଼କୁ ଯାଆନ୍ତୁ । ଆହୁରି ଭିତରକୁ ପଶି ଜଙ୍ଗଲ ସଫା କରନ୍ତୁ । ତାଙ୍କର ଭଲ, ରାଜାଙ୍କର ବି ଭଲ । ଏ ଜାଗା ରାଜାଙ୍କର ଦରକାର ।'

ଅରିନ୍ଦମ ବୁଝିପାରିଲା ନାହିଁ ଏ କି ପ୍ରକାର ଅଦ୍ଭୁତ ଯୁକ୍ତି । ତା'ର ସାଙ୍ଗମାନେ ବି ତା' ପାଖକୁ ଲାଗି ଆସିଲେଣି । ଜଣେ କିଏ କହିଲା, 'କି ହୋ, ରାଜାଙ୍କର ଯଦି ଖାଲି ଜାଗା ଦରକାର ସେ ଜଙ୍ଗଲ ସଫା କରଉନାହାନ୍ତି । ଏ ଗରିବ ଲୋକମାନେ ଜନ୍ତୁଜୁନ୍ତାଙ୍କ ଭିତରେ ପଶି, ଗଛବୃକ୍ଷ କାଟି ଯେଉଁ ଛୋଟ ଛୋଟ ଘରଟିମାନ କରିଛନ୍ତି ତାକୁ କାହିଁକି ଭାଙ୍ଗି ପକଉଛନ୍ତି ?'

ପ୍ରଦ୍ୟୋତ ବିରକ୍ତ ହୋଇ ଯେ କହୁଥିଲା ତା' ଆଡ଼କୁ ଚାହିଁଲା । କହିଲା, 'ବୁଝିଲ, ତୁମର ଏକଥା ଯଦି କଂସ ଶୁଣିବ କ'ଣ କରିବ ଜାଣିଛ ? ତୁମକୁ ଦିଇଟା ଲୋକ ଟେକି ନେଇ ସେଇ ଜନ୍ତୁଜୁନ୍ତାଙ୍କ ଭିତରେ ପକେଇ ଦେଇ ଆସିବେ । ତମେ ତ ଚକୁଳି ଖାଇବା ଲୋକ ଏତେ ବିନ୍ଧ ଗଣୁଛ କାହିଁକି ? କାହିଁକି ? କେମିତି ? କେବେ ? ଏସବୁ ପ୍ରଶ୍ନ ମୋତେ କାହିଁକି ପଚାରୁଛ ? ସେଇ କଂସ ରାଜାକୁ ପଚାର । ମୁଁ ଆଦେଶ ପାଳିବା ଲୋକ, ଆଦେଶ ପାଳୁଛି । ଯାଅ, ଯାଅ । ତୁମେ ଅରିନ୍ଦମର


Digitized by srujanika@gmail.com

ସାଙ୍ଗ, ନଚେତ୍ ତୁମ ଅବସ୍ଥା ଖରାପ ହୋଇଯାଇ ଥାଆନ୍ତା ।' ଅରିନ୍ଦମ ପ୍ରଦ୍ୟୋତକୁ ଶାନ୍ତ କରିବାକୁ ଚେଷ୍ଟା କଲା । କହିଲା – 'ପ୍ରଦ୍ୟୋତ ଭାଇ, ଶୁଣ, କଥା ତା ନୁହେଁ । ଏ କିଛି କିଛି ଲୋକଙ୍କୁ ଆମେ ଜାଣୁ । ଆମେ ମଝିରେ ମଝିରେ ଆସି ସାହାଯ୍ୟ କରୁ । କଂସ ବି ଏକଥା ଜାଣନ୍ତି । ଲୋକଗୁଡ଼ା ଅତ୍ୟନ୍ତ ଗରିବ । ଦିନ ମଜୁରୀ କରି ଚଳନ୍ତି । ଶୀତ ଆସିଲାଣି । ମଝିରେ ମଝିରେ ବର୍ଷା ବି ହଉଛି । ସେମାନଙ୍କର ଘରଦ୍ୱାର ଭାଙ୍ଗିଦେଲେ ସେମାନେ ହଠାତ୍ ଯିବେ କୁଆଡ଼େ । ଏଇ କଥା ସେ ପଚାରୁଛି ।'

ପ୍ରଦ୍ୟୋତର ବିରକ୍ତି କିଛି କମିଲାଣି । ସେ କହିଲା, 'ଏ ଲୋକମାନେ ଏଠି ଆଉ ରହିପାରିବେନି । ଏ ଜାଗା ଖାଲି ହେବ । କଂସଙ୍କର କଡ଼ା ଆଦେଶ । ଏଠି ନୂଆ ଘର ତିଆରି ହେବ । ମଗଧର ସୈନ୍ୟମାନେ ରହିବେ । ଜରାସନ୍ଧ ଖବର ପଠେଇଛନ୍ତି । ସେମାନଙ୍କର ରହିବାର ବନ୍ଦୋବସ୍ତ ହେବ । ଆହୁରି ସୈନ୍ୟ ବି ଆସୁଛନ୍ତି । ବିଶେଷ କରି ରାକ୍ଷସ ସୈନ୍ୟମାନଙ୍କୁ ସହର ବାହାରେ ଅଲଗା ରଖା ହେବ । ସେମାନଙ୍କୁ କିପରି ଭଲରେ ରଖା ହେବ ସେଥିପାଇଁ କଂସ ବଡ଼ ବ୍ୟସ୍ତ । ତୁମେ କହୁଛ ବୋଲି ମୁଁ ଗୋଟିଏ କାମ କରିଦେବି । ଏ ଲୋକଙ୍କ ପାଇଁ ତିନି ଚାରିଦିନ ଖାଇବାର ବନ୍ଦୋବସ୍ତ କରିଦେବି । ବାସ୍ ସେତିକି । ସେତିକି ପାଇଁ କଂସ ରାଜିହେବେ କି ନାହିଁ ମୁଁ ଜାଣେନା । ସେ ଯାହାହେଉ ମୁଁ ତା'ର ବନ୍ଦୋବସ୍ତ କରିବି । ତେଣିକି ସେମାନେ ନିଜ ନିଜ କଥା ବୁଝିବେ । ଆଉ ଚୁପ୍‌ଚାପ୍ ଜାଗା ଛାଡ଼ିଯିବେ । ନଚେତ ବଡ଼ ଅସୁବିଧା ହେବ । ସେଇକଥା ତୁମେ ତାଙ୍କୁ ବୁଝେଇ ଦିଅ । ଯାଆନ୍ତୁ, ବହୁତ ଜଙ୍ଗଲ ପଡ଼ିଛି, ଜଙ୍ଗଲ ସଫା କରନ୍ତୁ ।'

'ଆ ଛଡ଼ା କ'ଣ ଆଉ ଅନ୍ୟ ବାଟ ନାହିଁ ?' ଅରିନ୍ଦମ ପଚାରିଲା, 'ଲୋକଗୁଡ଼ା ବହୁତ ହଇରାଣ ହେବେ ।'

'ନାଁ, ନାହିଁ ।' ପ୍ରଦ୍ୟୋତ କହିଲା, 'ତାଙ୍କୁ ଛାଡ଼ିବାକୁ ପଡ଼ିବ । କଂସଙ୍କର ଆଦେଶ ସିଧା । ଯେଉଁମାନେ ନ ଯିବେ ହାଣିଦିଅ, ସବୁ ଘରେ ନିଆଁ ଲଗେଇ ସଫା କରିଦିଅ । ମଗଧ ସୈନ୍ୟଙ୍କ ପାଇଁ ଘର ତିଆରି ହବା ଜରୁରୀ ଓ ଶୀଘ୍ର ହେବା ଦରକାର । ଜଙ୍ଗଲ କାଟି ବସତି କରିବାକୁ ସମୟ ଲାଗିବ । ସେକଥା ଲୋକେ କରନ୍ତୁ । କିନ୍ତୁ ଜାଗା ଛାଡ଼ । ଶୀଘ୍ର ।'

ଅରିନ୍ଦମ ଗୋଟାଏ କଥା ବୁଝିଲା । ପ୍ରଦ୍ୟୋତ ଏତେ କଥା କହିବା ଲୋକ ନୁହେଁ । ସେ କଂସର ଅତ୍ୟନ୍ତ ବିଶ୍ୱସ୍ତ ଲୋକ । ସେ ଏତେ କଥା କହୁଛି ସେ

ବୋଲି ନୁହେଁ, ବାପାଙ୍କ ଖାତିରରେ । ସେ ବାପାଙ୍କୁ ସମ୍ମାନ କରେ । ବାପା ବି ତା ବିଷୟରେ ଭଲ କଥା କହନ୍ତି । କହନ୍ତି କଂସ ପାଖରେ ରହିବାକୁ ହେଲେ ସେହିପରି ବ୍ୟବହାର କରିବାକୁ ହେବ, ତା କଥା ମାନିବାକୁ ହେବ । ଯଦି ଭବିଷ୍ୟତରେ ଅନ୍ୟପ୍ରକାର ଘଟଣା ଘଟେ, ସେମିତି ସୁବିଧା ଆସେ, ତେବେ ପ୍ରଦ୍ୟୋତ ଆରମ୍ଭରୁ ହିଁ ଅଲଗା ହୋଇଯିବ । କିନ୍ତୁ ବର୍ତ୍ତମାନ ସେ କଂସର ଲୋକ । ମଥୁରାରେ କଂସର ଯେତେ ପ୍ରକାର ଅତ୍ୟାଚାର ସେ ଯେ ସମର୍ଥନ କରେ ତା ନୁହେଁ । ମଗଧର ସୈନ୍ୟମାନଙ୍କର ସେ ସମ୍ପୂର୍ଣ୍ଣ ବିରୋଧୀ । ଅରିନ୍ଦମ ଭାବିଲା, ଯଦି ପ୍ରଦ୍ୟୋତ ପାଖରୁ ଏ ଲୋକମାନଙ୍କ ପାଇଁ ଆଉ କିଛି ସୁବିଧା ହାସଲ କରାଯାଇ ପାରିବ । ସେ ନିଜ ସାଙ୍ଗମାନଙ୍କୁ ଚାହିଁଲା । ତା'ର ତିନି ଚାରିଜଣ ସାଙ୍ଗ ଚୁପଚାପ ଛିଡ଼ା ହୋଇଛନ୍ତି । ସେମାନେ ଅରିନ୍ଦମକୁ ଅପେକ୍ଷା କରିଛନ୍ତି । ଯାହା ସେ ଠିକ୍ କରିବ ।

କିନ୍ତୁ ଅରିନ୍ଦମ କିଛି କହିବା ଆଗରୁ ପ୍ରଦ୍ୟୋତ ପୁଣି କହିଲା, 'ଅରିନ୍ଦମ, ଶୁଣ ! ଏ ଭଙ୍ଗାଭଙ୍ଗି ଆରମ୍ଭ ହବା ଆଗରୁ ସକାଳୁ ସକାଳୁ କଂସ ନିଜେ ଆସି ବୁଲାବୁଲି କରି ଆଦେଶ ଦେଇ ଯାଇଛନ୍ତି । ସେ ପୁଣି ସନ୍ଧ୍ୟା ଆଗରୁ ଆସିବେ । ସେତେବେଳକୁ ଏ ଜାଗା ସଫା ହୋଇ ସୈନ୍ୟମାନେ ରହିବା ପାଇଁ ଘର ତିଆରି ଆରମ୍ଭ ହେବା ଦରକାର । ତିନିଦିନ ଭିତରେ ଏ କାମ ସରିବ ଓ ସୈନ୍ୟମାନେ ଆସି ରହିବେ । ତୁମେ ଜାଣନା କଂସ କ'ଣ ନିଷ୍ପତ୍ତି କରିଥିଲେ । ସେ ଏ ଲୋକମାନଙ୍କୁ ବାହାର କରି ଜାଗା ସଫା କରିବା ଦାୟିତ୍ୱ ମଗଧର ରାକ୍ଷସ ସୈନ୍ୟମାନଙ୍କ ଉପରେ ଦେଇ ଦେଇଥିଲେ । ମଥୁରାର ସୈନ୍ୟମାନଙ୍କ ଉପରେ ତାଙ୍କର ବିଶ୍ୱାସ ନାହିଁ । ତା ଯଦି ହୋଇଥାନ୍ତା ତା ହେଲେ ତୁମେ ବର୍ତ୍ତମାନ ଯାହା ଦେଖୁଛ ସେ କିଛି ନୁହେଁ । ଏଠି ବର୍ତ୍ତମାନ ଖାଲି ରକ୍ତର ନଦୀ ବହୁଥାନ୍ତା, ଆଉ ଶହ ଶହ ମୁଣ୍ଡ ଗଣ୍ଡିରେ ଏ ଜାଗା ଭର୍ତ୍ତି ହୋଇଯାଇ ଥାଆନ୍ତା । ମୁଁ କୌଣସି ଉପାୟରେ କଂସଙ୍କୁ ମଙ୍ଗେଇ ଏ ଦାୟିତ୍ୱ ନେଇଛି । ଆଉ କଂସ ବି ବଡ଼ କୁଣ୍ଠିତ ଭାବରେ ମୋତେ ଏ ଦାୟିତ୍ୱ ଦେଇଛନ୍ତି । ମୋତେ ଯେମିତି ହେଲେ ସନ୍ଧ୍ୟା ସୁଦ୍ଧା ଏ ଜାଗା ସଫା କରି ସୈନ୍ୟମାନଙ୍କ ପାଇଁ ଘର ତିଆରି ଆରମ୍ଭ କରିବାକୁ ହେବ । ନଚେତ୍ ମୋ ମୁଣ୍ଡ ରହିବ କି ନାହିଁ ଠିକ୍ ନାହିଁ ।'

ଅରିନ୍ଦମ ପ୍ରଦ୍ୟୋତ କଥା ମନେ ମନେ ଭାବି ଦେଖିଲା । ମନେହେଉଛି ପ୍ରଦ୍ୟୋତ କିଛି ଲୁଚାଛପା ନ କରି ସମ୍ପୂର୍ଣ୍ଣ ବିଶ୍ୱାସରେ ତାକୁ ଏସବୁ କଥା କହୁଛି । ସେ ଚାହେଁନା ଏପରି କିଛି ଗୋଳମାଳ ହେଉ ଯେଉଁଥିରେ ସେମାନେ ସମସ୍ତେ

ହଇରାଣ ହେବେ । ଅରିନ୍ଦମ ଭାବିଲା ଏ ଠିକ୍ କଥା । ସେମାନେ ପ୍ରଦ୍ୟୋତ ଓ ତା'ର ସୈନ୍ୟମାନଙ୍କର କ'ଣ କରିପାରିବେ ? କିଛି ନାହିଁ । ଖାଲି ପ୍ରତିବାଦ କରିବେ । ବାସ୍ । ସେ ପ୍ରତିବାଦର କଂସ ପାଖରେ କ'ଣ ମୂଲ୍ୟ ଅଛି ? ଆଜି ସନ୍ଧ୍ୟା ସୁଦ୍ଧା ତା'ର ଆଦେଶ ଏ ଜାଗା ଖାଲି ହେବ । ପ୍ରଦ୍ୟୋତ ନ ପାରିଲେ ଅନ୍ୟମାନେ କରିଦେବେ । ସେଥିରେ କିଏ ମଲା କିଏ ଗଲା କିଛି ଯାଏ ଆସେ ନା । ସେଇ ପ୍ରଦ୍ୟୋତ ଯେ କି ଭଲରେ କଥା କହୁଛି ସେ ବି ନିଜ ସ୍ୱାର୍ଥରେ ରକ୍ତମୁହାଁ ହୋଇ ଉଠିବ, ସନ୍ଦେହ ନାହିଁ । ତା'ଠାରୁ ବରଂଚ ପ୍ରଦ୍ୟୋତ କଥା ମାନିଯାଇ ତାକୁ ସାହାଯ୍ୟ କରିବା ଭଲ । ସେ ପ୍ରଦ୍ୟୋତକୁ କହିଲା, 'ପ୍ରଦ୍ୟୋତ ଭାଇ । କଂସ ବିରୁଦ୍ଧରେ ତୁମେ କିଛି କରିପାରିବ ନାହିଁ । ଆମେ ବି କିଛି କରି ପାରିବୁ ନାହିଁ । ତୁମେ ଠିକ୍ କହୁଛ । ଏ ରାକ୍ଷସଗୁଡ଼ାଙ୍କୁ ଡାହାଳ କୁକୁର ପରି ଏ ଲୋକ ଗୁଡ଼ାଙ୍କ ଉପରେ ଛାଡ଼ିଦେବା ଠିକ୍ ନୁହେଁ । ପୁରୁଷ ସ୍ତ୍ରୀଙ୍କ ସମେତ ବୁଢ଼ାବୁଢ଼ୀ, ଛୋଟ ପିଲା ସମସ୍ତେ ଅଛନ୍ତି । ସେମାନଙ୍କର ଅବସ୍ଥା ରହିବ ନାହିଁ । ରାକ୍ଷସଗୁଡ଼ା ଜୀଅନ୍ତା ଖାଇଯିବେ । କିନ୍ତୁ ଏ ଲୋକଗୁଡ଼ାଙ୍କର ତ ଘରଦ୍ୱାର ଯିବ, ବଡ଼ ହଇରାଣ ହେବେ, କ'ଣ କରିବା କୁହ । ଆମେ ତମକୁ ଯେତେ ସମ୍ଭବ ହେବ ସାହାଯ୍ୟ କରିବାକୁ ରାଜି ।'

ପ୍ରଦ୍ୟୋତ ଟିକିଏ ଚୁପ କରିଗଲା । କିଛି ସମୟ ଭାବିଲା । କହିଲା, 'ମୁଁ ଭାବୁଥିଲି ସେମାନେ ଦକ୍ଷିଣକୁ ଆହୁରି ଆହୁରି ଜଙ୍ଗଲ ଭିତରକୁ ପଶି ଯାଆନ୍ତୁ । କିନ୍ତୁ ନାହିଁ । ସେ ବି ଠିକ୍ ନୁହେଁ । ଆହୁରି ଆହୁରି ରାକ୍ଷସ ସୈନ୍ୟ ଆସୁଛନ୍ତି । ସେମାନଙ୍କୁ ଥଇଥାନ କରିବା ପାଇଁ ଭିତରକୁ ଭିତରକୁ ଜଙ୍ଗଲ କାଟିବାକୁ ପଡ଼ିବ । ଏ ବିଷୟରେ କଂସ କାହାରି କଥା ଶୁଣିବ ନାହିଁ । ଏ ତ ସହର ବାହାରେ, ଗୋଟାଏ ପାଖକୁ । ମୋର ଭୟ କଂସ ମଥୁରା ସହର ଭିତରୁ ସେମାନଙ୍କୁ ଘର ଦବାପାଇଁ ଅଧେ ସହର ଖାଲି କରିଦେବ ।'

ଅରିନ୍ଦମ ଚମକି ଉଠିଲା, 'କଅଣ କହୁଛ ? ସହର ଭିତରୁ ? ଏ ତ ଭୟଙ୍କର କଥା !'

'ହଁ, ଭୟଙ୍କର କଥା ।' ପ୍ରଦ୍ୟୋତ କହିଲା, 'ତୁମ ଆମ ଘର ବି ଆସିଯାଇ ପାରେ । ରାକ୍ଷସ ସୈନ୍ୟଙ୍କ ପାଇଁ କଂସ ଦରକାର ହେଲେ ଆମ ସମସ୍ତଙ୍କୁ ଗୋଡ଼ରେ ଦଳିଦେବ । ସେ କାହାରି କଥା ଶୁଣିବାକୁ ଚାହାନ୍ତି ନାହିଁ । ସେ ଏକାଙ୍ଗ ଚକ୍ରବର୍ତ୍ତୀ ହେବେ, ଜରାସନ୍ଧଙ୍କ ଠାରୁ ବି ବଡ଼ ।' କ'ଣ ଭାବି ପ୍ରଦ୍ୟୋତ ହଠାତ୍ ଚୁପ କରିଗଲା । ବିବ୍ରତ ହୋଇ ଏପାଖ ସେପାଖ ଚାହିଁଲା । ଦୂରରେ ଘର ଭଙ୍ଗା ଚାଲିଛି । ଆହୁରି


Digitized by srujanika@gmail.com

ଦୂରରେ ତଡ଼ା ହୋଇଥିବା ଲୋକମାନେ କାକୁସ୍ଥ ହେଇ ବସି ରହିଛନ୍ତି । ପ୍ରଦ୍ୟୋତ କହିଲା, 'ଅରିନ୍ଦମ, ତୁମେ ଯାଅ, ଯାଅ । ଏଠି ଛିଡ଼ା ହୁଅନା । ମୁଁ କ'ଣ କହୁ କହୁ କଅଣ କହି ପକେଇଲି । ମଥୁରାରେ କାନ୍ଥ ବାଡ଼ର କାନ ଅଛି । ପବନ ଆକାଶର କାନ ଅଛି । ମୋ' କାମ ଡେରି ହେଉଛି ।'

ଅରିନ୍ଦମ ପ୍ରଦ୍ୟୋତ କଥା ଠିକ୍ ଶୁଣି ପାରୁ ନ ଥିଲା । ତା' ମୁଣ୍ଡରେ କଂସର ଭୟଙ୍କର ନାରକୀୟ ପ୍ରବୃତ୍ତି କଥା ଖେଳି ବୁଲୁଥିଲା । ବର୍ଷ ବର୍ଷ ଧରି ନିଜେ ନିଜେ ଜଙ୍ଗଲ କାଟି ଏଇଠି ଘରଦ୍ୱାର କରି ରହିଥିବା ମଥୁରାର ଏଇ ଗରୀବ ଲୋକଙ୍କ କଥା ସେ ଆଦୌ ଭାବିଲା ନାହିଁ । ଗୋଟାଏ ଦିନରେ ସେମାନଙ୍କର ଘରଦ୍ୱାର ଭାଙ୍ଗି ତଡ଼ି ଦିଆଗଲା । ସେମାନେ ପିଲାଛୁଆ ଘେନି କୁଆଡ଼େ ଯିବେ, କ'ଣ କରିବେ, କୋଉଠି ରହିବେ ସେକଥା ଚିନ୍ତା କରାଗଲା ନାହିଁ । ତେବେ ଜଣେ ରାଜା ହେବ କାହିଁକି ? ସେମାନଙ୍କୁ ଶାସନ କରିବାର ଦାୟିତ୍ୱ ନେବ କାହିଁକି ? ଏଇଟା କ'ଣ ଆର୍ଯ୍ୟମାନଙ୍କର ରାଜଧର୍ମ ? କଂସ କି ଆର୍ଯ୍ୟ ? ଗୋଟାଏ କୁଳାଙ୍ଗାର । ଭାଗ୍ୟ ଭଲ, ବର୍ତ୍ତମାନ ମେଘ ସମୟ ନୁହେଁ । ନଚେତ୍ ଏ ଲୋକଗୁଡ଼ାଙ୍କର କି ଅବସ୍ଥା ହୁଅନ୍ତା ଭାବି ହେଉନି । ତା' ଉପରେ ପ୍ରଦ୍ୟୋତ ଯାହା କହୁଛି ଆହୁରି ଭୟଙ୍କର କଥା । ମଥୁରା ସହର ଭିତରୁ ଦରକାର ହେଲେ ଅଧା ଘରୋଇ ଲୋକଙ୍କୁ ବାହାର କରି ଦିଆଯିବ । ସେଠି ମଗଧର ସୈନ୍ୟମାନେ ରହିବେ । ଏ ଅଦ୍ଭୁତ କଥା । ଯାଦବମାନଙ୍କୁ ଘେନି ଯଦୁ ବଂଶ, ଯାଦବମାନଙ୍କୁ ଘେନି ମଥୁରା । କଂସ ଯାଦବମାନଙ୍କର ମୂଳ ପିଣ୍ଡରେ ଆଘାତ କରିବାକୁ ଚାହେଁ । ଏ କେବଳ ସୈନ୍ୟମାନଙ୍କ କଥା ନୁହେଁ, ବା ସୈନ୍ୟମାନଙ୍କ ପାଇ ସ୍ଥାନ ଖୋଜିବା କଥା ନୁହେଁ । ଏ ଉଦ୍ଦେଶ୍ୟ ଆହୁରି ଗଭୀର । ଉଦ୍ଦେଶ୍ୟ ଯଦୁ ବଂଶ ଓ ଯଦୁ ଗୋଷ୍ଠୀମାନଙ୍କୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବା, ସେମାନଙ୍କୁ ଭୟଭୀତ କରି ତଛନଛ କରି ରଖିବା, ଯେପରି ସେମାନେ ଆଦୌ ମୁଣ୍ଡ ଟେକି ପାରିବେ ନାହିଁ । ଆର୍ଯ୍ୟାବର୍ତ୍ତର ରାଜାମାନଙ୍କ ଭିତରେ ଏ ନୂଆ ପୀଢ଼ି । ଏମାନଙ୍କ ନିକଟରେ ଅତ୍ୟାଚାର ଶବ୍ଦର ଅର୍ଥ କିଛି ନାହିଁ । ଏମାନେ ନିଜର କ୍ଷମତା ପାଇଁ, ସ୍ୱାର୍ଥ ପାଇଁ, ନିଜର ପ୍ରତିଷ୍ଠା ପାଇଁ ସବୁ ପ୍ରକାର ହୀନ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ । ସେଥିପାଇଁ ଶହ ଶହ ଲୋକ ହାଣ ଖାଇଲେ ବି ଆପତ୍ତି ନାହିଁ । ଏମାନଙ୍କ ପାଇଁ ସେଇଟା ହିଁ ସିଧା ବାଟ ।

ଅରିନ୍ଦମ ମୁଣ୍ଡରେ ଏହିପରି ନାନା ଚିନ୍ତା । ସେ ପ୍ରଦ୍ୟୋତ ପାଖରେ ଚୁପଚୁପ ଛିଡ଼ା ହୋଇଥାଏ । ପାଖରେ ଯେଉଁ ଚାରି ପାଞ୍ଚଜଣ ସାଙ୍ଗ ସାଙ୍ଗରେ ଆସିଥିଲେ


Digitized by srujanika@gmail.com

ସେମାନେ । ଦୂରରେ ଘର ଭଙ୍ଗାଭଙ୍ଗି ଚାଲିଛି, କନ୍ଦାକଟା ପାଟିଗୋଳ ଶୁଭୁଛି । ଏଇ ଲୋକମାନଙ୍କୁ କ'ଣ ସାହାଯ୍ୟ କରାଯାଇପାରେ ସେ କଥା ସେ ଭାବୁଥାଏ । ପ୍ରଦ୍ୟୋତ ପୁଣି କହିଲା, 'ଅରିନ୍ଦମ, ଶୁଣ । ଏ ଘରଦ୍ୱାର ସବୁ ଭଙ୍ଗା ହୋଇ ସଫା ହେବ ଓ ସାଙ୍ଗେ ସାଙ୍ଗେ ସୈନ୍ୟମାନଙ୍କ ପାଇଁ ନୂଆ ଘର ତିଆରି ଆରମ୍ଭ ହେବ । ତୁମ୍ଭମାନଙ୍କୁ କଷ୍ଟ ହେଉଥିବ ମୁଁ ଜାଣେ । କିନ୍ତୁ ତୁମ୍ଭେମାନେ ଏ ଗୋଳମାଳରେ ମୁଣ୍ଡ ପୂରାନା । କଂସର ତୁମ ପ୍ରତି ଭଲ ଧାରଣା । କିନ୍ତୁ ସେ ଧାରଣା କେତେବେଳେ ଯେ ବଦଳି କ'ଣ ହେବ ତା'ର ଠିକଣା ନାହିଁ । ମୋ' କଥା ଶୁଣ । ତୁମ୍ଭେମାନେ ଏ ଲୋକମାନଙ୍କୁ ବୁଝାଅ । ସେମାନଙ୍କୁ ଯେମିତି ହେଲେ ଯିବାକୁ ହେବ । ଅଯଥା ଗୋଳମାଳ କରି ଲାଭ ନାହିଁ । ସେଇମାନଙ୍କର କ୍ଷତି । ମୁଁ ଗୋଟାଏ ପ୍ରସ୍ତାବ ଦେଉଛି । ତୁମେ ଭାବ । ସେଇଟା ହିଁ ସବୁଠୁ ଭଲ ପ୍ରସ୍ତାବ ।'

ଅରିନ୍ଦମ ଥଳକୂଳ ପାଉ ନ ଥିଲା । ଦୁଃଖ, ରାଗ, କ୍ରୋଧ ସବୁ ତା ମନରେ ମିଶିଯାଇଥିଲା । ପ୍ରଦ୍ୟୋତ କ'ଣ କହିବାକୁ ଚାହେଁ ? କହୁ । ସେଇକଥା ସେ ପ୍ରଦ୍ୟୋତକୁ କହିଲା – 'ହଁ, କୁହ ।'

ପ୍ରଦ୍ୟୋତ ଚାରିପାଖକୁ ଚାହିଁଲା । ନାଁ, କେହି କୁଆଡ଼େ ନାହାନ୍ତି । ସେ ତଥାପି ସାବଧାନ ହୋଇ ଅରିନ୍ଦମ ପାଖକୁ ଘୁଞ୍ଚିଗଲା । କହିଲା – 'ଶୁଣ, ଏ ଲୋକମାନେ ସବୁ ମଥୁରା ଛାଡ଼ି ଯମୁନା ଆରପାଖକୁ ଚାଲିଯାଆନ୍ତୁ । ସେମାନଙ୍କ ପାଇଁ ମଥୁରାରେ ରହିବା ନିରାପଦ ନୁହେଁ । ଯମୁନା ସେ ପାଖରେ ବଡ଼ ବଡ଼ ଜଙ୍ଗଲ । ସେମାନେ ସେଇଠି ଜଙ୍ଗଲ କାଟି ନିଜର ବସତି କରନ୍ତୁ । ଯମୁନା ସେପାଖ ଗୋକୁଳରେ ନନ୍ଦ ବହୁତ ଦିନ ହେଲା ଅଛନ୍ତି । ତାଙ୍କୁ କୁହ ସେ ସେମାନଙ୍କୁ ସାହାଯ୍ୟ କରିପାରିବେ । ମୋର ମନେହୁଏ ସେଇଟାହିଁ ସବୁଠୁ ଭଲ ବାଟ । ମୁଁ ଯାହା ଜାଣେ କଂସ ବା ମଗଧର ସୈନ୍ୟମାନେ କେହି ଯମୁନା ଟପି ଆରପାଖକୁ ଯିବାକୁ ଚାହିଁବେ ନାହିଁ ।'

ଅରିନ୍ଦମ ଏକଥା ଭାବି ନ ଥିଲା । କିନ୍ତୁ ତା'ର ମନେହେଲା ବର୍ତ୍ତମାନ ଅବସ୍ଥାରେ ପ୍ରଦ୍ୟୋତ ପ୍ରସ୍ତାବ ଭଲ । ଏମାନେ ଯମୁନା ସେ ପାଖକୁ ଚାଲିଯିବା ଠିକ୍ ହେବ । ସେ ସାଙ୍ଗମାନଙ୍କ ସହିତ କଥାବାର୍ତ୍ତା ହେଲା । କଂସ ସହିତ ଗୋଳମାଳ କରିବା ସମ୍ଭବ ନୁହେଁ । ଅରିନ୍ଦମ ଦେଖିପାରିଲା କଂସ ଥିଲା ପର୍ଯ୍ୟନ୍ତ ମଥୁରା ପାଇଁ ଅତ୍ୟନ୍ତ ଖରାପ ଦିନ ଆଗକୁ ରହିଛି । ଯେଉଁ କଥା ପ୍ରଦ୍ୟୋତ ଜାଣେ ଅଥଚ କହୁନାହିଁ । ସେ ହେଲା କଂସର ଭବିଷ୍ୟତ ଯୋଜନା ବିଷୟରେ । କଂସ ଜରାସନ୍ଧ ପରି ଚକ୍ରବର୍ତ୍ତୀ ହେବାକୁ ଚାହେଁ – ଜରାସନ୍ଧ ଠାରୁ ବଡ଼ ।

ସେ ଜରାସନ୍ଧଠାରୁ ସାହାଯ୍ୟ ନେଉଛି । କିନ୍ତୁ ସେ ଜରାସନ୍ଧ ଠାରୁ ଅଲଗା ହୋଇ ନିଜ ଗୋଡ଼ରେ ଛିଡ଼ା ହେବାକୁ ଚାହୁଁଛି । ସେଥିପାଇଁ ସେ କୌଣସି ବିଧିନିଷେଧ ମାନିବାକୁ ପ୍ରସ୍ତୁତ ନୁହେଁ । ସେଥିପାଇଁ ସେ ଯାଦବମାନଙ୍କୁ ପ୍ରଥମରୁ ଚାପିଚୁପି, ଭୟଭୀତ କରି ସମ୍ପୂର୍ଣ୍ଣ ଭାବରେ ନିଜର ଅଧୀନରେ ରଖିବାକୁ ଚାହେଁ, ଯେପରି ସେମାନେ ଇଚ୍ଛା କଲେ ବି କୌଣସି ଗୋଳମାଳ କରିପାରିବେ ନାହିଁ । ସେ ସେଥିପାଇଁ ଅଧିକରୁ ଅଧିକ ରାକ୍ଷସ ସୈନ୍ୟମାନଙ୍କୁ ଆଣିବାକୁ ଚାହେଁ, ସେମାନଙ୍କୁ ସବୁ ସୁବିଧା ଦେବାକୁ ଚାହେଁ, ଯେପରି ସେମାନେ ଏକମାତ୍ର କଂସ ପ୍ରତି ହିଁ ଅନୁରକ୍ତ ରହିବେ ଓ କଂସର ହାତ ଟେକାରେ ହିଁ ସମସ୍ତଙ୍କୁ ମାରି ଶେଷ କରିଦେବେ । ସେ ପ୍ରଦ୍ୟୋତକୁ ଚାହିଁଲା, କହିଲା, 'ପ୍ରଦ୍ୟୋତ ଭାଇ, ତୁମର ଆଉ କେତେ ଅଧିକ ରାକ୍ଷସ ସେନା ଆସିଲେ ?'

ପ୍ରଦ୍ୟୋତ କହିଲା, 'ହଁ, ଆସିଲେଣି ଅନେ...' ସେ ହଠାତ୍ ରହିଗଲା, ଚମକିଲା ପରି ଅରିନ୍ଦମକୁ ଚାହିଁଲା, 'ତୁମେ କେମିତି ଜାଣିଲ ଅଧିକ ଆସୁଛନ୍ତି ବୋଲି ?'

'ନାଁ, ନାଁ, ସେକଥା ନୁହେଁ', ଅରିନ୍ଦମ ସାବଧାନ ହୋଇଗଲା, 'ସମସ୍ତେ କହୁଛନ୍ତି ଜରାସନ୍ଧ ଆଉ ଅଧିକ ରାକ୍ଷସ ସେନା ପଠଉଛନ୍ତି । ତୁମେ ତ ଜାଣ ରାକ୍ଷସ ସୈନ୍ୟମାନଙ୍କୁ ମଥୁରାରେ କେହି ପସନ୍ଦ କରନ୍ତିନି । ସେମାନେ ବଡ଼ ଅତ୍ୟାଚାରୀ, ଲୋକମାନଙ୍କୁ ବଡ଼ ହଇରାଣ କରନ୍ତି । ତାଙ୍କ ବିରୁଦ୍ଧରେ କୌଣସି କଥା ଶୁଣିବାକୁ କଂସ ରାଜି ନୁହନ୍ତି ।'

ପ୍ରଦ୍ୟୋତ ଟିକେ ଚୁପ୍ କରିଗଲା । ତାପରେ ଆସ୍ତେ ଆସ୍ତେ କହିଲା, 'ଦେଖ, ରାକ୍ଷସ ସେନାଙ୍କ ବିଷୟରେ ତୁମେ କୋଉଠି କିଛି ଆଲୋଚନା କରନା, କି କାହାକୁ କିଛି ପଚାର ନା । ରାକ୍ଷସ ସେନାଙ୍କ ବିଷୟରେ ଯାହା ଜାଣିଛ ଜାଣିଥା । ଚୁପ ରୁହ । ହଁ, ରାକ୍ଷସ ସେନା ଅନେକ ଆସିଲେଣି, ଆହୁରି ଆସିବେ । ମଥୁରା ଆଉ ମଥୁରା ଲୋକଙ୍କ ରାଜ୍ୟ ହୋଇ ରହିବନି । ରାକ୍ଷସ ରାଜ୍ୟ ହୋଇଯିବ ।' ପ୍ରଦ୍ୟୋତ ବୁଲିପଡ଼ି ସେଠୁ ଚାଲିଯିବାକୁ ଆରମ୍ଭ କଲା । ଯାଉ ଯାଉ କହିଲା, 'ତୁମେମାନେ ଯାଅ, ଏ ଲୋକମାନଙ୍କୁ ଯମୁନା ସେ ପାଖରେ ଥଇଥାନ କରିବା ପାଇଁ ବନ୍ଦୋବସ୍ତ କର । ମଥୁରାର ବହୁତ ଖରାପ ଦିନ ଆସୁଛି । ଏକଥା ତୁମ ବାପା ବି ଜାଣନ୍ତି । ସାବଧାନ ରୁହ ।'

ପ୍ରଦ୍ୟୋତ ଘର ଭଙ୍ଗା ଜାଗାକୁ ଚାଲିଗଲା । ଘର ଭଙ୍ଗାଭଙ୍ଗି ପ୍ରାୟ ସରି ଆସିଲାଣି । ନୂଆ ଘରସବୁ ତିଆରିର ଉପକରଣ ବି ଆସିଗଲାଣି । ପ୍ରଦ୍ୟୋତ ସେହି ଲୋକମାନଙ୍କୁ ଆଦେଶ ଦେଇ ସେମାନଙ୍କର ସାଙ୍ଗରେ ମିଶିଗଲା ।


Digitized by srujanika@gmail.com

ସକାଳ ଆଗେଇ ଗଲାଣି । ଅରିନ୍ଦମର ମନେ ହେଲା ପ୍ରଦ୍ୟୋତ ଅନେକ କଥା ଜାଣେ । କଂସକୁ ସେମାନେ ବାହାରୁ ଦେଖୁଛନ୍ତି । କିନ୍ତୁ ସେ ଭିତରୁ ଦେଖୁଛି । କଂସ କାହାକୁ ବିଶ୍ୱାସ କରେ ନା । ପ୍ରଦ୍ୟୋତକୁ ବି ନୁହେଁ । କିନ୍ତୁ ତା' କାରବାର ଓ ଢଙ୍ଗଢ଼ାଙ୍ଗରୁ ପ୍ରଦ୍ୟୋତ ପରି ବୁଦ୍ଧିମାନ ଲୋକ ଯେ ଅନେକ କଥା ବୁଝିପାରୁଥିବ ସେଥିରେ ସନ୍ଦେହ ନାହିଁ । ସେ ଭାବିଲା ପ୍ରଦ୍ୟୋତ ସହିତ ଆଉ ଟିକିଏ ଭଲ ସମ୍ପର୍କ ରଖିଲେ କ୍ଷତି କ'ଣ । ଭାନୁପ୍ରକାଶ ନିଶ୍ଚୟ ପସନ୍ଦ କରିବେ, ସୌରଦେବ ବି । କିନ୍ତୁ ବର୍ତ୍ତମାନ ପ୍ରଦ୍ୟୋତ କଥା ମାନି କାମ କରିବା ଭଲ । ସେ ଆଉ ସାଙ୍ଗେ ସାଙ୍ଗେ ଘରକୁ ଫେରିବା କଥା ନ ଭାବି, ସାଙ୍ଗମାନଙ୍କ ସହିତ ପ୍ରଦ୍ୟୋତର କଥାକୁ ଆଲୋଚନା କଲା, ପରେ ପରେ ଦୂରରେ ଜାକିଜୁକି ହୋଇ ବସି କନ୍ଦାକଟା କରୁଥିବା ଲୋକମାନଙ୍କ ପାଖକୁ ସେମାନେ ଗଲେ ।

'ସେମାନଙ୍କୁ ଯମୁନା ସେ ପାଖକୁ ନେଇଯାଅ'- ଅରିନ୍ଦମର ମନେହେଲା ପ୍ରଦ୍ୟୋତ ଖୁବ୍ ସହଜରେ ଏକଥା କହିଦେଲା । କିନ୍ତୁ ଲୋକଙ୍କୁ ଯମୁନା ସେ ପାଖକୁ ନେବାର ବନ୍ଦୋବସ୍ତ କରିବା ସହଜ କଥା ନୁହେଁ । ପ୍ରଥମେ ତ ଶହ ଶହ ଲୋକଙ୍କର ସୁବିଧା ଅସୁବିଧା, ସେମାନଙ୍କର ଖାଇବା ପିଇବା । ଦ୍ୱିତୀୟରେ ଯମୁନା ସେ ପାଖରେ ସେମାନେ ରହିବେ କୋଉଠି ? ଯମୁନା ସେ ପାଖରେ ତ ଘୋର ଜଙ୍ଗଲ, ବାଘ ଭାଲୁରେ ଭର୍ତ୍ତି । ସେଠି କ'ଣ ଏକା ଦିନକେ ବନ୍ଦୋବସ୍ତ ହୋଇଯିବ ? ଯୋଗାଡ଼ଯନ୍ତ୍ର ତ ବେଶ କିଛିଦିନ ଲାଗିବ । ଅରିନ୍ଦମର ମୁଣ୍ଡ ଗୋଳମାଳ ହୋଇଗଲା । କଂସ ନିଜର ପ୍ରଜାମାନଙ୍କୁ ଏପରି କଷ୍ଟ ଦେବା ଠିକ୍ ହେଲା ନାହିଁ । ଆଉ ଯଦି ବା ସେଇ ନିଷ୍ପତ୍ତି ନିଆଗଲା, ତେବେ ଆଗରୁ ସେଇ ଲୋକମାନଙ୍କ ପାଇଁ ବିକଳ୍ପ ବ୍ୟବସ୍ଥା କରି ଏପରି ନିଷ୍ପତ୍ତି ନିଆଯାଇ ଥିଲେ ଭଲ ହୋଇଥାନ୍ତା । କିନ୍ତୁ ଏକଥା କଂସକୁ ଜଣେଇବ କିଏ ? କଂସ ତ ରାଜାଙ୍କ ପରି ବ୍ୟବହାର କରୁନି, ଯିଏ କି ନିଜର ସବୁ କାମରେ ଲୋକଙ୍କର ମଙ୍ଗଳ କରିବାକୁ ଚାହେଁ । ସେ ଲୋକଙ୍କର ଶତ୍ରୁ, ତା'ର ବ୍ୟବହାର ଲୋକ ଶତ୍ରୁର ବ୍ୟବହାର । ସେ ସ୍ଥିର କଲା ଏ ବିଷୟରେ ସୌରଦେବଙ୍କୁ ଜଣେଇବା ଦରକାର । ସେ ପ୍ରଭାବଶାଳୀ ଲୋକ, ତାଙ୍କର ଲୋକବଳ ବହୁତ, ସେ ହୁଏତ କିଛି କରି ପାରନ୍ତି ।

କିନ୍ତୁ ମଥୁରାର ଘଟଣାସବୁ ସେତିକିରେ ସରିଲା ନାହିଁ । ଅରିନ୍ଦମ ସୌରଦେବଙ୍କ ପାଖକୁ ଯିବା ଆଗରୁ ସେ ନିଜେ ତାକୁ ଡକେଇ ପଠେଇଲେ । ଖବର ଦେଲେ ଜରୁରୀ କଥା ଅଛି । ଅରିନ୍ଦମ ସେଇଆ କଲା । ସାଙ୍ଗରେ ଦେବପ୍ରିୟ ଓ ଆଉ ଦି'ଜଣଙ୍କୁ ସାଙ୍ଗରେ ଧରି ସନ୍ଧ୍ୟା ପରେ ସୌରଦେବଙ୍କ ଘରେ ପହଞ୍ଚିଲା ।

ସୌରଦେବଙ୍କ ଘର ରାଜପ୍ରାସାଦର ଲଗାଲଗି ଗୋଟାଏ ଅଭିଜାତ ମହଲାରେ । ସେଠି ମୁଖ୍ୟତଃ କଂସର ବିଶ୍ୱସ୍ତ ଲୋକମାନଙ୍କ ଘର ଓ ସମସ୍ତଙ୍କର ଚଳପ୍ରଚଳ ଖୁବ୍ ଭଲ । ସେମାନଙ୍କର ପ୍ରତ୍ୟେକଙ୍କର ରକ୍ଷୀ ଓ ପ୍ରହରୀ ଅଛନ୍ତି ଓ ଯେ କୌଣସି ଗୁରୁତର କାମରେ କଂସ ସେମାନଙ୍କୁ ପ୍ରଥମେ ଡାକେ । ଯାଉ ଯାଉ ଅରିନ୍ଦମର ମନରେ ମୁହୂର୍ତ୍ତକ ପାଇଁ ଖେଳିଗଲା କଂସ ଏମାନଙ୍କର ଘର ଭାଙ୍ଗିବାକୁ ସାହସ କରିବ କି ? ଓ ସାଙ୍ଗେ ସାଙ୍ଗେ ଯେପରି କିଏ ଉତ୍ତର ଦେଲା – ହଁ, କଂସର କାହାରି ପ୍ରତି ସମ୍ମାନ ନାହିଁ । ସୌରଦେବଙ୍କ ଫାଟକ ପାଖରେ ଦି'ଜଣ ରକ୍ଷୀ ସେମାନଙ୍କୁ ଅପେକ୍ଷା କରି ଛିଡ଼ା ହୋଇଥିଲେ । ଏମାନେ ପହଞ୍ଚିବା ସାଙ୍ଗେ ସାଙ୍ଗେ ସେମାନଙ୍କୁ ହତା ଭିତରକୁ ନେଇ ଫାଟକ ବନ୍ଦ କରିଦେଲେ । ସୌରଦେବଙ୍କ ହତା ଭିତରର ବଗିଚା ବେଶ ପ୍ରଶସ୍ତ । ସେ ନିଜେ ବଗିଚାକୁ ବାହାରି ଆସିଥିଲେ । ଏମାନଙ୍କୁ ସାଙ୍ଗରେ ନେଇ ଘର ଭିତରକୁ ଚାଲିଗଲେ ।

ଘର ଭିତରେ ସେମାନେ ସବୁ ବସିଲା ପରେ, ସୌରଦେବ ପ୍ରଥମେ କହିଲେ, 'ଅରିନ୍ଦମ, ଆଜିକାଲି ମଥୁରାରେ ସମୟ ଭଲ ନୁହେଁ । ଚାରିପାଖରେ ନାନାପ୍ରକାର ଖବର ଦବାର ଲୋକେ ଘୂରି ବୁଲୁଛନ୍ତି । ତା ଉପରେ କଂସର ସୈନ୍ୟ ସାମନ୍ତ । ସେମାନେ ବି ମଥୁରା ତମାମ ଘୂରି ବୁଲୁଛନ୍ତି । ବିଶେଷ କରି ତା'ର ରାକ୍ଷସ ସୈନ୍ୟ ଗୁଡ଼ା । ଆଶ୍ଚର୍ଯ୍ୟ, ସେମାନଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି । ଦିନ ରାତି, ସମୟର ଠିକ୍ ନାହିଁ । ଏ ମହଲା ସେ ମହଲା, କେତେବେଳେ କୋଉ ମହଲା ଠିକ୍ ନାହିଁ, ସବୁ ମହଲାରେ ପଇଁତରା ମାରୁଛନ୍ତି, ଲୋକମାନଙ୍କ ଘରେ ଧକ୍କାଧକ୍କି ବି କରୁଛନ୍ତି । ଭାବନା ଆମ ମହଲା ଅଲଗା । ଏଠି ବି ସେଇ ଅବସ୍ଥା । ମୋର ରକ୍ଷୀମାନଙ୍କୁ ଦିନରେ ଆସି ତିନି ଚାରିଥର ପଚରାପଚରି କରୁଛନ୍ତି, ତାଙ୍କ ପାଖରେ ବସି ଆଡ୍ଡା ମାରୁଛନ୍ତି । ଉଦ୍ଦେଶ୍ୟ ଆଡ୍ଡା ମାରିବା ନୁହେଁ, ଉଦ୍ଦେଶ୍ୟ ନଜର ରଖିବା, କୋଉଠି କଅଣ ହେଉଛି ତା' ସନ୍ଧାନ କରିବା । ସେ ଆଗ ମଥୁରା ଆଉ ନାହିଁ । ଆମେ କେହି କୋଉଠି ନିରାପଦ ନୋହୁଁ ।'

'ଆମେ ବି ସବୁଆଡ଼େ ସେଇକଥା ଦେଖୁଛୁ ।' ଅରିନ୍ଦମ କହିଲା, 'ଏଠି ଆପଣମାନଙ୍କର ଏ ମହଲା ସବୁ ତ ରାଜାଙ୍କର ଅଞ୍ଚଳ । ଏଠି ଏ ଅବସ୍ଥା, କାବା ଲାଗୁଛି । ଆମ୍ଭମାନଙ୍କର ଅଞ୍ଚଳ କଥା ଛାଡ଼ିଦିଅନ୍ତୁ । କଂସର ସୈନ୍ୟମାନେ, ବିଶେଷ କରି ରାକ୍ଷସ ସୈନ୍ୟଗୁଡ଼ା, ସବୁଆଡ଼େ ଘୂରିବୁଲୁଛନ୍ତି । ଦେଖିଲେ ଭୟ ଲାଗୁଛି ।'

'ଭୟ କଥା କଅଣ କହୁଛ, ଅରିନ୍ଦମ, ଏ ତ ବିପଜ୍ଜନକ ଅବସ୍ଥା, ଅତ୍ୟନ୍ତ ବିପଦ୍‌ଜନକ । କଂସ ତୁମ ସମସ୍ତଙ୍କୁ ଭୟଭୀତ କରି ରଖିବାକୁ ଚାହେଁ । ତେଣୁ ଏ


Digitized by srujanika@gmail.com

ଜଙ୍ଗଲୀ କୁକୁର ଦଳଙ୍କୁ ଲଗାମ ଛଡ଼ା କରି ସହରଯାକ ଛାଡ଼ି ଦେଇଛି । ସେମାନେ ରକ୍ତ ମୁହାଁ, ତାଜା ରକ୍ତ ଲୋଭରେ ସେମାନଙ୍କର ବାଗବାଇସ ଠିକଣା ନାହିଁ । ମଥୁରା ତୁମକୁ ଯାହା କହିଲି ସେ ଆଗ ମଥୁରା ଆଉ ନାହିଁ, ତୁମେ ସ୍ୱାଧୀନ ଭାବରେ ଯିବା ଆସିବା କରିପାରିବ, ଲୋକଙ୍କୁ ଭେଟାଭେଟି କରିପାରିବ । ଏଇ ଦି ତିନି ଘଣ୍ଟା ସେମାନେ ଖାଇବାକୁ ଯାଇଛନ୍ତି, ରାସ୍ତା ଖୋଲା, ତେଣୁ ତୁମକୁ ଡକେଇ ପଠେଇଲି । ନଚେତ ତା ବି ସମ୍ଭବ ହୋଇ ନ ଥାନ୍ତା ।'

'ମଥୁରା ତ ଗୋଟାଏ ଦୁର୍ଗ ପରି ହୋଇଗଲା', ଅରିନ୍ଦମର ଜଣେ ସାଙ୍ଗ କହିଲା । 'ଦୁର୍ଗ ଠାରୁ ବି ଖରାପ', ସୌରଦେବ କହିଲେ, 'ଦୁର୍ଗ ଭିତରେ ଅନ୍ତତଃ ଲୋକେ ନିରାପଦରେ ଥାଆନ୍ତି, ସେମାନଙ୍କର ସ୍ୱାଧୀନତା ଥାଏ, ଏଠି ସେସବୁ କିଛି ନାହିଁ, କେହି ନିରାପଦ ନୁହନ୍ତି, କାହାରି ସ୍ୱାଧୀନତା ନାହିଁ ।'

ଅରିନ୍ଦମ ସୌରଦେବଙ୍କୁ ଭଲ ଭାବରେ ଜାଣେ । ସେ ସ୍ୱାଧୀନଚେତା, ଯାଦବମାନଙ୍କର ବିଭିନ୍ନ ଗୋଷ୍ଠୀ ଭିତରେ ସେ କଂସର ଅନ୍ଧକ ଗୋଷ୍ଠୀର । କିନ୍ତୁ ଗୋଷ୍ଠୀର ବିଭିନ୍ନ କାର୍ଯ୍ୟକୁ ସେ ଅନେକ ସମୟରେ ସମାଲୋଚନା କରନ୍ତି, ଗୋଷ୍ଠୀ ବିରୁଦ୍ଧରେ ଖୋଲାଖୋଲି କହନ୍ତି । କଂସ ସହିତ ତାଙ୍କର ସମ୍ପର୍କ ଭଲ । କିନ୍ତୁ ସେ ବାହାରର ସମ୍ପର୍କ, ଭିତରେ ଭିତରେ ସେ କଂସର ବିରୋଧୀ । ଅରିନ୍ଦମ ଦେଖିଛି ସୌରଦେବ ଓ ଭାନୁପ୍ରକାଶ ପରସ୍ପରକୁ ସମ୍ମାନ କରନ୍ତି । ଭାନୁପ୍ରକାଶଙ୍କ ପରି ସୌରଦେବ ମଧ୍ୟ ଲୋକଶକ୍ତିର ସମର୍ଥକ । ସାଧାରଣ ଲୋକଙ୍କର ସୁଖ ଦୁଃଖ ସହିତ ସେ ନିଜକୁ ମିଶେଇ ଦିଅନ୍ତି । ଅରିନ୍ଦମ ସେ କଥା ଜାଣେ ଓ ସେଇଥିପାଇଁ ସେ ସୌରଦେବଙ୍କୁ ସମ୍ମାନ କରେ । ତେଣୁ ସୌରଦେବଙ୍କ କଥାରେ ସେ ଆଶ୍ଚର୍ଯ୍ୟ ହେଲା ନାହିଁ । ସେ ସୌରଦେବଙ୍କୁ ଯେଉଁକଥା ପଚାରିବ ପଚାରିବ ଭାବୁଥିଲା, ସେହିକଥା ପଚାରିଲା । କହିଲା – 'କଂସ ମଥୁରାର ଦକ୍ଷିଣ ପାଖ ବସ୍ତିସବୁ ଭାଙ୍ଗିରୁଜି ଶେଷ କରି ଦେଲାଣି, ଆପଣ ଜାଣିଥିବେ ।'

'ହଁ, ଜାଣିଛି', ସୌରଦେବ କହିଲେ, 'ସେସବୁ ଜାଗାରେ ନୂଆ ଘର ତିଆରି ହେଉଛି । ସେଠି ମଗଧର ସୈନ୍ୟ, ବିଶେଷ କରି ରାକ୍ଷସ ସୈନ୍ୟମାନେ ହିଁ ରହିବେ । ତୁମେ ସବୁ ସେ ଜାଗାକୁ ତ ଯାଇଥିଲ ।' 'ହଁ ଯାଇଥିଲୁ, ଆପଣଙ୍କୁ କିଏ କହିଲା ?' ଅରିନ୍ଦମ ପଚାରିଲା ।

'ପ୍ରଦ୍ୟୋତ', ସୌରଦେବ କହିଲେ – 'ବସ୍ତିସବୁ ଭଙ୍ଗା ହେବା କଥା ମୁଁ ଆଗରୁ ଜାଣିଥିଲି, ଆହୁରି କିଛି ବି ଭଙ୍ଗା ହେବ ।'

'ସହର ଭିତରେ କିଛି ସ୍ୱଚ୍ଛଳ ଲୋକଙ୍କ ଘରଦ୍ୱାର ବି ଭଙ୍ଗା ହୋଇପାରେ

ଶୁଣୁଛି ।' ଅରିନ୍ଦମ କହିଲା ।

'ତା ହୋଇପାରେ ।'ସୌରଦେବ କହିଲେ, 'ତେବେ ମୋର ଯାହା ମନେହୁଏ, ଅନ୍ତତଃ ଦେବକୀ ବସୁଦେବଙ୍କର ବିଭାଘର ପୂର୍ବରୁ ନୁହେଁ । କିନ୍ତୁ କଂସର ଯୋଜନାର କିଛି ସ୍ଥିରତା ନାହିଁ । ବର୍ତ୍ତମାନ ତା'ର ଗୋଟିଏ ଯୋଜନା, ସେ ମଥୁରାର ଅନ୍ତନାଡ ଦୁହିଁଦେବାକୁ ଚାହେଁ, ଯେପରି କୌଣସି ଯାଦବ ଗୋଷ୍ଠୀ ମୁଣ୍ଡ ଟେକି ପାରିବେ ନାହିଁ । ସେଥିପାଇଁ ତା'ର ବେଶୀ ବେଶୀ ଅନୁଗତ ସେନା ଦରକାର । ମଥୁରାର ସୈନ୍ୟମାନଙ୍କୁ ସେ ବିଶ୍ୱାସ କରେନା, ଅନେକ ମଗଧର ସୈନ୍ୟ ଆସିଲେଣି, ଆହୁରି ଆସିବେ । ରାକ୍ଷସ ସୈନ୍ୟ ବି ଆସିବେ । ସେହି ବନ୍ଦୋବସ୍ତ ହେଉଛି ।'

ଅରିନ୍ଦମ ଟିକିଏ ଭାବିଲା, କହିଲା, 'କିନ୍ତୁ ଯେଉଁ ଲୋକମାନଙ୍କର ଘରଦ୍ୱାର ଭାଙ୍ଗି ଦିଆଗଲା, ସେମାନେ ତ ସେଠି ବହୁତ ଦିନ ଧରି ରହିଥିଲେ । ସେମାନେ ସବୁ ଯିବେ କୁଆଡ଼େ ? ପ୍ରଦ୍ୟୋତ ଆମକୁ କହୁଥିଲେ ସେମାନଙ୍କୁ ଯମୁନା ସେ ପାଖକୁ ନେଇ ଥଇଥାନ କରିବା ପାଇଁ, ସେ କାମ କ'ଣ ଏତେ ସହଜ ? ଆମେ କ'ଣ ସେ କାମସବୁ ପାରିବୁ ? ତା ଛଡ଼ା ଆମେ ସେସବୁ କଲେ କଂସ କେତେଦୂର ପସନ୍ଦ କରିବ ଆମେ ଜାଣୁନା । ତା ଛଡ଼ା ଯମୁନା ସେପାରି ତ ପୂରା ଜଙ୍ଗଲ, ବାଘ ଭାଲୁରେ ଭର୍ତ୍ତି ।'

'ନାଁ, ତୁମ୍ଭମାନଙ୍କର କିଛି କରିବା ଦରକାର ନାହିଁ ।' ସୌରଦେବ କହିଲେ - 'ଯାହା କରିବା କଥା ସେମାନେ ଛାଁ ଛାଁ କରିବେ, ଆଉ କଲେଣି ବି । ସେମାନେ ଆହୁରି ଦକ୍ଷିଣକୁ ଚାଲିଗଲେଣି । ଜଙ୍ଗଲ କାଟିବାକୁ ହବ ତ ପାଖଆଖରେ କରିବେ ନାହିଁ । ଯମୁନା ସେ ପାରିକୁ ଯିବେ କାହିଁକି ? ତା ଛଡ଼ା ସେଠି ନନ୍ଦ ଓ ତାଙ୍କ ଲୋକମାନେ ଅଛନ୍ତି । ସେମାନେ ଆଉ ଅଧିକା ଲୋକ ସେଠି ପଶିବା ପାଇଁ ଚାହିଁବେ ନାହିଁ । ବିଶେଷ କରି କଂସ ଯେଉଁମାନଙ୍କୁ ତଡ଼ି ଦେଇଛି ।'

'ତା ହେଲେ କ'ଣ ହେବ ?' ଅରିନ୍ଦମ ବ୍ୟସ୍ତ ହେଲା ।

'କିଛି ନାହିଁ', ସୌରଦେବ କହିଲେ, 'ସେମାନେ ଆହୁରି ଦକ୍ଷିଣକୁ ଯାଇ ଜଙ୍ଗଲ କଟାକଟି କରି ଘର ତିଆରି ଆରମ୍ଭ କଲେଣି ।'

'ଏ ନିଶ୍ଚୟ ଆପଣଙ୍କ ବନ୍ଦୋବସ୍ତ', ଅରିନ୍ଦମ କହିଲା ।

'ନାଁ, ମୋର ବନ୍ଦୋବସ୍ତ ନୁହେଁ', ସୌରଦେବ ହସିଲେ, 'ତେବେ ମୁଁ ପ୍ରଦ୍ୟୋତକୁ କହିଥିଲି, କିଛି ଟଙ୍କା ପଇସା ବି ଦେଇଥିଲି । ଏସବୁ ପ୍ରଦ୍ୟୋତ ବନ୍ଦୋବସ୍ତ କରି ଦେଇଛି ।'

'କିନ୍ତୁ କଂସ ?' ଅରିନ୍ଦମ ରହି ରହି କହିଲା ।


Digitized by srujanika@gmail.com

'କଂସକୁ ପ୍ରଦ୍ୟୋତ ଅନ୍ୟ କଥା କହିଛି', ସୌରଦେବ କହିଲେ, 'କଂସକୁ କୁହାଯାଇଛି ସେମାନେ ଜଙ୍ଗଲ ସଫା କରି ଘରଦ୍ୱାର କରନ୍ତୁ । ଦରକାର ହେଲେ ସେ ସବୁ ନୂଆ ଜାଗାକୁ କଂସ ନେଇଯାଇ ପାରିବ । କିନ୍ତୁ ଅରିନ୍ଦମ ସେକଥା ନୁହେଁ, ମୁଁ ତୁମକୁ ଅନ୍ୟକଥା ପାଇଁ ଡକେଇଛି, ଯାହା କି ଅତ୍ୟନ୍ତ ଭୟଙ୍କର ଓ ଭୟର କଥା ।'

'କୁହନ୍ତୁ', ଅରିନ୍ଦମ କହିଲା ।

'ଗତ କିଛିଦିନ ହେଲା ମଥୁରାରେ ଗୋଟାଏ କଥା ଶୁଣାଯାଉଛି । ଶୁଣିଛ କି ?' କହିଲେ ସୌରଦେବ ।

ଅରିନ୍ଦମ ଟିକିଏ ଭାବିଲା, ସାଙ୍ଗମାନଙ୍କ ମୁହଁକୁ ଚାହିଁଲା । କହିଲା, 'ହଁ, ଆମେ ତ ସବୁଦିନେ କିଛି ବା କିଛି କଥା ଶୁଣୁଛୁ । ସେଇଟା କଂସ ରାଜତ୍ୱର ଗୌରବ - ଚୋରି, ଡକେଇତି ପରି କଥା । ହତ୍ୟା, ଧର୍ଷଣ, ଅତ୍ୟାଚାର - ସବୁଦିନେ କିଛି ନା କିଛି ଶୁଣାଯାଉଛି ।'

'ତା ଠିକ୍, ମଥୁରାରେ ତ ନୂଆ ରାଜାଙ୍କର ନୂଆ ରାଜତ୍ୱ ଆରମ୍ଭ ହୋଇଛି । କିନ୍ତୁ ତା ନୁହେଁ । କୌଣସି ନିର୍ଦ୍ଦିଷ୍ଟ ଘଟଣା - ଯେମିତି ମନେକର ପିଲା ଚୋରି...' କହିଲେ ସୌରଦେବ । ଅରିନ୍ଦମ ଚମକି ଉଠିଲା । କହିଲା, 'ଠିକ୍ ତ ।' ତା ସାଙ୍ଗମାନଙ୍କୁ ଚାହିଁଲା - 'ଠିକ୍ ତ ?' ସେମାନେ ହଁ ମାରିଲେ । ଅରିନ୍ଦମ ସୌରଦେବଙ୍କ ଆଡ଼କୁ ବୁଲି ପଡ଼ିଲା । କହିଲା, 'ହଁ, ଗତ ଚାରି ପାଞ୍ଚଦିନ ହେଲା ଆମେ ଶୁଣୁଛୁ । ଚାରିଦିନ ତଳେ ଜଣେ ପରିଚିତ ଲୋକ କହୁଥିଲେ ତାଙ୍କର ପିଲା ସନ୍ଧ୍ୟାରେ ଖେଳିବାକୁ ଗଲା । ଫେରି ନ ଥିଲା । ସେ ବ୍ୟସ୍ତ ହେଉଥିଲେ । ସେ ଫେରିଲା କି ନାହିଁ ମୁଁ ଜାଣେ ନା । ଆଉ ଜଣେ ଦି'ଜଣ ବି ସେହି କଥା କହୁଥିଲେ । ପିଲା ଫେରି ନ ଥିଲେ । ଏ କି କଥା ? ଆମେ ଏ କଥାରେ ବିଶେଷ ଗୁରୁତ୍ୱ ଦେଇ ନ ଥିଲୁ । ପିଲା ପିଲା, ଅସ୍ଥିର, ଚଞ୍ଚଳ ପ୍ରକୃତି । କୁଆଡ଼େ ଯାଇଛନ୍ତି ଫେରିବେ ।'

'ଫେରିଲେ କି ?' ସୌରଦେବ ପଚାରିଲେ, 'ଖବର ରଖିଛ ?'

'ନାଁ', ଅରିନ୍ଦମ କହିଲା ।

'ତୁମେମାନେ ଏଠୁ ଫେରି ବୁଝ', ସୌରଦେବ କହିଲେ, 'ସେମାନେ ଫେରି ନ ଥିବେ, ଅଉ ଫେରିବେ ନାହିଁ । ତୁମେ ନିକଟ ଭବିଷ୍ୟତରେ ଏହିପରି ଆହୁରି ଅନେକ ଶୁଣିବ ।' ଅରିନ୍ଦମ ଓ ସାଙ୍ଗମାନେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ - 'କଅଣ କଥା ?'

'ତୁମର ମନେ ଥିବ ମୋତେ କହୁଥିଲ', କହିଲେ ସୌରଦେବ, 'କେମିତି ଜରାସନ୍ଧର ମଲ୍ଲକୁସ୍ତିରେ ପାଞ୍ଚାଳର ମଲ୍ଲକୁ ଜରାସନ୍ଧର ରାକ୍ଷସ ସୈନ୍ୟମାନେ ସମସ୍ତଙ୍କ

ସାମ୍ନାରେ ଟିକି ଟିକି କରି କାଟି ଖାଇଗଲେ । ଏ ସେଇ ଅବସ୍ଥା । ଏଠି କଂସର ଯେଉଁ ରାକ୍ଷସ ସୈନ୍ୟମାନେ ଆସି ଭର୍ତ୍ତି ହେଲେଣି ସେମାନଙ୍କର ମଝିରେ ମଝିରେ ମଣିଷ ମାଂସ ଦରକାର । ଆଉ ଛୋଟ ପିଲାଙ୍କ କଅଁଳ ମାଂସଠାରୁ ଆଉ ଭଲ ମଣିଷ ମାଂସ କ'ଣ ହୋଇପାରେ ?'

ଅରିନ୍ଦମ ଓ ସାଙ୍ଗମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । ଅରିନ୍ଦମ କିଛି ସମୟ ବୋକାଙ୍କ ପରି ସୌରଦେବଙ୍କୁ ଚାହିଁଲା । କହିଲା, 'ତା ମାନେ ଏ ପିଲାଗୁଡ଼ାଙ୍କୁ କଂସର ରାକ୍ଷସ ସୈନ୍ୟମାନେ ଖାଇ ଯାଉଛନ୍ତି ?'

'ହଁ, ସେଇଆ ତ ।' କହିଲେ ସୌରଦେବ, 'ମନେରଖ, ତୁମେ ଏଣିକି ବେଶୀ ବେଶୀ ପିଲା ହଜିଲା କଥା ଶୁଣିବ । ଯେତେବେଳେ ଶୁଣିବ କେହି ବାପା ବା ମା' ପିଲାଙ୍କୁ ଖୋଜାଖୋଜି କରୁଛନ୍ତି, ଘରକୁ ନ ଫେରିବା କଥା କହୁଛନ୍ତି, ଧରିନିଅ ସେ ପିଲା ଆଉ ଫେରିବନି । ରାକ୍ଷସ ସୈନ୍ୟମାନେ ତାକୁ ଧରିଛନ୍ତି ।'

'ଏ କେମିତି କଥା ? କଂସ କଅଣ ଏ ବିଷୟରେ ଜାଣେ ନା ?' ପଚାରିଲା ଅରିନ୍ଦମ । 'ମୋର ଯାହା ଖବର' କହିଲେ ସୌରଦେବ, 'କଂସ ସେମାନଙ୍କୁ ଏ କାମ କରିବାକୁ ଅନୁମତି ଦେଇଛି । କହିଛି ତୁମ୍ଭମାନଙ୍କୁ, କଂସ ମଥୁରାକୁ ଶେଷ କରିଦେବ ।'

'ଏ ତ ବଡ଼ ଭୟଙ୍କର କଥା ।' କହିଲା ଅରିନ୍ଦମ, 'ମୁଁ ଜାଣେ କଂସ ଅତ୍ୟନ୍ତ ନିଷ୍ଠୁର, ସ୍ୱାର୍ଥପର, ବିବେକଶୂନ୍ୟ । ତା'ର ବ୍ୟବହାର ଅତ୍ୟନ୍ତ ନାରକୀୟ । କିନ୍ତୁ ସେ ଯେ ଏତେ ତଳକୁ ଯାଇପାରିବ ବିଶ୍ୱାସ ହେଉନାହିଁ । ତା ହେଲେ ଆମେ ତ କେହି ନିରାପଦ ନୋହୁ ।'

'ନାଁ, ନୋହୁଁ ।' କହିଲେ ସୌରଦେବ । 'ସେ ଆମ୍ଭମାନଙ୍କୁ କୌଣସି ଗୁରୁତ୍ୱ ଦିଏ ନା । ମଥୁରାର ଲୋକେ ତା ଆଗରେ ଗୋଡ଼ି ମାଟି । ସେ ମଥୁରାର ତଳ ଅଞ୍ଚଳର ଲୋକଙ୍କ ଘର ଭାଙ୍ଗି ବସ୍ତି ଉଠେଇ ଦେଇଛି । ସେଠି ରାକ୍ଷସ ସୈନ୍ୟମାନଙ୍କ ପାଇଁ ସୈନ୍ୟ ନିବାସ ତିଆରି ହେବ । ଦରକାର ହେଲେ ସେ ଆମ୍ଭମାନଙ୍କୁ ବି ଉଠେଇଦେବ । ତା' ପାଖରେ ବର୍ତ୍ତମାନ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଲୋକେ ତା ସୈନ୍ୟମାନେ - ମଥୁରା ସୈନ୍ୟ ନୁହନ୍ତି, ଜରାସନ୍ଧର ସୈନ୍ୟମାନେ, ଯେଉଁମାନେ ତାକୁ ଚକ୍ରବର୍ତ୍ତୀ ହେବାରେ ସାହାଯ୍ୟ କରିବେ । ବର୍ତ୍ତମାନ ତ ମଥୁରାରେ ଜରାସନ୍ଧର ଲୋକେ, ତା'ର ମନ୍ତ୍ରୀମାନେ, ସମସ୍ତେ ଭର୍ତ୍ତି ହୋଇଛନ୍ତି । ଦେବକୀ ବସୁଦେବଙ୍କର ବିଭାଘର କଥା ତ ପ୍ରଚାର ଚାଲିଛି । କିନ୍ତୁ ମୋର ସନ୍ଦେହ ଭିତରେ ଭିତରେ ଅନ୍ୟ କିଛି ଯୋଜନା ଚାଲିଛି ।'


Digitized by srujanika@gmail.com

'ଅନ୍ୟ କିଛି ?' ଅରିନ୍ଦମ କହିଲା,

'ହଁ, ମୋର ତ ସେଇଆ ହିଁ ମନେ ହେଉଛି ।' କହିଲେ ସୌରଦେବ, 'ନଚେତ ଏତେ ଲୋକ, ଏତେ ଆୟୋଜନ, ଆଉ ଏତେ ଚୁପଚୁପ କାରବାର କାହିଁକି ? ଗୋଟାଏ କଥା ତ ସ୍ପଷ୍ଟ ବୁଝି ହେଉଛି । କଂସ ଜରାସନ୍ଧଠାରୁ ସ୍ୱାଧୀନ ହୋଇଯିବାକୁ ଚାହେଁ । ଜରାସନ୍ଧ ସାହାଯ୍ୟରେ ନୁହେଁ, ସେ ନିଜ ଶକ୍ତିରେ ଦେଶ ଜିଣିବ । ସେଥିପାଇଁ ତା ଲୋକେ ଯାଇ ଦକ୍ଷିଣ ଜଙ୍ଗଲର ରାକ୍ଷସ ସେନାଙ୍କ ସହିତ ସ୍ୱାଧୀନ ଭାବରେ ସମ୍ପର୍କ ରଖିଲେଣି । ସେମାନେ ସବୁ ମଥୁରାକୁ ଆସିବେ । ଭାବ ଅବସ୍ଥା କ'ଣ ହେବ ?'

ସୌରଦେବ ଚୁପ କରି ବସି ରହିଲେ । ତାଙ୍କର ମୁହଁଯାକ ବିଷାଦର ଛାୟା, ସ୍ୱରରେ ବିଷାଦ ଓ ଦୁଃଖ । କହିଲେ, 'ଅରିନ୍ଦମ, ଆମ୍ଭମାନଙ୍କର ତ ବୟସ ହେଲା । ଆମେମାନେ କ'ଣ କରି ପାରିବୁ ମୁଁ ଜାଣେ ନା । ତୁମେମାନେ ବୟସରେ ତରୁଣ, ଏ ମଥୁରା ତୁମମାନଙ୍କର । କିନ୍ତୁ କଂସ ଥିଲା ପର୍ଯ୍ୟନ୍ତ ତୁମମାନଙ୍କର ରକ୍ଷା ନାହିଁ । ଏ ମଥୁରା ଆଉ ତୁମମାନଙ୍କ ପାଇଁ ମଥୁରା ହୋଇ ରହିବନି । ଆର୍ଯ୍ୟ ଧର୍ମ, ଆର୍ଯ୍ୟ ଜୀବନ, ସବୁ ନଷ୍ଟଭ୍ରଷ୍ଟ ହୋଇଯିବ ।'

'ଆଉ କଅଣ କିଛି ଉପାୟ ନାହିଁ ?' ଅରିନ୍ଦମ ରହି ରହି ପଚାରିଲା ।

'ନାଁ, ଅନ୍ତତଃ ବର୍ତ୍ତମାନ ପାଇଁ କିଛି ନାହିଁ ।' କହିଲେ ସୌରଦେବ, 'କଂସକୁ ଶାସ୍ତି ଦେବା ପାଇଁ ଯେଉଁ ଶକ୍ତି ଦରକାର, ସେ ଶକ୍ତି ଆମର ନାହିଁ ।'

'ଲୋକଶକ୍ତି... ?' ଅରିନ୍ଦମ ଯେପରି ମନକୁ ମନ କହିଲା ।

'ହଁ, ସେଇଟା ହିଁ ଏକମାତ୍ର ଆଶା ।' ସୌରଦେବ କହିଲେ, 'ଅନ୍ତତଃ ଲୋକେ ଜାଣନ୍ତୁ, ବୁଝନ୍ତୁ, କି ଭୟଙ୍କର ବିପଦ ମାଡ଼ି ଆସୁଚି । ତୁମେମାନେ ଲୋକଙ୍କୁ ସେତିକି ସଚେତ କରାଅ । ସେମାନେ ସତର୍କ ରୁହନ୍ତୁ । ଯେଉଁମାନେ ଶାସନ କରୁଛନ୍ତି ସେମାନେ ଆଉ ବିଶ୍ୱାସଯୋଗ୍ୟ ନୁହନ୍ତି । କେତେବେଳେ କାହାର କି ବିପଦ ହେବ ଠିକଣା ନାହିଁ । ଆଜି ସେମାନେ ଘର ଭିତରେ ପଶି ଅତ୍ୟାଚାର କରୁଛନ୍ତି, ସାନ ସାନ ପିଲାଙ୍କୁ ମାରି ଖାଇ ଯାଉଛନ୍ତି, କାଲି ଆହୁରି ଭୟଙ୍କର କଥା ଘଟିପାରେ । ସାବଧାନ ରୁହ । ଲୋକଙ୍କୁ ସାବଧାନ କରାଅ ।'

ସେଦିନ ଅରିନ୍ଦମ ପ୍ରଭୃତି ସୌରଦେବଙ୍କ ପାଖରୁ ଫେରିଲା ବେଳକୁ ସନ୍ଧ୍ୟା ଗଡ଼ିଯାଇଥିଲା । ସୌରଦେବ ଯାହା ଖବର ଦେଲେ ବିବ୍ରତ ହେବା ଖବର । ପିଲାଗୁଡ଼ାଙ୍କୁ ଏ ରାକ୍ଷସଗୁଡ଼ା କଞ୍ଚା କଞ୍ଚା ଖାଇ ଯାଉଛନ୍ତି । ଆଶ୍ଚର୍ଯ୍ୟ ! ଏଥିରେ କଂସର ସମ୍ମତି ଅଛି । ଏ ଆହୁରି ଆଶ୍ଚର୍ଯ୍ୟ । ଏ କୋଉ ଶାସନ ନୀତି, କୋଉ ରାଜନୀତି !

ଯାଦବମାନେ କଅଣ ଏକଥା ଜାଣୁ ନାହାନ୍ତି ? ସବୁ ଜାଣି ପ୍ରତିବାଦ କରୁ ନାହାନ୍ତି କାହିଁକି ? ଚୁପ ଅଛନ୍ତି କାହିଁକି ? ଏତେ ଭୟ କାହିଁକି ? କଂସ ଯାହା କରିବ ସେ ବେଦବାକ୍ୟ ? ସବୁକଥା ମାନି ନବାକୁ ହବ ? ନାଁ, ନାଁ, ଅରିନ୍ଦମର ମନ ବିଦ୍ରୋହ କରିଉଠିଲା । କଂସକୁ ସେମିତି ସେମିତି ଛାଡ଼ି ଦେବା ଠିକ୍ ହବନି । ଅରିନ୍ଦମ ସାଙ୍ଗମାନଙ୍କ ସାଙ୍ଗରେ ଆଲୋଚନା କଲା । ଦେଖିଲା ସାଙ୍ଗମାନଙ୍କର ମଧ୍ୟ ସମାନ ଅନୁଭବ । କିନ୍ତୁ ସମସ୍ତେ ଗୋଟିଏ କଥା ବୁଝିଲେ । ଯେତେ ରାଗ, କ୍ରୋଧ ହେଲେ ବି ସେମାନେ କ'ଣ କରିପାରିବେ ? କଂସ ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ କିଛି କରିବାକୁ ସେମାନଙ୍କର କ୍ଷମତା ନାହିଁ, ସମ୍ଭବ ବି ନୁହେଁ । ତା'ର ବାପାଙ୍କ କଥା ମନେ ପଡ଼ିଲା - କଂସକୁ ଶାସ୍ତି ଦେବାର ସମୟ ଆସିନାହିଁ । ତାକୁ ସହ୍ୟ କରିବାକୁ ପଡ଼ିବ । ତାକୁ ଯେ ଶାସ୍ତି ଦେବ ସେ ଅନ୍ୟ ଶକ୍ତି । କଂସର ମାଣ ପୂରିଗଲେ ସେ ଆସିବ ହିଁ ଆସିବ । ତା'ର ଭାନୁପ୍ରକାଶଙ୍କ କଥା ବି ମନେ ପଡ଼ିଲା । ଭାନୁପ୍ରକାଶ ଆଶାବାଦୀ । ସେ କହନ୍ତି ଠିକଣା ସମୟ ଆସିଲେ ହିଁ ଯା ହେବ । ଆଉ କଂସ ଯେତେ ଯାହା କାମ କରୁଛି ସେଇ ଠିକଣା ସମୟକୁ ପାଖକୁ ପାଖକୁ ଡାକି ଆଣୁଛି । ତେବେ ଏ ଠିକଣା ସମୟ କେବେ, ଅରିନ୍ଦମ ଭାବିଲା । କଂସ ତ ଏବେ ଯାହା କଲାଣି ସେ ଅସହ୍ୟ ହୋଇ ଉଠିଲାଣି । ତାକୁ ଆଉ କେତେଦିନ ସହ୍ୟ କରିବାକୁ ପଡ଼ିବ ? ଶେଷ ପର୍ଯ୍ୟନ୍ତ ଲୋକ ସବୁ ରହିବେ ତ ?

ମଗଧରେ ଭାନୁପ୍ରକାଶଙ୍କର କାମ କ'ଣ, ତା'ର ପ୍ରଭାବ, ପରିସର କେତେ, ଅରିନ୍ଦମ ଦେଖି ଆସିଛି । ସେ ଏକ ଅଦ୍ଭୁତ ସଂଗଠନ ଭାନୁପ୍ରକାଶ ଗଢ଼ି ତୋଳିଛନ୍ତି । ମଗଧରେ ଜରାସନ୍ଧ ସମ୍ରାଟ, ତା'ର ଭୟରେ ସମସ୍ତେ ଥରହର । କିନ୍ତୁ ତା ରାଜ୍ୟର କୋଣରେ କୋଣରେ ଭାନୁପ୍ରକାଶଙ୍କ ଲୋକ । ଜରାସନ୍ଧ ଯାହା କିଛି କରିଛି, କରୁଛି ବା କରିପାରେ ସବୁ ଭାନୁପ୍ରକାଶଙ୍କୁ ଜଣା । ଜରାସନ୍ଧ ବି ଜାଣେ ସେ ଯାହା କରିବା କଥା ସେ କାମ ହବା ଆଗରୁ ବା ଏପରିକି ଭାବିବା ଆଗରୁ ବି ଦାଣ୍ଡରେ ପଡ଼ି ହାଟରେ ଗଡୁଛି । ଏ ସେହି ଶକ୍ତି ଯାହାକୁ ଭାନୁପ୍ରକାଶ ଲୋକଶକ୍ତି କହନ୍ତି । ଏ ପ୍ରତ୍ୟକ୍ଷ ଯୁଦ୍ଧ ନୁହେଁ, କି ଜରାସନ୍ଧକୁ ଏ ପ୍ରତ୍ୟକ୍ଷ ଶାସ୍ତି ଦେଇ ପାରିବ ନାହିଁ । କିନ୍ତୁ ଏ ସେହି ଶକ୍ତି ଯାହା ଜରାସନ୍ଧକୁ ସଂଯତ କରି ରଖିପାରିଛି ।

ଅରିନ୍ଦମ ମଥୁରା କଥା ଭାବିଲା । ମଥୁରା ସବୁଦିନେ ଚୁପଚାପ ଜାଗା, ଲୋକମାନେ ଶାନ୍ତିପ୍ରିୟ । ଉଗ୍ରସେନଙ୍କ ସମୟରେ ଶାସନ ଓ ଲୋକଙ୍କ ଭିତରେ କିଛି ପ୍ରଭେଦ ନ ଥିଲା । ଗୋଷ୍ଠୀ ମୁଖ୍ୟମାନେ ଯେତେବେଳେ ଦରକାର ଏକାଠି ବସି ବିଚାର କରୁଥିଲେ ଓ ନିଷ୍ପତ୍ତି ନେଉଥିଲେ । ରାଜା କେବଳ ନାମକୁ ମାତ୍ର ଥିଲେ ।


Digitized by srujanika@gmail.com

ଲୋକମାନଙ୍କର ଯେପରି କୌଣସି ଅସୁବିଧା ନ ହୁଏ, ସେମାନେ ଯେପରି ଭଲରେ ଚଳନ୍ତି ଏହାହିଁ ଦେଖିବା ରାଜାଙ୍କର କାମ ଥିଲା । ଅରିନ୍ଦମ ଟିକିଏ ରହି ଭାବିଲା । ନାଁ, ସେସବୁ ବଦଳି ଗଲାଣି । କଂସ ରାଜା ହେଲାପରେ ମଥୁରା ଆଉ ଆଗ ମଥୁରା ହୋଇ ରହିନାହିଁ । ଅରିନ୍ଦମର ଦେହ ଶିହରୀ ଉଠିଲା । ଯାହାସବୁ ଚାରିପାଖରେ ଘଟୁଛି, ଆହୁରି ଆଗକୁ ଆଗକୁ ଘଟିବ, ଭାବିଲେ ଭୟ ଲାଗୁଛି । ଅନେକ ତ ମଥୁରା ଛାଡ଼ି ଚାଲି ଗଲେଣି । ସେମାନଙ୍କୁ ହୁଏତ ଚାଲିଯିବାକୁ ପଡ଼ିପାରେ । କିନ୍ତୁ କୁଆଡ଼େ ଯିବେ ? ନିଜର ଘରଦ୍ୱାର, ନିଜର ବାପ ଅଜାଙ୍କ ସ୍ଥାନ ଛାଡ଼ି କୁଆଡ଼େ ଯିବେ ? ସମ୍ଭବ କି ? ତା'ର ହଠାତ୍ ବାପାଙ୍କ କଥା ମନେ ପଡ଼ିଲା । ଧୈର୍ଯ୍ୟ ଧର, ଅପେକ୍ଷା କର, ଏପରି ଘଟଣା ସବୁଆଡ଼େ ଘଟିଛି, ଘଟିବ । ଅନ୍ଧାର ନ ହେଲେ ଆଲୁଅର ମହତ୍ତ୍ୱ ତୁମେ ବୁଝିପାରିବ ନାହିଁ । ଆଲୁଅ ଆସିବ ହିଁ ଆସିବ । ସବୁ ଘଟଣାର ଧାରା କ'ଣ ଆମେ ବୁଝିପାରିବା । କିନ୍ତୁ ସବୁ ଘଟଣା ପଛରେ ସେଇ ମଙ୍ଗଳମୟଙ୍କର ହାତ ରହିଛି ଭୁଲି ଯାଅନା ।

ଅରିନ୍ଦମ ଦି ତିନିଟା କାମ କରିବା ପାଇଁ ସ୍ଥିର କଲା । ପ୍ରଥମେ ସେ ତା'ର ସବୁ ସାଙ୍ଗମାନଙ୍କୁ ଡାକି ବିଚାର କରିବ । ସୌରଦେବ ହିଁ ସେଇଆ ଚାହାନ୍ତି । ଏ ଘଟଣା ସବୁକୁ ଲଘୁ ଭାବରେ ନବା ଉଚିତ ନୁହେଁ । ତା'ର ସାଙ୍ଗମାନେ ହିଁ ମଥୁରାର ଘରେ ଘରେ ବୁଲି ଲୋକମାନଙ୍କୁ ସାବଧାନ କରିଦେବେ । ସେମାନେ ସାବଧାନରେ ରହନ୍ତୁ ଓ ନିଜ ପିଲାମାନଙ୍କୁ ଆକଟରେ ରଖନ୍ତୁ । କଂସର ମଗଧ ସେନା ଓ ରାକ୍ଷସ ସେନାଙ୍କ ସଂଖ୍ୟା ଆହୁରି ବଢ଼ିଯିବ । ସେମାନଙ୍କର ପ୍ରାଦୁର୍ଭାବ ବି ବଢ଼ିଯିବ । ଲୋକମାନେ ଯେତେଦୂର ସମ୍ଭବ ସେମାନଙ୍କ ଠାରୁ ଦୂରେଇ ଦୂରେଇ ରହନ୍ତୁ । ବଡ଼ କଥା ମନରେ ସାହସ ରଖନ୍ତୁ, ଆଉ ଏପରି କୌଣସି କାମ ନ କରନ୍ତୁ ବା କଥା ନ କହନ୍ତୁ ଯେପରିକି କଂସ ମନରେ ଏମାନେ ତା'ର ବିରୋଧ କରୁଛନ୍ତି ଏପରି ଧାରଣା ହେବ । ଦ୍ୱିତୀୟରେ, ସେମାନେ ମଝିରେ ମଝିରେ ଭେଟିବା ଦରକାର । ସେହିପରି ଭେଟିବା ଜରୁରୀ ହେଲାଣି । ଏ ଖାଲି ମଥୁରାର ବର୍ତ୍ତମାନ ଅବସ୍ଥା କଥା ନୁହେଁ । କଂସର ଯୋଜନା ଏପରି ଢଙ୍ଗ ଧରିଲାଣି ମନେ ହେଉଛି ସମୁଦାୟ ଅବସ୍ଥାଟା ରହସ୍ୟମୟ ହୋଇ ଉଠୁଛି । ବିଶେଷ କରି ଦେବକୀ ବସୁଦେବଙ୍କ ବିଭାଘର ବିଷୟରେ । ବିଭାଘର ବିଷୟରେ ଯେତେ ପ୍ରଚାର ହେଉଥିଲା ସେ ପ୍ରଚାର କମିଗଲାଣି । ଯେତେ ଯୋଗାଡ଼ଯନ୍ତ୍ର ହେଉଥିଲା ସେସବୁ ଧିମେଇ ଗଲାଣି । ଲୋକବାକ ବି ଆଗପରି ଏତେ ଆସୁନାହାନ୍ତି । ମନେହେବ ହୁଏତ ବିଭାଘରର ସମୟ ଘୁଞ୍ଚେଇ ଦିଆଗଲା ବା ବିଭାଘର ପ୍ରସ୍ତାବ ହିଁ କେବେ ନ ଥିଲା । କଂସର ଚାଲ୍ ବୁଝିବା

ସମ୍ଭବ ନୁହେଁ । ତେବେ କଂସର ନିଶ୍ଚୟ କିଛି ଯୋଜନା ଅଛି ଓ ସେ ସେହି ଭାବରେ କାର୍ଯ୍ୟ କରୁଛି । ଯମୁନା କୂଳର ଉଗ୍ରସେନଙ୍କର ସେଇ ପୁରୁଣା ବଡ଼ ଘରଟା । ସେଟା ବର୍ତ୍ତମାନ ମରାମତି ହୋଇ ପାଚିରି ଉଠି ନୂଆ ପ୍ରକାର ହୋଇଗଲାଣି । ବାହାରୁ ଦେଖିଲେ କାବା ଲାଗୁଛି । କ'ଣ ହେବ ଏ ଘର ? ହଠାତ୍ ଏ ଘରର କଅଣ ଦରକାର ହେଲା । ଚାରିପାଖ ତ ନିବୁଜ କରି ଦିଆଯାଇଛି । କୌଣସି ଅତି ବିଶିଷ୍ଟ ଲୋକ ହୁଏତ ଏଠି ରହିବ ଯାହା ସହିତ କଂସର ଇଚ୍ଛା କେହି ନ ମିଶନ୍ତୁ । ନା ଏ ବନ୍ଦୀଶାଳା ? କାହାପାଇଁ ? ତା' ଛଡ଼ା ସାରା ମଥୁରାରେ ରାକ୍ଷସ ସେନା ଓ ମଗଧର ସେନାମାନେ ଛାଇ ହୋଇଗଲେଣି । ଯୁଆଡ଼େ ଯିବ ସେମାନେ, ପ୍ରତିଦିନ ନୂଆ ନୂଆ ରାକ୍ଷସ ସେନା କୋଉଠୁ କେଜାଣି ଆସି ପହଞ୍ଚୁଛନ୍ତି । ଯମୁନା କୂଳର ଗୋଟାଏ କୋଠା କ'ଣ, ସାରା ମଥୁରାଟା ବନ୍ଦୀଶାଳା ହୋଇଗଲାଣି, ଘର ଭିତରେ ରହିବାକୁ ବି ଭୟ ଲାଗୁଛି । ଏ କି ଅବସ୍ଥା ! ଏ ମଥୁରାଟା ମଥୁରା ରାଜ୍ୟର ଲୋକମାନଙ୍କର ନାଁ ଗୋଟାଏ ଦୁର୍ବିନୀତ, ଅତ୍ୟାଚାରୀ, ଅତ୍ୟନ୍ତ ସ୍ୱାର୍ଥପର ଶାସକର ? ନିଜର ଅସ୍ଥିରତା, କ୍ରୋଧ ଓ ଅସହାୟତାରେ ଅରିନ୍ଦମ ଜଳି ଉଠିଲା ।

କେବଳ ମଥୁରା ବା ମଥୁରାର ଲୋକମାନେ ନୁହନ୍ତି । ଯମୁନା ସେ ପାରିର ଗୋପର ନନ୍ଦଙ୍କ ପରିବାର ଓ ଗୋପାଳମାନେ ବି ସାବଧାନରେ ରହିବା ଦରକାର ହେଲାଣି । ଗୋପାଳମାନେ ଗାଈମାନଙ୍କୁ ନେଇ ବୁଲନ୍ତି । ସେମାନେ ଓ ଗୋପାଳୁଣୀ ମାନେ ସବୁବେଳେ ବାରମ୍ବାର ଯମୁନା ପାରି ହୋଇ ମଥୁରାକୁ ଆସନ୍ତି । ବିଶେଷ କରି ଗୋପାଳୁଣୀମାନେ ପ୍ରାୟ ପ୍ରତିଦିନ ଆସନ୍ତି – ଘିଅ, ଲହୁଣୀ ବିକିବାକୁ । ଗେପାଳମାନେ ପ୍ରାୟ ଧନୀ ଲୋକମାନଙ୍କ ଘରେ କ୍ଷୀର ଦିଅନ୍ତି । ପିଲାମାନେ ବାପ ମା'ଙ୍କ ସାଙ୍ଗରେ ଆସନ୍ତି, ମଥୁରାରେ ବୁଲାବୁଲି କରିବାକୁ, ମଥୁରାର ପିଲାମାନଙ୍କ ସାଙ୍ଗରେ ଖେଳାଖେଳି କରିବାକୁ । ଅରିନ୍ଦମ ଚିନ୍ତିତ ହେଲା । ସେମାନେ ସବୁ ମଥୁରାର ଏ ନୂଆ ବିପତ୍ତି କଥା ଜାଣନ୍ତି ନା ନାହିଁ । କୌଣସି ବିପଦ ଆପଦ ହେଲେ ସେମାନଙ୍କୁ ରକ୍ଷା କରିବାକୁ କେହି ନାହିଁ । କଂସର ତ କଥା ଉଠୁନି । ମଥୁରାର ଲୋକମାନେ ବି ତାଙ୍କୁ ସାହାଯ୍ୟ କରିବାକୁ ଅନ୍ତତଃ କଂସ ଭୟରେ କେହି ଆଗେଇ ଆସିବେନି । ନନ୍ଦଙ୍କୁ ଅରିନ୍ଦମ ବହୁତ ସମ୍ମାନ କରେ । ସରଳ, ଧର୍ମପ୍ରାଣ, ସାହସୀ ଲୋକ । ଯଶୋଦା ତ ତାକୁ ବହୁତ ଭଲ ପାଆନ୍ତି, ନିଜ ମାଆ ପରି । ନନ୍ଦଙ୍କ ଘର ତା'ର ନିଜ ଘର ପରି । କଂସ ଏ ପର୍ଯ୍ୟନ୍ତ ଗୋପ ଆଡ଼କୁ ନଜର ଦେଇନି, ତା'ର ବଡ଼ କାରଣ ଗୋପ ଅଞ୍ଚଳଟା ଜଙ୍ଗଲ ଅଞ୍ଚଳ ଓ ଗୋପ ପରେ ପରେ ଭୟଙ୍କର ଜଙ୍ଗଲ । କଂସ ନିଜେ ଯମୁନା ଟପି ସେ ଜଙ୍ଗଲ ଭିତରେ ପଶିବାକୁ ଆଗ୍ରହୀ ନୁହେଁ ।

ତା'ର ସୈନ୍ୟସାମନ୍ତ ମଧ୍ୟ, ଏପରିକି ରାକ୍ଷସ ସୈନ୍ୟମାନେ ବି, ଯେଉଁ ସହରର ସୁବିଧା ସୁଯୋଗ ପାଇଲେଣି, ସେମାନେ ବି ନଈ ଟପି ଜଙ୍ଗଲ ଭିତରକୁ ଯିବାକୁ ପସନ୍ଦ କରନ୍ତିନି । ତା' ଛଡ଼ା ଆଉ ଗୋଟାଏ କଥା ବି ଶୁଣାଯାଏ, ସତ ମିଛ ଅରିନ୍ଦମକୁ ଜଣା ନାହିଁ । କଂସ ଯମୁନା ସେ ପାଖର କିଏ ଜଣେ ମୁନିଙ୍କ ଆଶ୍ରମରେ ପଶି କ'ଣ ବଦମାସି କରିଥିଲା, ଆଉ ସେ ଅଭିଶାପ ଦେଇଥିଲେ । ସେହି ଯୋଗୁଁ କଂସ ସେ ଅଞ୍ଚଳକୁ ଯାଏ ନା । ସେ ଯାହାହେଉ କଂସ ମୋଟାମୋଟି ଆଜି ପର୍ଯ୍ୟନ୍ତ ଗୋପ ଅଞ୍ଚଳକୁ ନଜର ଦେଇନି । କିନ୍ତୁ ନଜର ଦେବାକୁ କେତେ ସମୟ । କୌଣସି ସେମିତି ବିପଦ ପଡ଼ିଲେ ନନ୍ଦ ଓ ଗୋପାଳମାନେ ଯେ ନିଜକୁ ଖୁବ୍ ବେଶି ସାହାଯ୍ୟ କରିପାରିବେ ତା' ସମ୍ଭବ ନୁହେଁ । କିନ୍ତୁ ସେମାନେ ସାହସୀ । ଚୁପଚାପ ସହି ଯିବେନି । ପ୍ରତିବାଦ କରିବେ । ଜଙ୍ଗଲର ଟିକିନିଖି କଥା ସେମାନେ ଜାଣନ୍ତି । ଜଙ୍ଗଲ ଭିତରେ ସେମାନଙ୍କୁ ଶାସ୍ତି ଦେବା ବା ଅଧୀନକୁ ଆଣିବା କଂସ ଓ ତା'ର ସୈନ୍ୟମାନଙ୍କ ପାଇଁ ହୁଏତ ଖୁବ୍ ସହଜ ନ ହୋଇପାରେ । ତଥାପି ସେମାନଙ୍କୁ ସାବଧାନ କରିଦେବା ଦରକାର । ମଥୁରା ସହରଟା ଯେ ଗୋଟାଏ ବନ୍ଦୀଶାଳା ହୋଇଗଲାଣି ଏକଥା ସେମାନେ ଜାଣନ୍ତୁ ଓ ସତର୍କ ରୁହନ୍ତୁ । ଅରିନ୍ଦମ ଠିକ୍ କଲା ସେ ଶୀଘ୍ର ଗୋପ ଯାଇ ନନ୍ଦଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିବ । ଭାନୁପ୍ରକାଶଙ୍କର ବି କୁରୁକ୍ଷେତ୍ରରୁ ଫେରିବାର ସମୟ ହୋଇଗଲାଣି । ସେ ଆସି ଥାଇ ପାରନ୍ତି । କିନ୍ତୁ ତା ଆଗରୁ ଗୋପାଙ୍କୁ ଭେଟିବା ଦରକାର । କିନ୍ତୁ କେମିତି ଦେଖା ହେବ ? ସେ ତ କଂସର ରାଣୀଙ୍କ ପାଖରେ । ଭାବିଲା ସିଧା କଂସର ନଅରକୁ ଯାଇ ଭେଟିବ । ନାଁ, ଗୋପା ସବୁବେଳେ ଏଇ କଥାଟି କରିବାକୁ ମନା କରନ୍ତି, ବିପଦ ଅଛି । ତାଙ୍କୁ ଖବର ପଠେଇଲେ ବି ଚଳିବ । ସେ ନିଜେ ଆସିବେ । ଯମୁନା ଗାଧୋଇବା ଘାଟର ସେଇ ଦୋକାନଟା କଥା ଅରିନ୍ଦମର ମନେ ପଡ଼ିଲା । ସେଇ ଯେ କେମ୍ପା ଲୋକଟା ଦୋକାନରେ ସବୁବେଳେ ବସିଥାଏ, ବିକାକିଣା କରେ, ତାକୁ କହିବାକୁ ହେବ, ସେ ଭାନୁପ୍ରକାଶଙ୍କ ଲୋକ ।

ହଁ, ସେଇ କେମ୍ପା ଲୋକଟାର ଗାଧୁଆ ଘାଟର ସେଇ ଦୋକାନଟା ବହୁତ ଦିନର । ଛୋଟ ଛୋଟ ଜିନିଷ ବିକ୍ରି ହୁଏ । ଲୋକଟା କେମ୍ପା ବୋଲି ପିଲାମାନେ ଥଟ୍ଟା ତାମସା କରନ୍ତି । କିନ୍ତୁ ଲୋକଟାର ମିଜାଜ ଖୁବ୍ ଭଲ । ସବୁବେଳେ ହସୁଥାଏ । ପିଲାମାନେ ଚିହାଚିହି କଲେ ବି ସେମାନଙ୍କ ସାଙ୍ଗରେ ତା'ର ଭଲ ପଡ଼େ, ସେ ସେମାନଙ୍କୁ ଛୋଟ ଛୋଟ ଜିନିଷ ଖାଇବାକୁ ଦିଏ । ପିଲାମାନେ ତା ଦୋକାନ ସାମନାରେ ଆସି ଖେଳନ୍ତି । ଅରିନ୍ଦମକୁ ଦେଖିଲେ ସେ ଖୁସି ହୁଏ । ଅନେକ

ସମୟରେ ସେଇବାଟେ ଗଲାବେଳେ ଅରିନ୍ଦମ ତା ଦୋକାନ ସାମ୍ନାରେ ଛିଡ଼ା ହୋଇଯାଏ । ଭଲ ମନ୍ଦ ପଚାରେ । ତା ଅସଲ ନାଁ କଅଣ କାହାକୁ ଜଣା ନାହିଁ । ସମସ୍ତେ କେଷ୍ଟା କେଷ୍ଟା ଡାକନ୍ତି । ଯମୁନାର ସେଇ ଗାଧୋଇବା ଘାଟ ବି ତା ନାଁରେ ହେଇଗଲା । ସମସ୍ତେ କେଷ୍ଟା ଘାଟ କେଷ୍ଟା ଘାଟ ବୋଲି କହିଲେ । ବାସ୍, ଏମିତି ଚାଲିଥିଲା । ଦିନେ ହଠାତ୍ ସମସ୍ତେ ଦେଖିଲେ କେଷ୍ଟା ଦୋକାନ ବନ୍ଦ । କିରେ କ'ଣ ହେଲା ? କେଷ୍ଟା କୁଆଡ଼େ ଗଲା ? କେଷ୍ଟା ଘାଟଟା ସାଙ୍ଗରେ ଏମିତି ମିଶି ଯାଇଥିଲା ଯେ ସେ ନ ଥିବାଟା ସମସ୍ତଙ୍କୁ ଖାଲି ଖାଲି ଲାଗିଲା । ଦିନେ, ଦି'ଦିନ, ତିନି ଦିନ ଗଲା । କଥା କ'ଣ ? ଦେହ ଖରାପ ହେଲା, ନାଁ ଆଉ କିଛି ଅସୁବିଧା । ଦି' ତିନି ଜଣ କେଷ୍ଟା ଘରକୁ ଦୌଡ଼ିଲେ । ନାଁ, ଘର ବନ୍ଦ । ତାଲା । ପାଞ୍ଚଦିନ । ସନ୍ଧ୍ୟା ହେଇନି, ଆଲୁଅ ଅଛି, ଦେଖାଗଲା କେଷ୍ଟା ଦୋକାନ ଖୋଲା ଅଛି । ନାଁ, କେଷ୍ଟା ନୁହେଁ, ତା' ସ୍ତ୍ରୀ ବସିଛି । କେଷ୍ଟା କୁଆଡ଼େ ଗଲା ? ଲୋକେ ପଚାରିଲେ । ତା ସ୍ତ୍ରୀ କାନ୍ଦି କାନ୍ଦି ଯା କହିଲା ତା'ର ସାର ମର୍ମ ହେଲା - ଚାରିଦିନ ତଳେ କେଷ୍ଟା ଦୋକାନ ବନ୍ଦ କରି ଫେରୁଛି । ରାତି ହୋଇଯାଇ ଥିଲା । ଅଧା ବାଟରେ ତିନିଟା ଲୋକ ତାକୁ ଧଇଲେ । ବେଶ୍ ଷଣ୍ଢା ଷଣ୍ଢା, କଂସର ତିନିଟା ସୈନ୍ୟ । ସେମାନେ ତା' ମୁହଁ ବାନ୍ଧି, ହାତ ଗୋଡ଼ ବାନ୍ଧି, ଟେକିଟାକି ଆଖି ପିଛୁଳାକେ କୁଆଡ଼େ ନେଇ ଚାଲିଗଲେ । କିଛି ଲୋକ ଦୂରରୁ ଦେଖିଥିଲେ । କିନ୍ତୁ ସେମାନେ ବି ଭୟରେ କିଛି ନ କହି ଚୁପ୍‌ଚାପ୍ ରହିଗଲେ । କେଷ୍ଟା ସ୍ତ୍ରୀ ସାରା ରାତି କେଷ୍ଟାକୁ ଅପେକ୍ଷା କଲା । କିନ୍ତୁ ସେ ଘରକୁ ନ ଫେରିବାରୁ ସକାଳୁ ପଡ଼ୋଶୀମାନଙ୍କ ସାହାଯ୍ୟରେ ଖୋଜାଖୋଜି କଲା । ସେଇଠୁ ବୁଝାଗଲା ଯେ ରାତିରେ କିଏ ବା କୋଉମାନେ କେଷ୍ଟାକୁ ବନ୍ଧାବନ୍ଧି କରି କୁଆଡ଼େ ନେଇ ଯାଇଛନ୍ତି । ସେ ସ୍ତ୍ରୀ ଲୋକ । ବୁଝି ପାରିଲା ନାହିଁ, କୁଆଡ଼େ ଯିବ କାହାକୁ କହିବ । ପ୍ରଚଣ୍ଡ ଭୟ ବି ଆସିଗଲା । ସେଇ ଲୋକଗୁଡ଼ା ତାକୁ ବି ଆସି ଖୋଜିପାରନ୍ତି । ସେଇ ଭୟରେ ସେ ନିଜ ଘର ଛାଡ଼ି, ଘରେ ତାଲା ଦେଇ ଗୋପ ମାମୁଁ ଘରକୁ ଚାଲିଗଲା । ଚାରିଦିନ ପରେ ଖବର ପାଇ ଆସି ଦେଖେ ତା ଘର ପିଣ୍ଡାରେ କେଷ୍ଟା ପଡ଼ିଛି । ଅଚେତ, ସାରା ଦେହ ଲହୁ ଲୁହାଣ । ମନେ ହେଉଛି ପ୍ରଚଣ୍ଡ ମାଡ଼ ହୋଇଛି । ତା'ର ଗୋଟାଏ ହାତ ତ କେଷ୍ଟା, ଆର ହାତକୁ ପ୍ରାୟ ଭାଙ୍ଗି ଦିଆଯାଇଛି । ତା' ସ୍ତ୍ରୀ ବହୁତ କଷ୍ଟରେ ତାକୁ ଟେକାଟେକି କରି ଘରକୁ ନେଲା । ବୈଦ୍ୟକୁ ପଚାରି ଓଷଧ ଦଉଛି, ଚେତା ଆସିଲାଣି । କିନ୍ତୁ କଥା କହିପାରୁନି, ଖାଇ ବି ପାରୁନି । ଖାଲି ମଝିରେ ମଝିରେ ହୁଁ ହାଁ ହଉଛି, ବାପ ଲୋ ମାଆ ଲୋ ପାଟି କରୁଛି, ଆଉ ଦୋକାନ ଦୋକାନ ହଉଛି । ଦୋକାନ ପାଞ୍ଚଦିନ ହେବ ବନ୍ଦ

ହେଲାଣି । ଆଜି ତା ସ୍ତ୍ରୀ ଖୋଲିବାକୁ ଆସିଛି । ଏବେ ସେ ଆସି ଖୋଲିବ । କେମ୍ପା ଟିକିଏ ଭଲ ହେଲେ ଆସିବ ।

ଅରିନ୍ଦମର ସନ୍ଦେହ ରହିଲା ନାହିଁ ଏ କଂସର ସୈନ୍ୟମାନଙ୍କ କାଣ୍ଡ, ବିଶେଷ କରି ମଗଧର ସୈନ୍ୟମାନଙ୍କର । କିନ୍ତୁ କାହିଁକି ? କେମ୍ପା ପରି ଗୋଟାଏ ଗରୀବ, ଦୁଃଖୀ ଲୋକ କଂସର କଅଣ କ୍ଷତି କରିବ ? ଲାଭ ବା କଅଣ ? ହଠାତ୍ ତା'ର ମନେହେଲା ହଁ ଲାଭ ଅଛି । ଲୋକଙ୍କୁ ଭୟଭୀତ କରିବା ପାଇଁ ଏ ଗୋଟାଏ ସହଜ ଉପାୟ । ଭାନୁପ୍ରକାଶଙ୍କ କଥା ମନେ ପଡ଼ିଲା – ଅତ୍ୟାଚାରୀ ଶାସକମାନେ ଗରିବ, ଦୁଃଖୀ ଲୋକଙ୍କ ଉପରେ ବେଶି ଅତ୍ୟାଚାର କରନ୍ତି । କାରଣ ସେମାନେ ପ୍ରତିବାଦ କରି ପାରିବେ ନାହିଁ ଓ ସେମାନଙ୍କ ଜରିଆରେ ଭୟଟା ବେଶି ଖେଳିଯିବ । ପରେ ସେ କେମ୍ପାକୁ ଏ ବିଷୟରେ ପଚାରିଥିଲା । ସ୍ୱାଭାବିକ ଭାବରେ କେମ୍ପା କିଛି କାରଣ କହି ପାରିଲା ନାହିଁ – କାହିଁକି ଯେ ସେମାନେ ତାକୁ ଧରିନେଲେ, କାହିଁକି ଯେ ଏତେ ମରାମରି କଲେ, କାହିଁକି ଯେ ପୁଣି ଆଣି ଘର ପିଣ୍ଡାରେ ଫୋପାଡ଼ି ଦେଇ ଗଲେ, ଏସବୁର କିଛି ଯୁକ୍ତିସଂଗତ ବା ସଂଗତ କଥା ସେ କହିପାରିଲା ନାହିଁ । କିନ୍ତୁ ଗୋଟାଏ କଥା ଅରିନ୍ଦମ କେମ୍ପାଠାରେ ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହେଲା । ସେ ତା'ର ମନବଳ । ଏତେ ମାଡ଼ ସେ ଖାଇଲା । ସାରା ଦେହ ତା'ର କୋବା ବାଡ଼େଇଲା ପରି ପିଟା ହେଲା । କିନ୍ତୁ ତା'ଠାରେ ଟିକିଏ ହେଲେ ଦବିଯିବାର ଲକ୍ଷଣ ଅରିନ୍ଦମ ଦେଖିଲା ନାହିଁ । ମନ ସମାନ ଟାଣ, କଂସ ଓ ତା' ଲୋକଙ୍କ ପ୍ରତି ସମାନ କ୍ରୋଧ ଓ ବିରକ୍ତି । ଦରକାର ହେଲେ ସେ ଯେଉଁ କାମ କରୁଥିଲା ସେହି କାମ କରିବା ପାଇଁ ସମାନ ଦମ୍ଭ । ଏ ନିଶ୍ଚୟ ଭାନୁପ୍ରକାଶଙ୍କ ସାହସ, ଅରିନ୍ଦମ ଭାବିଲା । ନଈ ତଳର ପାଣି ସୁଅ ପରି ଭାନୁପ୍ରକାଶଙ୍କ ଶିକ୍ଷା ମଥୁରା ସାରା ଖେଳିଗଲାଣି, ଅରିନ୍ଦମ ଭାବିଲା । ତାଙ୍କର ସାହସ ଓ ଦମ୍ଭ, ଯାହା ଘଟୁ, ଅତ୍ୟାଚାରୀ ଶାସକ ଆଗରେ ମୁଣ୍ଡ ନୋଇଁ ଦିଅନା । ସେ ଦିନେ ଯିବ ହିଁ ଯିବ ।

ପାଖାପାଖି ଆଉ ଦି'ତିନିଟା ଘଟଣା ବି ଘଟିଗଲା, ସେ ମନେ ପକେଇବାକୁ ଚେଷ୍ଟା କଲା । ସକାଳୁ କେତେକ ସାଙ୍ଗ ଆସି ଖବର ଦେଲେ, ଯମୁନାର ସେଇ କେମ୍ପା ଘାଟରୁ କିଛି ଦୂରରେ, ନଈ ବନ୍ଧ ତଳେ ଗୋଟିଏ ଯୁବତୀ ଝିଅ ପଡ଼ିଛି । ପଡ଼ିଛି ମାନେ ? କ'ଣ ହୋଇଛି ତା'ର ? ବଞ୍ଚିଛି ନା ମରିଛି ? କିଏ ସେ ? ଆମେ ଏତେ କଥା ଜାଣିନୁ, ସେମାନେ କହିଲେ, ଆମେ ବି ସାଙ୍ଗେ ସାଙ୍ଗେ ଖବର ପାଇଲୁ, ଚାଲ ଯିବା । ଗଲେ ସେମାନେ । ହଁ, କେମ୍ପା ଘାଟରୁ କିଛି ଦୂରରେ । ସକାଳଟା । ତଥାପି ଦେଖଣାହାରୀ ଲୋକ କିଛି ଜମିଗଲେଣି । ଅଧିକାଂଶ ଯମୁନାକୁ ଗାଧୋଇ ଆସିଥିବା

ଲୋକେ । ଅରିନ୍ଦମ ଓ ତା'ର ସାଙ୍ଗମାନଙ୍କୁ ଦେଖି କିଛି ଲୋକ ଆଡ଼େଇଗଲେ । ଲୁଗାପଟା ଛିଣ୍ଡା, ଦେହଯାକ ରକ୍ତ ଜୁଡୁବୁଡୁ, ପ୍ରାୟ ଲଙ୍ଗଳା, ସମ୍ପୂର୍ଣ୍ଣ ଅଚେତ ହୋଇ ପଡ଼ିଥିବା ଯୁବତୀ ଝିଅଟିକୁ ଦେଖି ଅରିନ୍ଦମର ମୁଣ୍ଡ ଘୂରେଇଗଲା । ଏ କ'ଣ ? ସେମାନେ ପାଖକୁ ଲାଗିଗଲେ । ହୃଷ୍ଟପୃଷ୍ଟ କୌଣସି ସମ୍ଭ୍ରାନ୍ତ ଘରର ଝିଅ । ନାଁ, ମରି ନାହିଁ । ଆସ୍ତେ ଆସ୍ତେ ହେଲେ ବି ନିଃଶ୍ୱାସ ଚାଲିଛି । ଜଣେ ସାଙ୍ଗ ଅରିନ୍ଦମକୁ ପଚାରିଲା, 'ଅରିନ୍ଦମ, କଅଣ କରିବା ?' ଅରିନ୍ଦମ କହିଲା, 'ଶୁଣ, ପ୍ରଥମେ ଏ ଲୋକମାନଙ୍କୁ ଚାଲିଯିବାକୁ କହ । ଏତେ ଲୋକ ଏଠି ଭିଡ଼ କରିବା ଦରକାର ନାହିଁ । ଦେଖ, କେମ୍ପା ଦୋକାନ ଖୋଲିଲାଣି କି ନାହିଁ ? ଜଣେ କିଏ ଟିକିଏ କଡ଼କୁ ଯାଇ ନଜର କଲା, ପାଟିକରି କହିଲା, 'ହଁ, ଖୋଲିଲାଣି ।' ଅରିନ୍ଦମ ପୁଣି କହିଲା, 'ତା ହେଲେ ଆସ । ସମସ୍ତେ ଧରାଧରି କରି କେମ୍ପା ଦୋକାନକୁ ନେଇ ଚାଲ । ସଂକୋଚ କର ନା । ଯାହା କରିବାର କଥା ସେଇଠି କରିବା ।'

ଅରିନ୍ଦମ ଓ ତା ସାଙ୍ଗମାନେ ଟେକାଟେକି କରି ସେଇ ଅଚେତ ଝିଅଟିକୁ କେମ୍ପା ଦୋକାନକୁ ନେଇଗଲେ । ଦୋକାନରେ ଜାଗା କରି ଝିଅଟିକୁ ତଳେ ଶୋଇ ଦେଲେ । ଜଣେ ସାଙ୍ଗ ନଇରୁ କିଛି ପାଣି ଘେନି ଆସିଲା । ସେମାନେ ସେଇ ପାଣିରେ ଝିଅଟି ଦେହରୁ ମଇଳା ଓ ରକ୍ତ ପରିଷ୍କାର କରି ଧୋଇଦେଲେ । ତା' ମୁହଁରେ କିଛି ପାଣି ଛିଟା ଦେଲେ । କେମ୍ପା ଗୋଟାଏ ଲମ୍ୱାଟିଆ ଚଦର ଆଣି ଦେଲା । ସେଇ ଚଦରରେ ଝିଅଟିକୁ ଭଲ କରି ଘୋଡ଼େଇ ଦେଲେ । କେମ୍ପା କିଛି କ୍ଷୀର କୋଉଠୁ ଗରମ କରି ଆଣିଦେଲା । ସେଇ କ୍ଷୀରରୁ ଟୋପା ଟୋପା କରି ସେମାନେ ଝିଅଟିର ପାଟି ମେଲା କରି ତା' ପାଟିରେ ଦେଲେ । ବେଶି ସମୟ ଅପେକ୍ଷା କରିବାକୁ ହେଲାନି । ମନେହେଲା ଝିଅଟି ଜୋରରେ ଜୋରରେ ନିଃଶ୍ୱାସ ମାରୁଛି । ସେ ଆସ୍ତେ ଆସ୍ତେ ଆଖି ମେଲା କରି ଚାହିଁଲା । କିନ୍ତୁ ସେତିକି, କ'ଣ ଦେଖିଲା କେଜାଣି, ସାଙ୍ଗେ ସାଙ୍ଗେ ଗୋଟାଏ ଚିତ୍କାର କରି ପୁଣି ଥରେ ଅଚେତ ହୋଇଗଲା । 'ଆରେ, ଏ ଯେ ପୁଣି ଅଚେତା ହେଲା', ଜଣେ ସାଙ୍ଗ କହିଲା । 'ହଁ, ହଉ', ଅରିନ୍ଦମ କହିଲା, 'ପୁଣି ଉଠିବ ।' ଉଠିଲା ବି । ଅଳ୍ପ ସମୟ ପରେ ଝିଅଟିର ସମ୍ପୂର୍ଣ୍ଣ ଚେତା ଫେରି ଆସିଲା । ନିଃଶ୍ୱାସ ପ୍ରଶ୍ୱାସ ସ୍ୱାଭାବିକ ହୋଇଗଲା । ଆଖିର ସେ ଭୟାର୍ତ୍ତ ଭାବ ବି କଟିଗଲା । ମନେହେଲା ସେ ଅରିନ୍ଦମକୁ ଚିହ୍ନିଲା । କ୍ଷୀଣ ସ୍ୱରରେ କହିଲା, 'ମୁଁ କୋଉଠି ?' 'ତୁମେ ଠିକ୍ ଅଛ', ଅରିନ୍ଦମ କହିଲା, 'ଭୟ କର ନା । ଉଠି ବସ ।' ଝିଅଟି ଆସ୍ତେ ଆସ୍ତେ ଉଠି ବସିଲା । ନିଜ ଦେହ ଘୋଡ଼ା ହୋଇଥିବା ଚାଦରଟିକୁ ଦେଖି ପୁଣି ଆତଙ୍କିତ ହୋଇ ଉଠିଲା – 'ଏ କଅଣ ? ମୋ'

ଶାଢ଼ି ?'

'ତୁମ ଶାଢ଼ି ଚିରି ଚିକିଚିକି ହୋଇଯାଇଛି । ବ୍ୟସ୍ତ ହୁଅନା, ଏଇ ଚଦରଟା ଘୋଡ଼େଇ ହୋଇ ଥା । ତୁମ ପାଇଁ ଭଲ ଶାଢ଼ୀ ଆସୁଛି । ଭଲ କରି ବସ, ଆଉ ଟିକିଏ ଗରମ ଦୁଧ ପିଇଦିଅ ।' ଅରିନ୍ଦମ କହିଲା ।

ଝିଅଟି ଘୋଡ଼େଇ ଘାଡ଼େଇ ହୋଇ ବସିଲା । ଗିନାରେ ଥିବା ବାକିତକ ଦୁଧ ପିଇଦେଲା ।

ଅରିନ୍ଦମ ଦେଖିଲା ଝିଅଟି ଖାଲି ହୃଷ୍ଟପୁଷ୍ଟ ନୁହେଁ, ଦେଖିବାକୁ ଭଲ ବି । ଚେହେରାରୁ ମନେହେଉଛି ଥିଲାବାଲା ପରିବାରର ଝିଅ । ବୟସ ଖୁବ୍ ବେଶୀ ହବନି, ଖୁବ୍ ହେଲେ କୋଡ଼ିଏ ହେବ । କିନ୍ତୁ ହେଲା କଅଣ ? ତାକୁ ଯେ କିଛି ବଦମାସ ଲୋକ ଖରାପ ବ୍ୟବହାର କରିଛନ୍ତି ବୁଝା ହେଉଛି । କିନ୍ତୁ କିଏ ସେମାନେ ? ସେଇ କଂସ, କଂସ ଲୋକେ ? ଏମିତି ଘଟୁଛି ବୋଲି ସେମାନେ ଖବର ପାଇଲେଣି । ଏ ନିଶ୍ଚୟ ସେମିତି କିଛି ଘଟଣା ।

ଝିଅଟି ଦୁଧ ପିଇସାରି ଅରିନ୍ଦମକୁ ଚାହିଁଲା । ଥଙ୍ଗେଇ ଥଙ୍ଗେଇ କହିଲା, 'ତୁମେ ଅରିନ୍ଦମ ନା ?'

'ହଁ' ଅରିନ୍ଦମ କହିଲା, 'ମୋତେ ତୁମେ ଚିହ୍ନିଛ ?'

'ହଁ, ବାପା ତୁମ କଥା କହନ୍ତି । ମୁଁ ତୁମକୁ ଦୂରରୁ ଦେଖିଛି ।' ଝିଅଟି କହିଲା । ହଠାତ୍ ସେ ରହିଗଲା । ମୁହଁକୁ ଦି' ହାତରେ ଘୋଡ଼େଇ ସୁଁ ସୁଁ ହୋଇ କାନ୍ଦି ଉଠିଲା । 'ଆରେ, ଆରେ, କାନ୍ଦୁଛ କାହିଁକି ?' ଅରିନ୍ଦମ ବ୍ୟସ୍ତ ହୋଇ ଉଠିଲା, 'କାନ୍ଦନା, କାନ୍ଦନା, ଯା ହେବାର ହେଇଗଲା । ତୁମ ବାପା କିଏ ? ନାଁ କୁହ । ମୁଁ ଖବର ପଠଉଛି ।'

ଝିଅଟି ବାପାଙ୍କ ନାଁ କହିଲା, ନିଜ ମହଲା ନାଁ ବି କହିଲା । ଅରିନ୍ଦମର ମନେହେଲା ସେ ଝିଅର ବାପାଙ୍କୁ ଚିହ୍ନେ । ସେ ଅନ୍ଧକ ଗୋଷ୍ଠୀର ଲୋକ, ସୌରଦେବଙ୍କର ପରିଚିତ, ସ୍ୱଚ୍ଛଳ ବି । ଯେଉଁ ପଡ଼ାରେ ତାଙ୍କର ଘର ଅରିନ୍ଦମ ସେ ପଡ଼ାକୁ ଯାଇଛି । ସେ ପଡ଼ାର ଅନ୍ୟ ଲୋକ ବି ତା'ର ପରିଚିତ, ସ୍ୱଚ୍ଛଳ ପଡ଼ା । ମନେହୁଏ କଂସ ସହିତ ସେମାନଙ୍କର ସେପରି ବିରୋଧିତା ନାହିଁ । କଂସକୁ ସେମାନେ ମଝିରେ ମଝିରେ ସାହାଯ୍ୟ କରନ୍ତି, ଟଙ୍କା ପଇସା ଦିଅନ୍ତି । ଗୋଷ୍ଠୀର ତରୁଣ ଦଳରୁ ଅନେକ କଂସର ସୈନ୍ୟ ଦଳରେ ମିଶିଛନ୍ତି । ବାହାରକୁ କଂସ ପାଇଁ ଯୁଦ୍ଧ କରିବାକୁ ବି ଯାଇଛନ୍ତି । ମରିଛନ୍ତି ବି । ଏସବୁ ଠିକ୍, ହେଲେ ଏ କଅଣ ? ଏପରି ଘଟଣା କଅଣ କଂସର ଅଜାଣତରେ ହେଉଛି ?

ସେ ଝିଅକୁ ଚାହିଁଲା – 'ତୁମେ କାଲି ରାତିରେ କୁଆଡ଼େ ଯାଇଥିଲ ? ଏକା ଏକା ? ତୁମ ପଡ଼ା ତ ଏ ପାଖରେ ନୁହେଁ ।'

ଝିଅଟି ଶାନ୍ତ ହେଲାଣି । କିନ୍ତୁ ସାଙ୍ଗେ ସାଙ୍ଗେ କିଛି ଉତ୍ତର ଦେଇ ପାରିଲା ନାହିଁ । ଆସ୍ତେ ଆସ୍ତେ କହିଲା – 'ଏ ପାଖରେ ମୋର ପିଇସୀ ଘର । ମଝିରେ ମଝିରେ ମୁଁ ଏ ପାଖକୁ ଆସେ । ଦିନେ ଦିନେ ଆସି ଦିନେ ଦିନେ ଫେରିଯାଏ । ଆମେ ସନ୍ଧ୍ୟା ପରେ ଘରୁ ବାହାରକୁ ଯିବା ବାପା ଚାହାନ୍ତି ନାହିଁ । କାଲି ପିଇସୀଙ୍କ ଘରେ ତାଙ୍କ ସାନ ଝିଅର ଜନ୍ମଦିନ ପୂଜା ଥିଲା । ପୂଜା ପରେ ଖିଆପିଆ ସରୁ ସରୁ ଡେରି ହୋଇଗଲା । ପିଇସୀ କହୁଥିଲେ ତାଙ୍କ ଘରେ ରାତିରେ ରହିଯିବା ପାଇଁ । ତେବେ ସାଙ୍ଗରେ ମୋ' ଭାଇ ଥିଲା । ଆମ ଘର ମୂଲିଆ ବି ଥିଲା । ସେମାନେ କହିଲେ ନାଇଁ ଚାଲିଯିବା । ତାଙ୍କ ସାଙ୍ଗରେ ଆମ ପଡ଼ାର ଆଉ ଜଣେ ଲୋକ ବି ଜୁଟିଲେ । ତେଣୁ ଟିକିଏ ଡେରି ହେଲେ ବି ଆମେ ସମସ୍ତେ ଏକାଠି ଘରକୁ ଫେରୁଥିଲୁ ।'

'ତୁମ୍ଭେମାନେ ତିନି ଚାରି ଜଣ ଲୋକ ଥିଲ ?'

'ହଁ ।'

'ଠିକ୍ ଅଛି । ତାପରେ କ'ଣ ହେଲା ମନେ ପକା ।'

'ଆମେ ଚାଲିଚାଲି କିଛି ବାଟ ଯାଇଛୁ', ଝିଅ କହିଲା, 'ଆମକୁ ପାଞ୍ଚ ଛଅଟା ଲୋକ ଘେରିଗଲେ । ତାଗଡ଼ା ତାଗଡ଼ା ଲୋକ । ତାଙ୍କ ଭିତରେ କଥାବାର୍ତ୍ତା ହଉଥାନ୍ତି ସେ ଭାଷା ମୁଁ ବୁଝିପାରିଲି ନାହିଁ । ତାପରେ ମୋ' ଭାଇ, ମୂଲିଆ ଆଉ ପଡ଼ାର ସେ ଲୋକଟି ତିନିଜଣଙ୍କୁ ମାଡ଼ିବସି ବହୁତ ମାଡ଼ ଦେଲେ । ସେ ତିନିଜଣ ଅଚେତ ହୋଇ ପଡ଼ିଗଲେ । ମୁଁ ସେତେବେଳକୁ ଡରରେ କାଠ ହୋଇଗଲିଣି । ମୋ' ମୁହଁରୁ କଥା ବାହାରୁ ନ ଥାଏ । ସେମାନେ ମତେ ଶୂନ୍ୟେ ଶୂନ୍ୟେ ଟେକିନେଇ ସେ ତିନି ଜଣଙ୍କୁ ସେଇଠି ସେମିତି ରାସ୍ତା ଉପରେ ପକେଇଦେଇ ଚାଲିଗଲେ ।'

'ହୁଁ, ତା ପରେ ?' ଅରିନ୍ଦମ ପଚାରିଲା ।

'ତା ପରେ କଅଣ ହେଲା ମୋର ଠିକ୍ ମନେନାହିଁ । ମୋତେ ନେଇ ସେମାନେ ଗୋଟାଏ କୋଉ ଅନ୍ଧାର ଘର ଭିତରକୁ ଚାଲିଗଲେ । ମୋ' ଲୁଗାପଟା ଟାଣି ଚିରିଦେଲେ । ମୋ' ଦେହଟା ଉପରେ ସମସ୍ତେ ଏକା ସାଙ୍ଗରେ ମାଡ଼ି ବସିଲେ । ମୋ ଚେତା ବୁଡ଼ିଗଲା ।'

ଗୋଟାଏ ସଫା ଶାଢ଼ୀ ଜଣେ ସାଙ୍ଗ ନେଇ ଆସି ପହଞ୍ଚିଲା । ଅରିନ୍ଦମ କହିଲା, 'ଶୁଣ, ଆମେ ଏ ଘର ଭିତରୁ ବାହାରକୁ ଯାଉଛୁ । ତୁମେ ଦେହ ହାତ ଭଲ କରି

ଧୋଇ ପୋଛି ଏ ସଫା ଶାଢ଼ୀଟା ପିନ୍ଧି ନିଅ । ଭୟ କରନା, ମୁଁ ତୁମ ବାପାଙ୍କୁ ଜାଣେ । ମୁଁ ଓ ମୋ ସାଙ୍ଗମାନେ ତୁମକୁ ନେଇ ତୁମ ବାପାଙ୍କ ପାଖରେ ଛାଡ଼ି ଦେଇ ଆସିବୁ । ତୁମେ ବଡ଼ ପିଲା । ତୁମେ ଜାଣ ଆଜିକାଲି ମଥୁରାର ଅବସ୍ଥା ଭଲ ନୁହେଁ, ରାସ୍ତାଘାଟ କାହାରି ପାଇଁ ନିରାପଦ ନୁହେଁ । ତୁମେ ନିଜେ ନିଜେ ସାବଧାନ ରହିବା କଥା । ଛାଡ଼, ତୁମ ଭାଗ୍ୟ ଭଲ ତୁମକୁ ସେମାନେ ଜୀବନରେ ମାରିନାହାନ୍ତି । ଆମେ ବାହାରେ ଅଛୁ । ତୁମେ ସଫାସଫି ହୁଅ । ମୁଁ ଦେଖୁଛି ତୁମ ଭାଇହେରିକା ରାସ୍ତା ଉପରେ ପଡ଼ିଛନ୍ତି ନା ଉଠି ଘରକୁ ଗଲେଣି ।'

ଅରିନ୍ଦମ ଓ ତା'ର ସାଙ୍ଗମାନେ ବାହାରକୁ ଚାଲିଗଲେ । ସକାଳୁ ସକାଳୁ ଏ ଦୁର୍ଘଟଣା, ଏମିତି ତ ପ୍ରାୟ ଘଟୁଛି । ପାଞ୍ଚ ଛଅଟା ପଶୁ ଏ ଝିଅଟାର ଦେହଟାକୁ ରାତିଯାକ ଟିକି ଟିକି କରି ଖାଇ ଯାଇଛନ୍ତି । ତା' ଭାଗ୍ୟ ଟାଣ ସେ ବଞ୍ଚିଗଲା । ମଥୁରାର ଏ କି ଅବସ୍ଥା, କଂସ ଆଉ କଂସ ହୋଇ ନାହିଁ, ରାକ୍ଷସ ହୋଇଗଲାଣି । ଏ ଖାଲି ଗୋଟାଏ ଯୋଡ଼ାଏ ଘଟଣା ନୁହେଁ, ସାରା ରାଜ୍ୟର କଥା । ସେମାନେ ବା କଅଣ କରିପାରିବେ । ଅବସ୍ଥା ଯାହା ହେଲାଣି ସେମାନଙ୍କୁ ବି ସାବଧାନରେ ରହିବାକୁ ପଡୁଛି । ସାରା ରାଜ୍ୟରେ କୁହୁଡ଼ି ପରି ଭୟ ମାଡିଗଲାଣି । ତଥାପି ସେ ସ୍ଥିର କଲା ପ୍ରଦ୍ୟୋତ ସାଙ୍ଗରେ ଏ ବିଷୟରେ କଥାବାର୍ତ୍ତା କରିବ । ପ୍ରଦ୍ୟୋତ କଂସର ଲୋକ ହେଲେ ବି ଏତେ ଖରାପ ଲୋକ ନୁହେଁ, ବୁଝିବ । ବିଶେଷ କରି ସେ ମଥୁରାର ଲୋକ । ସେ ବି ଚାହେଁନା ମଗଧ ସୈନ୍ୟମାନେ ଆସି ମଥୁରାରେ ଏମିତି ଲୁଟତରାଜ କରନ୍ତୁ । ସେ ସାଙ୍ଗମାନଙ୍କୁ ଡାକିଲା, ସେ ଝିଅର ଲୋକମାନେ ଅଛନ୍ତି କି ନାହିଁ, ବୁଝିବାକୁ ହେବ ।

କଥା ଏତିକିରେ ସରିଲା ନାହିଁ । ଏହି ଘଟଣାର ଦୁଇଦିନ ପରେ ସମାନ ଭାବରେ ନାରକୀୟ ଆଉ ଗୋଟାଏ ଘଟଣାର ଖବର ଆସି ପହଞ୍ଚିଲା । ନାଁ, ଗଣ ଧର୍ଷଣ ନୁହେଁ, ଅନ୍ୟ ଢଙ୍ଗର, ପ୍ରତ୍ୟକ୍ଷ ଭାବରେ କଂସର ଚରିତ୍ର ବିଷୟରେ । କଂସର ଚରିତ୍ର ଯେ କେବେ ଭଲ ନ ଥିଲା ଏ ଜଣା କଥା । ତା'ର ହେତୁ ହେବା ଦିନ ଠାରୁ ତା' ଚରିତ୍ରର ସେହି କୁତ୍ସିତ ଅଂଶଟା ସମସ୍ତେ ଦେଖୁଥିଲେ, କିନ୍ତୁ ପିଲା ବୟସ ବୋଲି ବିଶେଷ ଗୁରୁତ୍ୱ ଦେଉ ନ ଥିଲେ । କ୍ରମେ ସେ ବଡ଼ ହେଲା ଓ ତା'ର ଚରିତ୍ରହୀନତାର ଯେପରି ଲଗାମ ରହିଲା ନାହିଁ । ମଥୁରାର ସମସ୍ତେ ଅନ୍ତତଃ ଗୋଟିଏ ବିଷୟରେ ଅତ୍ୟନ୍ତ ଭୀତ ହୋଇ ଉଠିଲେ । ଘରେ ଯଦି ବଢ଼ିଲା ଝିଅ ଅଛନ୍ତି ଓ ଝିଅମାନେ ଦେଖିବାକୁ ଭଲ, ତେବେ ରକ୍ଷା ନାହିଁ । କୌଣସି ନା କୌଣସି ଆଳରେ କଂସର ଲୋକମାନେ ସେ ଝିଅମାନଙ୍କୁ କାଢ଼ି ନେବେ । ସେଥିପାଇଁ ଦିନସାରା

ସାହିରେ ସାହିରେ ସେମାନେ ଖୋଜି ବୁଲନ୍ତି କିଏ କୋଉଠି ଅଛି କି ନାହିଁ । ତା ଛଡ଼ା କଂସର ପ୍ରତି ରାତିରେ ନୂଆ ନୂଆ ସ୍ତ୍ରୀଲୋକ ଦରକାର । ସନ୍ଧ୍ୟାପରେ ତା ଲୋକମାନେ ମଥୁରାର ରାସ୍ତାରେ ରାସ୍ତାରେ ଶିକାରୀ କୁକୁର ପରି ଘୂରି ବୁଲନ୍ତି, ଯାହାକୁ ପାଆନ୍ତି ତାକୁ ଟେକି ନିଅନ୍ତି । ଏ ବିଷୟରେ ମଥୁରାରେ କୋକୁଆ ଭୟ ପରି ଭୟ ପଶିଗଲାଣି । ପ୍ରତ୍ୟେକ ପରିବାରରେ ଯେଉଁଠି ବଢ଼ିଲା ଝିଅ ଅଛନ୍ତି ଲୋକମାନେ ଅତ୍ୟନ୍ତ ଭୀତତ୍ରସ୍ତ । କେତେବେଳେ କଅଣ ଘଟିବ ଠିକଣା ନାହିଁ । ଯେଉଁମାନଙ୍କର ସଙ୍ଗତି ଅଛି, ଏପରି ଅନେକ ପରିବାର, ସେମାନଙ୍କର ପିଲାମାନଙ୍କୁ ମଥୁରା ବାହାରେ ବନ୍ଧୁ ଘରକୁ ପଠେଇ ଦେଉଛନ୍ତି । ଅନେକ ବି ଝିଅ ପିଲାଟା ଜନ୍ମ ହେବା ସାଙ୍ଗେ ସାଙ୍ଗେ ମାରିଦଉଛନ୍ତି ଯେପରି ଭବିଷ୍ୟତକୁ ଝିଂଝଟ ନ ରହେ । ଅରିନ୍ଦମ ତା ସାଙ୍ଗମାନଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା କରିଛି । ସୌରଦେବ ଭାନୁପ୍ରକାଶ ଏମାନେ ବି ଆଲୋଚନା କରିଛନ୍ତି । କିନ୍ତୁ କିଛି ସମାଧାନରେ ପହଞ୍ଚିବା କାହାରି ପକ୍ଷରେ ସମ୍ଭବ ହୋଇନାହିଁ । କଂସର ଏ ଢଙ୍ଗ ତ ତା ମନର ଗୋଟାଏ ରୋଗ । ସେ ନିଜକୁ ନିଜେ ଏ ରୋଗରୁ ମୁକ୍ତ ନ ହେଲା ପର୍ଯ୍ୟନ୍ତ, ବା ତାକୁ ପୂରାପୂରି ରାଜ୍ୟରୁ ବାହାର ନ କରି ଦେଲା ପର୍ଯ୍ୟନ୍ତ ଏ ଅତ୍ୟାଚାର ବନ୍ଦ ହେବ କିପରି ?

ଘଟଣାର ବିବରଣୀ ଏହିପରି । ପ୍ରଥମେ ପ୍ରଥମେ ଉଡ଼ା ଖବର ଆସୁଥିଲା ଯେ କଂସର ଲୋକମାନେ ରାସ୍ତାରୁ ରାତିରେ କଂସ ପାଇଁ ସ୍ତ୍ରୀଲୋକ ଟେକି ନଉଛନ୍ତି । ତା'ପରେ ଏ ଖବର ସାଙ୍ଗରେ ଆଉ ଗୋଟାଏ ଖବର ମିଶିଗଲା । ସକାଳୁ ଦେଖାଗଲା ଯେ ରାସ୍ତା କଡ଼ରେ ସ୍ତ୍ରୀଲୋକମାନଙ୍କୁ ମାରି ପକେଇ ଦିଆଯାଉଛି । ଏ ବୟସ ଥିବା ହୃଷ୍ଟପୁଷ୍ଟ ସ୍ତ୍ରୀଲୋକ ବା ଏପରିକି କମ ବୟସର ଝିଅ ବି । ସେମାନେ କିଏ, କୋଉଠୁ ଆସିଲେ, କିଏ ସେମାନଙ୍କୁ ମାଇଲା ଏସବୁ ତ ବୁଝିହେଲାନି । ଲୋକମାନେ କଂସ ଦରବାରରେ ଖବର ଦେଲେ । ସେଠି ବି କିଛି ଫଳ ହେଲାନି । ଯେପରି ଏ ଅଭିଯୋଗ କିଛି ନୁହେଁ, ମୂଲ୍ୟହୀନ, ଏହିପରି ମନୋଭାବ । ମଥୁରାର ମୁଖ୍ୟ ବଜାର ପାଖରେ ଲାଗ ଲାଗ ତିନିଦିନ ତିନିଜଣ ସ୍ତ୍ରୀ ଲୋକଙ୍କୁ ମାରି ପକେଇ ଦିଆଗଲା । ସମସ୍ତେ ବ୍ୟସ୍ତ ହୋଇ ଉଠିଲେ । ବିଜୁଳି ପରି ଏ ଖବର ମଥୁରା ସାରା ବ୍ୟାପିଗଲା । ଲୋକେ ଏଠି ସେଠି ଏକାଠି ହୋଇ ଏ ବିଷୟରେ ଆଲୋଚନା କଲେ । ସମସ୍ତେ ଡରିହରି ଛାନିଆ, ଏପରିକି କିଛି କିଛି ଘରେ କାନ୍ଦ ବୋବାଳି ବି ପଡ଼ିଗଲା । କଂସକୁ ଅନେକ ଲୋକ ଯାଇ କହିଲେ । କଂସ ବୁଝିବା ବୁଝିବା କହି ତା କର୍ମଚାରୀଙ୍କୁ ବୁଝିବାକୁ ଆଦେଶ ଦେଇଦେଲା, ବାସ, ସଇଲା । କର୍ମଚାରୀମାନେ ଶବର ସତ୍କାରର ବ୍ୟବସ୍ଥା କରିଦେଲେ । ତାଙ୍କ ଦାୟିତ୍ୱ ବି ସଇଲା । ଗୋଟାଏ ଅତିକାୟ ଜନ୍ତୁ ପରି

ପ୍ରଚଣ୍ଡ ଭୟ ମଥୁରାକୁ ମାଡ଼ି ବସିଲା ।

ଅରିନ୍ଦମ ଓ ତା'ର ବନ୍ଧୁମାନେ ସ୍ଥିର କଲେ ଏ ବିଷୟରେ ଗୋଟାଏ ହେସ୍ତନେସ୍ତ ହେବା ଦରକାର – ଏ ସ୍ତ୍ରୀ ଲୋକମାନଙ୍କୁ କିଏ ଧରୁଛି ? କାହିଁକି ? ମାରିଦିଆଯାଉଛି କାହିଁକି ? କିଏ ଦାୟୀ ? ଏସବୁ ଜାଣିବା ଦରକାର । ସେମାନେ ସ୍ଥିର କଲେ ମୁଖ୍ୟ ବଜାର ଓ ତା'ର ଆଖପାଖ ଜାଗାରେ ଅନ୍ତତଃ କିଛିଦିନ ପାଇଁ ରାତିରୁ ସକାଳ ପର୍ଯ୍ୟନ୍ତ ଜଗିବାକୁ ହେବ । ସାଙ୍ଗମାନେ ଅତ୍ୟନ୍ତ ଗୋପନରେ ଏ କାମର ଦାୟିତ୍ୱ ନେଲେ । ପ୍ରଥମ ରାତି ଜଗିବା ପରେ ସକାଳକୁ ଯେତେବେଳେ ସାଙ୍ଗମାନେ ଏକାଠି ହେଲେ, ମୁଖ୍ୟ ବଜାର ପାଖରେ ଯେଉଁମାନେ ଜଗିଥିଲେ ସେମାନଙ୍କ ପାଖରୁ ଗୋଟାଏ ନିର୍ଦ୍ଦିଷ୍ଟ ଖବର ଆସିଲା । ସନ୍ଧ୍ୟା ପରେ, ବଜାରର ଗହଳି ଭାଙ୍ଗିଗଲାଣି କିନ୍ତୁ ପୂରା ଭାଙ୍ଗିନି, ଲୋକମାନେ ଯିବା ଆସିବା କରୁଛନ୍ତି, ସେମାନେ ଦେଖିଲେ ଦି'ତିନିଜଣ ଲୋକ ସନ୍ଦେହଜନକ ଭାବରେ ଏପାଖ ସେପାଖ ହେଉଛନ୍ତି । ଜଗିଥିବା ସାଙ୍ଗମାନେ ଚିହ୍ନିଲେ । ସେମାନେ କଂସର ପାଖ ଲୋକ, ଆଗରୁ ସେମାନଙ୍କୁ ଦେଖିଛନ୍ତି । ସେମାନେ ସେ ଲୋକମାନଙ୍କ ଉପରେ ନଜର ରଖିଥିଲେ । କିନ୍ତୁ ଆଉ କିଛି ଘଟିନି । ଆସ୍ତେ ଆସ୍ତେ ବଜାର ଗହଳି ଭାଙ୍ଗିଗଲା । ସେ ଲୋକମାନେ ମଧ ଚାଲିଗଲେ । ଦ୍ୱିତୀୟ ରାତିର ଖବର ଆହୁରି ନିର୍ଦ୍ଦିଷ୍ଟ ଓ ପ୍ରାୟ ନିର୍ଣ୍ଣୟାତ୍ମକ । ବଜାରର ଗହଳଚହଳ ଆଗ ସନ୍ଧ୍ୟା ଠାରୁ ଅଧିକା, ଅଧିକା ଲୋକ ଯିବା ଆସିବା କରୁଥାନ୍ତି । ଏମାନେ ଆଗ ସନ୍ଧ୍ୟା ପରି ସତର୍କ ଭାବରେ ଯିବା ଆସିବା ଲୋକଙ୍କ ଉପରେ ନଜର ରଖିଥାନ୍ତି । ହଠାତ୍ ମନେହେଲା ସେଇ ଭିଡ଼ ଭିତରେ ଆଗ ସନ୍ଧ୍ୟାର ସେଇ ଦି'ତିନିଟା ଲୋକ । ଏମାନେ ଆହୁରି ସତର୍କ ହୋଇଗଲେ । ଦେଖିଲେ ସେମାନେ ଏପାଖ ସେପାଖ ହେଉଛନ୍ତି । ବିଶେଷ କରି ଯେଉଁଠି ସ୍ତ୍ରୀଲୋକ ସେଇମାନଙ୍କ ପାଖରେ । ସମୟେ ସମୟେ କୋଉ କୋଉ ସ୍ତ୍ରୀଲୋକଙ୍କ ସାଙ୍ଗରେ କଥାବାର୍ତ୍ତା ବି ହେଉଛନ୍ତି । ହଠାତ୍ ସେମାନେ ଦେଖିଲେ ସେମାନେ ଜଣେ ପ୍ରାୟ କମ ବୟସର ସ୍ତ୍ରୀ ଲୋକକୁ ସାଙ୍ଗରେ ନେଇ ବଜାର ଗହଳି ଭିତରୁ ବାହାରି ଆସିଲେ । ବେଶି ବାଟ ନୁହେଁ, ଗୋଟାଏ ନିଛାଟିଆ ଜାଗାରେ ସମସ୍ତେ ଛିଡ଼ାହେଲେ, କ'ଣ କଥାବାର୍ତ୍ତା ହେଲେ, ତା'ପରେ ହଠାତ୍ ସ୍ତ୍ରୀଲୋକଟି ପାଟିକରି ବଜାର ଆଡ଼କୁ ଦୌଡ଼ି ପଳେଇ ଯିବାକୁ ଚେଷ୍ଟା କଲା । ପରେ ପରେ କେଇ ମୁହୂର୍ତ୍ତରେ ସବୁକଥା ଘଟିଗଲା । ଯେଉଁ ତିନିଜଣ ଲୋକ ସ୍ତ୍ରୀ ଲୋକଟିକୁ ଘେରି ଛିଡ଼ା ହୋଇଥିଲେ ତାଙ୍କ ଭିତରୁ ଜଣେ କନା ପରି କଅଣ ଗୋଟାଏ ଜିନିଷ ସ୍ତ୍ରୀଲୋକଟିର ମୁହଁରେ ମାଡ଼ିଦେଲା, ଓ ତିନିହେଁ ସ୍ତ୍ରୀ ଲୋକଟିକୁ ଟେକି ନେଇ ପାଖ ଅନ୍ଧାରରେ ଗୋଟାଏ ସବାରୀ ଅପେକ୍ଷା କରୁଥିଲା

ସେଇ ସବାରୀରେ ଭର୍ତ୍ତିକରି ସବାରୀ ବନ୍ଦ କରିଦେଲେ, ଓ ଜଣେ ପାଟିକରି ସବାରୀ ବାହକମାନଙ୍କୁ କହିଲା – 'ପଶ୍ଚିମ ଦୁଆର ଦେଇଯିବ ।' ସବାରୀ ବାହକମାନେ ସାଙ୍ଗେ ସାଙ୍ଗେ ସବାରୀ ଟେକି ଧାଇଁ ଚାଲିଗଲେ ।

'ପଶ୍ଚିମ ଦୁଆର କୁଆଡ଼େ, କେଉଁଠି ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ସାଙ୍ଗମାନଙ୍କୁ ଚାହିଁଲା – 'ତମେ ଜାଣିଛ ?'

'ନାଁ', ସମସ୍ତେ ମନାକଲେ । ବଜାରରେ ଜଗିଥିବା ଦି ଜଣ ସାଙ୍ଗଙ୍କ ଭିତରୁ ଜଣେ କହିଲା – 'ଆଉ କିଛି କଥା ଅଛି ।'

'କୁହ', ଅରିନ୍ଦମ କହିଲା ।

'ସେମାନେ ତ ସବାରୀ ନେଇ ଚାଲିଗଲେ ।' ସାଙ୍ଗ କହିଲା, 'ଏ ତିନିଜଣ ଲୋକ ବଜାର ଭିତରକୁ ଫେରି ଆସିଲେ । ସେମାନେ ବି କୁଆଡ଼େ ଲୋକ ଗହଳିରେ ମିଶିଗଲେ । ଆମେ ଦି'ଜଣ ବି ପ୍ରଥମେ କ'ଣ କରିବୁ ବୁଝିପାରିଲୁ ନାହିଁ । ପଶ୍ଚିମ ଦୁଆର ନିଶ୍ଚୟ କୋଉ ଦରଜା । ମନେହେଉଛି ଖୁବ୍ ଗୋପନୀୟ ସ୍ଥାନ । ଅନ୍ତତଃ ସାଧାରଣ ଲୋକ ଜାଣନ୍ତି ନାହିଁ । ହୁଏତ ବିପଦ୍‌ଜନକ ସ୍ଥାନ ବି ହୋଇପାରେ । ଆମେ ପ୍ରଥମେ ଭାବିଲୁ ବଜାର ଭିତରକୁ ଯାଇ ପଚରା ଉଚରା କରିବା । ହୁଏତ କିଏ ଜାଣିଥିବ । ପରେ ଭାବିଲୁ ନାଁ ପଚରାଉଚରା କରିବା ଠିକ୍ ହବନି । କେତେ ଲୋକ ଅଛନ୍ତି । କିଏ ହୁଏତ ସନ୍ଦେହ କରିପାରେ, ତାଙ୍କ ଲୋକ ବି ଥାଇପାରନ୍ତି । ନାଁ ବିପଦ ଅଛି । ତା ଛଡ଼ା ତୁମେ ସାବଧାନ କରି ଦେଇଛ । ଜଣାଶୁଣା ଯେମିତି ନ ହୁଏ । ଆମେ ବଜାର ଭିତରକୁ ଆସିଲୁ, ଦି ଜଣ ଚିହ୍ନା ଦୋକାନୀ ଥିଲେ । ତାଙ୍କରି ପାଖକୁ ଗଲୁ । ଜଣେ ସେ ନାଁ ବି ଶୁଣିନି । କିଛି କହି ପାରିଲାନି । ଆଉ ଜଣେ ଟିକେ ଭାବିଲା । କହିଲା, ନାଁ ମୁଁ ଜାଣିନି । କିନ୍ତୁ ମୋର ଜଣେ ବଡ଼ ଭାଇ ହିସାବ ହେବେ ଅଛନ୍ତି । ସେ ବହୁତ ଆଡ଼େ ବୁଲାବୁଲି କରନ୍ତି, ଜାଣନ୍ତି, ତାଙ୍କୁ ପଚାରିବା । ଆମେ ଟିକେ ଭୟ ପାଇଗଲୁ । କଥାଟା ଦି କାନରୁ ତିନିକାନ ହେଇଯିବ । କିଏ ଜାଣେ କୋଉ ପାଣି କୁଆଡ଼େ ଯିବ । ଆମେ ସବୁ ଆ ଭିତରେ ପଶିଛୁ, ପଚରାଉଚରା କରୁଛୁ, ଏକଥା ଜଣାଶୁଣା ହେବା ଆମେ ଚାହୁଁ ନ ଥିଲୁ । ମୁଁ ସେଇକଥା ସେ ଚିହ୍ନା ଦୋକାନୀକି କହିଲି । କହିଲି, ତୁମ ଭାଇଙ୍କ ପଚାରିବ ଯେ, ସେ ଗୋଳମାଳିଆ ଲୋକ ନୁହନ୍ତି ତ ? ଦୋକାନୀ କହିଲା – ଆରେ ନା ନା, ସେ ଖୁବ୍ ଭଲ ଲୋକ । ସେ ବହୁତ ଖବର ଜାଣନ୍ତି । ସେ ଆସନ୍ତୁ, ତୁମେ ଦେଖିବ ନାହିଁ କି । ତାଙ୍କୁ ଡାକିବାକୁ ଲୋକ ଚାଲିଗଲା । ଆମେ ଦୋକାନରେ ବସିଥାଉ । କିଛି ସମୟ ପରେ ସେ ଲୋକଟି ଫେରି ଆସିଲା । ତା ସାଙ୍ଗରେ ଆଉ ଜଣେ ଲୋକ ।


Digitized by srujanika@gmail.com

'ଡେଙ୍ଗା, କିଛି ମୋଟାସୋଟା, ମୁହଁରେ ଅମାୟିକ ହସ । ଆମର ମନେହେଲା ଆମେ ତାଙ୍କୁ ଆଗରୁ କୋଉଠି ଦେଖିଛୁ । କିନ୍ତୁ କୋଉଠି ଠିକ୍ ମନେ ପକେଇ ପାରିଲୁନି । ସେ ଆସି ଦୋକାନରେ ବସିଲେ, ଦୋକାନୀକୁ ଚାହିଁଲେ, କହିଲେ - କଅଣ କୁହ ? କି କାମ ? ଚିହ୍ନା ଦୋକାନୀ କିଛି କହିଲାନି । ହାତ ଠାରି ଆମକୁ ଦେଖେଇ ଦେଲା । ସେ କିଛି ସମୟ ଆମ ଦିହିଁଙ୍କୁ ଚାହିଁଲେ, କହିଲେ, ତୁମେ ଅରିନ୍ଦମ ସାଙ୍ଗ ନାଁ ? ଆମେ ଦିହେଁ ଚମକି ଉଠିଲୁ । ଆରେ ଏ ଆମକୁ ଜାଣି ସାରିଲେଣି । ଏ ତ ଅସୁବିଧା କଥା । ସେ ହସିଲେ, କହିଲେ, ନାଁ ନାଁ, ଭୟ କରନା । ସବୁ ଠିକ୍ ଅଛି । ତୁମମାନଙ୍କୁ ମୁଁ ଅରିନ୍ଦମ ପାଖରେ ଦେଖିଛି । ଆସ ମୋ ସାଙ୍ଗରେ, ଏଠି ନୁହେଁ । ଆମେ ତିନିହେଁ ଦୋକାନରୁ ଉଠି ଗୋଟାଏ ଲୋକବାକ ବିଶେଷ ନ ଥିବା ନିଛାଟିଆ ଜାଗାକୁ ଗଲୁ ।

'ସେ ଆମକୁ ଚାହିଁଲେ । କହିଲେ - ତୁମେ ଯାହା ଜାଣିବାକୁ ଚାହୁଁଛ ମୁଁ ଜାଣେ । କିନ୍ତୁ ସାବଧାନ ଏଠି ସେଠି ପଚରାପଚରି କର ନା । ଏଠି ଶୂନ୍ୟେ ଶୂନ୍ୟେ କଥା ଚାଲେ । ତୁମେ ଯାହାକୁ ବିଶ୍ୱସ୍ତ ବୋଲି ଭାବୁଛ ସେ ଖୁବ୍ ବିଶ୍ୱସ୍ତ ନ ହୋଇପାରେ । ଆମେ ଦିହେଁ କାବା ହୋଇଗଲୁଣି । ତଥାପି ମୁଁ ପଚାରିଲି - ଆପଣ ଜାଣନ୍ତି ଆମେ କାହିଁକି ଆସିଛୁ ? ସେ କହିଲେ, ହଁ, ତୁମ ସାଙ୍ଗମାନେ ଯୁଆଡ଼େ ଯୁଆଡ଼େ ଯାଉଛ ମୁଁ ଜାଣେ । କାହିଁକି ଯାଉଛ ତା ବି ମୁଁ ଜାଣେ, ନାଁ, ନାଁ, ଡରି ଯାଅନା । ଅରିନ୍ଦମକୁ ଖାଲି କହିବ ଯମୁନା, ସେ ବୁଝିବ ।'

ଅରିନ୍ଦମ ହସିଲା, କହିଲା, 'ଓହୋ, ତୁମେ ତା ହେଲେ ଆମ ଲୋକଙ୍କ ହାତରେ ପଡିଲ । ସେ ଆମ ଲୋକ, ଭାନୁପ୍ରକାଶଙ୍କ ଲୋକ । ଠିକ୍ ଅଛି । କୁହ ତା ପରେ କଅଣ ହେଲା ?'

'ଆମେ ତାଙ୍କୁ ସବୁକଥା କହିଲୁ, ଆମର ଜଗିବା କଥା । ସେ ଲୋକ ତିନିଟା ସେ ସ୍ତ୍ରୀଲୋକଟିକୁ ଗୋଟାଏ ସବାରୀ ଭିତରେ ପୂରେଇ ନେଇଯିବା କଥା । ସେ ଲୋକମାନେ କିଏ, କୁଆଡ଼େ ଗଲେ ଏସବୁ ଆମେ ଜାଣିନୁ ସେକଥା ବି କହିଲୁ । ସେ ଟିକିଏ ଭାବିଲେ । କହିଲେ, ଆଜିକାଲି ମଥୁରାରେ କେତେ ପ୍ରକାର ଲୋକ ଆସି ପହଞ୍ଚିଲେଣି । କିଏ ସେମାନେ କହିବା ସହଜ ନୁହେଁ । ଆଚ୍ଛା, ସବାରୀ କୁଆଡ଼େ ଗଲା ସେ ବିଷୟରେ କିଛି ଶୁଣିଲକି ?

'ଆମେ ପ୍ରଥମେ ଭାବିଲୁ କିଛି କହିବାନି । ଭଲ ଅଛି ମନ୍ଦ ଅଛି । ସେ ଆମକୁ ସାହସ ଦେଲେ । କହିଲେ, ଡର ନା, ଯାହା ଶୁଣିଛ କୁହ । ସେ ଲୋକଙ୍କୁ ଅବିଶ୍ୱାସ କରିବାକୁ ଇଚ୍ଛା ହେଲାନି । ଆମେ ଠିକ୍ କଲୁ ଯାହା ଘଟୁ କହିଦେବା । ମୁଁ କହିଲି,

ସେ ସବାରୀବାଲାଙ୍କୁ ସେମାନେ ଖାଲି କହିଲେ- 'ପଶ୍ଚିମ ଦ୍ୱାର'। ସେ ଚମକି ଉଠିଲେ । କହିଲେ ଚୁପ, ଚୁପ, ଆସ, ଆଉ ଟିକିଏ ଦୂରକୁ ଚାଲିଯିବା । ତୁମେ ଏଠି ଆଉ ରହ ନା । ଅରିନ୍ଦମଙ୍କୁ କହିଦେବ ସେ ସୌରଦେବଙ୍କୁ ପଚାରିବ । ତୁମେ ଯାଅ- ସେ ଚାଲିଗଲେ । ଆମେ ଫେରି ଆସିଲୁ ।'

ଅରିନ୍ଦମ ଭାବିଲା । କହିଲା - 'ଏ ପଶ୍ଚିମ ଦ୍ୱାର ନିଶ୍ଚୟ ଅତ୍ୟନ୍ତ ଗୋପନୀୟ ସ୍ଥାନ । ଗୋଳମାଳିଆ ଜାଗା ବି । ଯେଉଁମାନେ ଜାଣନ୍ତି ବେଶୀ କିଛି କହିବାକୁ ରାଜି ନୁହନ୍ତି । ଠିକ୍ ଅଛି, ମୁଁ ସୌରଦେବଙ୍କ ପାଖରୁ ବୁଝିବି ।' ସେହିଦିନ ଅରିନ୍ଦମ ସୌରଦେବଙ୍କୁ ଦେଖାକଲା । ତାଙ୍କୁ ସବୁକଥା କହିଲା । ସେ ଓ ତା ସାଙ୍ଗମାନେ ଯେ ଖୁବ୍ ବିବ୍ରତ ଏ କଥା ଜଣେଇଲା । ସକାଳେ ଜଣେ ଜଣେ ସ୍ତ୍ରୀ ଲୋକଙ୍କୁ ମାରି ଫିଙ୍ଗି ଦେଉଛନ୍ତି । ରାତିରେ ବଜାର ଉପରୁ ସ୍ତ୍ରୀ ଲୋକମାନଙ୍କୁ କୁଆଡ଼େ କୁଆଡ଼େ ଚାଲାଣ କରି ଦେଉଛନ୍ତି । ଏ ତ କାବା କଥା । ଏ ତ ମଥୁରା ଆଉ ମଥୁରା ହୋଇ ରହିଲାନି । ସେ ତ ଏତେଦିନ ମଗଧର ଗିରିବ୍ରଜରେ ରହିଲା । ସେଠି ବି ବଦମାସି ଚାଲିଥିଲା । ସେଠି ବି ମଝିରେ ମଝିରେ ନାନା କଥା ଶୁଣାଯାଉଥିଲା । କିନ୍ତୁ ମଥୁରା ସେସବୁକୁ ଟପିଗଲା । ଏଠି ଲୋକେ ଚଳିବେ କେମିତି । ଲୋକଗୁଡ଼ା କ'ଣ ଏତେ ହୀନବଳ ! ଯେଉଁମାନେ ଶାସନ କରୁଛନ୍ତି ସେମାନେ ଯାହା କରିବେ ସଇ । ତା ହେଲେ ଏ ଯାଦବ ଜାତିଟା ରହିବ କାହିଁକି ? ଏମାନେ ନିଜକୁ ଆର୍ଯ୍ୟ କହିବେ କାହିଁକି ? ଟିକେ ହେଲେ ପ୍ରତିବାଦ ନାହିଁ ? ଏ ଜାତିଟା ପୃଥିବୀରୁ ଲୋପ ପାଇଗଲେ କ'ଣ କ୍ଷତି ଅଛି ? ସୌରଦେବ କହନ୍ତୁ କ'ଣ କରିବାକୁ ହେବ ? ଏ ଅବସ୍ଥା କେତେଦିନ ଚାଲିବ ?

ସୌରଦେବ ସବୁ ଶୁଣିଲେ । ବିଷଣ୍ଣ ଭାବରେ ହସିଲେ । କହିଲେ, 'ଅରିନ୍ଦମ ମୁଁ କ'ଣ ଏସବୁ କଥା ଜାଣେ ନା । ସବୁ ଜାଣେ । ତୁମେ ଯେମିତି ଭାବୁଛ ମୁଁ ବି ସେମିତି ଭାବୁଛି । ତୁମର ଯେପରି ମନରେ କ୍ରୋଧ ଆସୁଛି ମୋର ବି ସେମିତି କ୍ରୋଧ ଆସୁଛି । ତୁମର ମୋର ଭିତରେ ବୟସର ବହୁତ ଫରକ । ତୁମର ଯେମିତି ଚଟାପଟ ରକ୍ତ ଗରମ ହୋଇ ଉଠୁଛି ମୋର ସେମିତି ହେଉନାହିଁ । କିନ୍ତୁ ମୁଁ ବି ସମାନ ବିବ୍ରତ, ବ୍ୟସ୍ତ । ମୁଁ ଭାବୁଛି ଆମେ କ'ଣ କରିପାରିବା । କେଇଟା ବର୍ଷ ଭିତରେ ଏ କଂସ ଅଜଗର ପରି ମଥୁରାକୁ ବେଢ଼ି ଧରିଲାଣି । ମଥୁରା ଲୋକଙ୍କର ଆଉ ନିଜସ୍ୱ ବୋଲି କିଛି ନାହିଁ । କିଛି ଲୋକ ନିଜକୁ ରକ୍ଷା କରିବା ପାଇଁ ଓ ନିଜର ସୁବିଧା ପାଇଁ କଂସ ଯାହା କରୁଛି ସବୁ ମାନି ନେଉଛନ୍ତି । ଆଉ କିଛି ଲୋକ ଡରିହରି ମଣିଷ ପରି ଆଉ ବଞ୍ଚି ନାହାନ୍ତି । ମୁଁ ତ ସବୁବେଳେ ଭାବୁଛି କ'ଣ ଆମେ କରି ପାରିବା ? ଆମେ

ଠିକ୍ ନୁହେଁ, କ'ଣ ତୁମେ କରିପାରିବ ? ଶୁଣ, ତୁମେ ଗୋପକୁ ଯାଅ, ନନ୍ଦଙ୍କ ପାଖକୁ । ବୁଝ, ଭାନୁପ୍ରକାଶ ଫେରିଲେଣି କି ? ମୁଁ ଗୋପାଙ୍କୁ ଖବର ପଠଉଛି । ଆମେ ସବୁ ଯେତେ ଶୀଘ୍ର ବସି ଏସବୁ ବିଷୟରେ ଆଲୋଚନା କରିବା ଆବଶ୍ୟକ ହେଲାଣି । ବସୁଦେବ ଦେବକୀଙ୍କର ବିଭାଘର ଦିନ ବି ପାଖେଇ ଆସିଲାଣି । ସେ ବିଷୟରେ ବି ଭାବିବାର ଅଛି ।'

ଅରିନ୍ଦମର ମନେହେଲା ସୌରଦେବ ତା'ର ମୂଳ ପ୍ରଶ୍ନଟା ଯେପରି ଆଡ଼େଇ ଯାଉଛନ୍ତି । ସେ ପୁଣି ଥରେ ପଚାରିଲା, 'କିନ୍ତୁ ଆମେ ଦି ଦିନ ତଳେ ବଜାରରେ ଯାହା ଦେଖିଲୁ ସେ କ'ଣ ? ରାତିରେ ସ୍ତ୍ରୀ ଲୋକମାନଙ୍କୁ ସବାରୀରେ ଭର୍ତ୍ତିକରି କୁଆଡ଼େ ନେଇଯାଉଛନ୍ତି । କିଏ ଏ କାମ କରୁଛି ? କୁଆଡ଼େ ଯାଉଛନ୍ତି ସେମାନେ ? କଂସ ? ତା ଛଡ଼ା ଯାହା ଆମେ ଦେଖୁଛୁ ସ୍ତ୍ରୀ ଲୋକମାନଙ୍କୁ ମାରି ସକାଳେ ରାସ୍ତା କଡ଼ରେ ବା ଯମୁନା କୂଳରେ ପକେଇ ଦେଇ ଯାଉଛନ୍ତି । କିଏ ସେମାନେ ? କଂସର ସୈନ୍ୟସବୁ ? କଂସ ଲୋକେ ? ଏ ତ ବଡ଼ ଅଦ୍ଭୁତ କଥା । ସ୍ତ୍ରୀ ଲୋକଗୁଡ଼ାଙ୍କୁ ଏମିତି ଆଖିବୁଜା ମାରୁଛନ୍ତି କାହିଁକି ? ତା ହେଲେ ତ ମଥୁରାରେ ଆଉ ରହିବା କଥା ନୁହେଁ, ମଥୁରା ଛାଡ଼ି ଆଉ କୁଆଡ଼େ ଚାଲିଯିବା କଥା ।'

ବହୁତ ସମୟ ସୌରଦେବ ଚୁପ ହୋଇ ରହିଲେ । ତାପରେ କହିଲେ, 'କୁଆଡ଼େ ଯିବ ? ସବୁଆଡ଼େ ସମାନ ଅବସ୍ଥା । ଖାଲି ଉଣେଇଶ ବିଶ୍ ପ୍ରଭେଦ । ଆର୍ଯ୍ୟ ଜାତି ଆଉ ଆଗ ଆର୍ଯ୍ୟ ଜାତି ପରି ନାହିଁ । ଯୁଆଡ଼େ ଚାହିଁବ ଛୋଟଲୋକି, ସ୍ୱାର୍ଥପରତା, ନୃଶଂସତା, ଦୁର୍ନୀତି । ଜଣେ ଜଣେ ବ୍ୟାସଦେବ, ଭୀଷ୍ମ କିଛି କିଛି ସଜାଡ଼ିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ସେମାନେ କ'ଣ ପାରିବେ ? ଆର୍ଯ୍ୟମାନେ ତ ବର୍ତ୍ତମାନ ପୂରା ପଙ୍କରେ ବୁଡ଼ି ଗଲେଣି । ବହୁ ବର୍ଷ ତଳେ ଏହିପରି ଅବସ୍ଥାରେ ଦୁଷ୍ଟମାନଙ୍କୁ ଶାସ୍ତି ଦେଇ ଭଗବାନ ପର୍ଶୁରାମ ଆର୍ଯ୍ୟମାନଙ୍କୁ ରକ୍ଷା କରିଥିଲେ । ଏବେ କିଏ କରିବ ?'

'ଭଗବାନ ପର୍ଶୁରାମ ତ ବଞ୍ଚିଛନ୍ତି ।' ଅରିନ୍ଦମ କହିଲା ।

'ହଁ, ବଞ୍ଚିଛନ୍ତି ।' ସୌରଦେବ କହିଲେ, 'କିନ୍ତୁ ସମୟ ବଦଳି ଯାଇଛି, ବର୍ତ୍ତମାନ ନୂଆ ଚିନ୍ତା ଦରକାର, ନୂଆ ଶକ୍ତି ଦରକାର ।'

ଅରିନ୍ଦମ ଦେଖିଲା ସୌରଦେବ ତାକୁ ଚାହିଁଛନ୍ତି, ତା ସାଙ୍ଗରେ କଥା କହୁଛନ୍ତି । କିନ୍ତୁ ତାକୁ ଦେଖି ନ ଦେଖିଲା ପରି । ତାଙ୍କର ଦୃଷ୍ଟି କୁଆଡ଼କୁ କୁଆଡ଼କୁ ଭାସିଯାଉଛି, ମୁହଁରେ ଗଭୀର ଆଶା ଓ ବିଶ୍ୱାସର ଚିହ୍ନ । ଅରିନ୍ଦମ ଜାଣେ ସୌରଦେବ ବ୍ୟବହାରିକ ଜୀବନର ଲୋକ । କିନ୍ତୁ ସେ ବି ଭାନୁପ୍ରକାଶଙ୍କ ପରି ସ୍ୱପ୍ନ ଦେଖନ୍ତି ଓ


Digitized by srujanika@gmail.com

ଭାନୁପ୍ରକାଶଙ୍କ ପରି ସାଧାରଣ ଜୀବନର ସୁଖଦୁଃଖ ତାଙ୍କୁ ଯଥେଷ୍ଟ ବିଚଳିତ କରେ । କିନ୍ତୁ ଅରିନ୍ଦମ ନିଜ ପ୍ରଶ୍ନର ଉତ୍ତର ସେ ପର୍ଯ୍ୟନ୍ତ ପାଇ ନ ଥିଲା । ସେ ସୌରଦେବଙ୍କୁ ସେହି କଥା ପୁଣି ପଚାରିଲା – 'କିଏ ସେମାନେ ? କାହାପାଇଁ ସେମାନେ କାମ କରୁଛନ୍ତି ।'

ସୌରଦେବ କହିଥିଲେ – 'ଉତ୍ତର ସହଜ । କଂସ । ନଚେତ ରାତିରେ ସ୍ତ୍ରୀଲୋକ ବା ଝିଅମାନଙ୍କୁ ସବାରୀରେ ବଜାର ଭିତରୁ ନେଇଯିବାକୁ କିଏ ସାହସ କରିବ ? ବା ଦରକାର ହେଲେ ସଖାଳକୁ ସେଇମାନଙ୍କୁ ଗଳା ଚିପି ମାରିଦେଇ ରାସ୍ତା କଡ଼ରେ ଫିଙ୍ଗିଦେବାକୁ କା'ର ବା ଏତେ ସାହସ ହେବ ? ଆଉ 'ପଶ୍ଚିମ ଦ୍ୱାର' କଂସର ପ୍ରମୋଦ ଭବନ । ଜାଣିବା ଲୋକ ଠିକ୍ ଜାଣନ୍ତି ।'

ସବୁ ଗୋଟି ବର୍ତ୍ତମାନ ଗୋଟିଏ ଛାଞ୍ଚରେ ପଡ଼ିଗଲା, ଅରିନ୍ଦମ ଭାବିଲା, ଯାହା କିଛି ହଉଛି ବା ହବ ସବୁ ଗୋଟାଏ ଲୋକର କାରବାର । ତା'ର ଭୟଙ୍କର ଇଚ୍ଛା ଓ ଅନିଚ୍ଛା ହିଁ ଏସବୁ ଘଟଣାର ଏକମାତ୍ର କାର୍ଯ୍ୟ ଓ କାରଣ ।

ସେ ଯିବାପାଇଁ ଉଠି ଛିଡ଼ା ହେଲା । ସୌରଦେବ କହିଲେ, 'ଅରିନ୍ଦମ, ତୁମେ ସତର୍କ ରୁହ । ଏସବୁ ଯାହା କହିଲ ଏ ତ ଦୈନନ୍ଦିନ ଘଟଣା । ଏସବୁ ତ ଘଟିବ । ଅତ୍ୟାଚାରୀ ବଦମାସ ଲୋକମାନେ ଏହିପରି କାମ ଆରମ୍ଭ କରନ୍ତି । ଉଦ୍ଦେଶ୍ୟ ଗୋଟିଏ । ନିଜର ସୁବିଧା, ନିଜର ବିଳାସ ଏ ତ ନିଶ୍ଚିତ । କିନ୍ତୁ ବଡ଼ ଉଦ୍ଦେଶ୍ୟ ସାଧାରଣ ଲୋକଙ୍କୁ ଭୟଭୀତ କରିଦେବା । ସେମାନେ ପସନ୍ଦ ନ କଲେ ବି ଡରିଡ଼ାରି ଚୁପଚାପ ରହିବେ । ତା'ର ଚର ସବୁଆଡ଼େ । ଏପରିକି ତୁମର ସାଙ୍ଗମାନଙ୍କ ଭିତରେ ବି ତା ଲୋକ ଥାଇପାରନ୍ତି ।'

ଅରିନ୍ଦମ କହିଲା, 'ମୋର ମନେହେଉଛି ଭାନୁପ୍ରକାଶ ବୋଧହୁଏ ଫେରିଲେଣି ବା ଶୀଘ୍ର ଫେରିବେ । ମୁଁ ଆପଣଙ୍କୁ ସଠିକ ଖବର ପଠେଇବି । ବସୁଦେବ ଓ ଦେବକୀଙ୍କ ବିଭାଘର ବିଷୟରେ ତ ଆଉ କିଛି କଥା ଶୁଣାଯାଉନି । ଅନ୍ତତଃ ଯେଉଁ ଗହଳ ଚହଳ ଲାଗିଥିଲା ବା ଲୋକେ କୁହାକୋହି ହେଉଥିଲେ ବର୍ତ୍ତମାନ ସବୁ ଚୁପ୍ ।'

'ସେଇଟା ହିଁ ଅଖାଡୁଆ କଥା ।' ସୌରଦେବ କହିଲେ, 'ବିଭାଘର ସମୟ ପାଖେଇ ଆସିଲାଣି । ବର୍ତ୍ତମାନ ତ ବେଶୀ ଗହଳ ଚହଳ ଲାଗନ୍ତା । କଂସର ମତଲବ ବୁଝିବା କଠିନ ।'

'ବାହାଘର ବନ୍ଦ ହୋଇଯିବ କି ?' ଅରିନ୍ଦମ ସନ୍ଦେହ କଲା ।

'ନାଁ, ତା ମନେ ହେଉନି । ଆଉ କିଛି ମତଲବ ଅଛି । ଠିକ୍ ଅଛି । ମୋତେ

ତୁମେ ଭାନୁପ୍ରକାଶଙ୍କ ଫେରିବା କଥା ଖବର ଦିଅ । ମୁଁ ଗୋପାଙ୍କୁ ଖବର ଦଉଛି । ଆମେ ଯେତେ ଶୀଘ୍ର ସମ୍ଭବ ଗୋପରେ ଭେଟିବା ।' ସୌରଦେବ କହିଲେ ।

ଅରିନ୍ଦମ ସୌରଦେବଙ୍କ ପାଖରୁ ଫେରିଆସିଲା । ଆଉ ଗୋଟାଏ କଥା ତା ମୁଣ୍ଡରେ ଖଚଖଚ କରୁଥିଲା – ପ୍ରଦ୍ୟୋତ । ପ୍ରଦ୍ୟୋତକୁ ଭେଟିଲେ କେମିତି ହୁଅନ୍ତା । ପ୍ରଦ୍ୟୋତ କଂସର ଲୋକ । କଂସର ସବୁ ବଦମାସି କାମରେ ତାକୁ ସାହାଯ୍ୟ କରେ । କିନ୍ତୁ... ଅରିନ୍ଦମ ଟିକେ ରହିଗଲା । ପ୍ରଦ୍ୟୋତ ଖୁବ୍ ଖରାପ ଲୋକ ନୁହେଁ । ସେ ସାହସୀ ଲୋକ, କାମିକା ଲୋକ, ମଥୁରାର ଭଲମନ୍ଦ ପାଇଁ ତା ମନରେ ଦୁର୍ବଳତା ଅଛି । ତା ଛଡ଼ା ଅରିନ୍ଦମ ସହିତ ତା ସମ୍ପର୍କ ମୋଟାମୋଟି ଭଲ । ସେ ହୁଏତ ବୁଝିବ । କିଛି ନ ହେଲେ ବି ତା ପାଖରୁ ଅନ୍ତତଃ କିଛି ଖବର ମିଳିପାରିବ । ସେ ଠିକ୍ କଲା ପ୍ରଦ୍ୟୋତ ପାଖକୁ ଯିବ । ଆଉ ପ୍ରଦ୍ୟୋତକୁ ଭେଟିବାକୁ ଖୁବ୍ ଭଲ ସମୟ ହେଉଛି ସକାଳେ ତା ଘରେ ।

କାହାକୁ କିଛି ନ କହି ତା ପରଦିନ ସକାଳୁ ସକାଳୁ ଏକା ଏକା ଯାଇ ଅରିନ୍ଦମ ପ୍ରଦ୍ୟୋତକୁ ଯମୁନା କୂଳରେ ତା ଘରେ ଭେଟିଲା । ଅରିନ୍ଦମକୁ ଦେଖି ପ୍ରଦ୍ୟୋତ ଖୁବ୍ ଖୁସି ହେଲା । ଉଭୟ ଯାଇ ପ୍ରଦ୍ୟୋତର ବିସ୍ତୃତ ବଗିଚାରେ ବସିଲେ । ପ୍ରଦ୍ୟୋତ ପ୍ରଥମେ କଥା କହିଲା – 'ଅରିନ୍ଦମ, ତୁମେ ଆସି ଭଲ କରିଛ । ମୁଁ ତୁମକୁ ଖବର ପଠେଇବି ଭାବୁଥିଲି । ତୁମେ ସେ ବସ୍ତି ଲୋକଙ୍କୁ ଉଠେଇବା ସମୟରେ ଖୁବ୍ ବ୍ୟସ୍ତ ହୋଇ ଯାଇଥିଲ । ସେସବୁ ଠିକ୍‌ଠାକ୍ ହୋଇଗଲା । ସେଠି ଘର ତିଆରି ବି ସରିଆସିଲାଣି । ଶୀଘ୍ର ମଗଧର ସୈନ୍ୟମାନେ ଯାଇ ରହିବେ ।'

'ଆଉ ସେ ଲୋକଗୁଡ଼ା ?' ଅରିନ୍ଦମ ପଚାରିଲା ।

'ସେସବୁ ତଳ ଜଙ୍ଗଲକୁ ଚାଲିଗଲେଣି ।' ପ୍ରଦ୍ୟୋତ କହିଲା, 'ମୁଁ ସେମାନଙ୍କ ପାଇଁ କିଛି ଜଙ୍ଗଲ ସଫା କରେଇ ଦେଇଛି । ଆଉ ଘର ତିଆରି କରିବାରେ ମୋ' ଲୋକେ ତାଙ୍କୁ ସାହାଯ୍ୟ କରିଛନ୍ତି ।'

ଅରିନ୍ଦମ ଟିକେ ରହି ରହି ପଚାରିଲା, 'କଂସ ରାଜିହେଲା ?'

ଉତ୍ତରରେ ପ୍ରଦ୍ୟୋତ ଟିକେ ହସିଲା । କହିଲା, 'କଂସ ଜାଣିଲେ ତ । ମୁଁ କଂସକୁ କିଛି ଜଣେଇନି । ସେ ମଗଧର ସୈନ୍ୟମାନଙ୍କ ପାଇଁ ଘର ହେବା ଚାହୁଁଥିଲା । ସେ ଜାଗା ବିଷୟରେ ଖବର ପାଇ ସ୍ଥିର କରିଦେଲା, ଆଉ ମତେ କହିଲା ଶୀଘ୍ର କର । ଘର ତ ଶୀଘ୍ର ହୋଇଗଲା । ସେ ଆଉ ମୁଣ୍ଡ ପୂରେଇବାକୁ ଚାହିଁଲା ନାହିଁ । ମୁଁ ବି ତାକୁ କିଛି ନ ଜଣେଇ ଯାହା କରିବା କଥା କରିଦେଲି । ମୁଁ ଖୁସି ଯେ ତୁମେ ସେଦିନ ଆସିଲ, ନଚେତ୍ ମୁଁ ବୋଧେ ସେମାନଙ୍କ କଥା ବିଶେଷ ଭାବି

ନ ଥାନ୍ତି ।'

'ଯା ହଉ ଭଲ କଲ', ଅରିନ୍ଦମ କହିଲା, 'ନ ହେଲେ ସେ ଲୋକଗୁଡ଼ା ବଡ଼ ହଇରାଣ ହୋଇଥାନ୍ତେ । କିନ୍ତୁ ମୁଁ ଶୁଣୁଛି ଅନ୍ୟାନ୍ୟ ବଡ଼ ବଡ଼ ମହଲା ବି ଭଙ୍ଗା ହୋଇପାରେ । ଖାଲି ମଗଧ ସୈନ୍ୟମାନେ ନୁହନ୍ତି, ରାକ୍ଷସ ସୈନ୍ୟମାନେ ବି ରହିବେ ।'

ପ୍ରଦ୍ୟୋତ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା ନାହିଁ । ଟିକେ କଅଣ ଭାବିଲା, କହିଲା, 'ଯାହା ଶୁଣୁଛ ଠିକ୍ । ମଗଧର ସୈନ୍ୟମାନଙ୍କ କଥା ମୁଁ ବିଶେଷ ଭାବୁନି । ସେମାନେ ବଦମାସ ନିଶ୍ଚୟ । କିନ୍ତୁ ସେମାନଙ୍କଠୁଁ ଭୟଙ୍କର ସେ ରାକ୍ଷସ ସୈନ୍ୟଗୁଡ଼ା । ସେମାନଙ୍କର କୌଣସି କିଛି ପାଇଁ ଉଦ୍ବୋଧ ନାହିଁ । କଂସ ଛଡ଼ା ସେମାନେ ଆଉ କାହାକୁ ମାନନ୍ତି ନାହିଁ । ଏପରିକି ଦରକାର ହେଲେ କଂସକୁ ବି ନୁହେଁ । ସେମାନଙ୍କୁ ମୋର ବଡ଼ ଭୟ । କଂସ ସେମାନଙ୍କୁ ଲଗାମ ଛାଡ଼ି ଦେଇଛି । ଯାହା କର ସାତଖୁଣ ମାଫ । ସେମାନେ ମଥୁରାକୁ ଶେଷ କରିଦେବେ ।' ପ୍ରଦ୍ୟୋତର ସ୍ୱର ବିଷଣ୍ଣ ହୋଇ ଆସିଲା । ସେ ଆଉ କ'ଣ କହିବାକୁ ଯାଉଥିଲା । ନିଜକୁ ରୋକି ନେଲା । ଅରିନ୍ଦମକୁ ଚାହିଁ କହିଲା, 'କୁହ କାହିଁକି ଆସିଲ ?'

ଅରିନ୍ଦମ କହିଲା, 'ନାଇଁ, ମଥୁରାର ଯାହା ଅବସ୍ଥା ହେଲାଣି, ସେଥିରେ ସମସ୍ତେ ବ୍ୟସ୍ତ । କାହାରି ଧନଜୀବନ ଆଉ ସ୍ଥିର ନୁହେଁ । ଏପରି ସବୁ ଘଟଣା ଘଟୁଛି ଯାହା ମଥୁରାରେ କେବେ ଘଟି ନ ଥିଲା । ସମସ୍ତେ ପେଷି ହୋଇ ଗଲେଣି । ଚାରିଆଡ଼େ ପ୍ରଚଣ୍ଡ ଭୟ । ସେହିଯୋଗୁ ମୋ ସାଙ୍ଗମାନେ ମୋତେ ଆସି ତୁମ ସାଙ୍ଗରେ ଦେଖା କରିବାକୁ କହିଲେ । ମୁଁ ଭାବିଲି ଠିକ୍ । ତୁମେ କଂସର ସେନାପତି, ତୁମକୁ କହିବି । ଗୋଟାଏ କିଛି ବନ୍ଦୋବସ୍ତ କର, ମଥୁରାକୁ ବଞ୍ଚାଅ ।'

ପ୍ରଦ୍ୟୋତ କଥାରେ ମନେହେଲା ସେ ଯେପରି ହଠାତ୍ କାନ୍ଦି ଉଠିଲା । ସ୍ୱର ବିଷଣ୍ଣ, ଆସ୍ତେ ଆସ୍ତେ କହିଲା, 'ଦେଖ ଅରିନ୍ଦମ, ମୁଁ କଅଣ କରିପାରିବି ? ମୁଁ ସେନାପତି ଠିକ୍ । କିନ୍ତୁ ମୋର କ୍ଷମତା କେତେ ? ମୋର କ୍ଷମତା କିଛି ନାହିଁ । କଂସ ହିଁ ସବୁ । କଂସ ପାଖରେ ଜରାସନ୍ଧର ଯେଉଁ ଦି'ଜଣ ମନ୍ତ୍ରୀ ବସିଛନ୍ତି ସେମାନେ ଯାହା କହୁଛନ୍ତି ତାହାହିଁ ହେଉଛି । ଯେ କୌଣସି ଦିନ କଂସ ମୋତେ ବାହାର କରିଦେଇ ପାରେ, ମୋ ମୁଣ୍ଡଟା ବି କାଟିଦେଇ ପାରେ । ତୁମେ ବୋଧେ ଜାଣନା, ମୁଁ ଏହା ଭିତରେ ତୁମ ବାପାଙ୍କ ପାଖକୁ ଯାଇଥିଲି । ସେ ଯାହା କହିଲେ ସେଇଆ ହିଁ ଠିକ୍, ମୁଁ ସେଇଆ ହିଁ ମାନୁଛି ।'

'ବାପା କ'ଣ କହିଲେ ?' ଅରିନ୍ଦମ ପଚାରିଲା ।


Digitized by srujanika@gmail.com

'ବାପା କହିଲେ ଯାହା ଘଟୁଛି ତାହାହିଁ ଘଟିବ । ତୁମର କିଛି କରିବାର ନାହିଁ । ତୁମେ ଚୁପ ରୁହ । ତା'ର ସମାଧାନ ଅନ୍ୟ ଭାବରେ ହେବ ।'

'ହ, ବାପା ଏମିତି ଅଧା ବୁଝିଲା ପରି କଥା କହନ୍ତି ।' କହିଲା ଅରିନ୍ଦମ ।

'ସେ ଯାହାହେଉ', କହିଲା ପ୍ରଦ୍ୟୋତ, 'ବାପା ଜ୍ଞାନୀ । ସେ ଭବିଷ୍ୟତ ଦେଖିପାରନ୍ତି । ସେ ଠିକ୍ କହିଛନ୍ତି । ମୋର ବା କ'ଣ କରିବାର ଅଛି, ମୁଁ ବା କ'ଣ କରିପାରିବି ? ଜଣେ କିଏ ସେନାପତି ହୋଇଥାନ୍ତା, ମୁଁ ସେନାପତି ହୋଇଛି । କଂସ ବିରୁଦ୍ଧରେ ଯାଇ କ'ଣ ହେବ ? ଯେଉଁମାନେ କଂସ ବିରୁଦ୍ଧରେ ସେମାନେ କ'ଣ କରୁଛନ୍ତି, କ'ଣ ବା କରିପାରିବେ ? ନାଁ, ବାପା ଠିକ୍ କହିଛନ୍ତି, ମୁଁ ତାଙ୍କରି କଥା ମାନି ଚଳୁଛି ।'

ଅରିନ୍ଦମ ଯିବା ପାଇଁ ଉଠି ଛିଡ଼ା ହେଲା । କହିଲା, 'ଯା କହୁଛ ଠିକ୍ । କିନ୍ତୁ ମଥୁରାରେ ଯାହା ସବୁ ଘଟୁଛି ଭଲ ଲାଗୁନି । ମଥୁରାର ନାଁ ଥିଲା, ଖ୍ୟାତି ଥିଲା । ବାପା କହୁଥିଲେ ଆର୍ଯ୍ୟାବର୍ତ୍ତର ବିଭିନ୍ନ ଆଡୁ ଆର୍ଯ୍ୟମାନେ ଏଠି ଆସି ରହିବାକୁ ଗୌରବ ବୋଲି ଭାବୁଥିଲେ । ସେ ଗୌରବ ବର୍ତ୍ତମାନ ଆଉ ନାହିଁ, ସବୁ ତଳିତଳାନ୍ତ ହୋଇଗଲାଣି । ଲୋକେ ଜରାସନ୍ଧ ବିଷୟରେ ଯାହା କହୁଥିଲେ ବର୍ତ୍ତମାନ କଂସ ବିଷୟରେ ଆହୁରି ଖରାପ କଥା କହୁଛନ୍ତି । କଂସର ଦୌରାତ୍ମ୍ୟ ଜରାସନ୍ଧକୁ ବି ଟପିଗଲା '

'ଚୁପ୍, ଚୁପ୍, ଚୁପ୍...' ପ୍ରଦ୍ୟୋତ ବ୍ୟସ୍ତ ହୋଇ କହିଲା, 'ଦେଖ, ମତେ ଯାହା କହିଲ କହିଲ ଆଉ କୋଉଠି କିଛି କୁହ ନା । ଏଠି ପାଣିପବନର ବି କାନ ଅଛି । ଛାଡ଼, ମତେ କୁହ କାହିଁକି ଆସିଥିଲ ? ଖାଲି ଭେଟିବାକୁ ?'

'ହଁ, ଆଦୌ ଭଲ ଲାଗୁନି ।' କହିଲା ଅରିନ୍ଦମ, 'ସେଇଥିପାଇଁ ଭାବିଲି ତୁମ ସହିତ କଥା କୁହେ । କାରଣ ମଥୁରାରେ ତୁମେ ହିଁ ଏକମାତ୍ର ଲୋକ ଯେ' କି ସବୁ ଦେଖୁଛି, ସବୁ ବୁଝୁଛି । ଆଉ ଗୋଟାଏ କଥା ଆମେ ଠିକ୍ ବୁଝିପାରୁନୁ । ଦେବକୀ ବସୁଦେବ ବିଭାଘର କ'ଣ ବନ୍ଦ ହୋଇଗଲା ?'

'ନାଁ, ତ', ପ୍ରଦ୍ୟୋତ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା, 'ବନ୍ଦ ହେବ କାହିଁକି ? ସବୁ ଯୋଗାଡ଼ ଯନ୍ତ ତ ଠିକ୍ ଠିକ୍ ଚାଲିଛି । ଆଶ୍ୱିନ ପୂର୍ଣ୍ଣିମା ତ ପାଖେଇ ଆସିଲାଣି ।'

'ତା ହବ', କହିଲା ଅରିନ୍ଦମ, 'କିନ୍ତୁ ବିଭାଘର ବିଷୟରେ ଆଗେ ଯେମିତି ପ୍ରତିଦିନ ଆ ହବ ତା ହବ ଶୁଣା ଯାଉଥିଲା ସେମିତି ଆଉ ଶୁଣା ଯାଉନି । ସବୁ ଚୁପ୍‌ଚାପ୍, ସେହିଯୋଗୁଁ, ଅନ୍ତତଃ ମନେ ହେଉଛି ଆଗ ଉତ୍ତେଜନା ଟିକେ କମି ଯାଇଛି ।'

ପ୍ରଦ୍ୟୋତ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା ନାହିଁ । ଟିକେ ଭାବିଲା ପରି କହିଲା,

'ହୁଏତ ତୁମେ ଠିକ୍ କହୁଛ, ଅରିନ୍ଦମ। ବାହାରକୁ ହଇଚଇଟା କମିଯାଇଛି । କିନ୍ତୁ ମୋର ମନେ ହେଉଛି ସବୁ ଯୋଗାଡ଼ଯନ୍ତ୍ର ଯେମିତି ଚାଲିବା କଥା ସେମିତି ଚାଲିଛି । ଯେଉଁମାନେ ଆଗରୁ ସବୁ ଆସିଥିଲେ ସେମାନେ ସେମିତି ଅଛନ୍ତି । ଏବେ ମୁନି ଋଷି ପରି ଦେଖିଲା ପରି ଜଣେ କିଏ ଆସିଛନ୍ତି । ଟିକେ କେମିତି ଅଦ୍ଭୁତ ଅଦ୍ଭୁତ ମନେହୁଏ । ଅସଲ କଥା କଂସ କ'ଣ କରୁଛି, କେମିତି କରୁଛି, କ'ଣ ତା'ର ମତଲବ ଏସବୁ ଆମମାନଙ୍କ ପକ୍ଷରେ ଜାଣିବା ସମ୍ଭବ ନୁହେଁ ।'

ଅରିନ୍ଦମର ମନେହେଲା ପ୍ରଦ୍ୟୋତ କିଛି କଥା ଯେପରି ଚାପିଗଲା । ହୁଏତ ସେ କହିବାକୁ ଚାହିଁଲା ନାହିଁ ବା ଶୁଣାଶୁଣି କଥା ଉପରେ ସେ ଗୁରୁତ୍ୱ ଦେଲା ନାହିଁ । ଅରିନ୍ଦମ ଆଉ କଥା ବଢ଼େଇବାକୁ ଚାହିଁଲା ନାହିଁ । କହିଲା, 'ହଁ ବିଭାଘର ହେଲେ ତ ଭଲ । ଏ ଯେପରି ବସୁଦେବ ଓ ଦେବକୀ ଉଭୟ ଉଭୟ ପାଇଁ ତିଆରି ହୋଇଛନ୍ତି । ବାପା ବି ସେହିକଥା କହନ୍ତି ।'

'କଅଣ ?' ପ୍ରଦ୍ୟୋତ ପଚାରିଲା ।

'ବାପା କହନ୍ତି ଏ ବିଭାଘର କଂସ ଇଚ୍ଛାରେ ହେଉନାହିଁ', କହିଲା ଅରିନ୍ଦମ, 'ଏ ବିଭାଘର ପୂର୍ବ-ନିର୍ଦ୍ଧାରିତ । ଏ ବିଭାଘର ହେବ ଏକଥା ବହୁ ଆଗରୁ ଠିକ୍ ହୋଇଛି ।'

'ଏଁ !' ପ୍ରଦ୍ୟୋତ ଆଶ୍ଚର୍ଯ୍ୟ ହୋଇ ଚାହିଁଲା ।

'ବାପା ସେମିତି ଅନେକ କଥା କହନ୍ତି', ଅରିନ୍ଦମ କହିଲା, 'ଛାଡ଼ ସେକଥା । ତୁମେ ଭାବୁଛ ବିଭାଘର ଠିକ୍ ହେବ ?'

'ମୁଁ ତ ସେଇଆ ଭାବୁଛି', ପ୍ରଦ୍ୟୋତ ଅଙ୍ଗେଇ ଥଙ୍ଗେଇ କହିଲା ।

'ଭଲ । ମହାକାଳ ଯାହା କରିବେ ମଙ୍ଗଳ ପାଇଁ । ମୁଁ ଆସେ ।'

ପ୍ରଦ୍ୟୋତ ପାଖରୁ ବିଦାୟ ନେଇ ଅରିନ୍ଦମ ବାହାରକୁ ଚାଲି ଆସିଲା ।

ବାହାରକୁ ଆସି ଅରିନ୍ଦମ ଭାବିଲା ବୋଧହୁଏ ଆଉ କିଛି ସମୟ ପ୍ରଦ୍ୟୋତ ସହିତ କଥାବାର୍ତ୍ତା ହୋଇଥିଲେ ଭଲ ହୋଇଥାନ୍ତା । ପୁଣି ଭାବିଲା ନାଁ ଏ ଠିକ୍ ଅଛି । ବେଶି ସମୟ ପ୍ରଦ୍ୟୋତ ସହିତ ନ ରହିବାହିଁ ଭଲ । ମଥୁରାରେ ତାର ଭଲ ନାଁ ନାହିଁ । ସେ କଂସର ଏକାନ୍ତ ଅନୁଗତ ଓ କଂସର ସବୁ ଅତ୍ୟାଚାର ସାଙ୍ଗରେ ଲୋକେ ତା ନାଁ ମିଶେଇ କଥା କହନ୍ତି । ତଥାପି କହିବନି କହିବନି କରି ସେ ଅନେକ କଥା ଅରିନ୍ଦମକୁ କହିଲା । ଅନ୍ତତଃ ଗୋଟାଏ ବଡ଼ କଥା ବୁଝିହେଲା – ମଥୁରାର ଯାହା ଯାହା ଘଟୁଛି ସବୁ ପଛରେ କଂସ । ତା ଠାରୁ ସାହାସ ନ ପାଇଲେ କେହି କିଛି କରନ୍ତେ ନାହିଁ, ସେ ମଗଧର ସୈନ୍ୟ ହୁଅନ୍ତୁ, ରାକ୍ଷସ ସୈନ୍ୟ ହୁଅନ୍ତୁ ବା ଆଉ ଯେ


Digitized by srujanika@gmail.com

କେହି ହେଉ । ଆଉ ଗୋଟାଏ କଥା ଯାହାକି ବୁଝିହେଲା ପୁଣି ବୁଝି ବି ହେଲାନି । ସେ ଦେବକୀ ବସୁଦେବଙ୍କର ବିଭାଘର । ମନେହେଲା ପ୍ରଦ୍ୟୋତ ଯାହା କହିଲା ତା'ଠାରୁ ଅଧିକ କଥା ସେ ଜାଣେ । କିନ୍ତୁ ବିଭାଘର ଯେ ହେବ ଏ ବିଷୟରେ ସେ ସ୍ଥିର । ସେ ବିଷୟରେ ତା'ର ସନ୍ଦେହ ନାହିଁ ।

ହଁ, ଅନ୍ୟମାନଙ୍କର ମଧ୍ୟ ସେହି ମତ । ବାପା କହନ୍ତି ଏ ବିଭାଘର ପୂର୍ବ-ନିର୍ଦ୍ଧାରିତ । ଭାନୁପ୍ରକାଶ କହନ୍ତି ଏ କଂସ ନୁହେଁ, ଜରାସନ୍ଧର ବିଚାର ବୁଦ୍ଧି । ବସୁଦେବଙ୍କ ସହିତ ସମ୍ପର୍କ କରି ସେ ଯାଦବମାନଙ୍କର ସବୁଠାରୁ ବଡ଼ ଗୋଷ୍ଠୀର ସମର୍ଥନ ପାଇବ । ସେ ବି ସେଇଆ ଭାବେ । ବିଭାଘର ଖୁବ୍ ସରଳ ଓ ସହଜ ଭାବରେ ହୋଇପାରିଥାନ୍ତା । କିନ୍ତୁ କଂସ ଯେତେ ଆଡ଼ମ୍ବରରେ ବିଭାଘର କରିବାକୁ ଯାଉଛି ଏ ଲୋକଙ୍କୁ ଚମକେଇ ଦେଲାପରି କଥା । ସାଧାରଣ ଲୋକେ ଅନ୍ୟ କଥା ଭାବିବାକୁ ସମୟ ପାଇବେନି, ଖାଲି ବାହାଘର କଥା ହିଁ ଭାବିବେ । କିନ୍ତୁ କାହିଁକି ? ଏ ତ ବେଶ୍ ଟଙ୍କା ପଇସାର କଥା । କଂସ ଏତେ ଟଙ୍କା ପାଉଛି କେଉଁଠୁ ?

ଅରିନ୍ଦମ ତା'ର ସାଙ୍ଗମାନଙ୍କ ସହିତ ଏ ବିଷୟରେ ଆଲୋଚନା କରିଥିଲା । କଂସ ଯେପରି ଭାବରେ ଚଳୁଛି ଏ ତ ବେଶ୍ ଟଙ୍କା ପଇସାର କାରବାର । ଉଗ୍ରସେନଙ୍କ ସମୟରେ ମଥୁରାରେ ଟଙ୍କା ପଇସା ପ୍ରାୟ ନ ଥିଲା । ଯାହା ବା ଯେତେବେଳେ ମିଳୁଥିଲା ଉଗ୍ରସେନ ସାଙ୍ଗେ ସାଙ୍ଗେ ଖର୍ଚ୍ଚ କରି ଦେଉଥିଲେ । କୌଣସି ବଡ଼ ଖର୍ଚ୍ଚର ଦରକାର ହେଲେ ସମସ୍ତେ ମିଶି ସାହାଯ୍ୟ ଦେଉଥିଲେ । ସେ ସମୟ ଅଲଗା ଥିଲା । ଅଭାବ କିଛି ନ ଥିଲା, କିନ୍ତୁ ଆଡ଼ମ୍ବର ପାଇଁ ବି ସୁଯୋଗ ନ ଥିଲା । ଆଉ ଉଗ୍ରସେନ ରାଜା ପରି ଚଳୁ ନ ଥିଲେ, ସାଧାରଣ ଲୋକ ପରି ଚଳୁଥିଲେ । ତାଙ୍କର ସୈନ୍ୟସାମନ୍ତଙ୍କ ପାଇଁ ଖର୍ଚ୍ଚ ନ ଥିଲା । କିନ୍ତୁ କଂସର ସବୁ ଅଲଗା । ସେ ରାଜା, ତା'ର ଆଡ଼ମ୍ବର ପାଇଁ, ସୈନ୍ୟସାମନ୍ତଙ୍କ ପାଇଁ, ଯୁଦ୍ଧ ଅଭିଯାନ ପାଇଁ ଯଥେଷ୍ଟ ଅର୍ଥ ଦରକାର । ଆସେ କେଉଁଠୁ ? ନିଶ୍ଚୟ ଜରାସନ୍ଧ ନୁହେଁ । ଜରାସନ୍ଧ ଟଙ୍କାପଇସା ଦେବା ଲୋକ ନୁହେଁ, ନବା ଲୋକ । ଏହି ସମୟରେ ଗୋଟାଏ ଘଟଣାର ଖବର ସେମାନଙ୍କ ପାଖରେ ଆସି ପହଞ୍ଚିଲା ।

ସତ୍ରାଜିତ ମଥୁରାର ଜଣେ ବଡ଼ ଧନୀ ଓ ବଦାନ୍ୟ ବ୍ୟକ୍ତି । ତାଙ୍କର ବଡ଼ ବ୍ୟବସାୟ ଅଛି । ତାଙ୍କର ଲୋକେ ଦୂର ଦୂରାନ୍ତରକୁ ବ୍ୟବସାୟ କରିବାକୁ ଯାଆନ୍ତି । ତାଙ୍କ ଘରେ ସୁନା ରୂପା, ମଣି ମୁକ୍ତା ଅନେକ । ଶୁଣାଯାଏ ସେ ଜରାସନ୍ଧଙ୍କୁ ଟଙ୍କା ପଇସା ଦିଅନ୍ତି । ଏପରିକି ପାଞ୍ଚାଳର ଦ୍ରୁପଦଙ୍କ ସହିତ ତାଙ୍କର ସମ୍ପର୍କ । ସେ ବି ତାଙ୍କ ପାଖରୁ ଦରକାର ସମୟରେ ଟଙ୍କା ନିଅନ୍ତି । ଏହି ଯେ ସତ୍ରାଜିତ, ଖବର ଆସିଲା


Digitized by srujanika@gmail.com

ଦିନେ ସେ ହଠାତ୍ ନିଖୋଜ ହୋଇ ଯାଇଛନ୍ତି । ସମସ୍ତେ ଆଶ୍ଚର୍ଯ୍ୟ ହେଲେ, କାରଣ ସତ୍ରାଜିତ ଯେ ସେ ଲୋକ ନୁହନ୍ତି । ତାଙ୍କର ଯଥେଷ୍ଟ ଲୋକବଳ, ତାଙ୍କର ନିଜର ଘରୋଇ ସୈନ୍ୟ ସାମନ୍ତ ଅଛନ୍ତି । ତାଙ୍କର ନିଜର ଘର ଗୋଟାଏ ଦୁର୍ଗ ପରି । ଆଉ ମଥୁରାର ଯେଉଁ ଅଞ୍ଚଳରେ ତାଙ୍କ ଘର ସେହି ଅଞ୍ଚଳକୁ କେହି ବାହାର ଲୋକ ପଶିବାକୁ ସାହସ କରନ୍ତି ନାହିଁ । ଏପରିକି କଂସର ସୈନ୍ୟମାନେ ଯେଉଁମାନେ ସାରା ମଥୁରାରେ ଘୂରିବୁଲନ୍ତି, ସେମାନେ ବି ସେ ଅଞ୍ଚଳକୁ ଯାଆନ୍ତି ନାହିଁ । ଏପରି ଯେ ସତ୍ରାଜିତ ସେ ହଠାତ୍ ନିଖୋଜ ହୋଇଗଲେ । ଦିନେ, ଦି ଦିନ, ତିନି ଦିନ ଚାଲିଗଲା । ମଥୁରାର ସବୁଆଡ଼େ ଚର୍ଚ୍ଚା । ଚତୁର୍ଥ ଦିନ ଦେଖାଗଲା ସତ୍ରାଜିତ ଘରକୁ ଫେରି ଆସିଛନ୍ତି, କିନ୍ତୁ ସେ ଆଗ ସତ୍ରାଜିତ ନୁହନ୍ତି । ତାଙ୍କର ପୃଥୁଳ ଶରୀରକୁ ଯେପରି କିଏ ଏଇ ତିନି ଦିନ ଭିତରେ କଳରେ ପେଷି ଶିରା ଶିରା କରିଦେଇଛି । ସେ ଘରକୁ ଫେରି ବିଛଣା ଧଇଲେ । ପାଞ୍ଚଦିନ ହୋଇଗଲାଣି । ଏ ପର୍ଯ୍ୟନ୍ତ ବି ତାଙ୍କର ପୂର୍ବ ଅବସ୍ଥା ଫେରି ନାହିଁ ।

କଥା ଏତିକିରେ ସରିଲା ନାହିଁ । ପରେ ପରେ ଆଉ ଜଣେ ନିଖୋଜ, ପରେ ପରେ ଆଉ ଜଣେ, ତା'ପରେ ଆଉ ଜଣେ, ତା'ପରେ ଆଉ ଜଣେ, ତା'ପରେ ଆଉ ଜଣେ- ସାରା ମଥୁରାରେ ଚହଳ ପଡ଼ିଗଲା । ଏ ସମସ୍ତେ ଜଣାଶୁଣା ଲୋକ । ସତ୍ରାଜିତଙ୍କ ପରି ଧନୀ ନହେଲେ ବି ଧନୀ । ସମସ୍ତଙ୍କର ବେଶ୍ ଟଙ୍କା ପଇସା ଅଛି । ଆଉ ସମସ୍ତଙ୍କୁ ତିନି ଚାରି ଦିନ ପରେ ଛାଡ଼ି ଦିଆଯାଇଛି । ଆଉ ସମସ୍ତଙ୍କର ସତ୍ରାଜିତଙ୍କ ପରି ଦେହର ସମାନ ଅବସ୍ଥା । ସମ୍ପୂର୍ଣ୍ଣ ସୁସ୍ଥ ହେବାକୁ ଲାଗିଯିବ କିଛିଦିନ । ସୁସ୍ଥ ନ ହୋଇ ବି ପାରନ୍ତି । ଏ କି ଅବସ୍ଥା ! ଏ କେହି ନିରାଶ୍ରୟ ଲୋକ ନୁହନ୍ତି । ପ୍ରତ୍ୟେକଙ୍କର ଘରୋଇ ଦେହରକ୍ଷୀମାନେ ଅଛନ୍ତି । କଂସ ରାଜା ହେଲା ପରେ କଂସର ଆଦେଶ ମାନି ଏମାନେ ନିୟମିତ ଭାବରେ ରାଜକୋଷକୁ ଟଙ୍କା ଦିଅନ୍ତି । ତେବେ କ'ଣ ହେଲା ? ଏମାନଙ୍କର ଏ ଦୁର୍ଭୋଗ କଂସ କ'ଣ ଜାଣେ ନା ? ଏମାନେ କଂସର ଆଶ୍ରିତ । କଂସ ଉପରେ ଏମିତି ଟକ୍କର ଦେଲା କିଏ ? ଖାଲି ଏଇମାନେ ନୁହନ୍ତି । ମଥୁରାରେ ଆହୁରି ଧନୀ ଲୋକେ ଅଛନ୍ତି । ସେମାନଙ୍କର ପିଲାମାନେ ଅରିନ୍ଦମ ସାଙ୍ଗ, ଅନେକ ଅରିନ୍ଦମ ସାଙ୍ଗରେ ମିଳିମିଶି କାମ କରନ୍ତି । ସମସ୍ତେ ଆତଙ୍କିତ ହୋଇ ଉଠିଲେ ।

ଦିନେ ସନ୍ଧ୍ୟାରେ ଅନେକ ସାଙ୍ଗ ଏକାଠି ହୋଇ ଏ ବିଷୟରେ ଆଲୋଚନା କଲେ । ଏ କାହାକୁ ହାଣିଦେବା, ମାରିଦେବା ବା ସେହିପରି କଥା ନୁହେଁ । ଏ ଜଣାଶୁଣା, ବୟସ୍କ, ସମ୍ମାନାସ୍ପଦ ଲୋକମାନଙ୍କୁ ଧରିନେଇ ଭୟଙ୍କର ଶାରୀରିକ ଯନ୍ତ୍ରଣା


Digitized by srujanika@gmail.com

ଦେବା । କେହି କେହି ହୁଏତ ମରିଯାଇ ପାରନ୍ତି । କାହିଁକି ? କିଛି ସାଙ୍ଗ କହିଲେ ଏହା ପଛରେ ନିଶ୍ଚୟ କଂସର କିଛି କାରସାଦୀ ଅଛି, କାରଣ କଂସ ନ ଜାଣି ଏପରି ହେବା ସମ୍ଭବ ନୁହେଁ । ତଥାପି ଠିକ୍ ହେଲା ଏ ବିଷୟରେ ପ୍ରଥମେ କଂସକୁ କୁହାଯାଉ । ଅରିନ୍ଦମ ସହିତ ଆଉ ଚାରି ପାଞ୍ଚଜଣ କଂସ ପାଖକୁ ଯିବାକୁ ସ୍ଥିର ହେଲା । ସେମାନେ ଗଲେ ବି । କିନ୍ତୁ ଅରିନ୍ଦମ ଯାହା ଭାବୁଥିଲା ଠିକ୍ ସେଇଆ ହେଲା । ସେ ସବୁକଥା ଶୁଣିଲା । ବହୁତ ଦୁଃଖିତ ହେଲା । ଶେଷକୁ କହିଲା ଠିକ୍ ଅଛି । ତମେ ସବୁ ଯାଅ, ମୁଁ ବୁଝିବି କ'ଣ ହୋଇଛି । ବାସ୍, ସରିଲା । ସେମାନେ ଫେରିଲା ବେଳେ ଡାକି କରି କହିଲା, ଦେବକୀ ବସୁଦେବଙ୍କର ବିଭାଘରରେ ତୁମେ ସବୁ ଆସିବ । ମୋତେ ସାହାଯ୍ୟ କର । ସେମାନେ ଫେରିଆସିଲେ । ଅରିନ୍ଦମକୁ ଅସ୍ଥିର ଲାଗୁଥାଏ । କଥାଟା କ'ଣ ଠିକ୍ ବୁଝି ହେଲାନାହିଁ । କଂସ ଜାଣି ଜାଣି ଆଡ଼େଇଗଲା । କାହାକୁ ପଚାରିବ ? ଭାନୁପ୍ରକାଶ ଫେରି ନାହାନ୍ତି । ଗୋପା ନିଜେ ନ ଆସିଲେ ତାଙ୍କୁ ଭେଟିବା ବା କଥା କହିବା ସମ୍ଭବ ନୁହେଁ । ସେ ଠିକ୍ କଲା ସୌରଦେବଙ୍କ ପାଖକୁ ଆଉଥରେ ଯିବ । ସେ ବୋଧା ଲୋକ । ହୁଏତ କିଛି ସୁରାକ ଦେଇ ପାରନ୍ତି । ସେ ସୁରାକ ଦେଲେ । କହିଲେ, ଅରିନ୍ଦମ ମଥୁରାରେ କଂସକୁ ଟପି, କଂସ ଉପରେ ଯାଇ, ତାକୁ ନ ଜଣେଇ କିଛି କରିବାର କାହାର ସାଧ୍ୟ ଅଛି ? ମଥୁରାରେ ଯାହା ଘଟୁଛି ଧରିନିଅ କଂସର ସବୁ ପଛରେ କାରବାର ଅଛି । ଏ ବି, ସେମିତି । ତଥାପି ଅରିନ୍ଦମର ସନ୍ଦେହ ଗଲାନାହିଁ । ସେ କହିଲା କିନ୍ତୁ ସତ୍ରାଜିତ ଓ ଅନ୍ୟ ସମସ୍ତେ ବି ଓ ଆହୁରି ଅନେକ କଂସକୁ ନିୟମିତ ଟଙ୍କା ଦିଅନ୍ତି ଆମେ ଜାଣୁ । ଏ ପୁଣି କଅଣ ? ଏତେ ନିର୍ଯାତନା କାହିଁକି ? ସେଇ ଟଙ୍କା, ସୌରଦେବ କହିଥିଲେ, ଆହୁରି ଟଙ୍କା ଦରକାର । ଏତେ ସୈନ୍ୟସାମନ୍ତ ଚଳିବେ କେମିତି ? ଥାଟ କେମିତି ରହିବ ? ତେଣୁ ଆହୁରି ଟଙ୍କା ଦିଅ । ଯାହା ଆଣୁଛ ସବୁ ଦିଅ । ଆହୁରି ଦିଅ । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇଥିଲା, କହିଥିଲା ଏ କେତେଦିନ ଚାଲିବ ? ମଥୁରା ଯାକ ସମସ୍ତେ ନିଃସ୍ୱ ହୋଇଯିବେ ଯେ । ତା ହେବେ, ସୌରଦେବ କହିଥିଲେ, ମୁଁ କେତେ ଦିଏ ତୁମେ ହୁଏତ ଜାଣନା । ଛାଡ଼, ଆଉ ଯେ କହିଲ କେତେଦିନ ଚାଲିବ, କିଏ ଜାଣେ କେତେଦିନ ? ଆଉ କିଛି ନ ଘଟିଲା ପର୍ଯ୍ୟନ୍ତ ଏ ଚାଲିବ ।

ଅରିନ୍ଦମ ଫେରି ଆସିଲା । ତା' ମନର ଅନେକ ଅସ୍ପଷ୍ଟ ଚିନ୍ତା ସୌରଦେବଙ୍କ କଥାରେ ସ୍ପଷ୍ଟ ହୋଇ ଉଠିଲା । ମଥୁରାର ସବୁ ଘଟଣା ପଛରେ କଂସ, ଏଇଟା ହିଁ ଠିକ୍ ବିଚାର । କ୍ଷମତାର ମୋହ କଂସକୁ ଅନ୍ଧ କରିଦେଲାଣି । ତା ସହିତ ମିଶିଗଲା ନିଜର ଅସାଧୁତା, ଚରିତ୍ରହୀନତା, ଅହଂକାର, ଆତ୍ମଶ୍ଳାଘା । ମଥୁରା ତା ପାଇଁ କିଛି

ନୁହେଁ, ମଥୁରାର ଲୋକମାନେ ତା ପାଇଁ ପିମ୍ପୁଡି ପରି । ସେହିହିଁ ସର୍ବେସର୍ବା, ତା'ରି ଇଚ୍ଛା ଅନିଚ୍ଛା ହିଁ ରାଜ୍ୟର ନୀତି, ଧର୍ମ । ଭାନୁପ୍ରକାଶଙ୍କ କଥା ମନେପଡ଼ିଲା । ସେ କହନ୍ତି ଏସବୁ ମୂଢ଼, ଅସାଧୁ ଶାସକର ଗୁଣ । ତା ପାଇଁ ରାଜଧର୍ମ ନୁହେଁ, ବ୍ୟକ୍ତି ଧର୍ମ ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏପରି ଶାସକକୁ ସମ୍ପୂର୍ଣ୍ଣ ଭାବରେ ଉତଖାତ କରିବାହିଁ ଧର୍ମ । ସେହିଦିନ ସନ୍ଧ୍ୟାରେ ଅରିନ୍ଦମ ଓ ତା ସାଙ୍ଗମାନଙ୍କର ଗୋଟିଏ ଗୋପନୀୟ ସଭା ହେଲା । ସ୍ଥିର ହେଲା ଆଗ ପରି ଲୋକମାନଙ୍କୁ ସଚେତ କରିବାର କାର୍ଯ୍ୟକ୍ରମ ଚାଲୁ ରହିବ ଓ ଅନ୍ୟାୟକୁ ପ୍ରତିରୋଧ କରିବାର ଦୃଢ଼ତା ଲୋକମାନଙ୍କ ଭିତରେ ଆଣିବାକୁ ହେବ । ସେହିଦିନ ଖବର ଆସି ପହଞ୍ଚିଲା ଭାନୁପ୍ରକାଶ କୁରୁକ୍ଷେତ୍ରରୁ ଫେରି ଆସିଲେଣି ଓ ଗୋପରେ ନନ୍ଦଙ୍କ ଘରେ ସେମାନେ ଭେଟିବେ ।

ଚାରିଦିନ ପରେ ଗୋପରେ ନନ୍ଦଙ୍କ ଘରେ ସେମାନେ ଏକାଠି ହେଲେ- ସୌରଦେବ, ଗୋପା, ସେ ନିଜେ, ସେ ଖୁସି ହେଲା ଭାନୁପ୍ରିୟ, ସତ୍ୟକାମ, ବି ଆସିଛନ୍ତି । ଆହୁରି ଦି ତିନି ଜଣ ଲୋକ । ସେ ଶୁଣିଲା ସେମାନେ ଭାନୁପ୍ରକାଶଙ୍କ ସହଯୋଗୀ, କୁରୁକ୍ଷେତ୍ରରୁ ଭାନୁପ୍ରକାଶଙ୍କ ସାଙ୍ଗରେ ଆସିଛନ୍ତି, ଅନ୍ୟଆଡ଼େ କାମ କରୁଥିଲେ, ବର୍ତ୍ତମାନ ମଥୁରାରେ କିଛିଦିନ ରହିବେ । କିନ୍ତୁ ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ଭାନୁପ୍ରକାଶଙ୍କୁ ଦେଖି । ସେ ଆଗର ନିଆଁ ପରି ଜଳୁ ନାହାନ୍ତି, ତାଙ୍କର ସ୍ପର୍ଶରେ ଯିଏ ଆସିବ ସେ ତାତିଯିବ । ସେ ବର୍ତ୍ତମାନ ଶାନ୍ତ, ସମାହିତ, ମୁହଁରେ ଦୃଢ଼ତା ସହିତ ଜ୍ଞାନର ଜ୍ୟୋତି । ସାରା ଦେହରେ ଯେପରି ଗୋଟିଏ ଅନମନୀୟ ସାହସର ଧାରା ପ୍ରକାଶ ପାଉଛି । ମନେହେଉଛି ଯେପରି ସେ ବର୍ତ୍ତମାନ ସବୁ ଜାଣି ସାରିଛନ୍ତି, ବୁଝି ସାରିଛନ୍ତି । ସେ ନିଶ୍ଚିତ କ'ଣ ଘଟିବାକୁ ଯାଉଛି, କିପରି ତା'ର ପ୍ରତିରୋଧ କରିବାକୁ ହେବ । ସେ ଅରିନ୍ଦମକୁ ଚାହିଁଲେ, ସାମାନ୍ୟ ହସିଲେ, କହିଲେ, 'ଅରିନ୍ଦମ, ମୋତେ ଦେଖି ତୁମେ ଆଶ୍ଚର୍ଯ୍ୟ ହେଉଛ, ନୁହେଁ ? ହଁ, ମୁଁ କିଛି କିଛି ବଦଳି ଯାଇଛି । ଏ ଗୁରୁଦେବଙ୍କ ପ୍ରଭାବ । ତୁମେ ତ ଗୁରୁଦେବଙ୍କୁ ଦେଖି ନା, ମୁଁ କେବେହେଲେ ଗୁରୁଦେବଙ୍କୁ କୌଣସି କଥାରେ ଉତ୍ତେଜିତ ହେବା ଦେଖି ନାହିଁ । ତାଙ୍କୁ ଦେଖିଲେ ମନେ ହେବ ଯେପରି ସେ ସବୁ କଥା ଜାଣି ପାରୁଛନ୍ତି, ସବୁକଥା ଦେଖିପାରୁଛନ୍ତି, ଯାହା କିଛି ଘଟୁଛି ବା ଘଟିବ ସବୁର ସମାଧାନ ସେ ଜାଣନ୍ତି । ତାଙ୍କ ଆଗରେ ତୁମର ମନଟା ଛାଁ ଛାଁ ପାଖୁଡ଼ା ମେଲିଲା ପରି ମେଲିଯିବ । ତୁମେ କିଛି କହିବା ଆଗରୁ ସେ ସବୁ ଜାଣି ସାରିଥିବେ । ମୁଁ ଗଲାରୁ ସେ ମୋତେ କିଛିଦିନ ତାଙ୍କ ପାଖରେ ବସିବାକୁ କହିଲେ । ଖାଲି ବସିବାକୁ । ବାସ୍, ସେ ସାରାଦିନ ବ୍ୟସ୍ତ ରହିବେ – ଲୋକମାନଙ୍କୁ ଭେଟିବେ, କଥା କହିବେ, ହୋମ କରିବେ । ତୁମର କାମ କିଛି ନାହିଁ । ଖାଲି ବସି

ରହିବ । କଥା ବି କହିବ ନାହିଁ । ପ୍ରଥମେ ପ୍ରଥମେ ମତେ ବଡ଼ ବିରକ୍ତ ଲାଗିଲା । ଏ କ'ଣ ? କିଛି କରିବି ନାହିଁ, ଖାଲି ବସି ରହିବି କାହିଁକି ? ଗୁରୁଦେବଙ୍କୁ କିଛି ପଚାରିବାକୁ ସାହସ ହେଲା ନାହିଁ । ଆଉ କ'ଣ କରିବି, ସେମିତି ଚୁପଚାପ ବସି ରହିଲି । ତା ପରେ ତିନିଦିନ ପରେ ମୁଁ ଲକ୍ଷ୍ୟ କଲି ମୋର ଯେମିତି କ'ଣ ଘଟୁଛି, କ'ଣ ବଦଳି ଯାଉଛି । ମୋର ଉତ୍ତେଜନା କମିଯାଉଛି, ମନ ଶାନ୍ତ ହୋଇ ଆସୁଛି । ଆଉ ମୁଁ ଅନୁଭବ କଲି ମୁଁ ଏପରି କଥା ସବୁ ବୁଝିପାରୁଛି ଯାହା ଆଗରୁ ହୁଏ ତ ବୁଝି ପାରୁ ନ ଥିଲି ବା ଅଳ୍ପ ବୁଝୁଥିଲି । ପାଞ୍ଚଦିନ ପରେ ମୋର ମନେହେଲା ଯେପରି ମୋ' ଜ୍ଞାନଚକ୍ଷୁ ଖୋଲି ଯାଇଛି । ମୁଁ ସେହିସବୁ ଜିନିଷ ଦେଖୁଛି ଯାହା କି ଆଉ କେହି ଦେଖିପାରନ୍ତି ନାହିଁ । ଗୁରୁଦେବ ମୋ' ଆଡ଼କୁ ଚାହିଁ ହସିଲେ, କହିଲେ - ଭାନୁ ଉଠ, କାମ କର, ଆଉ ବସିବା ଦରକାର ନାହିଁ ।'

ଭାନୁପ୍ରକାଶଙ୍କ ମୁହଁ ଅତ୍ୟନ୍ତ ପ୍ରସନ୍ନ । ସେ ସେହିପରି ଅଳ୍ପ ଅଳ୍ପ ହସୁଥାଆନ୍ତି । ଅନ୍ୟ ସମସ୍ତେ ନିର୍ବାକ ହୋଇ ଭାନୁପ୍ରକାଶଙ୍କ କଥା ଶୁଣୁଥାଆନ୍ତି । ଖାଲି ସତ୍ୟକାମ ଦୁଇ ଆଖି ବନ୍ଦ କରି ବସି ଥାଆନ୍ତି । ମନେ ହେଉଥାଏ ଯେପରି ଧ୍ୟାନରତ । ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ ତଥାପି କଟି ନ ଥାଏ । ହଁ, ଭାନୁପ୍ରକାଶ ଆଗପରି ଦିଶୁନାହାନ୍ତି । ସେ ଯେପରି ପୃଥିବୀର ଜଂଜାଳ ଛାଡ଼ି ବହୁ ଉର୍ଦ୍ଧ୍ୱକୁ ଉଠିଯାଇଛନ୍ତି । ଯେଉଁଠି ଗୋପ, ମଥୁରା, କଂସ କେହି ନାହାନ୍ତି । ସେହି କେଉଁ ଅକଳ୍ପିତ ଶୂନ୍ୟରୁ ସେ ଏ ସମସ୍ତଙ୍କୁ ଦେଖୁଛନ୍ତି । ମନେହେବ ଏସବୁ କେତେ ତୁଚ୍ଛ, କେତେ ନଗଣ୍ୟ ।

ସେ ସେହିପରି ଶାନ୍ତ ଭାବରେ ଅରିନ୍ଦମକୁ ଚାହିଁଲେ - 'ଅରିନ୍ଦମ, ବର୍ତ୍ତମାନ ଏଠିକା ଖବର କୁହ । କିନ୍ତୁ ତୁମେ ଏଠିକା ଖବର କହିବା ଆଗରୁ ମୁଁ ତୁମ ସମସ୍ତଙ୍କୁ ଆଉ ଗୋଟାଏ ଖବର ଦିଏ । ଗୁରୁଦେବ ଏଠିକି ଆସିବେ । ଏବେ ନୁହେଁ । ସେ କହନ୍ତି ମଥୁରାରେ ନିକଟରେ କିଛି ଗୁରୁତର ଘଟଣା ଘଟିବ, ଯାହା ଉଭୟ ମନ୍ଦ ଓ ଭଲ ବି । ଏହି ଘଟଣା ଘଟିବା ପରେ ସେ ଆସିବେ । ସେ କହନ୍ତି ଯାହା ଘଟିବ ସେ ଖୁବ୍ ବିବ୍ରତ ହେବା କଥା । କିନ୍ତୁ ସେ ଅନୁରୋଧ କରିଛନ୍ତି ଆମେ କେହି ଖୁବ୍ ବ୍ୟସ୍ତ ନ ହେଲେ ଭଲ । ଯାହା ଘଟିବ ସେ ଆମ ସମସ୍ତଙ୍କ ଭଲ ପାଇଁ ଘଟିବ - ବର୍ତ୍ତମାନ କୁହ । ତୁମର ସାଙ୍ଗମାନେ ସବୁ ଆସୁଛନ୍ତି ତ ? ସମସ୍ତେ ଏକାଠି ଅଛନ୍ତି ତ ? ଏଠି ତ କଂସ ତା ସୈନ୍ୟସାମନ୍ତରେ ସାରା ମଥୁରା ଭର୍ତ୍ତି କରି ସାରିଲାଣି । ସେ ଖବର ମୁଁ ପାଇଛି । ସେ ତ ଜରାସନ୍ଧକୁ ଟପି ଗଲାଣି । ସାରା ଆର୍ଯ୍ୟାବର୍ତ୍ତରେ ବର୍ତ୍ତମାନ କଂସ କଥା । କୁରୁକ୍ଷେତ୍ରକୁ ଆସୁଥିବା ଲୋକଙ୍କ ପାଖରୁ ମୁଁ ବାରମ୍ବାର କଂସ କଥା ଶୁଣିଛି । ହସ୍ତିନାରେ ଭୀଷ୍ମ, ସତ୍ୟବତୀ ଏମାନେ ମଧ୍ୟ ବ୍ୟସ୍ତ । ସମସ୍ତେ କହୁଛନ୍ତି, ଏ

ପୁଣି ଥରେ ପୁରୁଣା ସହସ୍ରାର୍ଜ୍ଜୁନ ଘଟଣା । ଆର୍ଯ୍ୟାବର୍ତ୍ତକୁ ଘୋର ବିପଦ ମାଡ଼ି ଆସୁଛି । ଲୋକେ ଆସି ଗୁରୁଦେବଙ୍କୁ ଏ ବିଷୟରେ ଅନୁରୋଧ କରିଛନ୍ତି, ସେ ଯାଇ ସହ୍ୟାଦ୍ରି ପର୍ବତରେ ଭଗବାନ ପର୍ଶୁରାମଙ୍କୁ ଏକଥା ଜଣାନ୍ତୁ । ଗୁରୁଦେବ ରାଜି ନୁହନ୍ତି । ସେ କହନ୍ତି ପ୍ରତ୍ୟେକ ପିଢ଼ି ସେମାନଙ୍କ କଥା ବୁଝିବା ଦରକାର । ତାଙ୍କ ସମୟରେ ଯାହା କରିବା କଥା ପର୍ଶୁରାମ ତାହା କରିଥିଲେ । ତାଙ୍କୁ ପୁଣି ତାଙ୍କ ଆଶ୍ରମରୁ ଟାଣିଆଣି ଏସବୁରେ ପୂରେଇବା ଠିକ୍ ନୁହେଁ । ବର୍ତ୍ତମାନର ଲୋକେ ନିଜ ଦମ୍ଭ ଓ ସାହସରେ ଛିଡ଼ା ହୁଅନ୍ତୁ । ନିଜର ଦମ୍ଭ ଓ ସାହସରେ ହିଁ ଏହାର ମୀମାଂସା ହେବ ।'

ଭାନୁପ୍ରକାଶଙ୍କ କଥା ଶୁଣୁ ଶୁଣୁ ଓ ତାଙ୍କ ମୁହଁକୁ ଚାହିଁ ଚାହିଁ ଅରିନ୍ଦମର ମନେହେଲା ତାଙ୍କର ମନରେ ଯେପରି କୌଣସି ଦୁଃଖ ବା ଶୋକ ନାହିଁ । ସବୁକଥା ସେ ନିରପେକ୍ଷ ଭାବରେ ଦେଖୁଛନ୍ତି, ନିରପେକ୍ଷ ଭାବରେ ଆଲୋଚନା କରୁଛନ୍ତି । ଏହିପରି ଘଟଣା ଘଟେ, ଘଟିଛି, ଘଟିବ । ବିଚାର କର କ'ଣ କରାଯିବ, କିପରି ଭାବରେ ମୁହାଁମୁହିଁ ହେବ । ଅରିନ୍ଦମର ମନେହେଲା ଭାନୁପ୍ରକାଶଙ୍କ କଥାର ଧାରାରେ ଯମୁନାର ଶୀତଳ ଅତ୍ୟନ୍ତ ତୃପ୍ତିଦାୟକ ଜଳର ପ୍ରବାହ । ତା'ମନର ଉତ୍ତେଜନା ଓ ଅସ୍ଥିରତା ଆସ୍ତେ ଆସ୍ତେ କମି ଆସିଲା । ମଥୁରାର ଚିତ୍ର ଖଣ୍ଡ ଖଣ୍ଡ ଭାବରେ ନୁହେଁ, ସମଗ୍ର ଭାବରେ ତା' ଆଖି ଆଗରେ ଭାସିଉଠିଲା । ସେ କହିଲା, 'ହଁ, ମଥୁରାରେ ବହୁତ ଗୋଳମାଳ ଚାଲିଛି । କଂସର ରାଜ୍ୟ ଜୟର ଅଭିଯାନ ପରେ ଆମେ ଭାବୁଥିଲୁ ସେ ସ୍ଥିର ହୋଇ ରହିବ, ମଥୁରାର ଭଲ ମନ୍ଦ ବୁଝିବ, ମଥୁରାକୁ ନୂତନ ଗୌରବ ଆଣିଦେବ । ସେ କ'ଣ ଆଣିଛି, କି ଗୌରବ, ଆମେ ଜାଣୁନା । କିନ୍ତୁ ଅନ୍ତତଃ ଗୋଟିଏ କଥା ଆମେ ଦେଖୁଛୁ । ସେ ପ୍ରଚଣ୍ଡ ଅତ୍ୟାଚାର, ପ୍ରଚଣ୍ଡ ଭୟ । କେହି ଆଉ କାହାରି ଘରେ ନିରାପଦ ନୁହେଁ, ଶାନ୍ତିରେ ରହିବାର ଉପାୟ ନାହିଁ । ସାରା ରାଜ୍ୟରେ ମଗଧର ସୈନ୍ୟ ଓ ରାକ୍ଷସ ସୈନ୍ୟ ଭର୍ତ୍ତି ହୋଇଛନ୍ତି । ସେହିମାନେ ହିଁ ମଥୁରା, ଆମେ କେହି ନୁହଁ । ମାଂସ ଲୋଭୀ ପଶୁପରି ସାରା ରାଜ୍ୟରେ ସେମାନେ ଖେଦି ବୁଲୁଛନ୍ତି । ଆଉ ସବୁ ଉପରେ କଂସ । ପୁରୁଷ, ସ୍ତ୍ରୀ, ଛୋଟ ବଡ଼ ସମସ୍ତଙ୍କୁ ସେ ବ୍ରହ୍ମରାକ୍ଷସ ପରି ଗିଳି ପକେଇବାକୁ ଚାହୁଁଛି ।' ଅରିନ୍ଦମ ଅନୁଭବ କଲା କିଛି ସମୟ ପୂର୍ବରୁ ଭାନୁପ୍ରକାଶଙ୍କ ପାଖରେ ବସି, ତାଙ୍କର କଥା ଶୁଣୁ ଶୁଣୁ ତା ମନ ଯେପରି ଶାନ୍ତ ହୋଇ ଆସିଥିଲା । ସେ ଶାନ୍ତ ଭାବ ଆଉ ନାହିଁ । ସେ କ୍ରମଶଃ ଉତ୍ତେଜିତ ହୋଇଉଠୁଛି । ସେ ଚୁପ୍ କଲା ।

ସୌରଦେବ କହିଲେ, 'ଭାନୁ, ତୁମେ ଯିବା ଆଗରୁ ମଥୁରାର ଯାହା ଅବସ୍ଥା ଥିଲା, ବର୍ତ୍ତମାନର ଅବସ୍ଥା ତା ଠାରୁ ଆହୁରି ଖରାପ । ଆହୁରି ବେଶି ରାକ୍ଷସ ସୈନ୍ୟ


Digitized by srujanika@gmail.com

କେଉଁଠୁ ଆସିଛନ୍ତି । ମଗଧର ସୈନ୍ୟମାନେ ବି । ସେମାନଙ୍କ ପାଇଁ ଘରଦ୍ୱାର କରି ରହିଥିବା ଲୋକମାନଙ୍କୁ ବାହାର କରି, ବସ୍ତି ତିଆରି କରାଯାଇଛି । ଦିନରାତି ସେମାନେ ମଥୁରା ସାରା ପଇଁତରା ମାରି ବୁଲୁଛନ୍ତି, ଭିନ୍ନ ଭିନ୍ନ ମହଲାରେ ଲୋକଙ୍କ ଘରକୁ ପଶିଯାଉଛନ୍ତି । ଘର ଭିତରେ ପିଲାଛୁଆ କେହି ଆଉ ନିରାପଦ ନୁହନ୍ତି । ବହୁ ସାନ ସାନ ପିଲା ନିଖୋଜ ହୋଇଗଲେଣି । ଆଉ ସ୍ତ୍ରୀ ଲୋକଙ୍କ ଉପରେ ଅତ୍ୟାଚାର କରିବା ସବୁଦିନିଆ କଥା ହୋଇଗଲାଣି । ତା ସାଙ୍ଗରେ ସବୁଦିନ ରାତିରେ କଂସ ପାଇଁ ବଜାରରୁ ସ୍ତ୍ରୀଲୋକଙ୍କୁ ଟେକି ନିଆ ଯାଉଛି । ଟଙ୍କା ପଇସା କଥା ସେମିତି । ଯାହା ପାଖରେ ଯାହା ଅଛି ସବୁ କଂସକୁ ଦେଇଦିଅ । ନଚେତ୍ ଭୟଙ୍କର ଅତ୍ୟାଚାର । ରାଜ୍ୟ ଜୟ ବେଳେ କଂସ ଅତ୍ୟନ୍ତ ନାରକୀୟ ଭାବରେ ଶହ ଶହ ଲୋକଙ୍କୁ ହତ୍ୟା କରିଥିଲା । ବର୍ତ୍ତମାନ ସେହି ଅବସ୍ଥା । ଗୋଟାଏ ଅତ୍ୟନ୍ତ ସ୍ୱାର୍ଥପର, ଅତ୍ୟାଚାରୀ ରାଜା କ'ଣ ହୋଇପାରେ ଆମେ ତା'ର ନମୁନା ଦେଖୁଛୁ । ସେଇ ଭୟରେ ଆମେ ପ୍ରାୟ ଅଧା ମଲୁଣି ।.......'

ସମସ୍ତେ ଚୁପଚାପ ସୌରଦେବଙ୍କ କଥା ଶୁଣୁଥାନ୍ତି । ସୌରଦେବ ଚୁପ କରିଗଲେ । ବାହାରେ ସନ୍ଧ୍ୟା ପକ୍ଷୀମାନଙ୍କର କଳକୂଜନ, ଗାଈମାନଙ୍କର ହମ୍ବାରଡ଼ି, ଗୋପାଳମାନେ ଡକାଡ଼କି ହୋଇ ଗୋଠରୁ ଫେରିବାର ଶବ୍ଦ । ନନ୍ଦ ଚୁପ ହୋଇ ଶୁଣୁଥିଲେ । ସେ କହିଲେ, 'ସୌରଦେବ ଠିକ୍ କହୁଛନ୍ତି । ମଥୁରାର ଏମିତି ଅବସ୍ଥା କେବେ ନ ଥିଲା । ଆମ ଗୋପାଳୁଣୀମାନେ ମଥୁରାକୁ ଦୁଧ, ଲହୁଣୀ ନେଇ ଆଉ ଯିବାକୁ ରାଜି ହେଉ ନାହାନ୍ତି । ସେ ସୈନ୍ୟମାନେ ବହୁତ ଖରାପ ବ୍ୟବହାର କରୁଛନ୍ତି । ଦୁଧ ଲହୁଣୀ ସବୁ ମାଗଣା ମାଗଣା ଖାଇ ଯାଉଛନ୍ତି । ଏମାନେ ଏକାଠି ହୋଇଗଲେ ବି ରକ୍ଷା ନାହିଁ ।'

ସତ୍ୟକାମ କହିଲେ, ମଗଧରେ ବି ଅବସ୍ଥା ଭଲ ନୁହେଁ, କିନ୍ତୁ ବୋଧେ ମଥୁରାରେ ଅବସ୍ଥା ଆହୁରି ଖରାପ । ଜରାସନ୍ଧ ଅତ୍ୟାଚାରୀ କିନ୍ତୁ ଚାଲାକ, ସତର୍କ ବି । ଲୋକେ ତାକୁ ଭୟ କରନ୍ତୁ, ଏକଥା ସେ ଚାହେଁ । ଦରକାର ହେଲେ ଅତ୍ୟନ୍ତ ଭୟଙ୍କର କାର୍ଯ୍ୟ ସବୁ କରେ, ଲୋକଙ୍କୁ ପୋକ ମାଛି ପରି ଦଳିଦେବାକୁ ସେ ପଛାଏ ନା । କିନ୍ତୁ ସାଧାରଣ ଲୋକଙ୍କୁ ସେ ପ୍ରାୟ ନିଜ କାମରେ ପୂରାଏ ନା, ଦୂରେଇ ଦୂରେଇ ରଖେ । ମନେ ହେଉଛି କଂସ ଯଥେଷ୍ଟ ସତର୍କ ନୁହେଁ, ତା'ର ବୁଦ୍ଧିଶୁଦ୍ଧି କମ ।'

'ନାଁ, ତା ନୁହେଁ', କହିଲେ ଭାନୁପ୍ରକାଶ, 'ବୁଦ୍ଧିଶୁଦ୍ଧି ଅଛି । କିନ୍ତୁ ଭୟଙ୍କର ଦୁଷ୍ଟ ବୁଦ୍ଧି । ଯାହା ନାହିଁ ସେ ସବୁ ଅତ୍ୟାଚାରୀଙ୍କର ନାହିଁ । ବିବେକ ଓ ଧର୍ମ ଭୟ ।


Digitized by srujanika@gmail.com

ସେ ବିବେକଶୂନ୍ୟ ଓ ଅଧର୍ମ । ସେ ନିଜ ପାଇଁ, ନିଜର ସ୍ୱାର୍ଥ ପାଇଁ ସବୁକିଛି ନଷ୍ଟଭ୍ରଷ୍ଟ କରିଦେଇପାରେ । ମଥୁରା ତ ନିଶ୍ଚୟ, ଦରକାର ହେଲେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ବି । ଜରାସନ୍ଧ ଏକଥା ଜାଣେ । ସେଇଥିପାଇଁ ସେ କଂସକୁ ଯାହା ସାହାଯ୍ୟ କରିବା କଥା କରୁଛି ।'

ଭାନୁପ୍ରକାଶ ଚୁପ କରିଗଲେ । ସମସ୍ତଙ୍କୁ ଚାହିଁଲେ । ଅଳ୍ପ ହସିଲେ । କହିଲେ, 'ହଁ, ମୁଁ ଗଲା ପରେ ମଥୁରାର ଅବସ୍ଥା ଆହୁରି ଖରାପ ହୋଇଛି । କିନ୍ତୁ ଏ ତ ଜଣା କଥା । କଂସ ଯେ ଏପରି ଢଙ୍ଗ ଧରିବ ଏକଥା ତ ଆରମ୍ଭରୁ ହିଁ ବୁଝି ହେଉଥିଲା । ଯେଉଁ ବୟସରେ ଓ ଯେପରି ଭାବରେ ସେ ସାଧୁପ୍ରତିମ ଉଗ୍ରସେନଙ୍କୁ ତଡ଼ି ନିଜେ ରାଜା ହେଲା ସେହି ଦିନଠୁଁ ଏପରି ଘଟଣା ସବୁ ଯେ ଘଟିବ ଏ କଥା ଜଳଜଳ ହୋଇ ଦିଶୁଥିଲା । ଆହୁରି ବି ଖରାପ ଅବସ୍ଥା ହୋଇପାରେ । ବିଚାର କରିବା କଥା ଆମେ କ'ଣ କରିପାରିବା । ମୁଁ ଏ ବିଷୟରେ ଗୁରୁଦେବଙ୍କ ସହିତ ଆଲୋଚନା କରିଥିଲି । ସେ କହନ୍ତି ଲୋକଙ୍କୁ ସଚେତ କରିବା ଦରକାର, ସେମାନଙ୍କ ମନରେ ଦମ୍ଭ ଆଣିଦେବା ଦରକାର । ଆମେ ଯେଉଁ ଯେଉଁ ନିଷ୍ପତ୍ତି କରି ମଗଧରେ ଯାହା ଯାହା ସବୁ କରିଛୁ ଏଠାରେ ସେହିପରି ହେବା ଦରକାର । ମଗଧରେ ଜରାସନ୍ଧ ଯଥେଷ୍ଟ ଅତ୍ୟାଚାରୀ, ଯଥେଷ୍ଟ ଶକ୍ତିଶାଳୀ । କିନ୍ତୁ ସେ ଜାଣେ ରାଜ୍ୟସାରା ତା ବିରୁଦ୍ଧରେ ଭିତରେ ଭିତରେ ଯଥେଷ୍ଟ ବିରୋଧ ମନୋଭାବ ଅଛି । ସେ ଯାହା କଲେ ବି ଭାବିଚିନ୍ତି କରେ, ସାବଧାନରେ କରେ । ଯାହା ଘଟୁ ଏହି ବିରୋଧ ମନୋଭାବଟା ହିଁ ଲୋକଙ୍କର ବଡ଼ ଶକ୍ତି । ଏହାହିଁ ଅତ୍ୟାଚାରୀ ଶାସକକୁ ଅନେକ ପରିମାଣରେ ସଂଯତ କରିପାରିବ ଓ ସମୟ ଆସି ପହଞ୍ଚିବ ଯେତେବେଳେ ଏହି ମନୋଭାବ ହିଁ ସାମନାକୁ ଆସିବ ଓ ଅତ୍ୟାଚାରୀ ଶାସକର ଶେଷ ହେବ । ଗୁରୁଦେବ ମଥୁରାରେ ଆମ କାର୍ଯ୍ୟକୁ ଖୁବ୍ ପସନ୍ଦ କଲେ । କହିଲେ ସେଇଟା ହିଁ ଠିକ୍ ବାଟ । କାମ ଚାଲୁ ରଖ । ଅତୀତରେ ବହୁ ଅତ୍ୟାଚାରୀ ଶାସକ ଯାଇଛନ୍ତି । ଏ କଂସ ହିଁ ଯିବ । କିନ୍ତୁ ସେହି ଦିନକୁ ନିଜର ଦମ୍ଭ ଓ ସାହସରେ ଅପେକ୍ଷା କରିବାକୁ ପଡ଼ିବ । ଲୋକଶକ୍ତି ଆଗରେ କୌଣସି ଅତ୍ୟାଚାରୀ ଶାସକ ରହି ପାରି ନାହାନ୍ତି । ଜରାସନ୍ଧ ରହି ପାରିବ ନାହିଁ, କଂସ ବି ନୁହେଁ । ଲୋକଶକ୍ତିକୁ ଟାଣ କରି ରଖ । ଅନେକ କଥା ଘଟିବ । ଭୟ କରନା ।'

ଭାନୁପ୍ରକାଶଙ୍କ କଥା ଅରିନ୍ଦମର ମନରେ ନୂଆ ସାହସ ଆଣିଦେଲା । ମଝିରେ ତା'ର ମନ ଯେଉଁ ଭାଙ୍ଗି ପଡ଼ିଥିଲା, ମନେ ହେଉଥିଲା ଯେପରି ଗୋଟାଏ ଘୋର ଅନ୍ଧକାରର ସୁଡ଼ଙ୍ଗ ଭିତରକୁ ମଥୁରା ପଶି ଯାଉଛି, ଯେଉଁଠୁ ବାହାରିବାର ଉପାୟ ନାହିଁ,

ସେ ମନୋଭାବ କଟିଗଲା । ମନେହେଲା ଯେପରି ପାହାନ୍ତି ତରା ଉଠି ଆସଲାଣି, ଏହି ସମୟଟା ଖୁବ୍ ଅନ୍ଧାର ହେବ, କିନ୍ତୁ ପରେ ପରେ ଦିନର ଜ୍ୟୋତି ଝଲସି ଉଠିବ । ସେ ଭାନୁପ୍ରକାଶଙ୍କୁ ଚାହିଁଲା, ତାଙ୍କ ଆଖିରେ ସାହସ, ଦମ୍ଭ । ସେହି ସାହସ ଓ ଦମ୍ଭ ତା ମନରେ ଭରିଗଲା । ସେ କହିଲା, 'ଆପଣ ଯାହା ଯାହା କରିବାକୁ କହି ଯାଇଥିଲେ, ଆମେ ସେମିତି ସେମିତି କରିବାକୁ ଚେଷ୍ଟା କରିଛୁ । ମୋର ସାଙ୍ଗମାନେ ସମସ୍ତେ ଆସନ୍ତି । ସମସ୍ତେ ଉତ୍ସାହୀ । ଗୋଟାଏ କିଛି କରିବାକୁ ହେବ, ଏହାହିଁ ସମସ୍ତଙ୍କର ଇଚ୍ଛା । କଂସ ପ୍ରତି କାହାରି ସହାନୁଭୂତି ନାହିଁ, ବରଂ ବିରକ୍ତି, କ୍ରୋଧ । ଯଦି କୌଣସି ନିର୍ଦ୍ଦିଷ୍ଟ କାମ ଆପଣ କରିବାକୁ ଚାହାନ୍ତି ଆମକୁ କୁହନ୍ତୁ ।'

ଭାନୁପ୍ରକାଶ ଟିକେ ଭାବିଲେ । କହିଲେ - 'ନାଁ, ବର୍ତ୍ତମାନ ନିର୍ଦ୍ଦିଷ୍ଟ କାମ କିଛି ନାହିଁ । କଂସ ଉପରେ ସାବଧାନରେ ନଜର ରଖିବା ହିଁ କାମ । ସେ କ'ଣ କରିବାକୁ ଚାହୁଁଛି ବୁଝିବା କଥା ? ତା'ର କୌଣସି କାମ ଯେପରି ଆମ ଉହାଡ଼କୁ ଚାଲି ନ ଯାଏ । ଏଇଟା ଜରୁରୀ । ମୋର ମନେହୁଏ ଖୁବ୍ ଶୀଘ୍ର କିଛି ଗୋଟାଏ ଘଟିବ ।'

'ମୁଁ ଏହା ଭିତରେ ପ୍ରଦ୍ୟୋତ ସହିତ ଦେଖା କରିଥିଲି', ଅରିନ୍ଦମ କହିଲା ।

ଭାନୁପ୍ରକାଶ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ - 'ପ୍ରଦ୍ୟୋତ ! କାହିଁକି ? ସେ ତ କଂସର ଲୋକ, ପ୍ରାୟ ଡାହାଣ ହାତ ପରି ।'

'ହଁ, ସେହି ଯୋଗୁହିଁ ମୁଁ ଦେଖା କରିଥିଲି ।' କହିଲା ଅରିନ୍ଦମ, 'ସେ ବାପାଙ୍କୁ ବହୁତ ମାନେ । ମୋ ସହିତ ସମ୍ପର୍କ ମୋଟାମୋଟି ଭଲ । ମଥୁରାର ଦକ୍ଷିଣ ଅଞ୍ଚଳରେ ସୈନ୍ୟମାନଙ୍କୁ ରଖିବା ପାଇଁ ଯେତେବେଳେ ଲୋକମାନଙ୍କୁ ବାହାର କରି ଦିଆଯାଉଥିଲା ସେତିକିବେଳେ । ଆମେ ଖବର ପାଇ ଗଲୁ । ପ୍ରଦ୍ୟୋତ ନିଜେ ରହି ସବୁ କରଉଥିଲା । ଭଲ କଥାବାର୍ତ୍ତା କଲା । କହିଲା କଂସର ଇଚ୍ଛା । ଲୋକମାନଙ୍କୁ ବାହାରିଯିବାକୁ ପଡ଼ିବ । ସୈନ୍ୟ ରହିବେ ।'

'ଲୋକମାନେ ବାହାରିଗଲେ କି ?' ଭାନୁପ୍ରକାଶ ପଚାରିଲେ ।

'ହଁ ।' ସୌରଦେବ କହିଲେ, 'ଲୋକଙ୍କର ସେ ଅକଥନୀୟ ଯନ୍ତ୍ରଣା । ଛାଡ଼, କିନ୍ତୁ ନ ଯାଇ ଉପାୟ ନ ଥିଲା । ଭଲରେ ନ ଯାଇଥିଲେ ହାଣକାଟ ହୋଇଥାନ୍ତା । ଗଲେ, ତେବେ ପ୍ରଦ୍ୟୋତ ଗୋଟାଏ ଭଲ କାମ କଲା । ସେ ଘରଛଡ଼ା ଲୋକଗୁଡ଼ାଙ୍କୁ ଆହୁରି ଦକ୍ଷିଣକୁ ଜଙ୍ଗଲ ସଫାକରି ଥଇଥାନ କରିଦେଲା ।'

'କଂସ ରାଜି ହେଲା ?' ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହେଲେ ।

'ନାଁ, କଂସ ଜାଣେ ନା,' ଅରିନ୍ଦମ କହିଲା, 'ଅନ୍ତତଃ ପ୍ରଦ୍ୟୋତ ସେଇଆ କହେ । ମୁଁ ପରେ ପ୍ରଦ୍ୟୋତ ଘରକୁ ଯାଇ ତା ସହିତ ଦେଖା ବି କରିଥିଲି । ଦିନେ

ସକାଳେ ।'

'ଆଚ୍ଛା', ସୌରଦେବ ହସିଲେ, କହିଲେ, 'ମୁଁ ଏକଥା ଜାଣିନି । ସେ ନିଶ୍ଚୟ ନିଜ ଲୋକ ପରି କଥାବାର୍ତ୍ତା କରିଥିବ ?'

'ହଁ', ଅରିନ୍ଦମ କହିଲା, 'ତା କଥାରୁ ମନେ ହେଲା ସେ ଖୁବ୍ ଦୁଃଖିତ । ସେ ବି ଚାହେଁନା କଂସ ଯାହା ସବୁ କରୁଛି ସେସବୁ କରୁ । କିନ୍ତୁ ସେ ତ କର୍ମଚାରୀ, ସେ କ'ଣ କରିପାରେ ।'

'ସୌରଦେବ, ଏ ତ ଲଙ୍କାରେ ହରି ଶବ୍ଦ । କ'ଣ କହୁଛନ୍ତି ?' କହିଲେ ଭାନୁପ୍ରକାଶ । 'ମିଛ ମିଛ', କହିଲେ ସୌରଦେବ, 'ଯାହାକୁ କହନ୍ତି ଅତଳ ପାଣିର ମାଛ । ପ୍ରଦ୍ୟୋତକୁ ବୁଝିବା ସହଜ ନୁହେଁ । ଏହାଛଡ଼ା ସେ ଆଉ କିଛି କହିଲା କି ?'

'ନାଁ', ଅରିନ୍ଦମ କହିଲା, 'କିନ୍ତୁ ମନେହେଲା ସେ ଅନେକ କିଛି ଜାଣେ, ବା ମୋର ବୁଝିବାକୁ ଭୁଲ ହୋଇପାରେ ।'

'ନାଁ, ତୁମେ ଠିକ୍ ବୁଝିଛ ।' ସୌରଦେବ କହିଲେ, 'ସେ ବହୁତ କଥା ଜାଣେ, କଂସ ଯେ ତାକୁ ସବୁକଥା କହେ ତା ନୁହେଁ । କଂସ ବି ତାକୁ ପୂରା ବିଶ୍ୱାସ କରେନା, ତେବେ କଂସ ତ କାହାକୁ ବିଶ୍ୱାସ କରେନା । ପ୍ରଦ୍ୟୋତକୁ ଯେତିକି କହିବା କଥା କହେ । କିନ୍ତୁ ପ୍ରଦ୍ୟୋତ ଅନେକ କଥା ଜାଣେ, ଏକଥା ଠିକ୍ । ହେଲେ ତା'ର ବି ଭୟ ଅଛି । ଯେ କୌଣସି ସମୟରେ ତା'ର ମୁଣ୍ଡଟା ବି କଟିଯାଇପାରେ । ସେ ତୁମକୁ କଂସ ବ୍ୟାପାରରେ ମୁଣ୍ଡ ନ ପୂରେଇବାକୁ ନିଶ୍ଚୟ କହିଥିବ ?'

'ବାରମ୍ବାର କହିଛି', କହିଲା ଅରିନ୍ଦମ, 'ସେ ବାପାଙ୍କ କଥା ଉଠେଇଲା । ବାପା ତାକୁ କେମିତି ସ୍ନେହ କରନ୍ତି ସେ କଥା କହିଲା । ମୋର ଯେପରି କୌଣସି କ୍ଷତି ନ ହୁଏ ସେ କଥା ବି କହିଲା । ଆଉ କଂସ ବ୍ୟାପାରରେ ମୁଣ୍ଡ ନ ପୂରେଇବା କଥା ତ ସେ ବାରମ୍ବାର କହୁଥାଏ ।

'ପ୍ରଦ୍ୟୋତ ଯାହା କହୁ ବା ନ କହୁ, ତା ଉପରେ ଆମେ ନିର୍ଭର କରି ପାରିବାନି ।' କହିଲେ ଭାନୁପ୍ରକାଶ, 'ସେ ଯୋଗ୍ୟ ଲୋକ । କିନ୍ତୁ ତା'ର ସ୍ୱାର୍ଥ ଚିନ୍ତା ମଥୁରା ଚିନ୍ତା ବା ଯାଦବମାନଙ୍କର ଚିନ୍ତା ଠାରୁ ବହୁତ ବଡ଼ । କଂସ ଏକଥା ଜାଣେ । ସେ ପ୍ରଦ୍ୟୋତର ଏହି ଦୁର୍ବଳତାକୁ କାମରେ ଲଗେଇବାକୁ ଚାହେଁ, ଆଉ ଲଗଉଛି ବି । ଯାହା ହେଲେ ବି ପ୍ରଦ୍ୟୋତ କଂସକୁ ଛାଡ଼ିବନି । କଂସର କାମ ହିଁ କରିବ । ଭବିଷ୍ୟତରେ ଯଦି ଅନ୍ୟ କିଛି ଅବସ୍ଥା ହୁଏ, ସେ ଅନ୍ୟ କଥା । କିନ୍ତୁ ଏବେ ସେ କଥା ନାହିଁ । ସେ କଂସର ହିଁ ଲୋକ । କିନ୍ତୁ ପ୍ରଦ୍ୟୋତ ବୁଦ୍ଧିମାନ ଲୋକ, ସେ ସଠିକ୍

କଥା ନ ଜାଣିଲେ ବି କଂସର ଅନେକ ଢଙ୍ଗ ବୁଝିପାରେ, ଆଉ ତା କଥାବାର୍ତ୍ତାରୁ ହୁଏତ କିଛି କିଛି କଥା ବୁଝାଯାଇପାରେ ।'

'ତା ହୁଏତ ସମ୍ଭବ । କିନ୍ତୁ ସେ କାହାରି ସାଙ୍ଗରେ ମିଶେନା', କହିଲେ ସୌରଦେବ, 'ମୋ ପାଖକୁ ସେ ଆଦୌ ଆସେନା, ଦୂରେଇ ଦୂରେଇ ରହେ । ଅରିନ୍ଦମ ସାଙ୍ଗରେ ସେ ଏତେ କଥାବାର୍ତ୍ତା କଲା ସେଇଟାହିଁ ଆଶ୍ଚର୍ଯ୍ୟ ।'

'ହଁ ମୋର ମନେହେଲା ଖୁବ୍ ଅନ୍ତରଙ୍ଗ ଭାବରେ ସେ କଥାବାର୍ତ୍ତା କଲା ।' କହିଲା ଅରିନ୍ଦମ । 'ତା'ର ଯେଉଁ ରକ୍ଷୀମାନେ ଚାରିପାଖରେ ଜଗି ରହିଥିଲେ, ତାଙ୍କୁ ଦୂରେଇ ଦେଲା । ଆଉ ତା ବଗିଚାରେ ମୋ' ପାଖରେ ବସି ତା ନିଜ ଲୋକ ପରି କଥାବର୍ତ୍ତା କଲା ।'

'ସେ ଠିକ୍ ଅଛି ।' ଭାନୁପ୍ରକାଶ କହିଲେ, 'ପ୍ରଦ୍ୟୋତ ସାଙ୍ଗରେ ସମ୍ପର୍କ ରଖାଯାଇ ପାରେ । କିନ୍ତୁ ତା ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରି ହେବନି । ମୋତେ ତୁମେ ଦି'ଟା କଥା କୁହ । ପ୍ରଦ୍ୟୋତ ସହିତ ତୁମର କଥାବାର୍ତ୍ତା ବେଳେ ସେ ତୁମକୁ ନିର୍ଦ୍ଦିଷ୍ଟ ଭାବରେ ସାହାଯ୍ୟ କରିପାରିବ ବୋଲି କିଛି କହିଲା କି ?'

'ନାଁ', ଅରିନ୍ଦମ କହିଲା ।

'କିନ୍ତୁ ତୁମ ସହିତ କଥାବାର୍ତ୍ତା ବେଳେ ତୁମର ମନେହେଲା କି ତୁମେ କହୁଥିବା କଥା ସବୁ ସେ ଜାଣେ ?' ଭାନୁପ୍ରକାଶ ପଚାରିଲେ ।

'ହଁ, ମୋର ସେମିତି ମନେହେଲା', ଅରିନ୍ଦମ କହିଲା, 'ମୁଁ ମଥୁରା ଲୋକଙ୍କର ଦୁର୍ଦ୍ଦଶା, କଂସର ଅତ୍ୟାଚାର ବିଷୟରେ ଯେତେ ଯାହା କହିଲି ମୋର ମନେହେଲା ସେ ସବୁ ଜାଣେ, ବା ତା'ର ଜାଣିବାରେ ସେସବୁ ହେଉଛି । କିନ୍ତୁ ସେ ମୋତେ ନିର୍ଦ୍ଦିଷ୍ଟ ଭାବରେ କିଛି କହିଲା ନାହିଁ, କେବଳ ଉପର ଠାଉରିଆ ଭାବରେ ହଁ ହଁ ମାଇଲା ।'

'ହୁଁ' ଭାନୁପ୍ରକାଶ କିଛି ସମୟ ଭାବିଲେ, କହିଲେ, 'ଆଚ୍ଛା ଯେଉଁ କଥାଟା ଏ ପର୍ଯ୍ୟନ୍ତ ଆମ ସମସ୍ତଙ୍କ ପାଖରେ ରହସ୍ୟମୟ ହୋଇ ରହିଛି ସେ ବିଷୟରେ ସେ କିଛି କହିଲା କି ?'

'ଦେବକୀ ଓ ବସୁଦେବଙ୍କ ବିଭାଘର ତ ?' ଅରିନ୍ଦମ ପଚାରିଲା ।

'ହଁ', କହିଲେ ଭାନୁପ୍ରକାଶ ।

'ନାଁ', ଅରିନ୍ଦମ କହିଲା, 'ନୂଆ କଥା କିଛି ନାହିଁ । ଆଗ ପରି ହଇଚଇ ଏତେ ନାହିଁ ସେକଥା କହିଲା । କିନ୍ତୁ ନିଶ୍ଚୟ ହେବ, ସେକଥା ବି କହିଲା । ସେଇ ଆଶ୍ୱିନ ପୂର୍ଣ୍ଣିମା ଦିନ ।'


Digitized by srujanika@gmail.com

ଗୋପା ଏ ପର୍ଯ୍ୟନ୍ତ ଚୁପ ହୋଇ ଶୁଣୁଥିଲେ । ସେ କହିଲେ, 'ହଁ, ମୋର ଯାହା ଖବର ବିଭାଘର ଠିକ୍ ସମୟରେ ହେବ । ବିଭାଘର ପାଇଁ ପ୍ରଥମେ ପ୍ରଥମେ ଯେମିତି ଦଉଡ଼ାଧାପଡ଼ା ଚାଲିଥିଲା ତା ନାହିଁ । ବାହାରକୁ ମନେ ହେବ ସବୁ ଚୁପଚାପ ହୋଇଗଲା । ନାଁ, ତା ନୁହେଁ । ଯୋଗାଡ଼ ଯନ୍ତ ଠିକ୍ ଚାଲିଛି । ବାହାଘର ଦିନ ଗୋଟାଏ ବିରାଟ ଭୋଜି ହେବ । ଯେଉଁଠି ମଥୁରାର ସବୁ ଲୋକେ ଆସି ଖାଇବେ । ସେ ଯୋଗାଡ଼ ଚାଲିଛି । ରାଜପ୍ରାସାଦକୁ ଲାଗି ଯେଉଁ ବିରାଟ ପଡ଼ିଆ ସେଇଠି ଭୋଜି ହେବାର ଠିକ୍ ହୋଇଛି । ପାଖ ରାଜରାଜୁଡ଼ାମାନଙ୍କ ପାଖକୁ ନିମନ୍ତ୍ରଣ ପତ୍ର ଚାଲିଗଲାଣି' । ଗୋପା ଟିକେ ଚୁପ୍ କରିଗଲେ । ତା'ପରେ କହିଲେ, 'କିନ୍ତୁ ସୈନ୍ୟମାନଙ୍କ କଥା ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଅନେକ ସୈନ୍ୟ ତ ଅଛନ୍ତି । ଆହୁରି ଆସୁଛନ୍ତି । ଆହୁରି ଆସିବେ । ପ୍ରାୟ ସବୁ ମଗଧରୁ । ମୁଁ ବୁଝିପାରୁନି ବିଭାଘରରେ ଏତେ ସୈନ୍ୟଙ୍କର ଦରକାର କ'ଣ । ଯେମିତି ବିଭାଘର ପରେ ପରେ କଂସ ପୁଣି ଥରେ ରାଜ୍ୟ ଜୟ କରିବାକୁ ବାହାରିବ ।'

' ତା ହୋଇପାରେ ।' ଭାନୁପ୍ରକାଶ କହିଲେ, 'ମୁଁ ବି ଖବର ପାଇଛି ଆହୁରି ଅନେକ ସୈନ୍ୟ ଆସୁଛନ୍ତି । ଜରାସନ୍ଧଙ୍କର ନିଜ ସେନାପତିମାନେ ଆସୁଛନ୍ତି । ଆହୁରି ଅନେକ ରାକ୍ଷସ ସୈନ୍ୟ ବି । ବିଭାଘରରେ ଏତେ କ'ଣ ଦରକାର ମୁଁ ବି ଜାଣେନା । ବିଭାଘର ତ ଗୋଟାଏ ଶୁଭ କାର୍ଯ୍ୟ, ମଙ୍ଗଳ କାର୍ଯ୍ୟ । କଂସର ଆଉ କିଛି ଉଦ୍ଦେଶ୍ୟ ହୁଏତ ଥିବ ।'

'ଯାହା ମୁଁ ଦେଖୁଛି ଗୋଟାଏ ବିରାଟ ଆକାରରେ ବିଭାଘର ହେବାର ବନ୍ଦୋବସ୍ତ ହେଉଛି', ଗୋପା କହିଲେ, 'ମନେ ହେଉଛି ଦେବକୀ ବସୁଦେବଙ୍କ ବିଭାଘର କଂସ ପାଇଁ ଯେପରି ଗୋଟାଏ ବଡ଼ ସମ୍ମାନର କଥା ।'

'ତା ହେଲେ ତ ଭଲ କଥା ।' କହିଲେ ସୌରଦେବ, 'କିନ୍ତୁ ଏତେ ଏତେ ସୈନ୍ୟ କାହିଁକି, ସେଇଟା ହିଁ ମୋତେ ଖଟଖଟ ଲାଗୁଛି । କଂସ ସୁବିଧା ଲୋକ ନୁହେଁ । ତା'ର ଗୋଟାଏ ମତଲବ ପଛରେ ଦଶଟା ମତଲବ ଲୁଚି ରହିଥାଏ । ସେଇଟା ହିଁ ଅସୁବିଧା ।'

ସତ୍ୟକାମ ଆଲୋଚନାରେ ଯୋଗ ଦେଲେ, କହିଲେ 'ବିଭାଘର ପାଇଁ ସୈନ୍ୟ ସମାବେଶ ହେଉଛି ଏପରି କାହିଁକି ଭାବୁଛ ? ବିଭାଘରରେ ସୈନ୍ୟ ବା ରାକ୍ଷସ ସୈନ୍ୟଙ୍କର କ'ଣ ଦରକାର ? କଂସ କ'ଣ ଆଶଙ୍କା କରୁଛି ଯେ ହୁଏତ ପ୍ରତିରୋଧ ହୋଇପାରେ ? କାହା ପାଖରୁ ? କିଏ କରିବ ? ଯଦୁ ଗୋଷ୍ଠୀ ?'

'ନାଁ, ତା ସମ୍ଭବ ନୁହେଁ', କହିଲେ ସୌରଦେବ, 'କାରଣ ଅଧିକାଂଶ ଯଦୁ

ଗୋଷ୍ଠୀ ଏ ବିଭାଘରକୁ ସ୍ୱାଗତ କରିଛନ୍ତି । ସାଧାରଣ ଭାବରେ ସେମାନେ ଖୁସି ।'

'ତା ଯଦି ହୁଏ ମୁଁ ଭାବୁଛି ବିଭାଘର ସହିତ ଏ ସୈନ୍ୟ ସମାବେଶର କୌଣସି ସମ୍ପର୍କ ନାହିଁ', କହିଲେ ସତ୍ୟକାମ ।'

'ତା ହୁଏତ ହୋଇପରେ', କହିଲେ ଭାନୁପ୍ରକାଶ, 'କିନ୍ତୁ କଂସ ଯାହା ଆମେ ଜାଣୁ ସେଥିରେ ବିଶ୍ୱାସ ହେଉନାହିଁ ଯେ ବିନା ଉଦ୍ଦେଶ୍ୟରେ ସେ ଏତେ ସୈନ୍ୟ ଆଣି ମଥୁରାରେ ଭର୍ତ୍ତି କରୁଛି । ଉଦ୍ଦେଶ୍ୟଟା କ'ଣ ସେଟା ସ୍ପଷ୍ଟ ଭାବରେ ଆଖିକି ଦିଶୁନାହିଁ ଠିକ୍, କିନ୍ତୁ ମୋର ମନେହୁଏ ଉଦ୍ଦେଶ୍ୟଟା ଏତେ ସରଳ ନୁହେଁ ଯେ ଖାଲି ରାଜ୍ୟ ଜୟ କରିବାକୁ ଏ ଆୟୋଜନ । ନାଇଁ ନାଇଁ, ମନରୁ ସନ୍ଦେହ ଯାଉନାହିଁ ।' ଭାନୁପ୍ରକାଶ ଟିକେ ରହିଗଲେ, କହିଲେ, 'ଆମେ ଆଉ ଗୋଟାଏ ଆଡୁ ଆର ବିଚାର କରି ପାରିବା ।'

'କଅଣ ?' ପଚାରିଲେ ସୌରଦେବ ।

'ମୁଁ ଭାବୁଛି କଂସ ଯେ ମଥୁରାରେ ଏତେ ସୈନ୍ୟ ଆଣି ଭର୍ତ୍ତି କରୁଛି - ସବୁ ବାହାର ସୈନ୍ୟ - ପାଞ୍ଚଟା ଜାଗାରେ ପଚାଶଟା - ମଥୁରା ଲୋକଙ୍କ ଉପରେ ଆଉ ପ୍ରଭାବ କ'ଣ ?' କହିଲେ ଭାନୁପ୍ରକାଶ ।

ସତ୍ୟକାମ କହିଲେ, 'ଏ ଠିକ୍ କଥା ।'

ସୌରଦେବ କହିଲେ, 'ହଁ, ଏ ଗୋଟାଏ ନୂଆ ବିଚାର ।'

ଅରିନ୍ଦମ କହିଲା, 'ମଥୁରାରେ ଯେତେ ସୈନ୍ୟ ଅଛନ୍ତି, କମ୍ ନାହାନ୍ତି । ତାଙ୍କ ଅତ୍ୟାଚାର ତୁଲେଇବା ତ ମୁସ୍କିଲ ହେଲାଣି । ଲୋକେ ଜାଣି ଅଧାମରା ହେଇ ଅଛନ୍ତି । କାହା ଘରେ କେହି ଆଉ ନିରାପଦ ନାହାନ୍ତି । କଂସ କାହାରି କଥା ଶୁଣୁନି । ଏଥିରେ ଯଦି ଆଉ ଥୋଡ଼ାଏ ସୈନ୍ୟ ଆସି ମଥୁରାରେ ପଶିବେ, ଅବସ୍ଥା କ'ଣ ହେବ କେଜାଣି ? ମୋର ଯାହା ମନେହୁଏ, କଂସର ଆଉ କିଛି ମତଲବ ଥାଉ କି ନ ଥାଉ, ଆଉ ଥୋଡ଼ାଏ ସେ ଷଣ୍ଢା ଷଣ୍ଢା ସୈନ୍ୟଗୁଡ଼ା ଆସି ରାସ୍ତା ଘାଟରେ ବୁଲିଲେ ଡରିମରି ଲୋକଙ୍କ ଅବସ୍ଥା ସରିଯିବ ।'

'ରୁହ, ରୁହ, କ'ଣ କହିଲ ଅରିନ୍ଦମ - ଡରିମରି ? ମୋର ମନେହୁଏ ସେଇଟା ହିଁ ମତଲବ - ଲୋକଙ୍କୁ ଡରେଇବା ।' କହିଲେ ଭାନୁପ୍ରକାଶ ।

'ଡରେଇବା ? ଛୋଟ କାମ ପାଇଁ ଏତେ ଆୟୋଜନ ? ଶହ ଶହ ସୈନ୍ୟଙ୍କୁ ଆଣି ଭର୍ତ୍ତି କରାଯାଉଛି ?' କହିଲେ ସୌରଦେବ, 'ଲୋକ ତ ଡରି କରି ଅଛନ୍ତି । ଅଧିକ ଡରେଇବା କ'ଣ ଦରକାର ?'

'ଏ ଜରାସନ୍ଧର କୌଶଳ', କହିଲେ ସତ୍ୟକାମ, 'ଲୋକଙ୍କୁ ଏପରି


Digitized by srujanika@gmail.com

ଡରେଇଦବ ଯେ କେହି ଆଉ ମୁହଁ ଖୋଲିବେନି, ଚୁପଚାପ ରହିବେ, ଯାହା ଘଟୁ ।'

'ମୁଁ ଠିକ୍ ସେଇକଥା ଭାବୁଛି ।' କହିଲେ ଭାନୁପ୍ରକାଶ । 'ରାଜ୍ୟ ଜୟଫୟ କଥା ନୁହେଁ । କଂସ ଅଧିକ ସୈନ୍ୟ ଆଣି ଭର୍ତ୍ତି କରୁଛି, ଲୋକେ ଯାହା ଡରିମରି ଅଛନ୍ତି, ଆହୁରି ଡରିଯିବେ, ଯାହା ଘଟୁ, ମୁହଁ ଖୋଲିବେନି, ଚୁପ ରହିବେ ।'

'କିନ୍ତୁ କଅଣ ଘଟିବ ?' କହିଲେ ସୌରଦେବ, 'ଘଟଣାତ ଗୋଟିଏ - ବିଭାଘର । ସେଇଥିପାଇଁ ତ ଯେତେ ଆୟୋଜନ ଆମେ ଶୁଣୁଛୁ ଚାଲିଛି । ଜିନିଷପତ୍ର ଆସୁଛି, ଲୋକ ଯିବା ଆସିବା କରୁଛନ୍ତି, ନିମନ୍ତ୍ରଣ ଯାଉଛି, ଘରଦ୍ୱାର ଠିକ୍ ହେଉଛି - ଯେମିତି ଯେମିତି ଯାହା ବିଭାଘର ପାଇଁ କରାଯାଏ ।'

'ଗୋପା, ତୁମେ କହୁଥିଲ ବାହାରୁ କଂସ ପାଖକୁ ଆସିବା ଲୋକଙ୍କ ସଂଖ୍ୟା କମିଯାଇଛି । ଆଉ ଯେଉଁ ଅଳ୍ପ କେତେକ ଲୋକ ଆସୁଛନ୍ତି ସେମାନଙ୍କର ପୋଷାକପତ୍ର ଢଙ୍ଗଢ଼ାଙ୍ଗ ଅନ୍ୟ ପ୍ରକାର । ସେମାନେ ବି ଅନ୍ୟମାନଙ୍କ ସାଙ୍ଗରେ ମିଶନ୍ତିନି ।' କହିଲେ ଭାନୁପ୍ରକାଶ ।

'ନାଁ, ସେମାନେ ବି ଦିନରେ ଆସନ୍ତିନି, ଅନ୍ଧାର ହେଲାପରେ ଆସନ୍ତି । ଆଉ ସେମାନଙ୍କ ଚଳପ୍ରଚଳ ବି ଦିନରେ ବିଶେଷ ନୁହେଁ, ଅନ୍ଧାର ହେଲା ପରେ । ଅନ୍ତତଃ ମୁଁ ସେମାନଙ୍କୁ ଦିନରେ ବୁଲାବୁଲି କରିବା ଦେଖିନାହିଁ ।' କହିଲେ ଗୋପା ।

'କଂସର ରାଣୀମାନେ ସେମାନଙ୍କ ବିଷୟରେ କିଛି ଜାଣନ୍ତିନି ?' ଭାନୁପ୍ରକାଶ ପଚାରିଲେ ।

'ବୋଧେ ନୁହେଁ ।' ଗୋପା କହିଲେ, 'ସେମାନେ କେବେ କିଛି କହିନାହାନ୍ତି । ମୁଁ ବି କେବେ କିଛି ପଚାରିନି । ତା' ଛଡ଼ା ଅନ୍ତଃପୁର ମହଲ ସାଙ୍ଗରେ ସେମାନଙ୍କର ସମ୍ପର୍କ କିଛି ନାହିଁ । ସେମାନେ କଂସର ନିଜ ମହଲ ପାଖରେ ରହନ୍ତି । ସେଠିକି କାହାରି, ଏପରିକି କଂସର ରାଣୀମାନଙ୍କର ବି, ଯିବାର ଅନୁମତି ନାହିଁ ।'

ଭାନୁପ୍ରକାଶ ହସିଲେ, କହିଲେ, 'ଏ ତ ବଡ଼ ରହସ୍ୟ । ବିଭାଘର ହେବ । ସେଥିପାଇଁ ଦିନ ଠିକ୍ ହୋଇ ଘୋଷଣା କରି ଦିଆଗଲାଣି, ଯୋଗାଡ଼ଯନ୍ତ୍ର ବି ଚାଲିଛି । ତା ସାଙ୍ଗେ ସାଙ୍ଗେ ସେହି ସମୟରେ ସୈନ୍ୟସଂଖ୍ୟା ବି ବଢ଼େଇ ଦିଆଯାଉଛି । ପୁଣି ସେମାନେ ମଥୁରାର ସାଧାରଣ ସୈନ୍ୟ ନୁହନ୍ତି, ବାହାରର ସୈନ୍ୟ, ନୃଶଂସ, ମଥୁରାର ଲୋକଙ୍କ ପ୍ରତି କୌଣସି ସହାନୁଭୂତି ନାହିଁ । ତା ସାଙ୍ଗରେ ଆଉ କଥା । କିଛି ଅଜଣା, ଅଶୁଣା ଅଦ୍ଭୁତ ଲୋକ ଗୋପନରେ ଆସି କଂସ ସାଙ୍ଗରେ ଗୋପନୀୟ ପରାମର୍ଶ ସବୁ କରୁଛନ୍ତି । ଏ କି ବ୍ୟାପାର । ଏସବୁ ତ ଏକାଠି ମିଶୁନି । ସତ୍ୟକାମ, ସୌରଦେବ, ଆପଣମାନେ କହନ୍ତୁ ଏ କି କଥା । ଗୋପା, ଅରିନ୍ଦମ, ତୁମେମାନେ କୁହ ।'

'ଦି ଦିନ ତଳେ ବାପା ହଠାତ୍ ଗୋଟାଏ କଥା କହିଲେ, ମତେ ଟିକେ ଆଶ୍ଚର୍ଯ୍ୟ ଲାଗିଥିଲା । ମୁଁ ଆପଣଙ୍କୁ କହି ନାହିଁ ।' ଅରିନ୍ଦମ କହିଲା ।

'କଅଣ ?'

'ମୋତେ ସେ ହଠାତ୍ ପଚାରିଲେ - ବାହାଘର କେବେ ? ମୁଁ କହିଲି ଆଶ୍ୱିନ ପୂର୍ଣ୍ଣିମା । ସେହିଦିନ ତ ଘୋଷଣା କରାହୋଇଛି । ସେ କହିଲେ, ନାଁ, ମାଘ ପୂର୍ଣ୍ଣିମାରେ ହେବ । ଆଉ ତୁମେମାନେ ସବୁ ସାବଧାନ ରହିବ । ଭାନୁପ୍ରକାଶଙ୍କୁ କହିବୁ । ବହୁତ ଜଂଜାଳ ହେବ ।'

'ବାପାଙ୍କ କଥାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେ ସାଧକ, ଭବିଷ୍ୟତ ଦ୍ରଷ୍ଟା । ସେ ଅନେକ କଥା ଦେଖିପାରନ୍ତି ଯାହାସବୁ ଆମେ ବୁଝିପାରିବା ନାହିଁ । ତାଙ୍କ କଥା ମାନିନେବା ହିଁ ଭଲ ।' କହିଲେ ଭାନୁପ୍ରକାଶ - 'ଗୁରୁଦେବ ବି ସେହି ଉପଦେଶ ଦେଇଛନ୍ତି । ବାପାଙ୍କର ଗୁରୁଦେବଙ୍କ ସହିତ ମାନସିକ ସ୍ତରରେ ଯୋଗାଯୋଗ ହୁଏ ମୁଁ ଜାଣେ । ଦିନେ ଏହିପରି ଏକ ଯୋଗାଯୋଗ ପରେ ସେ ମୋତେ ଯାହା କହିଲେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।'

ଭାନୁପ୍ରକାଶ କିଛି ସମୟ ଚୁପ୍ କରିଗଲେ । ସମସ୍ତେ ଉତ୍ସୁକ ହୋଇ ତାଙ୍କ ମୁହଁକୁ ଚାହିଁ ରହିଛନ୍ତି । ସେ ପୁଣି କହିଲେ, 'ହଁ, ଆଶ୍ଚର୍ଯ୍ୟ ହେବା କଥା । ଗୁରୁଦେବ ବାପାଙ୍କୁ କଂସ ସହିତ ଯୋଗାଯୋଗ କରିବାକୁ ଉପଦେଶ ଦେଇଥିଲେ ।'

'କାହିଁକି ?' ସୌରଦେବ ପଚାରିଲେ ।

'ସେକଥା ମୁଁ କହିପାରିବି ନାହିଁ ।' କହିଲେ ଭାନୁପ୍ରକାଶ, 'ମୋର ମନେହୁଏ ଏପରି କିଛି କଥା କଂସକୁ କହିବା ପାଇଁ ଯାହାକି ତା'ର ଭବିଷ୍ୟତ ଭାଗ୍ୟ ସହିତ ଜଡ଼ିତ । ନାଁ, ନାଁ, ଏଇଟା ସଠିକ୍ କଥା ନ ହୋଇପାରେ । ଗୁରୁଦେବ ତ ସ୍ପଷ୍ଟ କଥା କହି ନ ଥିଲେ । ମୁଁ ତାଙ୍କ ଖଣ୍ଡ ଖଣ୍ଡ କଥାରୁ ଯାହା ବୁଝିଥିଲି । ତେବେ ସେ ବାପାଙ୍କୁ କଂସ ସହିତ ଯୋଗାଯୋଗ କରିବାକୁ କହିଥିଲେ ଏ ବିଷୟରେ ସନ୍ଦେହ ନାହିଁ ।'

'ଅରିନ୍ଦମ, ତୁମେ ଏ ବିଷୟର ଆଉ କ'ଣ ଜାଣ ?' ପଚାରିଲେ ସୌରଦେବ ।

'ନାଁ, ବିଶେଷ କିଛି ନୁହେଁ । ବାପା ତ ଅଧିକାଂଶ ସମୟ ପୂଜା କରନ୍ତି, ଧ୍ୟାନ କରନ୍ତି । କେତେବେଳେ କେମିତି ବାହାରକୁ ଯାଆନ୍ତି । ତେଣୁ କଂସ ସହିତ ତାଙ୍କର କେତେବେଳେ ସମ୍ପର୍କ ହୋଇଥିବ ସେ ନ କହିଲେ ଜାଣିବା ସମ୍ଭବ ନୁହେଁ । ତେବେ କଂସ ସମ୍ପର୍କରେ ଗୋଟାଏ କଥା ବାରମ୍ବାର କହନ୍ତି, ଯେ ଯାହା ଘଟୁଛି ଏହିପରି ଘଟିବ । ତାହାହିଁ ସ୍ଥିର । କଂସ ନିମିତ୍ତ ମାତ୍ର ।'

'ଗୁରୁଦେବ ବା ବାପା ଯେତେବେଳେ ଯାହା କହନ୍ତି ବା କରନ୍ତି ତା' ପଛରେ ସବୁବେଳେ କିଛି ଗୂଢ଼ ଉଦ୍ଦେଶ୍ୟ ଥାଏ । ସେସବୁ ଠିକ୍ ଭାବରେ ବୁଝିବା ଆମ ପକ୍ଷରେ ସମ୍ଭବ ନୁହେଁ', କହିଲେ ଭାନୁପ୍ରକାଶ, 'ଆମେମାନେ ବି ବିଶେଷ ବ୍ୟସ୍ତ ହେବା ଉଚିତ ନୁହେଁ । ବର୍ତ୍ତମାନ ଯାହା ବୁଝିହେଉଛି ଦି ତିନିଟା କଥା ସ୍ପଷ୍ଟ । ପ୍ରଥମ କଥା ହେଲା କଂସର ଅତ୍ୟାଚାରର ମାତ୍ରା ବଢ଼ିଯାଇଛି ଓ ସେ ସମ୍ପୂର୍ଣ୍ଣ ଭାବରେ ଯାଦବମାନଙ୍କୁ ମାଡ଼ି ଦଳି ଭୟଭୀତ କରି ରଖିବାକୁ ଚାହେଁ । ବିଶେଷ କରି ସେ ଯାଦବମାନଙ୍କର ବିଭିନ୍ନ ବଂଶ ଓ ଗୋଷ୍ଠୀକୁ ଭାଙ୍ଗିଭୁଙ୍ଗି ଛିନଛତ୍ର କରିଦେବାକୁ ଚାହେଁ । ଦ୍ୱିତୀୟ କଥା ହେଲା ସେ ଦେବକୀ ବସୁଦେବଙ୍କର ବିଭାଘର ବିଷୟର ଆଗ୍ରହୀ । କିନ୍ତୁ ଏ ବିଭାଘର ବିଷୟରେ ତା'ର ରହସ୍ୟଜନକ ବ୍ୟବହାର ସନ୍ଦେହଜନକ । ମନେ ହେଉଛି ଦେବକୀ ବସୁଦେବଙ୍କର ଏ ବିଭାଘର ସହିତ କଂସର ବ୍ୟବହାରର କିଛି ସମ୍ପର୍କ ଅଛି । ଏ ବିଭାଘର ସରଳ ହୋଇପାରେ, କିନ୍ତୁ କଂସର ଉଦ୍ଦେଶ୍ୟ ସରଳ ନୁହେଁ । ତୃତୀୟ କଥା ଜରାସନ୍ଧ । ତା'ର ମନ୍ତ୍ରୀମାନେ ଏଠି ବସି ରହିଛନ୍ତି, ତା ସୈନ୍ୟମାନେ ମଥୁରାରେ ଭର୍ତ୍ତି ହେଇ ଗଲେଣି । କଂସ ଏକା ନୁହେଁ, ତା ମତଲବ ପଛରେ ଜରାସନ୍ଧ । ଜରାସନ୍ଧ ସମ୍ପୂର୍ଣ୍ଣ ଅଧର୍ମ । କଂସ ବି ସେଇ ଅଧର୍ମ ପାଲଟି ଗଲାଣି । ଆମର ଲଢ଼ିବାଟା ଖାଲି କଂସ ନୁହେଁ, ଉଭୟ କଂସ ଓ ଜରାସନ୍ଧ ବିରୁଦ୍ଧରେ ।'

ସେଦିନ ରାତିରେ ଅନେକ ସମୟ ଧରି ସେମାନଙ୍କର ଆଲୋଚନା ହେଲା । ମଥୁରା ବିଷୟରେ ସମସ୍ତେ ଏକମତ ହେଲେ ଯେ ମଥୁରାର ଅବସ୍ଥା ଅତ୍ୟନ୍ତ ଖରାପ । ଯାଦବମାନେ ସାଧାରଣ ଭାବରେ ଦୁର୍ଦ୍ଦାନ୍ତ, ଉଚ୍ଚାଭିଳାଷୀ, କୌଣସି ନୀତି ନିୟମର ଶୃଙ୍ଖଳା ଭିତରେ ସେମାନେ ବାନ୍ଧି ହୋଇ ରହିବାକୁ ଚାହାନ୍ତି ନାହିଁ ଓ ସେମାନଙ୍କର ଦୈନନ୍ଦିନ ଜୀବନର ଧାରା ମଧ୍ୟ ଖୁବ୍ ଶୃଙ୍ଖଳିତ ନୁହେଁ । କଂସ ଯାଦବମାନଙ୍କର ଏ ଚାରିତ୍ରିକ ଦୁର୍ବଳତା କଥା ଜାଣେ ଓ ସେହି ଯୋଗୁହିଁ ସେ ନିଜକୁ ଜଣେ ଏକଛତ୍ର ଶାସକ ଭାବରେ ପ୍ରତିଷ୍ଠିତ କରିପାରିଛି । ବଡ଼ କଥା କଂସର ଏ ଏକଛତ୍ର ଓ ଅତ୍ୟାଚାରୀ ଶାସନକୁ କିପରି ପ୍ରତିହତ ଓ ପ୍ରତିରୋଧ କରାଯାଇ ପାରିବ । ବନ୍ଧୁମାନେ ବିଭିନ୍ନ ଉପାୟର ଆଲୋଚନା କଲେ, ବିଭିନ୍ନ ପନ୍ଥାର ବିଚାର କଲେ । ସ୍ଥିର ହେଲା ଯେହେତୁ ଦେବକୀ ଓ ବସୁଦେବଙ୍କର ବିଭାଘରର ଦିନ ନିକଟ ହୋଇ ଆସିଲାଣି, ଭାନୁପ୍ରକାଶ ମଥୁରାରେ ରହିବେ, ଭାନୁପ୍ରିୟ ବି, ଓ କଂସର କାର୍ଯ୍ୟ ଉପରେ ନଜର ରଖାଯିବ । ଠିକ୍ ହେଲା ଯାହା ଯାହା ଘଟୁଛି ସେ ବିଷୟରେ ଅରିନ୍ଦମ ଭାନୁପ୍ରକାଶଙ୍କୁ ଖବର ଦେବ ଓ ଭାନୁପ୍ରକାଶ ପରେ ଯାହା ନିର୍ଦ୍ଦେଶ ଦେବେ ସେହିପରି କାର୍ଯ୍ୟ

ହେବ । ସତ୍ୟକାମ ବି ନିକଟରେ ମଗଧ ଫେରିବେ ନାହିଁ ଠିକ୍ ହେଲା । ସେ ବିଭାଘର ସରିବା ପର୍ଯ୍ୟନ୍ତ ସେହି ଗୋପରେ ନନ୍ଦଙ୍କ ପାଖରେ ରହିବେ ଓ ଦରକାର ହେଲେ ଗୋଟିଏ ଛୋଟ ଆଶ୍ରମ କରି ଯୋଗ ଶିକ୍ଷା ଦେଇପାରନ୍ତି । ସେ ମଗଧ ନିଜ ଆଶ୍ରମକୁ ଫେରିଯିବାକୁ ପ୍ରସ୍ତୁତ ଥିଲେ । ଭାନୁପ୍ରକାଶ ମନା କଲେ । କହିଲେ ନାଁ ସେ ରହନ୍ତୁ, ମଗଧ ଓ ଜରାସନ୍ଧଙ୍କ ବିଷୟରେ ତାଙ୍କର ଯେଉଁ ଅଭିଜ୍ଞତା ସେ ହୁଏତ ମଥୁରାରେ ଯା ହବାକୁ ଯାଉଛି ସେଥିରେ କାମରେ ଆସିପାରେ ।

ସୌରଦେବ, ଗୋପା, ଅରିନ୍ଦମ କେହି ଆଉ ରାତିରେ ମଥୁରା ଫେରିଲେ ନାହିଁ । ସୌରଦେବ ମନାକଲେ । କହିଲେ ମଥୁରାର ଯାହା ଅବସ୍ଥା ରାସ୍ତାଘାଟ ରାତିରେ ନିରାପଦ ନୁହେଁ । ସକାଳେ ଫେରିବା ଠିକ୍ ହେବ । ସମସ୍ତେ ନନ୍ଦଙ୍କ ଘରେ ରହିଲେ । ସେଦିନ ବହୁତ ରାତି ପର୍ଯ୍ୟନ୍ତ ଭାନୁପ୍ରକାଶ କୁରୁକ୍ଷେତ୍ରରେ ତାଙ୍କର ଅଭିଜ୍ଞତା କଥା କହିଥିଲେ । ସମଗ୍ର ଆର୍ଯ୍ୟାବର୍ତ୍ତରେ ଯେ ଅବସ୍ଥା ଭଲ ନୁହେଁ ଏଇକଥା ସେ ବିଶେଷ ଭାବରେ କହିଲେ, ଯେଉଁଥିପାଇଁ ଗୁରୁଦେବ ବ୍ୟସ୍ତ, ବିବ୍ରତ । ପ୍ରାଚୀନ ଆର୍ଯ୍ୟଋଷିମାନଙ୍କର ଶୁଦ୍ଧପୂତ ଜୀବନ ଓ ଧର୍ମର ନିର୍ଦ୍ଦେଶ ସବୁ ଲୋକେ ଭୁଲିଗଲେଣି । ପ୍ରାଚୀନ ରାଜାମାନଙ୍କର ଆଦର୍ଶ ବି । ଚାରିଆଡ଼େ ଲୋଭ, ମୋହ, ସ୍ୱାର୍ଥ । ରାଜାମାନେ ସ୍ୱେଚ୍ଛାଚାରୀ, ଅତ୍ୟାଚାରୀ, ଜନମଙ୍ଗଳ ରାଷ୍ଟ୍ରର ଧାରଣା ସ୍ୱପ୍ନ ହୋଇଗଲାଣି । ଏ କେବଳ କଂସ, ଜରାସନ୍ଧ ବା ମଥୁରା, ମଗଧ ନୁହେଁ, ସମଗ୍ର ଆର୍ଯ୍ୟାବର୍ତ୍ତ । ସବୁଆଡ଼େ ଅଧର୍ମ, ଅନ୍ୟାୟ । ଗୁରୁଦେବ ଯଥାସମ୍ଭବ ଚେଷ୍ଟା କରୁଛନ୍ତି ଯେପରି ଆର୍ଯ୍ୟ ଧର୍ମ, ଆର୍ଯ୍ୟ ଜୀବନର ଧାରା ଅବ୍ୟାହତ ରହିବ । ଆମ କାର୍ଯ୍ୟର କଥା ସେ ଜାଣନ୍ତି ଓ ତାଙ୍କର ଆଶୀର୍ବାଦ ଅଛି- ମୋର ବିଶ୍ୱାସ, ଭାନୁପ୍ରକାଶ କହିଥିଲେ, ଆମର ଚେଷ୍ଟା ଫଳବତୀ ହେବ ଓ ନିଶ୍ଚୟ ଆମେ କଂସ ଓ ଜରାସନ୍ଧର ରାକ୍ଷସ ମୁଠାରୁ ମଥୁରା ଓ ମଗଧକୁ ମୁକ୍ତ କରିପାରିବା ।

ଅରିନ୍ଦମର ମନେହେଲା ଗୋଟିଏ ନୂତନ ଶକ୍ତି ଓ ଉଦ୍ୟମରେ ତା'ର ମନପ୍ରାଣ ପୂର୍ଣ୍ଣ ହୋଇଗଲା ।

ବେଶୀଦିନ ଅପେକ୍ଷା କରିବାକୁ ହେଲା ନାହିଁ, ଖବର ଆସିବାକୁ ଆରମ୍ଭ କଲା । ପ୍ରଥମ ଖବର ଆସିଲା ଅରିନ୍ଦମ ପାଖରୁ । ତା'ର ସାଙ୍ଗମାନଙ୍କର ଖବର । ମଥୁରାରେ ମଗଧର ସୈନ୍ୟମାନଙ୍କର ଯେଉଁ ସ୍ୱେଚ୍ଛାଚାରିତା ସେ ଆଶ୍ଚର୍ଯ୍ୟଜନକ ଭାବରେ କମିଯାଇଛି । ସେମାନେ ରାସ୍ତାଘାଟ, ଗଳିକନ୍ଦିରେ ବୁଲୁଛନ୍ତି । କିନ୍ତୁ ଆଗପରି ଦିନରାତି ସବୁ ସମୟରେ ନୁହେଁ, ନିର୍ଦ୍ଦିଷ୍ଟ ସମୟରେ, ରାତିରେ ପ୍ରାୟ ଆସୁ ନାହାନ୍ତି । ଯାହା ଖବର ମିଳେ ସେମାନେ ଅଧିକାଂଶ ସମୟ ସେମାନଙ୍କ ପାଇଁ ନୂଆ

ତିଆରି ହୋଇଥିବା ବସ୍ତିମାନଙ୍କରେହିଁ ରହୁଛନ୍ତି । ନାଚ, ଗୀତ, ତାମସାରେ ସମୟ କଟୁଛି । ବଡ଼ କଥା ସେମାନଙ୍କର ଖରାପ ବ୍ୟବହାରର ମାତ୍ରା ବି କମି ଯାଇଛି । ଆଗେ ଯେମିତି ସେମାନେ କଥା ପଦକରେ ଚିହିଁକି ଉଠୁଥିଲେ, ବିନା କାରଣରେ ଲୋକଙ୍କୁ ଅପମାନିତ କରୁଥିଲେ, ଭୟଭୀତ କରୁଥିଲେ, ସେସବୁ କମିଛି । କିନ୍ତୁ ତା ବୋଲି ସେମାନେ ଯେ ସାଧୁସନ୍ଥ ହୋଇଯାଇଛନ୍ତି ତା ନୁହେଁ । ସେମାନେ ଖରାପ ବ୍ୟବହାର ଆଗପରି କରୁଛନ୍ତି, ସ୍ତ୍ରୀ ଲୋକ ଦେଖିଲେ ନିର୍ଲଜ୍ଜଙ୍କ ପରି ହେଉଛନ୍ତି । ହେଲେ ଆଗପରି ଏତେ ଲଗାମଛଡ଼ା ନୁହେଁ । ମନେ ହେଉଛି ସେମାନଙ୍କ ଢଙ୍ଗଢ଼ାଙ୍ଗ ଉପରେ ଯେମିତି ଗୋଟା ଘୋଡ଼ଣୀ ପକାଯାଇଛି, ପଛରୁ ଯେମିତି କିଏ ଟାଣି ଧରୁଛି ।

ଅରିନ୍ଦମ ନିଜେ ଖବର ଦେବାକୁ ଯମୁନା ପାରିହୋଇ ଭାନୁପ୍ରକାଶଙ୍କ ପାଖକୁ ଯାଇଥିଲା । ଭାନୁପ୍ରକାଶ ସବୁ ଶୁଣି କହିଲେ, 'ଠିକ୍ ଅଛି । ମୋର ଗୋଟା ଯୋଡ଼ା ପ୍ରଶ୍ନର ଉତ୍ତର ଦିଅ । ପ୍ରଥମ କଥା, ମଗଧର ସୈନ୍ୟମାନଙ୍କ ସହିତ ମଥୁରାର ସୈନ୍ୟମାନେ ଆସୁଛନ୍ତି କି ?'

'ନାଁ', ଅରିନ୍ଦମ କହିଥିଲା, 'ଆଗେ କେତେବେଳେ କେମିତି ଆସୁଥିଲେ, ଏବେ ଆଦୌ ଆସୁନାହାନ୍ତି । ସୈନ୍ୟମାନଙ୍କର ବସ୍ତିରେ ବି ଆମେ ତାଙ୍କୁ ଦେଖୁନୁ । ମନେ ହେଉଛି ସେମାନଙ୍କୁ ଅନ୍ୟ କେଉଁଆଡ଼କୁ ଘୁଞ୍ଚେଇ ନିଆଯାଇଛି ।' 'ତା ମାନେ କଂସ ଯେକୌଣସି କାରଣରୁ ହେଉ ମଗଧର ସୈନ୍ୟଙ୍କୁ ମଥୁରାର ସୈନ୍ୟଙ୍କ ଠାରୁ ବେଶୀ ବିଶ୍ୱାସ କରୁଛି ।' କହିଲେ ଭାନୁପ୍ରକାଶ, 'ମନେହେଉଛି କଂସ ଯାହା କରିବାକୁ ଚାହେଁ ସେ ମଥୁରାର ବିରୁଦ୍ଧ କାମ । ସେହି ଯୋଗୁଁ ମଥୁରାର ସୈନ୍ୟଙ୍କୁ ଅବିଶ୍ୱାସ । ସେମାନେ ହୁଏତ ବିରୋଧ କରିପାରନ୍ତି । ଆଚ୍ଛା, ଏ ସୈନ୍ୟମାନେ କ'ଣ ମଥୁରାର ସବୁ ମହଲାକୁ ସମାନ ଭାବରେ ଯାଉଛନ୍ତି ?'

'ନାଁ', ଅରିନ୍ଦମ ଜଣେଇଥିଲା, 'ସମାନ ଭାବରେ ନୁହେଁ । ମଥୁରାର ସମ୍ଭ୍ରାନ୍ତ ଅଞ୍ଚଳ, ଯେଉଁଠି ମୁଖ୍ୟତଃ ଗୋଷ୍ଠୀ ମୁଖ୍ୟମାନେ ରହନ୍ତି, ସେ ଅଞ୍ଚଳକୁ ସେମାନଙ୍କର ଯିବା ଆସିବା ବେଶୀ । ଦିନ ରାତି ପ୍ରାୟ ସବୁ ସମୟରେ ଯାଉଛନ୍ତି । ମନେ ହେଉଛି ଗୋଷ୍ଠୀ ମୁଖ୍ୟମାନଙ୍କ ଉପରେ ସବୁବେଳେ ନଜର ରଖାଯାଇଛି । କିନ୍ତୁ ସାଧାରଣ ଲୋକଙ୍କ ଅଞ୍ଚଳ ଉପରେ ନଜର ଖୁବ୍ ବେଶୀ ନାହିଁ । ମଝିରେ ମଝିରେ ଯାଉଛନ୍ତି ଆସୁଛନ୍ତି । ରାତିରେ ପ୍ରାୟ ଯାଉ ନାହାନ୍ତି ।'

ଭାନୁପ୍ରକାଶ ଶୁଣି କିଛି ସମୟ ଚୁପ ରହିଥିଲେ । ପରେ କହିଥିଲେ ସୈନ୍ୟମାନଙ୍କର ଏ ଅଲଗା ଅଲଗା ବ୍ୟବହାରର ଗୋଟିଏ ଅର୍ଥ ହୋଇପାରେ । କଂସ ଆଶଙ୍କା କରୁଛି ଗୋଷ୍ଠୀ ମୁଖ୍ୟମାନେ ତା'ର କାର୍ଯ୍ୟକୁ ବିରୋଧ କରିପାରନ୍ତି ।

ସେଥିପାଇଁ ଏ ସତର୍କତା, ଭୟଭୀତ କରିବାର ଗୋଟାଏ କୌଶଳ । ସାଧାରଣ ଲୋକଙ୍କଠାରୁ କଂସ କୌଣସି ବିରୋଧିତା ଆଶା କରୁନାହିଁ ବା ଏପରି ବିରୋଧିତାକୁ ବିଶେଷ ଗୁରୁତ୍ୱ ଦେଉନାହିଁ, ଏକଥା ବୁଝିହେଉଛି । କେବଳ ଗୋଷ୍ଠୀ ମୁଖ୍ୟ । କିନ୍ତୁ କାହିଁକି ? କେଉଁଥିପାଇଁ ବିରୋଧିତା । ଗୋଷ୍ଠୀ ମୁଖ୍ୟମାନେ ତ ଦେବକୀ ବସୁଦେବଙ୍କର ବିଭାଘରରେ ସହମତି ଜଣେଇ ସାରିଛନ୍ତି । – 'ଆଚ୍ଛା, ଆଉ ଗୋଟିଏ କଥା । ତୁମେ ଅରିନ୍ଦମ କହୁଥିଲ ଯେ ଏ ସୈନ୍ୟମାନଙ୍କର ଢଙ୍ଗଢ଼ାଙ୍ଗ କିଛି ବଦଳି ଯାଇଛି । ଠିକ୍ କି ? ନାଁ ଖାଲି ଉପର ଦେଖାଣିଆ ?'

'କହିବା ମୁସ୍କିଲ', କହିଲା ଅରିନ୍ଦମ, 'ତେବେ ସେମାନେ ଆଗେ ଯେମିତି କୁତ୍ସିତ କୁତ୍ସିତ ବ୍ୟବହାର କରୁଥିଲେ, କଥାବାର୍ତ୍ତା ଢଙ୍ଗଢ଼ାଙ୍ଗରେ ସାମାନ୍ୟ ଭଦ୍ରାମୀ ନ ଥିଲା, ସେ କିଛି କମିଛି । ସେମାନେ କେତେବେଳେ କେମିତି ଛିଡ଼ା ଛିଡ଼ା ସେମାନଙ୍କ ଭାଷାରେ ମୁହଁ ହାତ ହଲେଇ କଥାବାର୍ତ୍ତା କରିବାକୁ ଚେଷ୍ଟା କରୁଛନ୍ତି, ଆଉ ଆଶ୍ଚର୍ଯ୍ୟ, ହସୁଛନ୍ତି ବି । କିନ୍ତୁ ସେ ପୁରୁଣା ବଦମାସି – ସ୍ତ୍ରୀଲୋକ ଉଠେଇ ନବା, ପିଲା ନିଖୋଜ ହୋଇଯିବା, ସେସବୁ ଯେ ନ ଘଟୁଛି ତା ନୁହେଁ, ବିଶେଷ କରି ସାଧାରଣ ଲୋକଙ୍କ ମହଲାରେ, କିନ୍ତୁ ସେ ଆଗ ପରି ଶୁଣାଯାଉନି ।'

ଭାନୁପ୍ରକାଶ ମନଦେଇ ଶୁଣିଥିଲେ । କହିଥିଲେ, 'ହଁ, ଗୋଟିଏ କଥା ବୁଝିହେଉଛି । କଂସ ତା ବ୍ୟବହାର ବଦଳେଇବାକୁ ଚେଷ୍ଟା କରୁଛି, ଯେପରି ବାହାରକୁ ମନେ ହେବ ସେ ଖୁବ୍ ବିଚାରବନ୍ତ ଲୋକ, ତା'ର କୌଣସି ମନ୍ଦ ଉଦ୍ଦେଶ୍ୟ ନାହିଁ, ସେ ମଥୁରାର ଭଲ ଚାହେଁ । କିନ୍ତୁ କାହିଁକି ? ଦେବକୀ ବସୁଦେବ ବିଭାଘର ସହିତ ଆ'ର ସମ୍ପର୍କ କ'ଣ ? ଏ ତ କଂସର ସ୍ୱାଭାବିକ ପ୍ରକୃତି ନୁହେଁ । ସେ ଗୋଷ୍ଠୀ ମୁଖ୍ୟମାନଙ୍କ ପାଖରୁ କି ପ୍ରକାର ପ୍ରତିରୋଧ ଆଶଂକା କରୁଛି ?'

ଅରିନ୍ଦମ ଭାନୁପ୍ରକାଶଙ୍କ ପାଖରୁ ଫେରି ଆସିଥିଲା । ଭାନୁପ୍ରକାଶଙ୍କ ପରି କଂସର ବ୍ୟବହାରର ଅସଙ୍ଗତି ତାକୁ ବି ଖଟଖଟ ଲାଗିଥିଲା । କଂସର କିଛି ଗଭୀର ଉଦ୍ଦେଶ୍ୟ ଅଛି – ଭାନୁପ୍ରକାଶଙ୍କ ବିଚାର ଠିକ୍ । କିନ୍ତୁ କ'ଣ ସେ ଉଦ୍ଦେଶ୍ୟ ? ଭାବିଲା ବାପାଙ୍କୁ ପଚାରିବ କି ? ବାପା କିଛି ସ୍ପଷ୍ଟ କଥା କହିବେନି । ତାଙ୍କର କଥା ପ୍ରହେଳିକା ପରି, ତଥାପି ତାଙ୍କୁ ପଚରାଯାଇ ପାରେ । ଦିନେ ସକାଳେ ବାପାଙ୍କ ପୂଜା ସରିବା ପରେ ସେ ତାଙ୍କୁ ସେଇକଥା ପଚାରିଲା । କହିଲା କଂସର ବ୍ୟବହାରରେ ପରିବର୍ତ୍ତନ ଆଶ୍ଚର୍ଯ୍ୟ ଲାଗୁଛି । ଏ ତ ତା'ର ସ୍ୱାଭାବିକ ପ୍ରକୃତି ନୁହେଁ । ବାପା ଖାଲି କହିଥିଲେ – କଂସର ସବୁ କାମ ପଛରେ ଗୋଟାଏ ଉଦ୍ଦେଶ୍ୟ ଥାଏ, ଏଥିରେ ବି ଅଛି । ଏଥିରେ ତୁମେମାନେ ବ୍ୟସ୍ତ ହେବାର ଦରକାର ନାହିଁ । ଭାନୁପ୍ରକାଶଙ୍କୁ କହିବୁ

ସେ ସାବଧାନ ରହୁ ଓ ସବୁଆଡ଼କୁ ନଜର ରଖୁ । ଦେବକୀ ବସୁଦେବ ବିଭାଘର ଗୋଟାଏ ସାଧାରଣ ବିଭାଘର ନୁହେଁ । ବିଭାଘର ପରେ ପରେ ଘଟଣା ବଦଳିଯିବ । ବାପା ଆଉ କିଛି କହି ନ ଥିଲେ । କିନ୍ତୁ ବାପାଙ୍କର ଶେଷ କଥାଟା ଅରିନ୍ଦମକୁ ବିଚଳିତ କଲା । ସବୁ ଘଟଣା ବଦଳିଯିବ ମାନେ କ'ଣ ? କ'ଣ ବଦଳିବ ? ସେ ଭାନୁପ୍ରକାଶଙ୍କୁ ବି କହିଥିଲା । ସେ ବି ବିଚଳିତ ହେଲେ । ବାପା ଏକଥା କାହିଁକି କହିଲେ ? ଠିକ୍ ହେଲା ବାପାଙ୍କ କଥା ମାନିନେବା ଭଲ । ବାହାଘରରେ ନିଶ୍ଚୟ କିଛି ଘଟିବ । ସମୟକ୍ରମେ ତା ବୁଝାଯିବ । ସେମାନେ ଆଗ ପରି ସାବଧାନ ଓ ସତର୍କ ରହିବା ଉଚିତ ।

ଏହି ଖବର ପରେ ପରେ ଦ୍ୱିତୀୟ ଖବର ଆସିଲା । ସୌରଦେବଙ୍କ ଠାରୁ । ଏ ଖବର ନିର୍ଦ୍ଦିଷ୍ଟ ଭାବରେ କଂସର ବ୍ୟବହାର ବିଷୟରେ । ଭାନୁପ୍ରକାଶ ପ୍ରଥମେ ଖବର ପାଇଲେ ଯେ କଂସ ଅଳ୍ପ କେତେଜଣ ମୁଖିଆଙ୍କୁ ନିଜ ଘରକୁ ଡାକିଛି । ଏ ସମସ୍ତେ କଂସର ଜଣାଶୁଣା ସମର୍ଥକ, ଓ ଆଲୋଚନା ବି କଂସର ଭିତର ନଅରରେ ଗୋପନୀୟ ଭାବରେ ହେଲା । ଆଲୋଚନା କଅଣ ବା କେଉଁ ବିଷୟରେ ହେଲା ଠିକ୍ ଜଣାଗଲା ନାହିଁ । କିନ୍ତୁ ଆଲୋଚନା ବହୁତ ସମୟ ଧରି ହୋଇଥିଲା ଓ ଆଲୋଚନା ପରେ ମୁଖିଆ ମାନେ ବେଶ୍ ପ୍ରଫୁଲ୍ଲ ଥିଲେ ବୋଲି ମନେ ହୋଇଥିଲା ଓ ସମସ୍ତେ ଖୋଲାଖୋଲି କଂସର ପ୍ରଶଂସା କରୁଥିଲେ । ଏହା ପରେ ଖବର ଆସିଲା କଂସ ସବୁ ମୁଖିଆମାନଙ୍କର ଗୋଟାଏ ବଡ଼ ସଭା ଡାକିଛି, ତା'ର ବାହାର ନଅରରେ, ସଭାଘରେ, ଆଉ ସେ ସଭାରେ ମଥୁରାରେ ଥିବା ଜରାସନ୍ଧଙ୍କର ସବୁ ମନ୍ତ୍ରୀମାନେ ଯୋଗଦେବେ, ଏପରିକି ମଗଧରୁ ଆଉ କିଛି ନୂଆ ମନ୍ତ୍ରୀ ଆସି ଯୋଗଦେଇ ପାରନ୍ତି । ସୌରଦେବ ନିଜେ ଯାଇଥିଲେ ଭାନୁପ୍ରକାଶଙ୍କୁ ଏକଥା ଜଣେଇବା ପାଇଁ । ସଭାପାଇଁ ବେଶ୍ ଯୋଗାଡ଼ଯନ୍ତ୍ର ଚାଲିଛି । ଖାଲି ସଭା ନୁହେଁ, ସଭାପରେ ଖିଆପିଆ ବି ଅଛି । ଦୁଇ ବନ୍ଧୁ ଯାହା ଖବର ଆସିଥିଲା ତା ଉପରେ ନିର୍ଭର କରି କିଛି ଆଲୋଚନା କଲେ । ଅରିନ୍ଦମକୁ ବି ଡକେଇ ପଠେଇଲେ । ଯାହା ମନେ ହେଉଛି କଂସ ଖୁବ୍ ଖୋଲାମେଲା ହୋଇଯାଇଛି । ସେ ଜାଣେ ସବୁ ମୁଖିଆମାନେ ତା'ର ସମର୍ଥକ ନୁହନ୍ତି । ଅନେକ ଖୋଲାଖୋଲି ତା ବିରୁଦ୍ଧରେ କହନ୍ତି, ପ୍ରତିବାଦ କରନ୍ତି । ତଥାପି ସେ ସମସ୍ତଙ୍କୁ ଏକାଠି ନିଜ ନଅରକୁ ଡାକିଛି, ଆପ୍ୟାୟନ କରିବାକୁ ଚାହୁଁଛି । ମୋଟ କଥା ସେ ଯେପରି ଚାହୁଁଛି ସମସ୍ତଙ୍କ ସାଙ୍ଗରେ ଭଲ ସମ୍ପର୍କ ରଖିବା ପାଇଁ । ଅନ୍ତତଃ ତା ଲୋକ ଯା କହି ବୁଲୁଛନ୍ତି, ସେ ବାହାଘର ପରି ଗୋଟାଏ ଭଲ କାମ ଆଗରୁ, ବିଶେଷ କରି ବସୁଦେବ ଦେବକୀଙ୍କର ବିଭାଘର ପରି ଗୋଟାଏ ଏତେ ବଡ଼ ବିଭାଘର ଆଗରୁ, କାହାରି

ସାଙ୍ଗରେ ଶତ୍ରୁତା ରଖିବାକୁ ଚାହେଁନା, ସମସ୍ତେ ତା'ର ବନ୍ଧୁ । ଏ ବିଭାଘର ଖାଲି ଗୋଟାଏ ବଡ଼ ବିଭାଘର ବୋଲି ନୁହେଁ, ମଥୁରାର ସବୁଠୁ ବଡ଼ ବିଭାଘର ଭାବରେ ଲୋକେ ଯେମିତି ମନେ ରଖିବେ, ଏଇଆ ସେ ଚାହେଁ । ତେଣୁ ବିଭାଘରରେ କୌଣସି ଛୋଟମୋଟ କଥା ନୁହେଁ, ଯାହା ହେବ ଆଖି ଖୋସି ହେଇଗଲା ପରି ଆଡ଼ମ୍ବରରେ ହେବ, ଏହାହିଁ ତା'ର ଇଚ୍ଛା । ସେଥିପାଇଁ ତା'ର ଶଶୁର ଘର ମଗଧରୁ ଲୋକ ଆସୁଛନ୍ତି, ପାଖ ଆଖ ରାଜା ରାଜୁଡ଼ା, ଧନୀ ସମ୍ଭ୍ରାନ୍ତ ଲୋକମାନଙ୍କୁ ନିମନ୍ତ୍ରଣ କରାଯାଇଛି । ଆଉ ମଥୁରାରୁ ସମସ୍ତେ ଆସିବେ, ଛୋଟ ବଡ଼, ଧନୀ ଦରିଦ୍ର, ସମସ୍ତେ । ଏପରି ଆଡ଼ମ୍ବର ହେବ ଯାହା କି ମଥୁରାରେ କେବେ ହୋଇ ନ ଥିଲା, କି କେବେ ହେବ ନାହିଁ । ବାହାଘରର ଖିଆପିଆ ଗୋଟାଏ ଦିନରେ ସରିବ ନାହିଁ, ଏକଥା ସେମାନେ କହୁଛନ୍ତି । ବାହାଘର ସରିବା ପରେ ବି ତିନିଦିନ ପର୍ଯ୍ୟନ୍ତ ଚାଲିବ, ଆଉ ମଥୁରାର ସମସ୍ତେ ଆସି ଖାଇବେ । ଦେବକୀ ବସୁଦେବଙ୍କର ବିଭାଘର ପାଇଁ କଂସ ନିଜ ରାଜକୋଷ ପୂରା ମେଲା କରିଦେବାକୁ ଚାହେଁ । କେହି ଯେପରି ନ କହନ୍ତି ନିଜ ଭଉଣୀର ବିଭାଘର ପାଇଁ କଂସର ଆଗ୍ରହ ନାହିଁ, ସେ ରଖିଥୋଇ ଖର୍ଚ୍ଚ କରୁଛି । ତା ଛଡ଼ା ଅନ୍ୟ କଥା ଅଛି । ଏ ଖାଲି ବାହାରକୁ ଦେଖେଇଲା ପରି ବ୍ୟବହାର ନୁହେଁ । ଯେତେବେଳେ ସବୁ ମୁଖିଆମାନେ ଏକାଠି ହେବେ, ମତାମତ ଦେବେ, ଆଲୋଚନା କରିବେ, ସେମାନେ କିଏ କେମିତି, କଂସ ପ୍ରତି ସେମାନଙ୍କର ଆନ୍ତରିକ ମନୋଭାବ କ'ଣ, କିଏ ଶତ୍ରୁ କିଏ ମିତ୍ର ବୁଝିବା ସହଜ ହେବ । ଏ ଗୋଟାଏ ବଡ଼ ଲାଭ ।

କଥା ସେତିକିରେ ରହିଲା ନାହିଁ । ଅନ୍ୟ ଖବର ଆସିଲା । ଗୋପାଙ୍କ ପାଖରୁ । ଦିନ ଥାଏ । ଯମୁନା ଘାଟର ଦେବୀଙ୍କ ମନ୍ଦିରରେ ଗୋପା ନିଜେ ଆସି ପହଞ୍ଚିଥିଲେ । ଉଦ୍ଦେଶ୍ୟ କଂସର ରାଣୀମାନଙ୍କ ପକ୍ଷରୁ ଦେବୀଙ୍କୁ ପୂଜା ଦିଆଯିବ । ଖବର ପାଇ ଭାନୁପ୍ରକାଶ, ସୌରଦେବ ଓ ଅରିନ୍ଦମ ସମସ୍ତେ ଆସିଥିଲେ । ଗୋପାଙ୍କ ସାଙ୍ଗରେ ରକ୍ଷୀ ଥିଲେ । ସେ ବେଶୀ ସମୟ ରହି ନ ଥିଲେ । କିନ୍ତୁ ସେ ଯାହା ଖବର ଦେଇଗଲେ ସେ ଖବରର ଗୁରୁତ୍ୱ ଭାନୁପ୍ରକାଶ ପ୍ରଭୃତି ଅନେକ ସମୟ ଧରି ବିଚାର କରିଥିଲେ । ଏ ଠିକ୍ ଖବର ନୁହେଁ, ଗୋପାଙ୍କର ଗୋଟାଏ ଆକସ୍ମିକ ଆବିଷ୍କାର । ସେ ଅନ୍ତଃପୁରର ଚୌହଦି ଛାଡ଼ି କଂସ ନଅରରେ ଯେଉଁ ଅଞ୍ଚଳରେ ତା'ର ଅତିଥି ତାନ୍ତ୍ରିକ ଓ ଜ୍ୟୋତିଷମାନେ ରହୁଛନ୍ତି ସେହି ଅଞ୍ଚଳକୁ କୌଣସି କାମରେ ଯାଇଥିଲେ । ଏ ନଅରର କିଛି ନିଛାଟିଆ ଜାଗା, ଲୋକ ଚଳପ୍ରଚଳ ପ୍ରାୟ ନାହିଁ । ସେପାଖୁ ଲୋକ ଯିବା ବି ମନା । ଗୋପା ଶୀଘ୍ର ଶୀଘ୍ର ନିଜର କାମ ସାରି ଫେରି ଆସିବାକୁ ବ୍ୟସ୍ତ

ଥିଲେ । କିଛି ଦୂରରେ ଗୋଟାଏ ଛୋଟ ତୋଟା, ଗଛ ବୃକ୍ଷରେ ଢାଙ୍କି ହୋଇ ରହିଥାଏ, ତୋଟା ସେ ପାଖକୁ ତାନ୍ତ୍ରିକମାନଙ୍କର ରହିବା ସ୍ଥାନ । ଗୋପା ତୋଟା ପାଖରେ ପହଞ୍ଚିବା ବେଳକୁ ତାଙ୍କର ମନେହେଲା କିଏ ଯେପରି କୋଉଠି କଥା କହୁଛି । ସେ ଆଶ୍ଚର୍ଯ୍ୟ ହୋଇ ଚାରିପାଖକୁ ଚାହିଁଲେ । କେହି କୁଆଡ଼େ ନାହିଁ, ତାଙ୍କୁ ଭୟ ବି ଲାଗିଲା । ଦିନ ଥିଲା । କିନ୍ତୁ ତୋଟା ଭିତରଟା ଛାଇ ହୋଇଗଲାଣି । ସେ ଭାବିଲେ ଆଉ ଆଗକୁ ଯିବେ କି ନାହିଁ । ସେ ଛିଡ଼ା ହୋଇଛନ୍ତି କି ନାହିଁ, କଥା ପୁଣି ଶୁଭିଲା । ସ୍ପଷ୍ଟ ଭାବରେ । କିଏ କ'ଣ କହୁଛି । ଭାଷା ବୁଝି ହେଲା ନାହିଁ, କିନ୍ତୁ କିଏ କ'ଣ କହୁଛି, ସାଧାରଣ ଭାବରେ ଲୋକ ଯେମିତି କଥା କହନ୍ତି, ସେମିତି । ସେ ପୁଣି ଚାରିଆଡ଼କୁ ଚାହିଁଲେ । ନାଁ କେହି କୁଆଡ଼େ ନାହାନ୍ତି । ଆଶ୍ଚର୍ଯ୍ୟ ! କଥା ଶୂନ୍ୟରୁ ଶୁଭୁଛି । ତାଙ୍କ ମନରେ ଡର ପଶିଗଲା । ତାଙ୍କର ସନ୍ଦେହ ରହିଲାନି ଏ ଭୌତିକ ବ୍ୟାପାର । କିନ୍ତୁ ମନରେ ପୁଣି ସନ୍ଦେହ ହେଲା ଏ ଅଞ୍ଚଳରେ ଭୂତପ୍ରେତ ଭୟ ଥିବା କଥା ତ ସେ କେବେ କାହାରି ପାଖରୁ ଶୁଣି ନାହାନ୍ତି । କିନ୍ତୁ ସେ ତ ସ୍ପଷ୍ଟ କଥା ଶୁଣି ପାରୁଛନ୍ତି, ଶୂନ୍ୟରୁ କଥା ଶୁଭିଲା ପରି ଶୁଭୁଛି, ସେ ବୁଝନ୍ତୁ ବା ନ ବୁଝନ୍ତୁ । ସେ ଠିକ୍ କଲେ ସେଠି ଆଉ ବେଶୀ ସମୟ ରହିବା ଉଚିତ ନୁହେଁ, ଭଲ ମନ୍ଦ ଅଛି । କାମ ଅଧା ରହୁ ପଛେ ସେ ଫେରିଯିବାକୁ ଠିକ୍ କଲେ ଓ ଫେରିଗଲେ । ସବୁକଥା ଶୁଣିସାରି ଭାନୁପ୍ରକାଶ ପଚାରିଥିଲେ ତାପର କ'ଣ ହେଲା ? ଆଉ କିଛି ଜଣାଗଲା କି ? ନାଁ, ଆଉ କିଛି ନାହିଁ । ଗୋପା ତାଙ୍କର ଜଣେ ଦି'ଜଣ ଚିହ୍ନା ଲୋକଙ୍କୁ ଏକଥା କହିବାକୁ ଆରମ୍ଭ କରିଥିଲେ । କିନ୍ତୁ ସେମାନେ ଶୁଣୁ ଶୁଣୁ ବିରକ୍ତ ହେଲେ, କହିଲେ ସେ ପାଖକୁ କେହି ଯାଆନ୍ତି ନାହିଁ, କଂସଙ୍କର କଡ଼ା ଆଦେଶ ସେପାଖକୁ କେହି ଯିବେନି, ଗଲେ କଂସଙ୍କର ଅନୁମତି ନେଇ ଯିବାକୁ ହେବ, ତୁମେ ତାଙ୍କ ଅନୁମତି ନ ନେଇ ଗଲ କାହିଁକି ? କାମ ଯାହା ଥାଉ ତୁମେ ଆଉ ସେ ପାଖକୁ ଯିବନି । ଗୋପା ପ୍ରଥମେ ଏ ଘଟଣାଟାକୁ ଅଦରକାରୀ ଭାବି ଭାନୁପ୍ରକାଶଙ୍କୁ କୌଣସି ଖବର ନ ଦେବାକୁ ଠିକ୍ କରିଥିଲେ । କିନ୍ତୁ ଭାନୁପ୍ରକାଶଙ୍କର ଗୋଟାଏ କଥା ତାଙ୍କ ମନକୁ ଅସ୍ଥିର କଲା । ଭାନୁପ୍ରକାଶ କହିଥିଲେ ଯେ ଘଟଣା ଯେତେ ଛୋଟ ହେଲେ ବି, ଯେତେ ଅଦରକାରୀ ଭାବିଲେ ବି, ଖବର ଦେବ । ସେ ଭାନୁପ୍ରକାଶଙ୍କୁ ଜଣେଇ ଦେବାକୁ ଠିକ୍ କଲେ । କିନ୍ତୁ ଏ କଥାଟାର ଆଗପଛ ସେ ବୁଝିପାରୁ ନାହାନ୍ତି - ଶୂନ୍ୟରୁ କଥାଟା କେମିତି ଆସିବ ? ଭାନୁପ୍ରକାଶ ବି କହିଥିଲେ ସେ ବି ବୁଝିପାରୁ ନାହାନ୍ତି । କିନ୍ତୁ ମନେହେଉଛି କଥାଟାର ଗୁରୁତ୍ୱ ଅଛି ।

ଏ ଖବର ସହିତ ମିଶି ଗୋପାଙ୍କ ପାଖରୁ ଆଉ ଗୋଟାଏ ଖବର ବି ଆସିଲା ।


Digitized by srujanika@gmail.com

ସେ କଂସର ଇଚ୍ଛା ବିଷୟରେ । ବାହାଘରକୁ ଆଶା କରାଯାଉଛି ଅନେକ ଲୋକ ଆସିବେ, ଖାଲି ମଥୁରା ନୁହେଁ, ଦୂରଦୂରାନ୍ତରରୁ ବି । କଂସର କଡ଼ା ହୁକୁମ କାହାରି ଯେମିତି କିଛି ଅସୁବିଧା ନ ହୁଏ । ଆଉ ଯାହା ଶୁଣାଯାଉଛି କଂସ ନିଜେ ବରକନ୍ୟାଙ୍କୁ ନିଜ ରଥରେ ବସେଇ ତାଙ୍କ ଘରେ ଛାଡ଼ିବା ଦାୟିତ୍ୱ ନେବାକୁ ଚାହେଁ । କଂସର ପାରିଷଦମାନେ କଂସକୁ ମନା କରିଥିଲେ । ସେ ରାଜା । ସେ କ'ଣ ସାଧାରଣ ଲୋକ ପରି ରଥ ଚଳେଇ ଛାଡ଼ିବାକୁ ଯିବ । ଏଟା ଭଲ ଦିଶୁନାହିଁ । ବସୁଦେବ ନିଜେ ରଥ ଚଳେଇ ଯାଇ ପାରନ୍ତି । ବା ତାଙ୍କର ଲୋକମାନେ ଅଛନ୍ତି ସେ ବନ୍ଦୋବସ୍ତ ସେମାନେ କରିବେ । କଂସ କାହିଁକି ଇତର ଲୋକ ପରି ରଥ ଚଳେଇ ବସୁଦେବ ଦେବକୀଙ୍କୁ ଛାଡ଼ିବାକୁ ଯିବ, ଏଟା ଠିକ୍ ନୁହେଁ । କିନ୍ତୁ କଂସ କୁଆଡ଼େ ଶୁଣିବାକୁ ରାଜି ନୁହେଁ । ଦେବକୀ ତା'ର ଆଦରର ଭଉଣୀ, ଏଇ ସାମାନ୍ୟ କାମ କ'ଣ ସେ କରିପାରିବ ନାହିଁ ? ନାଁ, ନାଁ, ସେ ରଥ ଚଳେଇ ବସୁଦେବ ଦେବକୀଙ୍କୁ ତାଙ୍କ ଘରେ ଛାଡ଼ି ଦେଇ ଆସିବ । ଦେବକୀ ତା'ର ଶାଶୁଘରକୁ ଯାଉଛି, ସେ ତ ଆଉ ଭାଇ ଘର ବା ବାପ ଘରକୁ ଫେରିବନି । ତା'ର ଅଲଗା ଘର ହେବ । ସେ ଭଲରେ ରହୁ ଏହାହିଁ କଂସର ଇଚ୍ଛା । ମଥୁରାରେ ଏକଥା ଯିଏ ଶୁଣୁଛି ସେ କଂସର ପ୍ରଶଂସାରେ ଶତମୁଖ ହୋଇ ଉଠୁଛି । ବାଃ, ବାଃ, ଏଇ ଯେ ଭାଇ । କେତେ ଭାଇ କେତେ ଭଉଣୀଙ୍କୁ ଏମିତି ଯତ୍ନ କରନ୍ତି । ଆମେ ସମସ୍ତେ କଂସ ବିଷୟରେ ଭୁଲ ଭାବୁଛେ । ସେ ଏତେ ଖରାପ ନୁହେଁ । ଯେତେହେଲେ ବି ତା' ଭିତରେ ଗୋଟାଏ ହୃଦୟ ରହିଛି । ସେ ରାଜା, ଭୁଲ ଠିକ୍ ତ କରିବ । ସବୁ କଥା ଧରି ବସିବା ଠିକ୍ ନୁହେଁ । ବିଶେଷ କରି ସ୍ତ୍ରୀଲୋକମାନେ ବହୁତ ଖୁସି । ଯା ହଉ କଂସ ଗୋଟାଏ ଭାଇ ପରି ଭାଇ ।

ବାହାଘର ଦିନ ଯେତେ ପାଖେଇ ଆସିଲା ଏମିତି ସବୁ ଖବର ଆସିବାକୁ ଆରମ୍ଭ କଲା । କିଏ ବିଭାଘରର ଆଡ଼ମ୍ବରକୁ ପ୍ରଶଂସା କଲା ତ, କିଏ ଖାଇବା ପିଇବା ଆୟୋଜନକୁ ପ୍ରଶଂସା କଲା । କିଏ କଂସକୁ ପ୍ରଶଂସା କଲା ତ କେହି କେହି ଜରାସନ୍ଧଙ୍କୁ ବି ପ୍ରଶଂସା କଲେ, ଯେ ଜରାସନ୍ଧଙ୍କ ପରି ଚକ୍ରବର୍ତ୍ତୀ ସମ୍ରାଟଙ୍କର କଂସ ଜୋଇଁ, ସେ କେଉଁ ଛୋଟ ହୋଇପାରିବ କି ? ମୋଟ କଥା ବାହାଘର ହାୱା ମଥୁରା ସାରା ଏମିତି ଖେଳିଗଲା ଯେ ଲୋକେ ଆଉ ସବୁ କଥା ଭୁଲିଗଲେ । ସବୁଆଡ଼େ କଂସର ପ୍ରଶଂସା । ବାହାଘରର ଉତ୍ତେଜନାର ପ୍ରବଳ ସୁଅରେ ଅନ୍ୟସବୁ କଥା ବୁଡ଼ିଗଲା ।

ଅରିନ୍ଦମ ବି ଉତ୍ତେଜିତ ହୋଇ ଉଠିଲା । ଏସବୁ ଭୁଲ କଥା, ମିଛ କଥା । କଂସ କିଛି ବଦଳି ନାହିଁ । ସେ ଯେଉଁ ସ୍ୱାର୍ଥପର, ମିଥ୍ୟାବାଦୀ, ଅତ୍ୟାଚାରୀ ଠିକ୍


Digitized by srujanika@gmail.com

ସେମିତି ଅଛି । ତା'ର ସବୁ କାମ ପଛରେ ମତଲବ ଥାଏ । ଏ ବିଭାଘର ପ୍ରଚାର ପଛରେ ସେମିତି କିଛି ମତଲବ ଅଛି । ସାଧାରଣ, ସରଳ ବିଭାଘର ଏ ନୁହେଁ । ଯେତେକଥା ଶୁଣାଯାଉଛି, ଆଉ ଯେତେ କଥା ବୁଝି ହେଉଛି, ଏସବୁକୁ ମିଳେଇ ଦେଖିଲେ ମନେହେବ ନାହିଁ ଯେ କଂସ ବସୁଦେବ ଦେବକୀଙ୍କୁ ଖୁସି କରିବା ପାଇଁ ବା ମଥୁରା ଲୋକଙ୍କୁ ଖୁସି କରିବାପାଇଁ ବା ସିଧାସିଧା ନିଜର ଭଲ ମଣିଷପଣିଆ ଦେଖେଇବା ପାଇଁ ଏ ବାହାଘର କରୁଛି । ଉଦ୍ଦେଶ୍ୟ ଠିକ୍ ବୁଝି ହେଉନାହିଁ, କିନ୍ତୁ ଉଦ୍ଦେଶ୍ୟ ଅଛି ଏ ବିଷୟରେ ଅରିନ୍ଦମର କୌଣସି ସନ୍ଦେହ ରହିଲା ନାହିଁ । ତା'ର ବାପାଙ୍କ କଥା ବାରମ୍ବାର ମନକୁ ଆସିଲା । ବାପା କହିଥିଲେ ଦୁଷ୍ଟ ଲୋକର ସବୁ କାମ ପଛରେ କିଛି ଉଦ୍ଦେଶ୍ୟ ଥାଏ । ଏ ବି ସେମିତି କାମ, କଂସର ଉଦ୍ଦେଶ୍ୟ ସରଳ ନୁହେଁ । ସେ ଭାନୁପ୍ରକାଶଙ୍କୁ ନିଜର ସନ୍ଦେହ କଥା କହିଥିଲା । ଭାନୁପ୍ରକାଶଙ୍କ ମନରେ ବି ସମାନ ସନ୍ଦେହ । କୋଉଠି କିଛି ଅଛିଣ୍ଡା ହୋଇ ରହିଯାଉଛି । ତେଣୁ ଜିନିଷଟା ଠିକ୍ ବୁଝି ହେଉନାହିଁ । କିନ୍ତୁ ଗୋଳମାଳ ଅଛି ଏ ବିଷୟରେ ସେ ନିଶ୍ଚିତ ।

ଦିନେ ଭାନୁପ୍ରକାଶଙ୍କ ଠାରୁ ଖବର ପାଇ ଅରିନ୍ଦମ ତାଙ୍କୁ ଯାଇ ପୁରୁଣା ଯମୁନା ଘାଟରେ ଦେଖା କରିଥିଲା । ଭାନୁପ୍ରକାଶ ଯମୁନା ପାରି ହୋଇ ଆସି ଘାଟରେ ତାକୁ ଏକା ଏକା ଅପେକ୍ଷା କରିଥିଲେ । ଅରିନ୍ଦମ ଭାବିଥିଲା ସେ ବୋଧେ ଦେବୀଙ୍କ ମନ୍ଦିରକୁ ଯିବେ, କଅଣ କହିବେ । କିନ୍ତୁ ସେ ମନ୍ଦିରକୁ ଗଲେ ନାହିଁ । ଅରିନ୍ଦମକୁ ସାଙ୍ଗରେ ନେଇ ଉଗ୍ରସେନଙ୍କ ପୁରୁଣା କୋଠା ଆଡ଼କୁ ଚାଲିଲେ । ଘାଟ ପାଖକୁ ଲାଗି କୋଠା । ସେ କୋଠାକୁ କିଛି ସମୟ ଚାହିଁ ଛିଡ଼ା ହେଲେ । କହିଲେ, 'ଅରିନ୍ଦମ କ'ଣ ଦେଖୁଛ ?'

ଅରିନ୍ଦମ ଯେ କିଛି ଦେଖୁଥିଲା ତା ନୁହେଁ । ସେ ଭାବୁଥିଲା ଭାନୁପ୍ରକାଶ ଏଠିକି କାହିଁକି ଆସିଲେ । କିନ୍ତୁ କୋଠାଟାକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ଖୁବ୍ ପୁରୁଣା ନ ହେଲେ ବି ପୁରୁଣା କୋଠା, ଯମୁନା କୂଳରେ ନିଛାଟିଆ ଜାଗା, ଶୁଣାଯାଏ ନିଜେ ରହିବା ପାଇଁ ଉଗ୍ରସେନ ଏ ଘର ତିଆରି କରେଇଥିଲେ ଓ ତାଙ୍କର ପ୍ରଥମ ସ୍ତ୍ରୀ ବୋଧେ ଏଠି କିଛିଦିନ ରହିଥିଲେ । ତାପରେ କେତେବେଳେ କେମିତି କଦବା କ୍ୱଚିତ ହୁଏତ କିଏ କିଏ ରହିଛନ୍ତି । କିନ୍ତୁ ସାଧାରଣ ଭାବରେ ଘରେ ପ୍ରାୟ କେହି ରହିନାହାନ୍ତି । ବେଶ୍ ବଡ଼ କୋଠା, ବଡ଼ ହତା । ଘରଟା ଅନେକ ଦିନ ଧରି ଖାଲି ପଡ଼ିବାରୁ କିଛି କିଛି ଦୁର୍ନାମ ବି ହୋଇଥିଲା, ଲୋକେ ଭୂତକୋଠି ବୋଲି କହିବାକୁ ଆରମ୍ଭ କରିଥିଲେ ଓ ଏ ପାଖକୁ ଲୋକବାକ ଚଳପ୍ରଚଳ ମଧ୍ୟ କମି ଯାଇଥିଲା । ଅରିନ୍ଦମର ମନେ ହେଲା ଏ ଘରଟା ବିଷୟରେ ସେ ପ୍ରଥମେ ବୋଧେ ଭାନୁପ୍ରକାଶଙ୍କ

ଠାରୁ ଶୁଣିଥିଲା । ପରେ ଭାନୁପ୍ରକାଶ ଓ ସୌରଦେବଙ୍କ ସାଙ୍ଗରେ ସେ ଏ ଘର ଦେଖିବାକୁ ଆସିଥିଲା । ସେତେବେଳେ ଏ ଘର ମରାମତି ହେଉଥିଲା, ଲୋକସବୁ ଲାଗିଥିଲେ, ହତା ଜଙ୍ଗଲ ସଫା ହେଉଥିଲା, ଚାରିପାଖ ପାଚେରି ସବୁ ଉଚ୍ଚା ହେଉଥିଲା । ସେମାନଙ୍କୁ ଟିକେ ଆଶ୍ଚର୍ଯ୍ୟ ଲାଗିଥିଲା । ଏସବୁ କୋଉଥି ପାଇଁ ? କିଏ କହିଲା, କଂସ ଏଠି ଆସି ରହିବେ, ବା ତାଙ୍କର ରାଣୀମାନେ । କିନ୍ତୁ କଂସ ବା ତା ରାଣୀମାନେ ନିଜର ନଅର ଛାଡ଼ି ଓ ସେଠିକାର ସୁଖ ସ୍ୱାଚ୍ଛନ୍ଦ୍ୟ ଛାଡ଼ି ଏଠି ଆସି ରହିବେ କାହିଁକି ? କଥାଟା ବିଶ୍ୱାସଯୋଗ୍ୟ ମନେହେଲାନି । ସେମାନେ ଭାବିଲେ ଏସବୁ ଭୁଲ । ଘରଟା ବୋଧେ ଅତିଥିଶାଳା ହେବ, କଂସ ନିଜର ଅତିଥିମାନଙ୍କୁ ଏଠି ରଖିବ । ସେଇଥିପାଇଁ ଘରଟା ମରାମତି ଫରାମତି ହୋଇ ଚିକ୍କଣ କରାହେଉଛି । ପରେ ଏ ଘରଟା କଥା ସେ ଭୁଲି ଯାଇଥିଲା । ଭାନୁପ୍ରକାଶ ବି କେବେ କିଛି କହି ନାହାନ୍ତି । ତେଣୁ ଆଜି ହଠାତ୍ ଭାନୁପ୍ରକାଶଙ୍କ ସାଙ୍ଗରେ ଆସି ଘରଟାକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା ।

ଆଶ୍ଚର୍ଯ୍ୟ ହବା କଥା । ଘରଟା ମରାମତି ହୋଇ ଠିକ୍‌ଠାକ୍ ହୋଇଯାଇଛି ସେଥିପାଇଁ ନୁହେଁ, ବା ଘର ଚାରିପାଖର ବଡ଼ ହତାଟାର ଜଙ୍ଗଲ ସଫାସଫି ହୋଇ ପରିଷ୍କାର ପରିଛନ୍ନ ହୋଇଯାଇଛି ସେଥିପାଇଁ ନୁହେଁ । ଘରଟାକୁ ନିବୁଜ କରିଦିଆ ଯାଇଛି । ଘରର ପାଚିରି ଉଚ୍ଚା କରି ଦିଆଯାଇଛି । ଘରଟାରେ ବହୁତ କବାଟ ଝରକା ଥିଲା, ମନେହେଉଛି ଅଧିକାଂଶ କବାଟ ଝରକା ବନ୍ଦ କରି ଦିଆଯାଇଛି । ବିଶେଷ କରି ହତା ଭିତରକୁ ପଶିବାର ମୁଖ୍ୟ ଦରଜାକୁ ଏପରି କରିଦିଆ ଯାଇଛି, ଯେପରି ସହଜରେ ସବୁ ସମୟରେ ଖୋଲି ହେବନି । ମୋଟାମୋଟି ଘରଟାକୁ ଦେଖିଲେ ଗୋଟିଏ ଛୋଟ ଦୁର୍ଗ ପରି ମନେ ହେଉଛି । ସ୍ୱାଭାବିକ ଭାବରେ ଚଳପ୍ରଚଳ ହୋଇ ଚଳିବା ପରି ଏ ଘର ନୁହେଁ । ବାହାର ଲୋକଙ୍କ ସାଙ୍ଗରେ ଯେପରି ସମ୍ପର୍କ ନ ରହେ ଏହାହିଁ ମନେହେଉଛି ଉଦ୍ଦେଶ୍ୟ । ଏ କି ପ୍ରକାର ଅତିଥିଶାଳା । ଏ ତ ଅତିଥିଶାଳାର ଢଙ୍ଗ ନୁହେଁ । ଅରିନ୍ଦମ ଦେଖିଲା ଭାନୁପ୍ରକାଶ ଘରଟାକୁ ଚାହିଁ ସେମିତି ଚୁପ କରି ଛିଡ଼ା ହୋଇଛନ୍ତି, କିଛି କହୁନାହାନ୍ତି, କିଛି ଭାବୁଛନ୍ତି ବୋଧେ । ସେମାନେ ହତା ବାହାରେ ନଈକୂଳ ପାଖାପାଖି ଗୋଟାଏ ଢାଲୁ ଜାଗାରେ ଛିଡ଼ା ହୋଇଥାନ୍ତି । ସେଠୁ ହତା ଭିତରର ଅନେକ ଅଂଶ ଦିଶୁଥାଏ । ହତା ଭିତର ଗଛ ଅନେକ କଟାକଟି ହୋଇ ପରିଷ୍କାର ପରିଛନ୍ନ, ଖୋଲାମେଲା । ଫାଟକ ପାଖରୁ ଘର ଭିତରକୁ ପଶିବା ଦରଜା କିଛି ଦୂର । ଦରଜା ବନ୍ଦ, ମୁଖ୍ୟ ଫାଟକ ବି ବନ୍ଦ, ହତା ଭିତରେ କିଛି ଲୋକ ଏଆଡ଼େ ସେଆଡ଼େ ବୁଲାବୁଲି କରି କ'ଣ ଦେଖାଦେଖି କରୁଛନ୍ତି । ପୋଷାକ ପତ୍ରରୁ

ଜଗୁଆଳ ପରି ମନେ ହେଉଛି ।

ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ଏ ଘରଟା ତୁମକୁ ଦେଖେଇବା ପାଇଁ ଡକେଇଥିଲି । ମୁଁ ବୁଝିପାରୁନାହିଁ ଏ ଘରଟାର କାମ କ'ଣ ? ଅନେକ ଦିନ ଅପନ୍ତରାରେ ପଡ଼ିଲା ପରି ପଡ଼ିଥିଲା । କାହାରି ନଜର ନ ଥିଲା । ହଠାତ୍ କ'ଣ ଦରକାର ହେଲା ? କଂସ ସିଧା ଲୋକ ନୁହେଁ । ସେ ବିନା କାରଣରେ ଏ ଘରଟାକୁ ଠିକ୍‌ଠାକ କରୁଛି ବୋଲି ମନେ ହେଉନି ।'

ହଠାତ୍ ଅରିନ୍ଦମର ମୁଣ୍ଡରେ ଗୋଟାଏ କଥା ଖେଳିଗଲା । ସେ ଥାଥା ମାମା ହୋଇ କହିଲା, 'ମୁଁ ଭାବୁଛି ଗୋଟାଏ କଥା । ଏ ଘରଟା ବୋଧେ କଂସ ଯୌତୁକ ଦେବ ।'

ଭାନୁପ୍ରକାଶ ସାଙ୍ଗେ ସାଙ୍ଗେ କିଛି ଉତ୍ତର ଦେଲେ ନାହିଁ । କ'ଣ ଯେପରି ଭାବିକରି କହିଲେ, 'ଯୌତୁକ ? ହଁ, ହେଇପାରେ । କିନ୍ତୁ ବସୁଦେବଙ୍କର ତ ନିଜର ଘର ଅଛି । ବଡ଼ ଘର, ଭଲ ଘର, ଭଲ ଜାଗାରେ ବି । ସେ ନିଜର ପରିବାର, ନିଜର ଲୋକବାକଙ୍କୁ ଛାଡ଼ି ଏଠି କାହିଁକି ଏକା ଏକା ରହିବେ ?'

'ନାଁ, ମୁଁ ବସୁଦେବ ନିଜେ ରହିବା କଥା କହୁନି', କହିଲା ଅରିନ୍ଦମ, 'ମୁଁ ଯୌତୁକ କଥା କହୁଛି । ଘରଟା ବ୍ୟବହାର ନ ହୋଇ ଭାଙ୍ଗିଭୁଙ୍ଗି ପଡ଼ିଥିଲା । ତାକୁ ମରାମତି କରି ଯୌତୁକ ଦେଇ କଂସ ବାହାଦୁରି ନେବାକୁ ଚାହେଁ, ଏଇଆ ମୁଁ ଭାବୁଛି ।'

'ତା ସମ୍ଭବ', ଭାନୁପ୍ରକାଶ କହିଲେ, 'ମୁଁ ଏ ଘର ବୁଝାବୁଝି କରୁଥିବା ଲୋକଙ୍କ ସହିତ କଥାବାର୍ତ୍ତା କରୁଥିଲି । ସେମାନେ କହନ୍ତି ରାଜାଙ୍କ ହୁକୁମ, ବାହାଘର ଆଗରୁ ଘରଟା ଠିକ୍‌ଠାକ୍ ହୋଇ ରହିବା ଦରକାର । ସବୁଦିନେ କଂସର ଲୋକ ଆସି ଘରର କାମଦାମ କେତେ ହେଲା ଦେଖାଦେଖି କରି ଯାଉଛନ୍ତି । ମନେ ହେଉଛି ଏ ଘର ପାଇଁ କଂସର ଯାହା ମତଲବ ଥାଉ, ସେ ଛୋଟ ମତଲବ ନୁହେଁ । ଆସ ଯିବା ।'

ସେମାନେ ଫେରି ଆସିଲେ । ଅରିନ୍ଦମ ଦେଖିଲା ଭାନୁପ୍ରକାଶ ସେମିତି ଅନ୍ୟମନସ୍କ ହୋଇ କ'ଣ ଯେପରି ଗଭୀର ଭାବରେ ଭାବୁଛନ୍ତି । ପ୍ରଥମ ଥର ପାଇଁ ଅରିନ୍ଦମର ମନେହେଲା ଏ ଘରଟାର ନିଶ୍ଚୟ କିଛି ଗୁରୁତ୍ୱ ଅଛି । ନଚେତ୍ ଭାନୁପ୍ରକାଶ ଏତେ ଚିନ୍ତା କରନ୍ତେ ନାହିଁ ।

ସେମାନେ ଫେରିଗଲେ । ଭାନୁପ୍ରକାଶ ଏକା ଏକା ସହର ଭିତରକୁ କୁଆଡ଼େ ଗଲେ, ଅରିନ୍ଦମ ମଧ୍ୟ ଘରକୁ ଫେରି ଆସିଲା । କିନ୍ତୁ ତା ମନରେ ସେଇ ନିଛାଟିଆ

ଘରଟା କଥା ଲାଗି ରହିଲା । ଘରଟା ବଡ଼ ଘର କିନ୍ତୁ ଅବହେଳାରେ ପଡ଼ିଥିଲା । ମନେହେଉଛି ବହୁତ ଦିନ ସେହିପରି ରହିଥିଲା । ଏବେ ଘରଟା ପରିଷ୍କାର ପରିଚ୍ଛନ୍ନ ହୋଇ, ମରାମତି ହୋଇ, ଗୋଟାଏ ସମ୍ଭ୍ରାନ୍ତ ଘର ପରି ହୋଇଗଲାଣି । କିନ୍ତୁ ଘରଟା ଯେମିତି ଖୋଲାମେଲା ହେବାକଥା ତା ନୁହେଁ । ଚାରିପାଖ ନିବୁଜ ଲାଗୁଚି । ସତେ ଯେପରି କାହାକୁ ବନ୍ଦ କରି ରଖାଗଲା ପରି ବନ୍ଦୋବସ୍ତ କରାହୋଇଛି । ବୁଝି ହେଉନି ଏ ଘର କ'ଣ ହେବ, କିଏ ରହିବ ? ନିଶ୍ଚୟ କିଛି ଉଦ୍ଦେଶ୍ୟ ରଖି କଂସ ଏ ଘର ପ୍ରସ୍ତୁତ କରୁଛି । କ'ଣ ସେ ଉଦ୍ଦେଶ୍ୟ ? ଭାନୁପ୍ରକାଶ ମଧ୍ୟ ଠିକ୍ ବୁଝିପାରି ନାହାନ୍ତି । ଅନ୍ତତଃ ତାଙ୍କ ମୁହଁରୁ ଅରିନ୍ଦମର ସେହିପରି ମନେହେଲା । ସେ ବାପାଙ୍କୁ ବି ପଚାରିଥିଲା – କି ଘର ସେ ? କ'ଣ ସେ ଘରର କାମ ? ବାପା ଅରିନ୍ଦମର ପ୍ରଶ୍ନ ଶୁଣି କିଛି ସମୟ ଚୁପ କରି ଯାଇଥିଲେ । ସାଙ୍ଗେ ସାଙ୍ଗେ ଉତ୍ତର ଦେଲେନାହିଁ । ପରେ କହିଲେ – 'ହଁ, ସେଟା ପୁରୁଣା ଘର । ଉଗ୍ରସେନ ନିଜ ପାଇଁ ତିଆରି କରିଥିଲେ । କିନ୍ତୁ ରହିଲେ ନାହିଁ । ଘରଟାର ରାଶି ନକ୍ଷତ୍ର ଭଲ ନୁହେଁ । ଅନ୍ତତଃ ବର୍ତ୍ତମାନ ପାଇଁ ଭଲ ନୁହେଁ ।' ବାସ୍ ସେତିକି । ଆଉ କିଛି କହିଲେ ନାହିଁ । ଅରିନ୍ଦମ ଯେପରି ଆହୁରି ଗୋଳମାଳରେ ପଡ଼ିଗଲା । ମନେ ହେଉଛି ବାପା କିଛି ସନ୍ଦେହ କରୁଛନ୍ତି, କିନ୍ତୁ କହିବାକୁ ଚାହାନ୍ତି ନାହିଁ । ସେ ସାଙ୍ଗମାନଙ୍କ ସାଙ୍ଗରେ ମଧ୍ୟ ଆଲୋଚନା କରିଥିଲା । ଦିନେ ସବୁଯାକ ସାଙ୍ଗ ଏକାଠି ସେ ଜାଗାକୁ ଯାଇଁ ସେ ଘରଟା ଦେଖି ଆସିଥିଲେ । କିନ୍ତୁ ଅରିନ୍ଦମ ପରି ସମସ୍ତେ ବି ଗୋଳମାଳରେ ପଡ଼ିଗଲେ । ଘରଟା କାହିଁକି ? କ'ଣ ହେବ ? ତେବେ ଏହି ଦ୍ୱିତୀୟ ଥର ଘର ଦେଖିବା ସମୟରେ ଅରିନ୍ଦମର ଜଣେ ସାଙ୍ଗ ଗୋଟାଏ କଥା ଲକ୍ଷ୍ୟ କଲା ଯାହାକି ଅରିନ୍ଦମ ଆଗରୁ ଲକ୍ଷ୍ୟ କରି ନ ଥିଲା । ହତା ଭିତରେ ଗୋଟାଏ ପାଖରେ, ପାଚେରିକୁ ଲାଗି ଗୋଟି ଗୋଟିକିଆ ଘର ଦି ତିନି ଧାଡ଼ି ତିଆରି ହୋଇଛି । ପାରିବାରିକ ଘର ନୁହେଁ । ରକ୍ଷୀ ବା ସୈନ୍ୟମାନେ ରହିବା ପରି ଘର । ଗୋଳମାଳ ଆହୁରି ବଢ଼ିଗଲା । ଏଠି ସୈନ୍ୟମାନେ କରିବେ କ'ଣ ? ଖାଲି ରହିବା କଥା ତ ନୁହେଁ । ସେମାନଙ୍କ ପାଇଁ ତ ଅନ୍ୟ ଜାଗାରେ ଘର କରାହୋଇଛି । ସେମାନେ ସବୁ ହତା ବାହାରେ ଢାଲୁ ଜାଗାଟା ଉପରେ ଛିଡ଼ା ହୋଇ ଏସବୁ କଥାବାର୍ତ୍ତା କରିବା ସମୟରେ ଗୋଟାଏ ଘଟଣା ଘଟିଲା । ହତାର ମୁଖ୍ୟ ଫାଟକଟା ଖୋଲିଗଲା ଓ ହତା ଭିତରୁ ସେନାପତି ପ୍ରଦ୍ୟୋତ ଓ ତାଙ୍କ ସାଙ୍ଗରେ ତିନି ଚାରିଜଣ ସୈନ୍ୟ ବାହାରି ଆସିଲେ । ଏମାନଙ୍କୁ ଦେଖି ପ୍ରଦ୍ୟୋତ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ଓ ପରେ ପରେ ଏମାନଙ୍କ ପାଖକୁ ଲାଗି ଆସିଲେ । ପ୍ରଦ୍ୟୋତଙ୍କୁ ଦେଖି ଅରିନ୍ଦମ ଓ ତା'ର ସାଙ୍ଗମାନେ ମଧ୍ୟ ସାମାନ୍ୟ ବିବ୍ରତ

ହୋଇ ପଡ଼ିଥାନ୍ତି । ପ୍ରଦ୍ୟୋତ ଏଠି ଥାଇ ପାରନ୍ତି ଏକଥା ସେମାନେ ଭାବି ନ ଥିଲେ । ତଥାପି ଭଦ୍ରାମି ଜଗି ସମସ୍ତେ ପ୍ରଦ୍ୟୋତଙ୍କୁ ନମସ୍କାର କଲେ ।

ପ୍ରଦ୍ୟୋତ ପାଖକୁ ଆସି ଅରିନ୍ଦମକୁ ପଚାରିଲେ, 'ଅରିନ୍ଦମ, ତୁମ୍ଭେମାନେ ସବୁ କୁଆଡ଼େ ଆସିଲ ? ଏ ତ ସହର ଠାରୁ ବହୁତ ଦୂର ।'

ଅରିନ୍ଦମର ବିବ୍ରତ ଭାବ କଟି ଯାଇଥଲା । ସେ କହିଲା, 'ନାଇଁ, ଆମେ ଦେବୀଙ୍କ ଦର୍ଶନ କରିବାକୁ ଆସିଥିଲୁ । ଏ ଘର କଥା ଆଗରୁ ଶୁଣିଥିଲୁ । ଦେବୀଙ୍କ ଦର୍ଶନ ସାରି ଏ ଘର ଦେଖିବାକୁ ଚାଲି ଆସିଲୁ । ଏ ଘରେ କ'ଣ କିଏ ରହିବେ ?'

ପ୍ରଦ୍ୟୋତ ଅରିନ୍ଦମର ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ । ମନେହେଲା ସେ ଅରିନ୍ଦମର କଥା ବିଶ୍ୱାସ ହିଁ କଲେ ନାହିଁ । କିନ୍ତୁ ଆଗ ପରି ଶାନ୍ତ, ଧୀର ଗଳାରେ କହିଲେ, 'ଅରିନ୍ଦମ ଶୁଣ, ତୁମେମାନେ ଏ ପାଖକୁ ନ ଆସିବା ଭଲ । ଖୁବ୍ ଶୀଘ୍ର ରାଜାଙ୍କ ଆଦେଶ ବାହାରିଯିବ । ଏ ନଈ ଘାଟ ଉଠିଯିବ । ଆଉ ଦେବୀଙ୍କ ମନ୍ଦିର ଏଠୁ ଅନ୍ୟ ଆଡ଼କୁ ଘୁଞ୍ଚିଯିବ ।' ପ୍ରଦ୍ୟୋତ ଆଉ କିଛି କହିଲେ ନାହିଁ । ନିଜର ସୈନ୍ୟମାନଙ୍କୁ ଧରି ଘାଟରେ ବନ୍ଧା ହୋଇଥିବା ଡଙ୍ଗାରେ ସହର ଆଡ଼କୁ ଚାଲିଗଲେ । ଖାଲି ଗଲାବେଳେ ଆଉ ଥରେ କହିଦେଇ ଗଲେ – 'ତୁମ୍ଭେମାନେ ଚାଲି ଯାଅ, ଏ ପାଖକୁ ଆଉ ଆସନା, ଜାଗାଟା ଭଲ ନୁହେଁ ।'

ରହସ୍ୟ ଆହୁରି ରହସ୍ୟମୟ ହୋଇ ଉଠିଲା, ଅରିନ୍ଦମ ଭାବିଲା । କେତେଗୁଡ଼ା କଥା ଯାହା ସେ ଅଧା ଅଧା ଭାବୁଥିଲା ସେ ସ୍ପଷ୍ଟ ହୋଇଗଲା । ଏ ଘର ଉପରେ କଂସ ଯଥେଷ୍ଟ ଗୁରୁତ୍ୱ ଦେଉଛି । ତା ନ ହେଲେ ପ୍ରଦ୍ୟୋତ ଆସି ବୁଝାବୁଝି କରନ୍ତେ ନାହିଁ । ଦ୍ୱିତୀୟରେ, ଏ ଜାଗାକୁ କେହି ଆସୁ ଏକଥା ମଧ୍ୟ କଂସ ଚାହେଁନା, ତା ନ ହେଲେ ଘାଟ ବନ୍ଦ ହୋଇଯିବା ଓ ବିଶେଷ କରି ମନ୍ଦିର ଘୁଞ୍ଚିଯିବା କଥା ଆଶ୍ଚର୍ଯ୍ୟ କଥା । ଏ କଥା ଛୋଟମୋଟ କଥା ନୁହେଁ, ବହୁତ ଗୁରୁତର କଥା । ସାଙ୍ଗେ ସାଙ୍ଗେ ଭାନୁପ୍ରକାଶଙ୍କୁ ଏ ଖବର ଦେବା ଦରକାର, ଅରିନ୍ଦମ ଠିକ୍ କଲା । ଅନ୍ୟ କଥା ବି ଅଛି । 'ଏ ଜାଗାଟା ଭଲ ନୁହେଁ' କଥାର ମାନେ କ'ଣ ? କାହିଁ କେବେତ ଦେବୀଙ୍କର ଏ ଜାଗାଟା ଖରାପ ବୋଲି ତ ସେ ଶୁଣି ନାହିଁ । ଏ ଘାଟ ଦେଇ ଲୋକେ ଯିବା ଆସିବା କରନ୍ତି, ନଈ ପାରି ହୁଅନ୍ତି, ଦେବୀ ଦର୍ଶନ କରିବାକୁ ସବୁବେଳେ ଲୋକ ଆସନ୍ତି, ପର୍ବପର୍ବାଣି ହୁଏ । ଏ ତ ନିୟମିତ ଚାଲିଥାଏ । ହଁ, ଏ ଘରଟା ଅନେକ ଦିନ ହେଲା ସେମିତି ଠିଆ ହୋଇଛି । ଉଗ୍ରସେନଙ୍କ ଘର ବୋଲି ସମସ୍ତେ କହନ୍ତି । କିନ୍ତୁ ଏ ଘରଟା ପାଇଁ ଲୋକଙ୍କର ଆଗ୍ରହ କେବେ ନ ଥିଲା କି ବର୍ତ୍ତମାନ ନାହିଁ । ଲୋକ ଦେଖନ୍ତି ଚାଲିଯାଆନ୍ତି । ହଠାତ୍ ଏ ଘରଟା ଏତେ ଗୁରୁତ୍ୱପୂର୍ଣ୍ଣ


Digitized by srujanika@gmail.com

ହୋଇଉଠିଲା କାହିଁକି ? ଜାଗାଟା ବି ଖରାପ ହୋଇଗଲା ? ଖରାପ କ'ଣ ? ଅଶୁଭ ? ହଁ ତା ହବ । ଦେବୀଙ୍କୁ ଉଠେଇ ଦିଆଯାଉଛି । ଅଶୁଭ ନିଶ୍ଚୟ । ଭାନୁପ୍ରକାଶ କ'ଣ କହିବେ ? ବିଜୁଳି ପରି ଗୋଟାଏ କଥା ତା ମୁଣ୍ଡରେ ଖେଳିଗଲା । ଖରାପ, ଅଶୁଭ, ଏଗୁଡ଼ା ବାଜେ କଥା । ଏ ଲୋକଙ୍କୁ ଦୂରେଇ ରଖିବାର ଗୋଟାଏ କୌଶଳ, ଅସଲ କଥା କଂସ ଚାହୁଁନି ଏ ପାଖକୁ ଲୋକ କେହି ଆସନ୍ତୁ । ନଈ ଘାଟ ରହିଲେ ଲୋକ ଆସିବେ, ଦେବୀ ମନ୍ଦିର ରହିଲେ ଲୋକ ଆସିବେ । ଏ ଦିଇଟାକୁ ଉଠେଇଦେଲେ ବାସ୍ ଲୋକ ଯିବା ଆସିବା ବନ୍ଦ ହୋଇଯିବ । ନିଶ୍ଚୟ ଏଇଟାହିଁ ଠିକ୍ । ଭାନୁପ୍ରକାଶ ଏହିପରି ଯୁକ୍ତି କରିବେ । ଏ ଠିକ୍ ଯୁକ୍ତି । ଏ ଘର ରହିବ । କିନ୍ତୁ ଲୋକ ଘର ପାଖକୁ ନ ଆସନ୍ତୁ । ଅର୍ଥାତ୍, ଏ ଘରେ କ'ଣ ହେବ, କିଏ ରହିବ ନ ରହିବ, ଲୋକେ ଯେମିତି ନ ଜାଣନ୍ତୁ, ଏଇଟା ହିଁ ଅସଲ ମତଲବ ।

ଦି ଦିନ ପରେ ଯାହା ଘଟିଲା ମନେହେଲା ଅରିନ୍ଦମର ଭାବନାଟାହିଁ ଠିକ୍ । ଦେବୀଙ୍କ ମନ୍ଦିରକୁ ଲାଗି, ନଈଘାଟକୁ ଯିବା ବାଟରେ, ପାଖାପାଖି ଦି'ଟା ଗଛରେ ଦିଇଟା ଶବ କିଏ ଝୁଲେଇ ଦେଇ ଯାଇଛି । ପ୍ରଥମେ କିଛି ଲୋକ ଜମିଲେ । ତା'ପରେ ଲୋକ ଭାଙ୍ଗିଗଲେ । ଏପରିକି ମନ୍ଦିରରୁ ଅଧିକାଂଶ ବ୍ରାହ୍ମଣ ବି ପଳେଇଲେ । ଖାଲି ସେତିକି ନୁହେଁ । ମଝିରେ ମଝିରେ ରାତିରେ ବିକୃତ ଶବ୍ଦ ସବୁ ଶୁଣାଯିବାକୁ ଆରମ୍ଭ କଲା । ଆଉ ନାନା ଗୁଜବ ବି – ଲୋକ ଭେଟଣା ହବା କଥା । ବାଟ ପ୍ରାୟ ପଡ଼ିଗଲା । ମନ୍ଦିରକୁ, ମନ୍ଦିର ବାଟ ଦେଇ ଘାଟକୁ ଲୋକ ଯିବା ଆସିବା କମିଗଲା । ନଈ ସେପାଖ ଗୋପରୁ, ନଈ ପାରିହୋଇ ସହର ଭିତରକୁ ଯିବା ପାଇଁ, ସେ କୋଠା ପାଖେ ପାଖେ ଏଇଟା ହିଁ ସବୁଠୁଁ କମ୍ ବାଟ । ନଈ କୂଳେ କୂଳେ ବା ନଈ ଉପର ଘାଟରେ ପାରିହୋଇ ଗଲେ ବହୁତ ବୁଲାଣି । ଅରିନ୍ଦମ ଏବେ ଭାବୁଛି, ଚାରିପାଖ ଦେଖି ସାରିଲା ପରେ ତା'ର ମନେ ହେଉଛି, ଏଠି ନଈ ଘାଟ ଉପରେ ଘର କରି ଉଗ୍ରସେନ ବହୁତ ବୁଦ୍ଧିମାନର କାମ କରିଥିଲେ । ଏକେ ତ ରାଜନଅରରୁ ବହୁତ ପାଖ । ସିଧା ପଡ଼ିଆ ଓ ବିଲ ଭିତରେ ପଶିଗଲେ ଏଇ ତ ନଅର । ତା ଛଡ଼ା ଯେକୌଣସି ସମୟରେ ନଈ କୂଳକୁ ଆସିହେବ, ନଅରର ସ୍ତ୍ରୀଲୋକମାନେ ଆସି ଲୋକ ଆଢୁଆଳରେ ନଈରେ ଗାଧୁଆପାଧୁଆ କରିପାରିବେ । କରୁଥିଲେ ବି । ଶୁଣାଯାଏ କଂସର ମା' ଉଗ୍ରସେନଙ୍କୁ ବିଭା ହେଲା ପରେ ଓ କଂସ ଜନ୍ମ ହେବା ଆଗରୁ ଅନେକ ସମୟରେ ଏକା ଏକା ଏଇ ଘରକୁ ଆସୁଥିଲେ, ନଈ କୂଳରେ ଅନେକ ସମୟ କଟଉଥିଲେ । ପାଖରେ ଥିବା ଦେବୀଙ୍କ ମନ୍ଦିର ମଧ୍ୟ ବହୁତ ପୁରୁଣା । ଲୋକେ ବହୁତ ଭକ୍ତି କରନ୍ତି, ପର୍ବପର୍ବାଣିରେ ଆସନ୍ତି । ବର୍ତ୍ତମାନ ସେସବୁ ବନ୍ଦ

ହୋଇଯିବ । ଅରିନ୍ଦମ ସବୁ ବିଷୟ ଯେତେ ଭାବିଲା ତା' ମୁଣ୍ଡକୁ ଗୋଟାଏ କଥା ସେତେ ବେଶି ଚାପି ଧଇଲା । ଏ ଘରେ କଂସ କିଛି ଗୋଟାଏ ଗୁରୁତ୍ୱପୂର୍ଣ୍ଣ କାମ କରିବାକୁ ଚାହେଁ । ବାହାଘର ପରେ ଏ ଘର ଦେବକୀ ଓ ବସୁଦେବଙ୍କୁ ଦିଆହେବ ଓ ସେମାନେ ଏଠି ରହିବେ, ସେହିଯୋଗୁଁ ମରାମତି ଫରାମତି ହେଉଛି, ଯାହା ତା'ର ସାଙ୍ଗମାନେ ଭାବୁଛନ୍ତି, ଏ ପୂରା କଥା ନୁହେଁ । ଆଉ କିଛି ଉଦ୍ଦେଶ୍ୟ ଅଛି । ଅନ୍ତତଃ ଭଲ ଉଦ୍ଦେଶ୍ୟ ନୁହେଁ ।

ଆଉ ଭିନ୍ନ ପ୍ରକାରର ଖବର ବି ଆସିଲା । ପ୍ରଥମ କଥା ଜରାସନ୍ଧଙ୍କର ଯେଉଁ ମନ୍ତ୍ରୀମାନେ ମଥୁରାରେ ଥିଲେ, କଂସକୁ ତା କାମଦାମରେ ସବୁବେଳେ ମନ୍ତ୍ରଣା ଦେଉଥିଲେ, ସେମାନଙ୍କ ଭିତରୁ ଅଧିକାଂଶ ବର୍ତ୍ତମାନ ମଗଧକୁ ଫେରି ଯାଉଛନ୍ତି । ଏ କିଛି କିଛି ଆଶ୍ଚର୍ଯ୍ୟ ହବା କଥା । କାରଣ ସେମାନେ ଅନେକ ଦିନ ଧରି ମଥୁରାରେ ଥିଲେ । ମନେ ହେଉଥିଲା ବିଭାଘର ସରିବା ପରେ ସେମାନେ ହୁଏତ ଫେରି ପାରନ୍ତି । ବର୍ତ୍ତମାନ ହଠାତ୍, ବିଭାଘର ଆଉ ଅଳ୍ପଦିନ ଅଛି, ସେମାନେ ମଗଧ ଫେରି ଯାଉଛନ୍ତି କାହିଁକି ? ଅରିନ୍ଦମ କୌଣସି ଯୁକ୍ତିସଂଗତ କାରଣ ପାଇଲା ନାହିଁ । ଏମିତି ତ ସାଧାରଣତଃ ହେବା କଥା ନୁହେଁ । ବିଭାଘର ପରେ ଯାଇଥିଲେ ଭାବିବାର କିଛି କାରଣ ନ ଥିଲା । ଭାନୁପ୍ରକାଶ ମଧ କ'ଣ ଭାବୁଥିଲେ କେଜାଣି କିଛି କହିଲେ ନାହିଁ । ଅରିନ୍ଦମ ଆଉ ଟିକିଏ ଭଲ ଭାବରେ ବୁଝିବାକୁ ଚେଷ୍ଟା କଲା । ହଁ, ଠିକ୍ କଥା । କେବଳ ଜଣେ ବୟସ୍କ ମନ୍ତ୍ରୀଙ୍କୁ ଛାଡ଼ି ବାକି ସମସ୍ତେ ଫେରି ଯାଉଛନ୍ତି । ନାଁ, ଆଉ ନୂଆ ଲୋକ ବି କେହି ଆସୁନାହାନ୍ତି । ଶୁଣାଯାଉଥିଲା ଜରାସନ୍ଧ ନିଜେ ଆସିପାରନ୍ତି । ସେ ବି ଆସୁନାହାନ୍ତି । ଗୋପା ବି ଠିକ୍ କାରଣ କହିପାରୁ ନାହାନ୍ତି । ଖାଲି କହିଲେ ସେମାନେ ସବୁ ଯିବେ ଏମିତି କିଛି କଥା ଶୁଣାଯାଉ ନ ଥିଲା । ବୋଧହୁଏ ହଠାତ୍ ଠିକ୍ ହେଲା ସେମାନେ ସବୁ ଫେରିଯିବେ । ତେବେ ଗୋପା ଆଉ ଗୋଟାଏ ଖବର ଦେଲେ ଯାହା କଥାଟାକୁ ପରିଷ୍କାର କରିବା ପରିବର୍ତ୍ତେ ଆହୁରି ଅଧିକ ଗୋଳିଆ କରିଦେଲା । ମଗଧର ଏହି ମନ୍ତ୍ରୀମାନେ ଦିନେ ସବୁ ଏକାଠି ହୋଇ କୁଆଡ଼େ ନଈ ଘାଟରେ ଥିବା ଉଗ୍ରସେନଙ୍କର ସେଇ କୋଠାକୁ ଯାଇଥିଲେ । ଅନେକ ସମୟ ସେଠି ଥିଲେ । ଫେରିବା ବେଳେ ବେଶ୍ ଖୁସି ଖୁସି ଦିଶୁଥିଲେ । କାହିଁକି ? ଗୋପା ବୁଝିପାରି ନ ଥିଲେ । ଅରିନ୍ଦମ ବି ବୁଝି ପାରିଲା ନାହିଁ । ସେ ଠିକ୍ ସମୟରେ ଭାନୁପ୍ରକାଶଙ୍କୁ ଖବର ଦେଇଥିଲା । କିନ୍ତୁ ମନେହେଲା ସେ ବି ଠିକ୍ ଧରି ପାରିଲେ ନାହିଁ । କାରଣ କଅଣ ? ଖାଲି ବୁଲିଯିବା ? ସେ ତ ବୁଲିଯିବା ଜାଗା ନୁହେଁ । ବିଶ୍ୱାସ ହେଉନି । ତେବେ ସେମାନେ ସମସ୍ତେ ଉଗ୍ରସେନଙ୍କ କୋଠା ବୁଲି ଦେଖି

ଆସିବାର ଦି ତିନି ଦିନ ପରେ ମଗଧ ଫେରିଗଲେ ।

ଦ୍ୱିତୀୟ କଥା ଅନ୍ୟ ବ୍ୟାପାର, ଅର୍ଥାତ୍ ଖିଆପିଆ ବ୍ୟାପାର, ଭୋଜି । ନାଁ, ବାହାଘର ଭୋଜି ନୁହେଁ । ଏ ଭୋଜି ସାରା ମଥୁରାର ସମସ୍ତେ ଆସି ଖାଇବେ, ଲାଗଲାଗ ତିନିଦିନ ପାଇଁ । ସେ ତ ଏମିତି ଭୋଜି ଯାହାକି କେବେ ହୋଇନି କି କେବେ ହେବନି । ଏ ଭୋଜି କଂସର ରାଜା ହେବା ଭୋଜି, କଂସର ରାଜ୍ୟ ଜୟ ଭୋଜି, କଂସ ଭବିଷ୍ୟତରେ ଆର୍ଯ୍ୟାବର୍ତ୍ତର ଚକ୍ରବର୍ତ୍ତୀ ସମ୍ରାଟ ହେବ ସେଥିପାଇଁ ଭୋଜି । କଂସ ରାଜ୍ୟ ଜୟ କରି ଫେରିବା ପରେ ଯେଉଁ ଭୋଜିର ବନ୍ଦୋବସ୍ତ ହୋଇଥିଲା ସେ ତ ଇନ୍ଦ୍ର ଦେବତାଙ୍କ କୁଚକ୍ରରେ ନଷ୍ଟ ହୋଇଗଲା । ଏ ଭୋଜିରେ ସେସବୁ ପୂରଣ ହୋଇଯିବ । ସେଥିପାଇଁ କଂସର ଆଦେଶରେ ସାରା ମଥୁରା ଉଠପଡ଼ ହେବାରେ ଲାଗିଛି । ତିନିଦିନ ଧରି ଧୂମ୍‌ଧାମ୍ ଖିଆପିଆ ହେବ । ତା ପରେ ବିଭାଘର ଭୋଜି । କିନ୍ତୁ ଏ ଭୋଜି ଅନ୍ୟ ପ୍ରକାର । ସମସ୍ତଙ୍କ ପାଇଁ ନୁହେଁ । କେବଳ ଗୋଷ୍ଠୀ ମୁଖିଆମାନଙ୍କ ପାଇଁ । ନଅର ଭିତରେ ହେବ, କଂସର ପାରିଷଦ ଗୃହରେ । ଆଉ ବଡ଼ କଥା କଂସ ପ୍ରାୟ ସବୁ ମୁଖ୍ୟମାନଙ୍କ ଘରକୁ ନିଜେ ଯାଇ ନିମନ୍ତ୍ରଣ କରିଛି । ସଭାସମିତି କିଛି ନାହିଁ । କେବଳ ଖିଆପିଆ ହେବ । ମଥୁରାର ବଛା ବଛା ରୋଷେଇଆଙ୍କ ଛଡ଼ା ମଗଧରୁ ବି ରୋଷେଇଆ ଆସିଛନ୍ତି । ଏପରିକି ହସ୍ତିନାରୁ ଦି'ଜଣ ନାଁ ଡାକ ରୋଷେଇଆଙ୍କୁ ବି ଡକାଯାଇଛି । କଂସ ଯେ ମୁଖ୍ୟମାନଙ୍କୁ ସନ୍ତୁଷ୍ଟ ରଖିବାକୁ ଚାହେଁ, ଏକଥା ବୁଝି ହଉଛି, ନଚେତ ସେ ଏପରି ଉପରେ ପଡ଼ି ନିଜର ଭଲ ମଣିଷପଣିଆ ଦେଖାନ୍ତା ନାହିଁ । ସବୁ ମୁଖିଆମାନେ ଯେ ତା କଥାରେ ବା ତା କାମରେ ଭଳି ଯିବେ ସମ୍ଭବ ନୁହେଁ । କିନ୍ତୁ ଗୋଟିଏ କଥା ଅରିନ୍ଦମ ଭାବିଲା, ନିଶ୍ଚୟ ସମସ୍ତେ ତାକୁ ମାନିଯିବେ । ଭିତରେ ଯାହା ଚାହିଁଲେ ବି ଉପରେ କେହି ତା'ର ପ୍ରତିବାଦ କରିବାକୁ ଇଚ୍ଛା କରିବେ ନାହିଁ । ତେଣୁ ସେ ଯାହା ଭାବୁଛି କରିବାକୁ ବିନା ବାଧାରେ କରିପାରିବ ।

ଅରିନ୍ଦମର ଭାବନା ସେଇଠି ରହିଗଲା । ବିଭାଘର ତ ହେବ, କଂସ ଆଉ ଅଧିକା କ'ଣ କରିବାକୁ ଚାହେଁ ? ଭାନୁପ୍ରକାଶ ଏତେ ସ୍ପଷ୍ଟ ଭାବରେ କଥା ସବୁ ବୁଝିପାରନ୍ତି । କିନ୍ତୁ ସେ ବି ଠିକ୍ ଅଧିକା କ'ଣ ଘଟିପାରେ ବା ଘଟିବା ସମ୍ଭବ ଭାବିପାରୁ ନାହାନ୍ତି । ହୁଏତ ବାପା କିଛି ସୂଚନା ଦେଇପାରନ୍ତି । କିନ୍ତୁ ସେ କିଛି କହିବେ ନାହିଁ, ବା ଯଦି କହିବେ ସେ ଏତେ ସଂକ୍ଷିପ୍ତ ଯେ ସେଥିରୁ କିଛି ବୁଝିବା ସମ୍ଭବ ନୁହେଁ । ଅରିନ୍ଦମକୁ ଅସ୍ଥିର ଲାଗୁଥାଏ । ମନେହେଉଛି ମଥୁରାରେ କ'ଣ ଯେପରି ଘଟିବାକୁ ଯାଉଛି - ବେଶ୍ ଗୁରୁତର । ଆଲୁଅରେ, ପବନରେ, ଚାରିପାଖର

ଦୃଶ୍ୟ ଅଦୃଶ୍ୟ ସବୁଥିରେ ସେଇ ସୂଚନା । ଯେପରି କୌଣସି ଅଦୃଶ୍ୟ ଲହରୀ ଆସି ତାକୁ ଧକ୍କା ଦେଉଛି । କିନ୍ତୁ ସେ ଲହରୀ କୁଆଡୁ ଆସୁଛି, କୁଆଡ଼େ ଯିବ, କେତେ ସମୟ ରହିବ ଏ ବିଷୟରେ ତା'ର ଜାଣିବାର କିଛି ଉପାୟ ନାହିଁ । ତା'ର ଗୋଟାଏ କଥା ବାରମ୍ବାର ମନେ ପଡୁଥାଏ - ଭାନୁପ୍ରକାଶଙ୍କର କଥା । ଠିକ୍ ଭାନୁପ୍ରକାଶଙ୍କର ନୁହେଁ । ଗୁରୁଦେବ ବ୍ୟାସଦେବଙ୍କ କଥା - ଧୈର୍ଯ୍ୟ ଧର, ଯାହା ଜାଣିବା କଥା ଠିକ୍ ସମୟରେ ଜାଣିବ, ସେହି ସମୟ ପାଇଁ ପ୍ରସ୍ତୁତ ହୁଅ, ମନରେ ଦମ୍ଭ ରଖ । ମନେରଖ ଭଲ ଲୋକର କେବେ କିଛି କ୍ଷତି ହେବ ନାହିଁ । ବୋଧହୁଏ ଠିକ୍ କଥା । ଗୁରୁଦେବ ସର୍ବଜ୍ଞ ପୁରୁଷ । ତାଙ୍କ କଥା କେବେ ମିଛ ହେବନି । ସେ ସକାଳୁ କାମଦାମ ସାରି ଯମୁନା ପାରି ହୋଇ ଏକା ଏକା ଭାନୁପ୍ରକାଶଙ୍କ ପାଖକୁ ଯିବାକୁ ଠିକ୍ କଲା ।

.....ଏସବୁ ଅତୀତ କଥା । ଆଜି ସେହିଦିନ, ଯେଉଁଦିନକୁ ସମସ୍ତେ ଅପେକ୍ଷା କରି ରହିଛନ୍ତି । ସେହି ଅଦ୍ୱିତୀୟ ଦିନ, ଯେଉଁଦିନ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ଭୂମିଷ୍ଠ ହେବ । ଅରିନ୍ଦମ ଆକାଶକୁ ଚାହିଁଲା । ଆକାଶ ଫର୍ଚ୍ଚା ହୋଇ ଆସିଲାଣି । ଛୋଟ ଛୋଟ ତାରା ଲିଭିଗଲେଣି । କେବଳ ଗୋଟିଏ ଉଜ୍ଜ୍ୱଳ ତାରା ପୂର୍ବ ଦିଗରେ ନିଶ୍ଚଳ ହୋଇ ଜଳୁଛି - ସକାଳର ତାରା । ସବୁଦିନେ ଏ ତାରା ଜଳେ । କିନ୍ତୁ ଆଜି ଯେପରି କିଏ, ଅରିନ୍ଦମର ମନେହେଲା, ନିଜର ବରାଭୟର ହସ୍ତ ପ୍ରସାରିତ କରିଛି । ଦୁଃଖ ସରି ଆସିଲା - ବର୍ତ୍ତମାନ ସେଇ ବିରାଟ ପୁରୁଷର ଆସିବାର ସମୟ । ଯମୁନା ଘାଟକୁ ବାପା ଗାଧୋଇବାକୁ ଗଲେଣି । ତାଙ୍କର ଉଦାତ୍ତ କଣ୍ଠରେ ସକାଳର ସ୍ତୋତ୍ର ଭାସି ଆସୁଛି । ଗତକାଲି ସାରାଦିନ ଓ ପ୍ରାୟ ଶେଷରାତି ପର୍ଯ୍ୟନ୍ତ ସାରା ଆକାଶରେ ବାଦଲ ଛାଇହୋଇ ରହିଥିଲା । ଅପର୍ଯ୍ୟାପ୍ତ ବିଜୁଳି, ଘଡ଼ଘଡ଼ି, ମଝିରେ ମଝିରେ ବର୍ଷା ବି ହେଉଥିଲା । ଆଜି ସକାଳୁ କିଛି ନାହିଁ । ବାଦଲ ଭାଙ୍ଗିଯାଇଛି । ଘଡ଼ଘଡ଼ି ବିଜୁଳି ନାହିଁ । ବର୍ଷା ବି ନାହିଁ । ଆକାଶ ପରିଷ୍କାର । ପୂର୍ବରୁ ଆଲୁଅ ଫିଟି ଆସୁଛି । ଘର ଚାରିପାଖ, ନଈବନ୍ଧ ସାରା, ସବୁଆଡ଼େ, ଅସଂଖ୍ୟ ପକ୍ଷୀର କାକଳି । ବ୍ରାହ୍ମ ମୁହୂର୍ତ୍ତର ଚିକ୍କଣ ଉଲ୍ଲାସ ନରମ ଲହୁଣୀ ପରି ଚାରିଆଡ଼େ ଲେସି ହୋଇଗଲାଣି । ଗତ ଦଶବର୍ଷ ହେଲା ଏହି ଦିନକୁ ସମସ୍ତେ ଅପେକ୍ଷା କରି ରହିଛନ୍ତି, ସେ ବି ଅପେକ୍ଷା କରି ରହିଛି । ମେଘର ଘନଘଟା ଭିତରେ ଯାହା ଆସିବ ସେ ବି ମେଘର ଅଜସ୍ର ଧାରା ପରି ଜୀବନସ୍ରାବୀ, ଜୀବନ ପ୍ରଦାୟିନୀ, ଗୁରୁଦେବଙ୍କର ସେହିକଥା ପୁଣି ଥରେ ତା ମନକୁ ଫେରି ଆସିଲା - ତୁମେ ଯାହା ଦେଖୁଛ ସେ ସମ୍ପୂର୍ଣ୍ଣ କଥା ନୁହେଁ । ତା ବାହାରେ

ଗୋଟାଏ ଅଦୃଶ୍ୟ ଶକ୍ତି ରହିଛି ଯେ କି ସବୁବେଳେ କାର୍ଯ୍ୟ କରୁଛି । ସେହି ଶକ୍ତିକୁ ବୁଝିବାକୁ ଚେଷ୍ଟା କର, ତୁମର ଅନେକ କଷ୍ଟ ଲାଘବ ହେବ । ସେ ହାତଯୋଡ଼ି ଗୁରୁଦେବଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା । ବାପା ଗାଧୋଇଛନ୍ତି, ତାଙ୍କର ସ୍ତୋତ୍ରର ଧ୍ୱନି ଏବେ ବି ଭାସି ଆସୁଛି । ଚାରିପାଖର ସଫାହୋଇ ଆସୁଥିବା ଅନ୍ଧାରକୁ ନିଜର ତୀବ୍ର ସ୍ୱରରେ ଖଣ୍ଡ ଖଣ୍ଡ କରି ଗୋଟାଏ ଟେଣ୍ଟେଇଆ ଚଢ଼େଇ ଉଡ଼ିଗଲା । କିଛି ଦୂରରେ କୁକୁରମାନେ ଭୁକି ଉଠିଲେ । ମଝି ଆକାଶରୁ ଦେଖାଯାଉ ନ ଥିବା ବାଦଲର ଘଡ଼ଘଡ଼ି ଶବ୍ଦ ଝଟକା ପବନ ପରି ଚାରିଆଡ଼େ ଖେଳିଗଲା । ଅରିନ୍ଦମର ମନ ପୁଣି ସେହି ଦଶ ବର୍ଷ ତଳର ଭୟଙ୍କର ଦିନଗୁଡ଼ିକ ପାଖକୁ ଫେରିଗଲା ।

.....ବାସ୍ତବିକ ଭୟଙ୍କର ! ମହାବାତ୍ୟା ଆସିଲା ପରି ଗର୍ଜନ କରି ବିଭାଘର ଆସିଲା ଓ ଚାଲିଗଲା । ଆଉ ସବୁ ଭାଙ୍ଗିଭୁଙ୍ଗି ଛିନଛତର କରି ଚାଲିଗଲା । କିଏ ଜାଣିଥିଲା ଘଟଣା ସବୁ ଏମିତି ମୋଡ଼ ନେବ । ଭଲ ମନ୍ଦ ହିତାହିତ ଜ୍ଞାନ ରହିଲା ନାହିଁ । ଯାହା ଆଗକୁ ଆସି ଗୋଟାଏ ବିରାଟ ଅଜଗର ସାପ ପରି ସବୁ ଗିଳିଦେଲା, ସେ ମଣିଷର କୁତ୍ସିତ ସ୍ୱାର୍ଥପରତା, କୁତ୍ସିତ ନାରକୀୟତା । ମଣିଷର ଭଲ ମଣିଷପଣିଆ ଯେ ଗୋଟାଏ ଘୋଡ଼ଣୀ ପରି, ଯେ କୌଣସି ମୁହୂର୍ତ୍ତରେ କାଢ଼ି ଫିଙ୍ଗି ଦିଆଯାଇ ପାରେ, ତାହାହିଁ ହେଲା । ସବୁ ହିସାବ କିତାବ ଭୁଲ ହୋଇଗଲା, ସବୁ ବିଚାର ବୁଦ୍ଧି ନଷ୍ଟଭ୍ରଷ୍ଟ ହୋଇଗଲା । ତା'ର ମନେଅଛି ଭାନୁପ୍ରକାଶଙ୍କ ପରି ସ୍ଥିତଧୀ, ବୁଦ୍ଧିମାନ ଲୋକ ପାଗଳଙ୍କ ପରି ହେଲେ । ଏ କ'ଣ ହେଲା, ଏ କ'ଣ ହେଲା, କାହିଁକି ଆମେ ବୁଝିପାରିଲୁ ନାହିଁ, କାହିଁକି ଆମେ ଗୋଟାଏ ଅବିଶ୍ୱାସୀ ଲୋକକୁ ବିଶ୍ୱାସ କଲୁ - ଏଇକଥା ସେ ବାରମ୍ବାର କହୁଥାନ୍ତି । ଅରିନ୍ଦମର ତ ଭୟ ହୋଇଗଲା ତାଙ୍କ ମନର ଯାହା ଅବସ୍ଥା ସେ ହୁଏତ ନିଜର କିଛି ଭୟଙ୍କର କ୍ଷତି କରିପାରନ୍ତି । ଆଉ ତାଙ୍କ କଥା ଖାଲି କ'ଣ, କାହାର ମାନସିକ ଅବସ୍ଥା ଭଲ ଥିଲା ? ଗୋଟାଏ ବଜ୍ର ପଡ଼ିବା ପରି ଅବସ୍ଥା – ସବୁ ତାବଦା ସବୁ ସ୍ତବ୍ଧ । କଂସ ଯେ ଏପରି କୌଶଳରେ କାର୍ଯ୍ୟ କରିପାରେ ଏ ଧାରଣା କାହାର ନ ଥିଲା । କଂସ ଅତ୍ୟାଚାରୀ, ମାରପିଟ ହାଣକାଟରେ ଓସ୍ତାଦ । କିନ୍ତୁ ଏ ବୁଦ୍ଧି ! ପରେ ସେମାନେ ବୁଝିଥିଲେ ଏ ବୁଦ୍ଧି କଂସର ନୁହେଁ, ଜରାସନ୍ଧର । ସେହିଯୋଗୁଁ ଜରାସନ୍ଧର ମନ୍ତ୍ରୀମାନେ ମଥୁରାରେ ବସି ରହିଥିଲେ, କୋଉ କୋଉ ଦେଶର ତାନ୍ତ୍ରିକ, ଜ୍ୟୋତିଷମାନଙ୍କୁ ଘେନି ଯେତେ ଆୟୋଜନ । ପରେ, ଏହି ଘଟଣା ପରେ ଗୁରୁଦେବ ଯେତେବେଳେ ମଥୁରାକୁ ଆସିଥିଲେ,


Digitized by srujanika@gmail.com

ଭାନୁପ୍ରକାଶ ଅଭିମାନ କରି ତାଙ୍କୁ ସେହି କଥା କହିଥିଲେ । ଅରିନ୍ଦମର ମନେଅଛି ସେମାନେ ସମସ୍ତେ ଗୋପର ବନାଞ୍ଚଳରେ ବ୍ୟାସଦେବଙ୍କୁ ଘେରି ବସିଥାଆନ୍ତି । ବ୍ୟାସଦେବ କେବଳ ହସିଥିଲେ । କହିଥିଲେ, 'ଭାନୁ, ହଁ, ଏହିପରି ସବୁ ହେବ ବୋଲି ମୁଁ ଜାଣିଥିଲି । କିନ୍ତୁ ତୁମେମାନେ ସବୁ ଜାଣିବା ଠିକ୍ ହୋଇଥାନ୍ତା କି ? ତୁମେମାନେ ନିଜ ବିଚାରବୁଦ୍ଧିରେ କାର୍ଯ୍ୟ କରୁଥିଲ, ସେଇଟାହିଁ ଠିକ୍ । ମଣିଷ ପାଇଁ ଭବିଷ୍ୟତ ଜ୍ଞାନ ସବୁଠାରୁ ବିପଦଜନକ ଅବସ୍ଥା । ସେ ଜ୍ଞାନ ନ ଥିବାରୁ ସେ ମଣିଷ ପରି ବଞ୍ଚିପାରେ । ତା ଛଡ଼ା ଆଉ କଥା ବି ଭାବ । ଏ ତ ପ୍ରାରମ୍ଭ, ଯାହା ଘଟିଲା ବୋଲି ତୁମ୍ଭେମାନେ ବ୍ୟସ୍ତ ହେଉଛ, ତାହାହିଁ ତ ଘଟିବାର କଥା । ଏ ଘଟଣା ପୁଣି ବଦଳିଯିବ । ଏ ତ ଆରମ୍ଭ ।'

ହଁ, ଆରମ୍ଭ । ଅରିନ୍ଦମର ମନରେ ଛାୟାଛବି ପରି ସବୁ ଖେଳିଗଲା । ପରେ ପରେ ଯାହାସବୁ ଘଟିଲା ସେ ଆହୁରି ପୈଶାଚିକ, ଆହୁରି ନାରକୀୟ । ବିଭାଘର ପରେ ପରେ ବଜ୍ରାହତ ପରି ମଥୁରାର ଅବସ୍ଥା । କ'ଣ ଘଟିବାକୁ ଯାଇ କ'ଣ ଘଟିଗଲା । ପାଣି ଫୋଟକା ପରି ସବୁ ଆଗ୍ରହ, ଉତ୍ସାହ, ଉନ୍ମାଦନା କୁଆଡ଼େ ମିଳେଇଗଲା । କିଛିଦିନ ଭାନୁପ୍ରକାଶ ଚୁପଚାପ ନନ୍ଦଙ୍କ ଘରେ ରହିଲେ । ପରେ ଯେତେବେଳେ ସେ ସମସ୍ତଙ୍କ ସାଙ୍ଗରେ ଆଗପରି ମିଳାମିଶା କଲେ, ଅରିନ୍ଦମ ଲକ୍ଷ୍ୟ କଲା ଯେପରି ସେ ଅନ୍ୟ ଲୋକ । ଅରିନ୍ଦମକୁ ସେ କେବଳ ଗୋଟିଏ କଥା କହିଲେ । କହିଲେ - ଅରିନ୍ଦମ, ଶେଷର ଆରମ୍ଭ ହେଲା । ଆହୁରି ଧୈର୍ଯ୍ୟ, ଆହୁରି ଦମ୍ଭ, ଆହୁରି ସାହସ ଦରକାର ।

ଅରିନ୍ଦମକୁ କିଛି ଆଶ୍ଚର୍ଯ୍ୟ ଲାଗିଥିଲା କାରଣ ଭାନୁପ୍ରକାଶ ପ୍ରାୟ କଥା ବୁଲେଇ କହନ୍ତି ନାହିଁ, ସବୁବେଳେ ସିଧା ସିଧା କଥା କହନ୍ତି । ତେବେ ଏ କେବଳ ଭାନୁପ୍ରକାଶ ନୁହନ୍ତି, ସେମାନେ ସମସ୍ତେ - ଭାନୁପ୍ରିୟ, ସତ୍ୟକାମ, ନନ୍ଦ, ସୌରଦେବ, ଗୋପା, ସେ ନିଜେ ଓ ତା'ର ସାଙ୍ଗମାନେ, ପ୍ରାୟ ସମସ୍ତେ, ଯାହା ଘଟିଲା ସେଥିରେ ସ୍ତବ୍ଧ ହୋଇଯାଇ ଥିଲେ । କଂସକୁ କେହି ବିଶ୍ୱାସ କରୁ ନ ଥିଲେ । ସେ ଯାହା ଯାହା କରୁଥିଲା ସବୁ ପଛରେ ଗୋଟାଏ କିଛି ଉଦ୍ଦେଶ୍ୟ ଥିଲା ବୋଲି ସମସ୍ତେ ଧରି ନେଇଥିଲେ । କିନ୍ତୁ ଘଟଣା ଯେଉଁ ଢଙ୍ଗ ନେଲା, ସେ ଏପରି ହେବ ବୋଲି ବା ହୋଇପାରେ ବୋଲି କାହାର ଧାରଣା ନ ଥିଲା । ତେଣୁ ଯାହା ଘଟିଲା ଘଟଣାର ଗୁରୁତ୍ୱରେ ଓ ଆକସ୍ମିକତାରେ ସମସ୍ତେ ସ୍ତବ୍ଧ ହୋଇ ଯାଇଥିଲେ । କେବଳ ଏକମାତ୍ର ଲୋକ, ଅରିନ୍ଦମର ମନେ ହୋଇଥିଲା, ଯେ ସ୍ଥିର ହୋଇ ଥିଲେ, ସେ ବାପା । ବାପା ସବୁଦିନେ ଅଳ୍ପ କଥା କହନ୍ତି । ବିଭାଘର ଦିନର ତିନି ଚାରି ଦିନ

ଆଗରୁ ସେ କଥା ପ୍ରାୟ ବନ୍ଦ କରି ଦେଇଥିଲେ । ସକାଳୁ ଅରିନ୍ଦମ ଉଠିବା ଆଗରୁ ସେ ଉଠି କାମଦାମ ସାରି ଠାକୁର ଘରେ ପୂଜା ଆରମ୍ଭ କରି ଦେଇଥାନ୍ତି । ତାଙ୍କର ଗୁରୁ ଗମ୍ଭୀର ସ୍ତୋତ୍ର ଧ୍ୱନିରେ ହିଁ ଅରିନ୍ଦମର ନିଦ ଭାଙ୍ଗେ । ତା'ପରେ ପ୍ରାୟ ସାରାଦିନ ସେ ଠାକୁର ଘରେ ରହନ୍ତି । ଖାଇବା ପିଇବା ବି ଅତ୍ୟନ୍ତ ସ୍ୱଳ୍ପ । ବିଭାଘର ଦିନ ମାଘ ପୂର୍ଣ୍ଣିମା । ତା ଆଗ ଦିନ ରାତିରେ ବାପା ଠାକୁର ଘରୁ ବାହାରି ନାହାନ୍ତି । ରାତିରେ ଅରିନ୍ଦମ ଶୋଇବାକୁ ଯିବା ଆଗରୁ ଠାକୁର ଘରେ ଆଲୁଅ ଦେଖି ଚମକି ଛିଡ଼ା ହୋଇ ଯାଇଥିଲା । ବାପା ଏତେ ସମୟ ତ ଠାକୁର ଘରେ ରହନ୍ତି ନାହିଁ । ସନ୍ଧ୍ୟା ପରେ ପରେ ପୂଜା ଅର୍ଚ୍ଚନା ସାରି ଘର ବନ୍ଦ କରି ସେ ଅନ୍ୟ କାମ ସାରନ୍ତି, ପଢ଼ାପଢ଼ି କରନ୍ତି, ତା ପରେ ରାତିର ଖାଇବା ଖାଇ ଶୋଇବାକୁ ଚାଲି ଯାଆନ୍ତି । ଏ ତାଙ୍କର ପ୍ରତି ଦିନର ଅଭ୍ୟାସ । ଅରିନ୍ଦମ ବାହାରୁ ଫେରି ଖାଇ ଶୋଇବାକୁ ଗଲାବେଳକୁ ବେଶ୍ ରାତି ହୋଇଯାଥାଏ । ବାପା ସେତେବେଳକୁ ଶୋଇ ସାରିଥାନ୍ତି ।

କିନ୍ତୁ ସେଦିନ ସେତେ ରାତିରେ ବି ସେ ଦେଖିଲା ବାପା ଠାକୁର ଘରେ ବସି ରହିଛନ୍ତି । କବାଟ ଆଉଜା ହୋଇଛି । ଆଲୁଅର ଗୋଟାଏ କ୍ଷୀଣ ରେଖା କବାଟ ଫାଙ୍କ ଦେଇ ବାହାରକୁ ଲମ୍ବି ଆସିଛି । ଭିତର ଚୁପ, କୌଣସି ଟୁଁ ଟାଁ ଶବ୍ଦ ବି ନାହିଁ । ସେ ଆସ୍ତେ କବାଟ ଅଳ୍ପ ମେଲାକରି ଘର ଭିତରକୁ ଚାହିଁଲା । ଘର ଭିତରଟା ଅଧା ଅନ୍ଧାର ଅଧା ଆଲୁଅ । ଠାକୁରଙ୍କ ପାଖରେ ଗୋଟାଏ ଦୀପ ଉଜ୍ଜ୍ୱଳ ହୋଇ ଜଳୁଛି । କବାଟ ଫାଙ୍କ ହେବା ସାଙ୍ଗେ ସାଙ୍ଗେ ଫୁଲର ସୁଗନ୍ଧି ଠେଲି ହୋଇ ବାହାରକୁ ଖେଳିଗଲା । ସେ ଦେଖିଲା କିଛି ଦୂରରେ ଠାକୁରଙ୍କ ସାମ୍ନାରେ ବାପା ପଦ୍ମାସନରେ ବସିଛନ୍ତି । ସାରା ଦେହ ସିଧା ହୋଇ ରହିଛି । କୌଣସି ଶବ୍ଦ ନାହିଁ, କୌଣସି ହଲଚଲ ବି ନାହିଁ, ନିଃଶ୍ୱାସ ପ୍ରଶ୍ୱାସ ଶବ୍ଦ ବି ଶୁଣାଯାଉ ନାହିଁ । ଆଖି ବୋଧହୁଏ ବନ୍ଦ – ଅରିନ୍ଦମର ମନେହେଲା ଏ ଖାଲି ଧ୍ୟାନ ନୁହେଁ, ପ୍ରାୟ ସମାଧିସ୍ଥ ଅବସ୍ଥା । ଅରିନ୍ଦମର ମନେ ମନେ ଭୟ ହେଲା । ସାଧାରଣତଃ ବାପା ପୂଜା ଅର୍ଚ୍ଚନା ସାରି ବାହାରି ଆସନ୍ତି । କେବେ କେବେ ଡେରି ହୁଏ । ସେତେବେଳେ ବାପା ଆଗରୁ କହି ଦେଇଥାନ୍ତି ପୂଜା ସାରୁ ସାରୁ ଡେରି ହେବ, ତାଙ୍କ ପାଇଁ କେହି ଅପେକ୍ଷା କରିବା ଦରକାର ନାହିଁ । କିନ୍ତୁ ଏପରି ଭାବରେ ବାପାଙ୍କୁ ସେ କ୍ୱଚିତ ଦେଖିଛି, ବିଶେଷ କରି ଏତେ ରାତି ପର୍ଯ୍ୟନ୍ତ, ଆଉ ଏପରି ପ୍ରାୟ ସମାଧିସ୍ଥ ଅବସ୍ଥାରେ । ଅରିନ୍ଦମ ମନେ ପକେଇବାକୁ ଚେଷ୍ଟା କଲା । ବାପାଙ୍କୁ ସାରା ରାତି ଏହିପରି ନିଶ୍ଚଳ ହୋଇ ଠାକୁର ଘରେ ବସି ରହିବା ସେ ବୋଧହୁଏ ଆଉ ଥରେ ଦେଖିଥିଲା । ସେଇ ଯେବେ କଂସ ଉଗ୍ରସେନଙ୍କୁ ତଡ଼ି ନିଜେ ମଥୁରାର ରାଜା ହେଲା । ସେଦିନ ସାରା ରାତି ବାପା ଏହିପରି ବସିଥିଲେ ।

ନାଁ, ନାଁ, ଆଉ ଥରେ ବି । ଯେବେ କଂସ ରାଜ୍ୟ ଜୟ କରି ଫେରି ଆସିଲା । ଅରିନ୍ଦମ ଆସ୍ତେ କବାଟ ଆଉଜେଇ ଦେଲା । ସେ ବୁଝିଲା ବାପା ସାରା ରାତି ଏହିପରି ବସି ରହିବେ । କିନ୍ତୁ କାହିଁକି ? କାଲି ତ ବିଭାଘର । ଗୋଟାଏ ଶୁଭ ଓ ମଙ୍ଗଳକର କାର୍ଯ୍ୟ । ସବୁ ତ ଠିକ୍‌ଠାକ୍ ଚାଲିଛି । ଖାଲି ସେ ନୁହେଁ, ତା ସାଙ୍ଗମାନେ, ସମସ୍ତେ, ଭାନୁପ୍ରକାଶ, ସମସ୍ତଙ୍କର ସେହି ମତ, କଂସକୁ କେହି ବିଶ୍ୱାସ ନ କଲେ ବି, ଅନ୍ତତଃ ବିଭାଘର ବିଷୟରେ କାହାରି ସନ୍ଦେହ ନାହିଁ । ତେବେ ବାପା କ'ଣ ଦେଖିପାରୁଛନ୍ତି ? କ'ଣ ଅଶୁଭ ହୋଇପାରେ ? ଅରିନ୍ଦମ କିଛି ସମୟ ଛିଡ଼ା ହୋଇ ଭାବିଲା । ନାଁ, ଭାବି ଲାଭ ନାହିଁ । କାଲି ଘଟଣା ଘଟିଲେ ବୁଝାଯିବ । ସେ ନିଜ ଶୋଇବା ଘରକୁ ଚାଲିଗଲା ।

କିନ୍ତୁ ସେ କ'ଣ ଶୋଇ ପାରିଲା ? ଝଡ଼ ମୁହଁରେ ଡଙ୍ଗା ପଡ଼ିଲା ପରି ସେ ଖାଲି ଏପାଖ ସେପାଖ ହେଲା । ସାରା ରାତି ଅସ୍ଥିର । ସୁ ସୁ ପବନ ବହିଲା ପରି ଜଣା ଅଜଣା କେତେ କଥା ମୁଣ୍ଡରେ ପଶି ଗୋଳେଇ ଗାଳେଇ ହୋଇ ବାହାରି ଯାଉଥାଏ । ସେ ଶୋଇଛି ପୁଣି ଶୋଇନାହିଁ । ସ୍ୱପ୍ନ ବାସ୍ତବ ଅଦ୍ଭୁତ ଭାବରେ ତା ମୁଣ୍ଡରେ ଦଳାଦଳି ହୋଇ ଫେଣ୍ଟି ହୋଇଗଲା । ଏହିପରି ସେ କେତେ ସମୟ ଥିଲା ତା'ର ଏବେ ଆଉ ମନେନାହିଁ । କିନ୍ତୁ ସାରା ରାତି ସେ ସେହିପରି ଅସ୍ଥିର ହୋଇ ରହିଥିଲା । ଆଉ ସେହି ଅଧା ନିଦ ଅଧା ଜାଗରଣ ଅବସ୍ଥାରେ ତା'ର ବାରମ୍ବାର ମନେ ହେଉଥିଲା ବାପା ଯେପରି ଠାକୁର ଘରେ କାହା ସାଙ୍ଗରେ ଗପସପ କରୁଛନ୍ତି । ସେ କ'ଣ କହୁଛନ୍ତି, କିଏ ଉତ୍ତର ଦେଉଛି । କିନ୍ତୁ କିଏ ? ବାପାଙ୍କ ଠାକୁର ଘରକୁ ରାତିରେ କିଏ ଆସିବ ? ଅସମ୍ଭବ । କିନ୍ତୁ ସେ ବାରମ୍ବାର ଶୁଣିଛି ବାପା ଯେପରି କହୁଛନ୍ତି – ହଁ ତାହାହିଁ ହେଉ, ଆଉ ଅନ୍ୟ କେହି କହୁଛି ହଁ ତାହାହିଁ ହେବ । ସାରା ରାତି ଅରିନ୍ଦମ ଛଟପଟ କରିଛି । ଏ ଯେପରି ବସୁଦେବ ଦେବକୀଙ୍କର ବିଭାଘର ନୁହେଁ, ତା ନିଜର ବିଭାଘର, ସାରା ମଥୁରାର ବିଭାଘର । ଏ ବିଭାଘରର ଆନନ୍ଦ ନୁହେଁ, ଭୟ, ବିରାଟ ଭୟ, ଯେପରି ଚାରିଆଡ଼େ ଖେଳିଗଲାଣି । ସକାଳୁ ତା ସାଙ୍ଗ ଦେବପ୍ରିୟର ଡାକରେ ତା ନିଦ ଭାଙ୍ଗିଲା ।

ସକାଳ ସବୁଦିନ ପରି ସକାଳ । ସୂର୍ଯ୍ୟ ଉଠିନାହିଁ । କିନ୍ତୁ ଚାରିଆଡ଼ ଫର୍ଚ୍ଚା ହୋଇଗଲାଣି । ଚଢ଼େଇମାନେ ଡାକି ଡାକି ଉଡ଼ି ଯାଉଥାଆନ୍ତି, ଟିକି ଟିକି ଚଢ଼େଇ ଖାଇବା ଖୋଜି ଚାରିପାଖରେ ଖୁମ୍ପି ଖୁମ୍ପି ବୁଲୁଥାଆନ୍ତି । ଗୋଟାଏ କପୋତ କୋଉଠୁ ଘୁମୁରି ଉଠିଲା । କୁମ୍ଭାଟୁଆ ଡାକି ଉଠିଲା । ଗୋଟାଏ ଗୁଣ୍ଡୁଚି ମୂଷା ତରତର ହୋଇ ଏ ଗଛ ମୂଳରୁ ସେ ଗଛ ମୂଳକୁ ଚାଲିଯାଉଥାଏ । ଗୋଟାଏ ବଡ଼ ବେଙ୍ଗ ଡେଇଁ

ଡେଇଁ ଚାଲିଗଲା । ମନେହେଲା ତା ପାଛରେ ଗୋଟାଏ ପଟପଟା ସାପ, ସରସର ହୋଇ ଚାଲିଯାଉଛି । ବାହାର ରାସ୍ତାରୁ ପାଟିଗୋଳ ଶୁଭୁଛି । ଲୋକମାନେ ଗାଧୁଆ ଘାଟକୁ ଯିବାକୁ ଆରମ୍ଭ କଲେଣି । ଟିକିଏ ଦୂରରେ କୋଉଠି ଗୋଟାଏ ଛୋଟ ପିଲା କାନ୍ଦି ଉଠିଲା । ଅରିନ୍ଦମ ନିଦ ମଳମଳ ଆଖିରେ ଉଠି ବସିଲା । ଆଖିପତା ବି ବୁଜି ହୋଇଗଲା ପରି ଲାଗୁଛି । ଆଉ ଟିକିଏ ଶୋଇଥିଲେ ବୋଧହୁଏ ହୋଇଥାନ୍ତା । ନାଁ, ଡେରି ହୋଇଯିବ । ଦେବପ୍ରିୟ ବି ଆସି ଡାକିଲାଣି । ସେମାନେ ଆଜି ସକାଳୁ ସକାଳୁ ଗୋପ ଯିବେ । ଭାନୁପ୍ରକାଶଙ୍କ ସାଙ୍ଗରେ ଦେଖା ହେବାର ଠିକ୍ ହୋଇଛି । ସତ୍ୟକାମ ରାଜଗିରି ତାଙ୍କ ଆଶ୍ରମକୁ ଯାଇ ଫେରି ଆସିଲେଣି । ସୌରଦେବ ବି ଗୋପ ଯିବେ । ବଡ଼ କଥା କୁରୁକ୍ଷେତ୍ରରୁ ଗୁରୁଦେବଙ୍କ ପାଖରୁ ବୋଧହୁଏ ଖବର ଆସି ଯାଇଥିବ । ଏ ବାହାଘର ବିଷୟରେ ମନ ବଡ଼ ଅସ୍ଥିର ଲାଗୁଛି । ମନେହେଉଛି କୋଉଠି କ'ଣ ଅଛିଣ୍ଡା ରହିଗଲା । ଠିକ୍ ବୁଝି ହେଉନାହିଁ । ସେ ଭାବିଲା ଗୁରୁଦେବ କ'ଣ ଖବର ପଠେଇଛନ୍ତି ଜାଣିଲେ ମନଟା ବୋଧେ ସ୍ଥିର ହେବ । ସେ ବିଛଣା ଛାଡ଼ି ଉଠି ବାହାରକୁ ଆସିଲା । ବାପାଙ୍କ ଠାକୁର ଘର କବାଟ ଏବେ ବି ବନ୍ଦ ଅଛି । ସେ ଟିକେ ଛିଡ଼ା ହୋଇ କାନ ପାରିଲା । ହଁ, ବାପା ଭିତରେ ଅଛନ୍ତି, ଗୁଣୁଗୁଣୁ ଶୁଭୁଛି । ତାକୁ ବଡ଼ ବେଠିକଣା ଲାଗିଲା । ଏ ନିଶ୍ଚୟ ଅତ୍ୟନ୍ତ ଗୁରୁତର କଥା । ସାରାଦିନ ରହିଛି । ଆଜି ତ ବିଭାଘର । କ'ଣ ଘଟିବ କେଜାଣି ?

ସକାଳର କାମଦାମ ସାରି ଅରିନ୍ଦମ ଗୋପକୁ ଯିବାପାଇଁ ପ୍ରସ୍ତୁତ ହେଲା । ଦେବପ୍ରିୟ ପ୍ରସ୍ତୁତ ହୋଇଆସିଛି । ଅରିନ୍ଦମର ମନେହେଲା ଦେବପ୍ରିୟର ମନ ବି ସ୍ଥିର ନୁହେଁ । ସାଧାରଣ ଭାବରେ ସେ ବେଶ ହସଖୁସିଆ, କୌଣସି କଥାକୁ ବିଶେଷ ଗୁରୁତ୍ୱ ଦିଏନା । କିନ୍ତୁ ସେଦିନ ଅରିନ୍ଦମର ମନେହେଲା ତା'ର ସେ ହସଖୁସି ଭାବ ଖୁବ୍ ବେଶି ନାହିଁ । ମୁହଁ ଗମ୍ଭୀର ଗମ୍ଭୀର, କ'ଣ ଯେପରି ସେ ଭାବୁଛି ।

'ଦେବ, କାଲି ରାତିରେ ତୁ ବୋଧେ ଭଲ ଶୋଇନାହୁଁ । କ'ଣ ଏତେ ଭାବୁଛୁ ?' ସେ ପଚାରିଲା ।

ଦେବ ସାମାନ୍ୟ ଟାଣିକରି ହସିଲା, କହିଲା - 'ତୋ ଠୁଁ କମ । କିରେ ଆଜି ତ ଭାବିବାର ଦିନ । ଆଉ କେଇ ଘଟିକା ପରେ ବିଭାଘର । ତାପରେ... ?'

'ତା ପର ?' ଅରିନ୍ଦମ ବି ଟାଣିକରି ହସିବାକୁ ଚେଷ୍ଟା କଲା ।'

'ତା'ପରେ, ସମସ୍ତେ ମଙ୍ଗଳରେ ରହନ୍ତୁ । ଆଉ କ'ଣ ?'

'ହେଲେ ତ', ଦେବପ୍ରିୟ କହିଲା, 'ଶୁଣ, ମୁଁ ଆଜି ଘରୁ ଆସିଲାବେଳେ, ଏତେ ସକାଳୁ ବି, ରାସ୍ତାରେ ଲୋକ ଜମିବାକୁ ଆରମ୍ଭ କଲେଣି । ରଙ୍ଗ ବେରଙ୍ଗର


Digitized by srujanika@gmail.com

ପୋଷାକ ପିନ୍ଧି, ଚିକଣଚାକଣ ହେଇ ସମସ୍ତେ ଚାଲିଛନ୍ତି - ପୁରୁଷ, ସ୍ତ୍ରୀ, ପିଲାମାନେ ବି, ବୁଢ଼ାମାନେ ବି ।'

'କୁଆଡ଼େ ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

'କିରେ, କୁଆଡ଼େ କଅଣ ? ବାହାଘରକୁ । ଭୁଲିଗଲୁ କି ?' କହିଲା ଦେବପ୍ରିୟ, 'ବାହାଘର ତ କଂସ ଉଆସ ଭିତରେ, କିନ୍ତୁ ରାଜପ୍ରାସାଦ ବାହାରେ, ପାଖ ପଡ଼ିଆରେ ଭୋଜି । କଂସ ମଥୁରାର ସବୁ ଲୋକଙ୍କୁ ଡାକିଛି । କାଲି ବହୁତ ରାତି ପର୍ଯ୍ୟନ୍ତ ଢେଙ୍ଗୁରା ପିଟି ସବୁ ଲୋକଙ୍କୁ ଡକା ଯାଉଥିଲା । ଯେମିତି ଭୋଜି ଖାଇବାକୁ ସମସ୍ତେ ଆସନ୍ତି । କଂସ ରାଜ୍ୟ ଜୟ କରି ଫେରିଲା ପରେ ସେ ଯେଉଁ ଭୋଜି ଝଡ଼ରେ ଭାଙ୍ଗିଗଲା, ମୁଁ ଶୁଣୁଛି ଏ ତା ଠଉଁ ବହୁତ ବଡ଼ । ଆଜି ଦିନଯାକ ଲୋକଙ୍କୁ ଖାଇବାକୁ ଦିଆଯିବ ।'

'ସେଇଟା ହିଁ ମତେ କେମିତି କେମିତି ଲାଗୁଛି । ଏତେ ଆଡ଼ମ୍ବର କାହିଁକି ?' କହିଥିଲା ଅରିନ୍ଦମ ।

'ବାହାଘରରେ ତ ଆଡ଼ମ୍ବର ହୁଏ ।' କହିଲା ଦେବପ୍ରିୟ, 'ଲୋକେ ଆସିବେ, ଖୁସି ମଉଜ କରିବେ, ଖିଆପିଆ ହେବ । ତା'ହେଲେ ସିନା ବାହାଘରଟା ବାହାଘର ପରି ଲାଗିବ ।'

'ହଁ, ଠିକ୍ କଥା', ଅରିନ୍ଦମ ଥଙ୍ଗେଇ ଥଙ୍ଗେଇ କହିଲା, 'ଖୁସି ମଉଜ, ଖିଆପିଆ, ବାହାଘର ନାଁ ? ଠିକ୍... !'

ଅରିନ୍ଦମ ଚୁପ କରିଗଲା । ତା ମନଟା ଯାହାକୁ କହନ୍ତି ଘର ଧରୁନି । କୋଉଠି କ'ଣ ଗୋଳମାଳ ରହି ଯାଉଛି । ସେଇକଥା ସେ କହିଲା - 'ତୋ କଥା ଠିକ୍ ହେବ । କିନ୍ତୁ କଂସକୁ ଆମେ ଯେମିତି ଜାଣିଛେ ଏ କଥାଟା କେତେ ଠିକ୍ ତୁ ଭାବୁଛୁ ? ଦେବକୀ ବସୁଦେବଙ୍କ ବିଭାଘର ଠିକ୍ ହେଲା । ଠିକ୍ ଅଛି । କିନ୍ତୁ ସେଥିପାଇଁ ଏତେ ହଇହଲ୍ଲା କାହିଁକି ? ଯେମିତି ସୂର୍ଯ୍ୟ ଚନ୍ଦ୍ର ଖସି ପଡ଼ିବେ । ଯେମିତି ମଥୁରାରେ ଆଉ କେବେ ବାହାଘର ହୋଇନି । ଏଇଟା ପ୍ରଥମ ବାହାଘର । ତା ଛଡ଼ା ଆଉ ଗୋଟାଏ କଥା ଅଛି । କଂସର ଚରିତ୍ର ଯାହା - ଅତ୍ୟନ୍ତ ଲମ୍ପଟ, ଭ୍ରଷ୍ଟାଚାରୀ, ହୀନ ଚରିତ୍ରର ଲୋକ । ଯେ ମଣିଷ ଜୀବନକୁ ସାମାନ୍ୟ ଗୁରୁତ୍ୱ ଦିଏନା, ମଥୁରାର ଲୋକଙ୍କୁ ଯେ ପୋକମାଛି ପରି ବ୍ୟବହାର କରେ, ସେ ହଠାତ୍ ମଥୁରାର ହଜାର ହଜାର ଲୋକଙ୍କୁ ଡାକି ଆଡ଼ମ୍ବର କରି ଖାଇବାକୁ ଦେବ । ଏତେ ସ୍ନେହ ତା'ର କେବେଠଉଁ ଆସିଲା ? ଭାବୁନୁ, ନିଶ୍ଚୟ କିଛି ମତଲବ ଅଛି ।' ଦେବପ୍ରିୟ ଟିକେ ଭାବିଲା, କହିଲା - 'ଶୁଣ, ମୁଁ ଗୋଟାଏ କଥା ଭାବୁଛି । ଆମେ ତ ଗୋପକୁ ଯିବା,

ତା ଆଗରୁ ଚାଲ ଆମେ ଟିକେ ମଥୁରା ଭିତରକୁ ଯାଇ ବୁଲି ଆସିବା, ଦେଖିବା କ'ଣ ଘଟୁଛି ।'

ଅରିନ୍ଦମ ଭାବିଲା ଦେବପ୍ରିୟ କଥା ଠିକ୍ । ଗୋପରେ ତ ଭାନୁପ୍ରକାଶ ପ୍ରଭୃତି ଅଛନ୍ତି । ସେମାନେ ହୁଏତ ଆଜି ସକାଳେ ମଥୁରା କଥା ଜାଣିବାକୁ ଚାହିଁବେ । ଦୁଇ ବନ୍ଧୁ ଗୋପ ଯିବା ଆଗରୁ ମଥୁରାରେ ବୁଲାବୁଲି କରି ଯିବାକୁ ସ୍ଥିର କଲେ ।

ମଥୁରାର ରାସ୍ତାକୁ ଆସି ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇଗଲା । ମଥୁରା ତା'ର ଅତ୍ୟନ୍ତ ପରିଚିତ ସହର । ମଥୁରାର ପ୍ରତ୍ୟେକ ରାସ୍ତା, ପ୍ରତ୍ୟେକ ଛକ, ପୂର୍ବ, ଦକ୍ଷିଣ ସବୁ ଅଞ୍ଚଳ ତା'ର ଜଣାଶୁଣା । ତା ଛଡ଼ା ସେ ଓ ତା'ର ବନ୍ଧୁମାନେ ମଥୁରାର ବିଭିନ୍ନ ଅଞ୍ଚଳରେ କାମ କରନ୍ତି, ବହୁ ଲୋକଙ୍କ ସହିତ ମିଶନ୍ତି ଓ ଅନେକ ଲୋକ ସେମାନଙ୍କୁ ଜାଣନ୍ତି । ସାଧାରଣ ଭାବରେ ମଥୁରା ବେଶ ପୁରୁଣା ଓ ବଡ଼ ସହର, ଓ ଯାଦବମାନଙ୍କର ବହୁ ଗୋଷ୍ଠୀ ମଥୁରାର ବିଭିନ୍ନ ଅଞ୍ଚଳରେ ଘରଦ୍ୱାର କରି ରହିଛନ୍ତି, ଓ କୌଣସି ପର୍ବପର୍ବାଣି ହେଲେ ବା ଅନ୍ୟ କୌଣସି କାରଣରେ ବି, ରାଜପ୍ରାସାଦକୁ ଲାଗିଥିବା ବିସ୍ତୀର୍ଣ୍ଣ ପଡ଼ିଆରେ ସମସ୍ତେ ଏକାଠି ହୁଅନ୍ତି । ଘରୁ ବାହାରି ଉଭୟ ଅରିନ୍ଦମ ଓ ଦେବପ୍ରିୟ ସେହି ପଡ଼ିଆ ଆଡ଼କୁ ଚାଲିଲେ । ସେଦିନ ଅରିନ୍ଦମକୁ ଯାହା ଆଶ୍ଚର୍ଯ୍ୟ ଲାଗିଥିଲା ସେ ରାସ୍ତାର ଲୋକ ଭିଡ଼ । ଦେବପ୍ରିୟ ଠିକ୍ କହୁଥିଲା । ରାସ୍ତାରେ ଏତେ ଗହଳ ଚହଳ ସେ ଆଗରୁ କେବେ ଦେଖି ନ ଥିଲା । ଅନେକ ଲୋକ ଚାଲିଛନ୍ତି – ପୁରୁଷ, ସ୍ତ୍ରୀ, ପିଲା, ବୁଢ଼ା, ଅନେକ । ପୋଷାକ ପତ୍ର, ଢଙ୍ଗଢ଼ାଙ୍ଗ, କଥାବାର୍ତ୍ତାରୁ ମନେହେଉଛି ସମସ୍ତେ ଖୁସି, ଯେମିତି ଗୋଟାଏ ବଡ଼ ପର୍ବରେ ଯୋଗଦେବାକୁ ଚାଲିଛନ୍ତି ।

ଦେବପ୍ରିୟ କହିଲା, 'ଦେଖୁଛୁ, କେତେ ଲୋକ । ମଥୁରାର କୋଉ କୋଉ ଅଞ୍ଚଳରୁ ଉଠି ଆସିଛନ୍ତି, କେଜାଣି ? ମୋର ତ ସନ୍ଦେହ ହେଉଛି, ଏମାନେ ସବୁ ମଥୁରାର ଲୋକ ତ ? ଏମାନଙ୍କର ଢଙ୍ଗଢ଼ାଙ୍ଗ, କଥାବାର୍ତ୍ତା ମୋତେ କେମିତି କେମିତି ଲାଗୁଛି ।'

ଅରିନ୍ଦମ ଲୋକମାନଙ୍କୁ ଭଲକରି ଚାହିଁଲା । ସତେ, ସକାଳୁ ସକାଳୁ ଏତେ ଲୋକ ! କୌଣସି ପର୍ବପର୍ବାଣିରେ ମଥୁରାର ରାସ୍ତାରେ ଗହଳି ହୁଏ । କିନ୍ତୁ ଏମିତି ନୁହେଁ ! ଠେଲାପେଲା ହୋଇ ଲୋକେ ଚାଲିଛନ୍ତି, ଗୋଟିଏ ମୁହାଁ, ସେଇ ରାଜପ୍ରାସାଦ ପାଖ ପଡ଼ିଆକୁ । ଅରିନ୍ଦମ ମନକୁ ବି ପାପ ଛୁଇଁଲା । କହିଲା, 'ଦେବ ଯାହା କହୁଛୁ ମୋର ବି ସେହି ସନ୍ଦେହ ହେଉଛି । ଏମାନେ ସମସ୍ତେ ମଥୁରା ଲୋକ ତ ? ଆମେ ତ ମଥୁରାର ଅନେକ ଅଞ୍ଚଳ ବୁଲିଛେ, କାଇଁ, ଏମାନଙ୍କୁ ଦେଖିଲା ପରି

ତ ମନେ ହେଉନି ।'

ଦେବପ୍ରିୟ କିଛି ଉତ୍ତର ଦେଲା ନାହିଁ । ଦୁଇବନ୍ଧୁ ଚୁପଚାପ ସେହି ଭିଡ଼ ଭିତରେ ଚାଲିଲେ । ସେଇ ଗୋଟାଏ କଥା ଅରିନ୍ଦମ ମନରେ ଘୂରି ଘୂରି ବୁଲିଲା - ଏତେ ସକାଳୁ, ଏତେ ଲୋକ, ଖାଲି ଭୋଜି ଖାଇବା ପାଇଁ !

ସେମାନେ ସ୍ଥିର କଲେ ଲୋକଙ୍କ ସାଙ୍ଗରେ ଟିକେ ମିଶାମିଶି କରିବେ, ପଚରା ପଚରି କଲେ ଭଲ ହେବ । ଏମାନଙ୍କର କଥାବାର୍ତ୍ତା ଠିକ୍ ଲାଗୁନି, ପୋଷାକପତ୍ର ଠିକ୍ ଲାଗୁନି । ନାଁ, ଏମାନେ ମଥୁରାର ସ୍ଥାନୀୟ ଲୋକ ନୁହନ୍ତି, ବାହାରୁ ଆସିଛନ୍ତି । ସେ କହିଲା, 'ଦେବ, ନାଁ ଏମାନେ ମଥୁରାର ଲୋକ ନୁହନ୍ତି, ମଥୁରା ଲୋକଙ୍କ ପାଇଁ ଆମର ଭୁଲ ହେବନି । ସେମାନଙ୍କୁ ତ ସବୁଦିନେ ଦେଖୁଛେ ।'

ଦୁଇ ବନ୍ଧୁ ଦେଖିଲେ ସେମାନଙ୍କର ବିଚାର ହିଁ ଠିକ୍ । ଏ ଭିଡ଼ ଭିତରେ କିଛି କିଛି ମଥୁରା ଭିତରର ଲୋକ ଅଛନ୍ତି । ସେମାନେ କେହି କେହି ଅରିନ୍ଦମ ଓ ଦେବପ୍ରିୟଙ୍କୁ ଚିହ୍ନିଲେ । କଥାବାର୍ତ୍ତା ବି କଲେ । ହଁ, ସେମାନେ ବାହାଘର ବିଷୟରେ ଶୁଣିଛନ୍ତି, ଶୁଣିଛନ୍ତି ରାଜା କଂସଙ୍କର ଭଉଣୀ ଦେବକୀ କାହାକୁ ବିଭା ହେବେ । ବାସ୍, କାହାକୁ ବିଭା ହେବେ ଜାଣନ୍ତିନି । ହଁ ବୋଧେ ଆଜି ବିଭାଘର ହେବ । କିନ୍ତୁ ବାହାଘର ପାଇଁ ସେମାନେ ଆସି ନାହାନ୍ତି । ରାଜା ରାଜୁଡ଼ା ବାହାଘର । ସେ ତ ହବ । ସେମାନେ ଆସିଛନ୍ତି ଭୋଜି ପାଇଁ । ବିରାଟ ଭୋଜି ହେବ, ସେମାନଙ୍କୁ କୁହାଯାଇଛି ସାରା ଦିନ ଖିଆପିଆ ଚାଲିବ । ଡେଙ୍ଗୁରା ଦିଆ ହୋଇଛି ସମସ୍ତେ ଆସିବ, ସକାଳୁ ସକାଳୁ ଆସିବ, ସାରା ଦିନ ରହିବ । ରାଜା କଂସ ସମସ୍ତଙ୍କୁ ଆସିବା ପାଇଁ ବାରମ୍ବାର ଅନୁରୋଧ କରିଛନ୍ତି । ଖାଲି ଭୋଜି ନୁହେଁ, ଟଙ୍କାପଇସା ବି ବଣ୍ଟା ହେବ । କଂସ ରାଜ୍ୟ ଜୟ କରି ଫେରିଛନ୍ତି । ତାଙ୍କର ଇଚ୍ଛା ସବୁ ପ୍ରଜାମାନେ ଖୁସି ହୁଅନ୍ତୁ, ସେ ଯାହା ଆଣିଛନ୍ତି ସମସ୍ତେ କିଛି କିଛି ନେବେ, ସମସ୍ତଙ୍କୁ ମିଳିବ । ଏ ଖାଲି ମଥୁରା ଭିତରର ଲୋକଙ୍କର କଥା ନୁହେଁ, ମଥୁରା ବାହାର ଲୋକଙ୍କର ବି । ସେମାନେ ଦେଖିଲେ ମଥୁରା ବାହାରୁ ବହୁତ ଲୋକ ଆସିଛନ୍ତି - ଦକ୍ଷିଣ ଓ ପୂର୍ବ ବନାଞ୍ଚଳରୁ । ବହୁତ ଲୋକ, ସେହିଯୋଗୁଁ ସେମାନଙ୍କୁ ଅଲଗା ଅଲଗା ଲାଗୁଛି । ବାହାଘର ବିଷୟରେ ସେମାନଙ୍କର ଆଗ୍ରହ ନାହିଁ । ବାହାଘର ବିଷୟରେ ସେମାନେ ପ୍ରାୟ କିଛି ଜାଣନ୍ତିନି, ଜାଣିବାକୁ ବି ଚାହାନ୍ତି ନାହିଁ । ଭଲ ହେଲା ବାହାଘର ହେଉଛି । ରାଜାଘର ବିଭାଘର । ବଢ଼ିଆ ଖାଇବାକୁ ମିଳିବ, ଟଙ୍କା ପଇସା ମିଳିବ । ଆଉ କ'ଣ ଦରକାର ?

ଦୁଇ ବନ୍ଧୁ ପରସ୍ପର ମୁହଁକୁ ଚାହିଁଲେ । ଏକଥା ସେମାନେ ଭାବି ନ ଥିଲେ ।


Digitized by srujanika@gmail.com

ସେମାନେ ଏ ବାହାଘରଟାକୁ ମୁଖ୍ୟ ବୋଲି ଭାବି ନେଇଥିଲେ । ଖାଲି ସେମାନେ ନୁହନ୍ତି । ଭାନୁପ୍ରକାଶ ପ୍ରଭୃତି ସମସ୍ତେ । ମନେ ହେଉଥିଲା କଂସ ଯାହା କିଛି କରୁଛି ସବୁ ବାହାଘରକୁ ଉପଲକ୍ଷ କରି କରୁଛି । ସେଦିନ ଲୋକଙ୍କ ଭିତରେ ଚାଲୁ ଚାଲୁ, ସେମାନଙ୍କ ସାଙ୍ଗରେ କଥା କହୁ କହୁ, ସେମାନଙ୍କର କଥା ଶୁଣୁ ଶୁଣୁ ଦୁଇ ବନ୍ଧୁଙ୍କର ମନେହେଲା ଏ ଖୁବ୍ କୌଶଳର କଥା । ଏ ସାଧାରଣ ଭାବରେ ବାହାଘର, ବାହାଘରକୁ ଆସିବା, ବାହାଘରରେ ଖିଆପିଆ କରିବା, ବାହାଘରରେ ମଉଜ ମଜଲିସ କରିବା କଥା ନୁହେଁ । ବାହାଘର ଗୋଟାଏ ଘଟଣା । ମଥୁରା ଭିତରୁ ଓ ମଥୁରା ବାହାରୁ ଅସଂଖ୍ୟ ଅସଂଖ୍ୟ ଲୋକଙ୍କୁ ଆଣିବା, ଗୋଟାଏ ଜାଗାରେ ଏକାଠି କରିବା, ସାରାଦିନ ସେମାନଙ୍କୁ ଖାଇବା ପିଇବାକୁ ଦେବା, ଟଙ୍କା ପଇସା ଦେବା, ଲୁଗାପଟା ଦେବା, ଯେପରି ସେମାନେ ଆଉ କୁଆଡ଼େ ନ ଯାଇ ଗୋଟାଏ ଜାଗାରେ ସାରାଦିନ ରହିବେ, ଆଉ କିଛି କଥା ଭାବିବେ ନାହିଁ ବା ଅନ୍ୟ କିଛି କଥା ଜାଣିବାକୁ ଚାହିଁବେ ନାହିଁ - ଏ ଆଉ ଗୋଟାଏ ଘଟଣା । ଏ ଦୁଇ ଘଟଣାର ପରସ୍ପର ସହିତ ସମ୍ପର୍କ ଅଛି, ପୁଣି ସମ୍ପର୍କ ନାହିଁ । ଅତ୍ୟନ୍ତ ଚତୁରତାର ସହିତ ଏ ଦୁଇ ଘଟଣାକୁ ମିଶେଇ ଦିଆଯାଇଛି । ଅରିନ୍ଦମର ମନେହେଲା ଏ ବାହାଘର ବ୍ୟାପାର ଏତେ ସରଳ ନୁହେଁ, ଘଟଣା କ୍ରମଶଃ ଜଟିଳ ହୋଇ ଉଠୁଛି । ଭାନୁପ୍ରକାଶଙ୍କୁ ଏସବୁ କଥା ସାଙ୍ଗେ ସାଙ୍ଗେ ଜଣେଇବା ଦରକାର ।

ଲୋକ ଗହଳିରେ ମିଶି ସେମାନେ ଆଗକୁ ଆଗକୁ ଚାଲିଲେ, କିଛି ଦୂର ଯିବାକୁ ହେଲା । ରାଜପ୍ରାସାଦର କୋଠା ସବୁ ଟପି, ପଛବାଟେ ବୁଲି, ଯମୁନା ଅଛ ବାଟ ଥାଇ ଯେଉଁ ବିସ୍ତୀର୍ଣ୍ଣ ପଡ଼ିଆ ସେଇଠି ଭିଡ଼ ଶେଷ ହୋଇଥାଏ । ସମସ୍ତେ ସେଠି ଜମିଥାନ୍ତି । ସାରା ପଡ଼ିଆ ଛାମୁଡ଼ିଆ ବାନ୍ଧି ଦିଆଯାଇଛି, ଲତାରେ ଫୁଲରେ ସଜେଇ ଦିଆଯାଇଛି । ରଙ୍ଗ ବେରଙ୍ଗର କାଗଜ ଓ ପତାକାସବୁ ସବୁଆଡ଼େ ଉଡୁଥାଏ । ଜାଗାଏ ଜାଗାଏ ବାଜାବାଲାମାନେ ବସି ବାଜା ବଜଉଥାନ୍ତି, କାହାଳି ଫୁଙ୍କୁଥାନ୍ତି । ଅଛ କେତେ ଜାଗାରେ ବହୁତ ଲୋକଭିଡ଼ । ସେଠି ବାଇନାଚ ଚାଲିଥାଏ । ସେମାନେ ବୁଲି ବୁଲି ଦେଖୁଥାନ୍ତି । ଗୋଟାଏ କଡ଼କୁ ଖନ୍ଦା ଲାଗିଥାଏ - ବିରାଟ ଖନ୍ଦା । ରୋଷେଇ ଚାଲିଥାଏ, ଲୋକେ ଖାଇବାକୁ ବି ବସି ଗଲେଣି । ଯମୁନା ମାଛ, ତା ସାଙ୍ଗରେ ମାଂସ - ପ୍ରଚୁର ମାଂସ । ତା ସାଙ୍ଗରେ ଏ କ'ଣ, ସେମାନେ ଚମକି ପଡ଼ିଲେ, ପ୍ରତ୍ୟେକ ପତ୍ର ପାଖରେ ଗିଲାସରେ ଲାଲ ରଙ୍ଗର ମଦ । ଲୋକେ ଖାଇବାକୁ ଆରମ୍ଭ କରିଥାନ୍ତି। ପରଷିବା ଲୋକ ବୁଲି ମାଛ, ମାଂସ, ମଦ - ଦରକାର ସାଙ୍ଗେ ସାଙ୍ଗେ ପୂରଣ କରିଦେଉଥାନ୍ତି ।


Digitized by srujanika@gmail.com

ଦେବପ୍ରିୟର ହାତ ଧରି ଅରିନ୍ଦମ ଚୁପ କରି ଗୋଟାଏ ଜାଗାରେ ଛିଡ଼ା ହେଲା । କହିଲା, 'ଦେବ, ଦେଖୁଛୁ ତ ? ଏ ଯେତେ ଲୋକ – ବାହାଘର ସାଙ୍ଗରେ କିଛି ସମ୍ପର୍କ ନାହିଁ । ଏମାନେ ବାହାଘର କଥା ଜାଣନ୍ତିନି, କି ଜାଣିବାକୁ ଚାହାନ୍ତି ନାହିଁ । ଏମାନେ ଖାଇବେ, ପିଇବେ, ଲୁଗାପଟା ନେବେ, ଟଙ୍କା ପଇସା ନେବେ, ବାସ୍ । ରାଜା କଂସ ରାଜ୍ୟ ଜୟ କରି ଫେରିଛନ୍ତି, ଏ ସେଇ ଆଡ଼ମ୍ବର । ଶୁଣୁଛୁ ତ, ଚାରିଆଡ଼େ ରାଜା କଂସଙ୍କର ଜୟ ଜୟ କାର ।'

'କିନ୍ତୁ ବାହାଘର ତ ହଉଛି', ଦେବପ୍ରିୟ କହିଲା ।

'ହଁ, ହଉଛି' ଅରିନ୍ଦମ କହିଲା, 'କିନ୍ତୁ ସେ ଅନ୍ୟ ଜାଗାରେ ହେଉଛି, ଚୁପଚାପ ହେଉଛି, ଏ ଭିଡ଼ ଭିତରେ ନୁହେଁ । ଦେଖୁନୁ ଯିଏ ଭାବିବ ଏମାନେ ସବୁ ରାଜାଘର ବିଭାଘରକୁ ଆସିଛନ୍ତି । ନାଁ ବିଭାଘରକୁ ନୁହେଁ, ଖାଇବାକୁ, ଟଙ୍କା ପଇସା ନବାକୁ ।'

'ତା ହେଲେ ଏ ଧୁମ୍‌ଧାମ ବାହାଘର ପାଇଁ ନୁହେଁ ।' କହିଲା ଦେବପ୍ରିୟ ।

'ନାଁ, ମନେହେଉଛି ବାହାଘରରୁ ଲୋକଙ୍କୁ ଦୂରେଇ ରଖିବା ପାଇଁ,' ଅରିନ୍ଦମ ନିଜକୁ ନିଜେ କହିଲା । ତା'ର ମନେହେଲା ଭାନୁପ୍ରକାଶ ବୋଧେ ଏହିପରି ଯୁକ୍ତି କରନ୍ତେ । ସେ କହିଲା, 'ଦେବ, ଯାହା ମୁଁ ଦେଖୁଛି ଏଠିକି ଏମିତି ସାରାଦିନ ଲୋକ ଆସିବେ । ଖାଇବେ, ପିଇବେ, ଆଡ୍ଡା କରିବେ, ଆଉ କୁଆଡ଼େ ଯିବେ ନି ।'

'ଆମେ ?' ଦେବପ୍ରିୟ ପଚାରିଲା ।

'ଆମେ ଗୋପକୁ ଯିବା ।' କହିଲା ଅରିନ୍ଦମ । ତା' ଆଗରୁ ବିଭାଘର କଥା ବୁଝିବାକୁ ହେବ । ଚାଲ ।'

ପଡ଼ିଆ ସାରା ଲୋକ ଖାଇବାକୁ ବସିଗଲେଣି । କିଛି କିଛି ଜାଗାରେ ଏକାଠି ହୋଇ ମଦ ପିଉଛନ୍ତି ଓ ପାଟିଗୋଳ କରୁଛନ୍ତି । ଚାରିଆଡ଼େ ହୋ ହଲ୍ଲା । ପୁରୁଷ ସ୍ତ୍ରୀ ପ୍ରଭେଦ ବି ନାହିଁ, ଲୋକ ମିଶାମିଶି ହୋଇ ଗଲେଣି । ଦୁଇବନ୍ଧୁ ଆଉ ଅପେକ୍ଷା କଲେ ନାହିଁ, ଭିଡ଼ କାଟି ରାଜପ୍ରାସାଦ ଆଡ଼କୁ ଚାଲିଲେ । ରାଜ ପ୍ରାସାଦର ହତା ଭିତରେ ବାହାଘରର ବନ୍ଦୋବସ୍ତ ।

ପଡ଼ିଆ ପାଖରୁ ଟିକେ ବୁଲିକରି ଗଲେ ରାଜପ୍ରାସାଦର ହତା ଓ କୋଠା ସବୁ । ଖୁବ୍ ଦୂର ନୁହେଁ । ଖୁବ୍ ପାଖ ବି ନୁହେଁ । ସେମାନେ ଦେଖିଲେ ପଡ଼ିଆ ପାଖରୁ ସେମାନେ ଯେତେ ଦୂରକୁ ଦୂରକୁ ଯାଉଛନ୍ତି ଲୋକ ଭିଡ଼ ସେତେ ସେତେ କମି ଆସୁଛି । ରାଜପ୍ରାସାଦ ପାଖରେ ଲୋକ ଭିଡ଼ ଯଥେଷ୍ଟ କମ, ରାସ୍ତାରେ ଯେତେ ଯେତେ ଲୋକଙ୍କୁ ସେମାନେ ଦେଖି ଆସିଲେ ସମସ୍ତେ ଖାଇବା ପିଇବା, ମଉଜ


Digitized by srujanika@gmail.com

ମଜଲିସ ଆଡ଼କୁ ଆଗେଇଛନ୍ତି । କଂସର ଲୋକମାନେ ବି ମଝିରେ ମଝିରେ ରହି ଲୋକଙ୍କୁ ସେହି ଦିଗକୁ ମୁହେଁଇ ଦଉଛନ୍ତି । ଏଠି ରାଜପ୍ରାସାଦ ସାମ୍ନାରେ ଲୋକ ଅଛ । ଯେଉଁମାନେ ଯିବା ଆସିବା କରୁଛନ୍ତି ମନେ ହେଉଛି କୌଣସି କୌଣସି ନିର୍ଦ୍ଦିଷ୍ଟ କାମରେ ସେମାନେ ଯିବା ଆସିବା କରୁଛନ୍ତି । ଦୁଇ ବନ୍ଧୁ ଯାଇ ସିଂହଦରଜା ପାଖରେ ଗୋଟାଏ କଡ଼କୁ ଛିଡ଼ା ହେଲେ । ଦି ତିନିଟା କଥା ସେମାନେ ଲକ୍ଷ୍ୟ କଲେ । ପ୍ରଥମରେ ଚାରିପାଖରେ ଲୋକ ଭିଡ଼ ନ ଥିଲେ ବି କିଛି କିଛି ଲୋକ ଅଛନ୍ତି । ଖିଆପିଆ ନାହିଁ ଠିକ୍, କିନ୍ତୁ ସମସ୍ତେ କର୍ମ ଚଞ୍ଚଳ, ଯିବା ଆସିବା ଲାଗିଛି । ଯେପରି କୌଣସି ଗୁରୁତର କାର୍ଯ୍ୟ ପ୍ରାସାଦ ଭିତରେ ଚାଲିଛି, ଆଉ ସମସ୍ତେ ସେଥିପାଇଁ ବ୍ୟସ୍ତ । ଦ୍ୱିତୀୟରେ, ଏ ଲୋକମାନେ ଯାହା ବୁଝିହେଉଛି, କ୍ୱଚିତ ମଥୁରାର ଲୋକ । ମଗଧର ଲୋକ ହୋଇପାରନ୍ତି, ବା ଆଉ କେହି । ସେମିତି ସିଂହଦରଜାରେ ଜଗିଥିବା ସୈନିକମାନେ କେହି ମଥୁରାର ସୈନିକ ନୁହନ୍ତି, ସବୁ ବାହାରର ଲୋକ । କିଛି ରାକ୍ଷସ ସୈନ୍ୟ ବି ମିଶିକରି ରହିଛନ୍ତି । ତୃତୀୟରେ, ରାଜପ୍ରାସାଦରୁ ବାହାରି ବାହାରକୁ ଯାଉଥିବା ବା ବାହାରୁ ରାଜପ୍ରାସାଦ ଭିତରକୁ ଯାଉଥିବା ଲୋକେ କେହି ସିଧା ସିଧା ଯିବା ଆସିବା କରିପାରୁ ନାହାନ୍ତି । ପ୍ରତ୍ୟେକ ସୈନ୍ୟମାନଙ୍କ ନିକଟରେ ପରିଚୟ ଦେଉଛନ୍ତି ଓ ସେମାନଙ୍କ ଅନୁମତି ହେଲେ ହିଁ ଯିବା ଆସିବା କରୁଛନ୍ତି । ହଠାତ୍ ଅରିନ୍ଦମର ମନେହେଲା ତିନି ଚାରିଜଣ ଗୋଷ୍ଠୀ ମୁଖିଆ ବୋଧେ ଆସିଲେ । ପୋଷାକପତ୍ର ଆଡ଼ମ୍ବରରେ ପିନ୍ଧିଛନ୍ତି, ଦେହରେ ଅଳଂକାର, ସେମାନଙ୍କ ପଛରେ ବିଭିନ୍ନ ଭାର ମୁଣ୍ଡେଇ ଚାରି ପାଞ୍ଚଜଣ ମୂଲିଆ ଲୋକ । ସିଂହଦରଜାରେ ସେମାନେ ରହିଗଲେ, ଜଗିଥିବା ସୈନ୍ୟମାନେ ଅଭିବାଦନ କଲେ ଓ କ'ଣ କଥାବାର୍ତ୍ତା କଲେ । ତା ପରେ ସେମାନେ ଭିତରକୁ ଗଲେ । ପଛରେ ଭାର ମୁଣ୍ଡେଇ ଯାଉଥିବା ମୂଲିଆମାନଙ୍କୁ ଅନ୍ୟତ୍ର ଅନ୍ୟ ବାଟରେ ନିଆଗଲା ।

'ଏମାନେ ସମସ୍ତେ ଗୋଷ୍ଠୀ ମୁଖିଆ', ଦେବପ୍ରିୟ କହିଲା, 'ଆଡ଼ମ୍ବର ଦେଖୁଛୁ ?'

'ହଁ', ଅରିନ୍ଦମ କହିଲା, 'ମୁଁ ଏମାନଙ୍କୁ ଜାଣେ । କଂସର ଲୋକ । ଆହୁରି ବି କିଛି କିଛି ଆସିବେ । ଏଇ ଦେଖ ।'

ପଛେ ପଛେ ସେମିତି ଆଡ଼ମ୍ବରରେ, ସେମିତି ଭାର ଥୋରରେ, ଆଉ କିଛି ମୁଖିଆ । ସେମାନେ ଆସି, ସିଂହଦରଜାରେ ସୈନ୍ୟମାନଙ୍କ ସାଙ୍ଗରେ କ'ଣ କଥାବାର୍ତ୍ତା କରି ସେମିତି ଭିତରକୁ ପଶିଗଲେ, ଆଉ ଭାର ଥୋର ଅନ୍ୟ ଜାଗାକୁ ଗଲା । ତା'ପରେ ଆଉ କିଛି, ତା'ପରେ ଆଉ କିଛି । ସେମିତି ବ୍ୟବସ୍ଥା ।

'ଏ ସମସ୍ତେ ଗୋଷ୍ଠୀ ମୁଖିଆ' କହିଲା । ଅରିନ୍ଦମ, 'ଏମାନେ କଂସର ସମର୍ଥକ, କଂସକୁ ଟେକାଟେକି କରିବାର ଗୋଟାଏ ସୁଯୋଗ ମିଳିଛି ।'

ଅରିନ୍ଦମର ମନେହେଲା ସିଂହଦରଜା ଜଗିଥିବା ସୈନ୍ୟମାନଙ୍କ ମଧ୍ୟରୁ ଜଣକ ସହିତ ତା'ର ଅଳ୍ପ ପରିଚୟ ଅଛି । ସେ ଓ ଦେବପ୍ରିୟ ତା ପାଖକୁ ଗଲେ ।

ଜଣେ ନୁହେଁ, ପାଖକୁ ଯାଇ ଅରିନ୍ଦମ ଦେଖିଲା, ଆଉ ଦି ତିନିଜଣଙ୍କୁ ବି ସେ ଆଗରୁ ଦେଖିଛି, କଥାବାର୍ତ୍ତା କରିଛି, ମୋଟାମୋଟି ଜାଣେ, ସେମାନେ ମିଶାମିଶି, ଉଭୟ ମଥୁରା ଓ ମଗଧର ସୈନିକ । ଏମାନେ ପାଖକୁ ଯିବାରୁ ମନେହେଲା ସେମାନେ ଖୁବ୍ ବିରକ୍ତ ନୁହନ୍ତି । ଜଣେ ସୈନିକ ଅଳ୍ପ ହସି ପଚାରିଲା, 'କିହୋ ଅରିନ୍ଦମ, ଏଆଡ଼େ କୁଆଡ଼େ ? ଖିଆପିଆ ତ ସେ ଆଡ଼େ । ଖିଆପିଆ କଅଣ ଆରମ୍ଭ ହେଇନି ?'

ଅରିନ୍ଦମ ବି ସାମାନ୍ୟ ହସିଲା, କହିଲା, 'ହଁ, ଖାଇବା ଆରମ୍ଭ ହେଲାଣି । ଯାହା ଲୋକ ନା, ଥାଟ ପଟାଳି ! କହୁଥିଲେ ସାରାଦିନ ଖିଆପିଆ ଚାଲିବ । ଆଉ କଅଣ ସେ ଖାଇବା ! ରଜା ଘରୁ ଏମିତିଆ ବଢ଼ିଆ ଖାନା ଲୋକେ କେବେ ଖାଇ ନ ଥିବେ । ଖାଲି ଖାଇବା ନୁହେଁ, ପିଇବା ବି । ଲାଲ ଟକଟକ । କୋଉଠୁ ଆସିଛି କେଜାଣି । ଯେତେ ଇଚ୍ଛା ସେତେ । ତୁମେ ସବୁ ଯିବନି ?'

ଜଣେ ଦୁଇଜଣ ଶୁଖିଲା ହସ ହସିଲେ । କହିଲେ, 'ହ, ଏ ଶୁଖିଲା ବାହାଘର ନ ସରିଲା ପର୍ଯ୍ୟନ୍ତ ଆମେ ଏଇଠି । ପୋଛାପୋଛି ବେଳକୁ ଆମ ପାଳି ପଡ଼ିବ ।' 'ନାଇଁ, ନାଇଁ, ସାରାଦିନ ତ ଖିଆପିଆ ଚାଲିବ', ଅରିନ୍ଦମ ସ୍ୱରରେ ସହାନୁଭୂତି ଫୁଟି ଉଠିଲା, 'ବାହାଘର ତ ଏବେ ସରିଯିବ । ତା ଛଡ଼ା ମୁଖିଆମାନେ ତ ସବୁ ଏଠି ଅଛନ୍ତି ।'

'ବାହାଘର ଡେରି ହେବ', ଅରିନ୍ଦମର ପରିଚିତ ସୈନିକଟି କହିଲା, 'ଠିକ୍ ହୋଇଛି ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲା ପରେ ବିଭାଘର । ଆଉ ମୁଖିଆମାନଙ୍କର ତ ଏଇଠି ଖାଇବାର ବନ୍ଦୋବସ୍ତ ହୋଇଛି । ବାହାଘର ମଣ୍ଡପ ପଛ ପାଖରେ, ପଛ ପାଖ କୋଠାରେ ।'

'ତାହେଲେ ମୁଖିଆମାନେ ସମସ୍ତଙ୍କ ସାଙ୍ଗରେ ବାହାର ପାଖ ପଡ଼ିଆରେ ନ ଖାଇ ଅଲଗା ଖାଇବେ ?' ଅରିନ୍ଦମ ଆସ୍ତେ ଆସ୍ତେ ପଚାରିଲା ।

'ହଁ, ଏଇଠି । ସେମାନଙ୍କ ପାଇଁ ଅଲଗା ବହୁତ ବହୁତ ବନ୍ଦୋବସ୍ତ ହେଇଛି । ସେମାନଙ୍କ ଖିଆପିଆ ଆରମ୍ଭ ହେଇନି । ବାହାଘର ଆରମ୍ଭ ହେଲେ ହିଁ ଖିଆପିଆ ଆରମ୍ଭ ହେବ ।'

'ତା ମାନେ', ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ କହିଲା, 'ବାହାଘର ବେଳେ ଯଦି ଖିଆପିଆ ହବ ତା ହେଲେ ମୁଖିଆମାନେ ତ ବାହାଘର ପାଖରେ ରହିପାରିବେନି ।'

'ହଁ, ରାଜାଙ୍କର ସେମିତି ଆଦେଶ', ସୈନିକ କହିଲା, 'ତାଙ୍କର ଇଚ୍ଛା ନୁହେଁ ଯେ ବାହାଘର ପାଖରେ ଭିଡ଼ ହଉ । ସେଠି ରାଜାଙ୍କର ନିଜ ଲୋକ ଛଡ଼ା ଆଉ କେହି ରହିବେନି ।'

'ଏ ଯେ ଏତେ ମୁଖିଆମାନେ ଆସିଲେଣି, ଆସୁଛନ୍ତି...?' ଅରିନ୍ଦମ ପଚାରିଲା । 'ସେମାନଙ୍କୁ ବାହାଘର ପାଖୁ ଛଡ଼ା ହେଉନି । ସେମାନେ ପଛ ପାଖ କୋଠାକୁ ଯାଉଛନ୍ତି', କହିଲା ସୈନିକ, 'ସେଠି ପ୍ରଚୁର ପାନୀୟର ବନ୍ଦୋବସ୍ତ ଅଛି ।'

'ହଁ, ପାନୀୟ', ଆଉ ଜଣେ ସୈନିକ କହିଲା । ତା ଆଖି ଦିଇଟା ଜଳି ଉଠିଲାଣି, 'ଉତ୍ତର ଦେଶରୁ, ମଗଧରୁ, ଚମତ୍କାର ଚମତ୍କାର ପାନୀୟ । ଆଃ...'

ଅରିନ୍ଦମର ମନେହେଲା ସେ ଯେତେ ସରଳ ଭାବିଥିଲା କଥାଟା ସେତେ ସରଳ ନୁହେଁ । ବହୁତ ଲୋକଙ୍କୁ ଆସିବାକୁ କୁହାଯାଇଛି । ଲୋକ ବି ଆସିଛନ୍ତି ଓ ଆସୁଛନ୍ତି । କିନ୍ତୁ ସେ ସମସ୍ତଙ୍କୁ ଦୂରକୁ ଭୂରିଭୋଜନ ପାଇଁ ଠେଲି ଦିଆଯାଉଛି ଯେପରି ଏ ପାଖକୁ କେହି ନ ଆସନ୍ତି, ଏ ପାଖ ଖାଲି ରହେ, ଲୋକ ଗହଳି ନ ହୁଏ । ଏ ପାଖ ବି ଖୋଲାମେଲା ନୁହେଁ । ପ୍ରାସାଦ ଭିତରେ ବିଭାଘର ହେଉଛି । ସୈନ୍ୟସାମନ୍ତ ଜଗି ରହିଛନ୍ତି, ସମସ୍ତଙ୍କର ପ୍ରବେଶର ଅନୁମତି ନାହିଁ । ଏପରିକି ଯେଉଁମାନଙ୍କୁ ଛଡ଼ା ଯାଉଛି ସେମାନଙ୍କୁ ବି କୌଶଳରେ ଦୂରେଇ ଦିଆ ଯାଉଛି । ଉଦ୍ଦେଶ୍ୟ ବାହାଘର ମଣ୍ଡପକୁ ଯେତେ କମ ଲୋକ ଆସିବେ ସେତେ ଭଲ । ଆଉ ସମସ୍ତେ କଂସର ହାତଗଣତା ଲୋକ, ଏକାନ୍ତ ନିଜର ଲୋକ, ନିଜର ଅନୁଗତ ଲୋକ । ଏ ଗୋଟିଏ ସାଧାରଣ କଥା ନୁହେଁ, ଅରିନ୍ଦମ ଭାବିଲା । ବାହାଘରରେ ଲୋକ ଯିବେ ଆସିବେ, ଗହଳି ହେବ । କିନ୍ତୁ ବସୁଦେବ ଦେବକୀଙ୍କର ଏ ବିଭାଘର ପାଇଁ ଯେତେ ପ୍ରଚାର ହେଲେ ବି ଲୋକ ଗହଳି ଠାରୁ କଂସ ଦୂରେଇ ରହିବାକୁ ଚାହୁଁଛି ।

ଅରିନ୍ଦମ ତା'ର ପରିଚିତ ସୈନିକମାନଙ୍କର ଆଉ ଟିକିଏ ପାଖକୁ ଲାଗିଗଲା । ପଚାରିଲା, 'ବାହାଘରର ବିଧି ବ୍ୟବସ୍ଥା, କାମଦାମ କ'ଣ ଆରମ୍ଭ ହେଲାଣି ?'

'ହଁ, ଆରମ୍ଭ ହେଲାଣି, ଦେବକୀ ପ୍ରସ୍ତୁତ ହେଉଛନ୍ତି, ବସୁଦେବ ବି ଆସିଲେଣି, ରାଜା ବି ଏବେ ଆସିଯିବେ ।' ଜଣେ ସୈନିକ କହିଲା । 'ଆମେ ଟିକିଏ ଭିତରକୁ ଯିବୁ କି ?' ଅରିନ୍ଦମ ଥାଥା ମାମା ହେଇ ପଚାରିଲା, 'ରାଜା ଘର

ବିଭାଘର, କେବେ ତ ଦେଖିନୁ । ଦେଖିବାକୁ ଖୁବ୍ ଇଚ୍ଛା ହେଉଛି ।' ସୈନିକମାନେ ତାଙ୍କ ଭିତରେ ଫୁସ୍‌ଫୁସ୍ କଥାବାର୍ତ୍ତା ହେଲେ । ମନେହେଲା କିଛି ସୈନିକ ସେମାନଙ୍କୁ ଭିତରକୁ ଛାଡ଼ିବା ସପକ୍ଷରେ ନାହାନ୍ତି । ଟୋକା ଲୋକ । କୋଉଠି କ'ଣ କରି ପକେଇବେ । ଶେଷକୁ ଦୋଷ ସମସ୍ତଙ୍କ ଉପରେ ପଡ଼ିବ । ଜଣେ କହିଲା, 'ଦେଖ, ଆମ ଉପରେ କଡ଼ା ଆଦେଶ, ଆଗରୁ ରଜାଙ୍କର ଅନୁମତି ନ ଥିବା କାହାକୁ ଯେମିତି ଛଡ଼ା ନ ଯାଏ । ସେନାପତି ପ୍ରଦ୍ୟୋତ...'

ହଠାତ୍ ଅରିନ୍ଦମ ମନରେ ବିଜୁଳି ପରି ଗୋଟାଏ ବାଟ ଖେଳିଗଲା । କହିଲା, 'ସେନାପତି ପ୍ରଦ୍ୟୋତ ମୋର ଭାଇ ହିସାବ । ସେ ନିଶ୍ଚୟ ଆମକୁ ଅନୁମତି ଦେବେ । ତାଙ୍କୁ ପଚାରିବ କି ?'

ଜଣେ ବୟସ୍କ ସୈନିକ ଟିକିଏ ଦୂରରୁ କହିଲା, 'ଦେଖ, ସେନାପତି ପ୍ରଦ୍ୟୋତ ବଡ଼ ବଦରାଗୀ ଲୋକ । ସେ ଯଦି ଜାଣିବେ ଆମେ ତାଙ୍କ ଭାଇଙ୍କି ଛାଡ଼ିଲୁନି ସେ ବଡ଼ ବିରକ୍ତ ହେବେ । ତାଙ୍କୁ ପଚାରିବାକୁ ଗଲେ ବି ସେ ଆହୁରି ବିରକ୍ତ ହେବେ । କେତେ ଲୋକ ଯାଉଛନ୍ତି । ଏ ଦି'ଜଣ ଗଲେ ଯେ ବାହାଘର ଭାଙ୍ଗିଯିବ ଏମିତି କଥା ନୁହେଁ । ସେମାନେ ଭିତରକୁ ଯାଆନ୍ତୁ । ବାହାଘରଟା ଦେଖିବେ, ଆଉ କଅଣଟା କରିବେ ? ତେବେ ଗୋଟାଏ କାମ କର । ସେମାନଙ୍କ ସାଙ୍ଗରେ ଆମର ଜଣେ ସୈନିକ ଯାଉ । ସେମାନେ ଯେପରି ନଅର ଭିତରେ ଏ ପାଖ ସେ ପାଖ ନ ବୁଲନ୍ତି । ବାହାଘର ବେଦୀ ପାଖରୁ ସେମାନେ ଫେରି ଆସିବେ । ଆଉ ଦେଖ ସେମାନେ ଯେପରି ବେଶୀ ସମୟ ନ ରୁହନ୍ତି । ରାଜା ଆସିବା ଆଗରୁ ସେମାନେ ଯେମିତି ଫେରନ୍ତି ।'

ସେଇଆ ହେଲା । ଅରିନ୍ଦମ ଓ ଦେବପ୍ରିୟକୁ ସୈନିକମାନେ ଭିତରକୁ ଯିବାକୁ ଛାଡ଼ିଦେଲେ । ସେମାନଙ୍କ ସାଙ୍ଗରେ ଜଣେ ସୈନିକ ଗଲା । ଅରିନ୍ଦମ ଭାବିଲା ଭଲ ହେଲା । ଭିତରେ କ'ଣ ହେଉଛି ନ ହେଉଛି ଦେଖିହେବ । ସେ ନିଜେ ସବୁ ବୁଝି ନ ପାରିଲେ ବି ଭାନୁପ୍ରକାଶଙ୍କୁ ଟିକିନିଖି ଜଣେଇ ଦେଲେ ସେ ନିଶ୍ଚୟ କିଛି ସୂତ୍ର କାଢ଼ିବେ । ଏ ସୈନିକଟିର ଚେହେରାରୁ ମନେ ହେଉଛି ଅନ୍ୟମାନଙ୍କଠୁଁ କିଛି ଅଲଗା ଅଲଗା, ହୁଏତ କଥାବାର୍ତ୍ତା କରାଯାଇପାରେ । ସେ ସୈନିକକୁ ଚାହିଁଲା, କହିଲା, 'ମୋ ନାଁ ଅରିନ୍ଦମ', ୟାଙ୍କ ନା ଦେବପ୍ରିୟ, ତୁମ ନାଁ କ'ଣ ?'

ସୈନିକଟି ହସିଲା, କହିଲା, 'ମୋର ଗୋଟାଏ ନାଁ କଅଣ ? ମୁଁ ତ ସୈନିକ । ତେବେ ମୋର ଗୋଟା ଡାକ ନାଁ ଅଛି । ମତେ ସମସ୍ତେ ଗାଈ ବୋଲି ଡାକନ୍ତି । ମୁଁ କୁଆଡ଼େ ଗାଈ ପରି ନିରୀହ । ମୋ' କଥା ଛାଡ଼ । ମୁଁ ତୁମକୁ ଚିହ୍ନେ ।

ତୁମେ ତ ଯୁବରାଜ କଂସଙ୍କ ସାଙ୍ଗରେ ମଗଧ ଯାଇଥିଲ । ଆମ ସାଙ୍ଗରେ ଯେତେ ମଗଧ ସୈନ୍ୟ ଅଛନ୍ତି ଅନେକ ତୁମକୁ ସେଠି ଦେଖିଛନ୍ତି ।'

ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ଦେଖିଚନ୍ତି ମାନେ ହୁଏତ ଭାନୁପ୍ରକାଶଙ୍କ ସହିତ ତା'ର ସମ୍ପର୍କ କଥା ଜାଣନ୍ତି । ସେ ମନେ ମନେ ସାବଧାନ ହୋଇଗଲା । ବର୍ତ୍ତମାନ କଂସର ରାଜତ୍ୱରେ ଲୋକ ତୁମକୁ, ବିଶେଷ କରି ସୈନ୍ୟମାନେ ତୁମକୁ ଚିହ୍ନିବାରେ ସୁବିଧା ଅସୁବିଧା ଉଭୟ ଅଛି । ସେ ସେ ପାଖ ଦେଇ ଆଉ ଗଲା ନାହିଁ । ସୈନିକକୁ ଚାହିଁ କହିଲା, 'ଗାଈ, ଏ ବାହାଘରର କି ବିରାଟ ଆଡ଼ମ୍ବର । ମତେ ତ ତାଜୁବ ଲାଗୁଛି । ହଜାର ହଜାର ଲୋକଙ୍କୁ ନିମନ୍ତ୍ରଣ କରାଯାଇଛି । କେତେ ଲୋକ ଯେ ମଥୁରା ବାହାରୁ ଆସିଛନ୍ତି ତା'ର ଠିକଣା ନାହିଁ । ସବୁଆଡ଼େ ରାଜା କଂସଙ୍କର ଜୟଜୟକାର ।'

'ସେଇଟାହିଁ ରାଜା କଂସ ଚାହାଁନ୍ତି । ବାହାଘର ନୁହେଁ, ନିଜର ଜୟ ଜୟକାର ।' ଅରିନ୍ଦମ ଚମକି ପଡ଼ିଲା, ଏ କି କଥା ଏ ସୈନିକ କହୁଛି ? ଏ ତ କଂସର ସୈନିକର ସାଧାରଣ ପୋଷାକପତ୍ର ପିନ୍ଧିଛି । କଥାବାର୍ତ୍ତାରେ ସାଧାରଣ କଥାବାର୍ତ୍ତା ଢଙ୍ଗ । ଚାଲି ଚଳଣରେ ବି ସୈନିକର ସାଧାରଣ ବ୍ୟବହାର । ସେ ଆଉ ଟିକିଏ ବଜେଇ ନେବାକୁ ଚେଷ୍ଟା କଲା । କହିଲା, 'କଂସଙ୍କୁ ତ ପ୍ରଶଂସା କରିବାର କଥା । ଖାଲି ଆଜି ଏ ବାହାଘରର ଆଡ଼ମ୍ବରର କଥା ନୁହଁ । ମଥୁରା କଥା ଭାବ । ଉଗ୍ରସେନ ତ ରାଜା ଥିଲେ । ମଥୁରା ବୋଲି ଗୋଟିଏ ରାଜ୍ୟ ଅଛି ସମସ୍ତେ ଜାଣିଥିଲେ । ବାସ୍ ସେତିକି । ମଥୁରାର ନାଁ ଗାଁ ଥିଲା ? ଏବେ କ'ଣ ସେ ଅବସ୍ଥା ? ମଥୁରା ତ ସାରା ଆର୍ଯ୍ୟାବର୍ତ୍ତରେ ଗୋଟାଏ ନାମୀ ରାଜ୍ୟ । ମଥୁରାର ନାଁ ପଇଲେ ଲୋକେ ଥରହର ହେଉଛନ୍ତି । ଏ ତ ସବୁ କଂସଙ୍କର କୀର୍ତ୍ତି ।'

'ଏସବୁ କୀର୍ତ୍ତି କ'ଣ ଖାଲି ବାହାରେ, ଆର୍ଯ୍ୟାବର୍ତ୍ତରେ ? ମଥୁରା ଭିତରେ କ'ଣ କଂସଙ୍କର କୀର୍ତ୍ତି କିଛି ନାହିଁ ?'

ଅରିନ୍ଦମକୁ ପୁଣି ଝଟକା ଲାଗିଲା । ନାଁ, ଏ ଜଣେ ସାଧାରଣ ସୈନିକର କଥା ନୁହେଁ । ସେ ସୈନିକର ମୁହଁକୁ ପୂରା ନଜରରେ ଚାହିଁଲା । ନାଁ, ମୁହଁରେ କୌଣସି ଭାବାନ୍ତର ନାହିଁ, ବିଲକ୍ଷଣ ନାହିଁ । ଏ ଯେପରି ସାଧାରଣ ଭାବରେ କଥାବାର୍ତ୍ତା, ସାଧାରଣ କଥା, ତଥାପି ସାବଧାନରେ କଥାବାର୍ତ୍ତା କରିବା ଭଲ ।

ସେମାନେ ନଅର ଭିତରକୁ ପଶିଲେ । ନଅର ଭିତରେ ବି ସୈନ୍ୟମାନେ ଜଗିଛନ୍ତି । କିନ୍ତୁ ଅରିନ୍ଦମ ପ୍ରଭୃତିଙ୍କ ସାଙ୍ଗରେ ଆଉ ଜଣେ ସୈନିକକୁ ଦେଖି କେହି କିଛି ବାଧା ଦେଲେ ନାହିଁ । ସେମାନେ ଭିତରକୁ ଭିତରକୁ ଚାଲିଲେ । ଗାଈ ସୈନିକ


Digitized by srujanika@gmail.com

କହିଲା, 'ଅରିନ୍ଦମ, ଚାରିଆଡ଼ ନଜର କରି ଦେଖ । ତୁମେ ତ ଗିରିବ୍ରଜରେ ସମ୍ରାଟ ଜରାସନ୍ଧଙ୍କ ରାଜପ୍ରାସାଦ ଦେଖିଛ । ଏ ରାଜପ୍ରାସାଦ ଏତେ ବଡ଼ ନୁହେଁ । କିନ୍ତୁ ବେଶ ବଡ଼ । ଏ ରାଜପ୍ରାସାଦର ଗୋଟିଏ ବଡ଼କଥା ହେଉଛି ଅନେକଗୁଡ଼ିଏ ଅଗଣା, ଅଗଣା ଚାରିପାଖରେ ଘରସବୁ, ବିଭିନ୍ନ ସମୟରେ ବିଭିନ୍ନ ରାଜାମାନେ ତିଆରି କରିଛନ୍ତି । କଂସ ବି ଅନେକଗୁଡ଼ିଏ ଅଗଣା ମିଶେଇଛନ୍ତି । ଏ ଗୋଟାଏ ବିରାଟ ପଶାପାଲି ପରି । ପଶାପାଲିର ଗୋଟାଏ ଘର, ତା'ପରେ ଆଉ ଗୋଟାଏ, ତାପରେ ଆଉ ଗୋଟାଏ, ସବୁ ଲଗାଲଗି । ରାଜା କୋଉଠି ରହନ୍ତି ବୁଝିହେବନି । ତୁମେ ନ ଜାଣିଥିଲେ ତାଙ୍କ ପାଖରେ ପହଞ୍ଚି ପାରିବନି । ଖାଲି ଧନ୍ଦି ହବ । ଏଇ ଦେଖ ଆମେ ପ୍ରଥମ ଅଗଣା ଦେଇ ଯାଉଛେ, ସବୁଠଉଁ ବାହାର ବୃତ୍ତ । ଦେଖ ଚାରିପାଖରେ ଘର ସବୁ । ଏକାପ୍ରକାର । କିଏ କୋଉ ଘରେ ଅଛନ୍ତି ବୁଝି ପାରିବନି । ଏଠି ରାଜାଙ୍କର ଅତିଥିମାନେ ରହନ୍ତି । ଆ ପଛକୁ ଦ୍ୱିତୀୟ ଅଗଣା, ତା ପଛକୁ ତୃତୀୟ, ତା'ପରେ ଚତୁର୍ଥ । ଆମେ ତୃତୀୟ ଅଗଣା ସେ ପାଖକୁ ଯାଇ ପାରିବାନି । ସେଇଠୁ ଫେରିବା, ସେଇ ତୃତୀୟ ଅଗଣାରେ ହିଁ ବିଭାଘର ହେଉଛି, ବିଭାଘର ବେଦୀ । ଆମେ ଦ୍ୱିତୀୟ ଅଗଣାକୁ ଆସିଲେଣି । ଚାରିପାଖରେ ବଡ଼ ବଡ଼ ବଖରା ସବୁ । କଂସ ଏଇଠି ବାହାର ଲୋକଙ୍କୁ ଭେଟନ୍ତି, ମୁଖିଆମାନଙ୍କୁ ଭେଟନ୍ତି, କହିପାର ଦରବାର ଅଗଣା । ଏହାପରେ ତୃତୀୟ ଅଗଣା । ସେଠି ବି କଂସ ବାହାର ଲୋକଙ୍କୁ ଭେଟନ୍ତି । କିନ୍ତୁ ସେ ଅତ୍ୟନ୍ତ ଗୋପନୀୟ କାମ ପାଇଁ, ଏକାନ୍ତ ଭାବରେ ନିଜର ଅନୁଗତ ଲୋକଙ୍କୁ । ଏହି ତୃତୀୟ ଅଗଣାର ନାନାପ୍ରକାର ବଦନାମ ଅଛି । ସେସବୁ ଛାଡ଼ । ଏଇ ଦ୍ୱିତୀୟକୁ ଆଉ ଥରେ ଭଲକରି ଦେଖ । ଏଇ ସେ ପାଖରେ ମୁଖିଆମାନେ ଭିଡ଼ କରିଛନ୍ତି । ସେଇଠି ସେମାନଙ୍କର ଖିଆପିଆର ବନ୍ଦୋବସ୍ତ ହୋଇଛି । ସମସ୍ତେ ସେଇଠି । କଂସଙ୍କର ଇଛା ନୁହେଁ ଯେ ସମସ୍ତେ ବିଭାଘର ସ୍ଥାନକୁ ଆସନ୍ତୁ । ଆସ, ଚାହିଁଦେଖ, ଆମେ ତୃତୀୟ ଅଗଣାରେ ପହଞ୍ଚିଲେଣି । ଏଇଠି ବାହାଘର ବେଦୀ ।'

ସୈନିକଟି ଆଉ କିଛି ନ କହି ଅରିନ୍ଦମ ପ୍ରଭୃତିଙ୍କୁ ଧରି ବେଦୀଠାରୁ କିଛି ଦୂରରେ ଚୁପଚାପ ଛିଡ଼ାହେଲା । ବରକନ୍ୟା ଆସି ନାହାନ୍ତି, ରାଜା କଂସ ଆସି ନାହାନ୍ତି । କିନ୍ତୁ ଆଉ କିଛି ଲୋକ ବେଦୀକୁ ଘେରି ବସିଛନ୍ତି । ଆଉ ବେଦୀର ଆୟୋଜନ ଓ ସାଜସଜ୍ଜା – ଅରିନ୍ଦମର ନିଃଶ୍ୱାସ ବନ୍ଦ ହୋଇ ଆସିଲା । ବେଦୀର ଚାରିପାଖରେ ମଣିମୁକ୍ତାର ଝାଲର । ଫୁଲ ନୁହେଁ, ମଣିମୁକ୍ତାରେ ହିଁ ସାରା ବେଦୀ ସଜାଯାଇଛି । ତା ସାଙ୍ଗରେ ସୁନା ରୁପାର ବାହାର । ରାଜା ଓ ବରକନ୍ୟା ବସିବା ପାଇଁ ସୁନାର ଆସନ । ବାକି ଅନ୍ୟ ସମସ୍ତଙ୍କ ପାଇଁ ରୁପାର ଆସନ । ସୁନା, ରୁପା,


Digitized by srujanika@gmail.com

ମଣି ମୁକ୍ତା, ହୀରା ନୀଳା - ଐଶ୍ୱର୍ଯ୍ୟର ଏ ଆଡ଼ମ୍ବରରେ ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ଏ ଆଡ଼ମ୍ବର କାହିଁକି ? ଦେବକୀ ବସୁଦେବଙ୍କ ପାଇଁ ନା ନିଜ ପାଇଁ - ଅରିନ୍ଦମ ମନେ ମନେ ଭାବିଲା । ନିଜର ଭଉଣୀ ଓ ଭିଣେଇ ପାଇଁ ଏତେ ସ୍ନେହ ? ବିଶ୍ୱାସ ହେଉନାହିଁ । ଏ ତ କଂସର ପ୍ରକୃତି ନୁହେଁ । ନାଁ, ନାଁ, ଏ କେବଳ ନିଜର ପ୍ରୌଢ଼ୀ, ନିଜର ବାହାଦୁରୀ ପଣିଆର ପ୍ରଚାର । ଲୋକେ ଭୟ କରନ୍ତୁ । ତା'ର ସାମର୍ଥ୍ୟ କେତେ ବୁଝନ୍ତୁ । ଦେଶ ଜୟ କରି ଆସିଲା । ବର୍ତ୍ତମାନ ଧନ ସମ୍ପତ୍ତିରେ ସେ ମଥୁରାକୁ ପୋତି ଦେବ । ଲୋକେ ବୁଝନ୍ତୁ ଉଗ୍ରସେନଙ୍କୁ ରାଜଗାଦୀରୁ ବାହାର କରି ସେ ଠିକ୍ କଲା କି ଭୁଲ କଲା ।

'ଏସବୁ ମଣିମୁକ୍ତା ଦେଖି ଆଶ୍ଚର୍ଯ୍ୟ ଲାଗୁଛି ବୋଧେ ଅରିନ୍ଦମ ?' ସାଧାରଣ କଥାବାର୍ତ୍ତା କଲା ପରି ସୈନିକଟି ପଚାରିଲା ।

'ହଁ, କଂସଙ୍କର ଏତେ ସମ୍ପତ୍ତି ମୁଁ ଭାବି ନ ଥିଲି । ଏତେ ସମ୍ପତ୍ତି କମ କଥା ନୁହେଁ ।' କହିଲା ଅରିନ୍ଦମ ।

'ତୁମେ ଭୁଲିଯାଉଛ କଂସ ସମ୍ରାଟ ଜରାସନ୍ଧଙ୍କର ଜୋଇଁ । ଆର୍ଯ୍ୟାବର୍ତ୍ତର ରାଜାମାନଙ୍କ ଭିତରେ ସମ୍ରାଟ ଜରାସନ୍ଧ ସବୁଠାରୁ ବେଶୀ ଧନୀ ରାଜା । ତା ଛଡ଼ା କଂସ ନିଜର ଅଭିଯାନରୁ ମଧ୍ୟ ବେଶ ଧନସମ୍ପତ୍ତି ପାଇଛନ୍ତି ।' କହିଲା ସୈନିକ ।

'ତା ଠିକ୍ । କିନ୍ତୁ ଧନସମ୍ପତ୍ତିର ଏତେ ଆଡ଼ମ୍ବର କାହିଁକି ?' କିଛି ନ କହିବାକୁ ଭାବିକରି ମଧ୍ୟ ଅରିନ୍ଦମ ନିଜ ଅଜାଣତରେ କହିଦେଲା ।

'ଉତ୍ତର ତ ସହଜ, ଅରିନ୍ଦମ', ସୈନିକ କହିଲା, 'ଏଇ ତୁମେ ଯେମିତି ଆଶ୍ଚର୍ଯ୍ୟ ହେଲ, ଅନ୍ୟମାନେ ମଧ୍ୟ ସେମିତି ହେବେ । କଂସ ଦରିଦ୍ର ରାଜା ନୁହେଁ, ଧନୀ, ପରାକ୍ରମୀ । ଏ ଖାଲି ଆଡ଼ମ୍ବରର କଥା ନୁହେଁ । ଉଦ୍ଦେଶ୍ୟ ଅନ୍ୟମାନଙ୍କୁ ଭୟଭୀତ କରିବା, ଯାହା ଘଟୁ ଅନ୍ୟମାନେ ଚୁପ ରହିବେ ।'

'କଅଣ ଘଟିବ ?' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

'ତା ମୁଁ ଜାଣେ ନାଁ ।' ସୈନିକ କହିଲା, 'ମୋର ମନେହେଉଛି କିଛି ଘଟିପାରେ ।'

'ଏ ବାହାଘରଟା ତ ଗୋଟାଏ ବଡ଼ ଘଟଣା', କହିଲା ଅରିନ୍ଦମ, 'ଯାଦବମାନଙ୍କର ଦିଇଟା ବଡ଼ ଗୋଷ୍ଠୀ ଭିତରେ ସମ୍ପର୍କ ହେବାକୁ ଯାଉଛି । ସେଇଥିପାଇଁ ତ ଏତେ ଖିଆପିଆ, ଏତେ ଆଡ଼ମ୍ବର ।'

'ତା ହୁଏତ ହବ', କହିଲା ସୈନିକ, 'ତେବେ କଂସ ରାଜା ଯେ ଖୁବ୍ ସିଧା ଲୋକ ନୁହନ୍ତି, ସେକଥା ତୁମେ ଜାଣ, ଆମେ ବି ଜାଣୁ ।'


Digitized by srujanika@gmail.com

ଅରିନ୍ଦମ ଦେଖିଲା ପୁଣି ଗୋଳମାଳିଆ ଗଣ୍ଡ ଆଡ଼କୁ କଥା ମାଡ଼ି ଯାଉଛି । ସୈନିକଟି ଖୁବ୍ ସିଧା ସିଧା ଦିଶିଲେ ବି ତା କଥାବାର୍ତ୍ତା ସିଧା ନୁହେଁ । ଅରିନ୍ଦମ କଥା ବୁଲେଇ ଦବାକୁ ଚେଷ୍ଟା କଲା । କହିଲା, 'ବାହା ବେଦୀର ସବୁ ସାଜ ସରଞ୍ଜାମ ଆସିଗଲା ବୋଧେ ?'

'ହଁ', ସୈନିକ କହିଲା, 'ସୂର୍ଯ୍ୟଦେବ ବି ମୁଣ୍ଡ ଉପରକୁ ଉଠି ଆସିଲେଣି । ବିଭାଘର ତ ଏବେ ଆରମ୍ଭ ହବା କଥା ।' ସେ ଟିକେ ରହିଗଲା । କାହାକୁ ଖୋଜିଲା ପରି ଚାରିପାଖକୁ ଚାହିଁଲା । କିଛି ଦୂରରେ ଆଉ ଦୁଇଜଣ ସୈନିକ ଜଗି ରହିଥିଲେ ବୋଧେ । ସେ 'ଆସେ' କହି ସେମାନଙ୍କ ପାଖକୁ ଯାଇ କ'ଣ କଥାବାର୍ତ୍ତା କଲା ଓ ସାଙ୍ଗେ ସାଙ୍ଗେ ଫେରି ଆସିଲା - 'ନାଁ, ବାହାଘର ଡେରି ହେବ । ଏବେ ନୁହେଁ । ସୂର୍ଯ୍ୟାସ୍ତର ପାଖାପାଖି ସମୟରେ ବିଭାଘର ହେବ ।'

'ଏତେ ଡେରି ?'

'ଯାହା ଖବର, ଲୋକମାନେ ଖାଇପିଇ ଗଲା ପରେ ହିଁ ବିଭାଘର ଆରମ୍ଭ ହେବ । କଂସଙ୍କର ଇଚ୍ଛା ବିଭାଘର ସମୟରେ ଯେପରି ବେଶୀ ଲୋକ ନ ରହନ୍ତି ।'

'କିନ୍ତୁ ମୁଖିଆମାନେ ତ ରହିବେ ?' କହିଲା ଅରିନ୍ଦମ ।

'ହଁ, ସେମାନେ ରହିବେ ।' ସୈନିକ କହିଲା । ତାପରେ ସାମାନ୍ୟ ହସିଲା ଓ କହିଲା, 'ସେପାଖୁ ଦେଖ ଅରିନ୍ଦମ । ଅନେକ ମୁଖିଆଙ୍କୁ ତ ତୁମେ ଚିହ୍ନ । ଦେଖିପାରୁଛ ? ବିଭାଘର ବେଳକୁ ସେମାନଙ୍କର ଜ୍ଞାନ ଥିବ ତ ?'

ଅରିନ୍ଦମ ବାସ୍ତବିକ ଆଶ୍ଚର୍ଯ୍ୟ ହେଲା । ପ୍ରଚୁର ପାନୀୟର ବନ୍ଦୋବସ୍ତ । ନାଁ, ସୈନିକ ଠିକ୍ କହୁଛି ।

ଏ କି ପ୍ରକାରର ଆୟୋଜନ, ଅରିନ୍ଦମ ଚିନ୍ତା କଲା । କଂସ ମନରେ, ମାନ ସମ୍ମାନରେ, ଧନ ସମ୍ପତ୍ତିରେ, ପରାକ୍ରମରେ କେତେ ଶୀଘ୍ର କେତେ ବଡ଼ ହୋଇଯାଇଛି, କେତେ ଉପରକୁ ଉଠିଯାଇଛି, ଏକଥା ଢୋଲ ପିଟି ସମସ୍ତଙ୍କୁ ଜଣେଇ ଦେବାକୁ ଚାହେଁ । ସେଥିପାଇଁ ମୁଖ ଲଜ୍ଜା ପାଇଁ ଗୋଟାଏ ଉପଲକ୍ଷ୍ୟ ଦରକାର । ଏ ବାହାଘରଟା ହିଁ ସେହି ଉପଲକ୍ଷ୍ୟ ଓ ଏ ଖିଆପିଆ, ହଜାର ହଜାର ଲୋକଙ୍କୁ ନିମନ୍ତ୍ରଣ, ଯେତେ ଆଡ଼ମ୍ବର, ସବୁ । କିନ୍ତୁ ଅନ୍ୟ ଦିଗରେ, ଏ ସୈନିକର କଥାରୁ ଯାହା ମନେ ହେଉଛି ଓ ସେଇଟା ହିଁ ଠିକ୍ ବୋଲି ଲାଗୁଛି, ସେ ବାହାଘରଟାକୁ ଚୁପଚାପ ସାରିବାକୁ ଚାହେଁ, ବେଶୀ ଲୋକଙ୍କୁ ଏକାଠି କରିବାକୁ ଚାହେଁନା । ଏ କି ବ୍ୟାପାର ! କେଉଁଟା ମୁଖ୍ୟ ? ଏ ବାହାଘର, ନା ନିଜର ପ୍ରଚାର ପାଇଁ ଏ ଆଡ଼ମ୍ବର, ନା ଆଉ କିଛି ?

ସୈନିକ କହିଲା, 'ଅରିନ୍ଦମ, ବେଦି ପାଖରେ ଯେଉଁ ଦି ଜଣ ଲୋକ, ବେଦିକୁ

ଟିକିଏ ଛାଡ଼ି ବସିଛନ୍ତି, ଦେଖ । ତାଙ୍କ ଚେହେରା, ତାଙ୍କ ପୋଷାକ ପତ୍ର । ଆମ ଏଠିକା ଲୋକଙ୍କ ପରି ମନେ ହେଉଛନ୍ତି କି ?'

ଅରିନ୍ଦମ ଭଲ କରି ଚାହିଁ ଦେଖିଲା । ନାଁ ସେମାନେ ମଥୁରା ଲୋକ ନୁହନ୍ତି । ଆଖି କଟା କଟା, ମୁହଁଟା ବି କଟା କଟା । ମୁଣ୍ଡ ବାଳ ଲମ୍ବା ଓ କହରା, ଦେହର ରଙ୍ଗ କେମିତି ଗୋରା ଢାଉଆ ମିଶାମିଶି । ପୋଷାକ ବି ଢିଲାଢ଼ିଲା, ଲାଲ । ମୁଣ୍ଡରେ ଗୋଲ, ଗମ୍ବୁଜ ପରି ପଗଡ଼ି । ସବୁ ମିଶି ଏକ ଅଦ୍ଭୁତ ଚେହେରା । ଏ ଚେହେରା ତ ଏଠିକାର ଲୋକଙ୍କର ନୁହେଁ ।

ସେ ସେଇଆ କହିଲା, 'ନାଁ ତ ।'

ସୈନିକ କହିଲା, 'ଠିକ୍ । ଏମାନେ ମଥୁରା ବା ମଥୁରାର ଆଖପାଖର ଲୋକ ନୁହନ୍ତି । ମୁନିଋଷି ବା ବ୍ରାହ୍ମଣ ନୁହନ୍ତି । ଏପରିକି ମଥୁରାର ଦକ୍ଷିଣ ବନାଞ୍ଚଳର ଲୋକ ବି ନୁହନ୍ତି । ଏମାନେ ଉତ୍ତରର ପାହାଡ଼ ଅଞ୍ଚଳରୁ ଆସିଛନ୍ତି, ଯେଉଁଠି ସବୁଦିନେ ଥଣ୍ଡା, ବରଫ, ପୂରାପୂରି ତନ୍ତ୍ରମନ୍ତ୍ରର ଦେଶ ।'

'ତନ୍ତ୍ରମନ୍ତ୍ର ?'

'ହଁ, ତନ୍ତ୍ରମନ୍ତ୍ର । ତୁମେ କାଉଁରୀ କାମାକ୍ଷା କଥା ଶୁଣିଥିବ । ଉତ୍ତରର ପାହାଡ଼ ଅଞ୍ଚଳର ହିଙ୍ଗୁଳାଙ୍କ କଥା ବି ଶୁଣିଥିବ । ଏସବୁ ଆହୁରି ଗୋପନୀୟ, ଆହୁରି ଭୟଙ୍କର । କଂସ ଏମାନଙ୍କୁ ଜାଣନ୍ତିନି । ଆମେ ଯାହା ଶୁଣୁଛୁ, ସମ୍ରାଟ ଜରାସନ୍ଧଙ୍କର କିଛି ନିର୍ଦ୍ଦିଷ୍ଟ ଲୋକ ଏମାନଙ୍କୁ ଜାଣନ୍ତି ଓ ସେଇମାନେ ହିଁ ଏମାନଙ୍କୁ ଆଣିଛନ୍ତି । ବିଭାଘର ପରେ ପରେ ହିଁ ସେମାନେ ନିଜ ଦେଶକୁ ଫେରିଯିବେ ।'

'କିନ୍ତୁ କାହିଁକି ?' ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କଟି ନ ଥାଏ । 'ସେମାନଙ୍କର ଏଠି କି କାମ ? ବିଭାଘର ତ ସରଳ ଅନୁଷ୍ଠାନ । ମଥୁରାର ଯାଜକ ବ୍ରାହ୍ମଣମାନେ ହିଁ ବିଭାଘରର ବିଧିବିଧାନ କରିବେ । ଉତ୍ତର ଅଞ୍ଚଳର ତନ୍ତ୍ରମନ୍ତ୍ରର କ'ଣ ଦରକାର ? ମନେହେଉଛି ଏ ଗୋଳମାଳ କଥା ।'

'ସେକଥା ମୁଁ କହିପାରିବିନି । କିନ୍ତୁ ଗୋଟାଏ କଥା ଆମେ ଜାଣୁ, ବାହାଘର ଶେଷ ପର୍ଯ୍ୟନ୍ତ ସେମାନେ ଏଠି ରହିବେ । ସେମାନେ କଂସଙ୍କର ଭିତର ମହଲାରେ ରହୁଛନ୍ତି । କେବଳ କଂସଙ୍କ ଛଡ଼ା ସେମାନେ ବାହାରର ଆଉ କାହା ସହିତ ମିଶାମିଶି କରନ୍ତିନି ।'

'କିନ୍ତୁ ସେମାନେ କରନ୍ତି କ'ଣ ?' ଅରିନ୍ଦମ ପଚାରିଲା ।

'ଜଣା ନାହିଁ । ତେବେ ମନେହେଉଛି ଏ ବାହାଘରରେ ସେମାନଙ୍କର କାମ ଅଛି ।' କହିଲା ସୈନିକ ।

କି କାମ ? ଅରିନ୍ଦମ ମନେ ମନେ ଭାବିଲା । ସେମାନେ ବିଭା ବେଦୀ ପାଖରୁ କିଛି ଦୂରରେ ଥିଲେ ବି ସେ ଭଲ ଭାବରେ ସୈନିକ ଦେଖେଇ ଦେଇଥିବା ଲୋକ ଦି'ଟିକୁ ନିରୀକ୍ଷଣ କଲା । ହଁ, ସେମାନେ ଅଲଗା ଲୋକ, ସେ କଥା ବୁଝିହେଉଛି । ସେପରି ଚେହେରା ଲୋକଙ୍କୁ ସେ ମଥୁରାରେ କେବେ ଦେଖିନି - ହଠାତ୍ ତା'ର ମନେହେଲା ହଁ ସେ ଦେଖିଛି । ମଥୁରାରେ ନୁହେଁ, ଗିରିବ୍ରଜରେ, ଜରାସନ୍ଧଙ୍କର କୁସ୍ତି ଆଖଡ଼ାରେ, ରାକ୍ଷସ ସୈନ୍ୟମାନଙ୍କ ସାଙ୍ଗରେ । ସେତେବେଳେ ଭାନୁପ୍ରକାଶଙ୍କ ସାଙ୍ଗରେ ଖୁବ୍ ଚିହ୍ନା ପରିଚୟ ନ ହୋଇଥିଲେ ବି ଯେତିକି ପରିଚୟ ଥିଲା ସେତିକିରେ ସେ ଏମାନଙ୍କୁ, ପ୍ରାୟ ତିନି ଚାରିଜଣ ହେବେ, ଦେଖେଇଦେଇ ଥିଲେ ଆଉ କହିଥିଲେ ଏମାନଙ୍କୁ ଚିହ୍ନି ରଖ, ଏମାନେ ବଡ଼ ଅଦ୍ଭୁତ ଲୋକ । ପରେ ସେ ସେମାନଙ୍କୁ ଆଉ ଗିରିବ୍ରଜରେ ଦେଖିନି । କିନ୍ତୁ ସେ ଭାନୁପ୍ରକାଶଙ୍କୁ, ଭଲ ପରିଚୟ ହେଲା ପରେ, ଥରେ ସେମାନଙ୍କ ବିଷୟରେ ପଚାରିଥିଲା । ଏ ସୈନିକଟି ଯାହା କହୁଛି ଭାନୁପ୍ରକାଶ ପ୍ରାୟ ସେଇଆ କହିଥିଲେ । ସେମାନେ ହିମାଳୟ ସେ ପାଖର ଉତ୍ତର ଅଞ୍ଚଳର ଲୋକ । ଆର୍ଯ୍ୟ ନୁହନ୍ତି, ଅନ୍ୟ କେଉଁ ଗୋଷ୍ଠୀ, ତନ୍ତ୍ର ମନ୍ତ୍ରରେ ଅତ୍ୟନ୍ତ ଦକ୍ଷ ଓ ଏପରି ଅଦ୍ଭୁତ ଅଦ୍ଭୁତ କାମ କରିପାରନ୍ତି ନ ଦେଖିଲେ ବିଶ୍ୱାସ ହେବନି । ସେମାନେ ପବନରେ ଉଡ଼ିପାରନ୍ତି, ପାଣିରେ ବୁଡ଼ିପାରନ୍ତି ଓ ଶୂନ୍ୟମଣ୍ଡଳରୁ କଥାବାର୍ତ୍ତା ବି କରିପାରନ୍ତି । ତେବେ ସେମାନଙ୍କ ପ୍ରତି ଭାନୁପ୍ରକାଶଙ୍କର ଶ୍ରଦ୍ଧା ବା ସମ୍ମାନ ନ ଥିଲା । ସେମାନେ ଅମଙ୍ଗଳ, ଦୁଷ୍ଟ ଆତ୍ମା, ଏକଥା ସେ ବାରମ୍ବାର କହୁଥିଲେ । କଂସ ଏପରି ଲୋକଙ୍କୁ ବିଭାଘର ପରି ଗୋଟିଏ ପବିତ୍ର ଅନୁଷ୍ଠାନକୁ କାହିଁକି ଆଣିଛି ? ସେ ସୈନିକକୁ ଚାହିଁଲା, 'ଏମାନେ ତ ଅନେକ ଦିନ ହେଲା ଆସିଲେଣି ? ନୁହେଁ କି ?'

'ନାଁ, ଠିକ୍ ଅନେକ ଦିନ ନୁହେଁ । ତେବେ ବେଶ କିଛିଦିନ ହେଲା ସେମାନେ ଅଛନ୍ତି ।' ସୈନିକ କହିଲା, 'ପ୍ରାୟ ବିଭାଘର କଥା ଉଠିବା ଦିନଠୁଁ ।'

'ତା ମାନେ ବିଭାଘର ସହିତ ଏମାନଙ୍କର ସମ୍ପର୍କ ଅଛି ?'

ସୈନିକ କିଛି କହିଲାନି । ଖାଲି କହିଲା, 'ଅରିନ୍ଦମ, ଆମେ ଏଠି ଆଉ ବେଶି ସମୟ ରହି ପାରିବାନି । ଫେରିଯିବା, କଂସଙ୍କର ଆସିବା ସମୟ ହୋଇଗଲା । ତା ଆଗରୁ ଆମକୁ ଫେରି ଯିବାକୁ ହେବ । କଂସ ଦେଖିଲେ ବିରକ୍ତ ହେବେ । ବାହାଘର ବେଳକୁ ହୁଏତ ଆଉ ଥରେ ଆସିବ । ତେବେ ଗୋଟାଏ ଖବର ତମକୁ ଦେଇପାରେ । ବାହାଘର ପରେ ପରେ ଏମାନେ ଫେରିଯିବେ । ସେମାନଙ୍କର ଉତ୍ତର ଅଞ୍ଚଳକୁ ନୁହେଁ, ଗିରିବ୍ରଜକୁ । ଆମ ଭିତରୁ କିଛି ସୈନିକ ସେମାନଙ୍କୁ ଛାଡ଼ିବାକୁ ଗିରିବ୍ରଜ ଯିବେ । ସମ୍ରାଟ ଜରାସନ୍ଧଙ୍କର ଦି'ଜଣ ମନ୍ତ୍ରୀ ବି ଯିବେ । କଂସଙ୍କର

ଆଦେଶ ଆସିଗଲାଣି ।'

ଅରିନ୍ଦମ ପାଖରେ ଗୋଟାଏ କଥା ସ୍ପଷ୍ଟ ହୋଇଗଲା । ଏମାନେ ଯିଏ ହୁଅନ୍ତୁ, ଯେଉଁ ଦେଶର ହୁଅନ୍ତୁ, ଯାହା ଜାଣନ୍ତୁ, ଦେବକୀ ବସୁଦେବଙ୍କର ବିଭାଘର ସହିତ ଏମାନଙ୍କର ସମ୍ପର୍କ ଅଛି । କି ସମ୍ପର୍କ ଜାଣିବା ସହଜ ନୁହେଁ । ଅନ୍ତତଃ ସେ ବୁଝି ପାରୁନାହିଁ । ଏ ସୈନିକ ଯେ ଜାଣେ ତା ମନେ ହେଉନି । ସେ ସାଙ୍ଗ ଦେବପ୍ରିୟଙ୍କୁ ଚାହିଁଲା । ସେ କ'ଣ ବୁଝିଛି । ନାଁ, ମନେ ହେଉନି । ହୁଏତ ଭାନୁପ୍ରକାଶ କିଛି କିଛି ବୁଝିପାରିବେ । ତାଙ୍କୁ ଏସବୁ କଥା ଜଣେଇବା ଦରକାର । ସୈନିକ ଫେରିଯିବା ପାଇଁ ପ୍ରସ୍ତୁତ ହେଲାଣି । ସେ କହିଲା, 'ଅରିନ୍ଦମ, କ'ଣ ଏତେ ଭାବୁଛ ? କଂସ ଏମାନଙ୍କୁ ଅଣେଇଛନ୍ତି । ଏମାନଙ୍କର ନିଶ୍ଚୟ କିଛି ଦରକାରୀ କାମ ଅଛି । ଆମେ ଭାବି ବ୍ୟସ୍ତ ହେବାର ଦରକାର ନାହିଁ । ଆଉ ତିନି ଚାରି ଘଟିକାରେ ସବୁ ସ୍ପଷ୍ଟ ହୋଇଯିବ, ଆସ, କଂସ ଆସିଲେଣି ।'

କଂସ ଆସିଲେଣି ? ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଚାରିପାଖକୁ ଚାହିଁଲା । ବେଦିରେ ବି ତିନିଜଣ ବ୍ରାହ୍ମଣ ବସିଛନ୍ତି । କ'ଣ ସବୁ ଆୟୋଜନ କରୁଛନ୍ତି । ସେ ବାହାରର ଦି ଜଣ ଲୋକ ବି ଚୁପଚାପ ବସିଛନ୍ତି । କୁଆଡ଼େ କିଛି ନାହିଁ । ସବୁଆଡ଼ ଚୁପଚାପ । ଏଡ଼େ ବଡ଼ ଅଗଣାଟା ଖାଲି ଖାଲି । କଂସ କାହାନ୍ତି ? କଂସ କ'ଣ ଶୂନ୍ୟରେ ଚୁପଚୁପ ଆସୁଛନ୍ତି ? ଅରିନ୍ଦମ ସୈନିକ ଆଡ଼କୁ ଚାହିଁଲା । କହିଲା, 'କି ହୋ, କଂସ କାହାନ୍ତି ? କେହି କୁଆଡ଼େ ତ ନାହାନ୍ତି ।'

ସୈନିକ କହିଲା, 'ହଁ, କଂସ ଆସିଲେଣି । ଏଇ ଶୁଣ...'

ଅରିନ୍ଦମ କାନ ଡେରି ଶୁଣିଲା । ହଁ ଦୂରରେ କେଉଁଠି ଦାମାମା ବାଜୁଛି, ତୁରୀ ଫୁଙ୍କା ହେଉଛି । କହିଲା - 'ଏ ତ ବାଜା ଶବ୍ଦ ଆସୁଚି । ବହୁତ ଦୂରରୁ । ଏ କଂସ ?' 'ହଁ', ସୈନିକ କହିଲା, 'ଏଇ କଂସ । ଶବ୍ଦ ଦୂରରୁ ଆସୁନି । ଏଇ ବେଦି ଉପରୁ ।' 'ବେଦି ଉପରୁ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, 'ବେଦି ଉପରେ ବାଜା? କିହୋ, ବେଦି ଉପରେ ବାଜା କୁଆଡୁ ଆସିବ ? ସେଠି ବାଜା କାହିଁ ?

'ନା, ସେଇଠି ବାଜା ବାଜୁଛି । ଅସଲ ବାଜା ନୁହେଁ । ବାଜାର ଶବ୍ଦ, ବାଜା ଦୂରରେ ଅଛି ।'

ସୈନିକଟି ବ୍ୟସ୍ତ ହେଲା । କହିଲା, 'ଅରିନ୍ଦମ ଆସ, ଆସ, ଆଉ ଏଠି ରହିବାନି । ଏଠି ଅନେକ କଥା ଆମେ ଜାଣୁନା, ତୁମେ ବି ବୁଝି ପାରିବନି । ଆସ' । ସେମାନେ ଫେରିଲେ ।

ଗୋଟାଏ କଥା ଅରିନ୍ଦମ ମନରେ ବାରମ୍ବାର ଧକ୍କା ଦେଉଥିଲା । ଦେବକୀ

ବସୁଦେବଙ୍କର ବିଭାଘର କଂସ ବହୁ ଆଗରୁ ଘୋଷଣା କରି ସାରିଛି । ଏହାଦ୍ୱାରା ଅନ୍ଧକ ଓ ସୁର ଯାଦବ ଏହି ଦୁଇଗୋଷ୍ଠୀ ଭିତରେ ସମ୍ପର୍କ ଘନିଷ୍ଠ ହେବ ଏକଥା ସମସ୍ତେ ଜାଣନ୍ତି, ଓ କଂସର ଆଧିପତ୍ୟ ସମସ୍ତେ ମାନିନେବେ । ବିଭାଘର ବହୁତ ଆଡ଼ମ୍ବରରେ ହେଉଛି ଠିକ୍, କିନ୍ତୁ ବିଭାଘର ଯାଦବମାନଙ୍କର ନିଜ ଜାତିର ବିଧିବିଧାନ ଭିତରେ ହିଁ ହେବ । ସେଠି ଏ ବାହାର ଅଞ୍ଚଳର ତନ୍ତ୍ରମନ୍ତ୍ର ଜାଣିଥିବା ଲୋକଙ୍କର କାମ କ'ଣ ? ବା ଏତେ ଗୁପଚୁପ ସାବଧାନତା କାହିଁକି ? ସୈନିକଟି ହୁଏତ କିଛି ଜାଣେ ବା ସନ୍ଦେହ କରୁଛି । କିନ୍ତୁ ତା ପାଖରୁ ଆଉ କିଛି ଜାଣିବାର ସମ୍ଭାବନା ନାହିଁ । ସେ ବି ଯେତିକି କହିଛି କମ କଥା ନୁହେଁ । ଜଣେ ସାଧାରଣ ସୈନିକ ଏତେ କଥା ସ୍ୱାଭାବିକ ଭାବରେ କହିବନି । ସେ ଟିକେ ରହିଗଲା । ନାଁ, ତା'ର ସନ୍ଦେହ ଠିକ୍, ଆ'ର ଭାନୁପ୍ରକାଶଙ୍କ ସହିତ ନିଶ୍ଚୟ ସମ୍ପର୍କ ଅଛି । ସେ ଏକା ନୁହେଁ । ସିଂହ ଦରଜାରେ ଥିବା ସୈନିକଙ୍କ ଭିତରେ ଆହୁରି ବି କିଛି ଭାନୁପ୍ରକାଶଙ୍କ ଲୋକ ଅଛନ୍ତି । ତା ନ ହେଲେ ସେମାନେ ତାଙ୍କ ଦିହିଙ୍କି ଏତେ ସହଜରେ ଭିତରକୁ ଛାଡ଼ି ନ ଥାନ୍ତେ । ତା' ମନ ସହଜ ହୋଇଗଲା । ସେ ଭାବିଲା ବୋଧେ ଏହି ସୈନିକଟି ସାଙ୍ଗରେ ଆଉ କିଛି କଥାବାର୍ତ୍ତା କରାଯାଇପାରେ । ସେଇଆ ସେ କଲା । କହିଲା – 'ଶୁଣ, ଗୋଟାଏ କଥା ମତେ ଅଖାଡୁଆ ଲାଗୁଛି । ବାହାଘରରେ ତ ଲୋକେ ଆସିବେ ଯିବେ, ଖାଇବେ ପିଇବେ, ଖୁସି ହେବେ । ବାହାଘରରେ ତ ଗହଳି ହବ । କଂସ ଲୋକଙ୍କଠାରୁ ଦୂରେଇ ଚୁପଚୁପ ବାହାଘର କରୁଛି କାହିଁକି ? ଦ୍ୱିତୀୟରେ, ସବୁଆଡ଼େ ଏତେ ସୈନ୍ୟ କାହିଁକି ? ଯୁଆଡ଼େ ଯାଅ ସେଆଡ଼େ ଶହ ଶହ । ଖାଲି ମଥୁରାର ସୈନ୍ୟ ନୁହନ୍ତି, ମଗଧର ବି, ରାକ୍ଷସ ସୈନ୍ୟ ବି ?'

ସୈନିକଟି କିଛି କହିଲା ନାହିଁ, ଚୁପଚାପ ଚାଲିଲା । ଅରିନ୍ଦମ ପୁଣି କହିଲା, 'ଅନ୍ୟ କଥା ବି ଅଛି ଯାହା ମତେ ସମାନ ଅଖାଡୁଆ ଲାଗୁଛି । ଯମୁନାର ବାହାର ଦେବୀ ଘାଟ ପାଖରେ ଉଗ୍ରସେନଙ୍କର ସେଇ ପୁରୁଣା କୋଠା କଥା ଭାବ । ତାକୁ ମରାମତି କରି ତଛନଛ କରି ଦିଆଗଲାଣି । ଲୋକେ କହୁଛନ୍ତି ଦେବକୀ ବସୁଦେବଙ୍କର ବିଭାଘର ପରେ ସେମାନେ ସେଠି ରହିବେ । କିନ୍ତୁ କାହିଁକି ? ବସୁଦେବଙ୍କର ନିଜର ଘର ଅଛି । ଦେବକୀ ତାଙ୍କର ପ୍ରଥମ ସ୍ତ୍ରୀ ନୁହନ୍ତି । ଏଇ ମରାମତି ହୋଇଥିବା ସହର ବାହାରର ପୁରୁଣା କୋଠାଘରେ କାହିଁକି ? ତା ଛଡ଼ା ମରାମତି ହୋଇ ସେ ତ ଗୋଟାଏ ରହିବା ଘର ପରି ଦିଶୁନି, ଗୋଟାଏ ବନ୍ଦୀଶାଳା ପରି ଦିଶୁଛି ।'

ସୈନିକ ହସିଲା । କହିଲା, 'ଅରିନ୍ଦମ, ତୁମେ ପିଲା ଲୋକ । ତୁମେ

ସେଇଯୋଗୁଁ ଏତେ ପ୍ରଶ୍ନ ପଚାରୁଚ । ମୁଁ ଏତେ ପ୍ରଶ୍ନର ଉତ୍ତର କୋଉଠୁ ଦେବି । ମୁଁ ସବୁ ପ୍ରଶ୍ନର ଉତ୍ତର ଜାଣେନା । ରଜାଙ୍କର ନିଷ୍ପତ୍ତି, ପୁଣି କଂସ ରାଜା, ତାଙ୍କର ମନର କଥା ତାଙ୍କର ସ୍ତ୍ରୀମାନେ ମଧ୍ୟ ବୁଝି ପାରନ୍ତି ନାହିଁ । ତୁମେ ସେନାପତି ପ୍ରଦ୍ୟୋତଙ୍କୁ ପଚାର । ସେ ହୁଏତ କିଛି କହିପାରନ୍ତି ।' ଏତିକି କହି ସେ କିଛି ସମୟ ଚୁପ କରିଗଲା । ତା ପରେ ଆସ୍ତେ ଆସ୍ତେ, ଏପରିକି ଦେବପ୍ରିୟ ଶୁଣି ନ ପାରିଲା ପରି ସ୍ୱରରେ, ଅରିନ୍ଦମର କାନ ପାଖରେ ଫୁସଫୁସ କରି କହିଲା, 'ଭାନୁପ୍ରକାଶଙ୍କୁ ପଚାର । ସେ ଜାଣିବା ଲୋକ, ନିଶ୍ଚୟ କିଛି କହିବେ ।'

ଏ ଦଶବର୍ଷ ତଳର କଥା ଅରିନ୍ଦମର ସ୍ପଷ୍ଟ ମନେ ଅଛି । ସେ ସେ ସୈନିକଟି ମୁହଁରେ ଭାନୁପ୍ରକାଶଙ୍କ ନା ଶୁଣି ଚମକି ଉଠିଥିଲା । ତେବେ ତା'ର ସନ୍ଦେହ ଠିକ୍, ଏ ଭାନୁପ୍ରକାଶଙ୍କ ଲୋକ । ଭାନୁପ୍ରକାଶଙ୍କ ସମ୍ପର୍କ କେଡ଼େ ବ୍ୟାପକ ଭାବି ସେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ନା, ଆଉ ଡେରି କରିବା ଠିକ୍ ହେବନି । ସୈନିକକୁ ଛାଡ଼ି ସେ ଓ ଦେବପ୍ରିୟ ଯମୁନା ପାରି ହୋଇ ଗୋପକୁ ଚାଲିଗଲେ । ଭାନୁପ୍ରକାଶ ସବୁ କଥା ଜାଣିବା ଦରକାର ।

ସକାଳ ଟପି ଯାଇଥିଲା । ସକାଳର କଅଁଳ ଖରା କ୍ରମଶଃ ଟାଣ ହୋଇ ଆସୁଥିଲା । ଗୋପରେ ନନ୍ଦଙ୍କ ଘରେ ପ୍ରାୟ ସମସ୍ତେ ଥିଲେ – ଭାନୁପ୍ରକାଶ, ଭାନୁପ୍ରିୟ, ସତ୍ୟକାମ, ସୌରଦେବ, ନନ୍ଦ ନିଜେ ଓ ଆହୁରି ତିନି ଚାରି ଜଣ ଲୋକ, ଅରିନ୍ଦମ ସେମାନଙ୍କୁ ଚିହ୍ନି ନ ଥିଲା । ସେ ଏପାଖ ସେପାଖ ଚାହିଁଲା । ନା, ଗୋପା ଆସି ନାହାନ୍ତି । ଭାନୁପ୍ରକାଶ କହିଲେ, 'ଗୋପାଙ୍କୁ ଖୋଜୁଛ କି ? ନା, ଗୋପା ଆଜି ଆସିବା ସମ୍ଭବ ନୁହେଁ । କିନ୍ତୁ ସେ ଖବର ପଠେଇଛନ୍ତି, ସମ୍ଭବ ସନ୍ଧ୍ୟାରେ ଦେଖା ହୋଇପାରେ । ତୁମେ ବସ, କିଛି ଖବର ଅଛି କି ?'

ଅରିନ୍ଦମ କହିଲା, 'ପ୍ରଥମ ବାପାଙ୍କ କଥା କହେ, ସେ ପ୍ରାୟ ପାହାନ୍ତାରୁ ପୂଜାରେ ବସିଛନ୍ତି । ଆଜି ସାରାଦିନରେ ପୂଜାରୁ ଉଠିବେ କି ନାହିଁ ସନ୍ଦେହ ।'

'ଜାଣେ', ଭାନୁପ୍ରକାଶ କହିଲେ, 'ସେ ପୂଜାରୁ ନ ଉଠିବା ସମ୍ଭବ । ବାପା କିଛି ବିପଦର ଆଶଙ୍କା କରୁଛନ୍ତି ।'

'ବିପଦ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ', ଭାନୁପ୍ରକାଶ କହିଲେ, 'ଖାଲି ବାପା ଏକା ନୁହନ୍ତି । ଗୁରୁଦେବ ବି ଖବର ପଠେଇଛନ୍ତି ସାବଧାନରେ ରହିବାପାଇଁ । ତାଙ୍କର ଉପଦେଶ ଯାହା ଘଟୁ କିଛି ବିଚଳିତ ହେବ ନାହିଁ ।'

'ତା ମାନେ ଆପଣ ଆଶଙ୍କା କରୁଛନ୍ତି କିଛି ଘଟିପାରେ ?' କହିଲା ଅରିନ୍ଦମ ।

'ମୁଁ ଏକା ନୁହେଁ, ସତ୍ୟକାମ ବି ସେଇଆ ଭାବୁଛନ୍ତି । ସୌରଦେବ ବି', କହିଲେ ଭାନୁପ୍ରକାଶ ।

'ଗୁରୁଦେବଙ୍କ ପରି ମୁଁ ସ୍ପଷ୍ଟ ଦେଖି ପାରେନା', କହିଲେ ସତ୍ୟକାମ, 'କିନ୍ତୁ ମତେ ଅସ୍ଥିର ଲାଗୁଛି । ଧ୍ୟାନରେ ବସିଲେ ମଧ୍ୟ ମନ ଚଞ୍ଚଳ ହେଉଛି । ଏ ମୋ ପାଇଁ ଭଲ ଲକ୍ଷଣ ନୁହେଁ । ମୁଁ ଦେଖିଛି ଯେବେ ଯେବେ ମତେ ଏମିତି ଲାଗେ କିଛି ନା କିଛି ଅଶୁଭ ଘଟେ ।'

'ମୁଁ ନିର୍ଦ୍ଦିଷ୍ଟ କିଛି କହିପାରିବି ନାହିଁ', କହିଲେ ସୌରଦେବ, 'କିନ୍ତୁ ମୁଁ ଦେଖୁଛି କଂସର ଏ ବିଭାଘର ଆୟୋଜନକୁ ସାଧାରଣ ଲୋକେ ବିଶ୍ୱାସ କରୁନାହାନ୍ତି । ବିଶେଷ କରି ଯେଉଁ ସାଧୁ ପ୍ରକୃତିର ମୁଖିଆମାନେ ଅଛନ୍ତି ସେମାନଙ୍କର ତ ଆଦୌ ବିଶ୍ୱାସ ନାହିଁ । ସମସ୍ତଙ୍କର ଗୋଟିଏ ଧାରଣା କଂସ ଯେଉଁ କାଳସର୍ପ ସେ ବିଷ ଛଡ଼ା ଆଉ କିଛି ଦେଇପାରିବ ନାହିଁ । ଖୋଲା ଖୋଲି କେହି କିଛି ନ କହିଲେ ବି ବସୁଦେବ ଦେବକୀଙ୍କ ପାଇଁ ସମସ୍ତେ ବ୍ୟସ୍ତ ।'

ନନ୍ଦ ବି ଆଲୋଚନାରେ ଯୋଗ ଦେଲେ । କହିଲେ, 'ଗୋପରେ ବି ସାଧାରଣ ଲୋକମାନଙ୍କର ସମାନ ଧାରଣା । କଂସର କାରବାରକୁ କେହି ବିଶ୍ୱାସ କରୁନାହାନ୍ତି । ଆଗେ ଏଠିକାର ଲୋକମାନେ ମଥୁରାକୁ ପ୍ରାୟ ସବୁବେଳେ ଯାଉଥିଲେ । ମୁଁ ଏବେ ଦେଖୁଛି ଏ ଯିବା ଆସିବାଟା ଅନେକ କମିଯାଇଛି । ଖୁବ୍ ଦରକାର ନ ହେଲେ କେହି ଯାଉ ନାହାନ୍ତି । ଆଜି ତ ବିଭାଘର, ମଥୁରାର ଖିଆପିଆ ଜୋରରେ ଚାଲିଥିବ । କିନ୍ତୁ ମୁଁ ଦେଖୁଛି ଗୋପରୁ ଖୁବ୍ ବେଶୀ ଲୋକ ଯାଉ ନାହାନ୍ତି ।'

'ମୁଁ ମଗଧରୁ ଏବେ ଫେରିଲି', ଭାନୁପ୍ରିୟ କହିଲେ, 'ସେଠି ଆମର ଯେଉଁ ଲୋକ ଅଛନ୍ତି ସେମାନଙ୍କ କହିବା ମତେ ଦେବକୀ ବସୁଦେବଙ୍କର ଏ ବିଭାଘରକୁ ସେଠି ଅନ୍ୟଭାବରେ ପ୍ରଚାର କରାଯାଇଛି । ଏ କଂସର ବଡ଼ କୀର୍ତ୍ତି, ବଡ଼ ଆଡ଼ମ୍ବର । ଲୋକମାନେ ବାହାଘର ବିଷୟରେ କଥାବାର୍ତ୍ତା ହେଉଛନ୍ତି । ସେମାନଙ୍କର ଧାରଣା ଗୋଟାଏ ବଡ଼ କିଛି ଘଟଣା ଘଟୁଛି । କଂସ ମଗଧର ଜୋଇଁ । ସେଥିପାଇଁ ସେମାନଙ୍କର କଥାବାର୍ତ୍ତା ଟିକିଏ ବେଶୀ ।'

'ଜରାସନ୍ଧର ପାରିଷଦମାନଙ୍କ ଭିତରେ କ'ଣ ସେଇ ଧାରଣା ?' ପଚାରିଲେ ସୌରଦେବ । ଭାନୁପ୍ରିୟ ଟିକିଏ ରହିଗଲେ, କହିଲେ, 'ନା, ତା ବୋଧେ ନୁହେଁ । ତେବେ ଏ ବିଷୟରେ ଖୋଲାଖୋଲି କେହି କଥାବାର୍ତ୍ତା କରୁ ନାହାନ୍ତି । ମୋର ଯାହା ଖବର ଜରାସନ୍ଧଙ୍କର ଦରବାରରେ ଏକଥା ଜଣେ କେହି ଉଠେଇଥିଲେ ।

ଜରାସନ୍ଧଙ୍କର ଜଣେ କେହି ମନ୍ତ୍ରୀ ସେଠି ଥିଲେ । ସେ ସାଙ୍ଗେ ସାଙ୍ଗେ କଥାଟାକୁ ଚାପିଦେଲେ । କହିଲେ ମଥୁରା କଥା ଆଲୋଚନା ନ କରିବା ଭଲ, ଜରାସନ୍ଧ ବିରକ୍ତ ହେବେ । ତେବେ ଗୋଟାଏ କଥା **ସ୍ପଷ୍ଟ** ବୁଝି ହେଉଥିଲା, ମଥୁରାରେ କ'ଣ ଘଟୁଛି ବା ଘଟିବାକୁ ଯାଉଛି, ଭଲ କି ମନ୍ଦ, ସବୁ ଖବର ଜରାସନ୍ଧଙ୍କ ପାଖରେ ଅଛି ।'

'ଜରାସନ୍ଧ ପାଖରେ ଅଛି, ନା ତା'ରି ହିସାବରେ ଏଠି ସବୁ କାମ ଚାଲିଛି ।' କହିଲେ ଭାନୁପ୍ରକାଶ ।

'ତା ହୋଇପାରେ', ଭାନୁପ୍ରିୟ ସାମାନ୍ୟ ହସିଲେ, 'ସେଇ ଯା କହନ୍ତି ଚୋର ଡକେଇତ ମାଉସୀ ପୁଅ ପିଇସୀ ପୁଅ ଭାଇ ।'

'ଖାଲି ସେତିକି ନୁହେଁ ।' କହିଲେ ସତ୍ୟକାମ । 'ଏ ବଡ଼ ଭାଇ ସାନ ଭାଇ କଥା ।'

'ସାନ ଭାଇ ବଡ଼ ଭାଇକି ଟପିଯିବା କଥା', ଯୋଗ କଲେ ସୌରଦେବ, 'ବାପ କୋଡିଏ ତ ପୁଅ ଶହେ ।'

ସମସ୍ତେ ହସି ଉଠିଲେ ।

ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ତୁମେ ଏଠିକି ଆସିବା ଆଗରୁ ନିଶ୍ଚୟ ବିଭାଘର ଜାଗା ଆଡ଼କୁ ଯାଇଛ । କ'ଣ ସବୁ ବୁଝିଲ କୁହ ।'

କିଛି କହିବା ଆଗରୁ ଅରିନ୍ଦମ ଟିକେ ଭାବିନେଲା- 'ଯାହା ଆମକୁ ସବୁଠୁ ଆଶ୍ଚର୍ଯ୍ୟ ଲାଗିଲା ସେ ସୈନ୍ୟସାମନ୍ତ ସବୁଆଡ଼େ, ସବୁ ରାସ୍ତା, ମହଲା, ସାହି, ଯେଉଁଆଡ଼େ ଗଲେ ବି ଦଶ, ବାର ପନ୍ଦରର ଦଳ କରି ସେମାନେ ଜଗିଛନ୍ତି । ବାହାଘର ପରି ଗୋଟାଏ ଖୁସିବାସୀ, ଶୁଭ କାମରେ ସବୁଆଡ଼େ ଏତେ ସୈନିକ କାହିଁକି ? ସେଇଟା ହିଁ ଜାବା କଥା ।'

'ମଥୁରାର ସୈନିକ, ନା ଆଉ କିଏ ?' ପଚାରିଲେ ଭାନୁପ୍ରକାଶ ।

'ମଥୁରାର ସୈନ୍ୟ ଅଛନ୍ତି । କିନ୍ତୁ ବେଶୀ ମଗଧ ସେନା, ଆଉ ରାକ୍ଷସ ସୈନ୍ୟ ବି ।' କହିଲା ଅରିନ୍ଦମ ।

'ଗତ ଦୁଇ ତିନି ଦିନ ଧରି ମଗଧରୁ ଅନେକ ସୈନ୍ୟ ଆସିଛନ୍ତି ।' କହିଲେ ଭାନୁପ୍ରକାଶ, 'ଆଗରୁ ଏତେ ସୈନ୍ୟ ନ ଥିଲେ ।'

'ତା ମାନେ କଂସ ଯାହା କରୁ ସେ' ମଥୁରାର ସୈନିକଙ୍କୁ ବିଶ୍ୱାସ କରିବାକୁ ଚାହେଁ ନା ।' କହିଲେ ସତ୍ୟକାମ ।

'ଖାଲି ସୈନିକ ନୁହେଁ, କଂସ ସେନାପତି ପ୍ରଦ୍ୟୋତଙ୍କୁ ମଧ୍ୟ ବିଶ୍ୱାସ କରେ ନା ।' କହିଲେ ସୌରଦେବ ।


Digitized by srujanika@gmail.com

'ତା ଠିକ୍', ଭାନୁପ୍ରକାଶ କହିଲେ, 'ବାହାରୁ ଏସବୁ ବୁଝି ହେଉଛି । କିନ୍ତୁ କଂସର ଅସଲ ମତଲବ କ'ଣ ବୁଝି ହେଲାନି । ଆଚ୍ଛା, ତାପରେ କ'ଣ ହେଲା କୁହ ।'

'ଆଉ ଯେଉଁ କଥା ଆମକୁ ଆଶ୍ଚର୍ଯ୍ୟ ଲାଗିଲା ସେ ଲୋକ ।' କହିଲା ଅରିନ୍ଦମ, 'ଏତେ ଲୋକ ! ପୁଣି ଏତେ ସକାଳୁ ! କୁଆଡୁ କୁଆଡୁ ଲୋକ ଆସିଛନ୍ତି ତା'ର ଠିକଣା ନାହିଁ । ଅଲଗା ଅଲଗା ଚେହେରା, ଅଲଗା ଅଲଗା ପୋଷାକ, ଅଲଗା ଅଲଗା କଥା । କିନ୍ତୁ ବାହାଘର ବିଷୟରେ କାହାରି ବିଶେଷ ଧାରଣା ନାହିଁ । ଗୋଟାଏ ଉପର ଠାଉରିଆ ଧାରଣା, ରଜାଘର ବାହାଘର, ବାସ୍ ସେତିକି । ସମସ୍ତେ ଖାଇବା ଆଡ଼କୁ ଚାଲିଛନ୍ତି । ମଝିରେ ମଝିରେ କଂସର ଲୋକମାନେ ଅଛନ୍ତି, ସେମାନେ ଲୋକଙ୍କୁ ଖାଇବା ଜାଗାକୁ ବାଟ ଦେଖେଇ ଦଉଛନ୍ତି ।'

'ତୁମେମାନେ ଖାଇବା ଜାଗାକୁ ଯାଇଥିଲ ?' ପଚାରିଲେ ଭାନୁପ୍ରକାଶ ।

'ହଁ', କହିଲା ଅରିନ୍ଦମ, 'ସେ ଯମୁନାର ବଢ଼ି ପରି ବ୍ୟାପାର । ଗୋଟାଏ ପାଖରେ ଖନ୍ଦା ଲାଗିଛି, ରୋଷେଇ ଚାଲିଛି । ପାଖକୁ ଲାଗି ଲୋକ ବସିଛନ୍ତି । ଯାହା ଖାଇବେ, ଯେତେ ଇଚ୍ଛା ଖାଇବେ । ଖାଲି ଖାଇବା ନୁହେଁ, ପିଇବା ବି । କେତେ ପ୍ରକାର ମଦ, ପିପା ପିପା । ଭୋଜି ମୁଁ ଦେଖିଛି । ରଜାଘରେ ଭୋଜି ହୁଏ । କିନ୍ତୁ ଏ କି ଭୋଜି ! ଖାଲି କାଦୁଅରେ ପଡ଼ି ଲଟରପଟର ହେବା କଥା ।'

ଭାନୁପ୍ରକାଶ ସୌରଦେବଙ୍କୁ ଚାହିଁଲେ, କହିଲେ, 'ସୌରଦେବ, ଏ ଲୋକ ଆସିବା, ଏ ଖିଆପିଆ, ଆପଣ କ'ଣ ଭାବୁଛନ୍ତି ?'

'ଏ ଲୋକ ଆସିବା ପାଇଁ ବହୁତ ପ୍ରଚାର କରାହୋଇଚି, ଏକଥା ବୁଝି ହେଉଛି ।' ସୌରଦେବ କହିଲେ ।

'ଖାଲି ସେତିକି ନୁହେଁ ।' କହିଲେ ଭାନୁପ୍ରକାଶ, 'ମଥୁରା ଭିତର ଓ ବାହାର ସବୁଆଡ଼ ବୁଲି ବୁଲି ଲୋକଙ୍କୁ ଯଥେଷ୍ଟ ଲୋଭ ଦେଖାହୋଇଛି । ବହୁତ ଖାଇବାକୁ ମିଳିବ, ପିଇବାକୁ ମିଳିବ । କଂସ ରାଜାଙ୍କର ବିଭାଘର, ଭୋଜି, ଆସ ।'

'କିନ୍ତୁ କାହିଁକି ?' ସତ୍ୟକାମ କହିଲେ, 'ଏତେ ଲୋକଙ୍କୁ କାହିଁକି ଡକା ହୋଇଛି ?'

'ଆଉ ଗୋଟାଏ କଥା ବି ଆମେ ଲକ୍ଷ୍ୟ କଲୁ', କହିଲା ଅରିନ୍ଦମ, 'ଆମେ ବାହାଘର ବିଷୟରେ ପଚରାପଚରି କଲାରୁ କଂସର ଯୋଉ ଲୋକମାନେ ଏଠି ସେଠି ଜଗିକରି ରହିଥିଲେ ସେମାନେ ବିରକ୍ତ ହେଲେ । କହିଲେ କି ହୋ ସମସ୍ତେ ତ ଭୋଜି ଖାଇବାକୁ ଆସିଛନ୍ତି । ରଜାଘର ଭୋଜି । ତମେ ବାହାଘର ବିଷୟରେ ଏତେ

ଫଟରେଇ ହଉଛ କାହିଁକି ?'

'ତା ମାନେ ଆଜିର ଏ ବାହାଘର ବିଷୟରେ ଲୋକଙ୍କର ଆଗ୍ରହ ନାହିଁ । କହିଲେ ସୌରଦେବ ।

'ନା ନାହିଁ ।' କହିଲା ଅରିନ୍ଦମ, 'ରାସ୍ତାରେ ଭିଡ଼, ଖାଇବା ଜାଗାରେ ଭିଡ଼, କିନ୍ତୁ ରାଜାଙ୍କ ନଅରରେ ଯେ ବିଭାଘର ହେଉଛି ସେ ଆଡ଼କୁ କାହାରି ନଜର ନାହିଁ ।'

ଭାନୁପ୍ରକାଶ କହିଲେ, 'କଥାଟା ବୁଝିହେଉଛି । ଲୋକ ଆସନ୍ତୁ, ଯେତେ ଆସିବେ ସେତେ ଭଲ । ସାରା ମଥୁରା ବାହାର ଲୋକଙ୍କ ଦ୍ୱାରା ଭର୍ତ୍ତି ହୋଇଯାଉ । ଏପରିକି ମଥୁରାର ସାଧାରଣ ଲୋକ ବି ଆସନ୍ତୁ । ଖାଆନ୍ତୁ । ସମସ୍ତେ କଂସର ଜୟଜୟକାର କରନ୍ତୁ, ଏହାହିଁ ଉଦ୍ଦେଶ୍ୟ । ଏହି ଭିଡ଼ ଓ ହୋ ହଲ୍ଲା ଭିତରେ କଂସ ବାହାଘର ସାରିଦେବାକୁ ଚାହେଁ । ଅର୍ଥାତ୍ ବାହାଘରର କିଛି ଗୁରୁତ୍ୱ ନାହିଁ, ବାହାଘର ଗୋଟାଏ ତୁଚ୍ଛ ଘଟଣା, ଏହାହିଁ ମତଲବ ।'

'ବା, କଂସର ଅନ୍ୟ କିଛି ମତଲବ ଅଛି ? ସେ ଏହି ଭିଡ଼, ଗୋଳମାଳ, ହୋ ହଲ୍ଲା ଭିତରେ ତାକୁ ଘୋଡ଼େଇ ପକେଇବାକୁ ଚାହେଁ'? କହିଲେ ସୌରଦେବ ।

'ତା ହୋଇପାରେ', କହିଲେ ଭାନୁପ୍ରକାଶ, 'ଏ ଖାଲି କଂସର ବୁଦ୍ଧି ନୁହେଁ, ଜରାସନ୍ଧର ବୁଦ୍ଧି ତ । ଉଭୟ ସଇତାନ । ଉଭୟଙ୍କ କାମରେ ସଇତାନି ଭାବଟା ହିଁ ବେଶି । ତା ନହେଲେ ବାହାଘର ପରି ଗୋଟାଏ ସିଧା ସିଧା ଅନୁଷ୍ଠାନରେ ଏତେ ଆଡ଼ମ୍ବର କାହିଁକି ? ପୂରା ଘଟଣାଟା ହିଁ ସନ୍ଦେହଜନକ ।'

ସେ ଅରିନ୍ଦମ ଆଡ଼କୁ ବୁଲି ପଡ଼ିଲେ- 'ଆଚ୍ଛା ଅରିନ୍ଦମ, ତୁମେ ତ ବାହାଘର କଥା କିଛି ବୁଝିଥିବ । ସେଠିକି ଯାଉଛି କିଏ ? ସେଠି ବି ସୈନ୍ୟ ଜଗିଛନ୍ତି ?'

'ହଁ, ସୈନ୍ୟମାନେ ଅଛନ୍ତି । ସିଂହଦରଜା ପାଖରେ, ପୁଣି ନଅର ଭିତରେ ବି ।' କହିଲା ଅରିନ୍ଦମ, 'ବିଭାଘର ନଅର ଭିତରେ, ତୃତୀୟ ଅଗଣାରେ । ସେଠିକି ସାଧାରଣ ଲୋକ ଯାଉନାହାନ୍ତି, କି ବାହାର ଲୋକ କେହି ଯିବାର ଅନୁମତି ନାହିଁ । କେବଳ ମୁଖିଆମାନେ ଯାଉଛନ୍ତି । କିନ୍ତୁ ସବୁ ମୁଖିଆଙ୍କର ଯିବାର ଅନୁମତି ଅଛି କି ନାହିଁ ସନ୍ଦେହ । କାରଣ ରକ୍ଷୀମାନେ ଲୋକ ଦେଖି ଛାଡୁଥାନ୍ତି ।'

'ଆଉ ସେମାନଙ୍କର ଖିଆପିଆ ?' ପଚାରିଲେ ଭାନୁପ୍ରକାଶ ।

'ସେଇ ଭିତରେ', କହିଲା ଅରିନ୍ଦମ, 'ବିଶେଷ କରି ଦ୍ୱିତୀୟ ଅଗଣା ପାଖକୁ ଲାଗିଥିବା ଘରମାନଙ୍କରେ । ଖାଇବା କ'ଣ ? ବିଶେଷ କରି ପିଇବା ।'

'ତା ମାନେ ବାହାଘର ଜାଗାରେ ଲୋକ ବେଶି ନାହାନ୍ତି ।' କହିଲେ


Digitized by srujanika@gmail.com

ଭାନୁପ୍ରକାଶ ।

'ପ୍ରାୟ ନାହାନ୍ତି', କହିଲା ଅରିନ୍ଦମ, 'ବାହାଘର ବେଦି ଓ ବେଦି ଚାରିପାଖର ସାଜସଜାରେ ଆଖି ଠିକରି ଯିବ। ମଣିମୁକ୍ତାର ଝାଲର, ସୁନାରୂପାର ମୁକୁଟ, ନିଆଁ ପରି ହୀରା ନୀଳାର ଦ୍ୟୁତି ।'

'ତୁମେ ଦିହେଁ ବିଭାଘର ଅଗଣାକୁ ଗଲ କେମିତି ?' ସୌରଦେବ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'ରକ୍ଷୀମାନେ ତୁମକୁ ଛାଡ଼ିଦେଲେ ?'

'ନାଁ, ରକ୍ଷୀମାନେ ପ୍ରଥମେ ଛାଡୁ ନ ଥିଲେ । କିନ୍ତୁ ପରେ...' ସେ ଭାନୁପ୍ରକାଶଙ୍କ ଆଡ଼କୁ ଚାହିଁଲା ।

ସୌରଦେବ ଭାନୁପ୍ରକାଶଙ୍କ ଆଡ଼କୁ ଚାହିଁ ଟିକେ ରହିଗଲେ । ପରେ ହସି ଉଠିଲେ । କହିଲେ, 'ଓ ହୋ... ବୁଝିଲି । ଏ ଆପଣଙ୍କ ମହିମା ।'

'ନାଁ, ମହିମା ମୋର ନୁହେଁ', କହିଲେ ଭାନୁପ୍ରକାଶ, 'ମହିମା ଜଣେ ଲୋକର । ସେ କଂସ । ଅରିନ୍ଦମ ଯେଉଁ ମଣିମୁକ୍ତାର ବାହାର ଦେଖି ଆସିଲା ଶୁଣନ୍ତୁ । ହଁ, ଅରିନ୍ଦମ କୁହ, ତା ହେଲେ ପ୍ରାୟ ଚୁପଚାପ ?'

'ହଁ', ଅରିନ୍ଦମ କହିଲା, 'ମୁଖିଆ ମାନଙ୍କର ଖାଇବା ପିଇବାରୁ ଯାହା କିଛି ପାଟିଗୋଳ ଶୁଭୁଥିଲା । କିନ୍ତୁ ବେଦି ପାଖରେ ପ୍ରାୟ କେହି ନ ଥିଲେ । ଆମ ସାଙ୍ଗରେ ଯେଉଁ ରକ୍ଷୀ ଜଣକ ଯାଇଥିଲା ସେ କହୁଥିଲା ବାହାଘର ଡେରି ଅଛି । ଦିନ ଶେଷ ଆଡ଼କୁ ହେବ । ବେଦିରେ ଦି ତିନିଜଣ ବ୍ରାହ୍ମଣ ବସି କ'ଣ ସବୁ ଯୋଗାଡ଼ ଯନ୍ତ କରୁଥାନ୍ତି । ଆଉ ଦି ଜଣ ଲୋକ ଦିଟା ଚଉକିରେ ଆଉଜି ଚୁପଚାପ ବସିଥାନ୍ତି । ମଥୁରାର ଲୋକ ନୁହନ୍ତି । ବାହାରର ଲୋକ । ଅଦ୍ଭୁତ ଚେହେରା, ଅଦ୍ଭୁତ ପୋଷାକ ପତ୍ର । ଶୁଣିଲୁ ଉତ୍ତର ଅଞ୍ଚଳର ଲୋକ, ତାନ୍ତ୍ରିକ, ଅଦ୍ଭୁତ କ୍ଷମତା ତାଙ୍କର ।'

'ତାନ୍ତ୍ରିକ ?' ସତ୍ୟକାମ କହିଲେ, 'ଶୁଣିଛି ଜରାସନ୍ଧ ତାଙ୍କ କାମରେ ତାନ୍ତ୍ରିକମାନଙ୍କର ସାହାଯ୍ୟ ନିଅନ୍ତି ।' 'ଆପଣ ଠିକ୍ ଶୁଣିଛନ୍ତି', କହିଲେ ଭାନୁପ୍ରକାଶ, 'ଖାଲି ଜରାସନ୍ଧ କାହିଁକି, ଆର୍ଯ୍ୟାବର୍ତ୍ତର ଅନେକ ରାଜା ନାନା ମତଲବରେ ତାନ୍ତ୍ରିକ ମାନଙ୍କୁ ବ୍ୟବହାର କରିଥାନ୍ତି । ଏମାନେ ମୁଖ୍ୟତଃ ଶିବ ଭକ୍ତ ଓ ହିମାଳୟର ଉତ୍ତର ଅଞ୍ଚଳର ଲୋକ । ତେବେ ସେମାନଙ୍କ ଭିତରେ ବି ପ୍ରଭେଦ ଅଛି । ଅନେକେ ନାନା ପ୍ରକାର ଦୁଷ୍ଟ କାମରେ ରାଜାମାନଙ୍କୁ ସାହାଯ୍ୟ କରନ୍ତି । କିନ୍ତୁ କିଛି କିଛି ସାଧୁ ପ୍ରକୃତିର, ଦେବ ଭକ୍ତ ଓ ଅତ୍ୟନ୍ତ ବୁଦ୍ଧିମାନ ଓ ସାଧାରଣ ମଣିଷ ଭାବିପାରୁ ନ ଥିବା ଅନେକ ନୂଆ ନୂଆ କାମ କରିପାରନ୍ତି । ମୋର ଖବର କଂସ ପାଖରେ ଦୁଇଜଣ ତାନ୍ତ୍ରିକ ଅନେକ ଦିନ ଧରି ଅଛନ୍ତି । ସେମାନେ କଂସ ପାଇଁ କ'ଣ କାମ କରୁଛନ୍ତି ମୁଁ

ଜାଣେନା । ବୋଧହୁଏ ଏକମାତ୍ର କଂସ ହିଁ ଜାଣେ ସେ କାମ କ'ଣ । କିନ୍ତୁ କଂସ ଯେଉଁ ଦୁଷ୍ଟ ପ୍ରକୃତିର ଲୋକ ଏ କାମ ଯେ ମଙ୍ଗଳକର କାର୍ଯ୍ୟ ହୋଇଥିବ ମୁଁ ତା ଭାବୁନି । ଆଉ ମୋର ବିଶ୍ୱାସ ଦେବକୀ ବସୁଦେବଙ୍କ ବିଭାଘର ସାଙ୍ଗରେ ଏ କାମର ସମ୍ପର୍କ ଅଛି ।'

'ଆଜି ଜଣାଯିବ ।' କହିଲେ ସୌରଦେବ ।

'ହଁ, ଆଜି ଜଣାଯିବ', କହିଲେ ଭାନୁପ୍ରକାଶ, 'କିନ୍ତୁ ସେତେବେଳକୁ ନେଡ଼ି ଗୁଡ଼ କହୁଣୀକୁ ନ ଯାଇଥିଲେ ରକ୍ଷା ।'

'ତାର ସମ୍ଭାବନା ଅଛିକି ?' ପଚାରିଲେ ସୌରଦେବ ।

'ହଁ, ଅଛି', କହିଲେ ଭାନୁପ୍ରକାଶ, 'କଂସ ପକ୍ଷରେ ସବୁ ସମ୍ଭବ । ସେ ନିଜେ ଅଶୁଭ, ଅମଙ୍ଗଳ, ତା'ର ଦୁଷ୍ଟ ବୁଦ୍ଧିଟା ହିଁ ଏକମାତ୍ର ବୁଦ୍ଧି । ଅରିନ୍ଦମ, ବାହା ବେଦିରେ ତା ହେଲେ ଦି ତିନିଜଣ ବ୍ରାହ୍ମଣ ଆଉ ଏ ତାନ୍ତ୍ରିକ । ଆଉ କେହି ନ ଥିଲେ ?'

'ନାଁ', ଅରିନ୍ଦମ କହିଲା, 'ଆମେ ଦେଖିଲା ବେଳେ ଆଉ କେହି ନ ଥିଲେ ।'

'କୌଣସି ମୁଖିଆ ?' ଭାନୁପ୍ରକାଶ ପଚାରିଲେ ।

'ନାଁ', ଅରିନ୍ଦମ ଉତ୍ତର ଦେଲା, 'ସେତେବେଳକୁ ଯେତେ ଆସିଥିଲେ ସମସ୍ତେ ଦ୍ୱିତୀୟ ଅଗଣାରେ । ଖିଆ ପିଆରେ ବ୍ୟସ୍ତ । ସେଉଠୁ ପାଟିଗୋଳ ଶୁଭୁଥିଲା । ଆଉ ଗୋଟାଏ କଥା । ପ୍ରାୟ ପ୍ରତ୍ୟେକ ବିଭାଘର ପାଇଁ ନାନାପ୍ରକାର ଜିନିଷ ପତ୍ର ନେଇ ଆସୁଥିଲେ ।'

'ତା ଆଣିବେ', ଭାନୁପ୍ରକାଶ କହିଲେ, 'ସେସବୁ କିଏ ରଖୁଥିଲା ?'

'ରକ୍ଷୀମାନେ ରଖୁଥିଲେ, ଆଉ ଅନ୍ୟ କୋଉ ଜାଗାକୁ ପଠେଇ ଦେଉଥିଲେ ।' ଅରିନ୍ଦମ କହିଲା ।

'ଅରିନ୍ଦମ, ତୁମେ ଯାହା କହୁଛ ବେଦି ଉପରେ ବହୁତ ଆଡ଼ମ୍ବର, ବହୁତ ସଜାସଜି । କିନ୍ତୁ ତା ଛଡ଼ା ଆଉ କିଛି କଥା ଲକ୍ଷ୍ୟ କରିଛ କି ?' ପଚାରିଲେ ଭାନୁପ୍ରକାଶ । ଅରିନ୍ଦମ ଟିକେ ଭାବିଲା । ନାଁ ତ ସେମିତି କିଛି ନୁହେଁ । ବେଦି ସଜା ହୋଇଛି, ମଣି ମୁକ୍ତାର ଝାଲର ଝଲଝଲ କରୁଛି, ବ୍ରାହ୍ମଣ ଓ ସେହି ଦି ଜଣ ଲୋକ ଚୁପଚାପ ବସିଛନ୍ତି । ସେ ପଚାରୁଥିଲା କଂସ କେତେବେଳେ ଆସିବେ... ହଠାତ୍ ଗୋଟାଏ କଥା ତା'ର ମନେ ପଡ଼ିଗଲା । ସେ କହିଲା, 'ହଁ, କିନ୍ତୁ ସେ ବିଶେଷ କିଛି ନୁହେଁ ।' ଭାନୁପ୍ରକାଶ କହିଲେ, 'ଠିକ୍ ଅଛି । କ'ଣ ସେ କଥା ?'

'ଆମେ ଛିଡ଼ା ହୋଇଥିଲୁ । ଆମ ସାଙ୍ଗରେ ଥିବା ସୈନିକଟି ହଠାତ୍ କହିଲା -


Digitized by srujanika@gmail.com

ଚାଲ ଫେରିଯିବା । କଂସ ଆସୁଛନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । କଂସ ଆସିବାର କୌଣସି ଲକ୍ଷଣ ନାହିଁ । ସେ କ'ଣ ଚୁପଚୁପ ଆସୁଛନ୍ତି । ମୁଁ ସେହିକଥା ସୈନିକକୁ ପଚାରିଲି । ସେ କହିଲା – ଶୁଣ, ବାଜା ବାଜୁଛି । ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି । ବାଜାଫାଜା କିଛି ନାହିଁ । ବାଜା କାହିଁ ? କିନ୍ତୁ ସେ ସୈନିକ ଠିକ୍ କଥା କହୁଥିଲା । ବାଜା ବାଜିବାର ଶବ୍ଦ । ବେଦି ଉପରୁ ସେ ଶବ୍ଦ ଆସୁଥିଲା । ସେ ଶବ୍ଦ କୋଉଠୁ କେମିତି ଆସୁଥିଲା ମୁଁ କହିପାରିବିନି । କିନ୍ତୁ ଶବ୍ଦ ଆସୁଥିଲା । ଶୂନ୍ୟରୁ ଆସିଲା ପରି । ସୈନିକ କହିଲା ବାଜା ଦୂରରେ ବାଜୁଛି, କିନ୍ତୁ ବେଦି ଉପରେ ବାଜିଲା ପରି ଶୁଣାଯାଉଛି ।'

'ହଁ, ଏ ଗୋଟାଏ ନୂଆ କଥା', କହିଲେ ଭାନୁପ୍ରକାଶ, 'ଶୂନ୍ୟରୁ ଶବ୍ଦ ।'

ସେ ଆଉ କିଛି କହିଲେନି । ଚୁପ କରିଗଲେ । ଅନ୍ୟମାନେ ବି ଚୁପ । କିଛି ସମୟ ପରେ ସତ୍ୟକାମ ପଚାରିଲେ 'ଭାନୁ, ଆ'ର ଅର୍ଥ କ'ଣ ? ଏ କି କଥା – ଶୂନ୍ୟରୁ ଶବ୍ଦ କ'ଣ ?'

'ମୁଁ ଠିକ୍ ଜାଣେ ନା । ଆଜିକାଲି ତ ଅନେକ ନୂଆ ନୂଆ କଥା ବାହାରୁଛି । ମୋର ମନେ ହେଉଛି ଏ ଗୋଟିଏ ନୂଆ କୌଶଳ । କଂସର କିଛି ଉଦ୍ଦେଶ୍ୟ ଅଛି । ସେ ଯେଉଁ ଦି ଜଣ ତାନ୍ତ୍ରିକ କଥା କହୁଛ ସେମାନଙ୍କର ବି ଆ ସହିତ ସମ୍ପର୍କ ଅଛି । ମୋର ମନେପଡୁଛି ଥରେ ଗୁରୁଦେବ କହୁଥିଲେ ଶୂନ୍ୟରେ କଥା ଚାଲିବା, ଶୂନ୍ୟରୁ ଶବ୍ଦ ଆସିବା ସମ୍ଭବ । ଏ ସେମିତି କିଛି ବୋଧେ, ଦେଖିବା । ଅରିନ୍ଦମ ଆଉ କିଛି ଲକ୍ଷ୍ୟ କରିଛ କି ?'

'ଆଉ ଯାହା ଅଖାଡୁଆ ମନେହେଲା ସେକଥା ଆପଣ ଜାଣନ୍ତି ।' କହିଲା ଅରିନ୍ଦମ, 'ସେ ସେଇ ଯମୁନା ଦେବୀଙ୍କ ମନ୍ଦିର ପାଖ ଉଗ୍ରସେନଙ୍କ ପୁରୁଣା ଘର । ମୁଁ ଆମ ସାଙ୍ଗରେ ଥିବା ସୈନିକକୁ ସେ ପୁରୁଣା କୋଠା କଥା ପଚାରିଥିଲି – ଘରଟାର ଏମିତି ଅଦ୍ଭୁତ ମରାମତି କାହିଁକି ହେଉଛି, ଗୋଟାଏ ବନ୍ଦୀ ଘର ପରି ?'

'ସୈନିକ କ'ଣ କହିଲା ?' ଭାନୁପ୍ରକାଶ ଆଗ୍ରହରେ ପଚାରିଲେ ।

'ନାଁ, ସେ ଆଡ଼େଇ ଗଲା', ଅରିନ୍ଦମ କହିଲା, 'ମୋର ମନେହେଲା ସେ ଘର ବିଷୟରେ କଥାବାର୍ତ୍ତା କରିବାକୁ ଭୟ କଲା ।

'ମୋର ମନେହେଉଛି ସେ ହୁଏତ ନ ଜାଣି ପାରିଥାଏ', କହିଲେ ଭାନୁପ୍ରକାଶ, 'ସେମାନେ ହୁଏତ ତୁମ ପରି ଆଶ୍ଚର୍ଯ୍ୟ ହେଉଥିବେ ଘରଟା ଏତେ ମରାମତି କାହିଁକି ହେଉଛି ।'

'ଘରଟା ସିନା ବ୍ୟବହାର ହେଉନାହିଁ କିନ୍ତୁ ଘରଟା ଭଲ ଘର', କହିଲେ ସୌରଦେବ, 'ଉଗ୍ରସେନ ଘରଟା ଯତ୍ନରେ କରିଥିଲେ । ନିଜେ ରହୁଥିଲେ, ତାଙ୍କର

ସ୍ତ୍ରୀ, କଂସର ମା, ସେ ବି ଆସି ରହୁଥିଲେ । କଂସ ଜନ୍ମ ହେଲା ପରେ ସେ ଏ ଘରକୁ ଆଉ ଆସିଲେ ନାହିଁ । ଘରଟା ବ୍ୟବହାର ନ ହୋଇ ଖରାପ ହୋଇଗଲା ।'

'ଘରଟାକୁ ମୁଁ ଦେଖିଛି', ସତ୍ୟକାମ କହିଲେ, 'ସାଧାରଣ ଘରର ଗଢ଼ଣ । ଭଲ ମନ୍ଦ, ଶୁଭ ଅଶୁଭ ବିଷୟରେ ମୁଁ କିଛି ଜାଣେ । ଗୁରୁଦେବଙ୍କ ପାଖରୁ ଶିଖିଥିଲି ।'

'ଏ ତ ଜାଣିବା କଥା । ଏ ଘର ବିଷୟରେ ଆପଣଙ୍କର ମତାମତ କ'ଣ କହନ୍ତୁ ।' ସୌରଦେବ ପଚାରିଲେ ।

'ନାଁ, ଘରର ଗଢ଼ଣ ଠିକ୍ ନୁହେଁ', ସତ୍ୟକାମ କହିଲେ, 'ତା ମାନେ ଘରର ଦୁଆର, ଝରକା ଯେମିତି ବସିବା କଥା ବସିନି । ଘରର ଚାରିପାଖର ପୂର୍ବ ପଶ୍ଚିମ ଦିଗକୁ ମଧ ଠିକ୍ ଭାବରେ ସ୍ଥିର କରାଯାଇନି । ଏ ଖାଲି ଆଲୁଅ ପବନ କଥା ନୁହେଁ । ଘରର ଆତ୍ମା କଥା ।'

'ଅର୍ଥାତ୍ ଘରଟା ଅଶୁଭ ?' ପଚାରିଲେ ଭାନୁପ୍ରକାଶ ।

ସତ୍ୟକାମ ଟିକେ ରହିଗଲେ, କ'ଣ ଭାବିଲେ, କହିଲେ 'ହଁ, ଘରଟା ଅଶୁଭ । କିନ୍ତୁ ମୁଁ ସିଧା ସିଧା ଅଶୁଭ କହିବାକୁ ଚାହେଁ ନା । କାରଣ ଚାରିପାଖର ଅଶୁଭ ଚିହ୍ନ ସାଙ୍ଗରେ ମୁଁ ଶୁଭ ଚିହ୍ନ ବି ଦେଖୁଛି । କିନ୍ତୁ ଅଶୁଭଟା ହିଁ ବେଶି । ଯାହା ଶୁଭ ଚିହ୍ନ ଅଛି ସେ ଘୋଡ଼େଇ ହୋଇରହିଛି, ସାଙ୍ଗେ ସାଙ୍ଗେ ଫଳପ୍ରଦ ହେବନି ।'

'ବୋଧହୁଏ ସେମିତି କିଛି କାରଣ ପାଇଁ ଉଗ୍ରସେନ ଏ ଘରଟାକୁ ଛାଡ଼ି ଦେଇଥିବେ ।' କହିଲେ ଭାନୁପ୍ରକାଶ ।

'ଲୋକେ କହନ୍ତି, ସତ ମିଛ ମୁଁ କହିପାରିବି ନାହିଁ, ଉଗ୍ରସେନଙ୍କ ସ୍ତ୍ରୀ ।' ସୌରଦେବ କହିଲେ ।

'ମାନେ କଂସର ମା ?' କହିଲେ ଭାନୁପ୍ରିୟ ।

'ହଁ, ସେ ସ୍ୱାମୀଙ୍କ ବିଶ୍ୱାସ ରଖିପାରିଲେ ନାହିଁ ।' କହିଲେ ସୌରଦେବ ।

'ଏ ବଡ଼ ଗୋଳମାଳିଆ କଥା', କହିଲେ ଭାନୁପ୍ରକାଶ, 'ଘର ତିଆରି ହେଲା, ରଜାଘର ବେଶ୍ କିଛି ପଇସା ଖର୍ଚ୍ଚ ହୋଇଥିବ, ରାଜା ରାଣୀ ଆସି ରହିଲେ । ତାପରେ କ'ଣ ହେଲା, ସେମାନେ ଘର ଛାଡ଼ି ଦେଲେ । ଅନ୍ୟ କେହି ବି ଆସିଲେନି, ତାପର... ତାପର ଅନେକ ଦିନ ପରେ ସେଇ ଘର ମରାମତି ହେଉଛି । ଆଉ କିଏ ରହିବେ । ଆଉ ମରାମତି ବି ବିଚିତ୍ର । ରହିବା ଘର ପରି ନୁହେଁ, ବନ୍ଦୀଶାଳା ପରି ।' ସେ ସତ୍ୟକାମଙ୍କ ଆଡ଼କୁ ବୁଲିଗଲେ, 'ସତ୍ୟକାମ, ଆପଣ କହୁଛନ୍ତି ଏ ଘର ଅଶୁଭ, ପୁଣି ଶୁଭ ବି ?'

'ହଁ, ସେହିପରି ତ ମନେହେଉଛି ।' କହିଲେ ସତ୍ୟକାମ ।

ଭାନୁପ୍ରକାଶ ନିଜକୁ ନିଜେ କହିଲା ପରି କହିଲେ, 'ମୁଁ ଭାବୁଛି ଦେବକୀ ବସୁଦେବଙ୍କର ବିଭାଘର ସାଙ୍ଗରେ ଏ ଘରର ସମ୍ପର୍କ କ'ଣ ?'

ଅରିନ୍ଦମର ମନେଅଛି ସେଦିନ ବହୁତ ସମୟ ଧରି ଆଲୋଚନା ଚାଲିଥିଲା । ସମସ୍ତେ ଏକମତ ହେଲେ କଂସ ଅତ୍ୟନ୍ତ କୌଶଳରେ ସବୁପ୍ରକାର ବନ୍ଦୋବସ୍ତ କରୁଛି । ଏତେ କୌଶଳ ଓ ଏତେ ସାବଧାନରେ ଯେ ଖୁବ୍ କ୍ୱଚିତ ଲୋକ ତା'ର ସେ ବନ୍ଦୋବସ୍ତ ବିଷୟରେ ସଠିକ ଖବର ଜାଣନ୍ତି । ବିଭାଘର ମୁଖ୍ୟ ନୁହେଁ, ବିଭାଘରକୁ ଉପଲକ୍ଷ୍ୟ କରି ଅନ୍ୟ କିଛି ମୁଖ୍ୟ ଉଦ୍ଦେଶ୍ୟ ଅଛି । କଂସ ପରି ନିଷ୍ଠୁର, ନୃଶଂସ ଓ ସ୍ୱାର୍ଥପର ଲୋକ ଯେ ହଠାତ୍ ଉଦାର ହୋଇଯିବ, ନିଜର ସ୍ୱାର୍ଥ ଚିନ୍ତା ଛାଡ଼ିଦେବ, ଏ ସମ୍ଭବ ନୁହେଁ । ଭାନୁପ୍ରକାଶଙ୍କ ଦୁଃଖ ଯେ ତାଙ୍କର ସବୁପ୍ରକାର ଯୋଗାଡ଼ଯନ୍ତ ସତ୍ତ୍ୱେ ସେ ଏପର୍ଯ୍ୟନ୍ତ କଂସର ଏହି ଗୋପନୀୟ ମୁଖ୍ୟ ଉଦ୍ଦେଶ୍ୟ ବୁଝିପାରି ନାହାନ୍ତି । ଜରାସନ୍ଧ ଯାହା କରୁଥିଲା ବା କରିବା କଥା ଭାବୁଥିଲା ସବୁର ଖବର ଭାନୁପ୍ରକାଶଙ୍କ ପାଖରେ ପହଞ୍ଚୁଥିଲା । ଏଠି ତା ନୁହେଁ । କଂସ ଜରାସନ୍ଧ ଠାରୁ ଅଧିକତର କୌଶଳୀ, ଅଧିକତର ଚତୁର । ଠିକ୍ ହେଲା ଦିନ ଖାଇବା ଖାଇସାରିବା ପରେ ସେମାନେ ସମସ୍ତେ ମଥୁରା ଯିବେ । କିନ୍ତୁ ଏକାଠି ନୁହେଁ, ଅଲଗା ଅଲଗା । ବାହାଘର ସ୍ଥାନରେ ମଧ୍ୟ ସେମାନେ ଅଲଗା ଅଲଗା ରହିବେ । ତା ହେଲେ ବିଭିନ୍ନ ସ୍ଥାନରେ କଅଣ କେତେବେଳେ ଘଟୁଛି ବୁଝିହେବ ।

ସେଇଆ ହେଲା । ଖାଇବା ପରେ ସମସ୍ତେ ଏକାଠି ଯମୁନା ପାରି ହେଲେ । କିନ୍ତୁ ମଥୁରା ଘାଟରେ ଖେଳେଇ ହୋଇଗଲେ । ଅରିନ୍ଦମ ଭାନୁପ୍ରକାଶଙ୍କ ସାଙ୍ଗରେ ରହିଲା । ଠିକ୍ ହେଲା ସନ୍ଧ୍ୟାରେ, ବିଭାଘର ପରେ, ନନ୍ଦଙ୍କ ଘରେ ସମସ୍ତେ ପୁଣି ଥରେ ଏକାଠି ହେବେ ।

....ତାହାପରେ ଯାହା ଘଟିଲା ଦ୍ରୁତ ଦ୍ରୁତ ଘଟିଗଲା । ଅରିନ୍ଦମ ଭାବିଥିଲା ଭାନୁପ୍ରକାଶ ବୋଧହୁଏ ସିଧା ସିଧା କଂସର ନଅର ପାଖକୁ ଯିବେ, କାରଣ ଦିନ ପ୍ରାୟ ସରି ଆସିଲାଣି ଓ ବାହାଘର ସମୟ ବି ପାଖେଇ ଆସିଲାଣି । ହୁଏତ ବାହାଘର ଆରମ୍ଭ ହୋଇ ଯାଇଥିବ । ଆଉ ବାହାଘର ଉପରେ ନଜର ରଖିବାକୁ ହେଲେ ଆରମ୍ଭରୁ ସେଠି ରହିବା ଦରକାର । କିନ୍ତୁ ଭାନୁପ୍ରକାଶ ତା କଲେ ନାହିଁ । ସେ ସହର ଭିତରକୁ ବା ନଅର ଆଡ଼କୁ ନ ଯାଇ ମଥୁରା ଘାଟରୁ ଯମୁନା କୂଳେ କୂଳେ ଯମୁନା ଦେବୀଙ୍କ ମନ୍ଦିର ଆଡ଼କୁ ଚାଲିଲେ । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା, କିନ୍ତୁ କିଛି କହିଲାନି । ଭାନୁପ୍ରକାଶ ଶୀଘ୍ର ଶୀଘ୍ର ଚାଲୁଥାନ୍ତି । ସେ ବି ତାଙ୍କ ସାଙ୍ଗରେ ଶୀଘ୍ର ଶୀଘ୍ର ଚାଲିଲା ।

ଅରିନ୍ଦମ ଦେଖିଲା ଭାନୁପ୍ରକାଶଙ୍କର ଦେବୀ ମନ୍ଦିର ପ୍ରତି ଆଗ୍ରହ ନାହିଁ । ସେ

ମନ୍ଦିର ଟପି ଆଗକୁ ଚାଲିଲେ ଓ ଘାଟ ସିଧା ଉଗ୍ରସେନଙ୍କର ପୁରୁଣା ଉଆସ ପାଖରେ ଆସି ଛିଡ଼ା ହେଲେ । ଉଆସକୁ ଦେଖି ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । କିଛିଦିନ ତଳେ ସେ କୋଠାର କାମଦାମ ଯେତେବେଳେ ଆରମ୍ଭ ହେଲା ସେ ଦେଖିଥିଲା । ଆ ଭିତରେ ଅନେକ ଅଧିକା କାମଦାମ ହୋଇଯାଇଛି । ହତା ଚଉହଦି ପାଚିରି ଆହୁରି ଉଚ୍ଚା ହୋଇଛି । ହତା ଭିତରକୁ ପଶିବା ମୁଖ୍ୟ ଦରଜା ଆହୁରି ବଡ଼ ହୋଇଛି । ଆଗେ ଯେମିତି ବାହାରେ କୌଣସି ଉଚ୍ଚା ଜାଗାରେ ଛିଡ଼ାହୋଇ ଭିତରକୁ ଚାହିଁଲେ ଭିତରର ଅନେକ ଅଂଶ ଦିଶୁଥିଲା, ଏବେ ତା ଖୁବ୍ ସହଜ ନୁହେଁ, ହତା ଭିତରେ କ'ଣ ହେଉଛି ନ ହେଉଛି ସହଜରେ ବୁଝିହେବ ନାହିଁ । ମଧ୍ୟାହ୍ନ ଟପି ଗଲେ ବି ସୂର୍ଯ୍ୟକିରଣ ସବୁଆଡ଼େ ଖେଳେଇ ହୋଇ ପଡ଼ିଛି ଓ ସୂର୍ଯ୍ୟକିରଣ ତଳେ ନୂଆ ଭାବରେ ମରାମତି ହୋଇ ଚିକ୍କଣ ହୋଇଥିବା ଉଆସଟା ଜକଜକ କରୁଛି । କିନ୍ତୁ ବଡ଼କଥା ହତା ବାହାରେ, ମୁଖ୍ୟ ଫାଟକ ପାଖରେ ଓ ମନେହେଉଛି ହତା ଭିତରେ ବି, ବେଶ୍ କିଛି ରକ୍ଷୀ ଉଆସଟାକୁ ଜଗିଛନ୍ତି । କାହିଁକି ? ଅରିନ୍ଦମ ବୁଝିପାରିଲା ନାହିଁ । କ'ଣ ହେବ ଏଠି ? ସେ ଭାନୁପ୍ରକାଶଙ୍କୁ ଚାହିଁଲା । ଦେଖିଲା ଭାନୁପ୍ରକାଶ ଟିକେ ଆଗେଇ ଯାଇ ମୁଖ୍ୟ ଫାଟକ ପାଖରେ ଥିବା ରକ୍ଷୀମାନଙ୍କ ସାଙ୍ଗରେ କ'ଣ କଥାବାର୍ତ୍ତା କରୁଛନ୍ତି । ସେ ଭାବିଲା ସେ ଯିବ କି ? କିନ୍ତୁ ନ ଯିବାକୁ ସ୍ଥିର କରି ସେ ସେଇଠି ଛିଡ଼ା ହୋଇ ରହିଲା । ଚାରିପାଖ ଚୁପଚାପ । କେବଳ ଦୂରରେ କେଉଁଠି କୁକୁର ଭୁକୁଛି, ପାଖ ଗଛମାନଙ୍କରେ ଚଢ଼େଇମାନେ ଶବ୍ଦ କରି ଡକାଡ଼କି ହେଉଛନ୍ତି । ପାଖ ଘାଟରୁ ପଝାରିମାନଙ୍କର କଥାବାର୍ତ୍ତା ମଝିରେ ମଝିରେ ଭାସି ଆସୁଛି । ବାସ୍ । ତାକୁ କେମିତି କେମିତି ଲାଗିଲା । ସହର ଭିତରେ ଗୋଟାଏ ଏଡ଼େ ବଡ଼ ବିଭାଘର ହେଉଛି । ମଥୁରା ଲୋକରେ ଲୋକାରଣ୍ୟ । ଖାଇବା ପିଇବାର ବିରାଟ ଆଡ଼ମ୍ବର । ସହର ବାହାରୁ ବହୁ ଲୋକ, ଏପରିକି ଯମୁନା ସେ ପାରିରୁ ମଧ୍ୟ ଅନେକ ସହର ଭିତରକୁ ଚାଲିଛନ୍ତି । କିନ୍ତୁ ଏଠାରେ ସେ ସବୁର ଚିହ୍ନବର୍ଣ୍ଣ ନାହିଁ । ସବୁଆଡ଼ ଚୁପଚାପ । ଗୋଟାଏ ଖାଲି କୋଠାଟାକୁ ରକ୍ଷୀମାନେ ଜଗି ରହିଛନ୍ତି । କି ରହସ୍ୟ ଏ !

ଅରିନ୍ଦମ ଦେଖିଲା ଭାନୁପ୍ରକାଶ ମୁଖ୍ୟ ଫାଟକ ପାଖରୁ ଫେରି ଆସୁଛନ୍ତି । ତାଙ୍କ ମୁହଁ ହସ ହସ । ସେ ଆସି ଅରିନ୍ଦମ ପାଖରେ ଛିଡ଼ା ହେଲେ । କହିଲେ, 'ଅରିନ୍ଦମ, କେମିତି ଲାଗୁଛି । ତୁମକୁ ଯଦି ଏ ଘରେ ରହିବାକୁ ଅନୁମତି ମିଳେ, ରହିବ କି ?' ଅରିନ୍ଦମ ବିସ୍ମିତ ହୋଇ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲା । ଭାନୁପ୍ରକାଶ କହିଲେ, 'ନାଇଁ, ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ପୁରୁଣା ଘର ଠିକ୍ । କିନ୍ତୁ ମରାମତି ହୋଇ ଚମତ୍କାର ହୋଇଯାଇଛି । ମୁଁ କବାଟ ଫାଙ୍କ କରି ଭିତର ବି ଟିକେ ଦେଖିନେଇଛି ।

ବେଶ୍ ଖୋଲା ଜାଗା, ଗଛପତ୍ର ବି ଅଛି । ସୁନ୍ଦର ବୁଲାବୁଲି କରିହେବ । ମୁଁ ତ ଭାବୁଛି ମତେ ଯଦି ସୁବିଧା ମିଳନ୍ତା ମୁଁ ଏ ଘରେ କିଛିଦିନ ଆସି ରହନ୍ତି । କିନ୍ତୁ ଗୋଟିଏ ଅସୁବିଧା ।' ସେ ସେମିତି ହସି ହସି କହୁଥାନ୍ତି – 'ଏ ଘରେ ରକ୍ଷୀମାନେ ଯେମିତି ରହିଛନ୍ତି ସେମିତି ରହିବେ । ଆଉ, ଏ ଘରେ ତୁମେ ଯାଇ ଥରେ ରହିଲେ ବାହାରକୁ ଆସିବାକୁ ଅନୁମତି ପାଇବନି ।'

'ମାନେ ? ଏ କଅଣ ଗୋଟାଏ ବନ୍ଦୀଶାଳା ?' ଅରିନ୍ଦମ ପଚାରିଲା । ଭାନୁପ୍ରକାଶଙ୍କ ହସ ଯେମିତି ବନ୍ଦ ହେବାକୁ ଚାହେଁ ନା । ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଲା । ଭାନୁପ୍ରକାଶଙ୍କୁ ଏତେ ହସିବାର ସେ କେବେ ଦେଖିନି । ଭାନୁପ୍ରକାଶ କହିଲେ, 'ତା ମୁଁ ଜାଣେନା । କିନ୍ତୁ ତା ଭାବିପାର ।'

'ଏ ବନ୍ଦୀଶାଳାରେ କିଏ ରହିବେ ?' ଅରିନ୍ଦମର ଆଶ୍ଚର୍ଯ୍ୟ ଭାବ କଟି ନ ଥାଏ । 'ଓ, ହୋ', ଭାନୁପ୍ରକାଶ କହିଲେ, 'ଯେ କୌଣସି ଲୋକ । ତୁମେ, ମୁଁ, ଆଉ ଯିଏ ବି ।' ଅରିନ୍ଦମ ଦେଖିଲା ଭାନୁପ୍ରକାଶ କ'ଣ ସନ୍ଦେହ କରୁଛନ୍ତି । କିନ୍ତୁ ସେ ଖୋଲିକରି କହିବାକୁ ଚାହାନ୍ତି ନାହିଁ । ସେ ଆଉ କଥା ବଢ଼େଇଲା ନାହିଁ । କହିଲା – 'ବାହାଘର ସମୟ ପାଖେଇ ଆସିଲାଣି । ସହର ଭିତରକୁ ଯିବା ?'

'ହଁ ଚାଲ', ଭାନୁପ୍ରକାଶ କହିଲେ, 'ବାଟରେ ଆଉ ଗୋଟାଏ ଦିଟା କାମ ସାରିଦେଇ ଯିବାକୁ ହେବ ।'

ସେମାନେ ଯେଉଁ ବାଟରେ ଯାଇଥିଲେ ସେହିବାଟରେ ଫେରି ଚାଲିଲେ ।

ଭାନୁପ୍ରକାଶ ଖାଲି ସ୍ୱଗତୋକ୍ତି କଲାପରି କହିଲେ, 'ଆହା, ଏତେ ଖିଆପିଆ, ଏ ରକ୍ଷୀଗୁଡ଼ାଙ୍କର କିଛି ଭାଗ ନାହିଁ । ଆଜି ସାରା ରାତି ସେମାନେ ଏଠି ଜଗି ରହିବେ । ରାଜାଙ୍କ ହୁକୁମ ।'

'କାହାକୁ ଜଗିବେ ?' ଅରିନ୍ଦମ ନ ପଚାରି ରହିପାରିଲା ନାହିଁ ।

'ରକ୍ଷୀମାନେ ସେହି ପ୍ରଶ୍ନ ମତେ ପଚାରୁଥିଲେ ।' କହିଲେ ଭାନୁପ୍ରକାଶ, 'କାହାକୁ ଜଗିବେ ?'

ଯମୁନାର ମଥୁରା ଘାଟରୁ ସହର ଭିତରକୁ ସିଧା, ପ୍ରଶସ୍ତ ବାଟ । ସେହିବାଟେ ସେମାନଙ୍କର ବାଙ୍କି ଯିବା କଥା । ସେମାନେ ସେହି ବାଟେ ଯିବେ, ଅରିନ୍ଦମ ଭାବୁଥିଲା । କିନ୍ତୁ ନାଁ । ଭାନୁପ୍ରକାଶ ମଥୁରା ଘାଟକୁ ଆସି ବାଙ୍କି ସହର ଭିତରକୁ ଗଲେ ନାହିଁ । ସେ ସିଧା ସିଧା, ନଈ କୂଳେ କୂଳେ, ନଈର ଉପର ଆଡ଼କୁ ଚାଲିଲେ । ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ପଚାରିଲା, 'ଆପଣ ଏଆଡ଼େ କୁଆଡ଼େ ଯିବେ ? ରାଜାଙ୍କ ନଅରକୁ ବାଟ ତ ସେ ପାଖରେ । ଆପଣ ଛାଡ଼ି ଆସିଲେ ।

ବାହାଘର ସମୟ ତ ପାଖେଇ ଆସିଲାଣି ।'

'ନାଁ, ବାହାଘର ସମୟ ବଦଳି ଯାଇଛି ।' କହିଲେ ଭାନୁପ୍ରକାଶ, 'ବାହାଘର ସମୟଟା କଂସ ପାଇଁ ଶୁଭ ହେବ କି ନାହିଁ ସେଇଆ ଦେଖି ସମୟ ଠିକ୍ ହୋଇଛି । ଆମେ ଠିକ୍ ସମୟରେ ପହଞ୍ଚିବା । ବାଟରେ ଆଉ ଗୋଟାଏ ଦିଟା କାମ ସାରିଦେଇ ଯିବା । ବର୍ତ୍ତମାନ ଅମ୍ବା ଦେବୀଙ୍କ ମନ୍ଦିରକୁ ଯିବା ।'

'ଅମ୍ବା ଦେବୀଙ୍କ ମନ୍ଦିର ତ ନଈ ଉପର ଆଡ଼କୁ', କହିଲା ଅରିନ୍ଦମ । 'ହଁ, ସେଇଠିକି ଯିବା । ସେଠିକି ଗୋପା ଆସିଥିବେ', କହିଲେ ଭାନୁପ୍ରକାଶ ।

ବ୍ୟାପାରଟା ଅରିନ୍ଦମକୁ କେମିତି ଗୋଳମାଳିଆ ଲାଗିଲା । ସେ ଜାଣେ ଭାନୁପ୍ରକାଶଙ୍କ ଚିନ୍ତା ଖୁବ୍ ଦ୍ରୁତ ଗତିରେ କାର୍ଯ୍ୟ କରେ । ସେ ବହୁତ କଥା ଜାଣିପାରନ୍ତି ଓ ବୁଝିପାରନ୍ତି ଓ ତାଙ୍କର ସବୁ କାମ ପଛରେ ବଳିଷ୍ଠ ଯୁକ୍ତି ଥାଏ । କିନ୍ତୁ ତାକୁ ଯାହା ଗୋଳମାଳ ଲାଗିଲା ସେ ବାହାଘରର ସମୟ । ସମୟଟା ଶୁଭ କି ଅଶୁଭ ସେ କଥା ଯେଉଁମାନେ ବିଭା ହେଉଛନ୍ତି ସେମାନଙ୍କ କୋଷ୍ଠୀ ସାଙ୍ଗରେ ମିଶାଯାଏ । କିନ୍ତୁ ଏଠି କଂସର ସମ୍ପର୍କ କ'ଣ ? କଂସ ପାଇଁ ସମୟ ଶୁଭ କି ଅଶୁଭ ସେକଥା କାହିଁକି ଉଠୁଛି । ସେ ତ ବିଭା ହେଉନି, ସେ ବିଭା ଦେବ । ତା ଛଡ଼ା ଅମ୍ବା ଦେବୀଙ୍କ ମନ୍ଦିରକୁ କାହିଁକି ?

ଭାନୁପ୍ରକାଶ ଜାଣିଲା ପରି ହସିଲେ । କହିଲେ, 'ଅରିନ୍ଦମ, ମୁଁ ତୁମର ମନର ଭାବ ବୁଝୁଛି । ତୁମେ ଗୋଟିଏ କଥା ଭୁଲିଯାଇଛ । ଅମ୍ବା ଦେବୀଙ୍କ ମନ୍ଦିରକୁ ବିଭା ହେବା ଝିଅମାନେ ପୂଜା ଦେବାକୁ ଆସନ୍ତି । ଦେବକୀ ସେଠିକି ଆସିଥିବେ । ତାଙ୍କ ସାଙ୍ଗରେ ଗୋପା ବି ଆସିଥିବେ । ଗୋପାଙ୍କ ସହିତ ଦେଖାହେବା ଜରୁରୀ । ଆଉ ବାହାଘର ସମୟ ? ତୁମକୁ ଯେମିତି ଆଶ୍ଚର୍ଯ୍ୟ ଲାଗୁଛି ମତେ ବି ସେମିତି ଆଶ୍ଚର୍ଯ୍ୟ ଲାଗୁଛି । କଂସର ଶୁଭ ଅଶୁଭ ସାଙ୍ଗରେ ସମ୍ପର୍କ କଅଣ ? ମୁଁ ନିର୍ଦ୍ଦିଷ୍ଟ କାରଣ ଜାଣିବାକୁ ଚାହେଁ ।'

ଅମ୍ବା ଦେବୀଙ୍କ ମନ୍ଦିରରେ ପହଞ୍ଚି ଅରିନ୍ଦମ ଦେଖିଲା ଭାନୁପ୍ରକାଶଙ୍କ ହିସାବ ଠିକ୍ । ସାଧାରଣତଃ ଅମ୍ବାଦେବୀଙ୍କ ମନ୍ଦିରରେ ବେଶି ଲୋକ ନ ଥାଆନ୍ତି । ନଈର ଉପର ଆଡ଼କୁ ଗଛ ବୃକ୍ଷର ତୋଟା ମଝିରେ ଦେବୀଙ୍କ ମନ୍ଦିର । ମନ୍ଦିର ତଳକୁ ନଈ ଭିତରକୁ ଯିବାପାଇଁ ଗୋଟାଏ ବନ୍ଧା ଘାଟ, ଆଗ୍ରହୀ ଲୋକମାନେ ଦେବୀଙ୍କ ମନ୍ଦିରକୁ ଆସି ନଈ ଘାଟରେ ବସି ଧ୍ୟାନ କରନ୍ତି । ସେଦିନ ମନ୍ଦିରରେ ଅରିନ୍ଦମ ଦେଖିଲା ବେଶ କିଛି ଲୋକ, ବିଶେଷ କରି ସ୍ତ୍ରୀ ଲୋକମାନେ ।

'ଏମାନେ ଅଧିକାଂଶ ରାଜପ୍ରାସାଦରୁ ଆସିଛନ୍ତି । ଦେବକୀ ବି ଆସିଛନ୍ତି,

ଦେବୀଙ୍କୁ ପୂଜା ଦିଆହେଉଛି,' କହିଲେ ଭାନୁପ୍ରକାଶ ।

ଅରିନ୍ଦମ ଚଞ୍ଚଳ ହୋଇ ଉଠିଲା । ଦେବକୀଙ୍କ ସହିତ କିଛି କିଛି ପରିଚୟ ଅଛି । ଭାବିଲା ଦେଖାକରି ଯିବ କି ? ସେ ଭାନୁପ୍ରକାଶଙ୍କୁ ଚାହିଁଲା । ଦେଖିଲା ଭାନୁପ୍ରକାଶଙ୍କ ମୁହଁରେ କୌଣସି ଭାବାନ୍ତର ନାହିଁ । ସେ କହିଲେ, 'ନାଁ, ବର୍ତ୍ତମାନ ଦେବକୀଙ୍କୁ ଦେଖାକରିବା ସମୟ ନୁହେଁ । ତୁମେ ଆସ, ମନ୍ଦିର ବାହାରକୁ ଯିବା ।'

ଅରିନ୍ଦମ କିଛି ବୁଝିବା ଆଗରୁ, ଭାନୁପ୍ରକାଶ ତା' ହାତ ଧରି, ମନ୍ଦିରର ଭିଡ଼ କାଟି, ପଛପାଖ ତୋଟାକୁ ଚାଲିଗଲେ, କହିଲେ - 'ଅରିନ୍ଦମ ତୁମେ ଏଠି ଟିକିଏ ଛିଡ଼ା ହୁଅ । ମୁଁ ସାଙ୍ଗେ ସାଙ୍ଗେ ଆସୁଛି ।' ଭାନୁପ୍ରକାଶ ତୋଟାର ଡାହାଣ ପାଖକୁ ଠେଲାପେଲା ହୋଇ ଛିଡ଼ା ହୋଇଥିବା ଓ ଅଳ୍ପ ଅଳ୍ପ ଅନ୍ଧାର ହୋଇଥିବା ଗଛ ଗହଳି ଭିତରକୁ ଚାଲିଗଲେ ଓ କିଛି ସମୟ ପରେ ଫେରି ଆସିଲେ । ସାଙ୍ଗରେ ଗୋପା । ଫେରିଆସି କହିଲେ, 'ଆମେ ଏଠି ଛିଡ଼ା ହେବାନି । ମନ୍ଦିର ସାମ୍ନା ଘାଟକୁ ଯିବା । ସେଠି ଲୋକ ଯିବା ଆସିବା କରୁଛନ୍ତି । ଆମକୁ କେହି ସନ୍ଦେହ କରିବେନି ।'

ଅରିନ୍ଦମର ମନେଅଛି ସେ ଗୋପାଙ୍କୁ ଦେଖି ଖୁସି ହୋଇଥିଲା । ସେ ଠିକ୍ ଆଗ ପରି - ସ୍ଥିର, ସ୍ନେହୀ, ଧୈର୍ଯ୍ୟଶୀଳା । ଆଉ ଭାନୁପ୍ରକାଶଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ, ଅଖଣ୍ଡ ଆନୁଗତ୍ୟ । ଅରିନ୍ଦମ ଲକ୍ଷ୍ୟ କରି ଦେଖିଛି ଭାନୁପ୍ରକାଶ ଓ ଗୋପାଙ୍କ ସମ୍ପର୍କ ଏହି ପୃଥିବୀର, ପୁଣି ଏହି ପୃଥିବୀର ନୁହେଁ । ଏ ଯେପରି ଏହି ସଂସାରର ବା ଏକା ପ୍ରକାର କାର୍ଯ୍ୟର ସମ୍ପର୍କ ନୁହେଁ । ଏ ଯେପରି ଆତ୍ମାର ଆତ୍ମା ସହିତ ସମ୍ପର୍କ । ଭାନୁପ୍ରକାଶ ବିବାହ କରି ନାହାନ୍ତି, ଗୋପା ସ୍ୱାମୀଙ୍କୁ ହରେଇଛନ୍ତି । ଉଭୟଙ୍କର ମିଳିତ ହେବାର ସୂତ୍ର ଗୁରୁଦେବ ବ୍ୟାସଦେବ । ଅରିନ୍ଦମ ଭାବେ ଗୁରୁଦେବଙ୍କର ଆଶୀର୍ବାଦରେ ହିଁ ଉଭୟ ଉଭୟଙ୍କର ଏତେ ଘନିଷ୍ଠ, ଏତେ ଏକାତ୍ମା, ଏ ଖାଲି ସେବେ ନୁହେଁ, ଏବେ ମଧ୍ୟ, ପ୍ରାୟ ଦଶବର୍ଷ ପରେ ବି, ଉଭୟ ଉଭୟଙ୍କ ସହିତ ଆଗପରି ଏକାତ୍ମା ହୋଇ ରହିଛନ୍ତି ।

ତିନିହେଁ ଅମ୍ବାଦେବୀଙ୍କ ଘାଟର ତଳ ଆଡ଼କୁ ଗୋଟାଏ କଣରେ ପାହାଚ ଉପରେ ବସିଲେ । ଆସ୍ତେ ଆସ୍ତେ ପବନ ଦେଉଥାଏ, ଜଣେ ଅଧେ ଲୋକ ଏପାଖ ସେପାଖ ହେଉଥାନ୍ତି । ଗୋପା କହିଲେ, 'ଭାନୁ, ମୁଁ ବେଶି ସମୟ ରହିପାରିବିନି । ସେମାନେ ସବୁ ଦେବୀଙ୍କ ମନ୍ଦିର ଭିତରକୁ ଯାଇଛନ୍ତି, ପୂଜା ସାରି ଫେରି ଆସିଲେ ମତେ ସେମାନଙ୍କ ସାଙ୍ଗରେ ଫେରିବାକୁ ପଡ଼ିବ । ବାହାଘର ନିର୍ଘଣ୍ଟ ବେଶି ଡେରି ନାହିଁ । ତମେ ବାହାବେଦିର ଡାହାଣ ପାଖକୁ ଦ୍ୱିତୀୟ ଦରଜା ପାଖକୁ ଆସିବ । ମୁଁ ତା ପାଖଆଖରେ ଥିବି । ସେଇଠୁ ବାହାଘର ଦେଖିବାକୁ ସୁବିଧା ହେବ, ଆଉ ତୁମେ


Digitized by srujanika@gmail.com

ପୂରା ନଜର ରଖିପାରିବ ।'

'ମତେ ଗୋଟିଏ କଥା କୁହ ଗୋପା', କହିଲେ ଭାନୁପ୍ରକାଶ, 'ସେ ଯେଉଁ ଦୁଇଜଣ ତାନ୍ତ୍ରିକ ଆସିଛନ୍ତି ଆଉ ଏଠି ଅଛନ୍ତି, ସେମାନଙ୍କ କାମ କ'ଣ ?' ସେମାନେ ତ ବିଭାଘର କରେଇବେନି । ସେଥିପାଇଁ ତ ବ୍ରାହ୍ମଣମାନେ ଅଛନ୍ତି । ମୋର ଯାହା ଖବର ସେମାନଙ୍କର ଖାତିର ବହୁତ ବେଶି, କାହିଁକି ?'

'ହଁ, ମୁଁ ଦେଖିଛି ସେମାନଙ୍କର ଖାତିର ବହୁତ ବେଶୀ । ସେମାନେ କଂସ ପାଖକୁ ଯାଆନ୍ତିନି, କଂସ ସେମାନଙ୍କ ପାଖକୁ ଆସେ । ଆଉ ସେମାନେ ଦିନ ଦିନ ଧରି ଘର ଭିତରୁ ପଦାକୁ ବି ଆସନ୍ତିନି । କିନ୍ତୁ ସେମାନେ କ'ଣ କରନ୍ତି କେହି ଜାଣନ୍ତିନି । ମୁଁ ଜାଣିବାକୁ ବହୁତ ଚେଷ୍ଟା କରିଛି, ହେଲେ କିଛି ହେଲାନି ।'

'ସେମାନଙ୍କ ବିଷୟରେ ଅନ୍ୟମାନେ କିଛି କଥାବାର୍ତ୍ତା କରନ୍ତିନି ?' ପଚାରିଲେ ଭାନୁପ୍ରକାଶ ।

'କରନ୍ତି' ଗୋପା କହିଲେ, 'କିନ୍ତୁ ସେମାନଙ୍କ ବିଷୟରେ କଥାବାର୍ତ୍ତା କରିବାଟା କଂସ ପସନ୍ଦ କରେନା । ତେଣୁ ସେମାନଙ୍କ ବିଷୟରେ କଥାବାର୍ତ୍ତା ସମସ୍ତେ ସାବଧାନରେ କରନ୍ତି, କଂସ କାନରେ ନ ପଡ଼ିଲା ପରି ଆଡ଼େଇ ଆଡ଼େଇ କରନ୍ତି ।'

'କଅଣ କରନ୍ତି କିଛି ଧାରଣା କରିଛ ?' କହିଲେ ଭାନୁପ୍ରକାଶ ।

'ସେମିତି କିଛି କହିଲା ପରି ନୁହେଁ', କହିଲେ ଗୋପା, 'ତେବେ ଗୋଟାଏ ବିଷୟରେ ସମସ୍ତେ ଏକମତ ଯେ ଲୋକ ଦିଟା ଅତ୍ୟନ୍ତ ବୁଦ୍ଧିମାନ, ଅନେକ କଥା ଜାଣନ୍ତି ।'

'କଅଣ ଜାଣନ୍ତି ସେମାନେ, କେଉଁ ବିଷୟରେ ? କିଛି ଲକ୍ଷ୍ୟ କରିଛ ?' ଭାନୁପ୍ରକାଶ ପଚାରିଲେ ।

'ନାଁ, ସେମିତି ନିର୍ଦ୍ଦିଷ୍ଟ କିଛି ନୁହେଁ', ...ଗୋପା ଟିକିଏ ଚୁପ କରିଗଲେ, 'ତେବେ ଗୋଟାଏ କଥା ଅନେକ ଫୁସଫୁସ କରି କହିବାର ମୁଁ ଶୁଣିଛି...'

'କଅଣ ?'

'ସେ ଟିକିଏ ଅଦ୍ଭୁତ କଥା ।' କହିଲେ ଗୋପା ।

'କଅଣ ?' ଭାନୁପ୍ରକାଶ ପୁଣି ପଚାରିଲେ,

'ସେମାନେ କୁଆଡ଼େ ଶୂନ୍ୟରେ ଲୋକଙ୍କ ଛବି ସବୁ ଦେଖେଇ ପାରନ୍ତି, ଆଉ ଶୂନ୍ୟରୁ ଲୋକଙ୍କ କଥାବାର୍ତ୍ତା ବି ଶୁଣେଇ ପାରନ୍ତି ।' କହିଲେ ଗୋପା ।

'ଆଶ୍ଚର୍ଯ୍ୟ ! ଶୂନ୍ୟରୁ... ? ତୁମେ କେବେ ନିଜେ ଦେଖିଛ ବା ଶୁଣିଛ ଗୋପା ?' ପଚାରିଲେ ଭାନୁପ୍ରକାଶ ।


Digitized by srujanika@gmail.com

'ନାଁ', ଗୋପା ଉତ୍ତର ଦେଲେ ।

ଭାନୁପ୍ରକାଶ ଚୁପ କରିଗଲେ ଓ କିଛି ସମୟ କଅଣ ଭାବିଲେ । କହିଲେ, 'ଶୂନ୍ୟରୁ... ? ନାଁ ? ହଁ, ଏ ନିଶ୍ଚୟ ଆଶ୍ଚର୍ଯ୍ୟ କୌଶଳ । ଗୁରୁଦେବ ମଝିରେ ମଝିରେ ଏମିତି କଥା ସବୁ କହନ୍ତି । ଆଚ୍ଛା ଗୋପା, ଆଉ ଗୋଟାଏ କଥା କୁହ । ଶୁଣାଯାଉଛି କଂସ ଦେବକୀଙ୍କୁ କୁଆଡ଼େ ଖୁବ୍ ସ୍ନେହ କରେ । ସେ ନିଜେ ବାହାଘର ଠିକ୍ କରିଛି ଯେମିତି ଦେବକୀ ସବୁବେଳେ ତା ପାଖରେ ରହିପାରିବେ । ଆଉ ଏବେ ଦେବକୀ ଛାଡ଼ିଯିବେ ବୋଲି ସେ ବହୁତ ମନ କଷ୍ଟରେ ଅଛି । ଦେବକୀଙ୍କର ଯେପରି ଟିକିଏ ହେଲେ କଷ୍ଟ ନ ହୁଏ, ସେଥିପାଇଁ ସେ ବ୍ୟସ୍ତ ।'

ଗୋପା ହସିଲେ, କହିଲେ, 'ହଁ, ଯାହା, କହୁଛ ତା ଠିକ୍ । ଦେବକୀଙ୍କ ପାଇଁ କଂସ ବହୁତ ବ୍ୟସ୍ତ । ଅନ୍ତତଃ ଆମେ ତାହା ଦେଖୁଛୁ । ସମୟ ନାହିଁ ଅସମୟ ନାହିଁ ସବୁବେଳେ ସେ ଦେବକୀଙ୍କ ପାଖକୁ ଚାଲି ଆସୁଛି । ସବୁକଥା ପଚାରି ବୁଝୁଛି । ଟିକିଏ କିଛି ଅସୁବିଧା ଦେଖିଲେ ବ୍ୟସ୍ତ ହୋଇ ଉଠୁଛି । କିନ୍ତୁ କଂସକୁ ତ ତୁମେ ଜାଣ ଭାନୁ, ତା ସ୍ନେହ ଶ୍ରଦ୍ଧାକୁ ବିଶ୍ୱାସ କରି ହେବ କି ? ଏଇ ଯାହା କହନ୍ତି ଅତି ଲେମ୍ବୁ ଚିପୁଡ଼ିଲେ ପିତା, ଏ ସେହିପରି କଥା । ଦେବକୀଙ୍କ ପାଇଁ କଂସ ଯେତେ ବ୍ୟସ୍ତ ହେଉଛି ମୋର ତ ସନ୍ଦେହ ହେଉଛି ଆଉ କିଛି ମତଲବ ନାହିଁ ତ ।'

ଭାନୁପ୍ରକାଶ କିଛି କହିଲେ ନାହିଁ । ମନେହେଲା ସେ ଅନ୍ୟ କିଛି କଥା ଭାବୁଛନ୍ତି । ଖାଲି କହିଲେ, 'ଠିକ୍ ଅଛି । ଗୋପା ତୁମେ ଯାଅ । ସେମାନେ ସବୁ ବୋଧହୁଏ ମନ୍ଦିର ଭିତରୁ ବାହାରୁଛନ୍ତି । ତୁମେ ଆଖି କାନ ଖୋଲା ରଖ । ଯଦି ଆଉ କିଛି କଥା ଜାଣିବାକୁ ପାଅ ମତେ ବାହାଘର ବେଳେ କହିବ । ମୋର ମନେ ହେଉଛି ଯେତେ ଯାହା ହେଉଛି ସବୁ ବାହାଘର ବେଳେ ମୁଣ୍ଡି ମରିବ । ଆଉ ଭଲ ଖରାପ ସେତିକିବେଳେ ବୁଝିହେବ ।

ସମସ୍ତେ ଉଠି ଛିଡ଼ାହେଲେ । ମନ୍ଦିର ଭିତରୁ ବାହାରୁଥିବା ସ୍ତ୍ରୀଲୋକଙ୍କ ଦଳ ସହିତ ଗୋପା ମିଶିଗଲେ । ଭାନୁପ୍ରକାଶ କହିଲେ, 'ଅରିନ୍ଦମ ଆସ, ଆମେ ଖାଇବା ଜାଗାକୁ ଆଗ ଯିବା ।'

ଖାଇବା ଜାଗା ଅମ୍ବାଦେବୀଙ୍କ ମନ୍ଦିର ପାଖରୁ ଟିକିଏ ବୁଲାଣି ବାଟ, କିନ୍ତୁ ସେମାନେ ଶୀଘ୍ର ପହଞ୍ଚିଗଲେ । କିନ୍ତୁ ଖାଇବା ଜାଗାରେ ପହଞ୍ଚି ଖାଇବା ଜାଗାର ଅବସ୍ଥା ଦେଖି ଭାନୁପ୍ରକାଶ ସ୍ତବ୍ଧ ହୋଇଗଲେ । ଜାଗାଟା ବେଶ୍ ବଡ଼ । ଲୋକଙ୍କ ଭିଡ଼ କିଛି କମିନାହିଁ । ସେମିତି ଲୋକ ଶହ ଶହ ସଂଖ୍ୟାରେ ଆସୁଛନ୍ତି । ଗୋଟାଏ ପାଖରେ ରୋଷେଇ ଚାଲିଛି । ଅନ୍ୟ ପାଖରେ ଲୋକ ବସି ଖାଉଛନ୍ତି । ଭାନୁପ୍ରକାଶ


Digitized by srujanika@gmail.com

ଆଶ୍ଚର୍ଯ୍ୟ ହେଲେ । ଏ କ'ଣ ଖାଇବାର ବ୍ୟବସ୍ଥା ! ଏ ତ ଘୋର ଅବ୍ୟବସ୍ଥା ! ଶହ ଶହ ସଂଖ୍ୟାରେ ଅଇଣ୍ଠା ପତ୍ର ପଡ଼ିଛି । ଲୋକ ଯେଉଁଠି ଇଚ୍ଛା ସେଠି ବସି ଖାଉଛନ୍ତି । କିଏ ଖାଇବାକୁ ଦଉଛି, କାହାକୁ ଦଉଛି, କେତେ ଦଉଛି ଠିକଣା ନାହିଁ । ଖାଲି ଆସ, ଖାଇ ଯାଅ, ଖାଇ ଯାଅ । ତା ଉପରେ ସୁପ୍ରଚୁର ପାନୀୟର ବ୍ୟବସ୍ଥା, ପୁରୁଷ, ସ୍ତ୍ରୀ, ପିଲା ସମସ୍ତଙ୍କ ପାଇଁ । ଭାନୁପ୍ରକାଶ ଭକୁଆଙ୍କ ପରି ଚାହିଁ ରହିଲେ । ଖାଲି ମନକୁ ମନ କହିଲା ପରି କହିଲେ, 'ଅରିନ୍ଦମ ଏ କଅଣ ବାହାଘରର ଭୋଜି ! ଏ କଅଣ ଭୋଜି ଖିଆ ! ଲୋକଙ୍କୁ ଏ ଅସମ୍ମାନ କାହିଁକି ? ବିଲେଇ କୁକୁର ପରି ଏ ଅବସ୍ଥା କଅଣ ? ଏ ତ ଭୋଜି ନୁହେଁ, ଏ ନର୍କ କୁଣ୍ଡ ।'

ଅରିନ୍ଦମର ଚିହ୍ନା ଲୋକ କିଏ ଦିଜଣ ଦୂରରୁ ପାଟି କଲେ - 'କି ହୋ ଅରିନ୍ଦମ ଛିଡ଼ା ହୋଇଛ କାହିଁକି ? ଆସ, ଆସ, ଖାଅ ।' ଅରିନ୍ଦମ ଦେଖିଲା ସେ ଦିଜଣଙ୍କ ହାତରେ ଦିଟା ବୋତଲ । ସେମାନେ ଠେଲାପେଲା ହୋଇ ଦୂରକୁ ଚାଲିଗଲେ । ଅରିନ୍ଦମ ଭାବିଲା ସେ ସକାଳୁ ଦେଖି ଯାଇଥିଲା । ସେତେବେଳେ ଆରମ୍ଭ । ବର୍ତ୍ତମାନର ଅବସ୍ଥାକୁ କ'ଣ କହିବ ? ଭାନୁପ୍ରକାଶ ଯାହା କହୁଛନ୍ତି ଏ ଖାଇବା ବନ୍ଦୋବସ୍ତ ମଣିଷଙ୍କ ପାଇଁ ନାଁ ଅଇଣ୍ଠା ପତ୍ର ଖାଇବା କୁକୁରଙ୍କ ପାଇଁ । ସେ ଭାନୁପ୍ରକାଶଙ୍କୁ ଚାହିଁଲା । ଭାନୁପ୍ରକାଶଙ୍କର ସ୍ତବ୍ଧ ଭାବ ଅନେକ କଟିଗଲାଣି । ସେ ଅଳ୍ପ ଅଳ୍ପ ହସୁଥାଆନ୍ତି ।

କହିଲେ, 'ହଁ ହେଲା । ଆମର ବୁଝିବାରେ ଭୁଲ, କଂସ ଠିକ୍ ଅଛି ।'

ଅରିନ୍ଦମ ଅପେକ୍ଷା କଲା । ଭାନୁପ୍ରକାଶ କଥା ସାରି ନାହାନ୍ତି ।

'ନାଁ, କଥା ବିଶେଷ ନାହିଁ ।' କହିଲେ ଭାନୁପ୍ରକାଶ, 'ଗୋଟିଏ କଥା ସ୍ପଷ୍ଟ ବୁଝି ହେଉଛି । କଂସ ଭୋଜିଟାକୁ ଅଲଗା ରଖିବାକୁ ଚାହେଁ । ତା'ର ଇଚ୍ଛା ବାହାଘରରେ ଲୋକ ଭିଡ଼ ନ ହେଉ । ବାହାଘରର ଭିଡ଼ ଏଇ ଭୋଜିଟାରେ ହିଁ ଯିବ, ଆଉ ବାହାଘର ଅଳ୍ପ ଲୋକରେ ଚୁପଚାପ ହେବ । ସେଇ ଯୋଗୁଁ ଭୋଜିର ଏ ଅବସ୍ଥା । ଖାଇବାଠଉଁ ପିଇବାଟା ହିଁ ବଡ଼, ଯେମିତି ଖାଇପିଇ ଲୋକ ଆଉ ଉଠି ପାରିବେ ନାହିଁ, ଏଇଠି ପଡ଼ି ରହିବେ ।'

ଭାନୁପ୍ରକାଶ ଚୁପ କରିଗଲେ । ତାଙ୍କର କପାଳର ଶିରା ଆଗପରି କୁଞ୍ଚିତ ହୋଇ ଉଠିଲା - 'କିନ୍ତୁ କାହିଁକି ? ବାହାଘରଟା ତ ହୋହା, ପାଟିଗୋଳ, ସେସବୁ ନ ହେଲେ ବାହାଘର ତ ବାହାଘର ପରି ଲାଗିବନି । ଏ କୌଶଳ କାହିଁକି ?'

ଅରିନ୍ଦମ କହିଲା, 'ଆମେ ଏଠୁ କୁଆଡ଼କୁ ଯିବା ? ବାହାଘର ଜାଗାକୁ ଯିବା କି ?'


Digitized by srujanika@gmail.com

'ହଁ, ଯିବା', ଭାନୁପ୍ରକାଶ କହିଲେ, 'ତା ଆଗରୁ ମଥୁରାର ମୁଖିଆମାନଙ୍କ ଢଙ୍ଗ ଟିକେ ଦେଖିବା, ସେମାନଙ୍କ ଅବସ୍ଥା କଅଣ ?'

'ତାହେଲେ ନଅର ଆଡ଼କୁ ଯିବା', କହିଲା ଅରିନ୍ଦମ, 'ନଅର ଭିତରେ ସେମାନଙ୍କର ଖାଇବାର ବନ୍ଦୋବସ୍ତ ହୋଇଛି ।'

କଂସର ରାଜପ୍ରାସାଦର ସିଂହଦରଜା ପାଖକୁ ଅରିନ୍ଦମ ଦ୍ୱିତୀୟ ଥର ପାଇଁ ଆସିଲା । ସେ ଲକ୍ଷ୍ୟ କଲା ସକାଳେ ଯେଉଁ ରକ୍ଷୀମାନେ ଥିଲେ ସେମାନେ ଆଉ ନାହାନ୍ତି । ଏମାନେ ଅନ୍ୟ ଲୋକ । ସେ ମୁହୂର୍ତ୍ତ ପାଇଁ ଭାବିଲା ଏମାନେ ଛାଡ଼ିବେ ତ ? କିନ୍ତୁ ସେ ମୁହୂର୍ତ୍ତକ ପାଇଁ । ଅତ୍ୟନ୍ତ ସ୍ୱାଭାବିକ ଭାବରେ ଭାନୁପ୍ରକାଶ ଭିତରକୁ ପଶିଗଲେ, ତାଙ୍କ ସାଙ୍ଗେ ସାଙ୍ଗେ ଅରିନ୍ଦମ । ରକ୍ଷୀମାନେ ଉଚ୍ଚବାଚ୍ୟ ବି କଲେ ନାହିଁ । ବରଂ ମନେହେଲା ଭାନୁପ୍ରକାଶଙ୍କୁ ଦେଖି ସେମାନେ ଯେପରି ଖୁସି ହୋଇ ଉଠିଲେ । ଜଣେ ପ୍ରାୟ ପାଖକୁ ଲାଗିଆସି ପଚାରିଲା, 'ଆପଣ କଅଣ ଦ୍ୱିତୀୟ ଅଗଣାକୁ ଯିବେ ?'

'ମୁଖିଆ ମାନେ କେଉଁଠି ଥିବେ ?' ଭାନୁପ୍ରକାଶ ପଚାରିଲେ ।

'ହଁ, ସେଇ ଦ୍ୱିତୀୟ ଅଗଣା ।' ରକ୍ଷୀ କହିଲା ।

'ଠିକ୍ ଅଛି', ଭାନୁପ୍ରକାଶ ଯାଉ ଯାଉ ରକ୍ଷୀର ପାଖକୁ ଲାଗିଗଲେ – 'କିଛି ଖବର ?'

'ସାରା ସହରରେ ମଗଧ ସୈନ୍ୟ ଓ ରାକ୍ଷସ ସୈନ୍ୟ ଭର୍ତ୍ତିହୋଇ ଗଲେଣି, ସେମାନେ ସବୁ ଜାଗାରେ ଜଗିକରି ରହିଛନ୍ତି ।' ରକ୍ଷୀ କହିଲା ।

'ମୁଖିଆ ?' ଭାନୁପ୍ରକାଶ ପଚାରିଲେ ।

'ସେମାନଙ୍କ ଅବସ୍ଥା ଦେଖିବେ ଯାଆନ୍ତୁ', ରକ୍ଷୀ ଉତ୍ତର ଦେଲା ଓ ଭାନୁପ୍ରକାଶଙ୍କ କାନ ପାଖରେ ପ୍ରାୟ ଫୁସ୍‌ଫୁସ୍ ହୋଇ କହିଲା – 'ସାବଧାନ ରହିବେ, ଅଦ୍ଭୁତ କଥା ଘଟିପାରେ ।'

ଉଭୟ ଭାନୁପ୍ରକାଶ ଓ ଅରିନ୍ଦମ ଭିତରକୁ ପଶିଲେ । ଆଉ କିଛି କିଛି ଲୋକ ବି ଯାଉଥାନ୍ତି । ଭାନୁପ୍ରକାଶଙ୍କ ମୁହଁ ଅସ୍ୱାଭାବିକ ଭାବରେ ଗମ୍ଭୀର । କହିଲେ, 'ଅରିନ୍ଦମ, ଠିକ୍ ଲାଗୁନି । କଅଣ ଘଟିବ ସେଇ ପରମ ପିତା ମହାକାଳଙ୍କୁ ଜଣା ।'

ସେମାନେ ଦ୍ୱିତୀୟ ଅଗଣାରେ ପଶିଲେ । ଅଗଣାକୁ ଲାଗି ଅନେକଗୁଡ଼ିଏ ପ୍ରଶସ୍ତ ଘର । ସେମାନେ ଦେଖିଲେ ଘରମାନଙ୍କ ଭିତରେ ବେଶ୍ କିଛି କିଛି ଲୋକ । ଅନେକ ଚିହ୍ନା ଚିହ୍ନା – ମଥୁରାର ମୁଖିଆମାନେ । ସେମାନଙ୍କର ଅବସ୍ଥା... ରକ୍ଷୀ କଥା ମନେ ପଡ଼ିଲା – 'ଯାଆନ୍ତୁ ଦେଖିବେ ।' ହଁ, ଦେଖିବା ପରି ! ସେମାନେ ତ

ସାଧାରଣ ଲୋକ । ଏମାନେ ? ଅରିନ୍ଦମର ମନେହେଲା କାହାରି ହିତାହିତ ଜ୍ଞାନ ବି ନାହିଁ । ଏମାନେ କ'ଣ ବିଭାଘରରେ ଯୋଗ ଦେବେ ? ସେ ଭାନୁପ୍ରକାଶଙ୍କୁ କଅଣ କହିବାକୁ ଯାଉଥିଲା । ଭାନୁପ୍ରକାଶ ଓଠରେ ହାତଦେଇ ତାକୁ କହିବାକୁ ବାରଣ କଲେ । କହିଲେ, 'ଶୁଣ, କୁହନା ।'

ଅରିନ୍ଦମ ଦେଖିଲା ଦି ଜଣ ବୟସ୍କ ଲୋକ ତା ପାଖକୁ ଲାଗି ଆସିଲେ । ସେମାନଙ୍କ ହାତରେ ଦି ଦିଟା କରି ବୋତଲ । ଜଣେ ଗୋଟାଏ ବୋତଲ ତା ହାତକୁ ବଢ଼େଇ ଦେଲେ, କହିଲେ, 'କି ହୋ ଅରିନ୍ଦମ, ଏଠି ଏମିତି ଚୁପଚୁପ ଛିଡ଼ା ହୋଇଛ କ'ଣ ? ତୁମ ସାଙ୍ଗରେ ଏ କିଏ ? ଆସ, ଆସ । ତୁମେ କଂସର ସାଙ୍ଗ, ପ୍ରଦ୍ୟୋତର ଭାଇ, ଦେଖ ଏ ଅମୃତ । ଏ ଏଠି ମିଳିବନି । ଏଇ ଗୋଟାଏ ନିଅ, ଆଉ ନାହିଁ । ତୁମ ସାଙ୍ଗଙ୍କ ପାଇଁ ଆଣିବାକୁ ହବ'। ଅରିନ୍ଦମ ଚିହ୍ନିଲା । ଉଭୟ ଅନ୍ଧକ ଗୋଷ୍ଠୀର ମୁଖିଆ – କଂସର ନିଜ ଗୋଷ୍ଠୀ । କଂସର ଅତ୍ୟନ୍ତ ପାଖ ଲୋକ ।

ଅରିନ୍ଦମ କହିଲା, 'ଏ ବାହାରୁ ଆସିଛନ୍ତି, ଏ ସୁରା ପିଅନ୍ତି ନାହିଁ । ଆଜି ସେ ବାହାଘର ଦେଖିବାକୁ ଆସିଛନ୍ତି ।'

'ଆଃ, ରଖ, ରଖ, କି ବାହାଘର ହେ । ବାହାଘର ସବୁ ସ୍ତ୍ରୀ ଲୋକ ଓ ପିଲାମାନେ ଦେଖନ୍ତି । ତମ ଆମ ପାଇଁ ଏଇ ମହାନ ଅମୃତ । କଂସର ବି ସେହି ଇଚ୍ଛା – ଖାଅ, ପିଅ, ନାଚ ତାମସା କର, ବାହାଘର ତା ବାଟରେ ହବ । ସେଥିପାଇଁ ବ୍ୟସ୍ତ କାହିଁକି ?' ଦି ମୁଖିଆ ହାତରେ ଧରିଥିବା ବୋତଲରୁ କିଛି କିଛି ପିଇ ଗହଳି ଭିତରେ ମିଶିଗଲେ ।

ଅରିନ୍ଦମ ଓ ଭାନୁପ୍ରକାଶଙ୍କୁ ବେଶି ସମୟ ଅପେକ୍ଷା କରିବାକୁ ହେଲାନି । ଅରିନ୍ଦମ ଦେଖିଲା ଆଉ ଦି ଜଣ କିଏ ଗହଳି ଭାଙ୍ଗି ତାଙ୍କ ପାଖକୁ ଲାଗି ଆସିଲେ । ସେମାନଙ୍କ ହାତରେ ବି ଦି ଦି'ଟା ବୋତଲ । ଅରିନ୍ଦମ ଚିହ୍ନିଲା । ଏମାନେ ବି ପୂର୍ବ ପରିଚିତ । ମଧ୍ୟ ବୟସ୍କ । ଏାମନେ ବି କଂସର ପାଖ ଲୋକ । ଜଣେ ଅରିନ୍ଦମର ପାଖକୁ ଆସି ତା ବାହାଧରି ଝିଙ୍କିଦେଲା- 'ଆରେ ଅରିନ୍ଦମ, ତୁମେ ନ ଆସିଲେ କଅଣ ଏ ମଜା ପୂରା ହବ । ଏ କିଏ ? ତୁମ ସାଙ୍ଗ ? ସେ ବି ଆସନ୍ତୁ ।' ଉଭୟ ଅରିନ୍ଦମ ଓ ଭାନୁପ୍ରକାଶଙ୍କ ହାତ ଧରି ସେ ଗହଳି ଭିତରକୁ ଟାଣିନେଲେ । ଅରିନ୍ଦମ ପ୍ରଥମେ ଟିକିଏ ଭିଡ଼ିମୋଡ଼ି ହେଉଥିଲା । ଭାନୁପ୍ରକାଶ ଚୁପଚୁପ କହିଲେ, 'ନାଇଁ ଚାଲ । ଏମାନଙ୍କ ପାଖରୁ ଖବର ମିଳିବ ।' ଉଭୟ ମୁଖିଆମାନଙ୍କର ଗହଳିରେ, ସୁରାପାନର ହଇହଲ୍ଲା ଭିତରେ ମିଶିଗଲେ ।

ଅରିନ୍ଦମ ଦେଖିଲା ଭାନୁପ୍ରକାଶ କିଛି କହୁନାହାନ୍ତି । କିନ୍ତୁ ତାଙ୍କର ସାରା ଦେହ


Digitized by srujanika@gmail.com

କୌଣସି ବିପଦର ସମ୍ଭାବନା ଥିଲେ ଯେମିତି ପ୍ରସ୍ତୁତ ହୋଇ ଟାଣ ହୋଇ ରହେ, ସେମିତି ଟାଣ ହୋଇ ରହିଛି । କାନ ସିଧା ହୋଇ ରହିଛି, ଆଖି ବାତ ଚକ୍ର ପରି ସବୁଆଡ଼େ ବୁଲୁଛି, ସବୁଆଡ଼େ ନଜର ରଖିଛି । ଗୋଟାଏ ସମୟରେ ସେ ଅରିନ୍ଦମ ଆଡ଼କୁ ଲାଗି ଆସିଲେ, କହିଲେ, 'ଅରିନ୍ଦମ, ଏଠୁ ଯିବା । ବାହାଘର ସମୟ ହେଲା । ଏମାନେ କେହି ବାହାଘର ଜାଗାକୁ ଯିବେ ନାହିଁ । ସେଇଟାହିଁ କଂସର ଇଚ୍ଛା । ବିଶେଷ କେହି ନ ଯାଆନ୍ତୁ । ସେଇଟାହିଁ ହେବ ।'

'ଏମାନେ ସମସ୍ତେ ଯେ କଂସ ଗୋଷ୍ଠୀର ବା କଂସର ପାଖ ଲୋକ ତା ନୁହେଁ', କହିଲା ଅରିନ୍ଦମ, 'ଏଠି ଥିବା ବେଶ୍ କିଛି ମୁଖିଆ କଂସର ବିରୋଧୀ । ସେମାନେ ହୁଏତ ଯାଇ ପାରନ୍ତି ।'

'ହଁ, ଯାଇ ପାରନ୍ତି' କହିଲେ ଭାନୁପ୍ରକାଶ, 'ଦେଖ, ଗଲେଣି ବି । ଆମେ ଯିବା, ଆଉ ଯାହା ଖବର ବିଭାଘର ଜାଗାରୁ ହିଁ ପାଇବା ।'

ସେମାନେ ଆସ୍ତେ ଆସ୍ତେ ଗହଳିରୁ ବାହାରି ଆସିଲେ । ମୁଖିଆମାନେ ସେମିତି ହଇହଲ୍ଲା କରି ପିଆପିଇ କରୁଥାନ୍ତି । ଅରିନ୍ଦମ ଲକ୍ଷ୍ୟକରି ଦେଖିଲା ଖାଲି ମଥୁରାର ମୁଖିଆମାନେ ନୁହନ୍ତି, ସେମାନଙ୍କ ସାଙ୍ଗରେ କିଛି ମଗଧର ଲୋକେ ବି ମିଶିଛନ୍ତି । ସେ ଭାବିଲା ସେମାନେ ତ ଆଗରୁ ନ ଥିଲେ । ଏଇ ବାହାଘର ପାଇଁ ଆସିଛନ୍ତି ବୋଧେ । ତା ସାଙ୍ଗରେ ସେ ଲକ୍ଷ୍ୟ କଲା ବି ପ୍ରଦ୍ୟୋତର କିଛି ଲୋକ ରହିଛନ୍ତି, ଯେଉଁମାନେ ପିଇବା ବୋତଲ ସବୁ ଯୋଗେଇ ଦେଉଛନ୍ତି । ଭାନୁପ୍ରକାଶ ଠିକ୍ କହୁଛନ୍ତି । ଏମାନେ କେହି ବାହାଘର ଜାଗାକୁ ନ ଆସନ୍ତୁ ଏହାହିଁ କଂସର ଇଚ୍ଛା ।

ବାହାଘର ତୃତୀୟ ଅଗଣାରେ । ଉଭୟ ତୃତୀୟ ଅଗଣାକୁ ଗଲେ । ବିଭାଘରର ନିର୍ଦ୍ଧାରିତ ସମୟ ପ୍ରାୟ ଆସିଗଲାଣି । ସମଗ୍ର ଅଗଣା ସୁସଜ୍ଜିତ ଆସନରେ ସଜ୍ଜିତ । ଉପରେ ମଣିମୁକ୍ତା ଖଚିତ ବହୁ ବର୍ଣ୍ଣରେ ରଂଜିତ ଚନ୍ଦ୍ରାତପ । ଚାରି ପାଖରେ ଉଜ୍ଜ୍ୱଳ ଆଲୋକ, ସମଗ୍ର ଅଞ୍ଚଳ ବିଦ୍ୟୁତ ଆଲୋକରେ ଝଲସିଲା ପରି ଝଲସୁଛି । ଦୂରରୁ କେଉଁଠୁ ସୁମଧୁର ବାଦ୍ୟ-ସଂଗୀତ ଭାସି ଆସୁଛି । ବରକନ୍ୟା ଆସି ନାହାନ୍ତି । କଂସ ବି ଆସିନାହିଁ । କିନ୍ତୁ ବ୍ରାହ୍ମଣମାନେ ସେମାନଙ୍କ ସ୍ଥାନରେ ପ୍ରସ୍ତୁତ ହୋଇ ରହିଲେଣି । ଅରିନ୍ଦମ ଦେଖିଲା ସକାଳେ ସେ ଯେଉଁ ଦୁଇଜଣ ତାନ୍ତ୍ରିକଙ୍କୁ ଦେଖି ଯାଇଥିଲା ସେ ଦିହେଁ ବି ଆସି, ବେଦୀଠାରୁ ଅଳ୍ପ ଛାଡ଼ି ବସିଛନ୍ତି । ଦେହର ପୋଷାକ ଅନ୍ୟମାନଙ୍କ ଠାରୁ ଭିନ୍ନ, କିନ୍ତୁ ମୂଲ୍ୟବାନ । ବିଶେଷ କରି ସେମାନେ ଗଳାରେ ପିନ୍ଧିଥିବା ଦୁଇଟି ହାର ଅରିନ୍ଦମର ମନେହେଲା ଅତ୍ୟନ୍ତ ମୂଲ୍ୟବାନ । ମୁକ୍ତାଖଚିତ ହାର, ମୁକ୍ତାଗୁଡ଼ିକର ଆକୃତି ମହୁମାଛି ପରି, ସତେଯେପରି ଛୁଇଁଦେଲେ ଗୁଂଜରଣ କରି ଉଠିବେ ଓ ଟିକି

ଟିକି ଡେଣାମେଲି ଉଡ଼ିଯିବେ । ଏ ଖାଲି ପୋଷାକ ନୁହେଁ, ସେମାନଙ୍କର ମୁହଁର ଭାବ ଦେଖି ମଧ୍ୟ ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା । ସମ୍ପୂର୍ଣ୍ଣ ନିର୍ଲିପ୍ତ । ଏତେ ଲୋକ ବସିଛନ୍ତି, ଏଡ଼େ ବଡ଼ ବିଭାଘର ଅନୁଷ୍ଠିତ ହେବାକୁ ଯାଉଛି । ସମସ୍ତେ ବ୍ୟସ୍ତ, ଚଞ୍ଚଳ, ଅପେକ୍ଷା କରି ରହିଛନ୍ତି । ଏସବୁ ପ୍ରତି ସେମାନଙ୍କର ଯେପରି ତିଳେ ମାତ୍ର ଆଗ୍ରହ ନାହିଁ । କିଏ ଏମାନେ ? କାହିଁକି ଆସିଛନ୍ତି ?

'ଅରିନ୍ଦମ, ସେ ପାଖ କଣକୁ ଆସ'- ଭାନୁପ୍ରକାଶ ଫୁସ୍‌ଫୁସ୍ କରି ଅରିନ୍ଦମ କାନରେ କହି ନିଜେ ଆସ୍ତେ ଆସ୍ତେ କଣ ଆଡ଼କୁ ଗଲେ । ପଛେ ପଛେ ଅରିନ୍ଦମ । ଅଗଣାରେ ସେତେବେଳେ ଓ ବେଦୀ ପାଖରେ, କିଛି ଦୂର ଛାଡ଼ି ଲୋକସବୁ ବସିବାକୁ ଆରମ୍ଭ କଲେଣି । ଅରିନ୍ଦମ ଦେଖିଲା ବାହାର ଲୋକ ପ୍ରାୟ ନାହାନ୍ତି । ସମସ୍ତେ କଂସର ନିଜ ଲୋକ, ଦରବାରର ଲୋକ, ରାଜ କର୍ମଚାରୀ, ବିଭିନ୍ନ ଗୋଷ୍ଠୀର ଜଣାଶୁଣା ମୁଖିଆ ଯେଉଁମାନେ କଂସ ସପକ୍ଷରେ, ଓ ତା ଛଡ଼ା ଅପେକ୍ଷାକୃତ କମ ବୟସର ବେଶ କିଛି ଲୋକ ଯେଉଁମାନଙ୍କୁ ସେ ଆଗରୁ ଦେଖିଛି, ଯେଉଁମାନେ ରାତି ଅନ୍ଧାରରେ, ବଜାରରେ କଂସ ପାଇଁ ନାନା କୁତ୍ସିତ କାମ କରିଥାନ୍ତି ।

'ସାବଧାନ ରହ, କଥା କୁହନା, ଆଉ ଏଆଡ଼େ ସେଆଡ଼େ ଚାହଁନା', କହିଲେ ଭାନୁପ୍ରକାଶ । 'ଏମାନେ କେହି ବନ୍ଧୁ ନୁହନ୍ତି । ଚାରିପାଖରେ ରକ୍ଷୀମାନଙ୍କୁ ଦେଖ, ସେମାନେ ଚୁପଚାପ ଛିଡ଼ା ହୋଇଛନ୍ତି, କିନ୍ତୁ ସେମାନଙ୍କ ନଜର ଆମ ଉପରେ ଅଛି ।'

ଅରିନ୍ଦମର ମନ ଦବିଗଲା । କି ଆଶ୍ଚର୍ଯ୍ୟ ବାହାଘର ! ଟିକିଏ ଖୋଲା ମେଲାରେ ଖୁସିବାସିରେ କଥା କହିବା ବିପଜ୍ଜନକ ! ସେ ବାଧ୍ୟ ଶିଶୁଟି ପରି ଚୁପଚାପ ଭାନୁପ୍ରକାଶଙ୍କ ସାଙ୍ଗରେ ଗଲା ।

'ଦବି ଯାଅନା', ଭାନୁପ୍ରକାଶ କହିଲେ, 'ଆଖି କାନ ଖୋଲା ରଖ, କିନ୍ତୁ ସତର୍କ ରହ । ମୋର ମନେହେଉଛି ଗୋଟାଏ କିଛି ଅଘଟଣ ଘଟିବାକୁ ଯାଉଛି ।'

ସେମାନେ ଲୋକଙ୍କୁ ଆଡ଼େଇ ଗୋଟାଏ କଣରେ ଯାଇ ଛିଡ଼ାହେଲେ । ଜାଗାଟି ପ୍ରାୟ ନିଛାଟିଆ । ବେଦୀଠାରୁ ଟିକିଏ ଦୂର, ସେଥିପାଇଁ ବିଭାଘର ଦେଖିବାକୁ ଆସିଥିବା ଲୋକମାନେ ଏପାଖୁ ପ୍ରାୟ ଆସୁ ନ ଥିଲେ । ଅଳ୍ପ ଦୂରରେ ତିନି ଚାରିଜଣ ରକ୍ଷୀ ଛିଡ଼ା ହୋଇ ସେମାନଙ୍କ ଭିତରେ କଅଣ କଥାବାର୍ତ୍ତା କରୁଥିଲେ । କିନ୍ତୁ ବେଦୀ ଓ ସେ ବିରାଟ ଅଗଣାଟାରେ କେଉଁଠି କଅଣ ହେଉଛି ଦେଖିବାକୁ ବିଶେଷ ଅସୁବିଧା ହେଉ ନ ଥିଲା ।

'ସମୟ ହେଇ ଆସିଲା ।' ଭାନୁପ୍ରକାଶ କହିଲେ, 'ବର୍ତ୍ତମାନ ଦେବକୀ


Digitized by srujanika@gmail.com

ବାସୁଦେବ ଆସିବେ । କଂସ ବି । ବାହାରେ ରଥ ବି ପ୍ରସ୍ତୁତ ହେଇଗଲାଣି । କଂସ ସେମାନଙ୍କୁ ନିଜେ ଯାଇ ଘରେ ଛାଡ଼ିବ ।'

'ନିଜେ ?' ପଚାରିଲା ଅରିନ୍ଦମ ।

'ହଁ, ସେମିତି ତ ଶୁଣାଯାଉଛି । କଂସର ଦେବକୀ ଅଲିଅଳ ଭଉଣୀ ନା । ସେଥିପାଇଁ ସେ ନିଜେ ଛାଡ଼ିବାକୁ ଯିବ ।' ଭାନୁପ୍ରକାଶଙ୍କ ଓଠରେ ସାମାନ୍ୟ ହସ ଖେଳିଗଲା । ଅରିନ୍ଦମ ବୁଝିଲା ଭାନୁପ୍ରକାଶ ରହସ୍ୟରେ ଏକଥା କହୁଛନ୍ତି । କଂସ ନିଜେ ଦେବକୀ ବସୁଦେବଙ୍କୁ ଛାଡ଼ିବାକୁ ଯିବ ଏ କଥାଟା ତାକୁ ବି କେମିତି ଲାଗିଲା । ଏ ତ କଂସର ସ୍ୱଭାବ ନୁହେଁ । ଦେବକୀଙ୍କ ପ୍ରତି ତା'ର ଏ ସ୍ନେହଟା ଟିକିଏ ବଢ଼ାବଢ଼ି ଲାଗୁଛି । ସେ ଆଉ କିଛି ଭାବିବା ବା କହିବା ଆଗରୁ ଦେଖିଲା ଜଣେ ରକ୍ଷୀ ସେମାନଙ୍କ ପାଖକୁ ପ୍ରାୟ ଲାଗି ଆସିଲାଣି । ସେ ଭାନୁପ୍ରକାଶଙ୍କ ମୁହଁକୁ ଚାହିଁଲା । ଦେଖିଲା ତାଙ୍କ ମୁହଁରେ କିଛି ବି ଲକ୍ଷଣ ନାହିଁ । ସେ ରକ୍ଷୀକୁ ଚାହିଁଲେ ବି ନାହିଁ । କେବଳ ତାଙ୍କ ପାଟିରୁ ବାହାରିଲା - 'କୁହ' ।

'ବିଭାଘର ପରେ ବରକନ୍ୟା ଉଗ୍ରସେନଙ୍କର ପୁରୁଣା କୋଠିକୁ ଯିବେ ।' ରକ୍ଷୀ ଦୂରକୁ ଘୁଞ୍ଚିଗଲା ।

'ପୁରୁଣା କୋଠି ? ହୁଁ । ସେ ତ ବନ୍ଦୀଘର !' ଭାନୁପ୍ରକାଶ ନିଜକୁ ନିଜେ କହିଲେ । ବେଦୀ ପାଖରେ ଲୋକମାନେ ଚଂଚଳ ହୋଇ ଉଠିଲେଣି । ଦାରୁଭୂତ ମୁରାରି ପରି ବସିଥିବା ସେ ଦୁଇଜଣ ତାନ୍ତ୍ରିକ ବି ଚଞ୍ଚଳ ହୋଇ ଉଠିଲେଣି । ରକ୍ଷୀମାନେ ସାବଧାନ ହୋଇ ସେମାନଙ୍କ ସ୍ଥାନରେ ଛିଡ଼ା ହୋଇଗଲେଣି । ଦ୍ୱିତୀୟ ଅଗଣାରୁ କିଛି ନୂଆ ନୂଆ ଲୋକ ଆସିଲେଣି । ସୁମଧୁର ସଂଗୀତର ଶବ୍ଦ କେଉଁଠୁ ଆସୁଥିଲା । ବନ୍ଦ ହୋଇଗଲା । ତା ବଦଳରେ ଭେରୀ, ତୁରୀ, ଦାମାମା ପ୍ରଭୃତି ବାଜି ଉଠିଲା । ତା ସାଙ୍ଗରେ କଂସର ଜୟଧ୍ୱନି । ରାଜା କଂସ ବିଜେ କଲେ । ପଛେ ପଛେ ଦେବକୀ ବସୁଦେବ । ଉଭୟଙ୍କର ବରକନ୍ୟା ବେଶ, ବସୁଦେବଙ୍କର ଦୀର୍ଘ ବହୁମୂଲ୍ୟ ପୋଷାକ, ମୁଣ୍ଡରେ ପଗଡ଼ି, ହାତରେ ସୁନାର କଙ୍କଣ, ଗଳାରେ ସୁନାର ମୋଟା ହାର । ବସୁଦେବ ସବୁଦିନେ ସୁପୁରୁଷ । ବର ବେଶରେ ତାଙ୍କର ସୌନ୍ଦର୍ଯ୍ୟ ଆହୁରି ବଢ଼ିଯାଇଛି । କିନ୍ତୁ ତାଙ୍କଠାରୁ ଆହୁରି ସୁନ୍ଦର ଦେବକୀ । ଦେବକୀଙ୍କୁ ଅରିନ୍ଦମ ଆଗରୁ ଦେଖିଛି । କିନ୍ତୁ ସେଦିନ କନ୍ୟା ବେଶରେ ତାଙ୍କର ଶୋଭା ଅତୁଳନୀୟ । ଦେହରେ ସୁନା ଜରି ଖଂଜା ଯାଇଥିବା ଅତ୍ୟନ୍ତ ମୂଲ୍ୟବାନ ଶାଢ଼ି, ସାରା ଦେହରେ ଅଳଂକାର । ଅରିନ୍ଦମର ମନେହେଲା ଏ ଯେପରି ଦେବକୀ ନୁହନ୍ତି, ଜଳଜଳ ହୋଇ ଜଳୁଥିବା ସୁନାର କଣ୍ଢେଇ ।

'ଅରିନ୍ଦମ, ଟିକିଏ ଆଗେଇ ଯାଅ ।' ଅରିନ୍ଦମ ଶୁଣିଲା ପଛରୁ ଭାନୁପ୍ରକାଶ କହୁଛନ୍ତି, 'ଶୁଣ, କିଏ କଅଣ କହୁଛନ୍ତି । ସେ ତାନ୍ତ୍ରିକ ଦିଜଣଙ୍କ ଉପରେ ନଜର ରଖ । ମୁଁ ତୁମ ପଛେ ପଛେ ଯାଉଛି ।'

ଅରିନ୍ଦମ ପଛକୁ ବୁଲି ଚାହିଁଲା । ଦେଖିଲା ଭାନୁପ୍ରକାଶ ତାକୁ ଛାଡ଼ି ଟିକିଏ ଦୂରରେ ଥିବା ଗୋଟାଏ ବନ୍ଦ କବାଟ ଆଡ଼କୁ ଯାଉଛନ୍ତି । ଭାନୁପ୍ରକାଶଙ୍କ ଆଡ଼କୁ କାହାରି ନଜର ନାହିଁ । ସମସ୍ତେ ଆଗକୁ, ବରକନ୍ୟାଙ୍କ ଉପରେ । ଅରିନ୍ଦମ ଭାବିଲା ଭାନୁପ୍ରକାଶଙ୍କୁ ଛାଡ଼ି ସେ ଯିବ କି ? ସେ ଦୋ'ଦୋ ପାଞ୍ଚ ହୋଇ ଛିଡ଼ାହୋଇ ରହିଲା ।

ଟାଣ ହୋଇ ଶୁଭିଲା 'ଯାଅ' । ସେ ଚମକି ପଡ଼ିଲା । କିଏ କହିଲା ? ଭାନୁପ୍ରକାଶ ତ କିଛି ବାଟ ଦୂରେଇ ଗଲେଣି । ତା ପାଖରେ ଥିବା ଲୋକମାନେ ତ ବେଦୀ ଆଡ଼କୁ ଆଗେଇ ଗଲେଣି । ଏଇ ସେ ପାଖରେ ଛିଡ଼ା ହୋଇଥିବା ଦି ତିନି ଜଣ ରକ୍ଷୀ ବି ତା ଆଡ଼କୁ ଚାହୁଁ ନାହାନ୍ତି । ତା'ର ବହୁଦିନ ତଳର ଗୋଟାଏ ଘଟଣା ମନେ ପଡ଼ିଲା - ଜରାସନ୍ଧଙ୍କର ସେଇ ମଲ୍ଲ କୁସ୍ତି ହେଉଥିବା ଦିନର ଘଟଣା । ଭାନୁପ୍ରକାଶଙ୍କ ସହିତ ତା'ର ପ୍ରଥମ ପରିଚୟ । ସେଦିନ ସେମିତି ସେ ଆଶ୍ଚର୍ଯ୍ୟ ହୋଇଥିଲା - ଶୂନ୍ୟରୁ ଶୂନ୍ୟରୁ ଯେମିତି କଥା ଆସୁଛି । ସେ ଭୁଲିଯାଉଛି ଭାନୁପ୍ରକାଶ ଗୁରୁଦେବ ବ୍ୟାସଦେବଙ୍କର ଅନ୍ତରଙ୍ଗ ଶିଷ୍ୟ । ସମାନ ତନ୍ତ୍ରସିଦ୍ଧ । ସେ ଅନେକ କଥା ଦେଖନ୍ତି, ଜାଣନ୍ତି, କରନ୍ତି ବି, ଯାହାକି ସେମାନେ କରିପାରିବେ ନାହିଁ, ବୁଝିପାରିବେ ନାହିଁ । ତାଙ୍କର ନିର୍ଦ୍ଦେଶ ମାନିବା ଦରକାର । ସେ ଅନ୍ୟମାନଙ୍କ ସହିତ ଆସ୍ତେ ଆସ୍ତେ ବାହାବେଦୀ ନିକଟକୁ ଗଲା । ବାହାବେଦୀ ଆଉ ଅଳ୍ପ ବାଟ ଅଛି, ତାକୁ ପୁଣି ଶୁଭିଲା - 'ସେଇଠି ରୁହ' । ସେ ପୁଣି ଚମକି ପଛକୁ ଚାହିଁଲା ବେଳକୁ ନାଁ, ଶୂନ୍ୟରୁ ଶବ୍ଦ ନୁହେଁ, ଭାନୁପ୍ରକାଶ ନିଜେ ଛିଡ଼ା ହୋଇଛନ୍ତି । ତାଙ୍କ ମୁହଁରେ ହସ । 'ନାଇଁ ଆଉ ଆଗକୁ ଯିବା ଦରକାର ନାହିଁ । ଏଇ ଭିଡ଼ ଭିତରେ ଟିକିଏ ପଛରେ ଛିଡ଼ାହେବା ଭଲ', କହିଲେ ଭାନୁପ୍ରକାଶ । 'ଦେଖ, ସେ ପାଖରେ ସୌରଦେବ ଛିଡ଼ା ହୋଇଛନ୍ତି, ପାଖରେ ସତ୍ୟକାମ । ସେମାନେ ଆମକୁ ଦେଖିଲେଣି । ଆମେ ଅଲଗା ଅଲଗା ରହିବା ଠିକ୍ ।'

ବାହାଘରର ବିଧିବିଧାନ ଆରମ୍ଭ ହେଲାଣି । ଚାରିପାଖରେ ଯେତେ ଲୋକ ଛିଡ଼ା ହୋଇଛନ୍ତି ବା ବସିଛନ୍ତି ସମସ୍ତେ ଚୁପ । ବେଦୀରେ କଂସ ବି ଚୁପ । ପାଖରେ ସେନାପତି ପ୍ରଦ୍ୟୋତ ଓ ଜରାସନ୍ଧଙ୍କର ମନ୍ତ୍ରୀ । ବ୍ରାହ୍ମଣମାନଙ୍କର ଉଦାତ୍ତ କଣ୍ଠସ୍ୱରରେ ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଦେଖିଲା ସେ ଦୁଇଜଣ ତାନ୍ତ୍ରିକଙ୍କର ସ୍ୱର ମଧ୍ୟ ମିଶିଯାଉଛି ।

ବୈଦିକ ଶ୍ଳୋକର ଆବୃତ୍ତି ଓ ଦେବତାମାନଙ୍କର ଆବାହନ ସହିତ ହୋମ ଅଗ୍ନିର ଉତ୍ତାପ ଓ ପବିତ୍ରତାରେ ସାରା ପରିବେଶ ପୂରିଗଲା ଓ ଅରିନ୍ଦମର ମନ ବି ଆଚ୍ଛନ୍ନ ହୋଇ ଉଠିଲା ।

ଅରିନ୍ଦମର ମନେହେଲା ଭାନୁପ୍ରକାଶ କ'ଣ କହୁଛନ୍ତି । ସେ ପଛକୁ ବୁଲି ଚାହିଁଲା, ଭାନୁପ୍ରକାଶ ଅଳ୍ପ ଅଳ୍ପ ହସୁଥାଆନ୍ତି । 'ତୁମକୁ ଖୁବ୍ ଭଲ ଲାଗୁଛି ନା ଅରିନ୍ଦମ ?' କହିଲେ ଭାନୁପ୍ରକାଶ, 'ବାପାଙ୍କର ପୁଅ ନା ! ଘରେ ଏସବୁ ଶ୍ଳୋକ ଶୁଣିବାରେ ଅଭ୍ୟସ୍ତ ।'

ଅରିନ୍ଦମ ସାମାନ୍ୟ ଲାଜେଇ ଗଲା । କହିଲା – 'ନାଁ ତା ନୁହେଁ । ଏସବୁ ବୈଦିକ ଶ୍ଳୋକ ଶୁଣିବାକୁ ଭଲ ଲାଗେ । ବାପାଙ୍କର ଇଚ୍ଛା ମୁଁ ଏସବୁ ଶିଖେ । ମୁଁ କଅଣ ଶିଖିପାରୁଛି ।'

'ହଁ', କହିଲେ ଭାନୁପ୍ରକାଶ, 'ଏସବୁ ଶ୍ଳୋକର ଯଥେଷ୍ଟ ଶକ୍ତି । କିନ୍ତୁ ଠିକ୍ ଲୋକ ପାଖରେ ଠିକ୍ ଭାବରେ ବ୍ୟବହାର ହେଲେ ଏସବୁ ଶ୍ଳୋକର ଶକ୍ତି ଆସେ । କଂସ ପାଖରେ ଏ ତ ଖାଲି ଘୋଡ଼େଇ ହବାର ମତଲବ ।'

'ଆମେ ବୋଧେ କଂସକୁ ଠିକ୍ ବିଚାର କରୁନୁ' ଅରିନ୍ଦମ ଥଙ୍ଗେଇ ଥଙ୍ଗେଇ କହିଲା, 'ତାର କଅଣ କିଛି ଭଲ ଗୁଣ ନାହିଁ ?'

'ନାହିଁ'– ବାଟୁଳି ଖଡ଼ାରୁ ଯେପରି ବାଟୁଳି ଖସିଆସି ଅରିନ୍ଦମ ଦେହରେ ଠକ୍ କରି ବାଜିଲା । 'ଯେ ସଇତାନ ସେ ସଇତାନ । ତା'ର ଭଲ ଗୁଣ ଖୋଜା ଯାଏ ନା । କାହିଁକିନା ଭଲ ଗୁଣ ନ ଥାଏ ବୋଲି ସେ ସଇତାନ । ଏ ବାହାଘର, ଏ ବାହାଘର ପାଇଁ ଯେତେ ଆୟୋଜନ, ସେସବୁ ଭୟଙ୍କର ଜୁଆଚୋରି । ମତଲବ ବାହାଘରରେ ନାହିଁ, ମତଲବ ଆଉ କେଉଁଠି । ଶୁଣ, ମୁଁ ଆଉ ଦିଇଟା ଖବର ପାଇଲିଣି, ଉଗ୍ରସେନଙ୍କର ସେଇ ପୁରୁଣା କୋଠି, କଂସ ଯେଉଁଠି ଦେବକୀ ବସୁଦେବଙ୍କୁ ନେଇ ଛାଡ଼ିବ ବୋଲି ଶୁଣାଯାଉଛି, ଯାହାକୁ ତମେ ଦେଖିଛ, ସେ କଅଣ ? ରହିବା ପାଇଁ ଉଆସ ନା ବନ୍ଦୀଘର ? ସେଠି ଯେତେ ରକ୍ଷୀ ଅଛନ୍ତି, ଆହୁରି ସୈନ୍ୟ ଗଲେଣି, ଜଗି ରହିବେ । କାହାକୁ ? ସେଠି ତ ଦିଇଟା ନୂଆ ବାହା ହୋଇଥିବା ଲୋକ ରହିବେ । ତାଙ୍କୁ ଏତେ ଭୟ କାହିଁକି ? ଦ୍ୱିତୀୟରେ, କାଲି ସକାଳେ କଂସ ତା'ର ଅନୁଗତ ଲୋକମାନଙ୍କୁ ଅତ୍ୟନ୍ତ ଗୋପନୀୟ ଭାବରେ ଭେଟୁଛି । ସେମାନଙ୍କୁ ସବୁ ଖବର ଦିଆଗଲାଣି । କିନ୍ତୁ କାହିଁକି ? ହଠାତ୍ ଏ ଗୋପନୀୟ ଭେଟିବାଟା କାହିଁକି ଦରକାର ହେଲା ?' ଭାନୁପ୍ରକାଶ ଚୁପ କରିଗଲେ । ବାହାଘରର ବିଧିବିଧାନ ମନ୍ତ୍ରୋଚାରଣ ସହିତ ଆଗେଇ ଚାଲିଛି । ବାହାଘର କାର୍ଯ୍ୟରେ

କଂସର ଏକାଗ୍ରତା ଅରିନ୍ଦମକୁ ଆଶ୍ଚର୍ଯ୍ୟ ଲାଗିଲା । ଯେପରି କଂସର ଏକମାତ୍ର ଚିନ୍ତା ବାହାଘର - ବାହାଘର କିପରି ସୁରୁଖୁରୁରେ ହେଉ ତାହାହିଁ ଏକମାତ୍ର ଧ୍ୟାନ । ସେଥିପାଇଁ ଯେପରି ବନ୍ଦୋବସ୍ତ କରାଯାଇଛି ସେଥିରେ ଖୁଣିବାର କିଛି ନାହିଁ ।

'ସେଇଟା ହିଁ ମତେ ଠିକ୍ ଲାଗୁନି ।' ଅରିନ୍ଦମର ମନୋଭାବ ଜାଣିଲା ପରି କହିଲେ ଭାନୁପ୍ରକାଶ । 'ଏ ତ କଂସର ସ୍ୱାଭାବିକ ଚରିତ୍ର ଯାହା ଆମେ ଜାଣୁ ତା ନୁହେଁ ।'

'ମୋର ମନେହେଉଛି କଂସ ବସୁଦେବଙ୍କୁ ଭୟ କରେ ।' କହିଲା ଅରିନ୍ଦମ, 'ସୁର ଗୋଷ୍ଠୀର ସେ ମୁଖ୍ୟ । ସମସ୍ତେ ତାଙ୍କୁ ସମ୍ମାନ କରନ୍ତି, ତାଙ୍କ କଥା ଶୁଣନ୍ତି । ନିଜ ଭଉଣୀ ସହ ବିଭାଘର କରେଇ ସେ ତାଙ୍କୁ ନିଜ ଅଧୀନକୁ ଆଣିବାକୁ ଚାହେଁ ।'

'ହୋଇପାରେ... ହୋଇପାରେ ।' କହିଲେ ଭାନୁପ୍ରକାଶ, 'ତେବେ ଗୋଟିଏ କଥା ମନେରଖ ଅରିନ୍ଦମ, ବସୁଦେବ ଯଦି କଂସକୁ ମାନିଯିବେ ସବୁ ଯାଦବ ଗୋଷ୍ଠୀ କଂସକୁ ମାନିଯିବେ ।' ଭାନୁପ୍ରକାଶ ହଠାତ୍ କ'ଣ ଭାବି ଚୁପ କରିଗଲେ । ଅରିନ୍ଦମ ଜାଣେ ଭାନୁପ୍ରକାଶଙ୍କ ଚିନ୍ତାଧାରା ଶୀଘ୍ର ଶୀଘ୍ର କାମ କରେ । ସେ ଅପେକ୍ଷା କଲା, ଭାନୁପ୍ରକାଶ ନିଜକୁ ନିଜେ କହିବା ପରି କହିଲେ- 'ହଁ, ଭୟ ! କିନ୍ତୁ ବାହାଘର ତ ଭୟ ଭାଙ୍ଗିବାର ବାଟ ନୁହେଁ । ତା ଛଡ଼ା, ବାହାଘର ପରେ ପରେ ଗୋପନୀୟ ସଭା, ଗୋପନୀୟ ମନ୍ତ୍ରଣା କଅଣ ?'

ସେମାନେ ବିସ୍ତୃତ ଅଗଣାର ଗୋଟିଏ ପାଖକୁ ଛିଡ଼ା ହୋଇ ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା କରୁଥିଲେ । ତଥାପି ଅରିନ୍ଦମର ମନେହେଲା ଯେପରି ପାଖଆଖ ଲୋକେ ସେମାନଙ୍କୁ ଲକ୍ଷ୍ୟ କରୁଛନ୍ତି, ସେମାନଙ୍କର କଥାବାର୍ତ୍ତା ଶୁଣିବାକୁ ଚେଷ୍ଟା କରୁଛନ୍ତି । ସେ କିଛି ନ କହି ଚୁପହୋଇ ଛିଡ଼ାହେଲା, ବାହାଘର ଉପରେ ନଜର କଲା । ଭାନୁପ୍ରକାଶ ବୋଧେ ସେହିପରି କିଛି ବୁଝିଲେ । ସେ ବି ଚୁପଚାପ ଛିଡ଼ାହେଲେ । ବାହାଘର ଆଗେଇ ଚାଲିଥାଏ । ହୋମ ଅନେକ ଆଗରୁ ଆରମ୍ଭ ହୋଇ ଯାଇଥାଏ । ଅନବରତ ଶ୍ଳୋକ ଆବୃତ୍ତି ହେଉଥାଏ ଓ ବ୍ରାହ୍ମଣମାନେ ସୁସଜ୍ଜିତ ଘୃତ ପାତ୍ରରୁ ଅନବରତ ଘୃତ ଆଣି ଅଗ୍ନିରେ ହବ୍ୟ ଦେଉଥାନ୍ତି ।

'କଂସକୁ ଦେଖ । କଂସ ଅସ୍ଥିର ହୋଇ ଉଠିଲାଣି ।' ଭାନୁପ୍ରକାଶ କହିଲେ, ଠିକ ତ, କଂସ ଅନେକ ସମୟ ଚୁପଚାପ ଥିଲା । ବର୍ତ୍ତମାନ ମନେହେଉଛି ଚଂଚଳ ହୋଇ ଉଠିଲାଣି । ସେ ବୁଲିପଡ଼ି ବ୍ରାହ୍ମଣମାନଙ୍କୁ କଅଣ ନିର୍ଦ୍ଦେଶ ଦେଲା ଓ ଦୁଇ ତାନ୍ତ୍ରିକଙ୍କୁ କଅଣ କହିଲା । ସାଙ୍ଗେ ସାଙ୍ଗେ ବାଦ୍ୟର ସୁମଧୁର ଝଂକାର ଶୂନ୍ୟେ ଶୂନ୍ୟେ କେଉଁଠୁ ଭାସି ଆସିଲା । ବ୍ରାହ୍ମଣମାନେ ଚଞ୍ଚଳ ହୋଇ ଉଠିଲେ । ଶ୍ଳୋକ ଆବୃତ୍ତି କମି


Digitized by srujanika@gmail.com

ଆସିଲା । ହୋମ-ଅଗ୍ନିର ପ୍ରଖରତା ବି କମିଗଲା । ନିର୍ଦ୍ଦେଶ ପାଇ ଉଭୟ ଦେବକୀ ଓ ବସୁଦେବ ଉଠି ଛିଡ଼ାହେଲେ, ଉଭୟ ଉଭୟଙ୍କ ଗଳାରେ ଫୁଲମାଳ ଦେଲେ, ପରସ୍ପରକୁ ସୁବର୍ଣ୍ଣ ମୁଦି ପିନ୍ଧାଇ ଦେଲେ ଓ ପରେ ପରେ ନିର୍ଦ୍ଦେଶ ଅନୁଯାୟୀ ଉଭୟ ପବିତ୍ର ହୋମ ଅଗ୍ନିକୁ ପ୍ରଦକ୍ଷିଣ କଲେ । ଅରିନ୍ଦମ ଶୁଣିଲା ସେହି ପବିତ୍ର ଆଶୀର୍ବାଦ - 'ପରମ ପୁରୁଷ ବିଷ୍ଣୁ ତୁମକୁ ରକ୍ଷା କରନ୍ତୁ । ତୁମର ଦେହ ଓ ମନ ଏକ ହେଉ ।' ଏକାଧିକ ଶଂଖର ଧ୍ୱନିରେ ସମଗ୍ର ଚତ୍ୱର ପୂରିଗଲା । ବାହାଘର ସରି ଆସିଲା ।

....ଏ ଦଶବର୍ଷ ତଳର ଘଟଣା । କିନ୍ତୁ ସେ ସମୟର ଟିକିନିଖି ଘଟଣା ଅରିନ୍ଦମ ମନରେ ଛାପି ହୋଇ ରହିଛି । ସେ କିଛି ଭୁଲିନାହିଁ କି ଭୁଲିବା ସମ୍ଭବ ନୁହେଁ । ସବୁ ଯେପରି ସେ ଆଖି ଆଗରେ ଦେଖୁଛି । ବାହାଘର ସରିଗଲା । ସେହି ବିରାଟ ଅଗଣାରେ ଜମିଥିବା ଲୋକମାନେ ମିଳିତ ଭାବରେ ଜୟଧ୍ୱନି କରି ଉଠିଲେ - କଂସର ଜୟଧ୍ୱନି । ଶଙ୍ଖ ଧ୍ୱନି ପରେ ପରେ ନାନା ପ୍ରକାର ବାଦ୍ୟ ବାଜି ଉଠିଲା । ଏ କେବଳ ଗୋଟିଏ ଜାଗାରେ ନୁହେଁ । ଅରିନ୍ଦମର ମନେହେଲା ବିଭିନ୍ନ ଜାଗାରେ ବାଦ୍ୟଧ୍ୱନିର ବ୍ୟବସ୍ଥା କରା ହୋଇଛି । ବାହା ବେଦୀରୁ ଶଙ୍ଖଧ୍ୱନି ଆସିବା ସାଙ୍ଗେ ସାଙ୍ଗେ ସବୁଆଡ଼େ ବାଦ୍ୟର ଧ୍ୱନି ଖେଳିଗଲା - ନଅର ଭିତରେ, ନଅର ବାହାରେ, ସତେ ଯେପରି ସାରା ମଥୁରାରେ, ସବୁଆଡ଼େ- ଉଚ୍ଛୁଳା ବନ୍ଧ ଭାଙ୍ଗି ପାଣି ସବୁଆଡ଼େ ମାଡ଼ିଗଲା ପରି ବିରାଟ ବାଦ୍ୟରୋଳରେ ସାରା ମଥୁରା ପ୍ଲାବିତ ହୋଇଗଲା । ଘୋଷଣା କରି ଦିଆଗଲା ଦେବକୀ ବସୁଦେବଙ୍କର ବିଭାଘର - କଂସର ଶ୍ରେଷ୍ଠ କୀର୍ତ୍ତି ।

ଭାନୁପ୍ରକାଶ ଅରିନ୍ଦମର ବାହାକୁ ଟିପିଦେଲେ - 'ଅରିନ୍ଦମ, ଦେବକୀ ବସୁଦେବଙ୍କୁ ଦେଖ, କଂସକୁ ଦେଖ ।'

ଅରିନ୍ଦମ ଚାହିଁ ଦେଖିଲା, ଉଭୟ ଦେବକୀ ଓ ବସୁଦେବଙ୍କର ମୁହଁ ଲାଜରେ ଓ କ୍ଳାନ୍ତିରେ ରଙ୍ଗା ପଡ଼ିଯାଇଛି । ଝରଣାରୁ ପାଣି ଝରିଲା ପରି ଉଭୟଙ୍କ ମୁହଁରୁ ଆନନ୍ଦ, ଉଲ୍ଲାସ ଓ ସରଳତା ଝରି ପଡୁଛି । ଉଭୟ ଉଭୟଙ୍କର ହାତକୁ ଧରିଛନ୍ତି ଓ ପରିପୂର୍ଣ୍ଣ ବିଶ୍ୱାସରେ କଂସକୁ ଚାହିଁଛନ୍ତି । କଂସର ମୁହଁ ଆହୁରି ସୁନ୍ଦର । ଗୋଟାଏ ଉଜ୍ଜ୍ୱଳ ଦର୍ପଣ ପରି ତା ମୁହଁରୁ ଆଲୋକର କଣା ଛିଟିକି ଆସୁଛି । ବର୍ଷା ପାଣି ଝରଝର ଝରିଲା ପରି ମୁହଁରୁ ଆନନ୍ଦର ଧାରା । 'କଂସ ଆଖିକି ଦେଖ'- ଫୁସଫୁସ କରି ଭାନୁପ୍ରକାଶ କହିଲେ । ଅରିନ୍ଦମ ଚାହିଁ ଦେଖିଲା । ସତେ ତ ! କଂସର ଆଖି ତା ମୁହଁ ସାଙ୍ଗରେ ମିଶୁନି । ଆଖିର ଡୋଳା ସ୍ଥିର, ଅଥଳ ଜଳର ପାଣି ପରି । ସେଥିରେ ଆନନ୍ଦ ନାହିଁ, ଏକ ସ୍ଥିର ନିଷ୍ପତ୍ତିର କଠିନତା । 'ଅଭିନୟ, ବୁଝିପାରୁନା'- ଭାନୁପ୍ରକାଶ ପୁଣି ଫୁସଫୁସ କରି କହିଲେ, 'ସଇତାନ... ସଇତାନ !'

ହଁ, କଂସ ସଇତାନ ନିଶ୍ଚୟ, ଭାନୁପ୍ରକାଶ ଠିକ୍ କହୁଛନ୍ତି । ହେଲେ ବି ସେତେବେଳେ ବିଭାଘରରେ କଂସ ବିଷୟରେ ଅରିନ୍ଦମ ଏତେ ଖରାପ କରି ଭାବି ପାରିଲା ନାହିଁ । ବାହାଘର ତ ହୋଇଗଲା । ବସୁଦେବ ଖୁସି, ଦେବକୀ ଖୁସି । କଂସ ଖୁସି, ଯେମିତି ହେଉ ମହା ଆଡ଼ମ୍ବରରେ ବାହାଘର ହୋଇଗଲା । ବହୁତ ଦିନ ପରେ ମଥୁରା ରାଜ୍ୟରେ ଗୋଟାଏ ବଡ଼ ଉତ୍ସବ ହେଲା । ହଜାର ହଜାର ଲୋକ ଭୋଜି ଖାଇଲେ, ଆନନ୍ଦ କଲେ । କଂସର ଜୟଜୟକାର କରନ୍ତୁ ପଛକେ ସମସ୍ତେ ଖୁସି ହେଲେ । ତା'ର ମନେହେଲା ଭାନୁପ୍ରକାଶ ଟିକେ ଅତିରଂଜନ କରୁଛନ୍ତି । ସଇତାନର ଯାହା ପ୍ରାପ୍ୟ ତାକୁ ଦେବା ଉଚିତ । କଂସ ତା ଢଙ୍ଗରେ ବାହାଘର କରୁଛି । ଉଦ୍ଦେଶ୍ୟ କ'ଣ ଥାଇପାରେ ? ଅରିନ୍ଦମ ଦେଖିଲା ଭାନୁପ୍ରକାଶ ଚୁପଚୁପ ହସୁଛନ୍ତି । ସେମିତି ହସି ହସି ସେ କହିଲେ, 'ବାହାଘର ସରିନାହିଁ, ଅରିନ୍ଦମ । ବାହାଘର ସରୁ । ବରକନ୍ୟା ବିଦା ହୋଇ ଘରକୁ ଯାଆନ୍ତୁ । ତାପରେ ବୁଝିବା କଂସର ଉଦ୍ଦେଶ୍ୟ ସତ୍ କି ଅସତ୍ ।'

ଅରିନ୍ଦମ ମନେ ମନେ ଲଜ୍ଜିତ ହେଲା । ସେ ଭାନୁପ୍ରକାଶଙ୍କର କଥାର ପ୍ରତିବାଦ କରୁ ନ ଥିଲା, ବା ଭାନୁପ୍ରକାଶ ଭୁଲ କଥା କହୁଛନ୍ତି ଏକଥା ବି ସେ କେବେ ହେଲେ ଭାବୁ ନ ଥିଲା । ସେ କେବଳ କଂସର ଆଗ୍ରହ ଓ ଖୁସି ହେବା ଦେଖି ଭାବୁଥିଲା ବୋଧହୁଏ ତା'ର କିଛି କିଛି ସଦ୍‌ବୁଦ୍ଧି ହୋଇଛି ।

ଭାନୁପ୍ରକାଶ ପୁଣି କହିଲେ, 'କିଛି ବ୍ୟସ୍ତ ହେବାର ଦରକାର ନାହିଁ । ବେଦୀ କାମ ସରିଗଲା । ବର୍ତ୍ତମାନ କଂସ ବରକନ୍ୟାଙ୍କୁ ସାଙ୍ଗରେ ନେଇ ସିଂହଦରଜା ପାଖକୁ ଯିବ । ବରକନ୍ୟାଙ୍କୁ ନେବାପାଇଁ ରଥ ସେଠି ପ୍ରସ୍ତୁତ ହୋଇ ରହିଛି । କଂସ ସାଙ୍ଗରେ ଯିବ । ଏତକ ଭଲରେ ଭଲରେ ସରୁ । ପରେ ଅନ୍ୟ କଥା ।'

'କଂସ କଅଣ ଏକା ଏକା ଯିବ ?' ଅରିନ୍ଦମ ପଚାରିଲା ।

'ହଁ, ସେମିତି ତ ଶୁଣାଯାଉଛି । ତେବେ ଠିକ୍ ଏକା ନୁହେଁ । ସାଙ୍ଗରେ ସୈନ୍ୟମାନେ ବି ଯିବେ । ସେମାନେ ବି ପ୍ରସ୍ତୁତ ହୋଇ ରହିଛନ୍ତି ।' କହିଲେ ଭାନୁପ୍ରକାଶ ।

'ସୈନ୍ୟ ? ସୈନ୍ୟମାନେ କଅଣ କରିବେ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ତା ମୁଁ ଜାଣେ ନା ।' ଭାନୁପ୍ରକାଶ କହିଲେ, 'ତେବେ ସେମାନେ ଯିବେ । ଅଧିକାଂଶ ମଗଧ ସୈନ୍ୟ ।'

ଅରିନ୍ଦମକୁ ଖଟ୍‌ଖଟ୍ ଲାଗିଲା । ତା ମନକୁ ଯେପରି ଗୋଟାଏ ଶାନ୍ତି ଶାନ୍ତି ଭାବ ଆସୁଥିଲା ସେ ହଠାତ୍ କଟିଗଲା । ସୈନ୍ୟ, ପୁଣି ମଗଧ ସୈନ୍ୟ କାହିଁକି ?

କୁହାଯାଇପାରେ କଂସ ଭଉଣୀ ଭିଣୋଇଙ୍କୁ ରାଜକୀୟ ସମ୍ମାନ ଦେଖେଇବାକୁ ଚାହୁଁଛି । ସେଥିପାଇଁ ସାଙ୍ଗରେ ସୈନ୍ୟସାମନ୍ତ । କିନ୍ତୁ ଯେ ରାଜା ସେ ତ ସାଙ୍ଗରେ ଯାଉଛନ୍ତି । ଆଉ ଅଧିକ ରାଜକୀୟ ସମ୍ମାନ କଅଣ ? ତା' ଛଡ଼ା ମଗଧର ସୈନ୍ୟ କାହିଁକି ? ମଥୁରାର ସୈନ୍ୟମାନେ ତ ଯଥେଷ୍ଟ । ପ୍ରଦ୍ୟୋତ ଏକଥା ଜାଣନ୍ତି କି ? ସେ ରାଜି ହେଲେ କେମିତି ?

ଭାନୁପ୍ରକାଶ ସେମିତି ଚୁପଚୁପ ହସୁଥାଆନ୍ତି । କହିଲେ, 'ପ୍ରଦ୍ୟୋତର ରାଜି ହେବା ନ ହେବା ଉପରେ କିଛି ନିର୍ଭର କରେ କି ? ଏ ତ କଂସର ନିଷ୍ପତ୍ତି – କାହାକୁ ଅଧିକ ବିଶ୍ୱାସ କରି ହେବ । ସେଇଟାହିଁ ଗୋଳମାଳ କଥା, ଅରିନ୍ଦମ । ବାହାଘର ତ ହେଲା, ବର୍ତ୍ତମାନ ବରକନ୍ୟା ବିଦା ହୋଇ ଘରକୁ ଯିବେ । ସାଙ୍ଗରେ ସେମାନଙ୍କର ବନ୍ଧୁବାନ୍ଧବ ଅଛନ୍ତି । ଘରକୁ ଫେରିବା ଦାୟିତ୍ୱ ସେମାନଙ୍କର । ଏ ତ ଆଉ କୁଆଡ଼େ ଯାଉ ନାହାନ୍ତି । ଏଇ ମଥୁରାର ଗୋଟାଏ ଅଞ୍ଚଳରୁ ଆଉ ଗୋଟାଏ ଅଞ୍ଚଳକୁ ଯିବେ । ସାଙ୍ଗରେ କନ୍ୟାଘର ପକ୍ଷରୁ ହୁଏତ କୌଣସି ଆତ୍ମୀୟ ଯାଇପାରନ୍ତି ବା ଦାସଦାସୀ ଯାଇପାରନ୍ତି । ଏ ତ ସଚରାଚର କଥା । ବସୁଦେବ କିଛି ଜଙ୍ଗଲରେ ପଡ଼ିନାହାନ୍ତି । ସେ ଯାଦବମାନଙ୍କର ସବୁଠାରୁ ବଡ଼ ଗୋଷ୍ଠୀର ମୁଖ୍ୟ । ତାଙ୍କର ଲୋକବାକ ଅଛନ୍ତି, ନିଜର ସୈନ୍ୟସାମନ୍ତ ଅଛନ୍ତି, ରାଜାଙ୍କର ନଅର ପରି ତାଙ୍କର ଘର । ସେ ଧନୀ, ପ୍ରତିପତ୍ତିଶାଳୀ । ଅନ୍ଧକ ଗୋଷ୍ଠୀର ଉଗ୍ରସେନ ରାଜା ହୋଇଥିଲେ, ବର୍ତ୍ତମାନ କଂସ ରାଜା । ସୁର ଗୋଷ୍ଠୀ ପକ୍ଷରୁ ବସୁଦେବ ବି ମଥୁରାର ରାଜା ହୋଇପାରନ୍ତି । ପଦମର୍ଯ୍ୟାଦା ଦୃଷ୍ଟିରୁ ସେ କଂସ ବା ଉଗ୍ରସେନଙ୍କଠାରୁ କିଛି କମ ନୁହନ୍ତି । ତାଙ୍କ ସହିତ ଦେବକୀଙ୍କର ବିଭାଘର ହେବା ଅତ୍ୟନ୍ତ ସ୍ୱାଭାବିକ । ଏଥିରେ କେହି କାହାକୁ ଦୟା କରିବାର କିଛି ନାହିଁ । ବିଭାଘର ପରେ ବସୁଦେବ ନିଜ ସମ୍ମାନରେ ନିଜ ଘରକୁ ଫେରିପାରିବେ । ତେବେ କଂସ ଏତେ ବ୍ୟସ୍ତ କାହିକି । ଶୁଣାଯାଉଛି ସେ ସେମାନଙ୍କର ସାଙ୍ଗରେ ଯିବ । ଶୁଣାଯାଉଛି ସେମାନେ ଉଗ୍ରସେନଙ୍କର ସେଇ ପୁରୁଣା କୋଠୀକୁ ଯିବେ । କାହିଁକି ? ସେଇଟା ହିଁ ଗୋଳମାଳ । କଂସର ଏତେ ବଢ଼ାବଢ଼ି କାହିଁକି ? ଭାବି ଦେଖ । ଏଇଟା ସ୍ୱାଭାବିକ ନୁହେଁ ।'

ଭାନୁପ୍ରକାଶଙ୍କର ଯୁକ୍ତି ଅକାଟ୍ୟ । ତାଙ୍କର ବୁଝିବା କ୍ଷମତା ମଧ୍ୟ ବହୁତ ବେଶି । ତାହା ସତ୍ତ୍ୱେ ଅରିନ୍ଦମ ମନରୁ କିନ୍ତୁ କିନ୍ତୁ ଭାବ ସମ୍ପୂର୍ଣ୍ଣ ଗଲା ନାହିଁ । ଭାବିଲା ହୁଏତ ଏହି ଥରକ ପାଇଁ କଂସର କିଛି ପରିବର୍ତ୍ତନ ହୋଇଛି । ସେ କିନ୍ତୁ ଭାନୁପ୍ରକାଶଙ୍କୁ କିଛି ଉତ୍ତର ଦେଲାନାହିଁ । ତାଙ୍କ ପଛେ ପଛେ ସେ ଅଗଣା ଟପି ବାହାରକୁ ଆସିଲା ।

ସେତେବେଳକୁ ଅନ୍ୟମାନେ ବି ବାହାରକୁ ଆସିବା ଆରମ୍ଭ କଲେଣି । ସମସ୍ତଙ୍କ ମୁହଁରେ ବାହାଘରର ପ୍ରଶଂସା, କଂସର ପ୍ରଶଂସା । ଏପରି ବାହାଘର ମଥୁରାରେ କେବେ ନ ଥିଲା କି ହେବ ନାହିଁ । ଅରିନ୍ଦମ ଲକ୍ଷ୍ୟ କଲା ଅଧିକାଂଶ ମଥୁରାର ଜଣାଶୁଣା ଲୋକ, ମୁଖିଆମାନେ ବି ଅନେକ । ତା ଭିତରୁ ଅନେକ ପ୍ରାୟ ସଞ୍ଜ୍ଞାନରେ ନାହାନ୍ତି । 'ଭୂରି ଭୋଜନ ଓ ଅପର୍ଯ୍ୟାପ୍ତ ପାନୀୟ', କହିଲେ ଭାନୁପ୍ରକାଶ, 'ଅରିନ୍ଦମ, ଏଇ ସୌରଦେବ ଆସୁଛନ୍ତି । ତୁମେ ସୌରଦେବଙ୍କ ସାଙ୍ଗରେ ଆସ, ମୁଁ ସିଂହଦରଜା ପାଖରେ, ରଥ ପାଖରେ ଅଛି ।

ଭାନୁପ୍ରକାଶ ଆଗେଇ ଗଲେ । ସେତେବେଳକୁ ସୈନ୍ୟମାନେ ଆସି ଗଲେଣି । ରକ୍ଷୀମାନେ ବି । ସେମାନେ ଡେରି କରୁଥିବା ଲୋକମାନଙ୍କୁ ପ୍ରାୟ ଠେଲି ଠେଲି ନଅର ବାହାରକୁ ନେଇଗଲେ । ନଅର ଭିତର, ନଅରର ବିଭିନ୍ନ ଅଗଣା ସବୁ ଖାଲି ହୋଇଗଲା । ଅରିନ୍ଦମ ଦେଖିଲା ସୈନ୍ୟମାନଙ୍କ ସାଙ୍ଗରେ ପ୍ରଦ୍ୟୋତ ବି ଅଛନ୍ତି । ସେ ଦୂରରୁ ନମସ୍କାର କଲା । ପ୍ରଦ୍ୟୋତ ନମସ୍କାର ଗ୍ରହଣ କରି ଅରିନ୍ଦମ ପାଖକୁ ଲାଗି ଆସିଲେ, କହିଲେ, 'ଅରିନ୍ଦମ, ବର୍ତ୍ତମାନ କଂସ ଓ ବରକନ୍ୟା ଆସିବେ । ତୁମେ ଏଇ ପାଖକୁ ଗୋଟାଏ କଡ଼କୁ ଛିଡ଼ା ହୁଅ । କଂସ ତୁମ କଥା ମୋତେ ପଚାରୁଥିଲେ । ତୁମେ ଏଇଠି ଛିଡ଼ାହୁଅ ତୁମକୁ ଯେମିତି ସେ ଦେଖିପାରିବେ । ସୌରଦେବ ଆସୁଛନ୍ତି । ସେ ବି ତୁମ ପାଖରେ ଛିଡ଼ା ହୋଇ ଥାଆନ୍ତୁ ।' ପ୍ରଦ୍ୟୋତ ଯାଇ ସୈନ୍ୟମାନଙ୍କୁ କ'ଣ ନିର୍ଦ୍ଦେଶ ଦେଲେ । ସେମାନେ ମଝିରେ ଫାଙ୍କା ରଖି ଦି ଧାଡ଼ି କରି ନିଜର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଛିଡ଼ା ହୋଇ ରହିଲେ । ଦୂରରୁ ବାଦ୍ୟର ଧ୍ୱନି । ଝିଅମାନେ ସୁନା ଥାଳିଆରେ ଫୁଲସବୁ ଧରି ଛିଡ଼ା ହୋଇଥାନ୍ତି । ଅରିନ୍ଦମର ମନେହେଲା ସେ ଯେମିତି ହଠାତ୍ ଗୋପାଙ୍କୁ ଦେଖିଲା । ସତେ ତ ଗୋପା ! ସେ ବି ଗୋଟା ଥାଳିଆରେ ଫୁଲ ଧରି ଛିଡ଼ା ହୋଇଛନ୍ତି । ଆଖିରେ ଆଗ୍ରହ ଓ ସତର୍କତା, ଉଭୟ । ସେ ଅରିନ୍ଦମକୁ ଚାହିଁ ଅଳ୍ପ ହସିଲେ, ମୁହୂର୍ତ୍ତକ ପାଇଁ ମୁହଁ ଝଲସି ଉଠିଲା । ବାସ୍ ସେତିକି । କଂସ ଓ ବରକନ୍ୟା ଆସିବାକୁ ଆରମ୍ଭ କଲେଣି । ଆଗେ ଆଗେ ଦୁଇଜଣ ବ୍ରାହ୍ମଣ ଶ୍ଳୋକ ଆବୃତ୍ତି କରି ଆସୁଛନ୍ତି । ତାଙ୍କ ପଛରେ ବରକନ୍ୟା । ସେମାନଙ୍କ ପଛରେ କଂସ । କଂସ ପଛରେ ଦୁଇ ଦୀର୍ଘକାୟ ତାନ୍ତ୍ରିକ । ପଛରେ ପ୍ରଦ୍ୟୋତ ।

ଅରିନ୍ଦମ ସହିତ ସୌରଦେବ ଆସି ମିଶିଲେ । ଉଭୟ ସୈନ୍ୟ ଧାଡ଼ି ପଛରେ ଗୋଟାଏ ଜାଗାରେ ଚୁପ ହୋଇ ଛିଡ଼ାହେଲେ । ବରକନ୍ୟା ଓ କଂସ ପ୍ରଭୃତି ଦି'ଧାଡ଼ି ସୈନ୍ୟଙ୍କ ମଝିରେ ଆଗେଇଲେ । ବ୍ରାହ୍ମଣମାନେ ମାଙ୍ଗଳିକ ବୋଲୁଥାନ୍ତି, ଶଙ୍ଖଧ୍ୱନି

ହେଉଥାଏ । ଅରିନ୍ଦମର ମନେ ହେଲା କଂସ ଯେପରି ମୁହୂର୍ତ୍ତକ ପାଇଁ ଚାହିଁଦେଲା । ତାପର ମୁହଁ ବୁଲେଇ ଆଗେଇଗଲା । କିନ୍ତୁ ସେ ମୁହୂର୍ତ୍ତକ ପାଇଁ କଂସ ଆଖିରେ ଅରିନ୍ଦମ ଯାହା ଦେଖିଲା ସେ ମନେ ମନେ ଚମକି ଉଠିଲା । ନାଁ, ଚିହ୍ନିବା କଥା ନୁହେଁ । ମନେହେଲା ସେ ଅରିନ୍ଦମକୁ ଚିହ୍ନିଲା । କିନ୍ତୁ ଆଖିରେ ଅନ୍ୟ ଢଙ୍ଗ । ବନ୍ଧୁତ୍ୱ ବା ସଦ୍ୟ ସମାପ୍ତ ହୋଇଥିବା ବାହାଘରର ଆନନ୍ଦ ଓ ପ୍ରଶାନ୍ତି ନୁହେଁ । ଗୋଟାଏ ଦୃଢ଼, କଠିନ ବିଜାତୀୟ ଧାରା, ନିଆଁ ଝୁଲ ପରି ଦି ଆଖିରୁ ଠିକରି ଉଠୁଛି । କିନ୍ତୁ ସେ ମୁହୂର୍ତ୍ତକ ପାଇଁ । ତା'ର ଭୁଲ ହୋଇ ପାରିଥାଏ, ସେ ଭାବିଲା । ସେମାନେ ଚାଲିଗଲେ । ଦୁଇଜଣ ତାନ୍ତ୍ରିକଙ୍କ ହାତରେ ଦୁଇଟି ଛୋଟ ଛୋଟ ପେଟିକା । ସେମାନେ ବି ଗଲେ । ପଛେ ପଛେ ପ୍ରଦ୍ୟୋତ । ସେ ଅରିନ୍ଦମକୁ ଚାହିଁ ସାମାନ୍ୟ ହସିଲା । ସେ ବି ଆଗେଇ ଗଲା । ସବା ପଛରେ ସ୍ତ୍ରୀଲୋକମାନେ । ସେମାନେ ବିଭାଘରର ମଙ୍ଗଳ ଗୀତ ଗାଉଛନ୍ତି, ଶଙ୍ଖ ବଜଉଛନ୍ତି, ହୁଳହୁଳି ଧ୍ୱନି ଦେଉଛନ୍ତି । ସେମାନଙ୍କ ସାଙ୍ଗରେ ଗୋପା ବି ଯାଉଛନ୍ତି । ଅରିନ୍ଦମର ମନେହେଲା ଯେପରି ଗୋପା ତା ପାଖକୁ ଲାଗି ଆସିଲେ । ଶୂନ୍ୟରୁ ଶୁଣିବା ପରି ସେ ଶୁଣିଲା – 'ରଥ ପାଖରେ ରହିବ ।' ଆଖି ମଳି ସେ ଚାହିଁବା ବେଳକୁ ଗୋପା ସ୍ତ୍ରୀ ଲୋକମାନଙ୍କ ସାଙ୍ଗରେ ଆଗେଇ ଗଲେଣି । ସୈନ୍ୟମାନଙ୍କର ଧାଡ଼ି ବି ଭାଙ୍ଗିଯାଉଛି । ସେମାନେ ଏକାଠି ହୋଇ ସିଂହ ଦରଜା ଓ ରଥ ପାଖକୁ ଆଗେଇ ଯାଉଛନ୍ତି । ସୌରଦେବ ଓ ସେ ଆଉ ଅପେକ୍ଷା ନ କରି ସିଂହ ଦରଜା ସେ ପାଖରେ ଥିବା ରଥ ପାଖକୁ ଆଗେଇ ଗଲେ ।

ତାପରେ ଘଟଣା ଦ୍ରୁତ ଗତିରେ ଆଗେଇ ଯାଇଥିଲା । ସିଂହ ଦରଜାଠାରୁ ଅଳ୍ପ ଦୂରରେ ମଣିମୁକ୍ତାରେ ସୁସଜ୍ଜିତ କରି ରଥକୁ ରଖାଯାଇଥିଲା । ରଥରେ ଯୋଚା ଯାଇଥିବା ଦୁଇ ତେଜୀ ଘୋଡ଼ାର ମଧ୍ୟ ଅତ୍ୟନ୍ତ ମୂଲ୍ୟବାନ ପୋଷାକ । ରଥ ସୁନା ରୁପା ଆଭରଣରେ ଉଜ୍ଜ୍ୱଳ ଜ୍ୟୋତିଷ୍କ ପରି ଜଳୁଥାଏ । ଦେଖି ମନେହେବ ଏ ଯେପରି ପୃଥିବୀର ରଥ ନୁହେଁ, ଇନ୍ଦ୍ରଙ୍କର ସଭାରୁ ସିଧା ପୃଥିବୀକୁ ଆସିଛି । ରଥ ଚାରିପାଖରେ ଲୋକ ଜମିଛନ୍ତି । ସମସ୍ତଙ୍କ ମୁହଁରେ ରଥର ପ୍ରଶଂସା, ଆଖିରେ ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ଭାବ । ଅରିନ୍ଦମର ମନେହେଲା ଏପରି ସୁନ୍ଦର ଓ ମୂଲ୍ୟବାନ ରଥ ସେ ଜରାସନ୍ଧଙ୍କର ରାଜ୍ୟରେ ବି ଦେଖି ନାହିଁ । ହୁଏତ କୁରୁମାନଙ୍କର ଥାଇପାରେ । 'ନାଁ ନାହିଁ'– ପାଖରୁ ଭାନୁପ୍ରକାଶଙ୍କର ସ୍ୱର ପରି ସ୍ୱର ଶୁଭିଲା । ଅରିନ୍ଦମ ଚମକି ବୁଲି ପଡ଼ିଲା । ହଁ, ଭାନୁପ୍ରକାଶ, ପଛରେ ସୌରଦେବଙ୍କ ପାଖରେ ଛିଡ଼ା ହୋଇଛନ୍ତି । ସେ କହିଲେ, 'ନାଁ, ଏପରି ରଥ କେଉଁଠି ନାହିଁ, କାରଣ ଏହି ବାହାଘର ପାଇଁ ଏ ରଥକୁ ବିଶେଷ କରି ତିଆରି କରାହୋଇଛି । ସଜାସଜି ଛାଡ଼ିଦିଅ । ଏ ରଥ ଅନ୍ୟାନ୍ୟ ସାଧାରଣ ରଥ

ପରି ତୁମର ମନେ ହେଉଛି ? ଭଲ କରି ଦେଖ ।' ଅରିନ୍ଦମ ଚାହିଁ ଦେଖିଲା । ସତେ ତ ! ପ୍ରଥମ ଦେଖାରେ ମନେହେବ ନାହିଁ କିଛି ତ ନାହିଁ, ସାଧାରଣ ରଥ । କିନ୍ତୁ ନୀରିକ୍ଷଣ କରି ଦେଖିଲେ ମନେହେଉଛି ଠିକ୍ ତ, କିଛି ଏପାଖ ସେପାଖ ହୋଇଛି । ଭାନୁପ୍ରକାଶ ପୁଣି କହିଲେ – 'ଦେଖ, ରଥ ଚଲେଇବା ପାଇଁ ପାଖରେ ସାରଥି ଠିଆ ହୋଇଛି । କିନ୍ତୁ ସାରଥି ଯିବନି । କଂସ ନିଜେ ରଥ ଚଲେଇ ଯିବ ।'

'କଂସ ରଥ ଚଲେଇବ ? ନିଜେ ?' ଅରିନ୍ଦମ ଆଶ୍ଚର୍ଯ୍ୟ ହେଲା ।

'ହଁ, ଦେଖ ।' ଭାନୁପ୍ରକାଶ କହିଲେ ।

କଂସ ଓ ଅନ୍ୟ ସମସ୍ତେ ରଥ ପାଖକୁ ଆସିଲେ । ହୁଳହୁଳି ପଡୁଥାଏ, ଶଙ୍ଖ ଧ୍ୱନି ହେଉଥାଏ, ଶହ ଶହ ଲୋକଙ୍କର କଂସ ଜୟଧ୍ୱନିରେ ଖଣ୍ଡମଣ୍ଡଳ କମ୍ପୁଥାଏ । ଧାଡ଼ି କରି ସମ୍ମାନ ଦେଖାଇବା ପାଇଁ ଛିଡ଼ା ହୋଇଥିବା ସୈନ୍ୟମାନଙ୍କର ଅସ୍ତ୍ରଶସ୍ତ୍ର ଝଣଝଣ କରି ଉଠିଲା । ଆକାଶ ଥରହର କରି ଭେରୀ ତୁରୀ ବାଜି ଉଠିଲା । ଅରିନ୍ଦମ ପାଖରେ ଗୋଟାଏ କଡ଼କୁ ଛିଡ଼ା ହୋଇ ଭାନୁପ୍ରକାଶ ପୁଣି କହିଲେ – 'ଅରିନ୍ଦମ, ଖାଲି ସାମନା ନୁହେଁ, ପଛକୁ ବି ଦେଖ ।' ଅରିନ୍ଦମ ବୁଲିପଡ଼ି ପଛକୁ ଚାହିଁଲା । ଲୋକମାନେ ସମସ୍ତେ ଉଦ୍‌ଗ୍ରୀବ ହୋଇ ରଥ ଆଡ଼କୁ ଚାହିଁ ରହିଛନ୍ତି । କିଏ ଆଗେ ଦେଖିବ, କିଏ ପଛକୁ ରହିଗଲା, ସେଥିପାଇଁ ଲୋକଙ୍କ ଭିତରେ ଠେଲାପେଲା ବି ଚାଲିଛି । ତାଙ୍କ ଭିତରେ ଅନେକ ମୁଖିଆ ବି ଏପାଖ ସେପାଖ ହେଉଛନ୍ତି । କିନ୍ତୁ ସେମାନଙ୍କ ପଛକୁ, ସେମାନଙ୍କ ଭିତରେ ମିଶିକରି ବି, ଏମାନେ ସବୁ କିଏ ? ସୈନ୍ୟ ? ଏକାଧିକ ସୈନ୍ୟ ଚାରିଆଡ଼େ ଖେଦି କରି ରହିଛନ୍ତି । ଖାଲି ମଥୁରାର ନୁହନ୍ତି, ମଗଧର ବେଶି, କିଛି କିଛି ରାକ୍ଷସ ସୈନ୍ୟ ବି । ସମସ୍ତଙ୍କ ହାତରେ ଅସ୍ତ୍ରଶସ୍ତ୍ର । ଯେପରି ସମସ୍ତେ ପ୍ରସ୍ତୁତ ହୋଇ ରହିଛନ୍ତି । ଦରକାର ହେଲେ ତତ୍‌କ୍ଷଣାତ୍ ହାଣକାଟ କରି ସମସ୍ତଙ୍କୁ ଟିକିଟିକି କରି କାଟିଦେବେ ଆଉ ସାମ୍ନାରେ ଧାଡ଼ି କରି ଛିଡ଼ା ହୋଇଥିବା ସୈନ୍ୟମାନଙ୍କ ସହିତ ମିଶିଯାଇ ପାରିବେ । ଖାଲି ସାମାନ୍ୟ ନିର୍ଦ୍ଦେଶ । ସେମିତି ପ୍ରସ୍ତୁତ । 'କ'ଣ ଦେଖିଲ, ଅରିନ୍ଦମ', ସୌରଦେବ ପଚାରିଲେ ।

'ଆଶ୍ଚର୍ଯ୍ୟ, ଏ ତ ବରକନ୍ୟା ବିଦା ହେଉଛନ୍ତି, ଖୁସିବାସିର କଥା ବା କନ୍ୟା ଘର ମନ କଷ୍ଟ କରିବା କଥା । ଏଠି ଏତେ ସୈନ୍ୟସାମନ୍ତ କାହିଁକି ? ପୁଣି ସମସ୍ତେ ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ । କ'ଣ ହାଣକାଟ ହେବ ?' କହିଲା ଅରିନ୍ଦମ ।

'ସେଇତ !' ସୌରଦେବ କହିଲେ,

'ନାଁ, ହାଣକାଟ ହେବନି । ହାଣକାଟର ଭୟ ।' କହିଲେ ଭାନୁପ୍ରକାଶ, 'ଯଦି ଦରକାର ହୁଏ ମୁହୂର୍ତ୍ତକରେ ହାଣକାଟ ହୋଇଯିବ । ସୈନ୍ୟମାନେ ପ୍ରସ୍ତୁତ


Digitized by srujanika@gmail.com

ଅଛନ୍ତି । ତେଣୁ ଚୁପ ରୁହ । ଯା ହେଉଛି ଦେଖ । ଗୋଳମାଳ କରନା । ମଥୁରାର ମାଲିକ ମୁଖିଆମାନେ ନୁହନ୍ତି । ମାଲିକ କଂସ । ତା'ର ଇଚ୍ଛାରେ ହିଁ କାମ ।' ଅରିନ୍ଦମ ଦେହରୁ ଗୋଟା ଝାଳ ବହିଯିବାକୁ ବସିଲାଣି । ଏ କି ବାହାଘର ? କଂସ କ'ଣ କରିବାକୁ ଚାହେଁ ? ତା'ର ବାପାଙ୍କ କଥା ମନେପଡ଼ିଲା - କଂସ ପ୍ରତି ସାବଧାନ ରହ, କଂସକୁ ବିଶ୍ୱାସ କର ନା । ତା ସହିତ ଭାନୁପ୍ରକାଶଙ୍କର ସେହି ଆପ୍ତବାକ୍ୟ ଯାହା ଗୁରୁଦେବ କହନ୍ତି ବୋଲି ସେ ସବୁ ସମୟରେ କହନ୍ତି - କୌଣସି ଶାସକକୁ ବିଶ୍ୱାସ କର ନା । ସବୁ ଶାସକଙ୍କ ପ୍ରକୃତି ଏକ - ଲୋଭ, ମୋହ, କ୍ଷମତା ।

ଆଉ ଗୋଟାଏ କଥା ଭାବି ଅରିନ୍ଦମ ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲା । ଗୋଟାଏ ଏତେ ବଡ଼ ବାହାଘର ହେଲା । ଯାଦବମାନଙ୍କର ସବୁଠାରୁ ବଡ଼ ଗୋଷ୍ଠୀର ମୁଖ୍ୟଙ୍କର ବିଭାଘର । କିନ୍ତୁ ଏ ବିଭାଘରରେ କଂସ କୌଣସି ମୁଖିଆମାନଙ୍କର ସାହାଯ୍ୟ ନେଲା ନାହିଁ । ସବୁ ସେ ଏକା ଏକା କଲା । ତା'ର ଏକମାତ୍ର ସାହାଯ୍ୟ ସେନାପତି ପ୍ରଦ୍ୟୋତ, ଯେ କି ତା ନିଜ ଗୋଷ୍ଠୀର । ବାସ୍ । ସବୁ ମୁଖିଆ ଯେ ତା' ବିରୁଦ୍ଧରେ ତା ନୁହେଁ । କିଛି କିଛି ତାକୁ ସମର୍ଥନ କରନ୍ତି, ତା ପାଖକୁ ଆସନ୍ତି, ସେ ଯା ଜାଣେ ଅନେକ କଂସକୁ ଏ ବିଭାଘରରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ, ଟଙ୍କା ପଇସା ଦବା ପର୍ଯ୍ୟନ୍ତ ବି । ପ୍ରଦ୍ୟୋତ ବି କିଛି ମୁଖିଆଙ୍କର ସାହାଯ୍ୟ ନେଉଥିଲେ । କିନ୍ତୁ ସେ ଭିତରେ ଭିତରେ, ଚୁପଚାପ, କଂସର ଅଜାଣତରେ । ବୁଝି ହେଉଛି କଂସ ସମସ୍ତଙ୍କୁ ଆଡ଼େଇ ଦେଇ ବିଭାଘର କରିବାକୁ ଚାହୁଁଥିଲା । ତା କଲା ବି । ଯେଉଁମାନେ ତାକୁ ପସନ୍ଦ କରନ୍ତିନି ସେମାନଙ୍କୁ ତ ବାଦ ଦେଲା, ଯେଉଁମାନେ ଶୁଭାକାଂକ୍ଷୀ ସେମାନଙ୍କୁ ବି । କିନ୍ତୁ କାହିଁକି ? କାରଣ କ'ଣ ? ଅରିନ୍ଦମ ଭାବିବାକୁ ଚେଷ୍ଟା କଲା । ନିଜର ଦକ୍ଷତାର ପ୍ରଚାର ? ଔଦ୍ଧତ୍ୟ ? ନାଁ ଆଉ କିଛି ? ଦେଖିଲା ମୁଖିଆମାନେ ଭିଡ଼ ଭିତରେ ଏପାଖ ସେପାଖ ହେଉଛନ୍ତି । କେତେକ ରଥ ପାଖରେ, ସିଂହ ଦରଜା ପାଖଆଖ ଅଞ୍ଚଳରେ ତ ଆଉ କେତେକ କିଛି ଦୂରରେ । ସେମାନେ ଯେ ବାହାଘର ବିଷୟରେ ଖୁବ୍ ଆଗ୍ରହୀ ତା ମନେ ହେଉନି । ଅରିନ୍ଦମ ଭାନୁପ୍ରକାଶଙ୍କୁ ଚାହିଁଲା । ଭାନୁପ୍ରକାଶଙ୍କ ନଜର ଆଉ କୁଆଡ଼େ ନାହିଁ, ସମ୍ପୂର୍ଣ୍ଣ ଭାବରେ କଂସ ଉପରେ । ମନେହେଉଛି ସେ ଯେପରି ଭାବୁଛନ୍ତି କିଛି ଅଘଟଣ ଘଟିପାରେ । ଅରିନ୍ଦମ ଭାବିଲା କିଛି ପଚାରିବ । କିନ୍ତୁ କିଛି ନ କହି ସେ ଚୁପ୍‌କରି ଛିଡ଼ା ହେଲା । ଶଙ୍ଖଧ୍ୱନି ହେଉଥାଏ । ଭେରୀ ତୁରୀ ବାଜୁଥାଏ, କଂସର ଜୟଧ୍ୱନି ମଧ ଜୁଆର ପରି ଉଠୁଥାଏ ପଡୁଥାଏ । ବରକନ୍ୟା ଓ ତାଙ୍କ ପଛେ ପଛେ କଂସ ରଥ ଉପରକୁ ଉଠିଲେ ।

ତାପର... ତାପର ଘଟଣାକ୍ରମ ହଠାତ୍ ବଦଳି ଗଲା । ସେକଥା ଏତେଦିନ


Digitized by srujanika@gmail.com

ପରେ ଭାବିଲେ ବି ଅରିନ୍ଦମର ଦେହ ଶୀତେଇ ଉଠୁଚି । ସେମାନଙ୍କର ସବୁ ଚେଷ୍ଟା, ସବୁ ଚିନ୍ତା, ଭାନୁପ୍ରକାଶଙ୍କର ସବୁ ବୁଦ୍ଧି... ସବୁ... ସବୁ... ଭାସିଗଲା । ଘଟଣା ଯେ ଏପରି କ୍ରମ ନେବ ସେମାନେ କେହି ଭାବି ନ ଥିଲେ । କେବେ ବି କଳ୍ପନା କରି ନ ଥିଲେ । ଦେବକୀ ଓ ବସୁଦେବଙ୍କୁ କଂସ ପାଛୋଟି ନେଲା ପରି ରଥ ଉପରକୁ ପାଛୋଟି ନେଲା । ରଥ ଭିତରେ ଦୁଇଟି ସୁନ୍ଦର, ସୁସଜ୍ଜିତ ଆସନରେ ଉଭୟ ବରକନ୍ୟା ବସିଲେ । ବସୁଦେବ ଓ ଦେବକୀ ଉଭୟଙ୍କର ସୁନ୍ଦର, ସୁଗଠିତ ମୁହଁ ଗଭୀର ଆନନ୍ଦର ଆଲୋକରେ ଝଲଝଲ କରୁଥାଏ । କପାଳରେ କୁଙ୍କୁମ, ଗଳାରେ ପ୍ରସ୍ଫୁଟିତ ପୁଷ୍ପହାର ଓ ରତ୍ନହାର, ଦେହରେ ସୁନା ରୁପା ଜରି ଖଂଜା ଯାଇଥିବା ଅତ୍ୟନ୍ତ ମୂଲ୍ୟବାନ ପୋଷାକ, ପାଦରେ ସୁଦୃଶ୍ୟ ପାଣ୍ଡୋଇ । ଉଭୟଙ୍କୁ ଦେଖିଲେ ମନେହେବ ଏ ଯେପରି ସାଧାରଣ ବରକନ୍ୟା ନୁହନ୍ତି । ଏପରିକି ଏମାନେ କୌଣସି ରାଜକୀୟ ବରକନ୍ୟାଙ୍କ ଠାରୁ ବହୁ ଉର୍ଦ୍ଧ୍ୱରେ । ସତେ ଯେପରି ସ୍ୱର୍ଗରୁ ଦୁଇ ଶାପଗ୍ରସ୍ତ ଦେବଦେବୀ ମର୍ତ୍ତ୍ୟକୁ ଓହ୍ଲେଇ ଆସିଛନ୍ତି । ସ୍ୱର୍ଗରେ ଥିବା ତାଙ୍କର ଅପୂର୍ଣ୍ଣ ଆଶା ଏଇ ମର୍ତ୍ତ୍ୟରେ ପୂର୍ଣ୍ଣ ହେବାକୁ ଯାଉଛି – ସେମାନଙ୍କ ଦେହରୁ ପ୍ରାଣମୟ ସୁଗନ୍ଧ ବିତରିତ ହେଉଛି, ସେମାନଙ୍କୁ ବେଷ୍ଟନ କରି ଜ୍ୟୋତିଚକ୍ରର ବଳୟ, ସେଠାରେ ଦୁଃଖ ନାହିଁ, ଗଭୀର ଆନନ୍ଦର ସ୍ରୋତ । କିଛି ସମୟ ଧରି ଅରିନ୍ଦମର ଦେହ ପ୍ରାଣ ସ୍ତବ୍ଧ ହୋଇଗଲା । ଏ ଏକ ଅନାସ୍ୱାଦିତ, ଅଭାବିତ, ଅକଳ୍ପିତ ମୁହୂର୍ତ୍ତ । ସେ ଆଗରେ କାହାକୁ ଦେଖୁଛି ? ଏମାନେ ମର୍ତ୍ତ୍ୟର ଲୋକ ନୁହନ୍ତି । ଏମାନଙ୍କ ଆଗେ ଆଗେ ଭବିଷ୍ୟତର ତୀବ୍ର ସ୍ରୋତ – ଅନିଶ୍ଚିତ, ଅନିର୍ଦ୍ଦିଷ୍ଟ, କିନ୍ତୁ ତୀବ୍ର... ଅସଂଖ୍ୟ ଅସଂଖ୍ୟ ଆତ୍ମା ଭାସି ଚାଲିଛନ୍ତି, ଅସଂଖ୍ୟ ଜ୍ୟୋତିଷ୍କ ଉଦିତ ହୋଇ ବିଲୀୟମାନ ହେଉଛନ୍ତି । ଅରିନ୍ଦମର ମନେହେଲା ସ୍ଥାନ ନାହିଁ, ସମୟ ନାହିଁ, ସବୁ ସ୍ଥାନ ସବୁ ସମୟ ଏକ, କେଉଁ ଅପରିଚିତ ସମୁଦ୍ରରେ ସେ ଭାସି ଭାସି ଚାଲିଛି ଆଉ ସେ ସମୁଦ୍ର ସ୍ରୋତର ଆରମ୍ଭ ଦେବକୀ ଓ ବସୁଦେବ । କା'ର ହାତର ଉତ୍ତପ୍ତ ସ୍ପର୍ଶରେ ତା'ର ଧ୍ୟାନ ଭାଙ୍ଗିଗଲା । ଭାନୁପ୍ରକାଶ । ଭାନୁପ୍ରକାଶ କହିଲେ, 'ଅରିନ୍ଦମ, ଦେବକୀ ବସୁଦେବଙ୍କ ବିଷୟରେ ଏତେ କ'ଣ ଭାବୁଛ ? କଂସକୁ ଦେଖ ।'

ସତେ କଂସକୁ ଦେଖିବା କଥା । ଅରିନ୍ଦମ ଯେଉଁ କଂସକୁ ପିଲାଦିନୁ ଦେଖି ଆସିଛି, ଯେଉଁ କଂସକୁ ସେ ମଗଧରେ ଦେଖିଥିଲା, ଏ କଂସ ତା ଠାରୁ ଅଲଗା । ସେତେବେଳେ ଯେଉଁ ଚଢ଼େଇ ଖଣ୍ଡିଉଡ଼ା ଦେଉଥିଲା ବା ଉଡ଼ିବାକୁ ଆସ୍ତେ ଆସ୍ତେ ରପ୍ତ କରୁଥିଲା ଏ ସେ ଚଢ଼େଇ ନୁହେଁ । ଏ ପୂର୍ଣ୍ଣ ବଳଶାଳୀ ଇଗଲ ପକ୍ଷୀ, ଯାର ପ୍ରତାପରେ ଅର୍ଦ୍ଧ ଆକାଶ ପ୍ରକମ୍ପିତ ଓ ପଶୁପକ୍ଷୀକୁଳ ଭୟ ଓ ଆଶଙ୍କାରେ ପୀଡ଼ିତ । ବା


Digitized by srujanika@gmail.com

ପୂର୍ଣ୍ଣ ବଳଶାଳୀ ଶାର୍ଦ୍ଦୁଳ ଯାର ଭୟରେ ବନସ୍ଥଳୀ ଭୀତତ୍ରସ୍ତ । କଂସର ପରିଧାନରେ ବହୁମୂଲ୍ୟ ପୋଷାକ, ମଥାରେ ସୁବର୍ଣ୍ଣର ମୁକୁଟ, ଦେହ ବିଭିନ୍ନ ଅଳଂକାରରେ ଭୂଷିତ ଓ ଦୃଢ଼ କମରରୁ ଦୀର୍ଘ ଖଡ୍ଗ ଲମ୍ବମାନ ହୋଇ ରହିଛି ।

'କଂସ ଆଖିକୁ ଦେଖ', ଭାନୁପ୍ରକାଶ ଫୁସଫୁସ କରି କହିଲେ । ସତେ ତ ! କଂସର ଦୁଇ ରକ୍ତଚକ୍ଷୁ ବାତଚକ୍ର ପରି ଘୂରି ବୁଲୁଥାଏ । କେତେବେଳେ ଦେବକୀ ବସୁଦେବଙ୍କ ଉପରେ ସ୍ଥିର ହୋଇ ରହୁଥାଏ ତ, କେତେବେଳେ ଚାରିପାଖରେ, ପାଖରେ ଦୂରରେ, ଜମିଥିବା ଲୋକମାନଙ୍କ ଉପରେ । ଆଖିରୁ ଯାହା ସଞ୍ଚାରିତ ହେଉଥାଏ ସେ ଔଦ୍ଧତ୍ୟ ଓ ତାସଲ୍ୟ । ଦୁଇ ଓଠ ପରସ୍ପର ଉପରେ ଟାଣ ହୋଇ ରହିଛି । ଯେପରି ଯାହା ହେବା କଥା ସେଇଟା ହିଁ ହେବ । ସେ ନିଷ୍ପତ୍ତି ହୋଇ ଯାଇଛି । ଅରିନ୍ଦମ ମନେ ମନେ ଭୟ ପାଇଗଲା । ଏ ଭଉଣୀକୁ ଭଲ ପାଉଥିବା, ଭଉଣୀ ବିଭାଘରରେ ଖୁସି ଥିବା, କୌଣସି ଉଦାର ହୃଦୟ ଭାଇର ସୂଚନା ନୁହେଁ । ଏ ଶଠ, ପ୍ରବଞ୍ଚକର ଚେହେରା, ଯାହାକୁ ବିଶ୍ୱାସ କରିବା ସମ୍ଭବ ନୁହେଁ ।

ଅରିନ୍ଦମ ଦେଖିଲା ବସୁଦେବ ପ୍ରଭୃତି ଯିବା ସୁସଜ୍ଜିତ ରଥ ପଛରେ ଆଉ ଗୋଟିଏ ରଥ ଆସି ରହିଲା । ଆକାରରେ ପୂର୍ବ ରଥ ଠାରୁ ଛୋଟ । ସାଧାରଣ ଭାବରେ ସଜାସଜି ହୋଇଛି, ଆଗ ରଥ ପରି ନୁହେଁ । ସେ ବୁଝିପାରିଲା ନାହିଁ, ଏ ଦ୍ୱିତୀୟ ରଥର ଦରକାର କ'ଣ । ଭାନୁପ୍ରକାଶ ସେ ଦ୍ୱିତୀୟ ରଥକୁ ନୀରିକ୍ଷଣ କରି ଦେଖୁଥିଲେ । ସେ ସୌରଦେବଙ୍କୁ ପଚାରିଲେ, 'ସୌରଦେବ, ଏ ଦ୍ୱିତୀୟ ରଥ କାହିଁକି ?' ସୌରଦେବ କହିଲେ 'ମୁଁ ବି ସେଇଆ ଭାବୁଛି । ବୋଧହୁଏ ଜିନିଷ ପତ୍ର ଯିବ ।'

ଉତ୍ତର ପାଇଁ ବେଶି ସମୟ ଅପେକ୍ଷା କରିବାକୁ ହେଲାନି । ଦ୍ୱିତୀୟ ରଥ ଆକାରରେ ଛୋଟ ହେଲେ ବି ସୁଗଠିତ । ଏଥିରେ ବି ଆଗ ରଥପରି ଦୁଇଟି ତେଜୀ ଘୋଡ଼ା ଯୋଚା ହୋଇଛନ୍ତି ଓ ସାରଥିର ପୋଷାକ ପିନ୍ଧି ଓ ମୁଣ୍ଡରେ ପଗଡ଼ି ଭିଡ଼ି ଜଣେ ସାରଥି ଘୋଡ଼ାମାନଙ୍କ ପଛକୁ ଛିଡ଼ା ହୋଇଛି । ବୟସ ବେଶି ହେବନି । ରଥ ଉପରକୁ ପ୍ରଥମେ ବରକନ୍ୟାଙ୍କ ବିବାହ ବେଦୀରୁ ଆସିଥିବା ଦୁଇ ତାନ୍ତ୍ରିକ ଉଠି ରଥର ଭିତର ଆସନରେ ବସିଲେ । ତାଙ୍କ ପଛେ ପଛେ ଦୁଇ ବ୍ରାହ୍ମଣ ଉଠି ସାମ୍ନା ଆସନରେ ବସିଲେ । କିଛି ଜିନିଷ ବି ଆସି ରଥରେ ତାନ୍ତ୍ରିକମାନେ ବସିଥିବା ଜାଗା ପାଖରେ ରହିଲା । ସବା ପଛରେ ପ୍ରଦ୍ୟୋତ ଆସିଲେ । ସେ ପ୍ରଥମେ ତାଙ୍କ ସୈନ୍ୟମାନଙ୍କୁ କ'ଣ ନିର୍ଦ୍ଦେଶ ଦେଲେ । ତା ପରେ ରଥ ଉପରକୁ ଉଠି ଆସିଲେ ।

ପ୍ରଥମ ରଥରେ ବସୁଦେବ ଓ ଦେବକୀ ସେମାନଙ୍କର ଆସନରେ


Digitized by srujanika@gmail.com

ବସିଗଲେଣି । ହସ ହସ ମୁହଁ । କଂସର ମୁହଁ ବି ହସହସ । ସେ ବସୁଦେବ ଦେବକୀଙ୍କ ଆଗରେ ଛିଡ଼ା ହୋଇ ସେମାନଙ୍କୁ କ'ଣ କହୁଛି । ବସୁଦେବ ଉତ୍ତର ଦେଉଛନ୍ତି । ମନେହେଉଛି ସେ କଂସର କଥାରେ ରାଜି ହେଉନାହାନ୍ତି । କଂସ ପୁଣି କହୁଚି, ବ୍ସୁଦେବ ପୁଣି ନାରାଜ ହେଉଛନ୍ତି । ତାଙ୍କ ସାଙ୍ଗରେ ଦେବକୀ ବି, ସେ କଂସର ହାତ ଧରି କ'ଣ ଅନୁରୋଧ କଲେ । ନିଜ ପାଖରେ ଜାଗା ଛାଡ଼ିଦେଇ କଂସକୁ ବସିବାକୁ ଅନୁରୋଧ କରୁଛନ୍ତି ।

'ସାରଥି ନୁହେଁ, କଂସ ନିଜେ ବସୁଦେବ ଦେବକୀଙ୍କ ରଥ ଚଲାଇ ଯିବାକୁ ଚାହୁଁଛି ।' ଭାନୁପ୍ରକାଶ କହିଲେ ।

'ଏ ତ ଠିକ୍ ହେବନି', ସୌରଦେବ କହିଲେ, 'କଂସ ବସୁଦେବ ଦେବକୀଙ୍କ ସାଙ୍ଗରେ ଯାଇ ପାରନ୍ତି । କିନ୍ତୁ ସେ ସେମାନଙ୍କ ପାଖରେ ବସିକରି ଯିବା ଉଚିତ । ନାଁ, ନାଁ, ରାଜା କଂସ ଏଇ ଘଟଣାରେ ସାରଥି ହେବା ଠିକ୍ ନୁହେଁ ।'

'ବସୁଦେବ ଦେବକୀ ସେଇକଥା କହୁଛନ୍ତି', କହିଲେ ଭାନୁପ୍ରକାଶ, 'ସେମାନେ ବି ଚାହୁଁ ନାହାନ୍ତି କଂସ ସାରଥି ଭାବରେ ସେମାନଙ୍କର ରଥ ଚଲେଇ ଯାଉ ।'

ଅରିନ୍ଦମ ବି ଭାବିଲା ଏ ଠିକ୍ କଥା । କଂସ ବସୁଦେବ ଦେବକୀଙ୍କ ପାଖରେ ବସୁ । ସେ କାହିଁକି ସାରଥି ହେବ ? ସେଥିପାଇଁ ତ ଅନ୍ୟ ଲୋକ ଅଛି । ଯାର କାମ ରଥ ବାହିବା । ହଠାତ୍ ଅରିନ୍ଦମ ଭାବିଲା ସେ ଯାଇ କଂସକୁ ଏକଥା କହିବା ଦରକାର । ଏ ଠିକ୍ ନୁହେଁ । 'ତୁମର କିଛି କହିବା ଦରକାର ନାହିଁ', ସାମାନ୍ୟ ଥଟ୍ଟା କଲାପରି ଭାନୁପ୍ରକାଶ କହିଲେ, 'ଏ କାମ ଯେଉଁମାନଙ୍କର ସେମାନେ ଭାବନ୍ତୁ । ତୁମେ କ'ଣ ଭାବୁଛ ଅରିନ୍ଦମ, କଂସ ବିନା ଉଦ୍ଦେଶ୍ୟରେ ରଥର ସାରଥି ହେବାକୁ ଚାହୁଁଛି । ନାଁ, ଉଦ୍ଦେଶ୍ୟ ନିଶ୍ଚୟ ଅଛି । ଏଠି ଏତେ ଲୋକ ଜମିଛନ୍ତି । ସମସ୍ତେ କହିବେ ଦେଖ କଂସ ତାଙ୍କ ଭଉଣୀକୁ କେତେ ସ୍ନେହ କରନ୍ତି । ତାଙ୍କର ହୃଦୟଟା ଭଲ, ଆମେ ତାଙ୍କୁ ଅଯଥା ଦୋଷ ଦେଉଛେ । ସଇତାନର ଗୋଟାଏ ରୂପ ନୁହେଁ, ଅନେକ ରୂପ । ଦେଖ, ତା' ପରେ କ'ଣ ହେଉଛି ।'

'ଏ ଠିକ୍ କଥା', ସୌରଦେବ ଯୋଗ କଲେ, 'ଆମର ବ୍ୟସ୍ତ ହେବାର କିଛି ନାହିଁ, ଅରିନ୍ଦମ । ତୁମେ ଭାବୁଛ ତୁମେ କଂସର ଶୁଭଚିନ୍ତକ । ନାଁ ସଇତାନର ଶୁଭଚିନ୍ତକ କେହି ନ ଥାନ୍ତି । ସଇତାନର ଚିନ୍ତାରେ ଶୁଭ ଚିନ୍ତା ପରି ବସ୍ତୁ କିଛି ନ ଥାଏ । ତା ଛଡ଼ା, ତା ପାଖରେ ଆମ କଥାର କି ମୂଲ୍ୟ ଅଛି ? କିଛି ନାହିଁ । ଯାହା ହେବା କଥା ସେ ଆଗରୁ ଠିକ୍ ହୋଇଛି । ସେହିପରି ହିଁ ହେବ ।'


Digitized by srujanika@gmail.com

ଅରିନ୍ଦମ ମନେ ମନେ ଲଜ୍ଜିତ ହେଲା । କଂସକୁ ଉପରେ ପଡ଼ି ସାହାଯ୍ୟ କରିବା ଦୂରର କଥା, ତାକୁ ସାହାଯ୍ୟ କରିବା କଥା ଭାବିବାହିଁ ଭୁଲ । ବାପାଙ୍କର କଥା ତା'ର ମନେ ପଡ଼ିଲା । ବାପା ବହୁତ ଦିନ ତଳେ ଯେତେବେଳେ ଉଗ୍ରସେନ ରାଜା ଓ କଂସ ଯୁବରାଜା, ସେହି ଗିରିବ୍ରଜ ଯିବା ଆଗରୁ, ତାକୁ ସାବଧାନ କରି ଦେଇଥିଲେ । କହିଥିଲେ କଂସ ସାଙ୍ଗରେ ତୋର ଯିବାକୁ ଇଚ୍ଛା ଅଛି, ଯା । କିନ୍ତୁ କଂସ ସାଙ୍ଗରେ ମିଶାମିଶି ଭଲ ନୁହେଁ । ସେ ଠିକଣା ଲୋକ ନୁହେଁ । ସେ ବାପାଙ୍କୁ କହିଥିଲା - କାହିଁକି ? କଂସର ବୟସ କମ । ବର୍ତ୍ତମାନ ଯାହା ଅଛି ସେ କଅଣ ସବୁଦିନେ ସେଇଆ ରହିବ ? ହଁ ରହିବ – ବାପା କହିଥିଲେ । ସେଇଟା ହିଁ ପ୍ରାରବ୍ଧ । ତୁ ସାବଧାନରେ ରହ ।

ଆଜି ସେ ବୁଝୁଛି ବାପା କେତେ ଠିକ୍ । କଂସ ରାଜା ହେଲା । କିନ୍ତୁ ସଇତାନି ଗୁଣ ପୂରା ମାତ୍ରାରେ ରହିଗଲା ।

'ଭାନୁପ୍ରକାଶ', ସୌରଦେବ କହିଲେ, 'ଗୋଟିଏ କଥା ମୁଁ ବୁଝିପାରୁନି । ଗୋଟାଏ ରଥରେ ତ ଦେବକୀ ବସୁଦେବ ଘରକୁ ଯିବେ । ଆଉ ଗୋଟାଏ ରଥ କାହିଁକି ? ସେଥିରେ ପୁଣି ସେ ଦୁଇଜଣ ତାନ୍ତ୍ରିକ । ଦେବକୀ ବସୁଦେବ ବିଦାହେବା ସାଙ୍ଗରେ ସେମାନଙ୍କର ସମ୍ପର୍କ କ'ଣ । ସେମାନେ ପୁଣି ମଥୁରାର ଲୋକ ନୁହନ୍ତି, ବାହାରର ଲୋକ । ବ୍ରାହ୍ମଣ ଦି ଜଣଙ୍କ କଥା ବୁଝିଲି । ସେମାନେ ଶାସ୍ତ୍ରବିତ୍, ଶ୍ଳୋକ ବୋଲିବେ । ବା ପ୍ରଦ୍ୟୋତ, ସେ ସେନାପତି । ତା'ର ଦାୟିତ୍ୱ ଅଛି । ସେ ସାଙ୍ଗରେ ଯିବାର ଗୋଟାଏ ହୁଏତ ଯୁକ୍ତି ଅଛି । କିନ୍ତୁ ଏମାନେ ? ଏମାନଙ୍କର କାମ କ'ଣ ?'

ଭାନୁପ୍ରକାଶ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେନି, ଅରିନ୍ଦମର ମନେହେଲା ସେ କ'ଣ ଭାବୁଛନ୍ତି । ସେ କହିଲେ, 'ଆପଣଙ୍କ କଥା ବି ମୁଁ ଭାବୁଛି, ସୌରଦେବ । ସେମାନଙ୍କର କାମ କ'ଣ । ବିଶେଷ କରି ଏ ବିଦା ହେବା ବେଳେ ? ବ୍ରାହ୍ମଣମାନଙ୍କର କାମ ବା ପ୍ରଦ୍ୟୋତର କାମ ତ ସେମାନେ କରିପାରିବେନି । ତେବେ କ'ଣ କରିବେ ? ମୋର ମନେହେଉଛି କଂସ ହୁଏତ କିଛି ମୂଲ୍ୟବାନ ବସ୍ତୁ ଦେବକୀ ବସୁଦେବଙ୍କୁ ଦେଉଛି ଓ ସେମାନେ ସେହି ବସ୍ତୁର ଦାୟିତ୍ୱରେ ଯାଉଛନ୍ତି । ବସୁଦେବଙ୍କ ଘରେ ସେସବୁ ରଖି ବୁଝାବୁଝି କରିଦେଇ ଫେରିବେ ।'

'ମୂଲ୍ୟବାନ ବସ୍ତୁ ? କି ମୂଲ୍ୟବାନ ବସ୍ତୁ ?' ସୌରଦେବ ଆଶ୍ଚର୍ଯ୍ୟ ହୋଇ ପଚାରିଲେ । 'ତା ମୁଁ ଜାଣେନା' 'କହିଲେ ଭାନୁପ୍ରକାଶ, 'ମୁଁ ଭାବୁଛି । ହୁଏତ ଅନ୍ୟ କିଛି ଉଦ୍ଦେଶ୍ୟ ଥାଇପାରେ । ସେମାନେ କାହିଁକି ଆସିଛନ୍ତି, କ'ଣ କରୁଛନ୍ତି, କଂସ ସାଙ୍ଗରେ ତାଙ୍କର ସମ୍ପର୍କ କ'ଣ ମୁଁ ଜାଣିବାକୁ ଚେଷ୍ଟା କରିଛି । କିନ୍ତୁ କିଛି


Digitized by srujanika@gmail.com

ଜାଣିପାରିନି । ମୁଁ ଯେତେ ଭାବିଛି କୂଳ କିନାରା କିଛି ପାଇନି । ଗୋପା ବି କିଛି ଖବର ପାଇପାରି ନାହାନ୍ତି । କାହାକୁ କିଛି ଜଣା ନାହିଁ । ତେବେ ମୋର ମନେହେଉଛି ଆଜି ବୋଧେ ଉତ୍ତର ମିଳିଯିବ ।'

ଭାନୁପ୍ରକାଶ ଠିକ୍ କହିଥିଲେ, ସେହିଦିନ ହିଁ ଉତ୍ତର ମିଳିଗଲା । ସେତେବେଳକୁ ଦେବକୀ ବସୁଦେବଙ୍କ ରଥ ଯିବା ପାଇଁ ପ୍ରାୟ ପ୍ରସ୍ତୁତ ହୋଇ ଗଲାଣି । କଂସର ନିର୍ଦ୍ଦେଶରେ ସାରଥି ରଥ ସାମ୍ନାରୁ ଯାଇଁ ରଥ ପଛ ପାଖରେ ବସିଲାଣି । କଂସ ସାମ୍ନାକୁ ଯାଇ ସାରଥି ଜାଗାରେ ଛିଡ଼ା ହେଲାଣି । କଂସର ମୁହଁ ହସ ହସ । ଯେମିତି ସେ ବହୁତ ଖୁସି । ରଥ ଆଗରୁ ଲୋକମାନେ ଆଡ଼େଇ ଗଲେ । ଏଇ ରଥ ଚାଲିବ । କିନ୍ତୁ ହଠାତ୍ କଅଣ ଭାବି କଂସ ରଥରୁ ଓହ୍ଲେଇ ଗଲା, ପଛ ରଥ ପାଖକୁ ଯାଇ ପ୍ରଦ୍ୟୋତକୁ କ'ଣ ନିର୍ଦ୍ଦେଶ ଦେଲା, ଓ ସାଙ୍ଗେ ସାଙ୍ଗେ ଫେରି ଆସିଲା । ସମସ୍ତେ ଦେଖୁଛନ୍ତି । କଂସ ରଥ ଉପରକୁ ଉଠିଲା । ହାତରେ ଘୋଡ଼ାଙ୍କର ଲଗାମ ଧରିଲା, ମୁହଁ ବୁଲେଇ ହସି ହସି ଦେବକୀଙ୍କୁ କଅଣ କହିଲା । ପୁଣି ମୁହଁ ବୁଲେଇ ସାମ୍ନାକୁ ଚାହିଁଲା । ହାତରେ ଘୋଡ଼ାଙ୍କର ଲଗାମ ଟାଣିଦେଲା । ଘୋଡ଼ାମାନେ ଆଗକୁ ଯିବାପାଇଁ ଗୋଡ଼ ଟେକିଛନ୍ତି...

ଠିକ୍ ସେତିକିବେଳେ... ହଠାତ୍... ସବୁ ଗୋଳମାଳ ହୋଇଗଲା ।

ସତେ ଯେପରି ସବୁ ଆଲୁଅ ଲିଭିଗଲା... ସବୁ ଶବ୍ଦ ସ୍ତବ୍ଧ ହୋଇଗଲା...

ଆକାଶ ପୃଥିବୀ ନିଶ୍ଚିହ୍ନ ହୋଇଗଲା... ଅନ୍ଧକାର... ଅନ୍ଧକାର...

ଏତେଦିନ ପରେ ବି ସେକଥା ଚିନ୍ତା କରି ଥଣ୍ଡା ପବନରେ ଦେହ କମ୍ପିଲା ପରି ଅରିନ୍ଦମର ଦେହ କମ୍ପି ଉଠିଲା । ନାଁ, ସେମାନେ କେବେ ଧାରଣା କରି ନ ଥିଲେ ଏମିତି ଘଟିବ । ପ୍ରଚଣ୍ଡ ଝଡ଼ ପରି ମୁହୂର୍ତ୍ତକରେ ସବୁ ତଛନଛ ହୋଇଗଲା ।

ହଁ, ଗୋଟାଏ ମୁହୂର୍ତ୍ତ... କଂସ ଲଗାମ ଟାଣି ଧରିଛି, ଘୋଡ଼ାମାନେ ଯିବାପାଇଁ ଗୋଡ଼ ଟେକିଛନ୍ତି, ଶହ ଶହ କଣ୍ଠରୁ କଂସର ଜୟଧ୍ୱନି ଉଠି ଆସୁଛି... ହଠାତ୍ ମେଘର ଗୁରୁ ଗୁରୁ ଧ୍ୱନି ପରି ଗୋଟାଏ ଶବ୍ଦ ଦୂରରୁ ଭାସି ଆସିଲା । ଏ ଶବ୍ଦ କଅଣ ? ଯେଉଁମାନେ ଶୁଣିଲେ ସେମାନେ ଆଶ୍ଚର୍ଯ୍ୟ ହୋଇ ଆକାଶକୁ ଚାହିଁଲେ । ଅରିନ୍ଦମ, ଭାନୁପ୍ରକାଶ, ସୌରଦେବ, ଏମାନେ ବି । ଆକାଶରେ ତ ମେଘ ନାହିଁ, ଆକାଶ ପରିଷ୍କାର, ଆଲୋକରେ ଝଲମଲ କରୁଛି । ତେବେ ମେଘ ଡାକିଲା ପରି ଏ ଶବ୍ଦ ! ଶବ୍ଦ ବଢ଼ିଲା । ନ ଶୁଣିବା ଲୋକ ବି ଶବ୍ଦକୁ ଶୁଣିପାରିଲେ । ଚାରିପାଖରେ, ଲୋକଙ୍କ ମୁହଁରେ କୌତୂହଳ, ଉଦ୍‌ବେଗ, ଆଶଂକା ବି । ଅରିନ୍ଦମ ବି ଆତଙ୍କିତ ହୋଇ ଉଠିଲା । କ'ଣ ଏ ?... ଶବ୍ଦ କମି ଆସିଲା । ତା'ପରେ ମନେହେଲା କିଏ ଯେପରି

କ'ଣ କହୁଛି । ଶୂନ୍ୟରୁ ଶବ୍ଦ ଆସୁଛି । ପ୍ରଥମେ ଆସ୍ତେ ଆସ୍ତେ, ପରେ ବେଶ୍ ସ୍ପଷ୍ଟ ଭାବରେ । ଉପର କି ତଳ, ଆଗରୁ କି ପଛରୁ, ଠିକ୍ କେଉଁଠୁ ଆସୁଛି ବୁଝି ହେଉନି । କିନ୍ତୁ ଆସୁଛି । ସମସ୍ତେ ଶୁଣିଲେ... ଶୂନ୍ୟ ଶବ୍ଦ କହୁଛି... "କଂସ, ସାବଧାନ ! ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ତୋତେ ହତ୍ୟା କରିବ"... ପୁଣି ଥରେ ସେହି କଥା... ପୁଣି ଥରେ । କଥା ଆଉ ଶୁଣାଗଲା ନାହିଁ । ଆସ୍ତେ ଆସ୍ତେ କ୍ଷୀଣତର ହୋଇ ଚାରିପାଖର ଆଲୁଅରେ ମିଳେଇ ଗଲା ।

କେବଳ ରଥରେ ଥିବା ଲୋକେ, ବା ରଥ ପାଖରେ ଥିବା ଲୋକେ ଯେ ଶୁଣିଲେ ତା ନୁହେଁ, ଚାରିପାଖରେ ଜମିଥିବା ସମସ୍ତେ ଶୁଣିଲେ । କେତେ ମୁହୂର୍ତ୍ତ ସମସ୍ତେ ସ୍ତବ୍ଧ ହୋଇଗଲେ । ସମସ୍ତେ ଚୁପ, ପତ୍ରଟାଏ ପଡ଼ିଲେ ବି ଶବ୍ଦ ହେବ । ହଠାତ୍ କ'ଣ ଘଟୁ ଘଟୁ କଅଣ ଘଟିଗଲା । ଏ ଶୂନ୍ୟ ଶବ୍ଦ କାହାର, କେଉଁଠୁ ଆସିଲା ? ତା ପରେ... ଜଣେ କିଏ ହଠାତ୍ ପାଟିକଲା – 'ଏ ଶୂନ୍ୟ ବାଣୀ ଦେବତାଙ୍କର । ଦେବର୍ଷି ନାରଦଙ୍କର...।' ଆଉ ଜଣେ ପାଟିକଲା – 'କାହାର ଏତେ ସାହସ ! କଂସ ବିରୁଦ୍ଧରେ କଥା କହିବ ?' ଖୋଲା ଖଣ୍ଡା ହାତରେ ଧରି ପଛ ରଥରୁ ଡେଇଁପଡ଼ି ପ୍ରଦ୍ୟୋତ କଂସ ପାଖକୁ ଦୌଡ଼ି ଆସିଲା । କିଛି ଦୂରରେ ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ହୋଇ ଛିଡ଼ା ହୋଇଥିବା ପ୍ରଦ୍ୟୋତଙ୍କର ସୈନ୍ୟମାନେ ରଥ ପାଖକୁ ଧାଇଁ ଆସିଲେ ଓ ରଥକୁ ଘେରିଗଲେ । କିଛି ଲୋକେ ପାଟି କରି କରି ରଥ ପାଖକୁ ମାଡ଼ି ଆସିଲେ । ପାଟି କରୁଥାନ୍ତି – 'ମାରିଦିଅ... ହାଣିଦିଅ... ଦେବକୀକୁ ହାଣିଦିଅ...।'

କଂସ ହାତରେ ଧରିଥିବା ଲଗାମକୁ ଫୋପାଡ଼ିଦେଲା । ସେହି ରଥ ଉପରେ ଦେବକୀ ବସୁଦେବଙ୍କର ମୁହାଁମୁହିଁ ହୋଇ ସେମାନଙ୍କ ନିକଟକୁ ଲାଗିଗଲା । ତା ହାତରେ କୋଷମୁକ୍ତ ଦୀର୍ଘ ଖଡ୍ଗ । ସେ ଆଗର ସ୍ନେହୀ କଂସ ନୁହେଁ । ବିଜାତୀୟ କ୍ରୋଧରେ ତା ମୁହଁ ବିକୃତ ହୋଇଯାଇଥାଏ । ସେ ଦେବକୀଙ୍କୁ ଚାହିଁ ଗର୍ଜନ କରୁଥାଏ – 'ଆଚ୍ଛା ! ତୋ ଅଷ୍ଟମ ଗର୍ଭର ସନ୍ତାନ ମୋତେ ହତ୍ୟା କରିବ, ଆଚ୍ଛା ! ମୁଁ ତୋତେ ବଞ୍ଚିବାକୁ ଦେବିନି । ଏହି ମୁହୂର୍ତ୍ତରେ ହତ୍ୟା କରିବି ।' ଦେବକୀ ବରଡ଼ା ପତ୍ର ପରି ଥରୁଥାଆନ୍ତି । କଂସ ତାଙ୍କର କେଶ ଧରି ତାଙ୍କୁ ଆସନ ଉପରୁ ତଳକୁ ଝିଙ୍କି ଆଣିଲା । ହାତରେ ଉଦ୍ୟତ ଖଡ୍ଗ । ସମସ୍ତେ ଦେଖୁଛନ୍ତି, ସମସ୍ତେ ଶୁଣୁଛନ୍ତି, ସମସ୍ତେ ସ୍ତବ୍ଧ । ଅରିନ୍ଦମ ଭାନୁପ୍ରକାଶଙ୍କୁ ଚାହିଁଲା । ସେ ଏକାଗ୍ର ଭାବରେ କଂସକୁ ଚାହିଁ ରହିଛନ୍ତି, ତାଙ୍କ ଆଖିରେ ହୁତ ହୁତ ହୋଇ ନିଆଁ ଜଳୁଛି ।

ହଁ, ମୁହୂର୍ତ୍ତକରେ ସବୁ ଓଲଟପାଲଟ ହୋଇଗଲା । ଚାରିପାଖରେ ହୋ ହୋ, ପାଟିଗୋଳ । ଯେପରି ଚାରିପାଖରେ ନର୍କ ଭାଙ୍ଗିପଡ଼ିଲା । ଗୋଟାଏ କଥା ହାବୁକା

ପରି ଉଠି ଆସୁଥାଏ - 'ହାଣିଦିଅ... କାଟିଦିଅ... ଦେବକୀ ବସୁଦେବ ଦିହିଁଙ୍କି ହାଣି ଦିଅ ।' ଅରିନ୍ଦମ ବୁଝିପାରିଲା ନାହିଁ ଏ ଶୂନ୍ୟାବାଣୀ କେଉଁଠୁ ଆସିଲା, କାହାର ? ଚାହିଁ ଦେଖିଲା ପଛ ରଥରୁ ବ୍ରାହ୍ମଣ ଓ ବିଦେଶୀ ତାନ୍ତ୍ରିକମାନେ ଓହ୍ଲେଇ ଚାଲିଗଲେଣି । ଆହୁରି ଆହୁରି ସୈନ୍ୟମାନେ ଆସିଗଲେଣି - ଉଭୟ ମଥୁରା ଓ ମଗଧର ସୈନ୍ୟ । ସାଧାରଣ ଲୋକଙ୍କୁ ପ୍ରାୟ ଠେଲି ବାହାର କରିଦେଇ ରଥର ଆଗପଛ ସବୁଆଡ଼େ ସେମାନେ ଜଗି ଗଲେଣି । ଭାନୁପ୍ରକାଶ କିଛି କହୁ ନ ଥାନ୍ତି, ତାଙ୍କ ମୁହଁ ଆଗ ପରି ଗମ୍ଭୀର । ସେ ଅରିନ୍ଦମର ହାତ ଧରି ରଥ ପାଖକୁ ଟାଣି ନେଇଗଲେ । ପଛେ ପଛେ ସୌରଦେବ ।

ରଥ ଉପରେ ସେତେବେଳେ କଂସର ଉଦ୍ୟତ ଖଡ୍ଗ ଓ ଗର୍ଜନ ପାଖରେ ଦେବକୀ କାକୁସ୍ଥ ପରି ଛିଡ଼ା ହୋଇଛନ୍ତି । ମୁହଁରେ କଥା ନାହିଁ । ଦି ଆଖିରେ ପ୍ରଚଣ୍ଡ ଭୟ । ମୁହଁ ଟେକି ଅତ୍ୟନ୍ତ ବିକଳରେ ସେ କଂସକୁ ଚାହିଁଛନ୍ତି । ଅରିନ୍ଦମ ଦେଖିଲା ବସୁଦେବ ତାଙ୍କ ଆସନରୁ ଉଠି କଂସ ପାଖକୁ ଆସିଲେ । ଶୁଣିଲା ବସୁଦେବ କହୁଛନ୍ତି - 'କଂସ, ଦେବକୀ ତୁମର ଅତି ଆଦରର ଭଉଣୀ । କୋଉ ଗୋଟା ଶୁଣା କଥାରେ ତୁମେ ତାକୁ ଆଜି ହାଣିଦବ । ଦେବକୀ ତ ଯିବ, ତୁମେ ବି ପରେ ବହୁତ ଦୁଃଖ ପାଇବ । ଏମିତି ହୁ ହା କିଛି କରନା ।' କଂସ ଗର୍ଜନ କରୁଥାଏ । କହିଲା - 'ଏ ଶୁଣା କଥା ନୁହେଁ । ଏ ଦୈବବାଣୀ । ଏ ଶୂନ୍ୟରୁ ଆସିଛି ।' ଶୁଣାଗଲା ବସୁଦେବ କହୁଛନ୍ତି - 'ଏ ଦୈବବାଣୀ ବୋଲି କେମିତି ଜାଣିଲ ? ଏ କୌଣସି ଦୁଷ୍ଟ ଲୋକର କୌଶଳ । ଯେ ଆମର ଭଲ ଚାହେଁନା । ଯେ ଚାହେଁ ଏ ବିଭାଘର ନ ହେଉ ।' କଂସ ପୁଣି କହିଲା - 'ନାଁ, ମୁଁ ଜାଣେ ଏ ଦୈବବାଣୀ । ଦେବର୍ଷି ନାରଦଙ୍କ କଥା । ଦେବର୍ଷି ନାରଦ କାଲି ରାତିରେ ସ୍ୱପ୍ନରେ ମୋ' ପାଖକୁ ଆସିଥିଲେ ।' ବସୁଦେବ କହୁଛନ୍ତି - 'ଠିକ୍ ଅଛି, ଏ ଦେବର୍ଷି ନାରଦଙ୍କ ବାଣୀ । କିନ୍ତୁ ଦେବକୀ ତ ତୁମର ଶତ୍ରୁ ନୁହେଁ । ତୁମର ଶତ୍ରୁ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ । ସେଥିପାଇଁ ନାରୀ ହତ୍ୟା କରିବ କାହିଁକି ? ତୁମର ଅତି ଆଦରର ଭଉଣୀକୁ ହତ୍ୟା କରିବ କାହିଁକି ? ତା'ର ଦୋଷ କ'ଣ ?' ହଠାତ୍ କଂସର ଗର୍ଜନ କମିଗଲା । ମନେହେଲା ଯେପରି ସେ ବସୁଦେବଙ୍କ ଯୁକ୍ତିକୁ ମାନିଲା । ଶୁଣାଗଲା - 'ଠିକ୍ ଅଛି । ମୁଁ ଦେବକୀକୁ ମାରିବି ନାହିଁ । କିନ୍ତୁ ମୋର ଗୋଟାଏ ସର୍ତ୍ତ ।

'କଅଣ ସେ ସର୍ତ୍ତ ?' ବସୁଦେବ ପଚାରିଲେ ।

'ମୋର ସର୍ତ୍ତ ହେଲା ଦେବକୀଙ୍କର ସନ୍ତାନ ଜନ୍ମ ହେବା ମାତ୍ରେ ସବୁ ସନ୍ତାନଙ୍କୁ ମୋତେ ଦେଇଦେବ ।'


Digitized by srujanika@gmail.com

'ସବୁ ସନ୍ତାନ ?'

'ହଁ, ସବୁ ସନ୍ତାନ । ଖାଲି ଅଷ୍ଟମ ଗର୍ଭର ସନ୍ତାନ ନୁହେଁ । ସେଥିପାଇଁ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ଜନ୍ମହେବା ପର୍ଯ୍ୟନ୍ତ ତୁମେ ତୁମ ଘରକୁ ଯାଇପାରିବ ନାହିଁ । ତୁମେ ଉଭୟ ମୋର ବନ୍ଦୀ ହୋଇ ରହିବ ।'

'ବନ୍ଦୀ !'

'ହଁ, ବନ୍ଦୀ । ଯାଦବମାନଙ୍କୁ ମୋର ବିଶ୍ୱାସ ନାହିଁ', କଂସ କହିଲା ।

ତା'ପରେ କେତେ ମୁହୂର୍ତ୍ତ ସବୁ ଚୁପଚାପ । ଅରିନ୍ଦମର ମନେହେଲା ଯେପରି ସାରା ବିଶ୍ୱ ଗୋଟାଏ ଭୟଙ୍କର ଆଶଙ୍କାରେ ଚୁପ ହୋଇ ରହିଗଲା ।

ପରେ ପରେ ବସୁଦେବଙ୍କର ସ୍ୱର, ଥରିଲା ଥରିଲା, କିନ୍ତୁ ସ୍ପଷ୍ଟ ଓ ଦୃଢ଼ - 'ହଉ, ମୁଁ ରାଜି ।'

ପରେ ପରେ କଂସର ତୀବ୍ର ଆଦେଶ - 'ପ୍ରଦ୍ୟୋତ, ଦେବକୀ ଓ ବସୁଦେବଙ୍କୁ ଉଗ୍ରସେନଙ୍କର ପୁରୁଣା କୋଠିକୁ ନେଇଯାଅ ।'

କଂସ ଦେବକୀଙ୍କୁ ଛାଡ଼ି ରଥରୁ ଓହ୍ଲେଇ ଆସିଲା । ଅରିନ୍ଦମ, ଭାନୁପ୍ରକାଶ ଓ ସୌରଦେବ ସୈନ୍ୟମାନଙ୍କର ଧାଡ଼ି କଟେଇ ବାହାରକୁ ଚାଲି ଆସିଲେ ।

ଅରିନ୍ଦମ ସେଦିନ ଘଟଣା କଥା ପରବର୍ତ୍ତୀ ସମୟରେ ବାରମ୍ବାର ଭାବିଛି । ଆଖି ବୁଜିଲେ ହିଁ ସେଦିନ ଯାହା ଯାହା ଘଟିଥିଲା ସେସବୁ ଛାୟା ଛବି ପରି ତା ଆଖି ଆଗରେ ଭାସି ଉଠେ । କଂସର ଉଦ୍ଦେଶ୍ୟ ସମ୍ବନ୍ଧରେ ସେମାନଙ୍କର ଯଥେଷ୍ଟ ସନ୍ଦେହ ଥିଲା । କିନ୍ତୁ ସେ ଯେ ଏତେ ଗୋପନୀୟରେ ଏସବୁ କାମ କରି ପାରିବ ଏକଥା କେହି ବିଶ୍ୱାସ କରୁ ନ ଥିଲେ । କଂସ ଯାହା କଲା ସେ କାମର ପ୍ରଧାନ ଶକ୍ତି ହେଉଛି ଆକସ୍ମିକତା ଓ ନାଟକୀୟତା । ଘଟଣା ଏପରି ମୋଡ଼ ନେଲା ଯାହା କି ଆଗରୁ କେହି ଭାବି ନ ଥିଲେ । ବାହାରୁ ଦେଖିଲେ ମନେହେବ ଏଥିରେ କଂସର କିଛି କରିବାର ନାହିଁ । ତା'ର ସ୍ନେହ, ସହାନୁଭୂତି, ଆଗ୍ରହ ଅତୁଳନୀୟ । ଯାହା ଘଟିଛି ସବୁ ଦୈବ ପ୍ରେରିତ । ବାହାରୁ ତାକୁ ଦୁଷ୍ଟ ମନେହେଲେ ବି ତା ଭିତରଟା କୋମଳ, ଅତ୍ୟନ୍ତ କୋମଳ । ନିଜର ଭଉଣୀ ପାଇଁ ଏପରି ସ୍ନେହ ସଚରାଚର ଦେଖାଯାଏ ନା । ଅଥଚ ସେଇ ଭଉଣୀ ତା'ର ମୃତ୍ୟୁର କାରଣ ହେବ । ଏକଥା ଅଚିନ୍ତନୀୟ । ସେଦିନ ଏହି ଘଟଣା ପରେ, ଯେତେବେଳେ କଂସ ନଅରକୁ ଫେରିଗଲା, ଦେବକୀ ବସୁଦେବଙ୍କୁ ପ୍ରଦ୍ୟୋତ ଯମୁନା ଦେବୀଙ୍କ ମନ୍ଦିର ପାଖ ନୂଆ ହୋଇ ମରାମତି ହୋଇଥିବା ଓ ପ୍ରସ୍ତୁତ ହୋଇ ରହିଥିବା ଉଗ୍ରସେନଙ୍କ କୋଠିକୁ ନେଇଗଲା, ବାହାଘର ଦେଖିବାକୁ ଆସିଥିବା ଶହ ଶହ ମଥୁରାର ଲୋକେ ଘରକୁ ଫେରିଗଲେ । ଅରିନ୍ଦମ ଲକ୍ଷ୍ୟ କରି ଦେଖିଛି


Digitized by srujanika@gmail.com

ଫେରୁଥିବା ଲୋକଙ୍କର ଗୋଟିଏ କଥା - କଂସ ଯାହା କରିଛି ଠିକ୍ କରିଛି । ସେ ଯେ ଦେବକୀକୁ ମାରିନାହିଁ ଏ ତା ଭଲ ମଣିଷପଣିଆ । ଏସବୁ କଂସ ବିରୁଦ୍ଧରେ ଘୋର ଷଡ଼ଯନ୍ତ୍ର । ହଠାତ୍ ଜଣାପଡ଼ି ଗଲା । କଂସକୁ ଭଗବାନ ରକ୍ଷା କଲେ । କଂସ ମଥୁରାର ସମ୍ମାନ, ମଥୁରାର ଗୌରବ ।

ସେମାନେ ଲୋକଙ୍କର ଭିଡ଼ କଟେଇ ଚାଲିଚାଲି ଯମୁନା ଘାଟ ଆଡ଼କୁ ଯାଉଥିଲେ । ଅରିନ୍ଦମ କ'ଣ କହିବ କହିବ ହେଉଥିଲା । କିନ୍ତୁ ଉଭୟ ଭାନୁପ୍ରକାଶ ଓ ସୌରଦେବ ସମ୍ପୂର୍ଣ୍ଣ ଚୁପ୍ । ବିଶେଷ କରି ଭାନୁପ୍ରକାଶଙ୍କ ମୁହଁକୁ ଚାହିଁ ଅରିନ୍ଦମକୁ ଭୟ ଲାଗୁଥିଲା । ତାଙ୍କ ମୁହଁର ସ୍ୱାଭାବିକ ଦୃଢ଼ତା ଓ ପ୍ରସନ୍ନଭାବ ନ ଥିଲା । ସାରା ମୁହଁରେ ରାଗ, କ୍ରୋଧ ସହିତ ଗୋଟାଏ ନିଷ୍ଫଳ ହତାଶାଭାବ ମିଶି ଯାଇଥିଲା । ଅରିନ୍ଦମର ମନେହେଲା ସେ ଭାନୁପ୍ରକାଶଙ୍କର ମନୋଭାବ କିଛି କିଛି ବୁଝି ପାରୁଛି । ଭାନୁପ୍ରକାଶଙ୍କର ତୀକ୍ଷ୍ଣ ବୁଦ୍ଧି, ସେ ନଖ ଦର୍ପଣରେ ଦେଖିଲା ପରି ଘଟଣାସବୁ ଦେଖିପାରନ୍ତି । ଅଥଚ ସେଦିନ ଯାହା ଘଟିଗଲା ସମ୍ପୂର୍ଣ୍ଣ ଭାବରେ ତାଙ୍କର ବୁଝିବାର ବାହାରେ, ଘଟଣାର ଆକସ୍ମିକତା ତାଙ୍କୁ ଅଭିଭୂତ କରି ଦେଇଛି । ଏଇଟାହିଁ ତାଙ୍କର ଦୁଃଖ, ଏଇଟାହିଁ ସେ ସହ୍ୟ କରିପାରୁ ନାହାନ୍ତି । ସୌରଦେବ କ'ଣ କହିଲେ, ଭାନୁପ୍ରକାଶ ଉତ୍ତର ଦେଲେ ନାହିଁ । ଯମୁନା ଘାଟରେ ଡଙ୍ଗାରେ ବସିବା ବେଳେ କହିଲେ, 'ଅରିନ୍ଦମ କାଲି ଆସ ।' ବୁଲିପଡ଼ି ସୌରଦେବଙ୍କୁ କହିଲେ, 'ଆପଣ ଯାଆନ୍ତୁ । କାଲି ଯଦି ସମ୍ଭବ ହେବ ଗୋପାଙ୍କୁ ସାଙ୍ଗରେ ନେଇ ଆସିବେ ।' ଗୋପ ଘାଟକୁ ଡଙ୍ଗା ଛାଡ଼ିଦେଲା । ଅରିନ୍ଦମ ଓ ସୌରଦେବ ଫେରି ଆସିଲେ । ଦିନ ସରି ଆସିଲାଣି । କିନ୍ତୁ ସନ୍ଧ୍ୟା ହୋଇ ନ ଥାଏ । ଅସ୍ତପ୍ରାୟ ସୂର୍ଯ୍ୟର ଦୀର୍ଘ, ଉଜ୍ଜ୍ୱଳ କିରଣ ଆକାଶର ଏ କଣରୁ ସେ କଣକୁ ଲମ୍ବି ଯାଇଥାଏ । ଚଢ଼େଇମାନେ ଦଳ ଦଳ ଫେରିବାକୁ ଆରମ୍ଭ କରିଥାନ୍ତି । ଆକାଶରେ ଖଣ୍ଡ ଖଣ୍ଡ ବାଦଲ । ଯମୁନା ଛଳ ଛଳ କରି ବହିଯାଉଛି । ପବନରେ ଥଣ୍ଡାର ଆମେଜ । ଚାରିଆଡ଼େ ପ୍ରଶାନ୍ତିର ଧାରା । ଅରିନ୍ଦମର ମନ ପ୍ରାଣ ଯେପରି ପୂରିଗଲା । 'ଆହା ହା, ବସୁଦେବ ଦେବକୀ ବନ୍ଦୀ ହେଲେ ।' କହିଲେ ସୌରଦେବ ।

ଘରକୁ ଫେରିବା ବେଳକୁ ସନ୍ଧ୍ୟା ଲାଗିଯାଇଥିଲା । ବାପା ତାକୁ ପ୍ରାୟ ଅପେକ୍ଷା କରିଥିଲେ । ସେ ଫେରିବା ସାଙ୍ଗେ ସାଙ୍ଗେ ସେ ସନ୍ଧ୍ୟାପୂଜା ଅଧା କରି ଠାକୁର ଘରୁ ଉଠି ଆସିଲେ । ଅରିନ୍ଦମର ମନେହେଲା ବାପା ବୋଧହୁଏ କିଛି କିଛି ଖବର ପାଇଛନ୍ତି । ତଥାପି ସେ କହିଲା, 'ଦେବକୀ ବସୁଦେବଙ୍କର ବିଭାଘର ହୋଇଗଲା । ସେମାନେ ଘରକୁ ଗଲେ ନାହିଁ, ଯମୁନା କୂଳର ଉଗ୍ରସେନଙ୍କ ସେଇ ପୁରୁଣା କୋଠିକୁ

ଗଲେ ।'

'ଗଲେ ନାଁ ପଠେଇ ଦିଆଗଲା ?' ବାପା ପଚାରିଲେ ।

'ପଠେଇ ଦିଆଗଲା ।' ଅରିନ୍ଦମ ଉତ୍ତର ଦେଲା ।

'ସାଙ୍ଗରେ କିଏ ଗଲା ? କଂସ ନା ପ୍ରଦ୍ୟୋତ ?'

'ପ୍ରଦ୍ୟୋତ, କଂସ ପ୍ରଥମେ ବାହାରିଥିଲା । ସେ ରଥ ଚଲେଇ ଯାଇଥାନ୍ତା କିନ୍ତୁ ଶୂନ୍ୟବାଣୀ ହେଲାପରେ ଘଟଣା ବଦଳି ଗଲା ।' ଅରିନ୍ଦମ କହିଲା ।

'ଶୁଣିଛି', ବାପା କହିଲେ, 'ତୁ ଶୁଣିଛୁ ?'

'ହଁ'

'ସ୍ପଷ୍ଟ ?'

'ସ୍ପଷ୍ଟ ।'

'କ'ଣଟା ମତେ ଠିକ୍ କରି କହ ।'

ଅରିନ୍ଦମ ଟିକେ ମନେ ପକାଇବାକୁ ଚେଷ୍ଟା କଲା । କହିଲା – 'ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ତୋତେ ହତ୍ୟା କରିବ । ତିନି ଥର ।'

ବାପା ଚୁପ କରି କ'ଣ ଭାବିଲେ । ପଚାରିଲେ, 'ବସୁଦେବ ତାଙ୍କର ସବୁ ସନ୍ତାନଙ୍କୁ ଜନ୍ମ ହେବା ସାଙ୍ଗେ ସାଙ୍ଗେ କଂସକୁ ଦେଇଦେବାକୁ ରାଜି ହେଲେ ?'

'ହଁ', ଅରିନ୍ଦମ କହିଲା, 'ଖାଲି ସେତିକି ନୁହେଁ । ଅଷ୍ଟମ ଗର୍ଭର ସନ୍ତାନ ଜନ୍ମ ହେବା ପର୍ଯ୍ୟନ୍ତ ସେ ଓ ଦେବକୀ କଂସର ବନ୍ଦୀ ହୋଇ ରହିବାକୁ ବି ରାଜି ହେଲେ ।'

ବାପା ଚୁପ ହୋଇ ପୁଣି କ'ଣ ଭାବିଲେ । ପୁଣି ପଚାରିଲେ, 'ସେଠି ଅନ୍ୟ ଲୋକମାନେ ଥିଲେ ?'

'ଅନେକ ।' ଅରିନ୍ଦମ କହିଲା ।

'କିଏ ସବୁ ? ଦେଖିଛୁ ?' ବାପା ପଚାରିଲେ ।

'ହଁ । ପ୍ରାୟ ଅଧିକାଂଶ ମୁଖିଆ । ତା ଛଡ଼ା ମଥୁରାର ଆହୁରି ଅନେକ ଲୋକ । ଲୋକଙ୍କ ବାହାରେ ସୈନ୍ୟସାମନ୍ତ ବି ଭର୍ତ୍ତି ହୋଇଥିଲେ ।'

'ସମସ୍ତେ ଶୁଣିଛନ୍ତି ?'

'ହଁ, ମୋର ବିଶ୍ୱାସ ପ୍ରାୟ ସମସ୍ତେ । ଶୂନ୍ୟବାଣୀ ବେଶ୍ ଜୋର୍‌ରେ ଶୁଭୁଥିଲା ।' ଅରିନ୍ଦମ କହିଲା ।

'ଶୂନ୍ୟବାଣୀ କୋଉଠୁ ଆସୁଥିଲା ? ବୁଝି ହେଲା କି ?' ବାପା କହିଲେ ।

ଅରିନ୍ଦମ ଟିକେ ରହିଗଲା । ଭାବିଲା – 'ନାଁ, ଠିକ୍ ବୁଝିହେଉ ନ ଥିଲା । ଗୁମ୍ ଗୁମ୍ ହୋଇ ଚାରିପାଖରୁ ଶୁଭୁଥିଲା । ତେବେ ମନେ ହେଉଥିଲା ରଥ ପାଖ ଆଖରୁ

ଆସୁଥିଲା ।'

'ଆଉ ଗୋଟାଏ କଥା', ବାପା କହିଲେ, 'ଏ ଶୂନ୍ୟବାଣୀ ସମସ୍ତେ ତ ଶୁଣିଲେ । କେହି କିଛି କହିଲେନି ?'

'ହଁ କହିଲେ', ଅରିନ୍ଦମ କହିଲା, 'ବେଶ୍ ପାଟିଗୋଳ ହେଲା । କେତେ ଲୋକ କେତେ କଥା କହୁଥାନ୍ତି । କିଛି ଲୋକ ତ ପାଟିକଲେ ଦେବକୀଙ୍କୁ ଶୀଘ୍ର ହାଣିଦିଅ । ତେବେ ଏ ଶୂନ୍ୟବାଣୀ କଥା ସମସ୍ତେ ବିଶ୍ୱାସ କଲେ ଏଟା ଠିକ୍ ।'

'ଶୁଣୁଛି ଦି ଜଣ କିଏ ବିଦେଶୀ ତାନ୍ତ୍ରିକ ଥିଲେ ?' ବାପା କହିଲେ ।

'ହଁ, ଥିଲେ', ଅରିନ୍ଦମ କହିଲା, 'ସେମାନେ ତ ବାହାଘର ଆଗରୁ ଅଛନ୍ତି । ସେମାନେ ନଅର ଭିତରେ କଂସ ମହଲ ପାଖରେ ରହୁଥିଲେ । କାହା ସାଙ୍ଗରେ ମିଶାମିଶି କରନ୍ତିନି । ବାହାଘର ବେଳେ ତ ସେ ଦିହେଁ ବେଦୀ ପାଖରେ ଆରମ୍ଭରୁ ବସି ରହିଥିଲେ । ଦେବକୀ ବସୁଦେବଙ୍କ ସାଙ୍ଗରେ ତ ସେମାନେ ଯିବାକୁ ବାହାରିଥିଲେ ।'

'ଏକା ରଥରେ ?' ବାପା ପଚାରିଲେ ।

'ନାଁ, ପଛରେ, ଆଉ ଗୋଟାଏ ରଥରେ । ସାଙ୍ଗରେ ଦି ଜଣ ବ୍ରାହ୍ମଣ ଥିଲେ । ପ୍ରଦ୍ୟୋତ ଭାଇ ବି ଥିଲେ ।'

'ସେମାନେ ଗଲେ କୁଆଡ଼େ ?' ବାପା ଜାଣିବାକୁ ଚାହିଁଲେ ।

ଅରିନ୍ଦମ ମନେ ପକେଇବାକୁ ଚେଷ୍ଟା କଲା – 'ନାଁ, ଠିକ୍ ଖିଆଲ ହେଉନି । ମୋର ମନେ ହେଉଛି ଏ ଶୂନ୍ୟବାଣୀ ଗୋଳମାଳ ଭିତରେ ସେମାନେ ଓ ବ୍ରାହ୍ମଣ ଦି ଜଣ ରଥରୁ ଓହ୍ଲେଇ ନଅର ଭିତରକୁ ଚାଲିଗଲେ । ପ୍ରଦ୍ୟୋତ ଭାଇ ତ ସାମ୍ନା ରଥ ପାଖକୁ ଚାଲି ଆସିଲେ ।'

'କଂସ ନିଜେ କିଛି କହିନି ?' ବାପା ପୁଣି ପଚାରିଲେ ।

'ହଁ, କହିଛି । ସେ ନିଜେ ପାଟିକରି କହୁଥାଏ ଗତ ରାତିରେ କୁଆଡ଼େ ସେ ସ୍ୱପ୍ନରେ ଦେବର୍ଷି ନାରଦଙ୍କୁ ଦେଖିଛି, ଆଉ ସେ ସବୁ କ'ଣ ତାକୁ କହିଛନ୍ତି ।'

ବାପା ଚୁପ କରିଗଲେ । ଅରିନ୍ଦମର ମନେହେଲା ତାଙ୍କ ଆଖି ଯେପରି ବନ୍ଦ ହୋଇ ଆସିଲା । ସେ ଠାକୁର ଘରକୁ ଫେରିଯିବେ । ଅରିନ୍ଦମ ନିଜର ସନ୍ଧ୍ୟା ଆହ୍ନିକ ସାରିବା ପାଇଁ ଯମୁନା କୂଳକୁ ଯିବାକୁ ଭାବୁଛି, ବାପା ହଠାତ୍ ପଚାରିଲେ – 'ତୋ ସାଙ୍ଗରେ ଭାନୁପ୍ରକାଶ ଥିଲେ ?'

'ହଁ, ଭାନୁପ୍ରକାଶ ଥିଲେ', ଅରିନ୍ଦମ କହିଲା, 'ସୌରଦେବ ବି ଥିଲେ ।'

'ଭାନୁପ୍ରକାଶ କ'ଣ କହିଲେ କି ?' ବାପାଙ୍କର ପ୍ରଶ୍ନ ।

'ନାଁ', ଅରିନ୍ଦମ ଉତ୍ତର ଦେଲା, 'ତାଙ୍କ ମୁହଁ ଗମ୍ଭୀର ହୋଇ ଯାଇଥାଏ । ଆଖି ଦିଟା ଜଳୁଥାଏ । କିନ୍ତୁ ସେ କିଛି କହିଲେନି । ଆମେ ତାଙ୍କୁ ଯମୁନା ଘାଟରେ ଛାଡ଼ିଦେଇ ଆସିଲୁ । କାଲି ଆମର ଗୋପରେ ଭେଟିବାର ଅଛି । ସେ କହିଦେଇ ଯାଇଛନ୍ତି । ସେଇଠି ବୋଧେ କିଛି କହିବେ ।'

ବାପା ଆଉ କିଛି ପଚାରିଲେ ନାହିଁ । ପାଛୋଡ଼ାଟା ଦେହ ଉପରେ ଟାଣିଦେଇ ସେ ପୁଣି ଥରେ ଠାକୁର ଘରକୁ ଫେରିଯିବାକୁ ବାହାରିଲେ । ଗଲାବେଳେ ଖାଲି କହିଲେ - 'ଭାନୁପ୍ରକାଶଙ୍କୁ କହିବୁ ସତର୍କ ରହିବ । ଏ ଆରମ୍ଭ ହେଲା ।'

ପରଦିନ ମଧ୍ୟାହ୍ନ ପରେ ଗୋପରେ ନନ୍ଦଙ୍କ ଘରେ ସମସ୍ତେ ଏକାଠି ହବାର ଠିକ୍ ହୋଇଥିଲା ଓ ଦିନ ଖାଇବା ନନ୍ଦଙ୍କ ଘରେ ହିଁ ବନ୍ଦୋବସ୍ତ ହୋଇଥିଲା । ଅରିନ୍ଦମ ସକାଳୁ ନିଜର କାମ ଦାମ ସାରି ଆଉ କୁଆଡ଼େ ଯିବା ଆଗରୁ ଭାବିଲା ପ୍ରଦ୍ୟୋତଙ୍କ ସହିତ ଦେଖା କରିବ । ଆଗଦିନ ବାହାଘର ସଂକ୍ରାନ୍ତରେ ଯାହା ଯାହା ଘଟିଗଲା ତା'ର ବିଶ୍ୱାସ ତା'ର କିଛି କିଛି ପ୍ରଦ୍ୟୋତକୁ ନିଶ୍ଚୟ ଆଗରୁ ଜଣାଥିଲା । ବିଶେଷ କରି ସେହିହିଁ ଗତ ଅପରାହ୍ନରେ ଦେବକୀ ବସୁଦେବଙ୍କୁ ନେଇ ଉଗ୍ରସେନଙ୍କ କୋଠିରେ ଛାଡ଼ି ଆସିଛନ୍ତି । ତେବେ ସେ ଯେ କେତେଦୂର କ'ଣ କହିବେ ସେ ବିଷୟରେ ତା ମନରେ ଯଥେଷ୍ଟ ସନ୍ଦେହ ଥିଲା । ତା ସତ୍ତ୍ୱେ ସେ ପ୍ରଥମେ ପ୍ରଦ୍ୟୋତ ଘରକୁ ଗଲା ।

ଅରିନ୍ଦମ ପ୍ରଦ୍ୟୋତ ଘରେ ପହଞ୍ଚିଲା ବେଳକୁ ସେ ବାହାରକୁ କୁଆଡ଼େ ବାହାରୁଥିଲା । ଅରିନ୍ଦମକୁ ଦେଖି ରହିଗଲା, କହିଲେ, 'ଅରିନ୍ଦମ, ଆସ... ଆସ । ମୁଁ ତୁମକୁ ମନେ ମନେ ଖୋଜୁଥିଲି ।'

ଅରିନ୍ଦମ ଟିକେ ସଂକୁଚିତ ହେଲା । କହିଲା - 'ତୁମେ ତ କୁଆଡ଼େ ଯିବ ?'

'ଆରେ ନା... କଂସ ମୁଖିଆମାନଙ୍କର ଗୋଟାଏ ସଭା ଡାକିଛନ୍ତି । ମୁଁ ସେହି ସଭାକୁ ବାହାରିଥିଲି । ଟିକେ ଡେରି ହେଲେ ଚଳିବ । ଆସ ।'

ଉଭୟ ପ୍ରଦ୍ୟୋତଙ୍କ ବସିବା ଘରେ ଯାଇ ବସିଲେ । ପ୍ରଦ୍ୟୋତ ପ୍ରଥମେ କହିଲା, 'ଅରିନ୍ଦମ, କାଲି ଯାହା ହେଲା ତୁମକୁ ନିଶ୍ଚୟ ଭଲ ଲାଗି ନ ଥିବ ? କିନ୍ତୁ ମୋ ଦୋଷ ଧରିବନି । ଏସବୁ କଂସଙ୍କର ନିର୍ଦ୍ଦେଶ ।'

ଅରିନ୍ଦମ କିଛି କହିବା ଆଗରୁ ସତର୍କ ହୋଇଗଲା । କହିଲା, 'ନାଁ, ତୁମେ ବା କଂସ କ'ଣ କରିବ । ଏସବୁ ଭାଗ୍ୟର ବିଡ଼ମ୍ବନା । ନ ହେଲେ ବିଭା ହୋଇ ଘରକୁ ଫେରିବା ଲୋକ ଯାଇ ବନ୍ଦୀ ହୁଅନ୍ତେ କାହିଁକି ?'

'ବନ୍ଦୀ ଠିକ୍ ନୁହେଁ', କହିଲା ପ୍ରଦ୍ୟୋତ, 'ଉଗ୍ରସେନଙ୍କ କୋଠିକୁ ବହୁତ ବାଗେଇ ଦିଆ ହୋଇଛି । ନୂଆ ରାଜନଅର ପରି । ସେ ବିଷୟରେ କଂସଙ୍କ ଆଦେଶ

ବହୁତ କଡ଼ା, ଯେମିତି ସେମାନଙ୍କର କିଛି ଅସୁବିଧା ନ ହୁଏ ।'

'କିନ୍ତୁ କାହିଁକି ?' ଅରିନ୍ଦମ ନ ପଚାରି ରହିପାରିଲା ନାହିଁ, 'ଆମେ ଯାହା ଜାଣୁ ସେମାନେ ତ କଂସର ବିରୁଦ୍ଧ ପକ୍ଷ ନୁହନ୍ତି ।'

ପ୍ରଦ୍ୟୋତ ହସିଲା । କହିଲା, 'ତା ଉତ୍ତର ମୁଁ ଦେଇପାରିବି ନାହିଁ । ସେକଥା କଂସ ଜାଣନ୍ତି ।'

'କିନ୍ତୁ କେତେଦିନ ସେମାନେ ଏମିତି ରହିବେ ?' ଅରିନ୍ଦମ ପୁଣି ପଚାରିଲା ।

ପ୍ରଦ୍ୟୋତ ପୁଣି ହସିଲା । କହିଲା, 'ଯେତେଦିନ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ଜନ୍ମ ନ ହୋଇଛି ।'

'ସେ ତ ବହୁତ ଦିନ, ଅଷ୍ଟମ ଗର୍ଭର ସନ୍ତାନ ଜମା ନ ହୋଇପାରେ ।' କହିଲା ଅରିନ୍ଦମ ।

'ତା ହୋଇପାରେ', କହିଲେ ପ୍ରଦ୍ୟୋତ ।

ଅରିନ୍ଦମ ଅନୁଭବ କଲା ତା ମନରେ ଗୋଟାଏ ପ୍ରକାର କ୍ରୋଧ ଉଠି ଆସୁଛି । ସେ କହିଲା, 'ଭାଇ, ମୋ କଥା ଧରିବନି। ଏ କଅଣ ଠିକ୍ ହେଲା, ତୁମେ କୁହ । ଗୋଟାଏ କୋଉଠିକାର ଶୂନ୍ୟବାଣୀ, କୂଳ କିନାରା ନାହିଁ, ସେଇକଥା ଉପରେ ବିଶ୍ୱାସ କରି ଦି ଜଣ ନିର୍ଦ୍ଦୋଷ ଓ ଭଲ ଲୋକଙ୍କୁ ଶାସ୍ତି ଦିଆଗଲା ।'

ପ୍ରଦ୍ୟୋତ ଦି ହାତକୁ ଯୋଡ଼ି ମୁଣ୍ଡର ଲଗେଇଲା । କହିଲା, 'ଶୂନ୍ୟବାଣୀ ନୁହେଁ, ଦୈବ ବାଣୀ, ଦେବତାଙ୍କ ବାଣୀ, ସାକ୍ଷାତ ଦେବର୍ଷି ନାରଦଙ୍କ ବାଣୀ । ସତ ମିଛ କିଏ କହିବ ? ଆମର କ'ଣ କରିବାର ଅଛି । ଆମେ ତ ଆଦେଶ ପାଳନ କରୁଛୁ ।' ସେ ଉଠି ଛିଡ଼ା ହେଲା, କହିଲା, 'ସେସବୁ ଛାଡ଼, ଅରିନ୍ଦମ, ମୁଁ ସଭାକୁ ଯିବି । ମୁଁ ତୁମକୁ ଅନ୍ୟକଥା ପାଇଁ ଖୋଜୁଥିଲି ।' ଅରିନ୍ଦମ ବି ଉଠି ଛିଡ଼ା ହେଲା, କହିଲା, 'କୁହନ୍ତି ।'

'ତୁମେ ଓ ତୁମର ସାଙ୍ଗମାନେ ଅନ୍ତତଃ କିଛିଦିନ ପାଇଁ ଚୁପଚାପ ରୁହ । ଏସବୁ ବ୍ୟାପାରରେ ମୁଣ୍ଡ ନ ପୂରେଇବା ଭଲ । ନିକଟରେ କଂସ ବୋଧହୁଏ ପୁଣି ଥରେ ରାଜ୍ୟ ଜୟ କରିବାକୁ ବାହାରିଯିବେ । ସେତେବେଳେ ଦେଖାଯିବ ।'- ପ୍ରଦ୍ୟୋତ ବାହାରକୁ ବାହାରି ଆସିଲା । ସାଙ୍ଗେ ସାଙ୍ଗେ ଅରିନ୍ଦମ - 'ଆଉ ବାପାଙ୍କୁ ନିକଟରେ କଂସ ବୋଧହୁଏ ଡକେଇ ପାରନ୍ତି । ବାପାଙ୍କୁ କହିଦେବ ।'

'ବାପା ତ କାଲି ସାରା ଦିନ ଠାକୁର ଘରୁ ବାହାରି ନାହାନ୍ତି', କହିଲା ଅରିନ୍ଦମ । 'ମୁଁ ଜାଣେ', କହିଲା ପ୍ରଦ୍ୟୋତ, 'ବାପାଙ୍କ ଉପରେ ଆମର ନଜର ଅଛି । ମଥୁରାରେ ସେହିଁ ଏକମାତ୍ର ଲୋକ ଯାହାଙ୍କୁ କଂସ ଡରନ୍ତି ।'

ପ୍ରଦ୍ୟୋତର ଶେଷ କଥାଟା ଅରିନ୍ଦମ ମନରେ ଘୂରି ବୁଲିଲା । କଂସ ବାପାଙ୍କୁ ଡରେ । କାହିଁକି ? ବାପା ତ କୁଆଡ଼େ ଯାଆନ୍ତିନି । କାହାରି ସାଙ୍ଗରେ ମିଶନ୍ତିନି । ମଥୁରାର ଯାଦବମାନଙ୍କର ଯେଉଁ ଦଶଟା ଗୋଷ୍ଠୀ ଅଛି ବାପାଙ୍କର କାହାରି ସାଙ୍ଗରେ ସମ୍ପର୍କ ନାହିଁ । ତାଙ୍କର ନିଜର ଗୋଷ୍ଠୀ ନାହିଁ । ସେ ଏକା, ତାଙ୍କର ଅଧିକାଂଶ ସମୟ ପୂଜା, ଅର୍ଚ୍ଚନା, ଧ୍ୟାନରେ କଟିଯାଏ । କେହି ଡାକିଲେ ଯାଆନ୍ତି । ସେ ବି ସବୁ ଜାଗାକୁ ନୁହେଁ । ଉଗ୍ରସେନଙ୍କ ସହିତ ଘନିଷ୍ଠତା ଥିଲା । କିନ୍ତୁ ଉଗ୍ରସେନ ଗାଦିଚ୍ୟୁତ ହେବାପରେ ତାଙ୍କ ସହିତ ବି ଦେଖାସାକ୍ଷାତ ଏତେ ବେଶି ହୁଏନା । ତେବେ କାହିଁକି ? କଂସ କାହିଁକି ଭୟ କରେ ? କଂସ ଯେବେ ଡାକିଛି ବାପା ଯାଇଛନ୍ତି, ସବୁବେଳେ କଂସ ସପକ୍ଷରେ ବି କହିଛନ୍ତି । ଉଗ୍ରସେନ ଗାଦିଚ୍ୟୁତ ହେଲାବେଳେ ମୁଖିଆମାନେ ଯେମିତି ତେଢ଼ି ବସିଥିଲେ, ମନେ ହେଉଥିଲା ଯେପରି ଗୋଷ୍ଠୀ ସଂଘର୍ଷ ହୋଇଯିବ, ବାପାଙ୍କ କଥାରେ ହିଁ ଶାନ୍ତ ହେଲା । ବାପାଙ୍କ ପରି ନିର୍ବିରୋଧ, ନିର୍ବିକଳ୍ପ ବ୍ୟକ୍ତିଙ୍କ ଠାରୁ କଂସ କ'ଣ ଆଶଙ୍କା କରୁଛି ? ଅରିନ୍ଦମର ମନେହେଲା ସେଇଟା ହିଁ ବାପାଙ୍କର ଶକ୍ତି । ସେ କାହାରି ସାଙ୍ଗରେ ମିଶନ୍ତିନି, ସପକ୍ଷରେ ନୁହେଁ କି ବିପକ୍ଷରେ ନୁହେଁ । ତାଙ୍କର ନିଜର ସ୍ୱାର୍ଥ କିଛି ନାହିଁ, ସେ ନିର୍ଭୀକ, ଭୟଶୂନ୍ୟ... ଅରିନ୍ଦମ ଟିକେ ରହିଗଲା । ସେ ବାପାଙ୍କ ବିଷୟରେ କ'ଣ ଏତେ ଭାବୁଛି । ବାପା ଜ୍ଞାନୀ, ଦିବ୍ୟ ଦ୍ରଷ୍ଟା । ସେ ଗୁରୁ ଶ୍ରେଷ୍ଠ ବ୍ୟାସଦେବଙ୍କର ଘନିଷ୍ଠ ଶିଷ୍ୟ ଓ ସହଯୋଗୀ, ଓ ବ୍ୟାସଙ୍କ ପରି ଅକୁତୋଭୟ । ତାଙ୍କୁ ଯଦି କଂସ ପରି ଗୋଟାଏ ଦୁଷ୍ଟ, ଦାନବିକ ପ୍ରବୃତ୍ତିର ଲୋକ ଭୟ କରେ ସେ ତ ସ୍ୱାଭାବିକ ।

ଅରିନ୍ଦମର ମନ ସଫା ହୋଇ ଆସିଲା । ବର୍ତ୍ତମାନ ମଥୁରାର ଯାହା ଅବସ୍ଥା କଂସ ବିରୁଦ୍ଧରେ କିଛି କହିବାକୁ ବା କରିବାକୁ କାହାର ସାହସ ନାହିଁ । ବାପା ଯେ କିଛି କହିବେ ବା କରିବାକୁ ଚାହିଁବେ ତା ନୁହେଁ । କିନ୍ତୁ ସେ ଆଉ କିଛି କଥା ଦେଖୁଛନ୍ତି ଯାହାକି ସେମାନଙ୍କ ପକ୍ଷରେ ଜାଣିବା ସମ୍ଭବ ନୁହେଁ । ବାପା କାଲି ରାତିରେ ସଂକ୍ଷେପରେ ଯେ କହିଲେ 'ଏ ଆରମ୍ଭ ହେଲା' ତା'ର ଅର୍ଥ କ'ଣ ? ବାପାଙ୍କର ଏହିପରି ସଂକ୍ଷିପ୍ତ କଥାର ଅର୍ଥ ବୁଝିବା ତା ପକ୍ଷରେ ସମ୍ଭବ ନୁହେଁ, ଅରିନ୍ଦମ ଜାଣେ । ହୁଏତ ଭାନୁପ୍ରକାଶ ବୁଝିପାରନ୍ତି । ମଧ୍ୟାହ୍ନ ପାଖେଇ ଆସିଥିଲା । ସେ ଗୋପକୁ ଯିବାପାଇଁ ପ୍ରସ୍ତୁତ ହେଲା ।

ଗୋପରେ ଅରିନ୍ଦମ ଦେଖିଲା ସେମାନଙ୍କ ଛଡ଼ା ଆଉ ଦି ଜଣ ନୂଆ ଲୋକ, ଜଣେ ପୁରୁଷ, ଜଣେ ସ୍ତ୍ରୀ । ପୁରୁଷ ଲୋକକୁ ସେ ଆଗରୁ ଜାଣେ, ଅଳ୍ପ ଅଳ୍ପ ପରିଚୟ ଅଛି - ବସୁଦେବଙ୍କ ଭାଇ ଦେବଭାଗ । ଚୁପଚାପ ଲୋକ, କିନ୍ତୁ ଭଲ ଲୋକ ଓ


Digitized by srujanika@gmail.com

ବୁଦ୍ଧିମାନ ବି । ଏପରି ଲୋକ ଯାହା ଉପରେ ନିର୍ଭର କରିହେବ । ସ୍ତ୍ରୀ ଲୋକ ଜଣଙ୍କୁ ଭାନୁପ୍ରକାଶ ପରିଚୟ କରିଦେଲେ – ଗୋପାଙ୍କ ସାଙ୍ଗରେ କଂସ ଅନ୍ତଃପୁରରେ କାମ କରନ୍ତି, ଗୋପାଙ୍କର ଅନ୍ତରଙ୍ଗ, ଗୋପାଙ୍କ ସାଙ୍ଗରେ ଆସିଛନ୍ତି, ନାମ ବୃନ୍ଦାବତୀ ।

ମଧ୍ୟାହ୍ନ ଭୋଜନର ସମୟ ଆସି ଯାଇଥିଲା । ଭାନୁପ୍ରକାଶ ସେହି କଥା କହିଲେ । କହିଲେ, ଆସ ସମସ୍ତେ ଖାଇଦବା, ପରେ କଥାବାର୍ତ୍ତା କରିବା ।

ଅରିନ୍ଦମ ଭାନୁପ୍ରକାଶଙ୍କୁ କହିଲା – 'ଆପଣ ଗତ କାଲି ଯେମିତି ଗମ୍ଭୀର ହୋଇଗଲେ, ପଦେ କଥା କହିଲେନି, ମତେ ତ ଭୟ ଲାଗିଲା ।'

'ହଁ, ମୋତେ ବି ବ୍ୟସ୍ତ ଲାଗିଲା', କହିଲେ ସୌରଦେବ, 'ତୁମେ ଭାନୁପ୍ରକାଶ ତ ପୂରାପୂରି ନିର୍ବାକ ହୋଇଗଲ । ଗୋଟାଏ ବୋକା ଲୋକ ପରି । ଘଟଣା ଯାହା ଘଟିଲା ମୋର ତ ମନେ ହେଉଥିଲା ନାଚିକୁଦି ହୋ ହୋ ହୋଇ ପାଟି କରିବା ପାଇଁ ।'

'ଆପଣ ନାଚକୁଦ କରିଥିଲେ ମୁଁ ବି ନାଚିକୁଦି ହୋ ହୋ ହୋଇଥାନ୍ତି', ହସି ହସି କହିଲେ ଭାନୁପ୍ରକାଶ, 'ବାସ୍ତବିକ ଘଟଣା ଯାହା ଘଟିଲା ଆମ ସମସ୍ତଙ୍କର ନାଚିବା କୁଦିବା କଥା ।...

ଖିଆ ସରିଲା । ସମସ୍ତେ ନନ୍ଦଙ୍କ ଘରର ପ୍ରଶସ୍ତ ବାରନ୍ଦାରେ ବସିଲେ । ବାରନ୍ଦା ତଳକୁ ଗାଁ ଦାଣ୍ଡ । ଦାଣ୍ଡ ସେ ପାଖୁ ନନ୍ଦଙ୍କର ବିସ୍ତୀର୍ଣ୍ଣ ବଗିଚା, ଫୁଲ ଫଳ ଗଛରେ ପୂର୍ଣ୍ଣ । ନନ୍ଦ ଓ ଯଶୋଦା ଉଭୟଙ୍କର ଯତ୍ନରେ ବଢ଼ି ଉଠିଛି । ଗୋପ ଗ୍ରାମର ସବୁଠାରୁ ସୁନ୍ଦର ବଗିଚା, ଯେଉଁଠି ଅରିନ୍ଦମ ଦେଖିଛି ଭାନୁପ୍ରକାଶ ନିଜର ଅଧିକାଂଶ ସମୟ କଟାନ୍ତି । ବଗିଚା ମଝିରେ ବିଷ୍ଣୁଙ୍କର ଛୋଟ ସୁନ୍ଦର ମନ୍ଦିର । ନନ୍ଦ କହନ୍ତି ପ୍ରତ୍ୟକ୍ଷ ଦେବତା । ତାଙ୍କର ସବୁ କାମ ସେ ଠାକୁରଙ୍କୁ ଜଣାନ୍ତି ଓ ତାଙ୍କରି ଆଦେଶରେ ହିଁ କରନ୍ତି । ଅରିନ୍ଦମ ଜାଣେ ବିଷ୍ଣୁଙ୍କୁ ଦର୍ଶନ କରିବାକୁ ବାପା ମଝିରେ ମଝିରେ ଗୋପ ଓ ନନ୍ଦଙ୍କ ଘରକୁ ଆସନ୍ତି । ସାରା ଦିନ ଏଇଠି ରହିଯାଆନ୍ତି । ଧ୍ୟାନ କରନ୍ତି । ନନ୍ଦ, ଯଶୋଦା ଓ ଗୋପର ଅନ୍ୟାନ୍ୟ ବୟସ୍କ ଲୋକଙ୍କ ସହିତ ଧର୍ମ ଆଲୋଚନା କରନ୍ତି । ବଗିଚାର କିଛି ଦୂରରେ, ଗୋପ ଗ୍ରାମକୁ କିଛି ବାଟ ଛାଡ଼ି, ଗ୍ରାମକୁ ଘେରି ରହିଥିବା ବିସ୍ତୃତ ଜଙ୍ଗଲ, ଦୂରକୁ ଦୂରକୁ ବ୍ୟାପିଛି ଓ ଯମୁନା ଆଡ଼କୁ ବୁଲିଯାଇ ବହୁ ଦୂରକୁ ଲମ୍ବିଯାଇଛି । ଜଙ୍ଗଲରେ ବହୁ ଜଣାଅଜଣା ବୃକ୍ଷ ଲତା ଓ ଛୋଟ ବଡ଼ ବହୁ ବଣ୍ୟଜନ୍ତୁ । ନନ୍ଦ କହନ୍ତି ଗୋପ ଗ୍ରାମ, ଗ୍ରାମ ନୁହେଁ, ବିରାଟ ଅଞ୍ଚଳ, ମଣିଷ, ଜନ୍ତୁଜୁନ୍ତା, ଗଛବୃକ୍ଷ ସମସ୍ତଙ୍କର ବାସସ୍ଥାନ । ଏ ଦେବ ସ୍ଥାନ, ଏଠି ଦିନ ରାତି ସବୁବେଳେ ଦେବତାମାନେ ଆତଯାତ ହୁଅନ୍ତି । ସମସ୍ତଙ୍କ ସହିତ ମିଶନ୍ତି, ଭଲ

ମନ୍ଦରେ ଉପଦେଶ ଦିଅନ୍ତି । ସେ ଦେଖିଛନ୍ତି ବାପା ଯେତେବେଳେ ରାତିରେ ଗୋପରେ ରହନ୍ତି, ସେ ସାରା ରାତି ବିଷ୍ଣୁ ମନ୍ଦିରରେ ରହନ୍ତି ଓ ରାତି ସାରା କାହା ସାଙ୍ଗରେ ସବୁ କଥାବାର୍ତ୍ତା କରନ୍ତି । ଯଶୋଦାଙ୍କର ମଧ୍ୟ ସେହି ଅଭ୍ୟାସ । ସେ ନିଜ ହାତରେ ବିଷ୍ଣୁ ମନ୍ଦିରର ସବୁ କାମ କରନ୍ତି । ମଝିରେ ମଝିରେ ସେ ବି ରାତିରେ ମନ୍ଦିରରେ ରହିଯାଆନ୍ତି । ଆଉ ତା ପରେ ଦି ତିନି ଦିନ ନନ୍ଦ କହନ୍ତି, ତାଙ୍କର ବାହ୍ୟ ଜ୍ଞାନ ରହେନା । ସେ କୁଆଡ଼େ ଯାଆନ୍ତି, କଅଣ କହନ୍ତି, କଅଣ ଖାଆନ୍ତି, କିଛି ଠିକ୍ ନ ଥାଏ । ଖାଲି ଗୋଡ଼ ଦି'ଟା ଭୂଇଁରେ ଚାଲୁଥାଏ । ହାତ ଦି'ଟା ଛାଁ ଛାଁ କାମ କରୁଥାଏ । କିନ୍ତୁ ସେ କୋଉଠି ଥାଆନ୍ତି କେଜାଣି । ସେ ସମୟରେ ନନ୍ଦ ବି ଡରି ଡରି ତାଙ୍କଠୁଁ ଦୂରେଇ ରହନ୍ତି ।

ଗଛବୃକ୍ଷ ଭିତର ଦେଇ ଖଣ୍ଡ ଖଣ୍ଡ ସୂର୍ଯ୍ୟକିରଣ ଲମ୍ବା ସୂତା ପରି ଲମ୍ବିଆସିଥାଏ । ଚଢ଼େଇମାନେ ରାବୁ ଥାଆନ୍ତି, କୁମ୍ଭାଟୁଆ ଡାକୁଥାଏ, ଗାଁ ଦାଣ୍ଡରେ କୁକୁରମାନେ ଭୁକୁଥାଆନ୍ତି, ଗାଈମାନେ ହମ୍ବାରଡ଼ି ଦେଉଥାଆନ୍ତି, ପିଲାମାନଙ୍କର ଖେଳର ପାଟିଗୋଳ ଭାସି ଆସୁଥାଏ । ଭାନୁପ୍ରକାଶ କଥା ଆରମ୍ଭ କଲେ – 'ସୌରଦେବ ଆପଣ ଓ ଅରିନ୍ଦମ ଉଭୟଙ୍କ କଥା ମୁଁ ମାନୁଛି । ଗତ କାଲି ଯାହା ଘଟିଲା ମୋ' ମନ ବହୁତ ଦବିଗଲା । ବିଶେଷ କରି ଶେଷରେ ଯାହା ହେଲା ସେପରି ହୋଇପାରେ ବୋଲି ମୁଁ କେବେହେଲେ ଭାବି ନ ଥିଲି । କଂସ ଉପରେ ମୋର କେବେହେଲେ ବିଶ୍ୱାସ ନ ଥିଲା, ତା'ର ପ୍ରତ୍ୟେକ କାର୍ଯ୍ୟକୁ ମୁଁ ସନ୍ଦେହ କରୁଥିଲି । ମୋର ଗୋଟାଏ ଗର୍ବ ଥିଲା ଯେ ତା'ର ସବୁ ଖେଳ ମୁଁ ବୁଝିପାରୁଛି । ସେ ଗର୍ବ ମୋର ଭାଙ୍ଗିଗଲା'– ଭାନୁପ୍ରକାଶ ଚୁପ କରିଗଲେ । ଅରିନ୍ଦମ ବୁଝିଲା ଭାନୁପ୍ରକାଶଙ୍କ ପରି ଗଭୀର ଆତ୍ମବିଶ୍ୱାସ ଥିବା ଲୋକର ମାନସିକତାକୁ ଏ ଗୋଟାଏ ବଡ଼ ଧକ୍କା । କିନ୍ତୁ ସେ ଆଶ୍ଚର୍ଯ୍ୟ ହେଲା ଏ ଆଘାତକୁ ସେ କେତେ ଶୀଘ୍ର ଅତିକ୍ରମ କରି ଯାଇପାରିଲେ । ସୌରଦେବ କହିଲେ, 'ମନେ ହେଉଛି ଏ କିଛି ତାତ୍କାଳିକ ନିଷ୍ପତ୍ତି ନୁହେଁ । କଂସ ଅନେକ ଦିନ ଧରି ଏ ଯୋଜନା କରୁଥିଲା ।'

'ଠିକ୍', ଭାନୁପ୍ରକାଶ କହିଲେ, 'ସେହିଯୋଗୁ ହିଁ ମତେ ଦୁଃଖ ଲାଗୁଛି ମୁଁ ଜାଣିପାରିଲି ନାହିଁ କେମିତି । ଦେବକୀ ବସୁଦେବ ବିଭାଘର ଯେ ଗୋଟାଏ କୌଶଳ, ଗୋଟାଏ ପ୍ରବଞ୍ଚନା, ଏ ସ୍ପଷ୍ଟ କଥାଟା ମୋର ବୁଝିବା ଉଚିତ ଥିଲା ।'

'ଏ କଥାଟା ବୁଝିବା ଏତେ ସହଜ ନୁହେଁ ଭାନୁପ୍ରକାଶ', କହିଲେ ସତ୍ୟକାମ, 'ମୋର ତ ମନେ ହେଉଛି ଏ ଘଟଣାର ମୂଳ ସୂତ୍ର ବହୁତ ଦୂରରେ – ଜରାସନ୍ଧ ପାଖରେ ।'

'ତା ହୁଏତ ସମ୍ଭବ', କହିଲେ ଭାନୁପ୍ରକାଶ, 'ଜରାସନ୍ଧ ସହିତ କଥାବାର୍ତ୍ତାରୁ ଏହିପରି କିଛି ଚିନ୍ତା ହୁଏତ କଂସ ମୁଣ୍ଡକୁ ଆସିଥାଇ ପାରେ । କିନ୍ତୁ ତାକୁ ଠିକ୍ ଠିକ୍ କାର୍ଯ୍ୟକାରୀ କରିବା ପାଇଁ ଯେଉଁ କୌଶଳ, ଧୈର୍ଯ୍ୟ ଓ ବୁଦ୍ଧିର ଆବଶ୍ୟକ, ଭାବି ହଉନି କଂସର ସେସବୁ ଥିଲା ବୋଲି । ସେଇଟା ହିଁ ମୋର ଭୁଲ ।'

'କିନ୍ତୁ ବେଶ୍ କିଛିଦିନ ଧରି ଏ ଆୟୋଜନ ଚାଲିଥିଲା । ବେଶ୍ ଗୋପନୀୟରେ ବି ।' କହିଲେ ସୌରଦେବ ।

'ହଁ, ତା ଚାଲିଥିଲା । ଆମେ କିଛି କିଛି ଜାଣିଥିଲେ । ଅନେକ ଥର ଆଲୋଚନା ବି କରିଛେ । କିନ୍ତୁ ଆୟୋଜନଟା କ'ଣ, କି ମତଲବରେ ହେଉଛି ଆମେ ଠିକ୍ ବୁଝିପାରି ନ ଥିଲେ । ଏଇଟା ହିଁ କଂସର ବାହାଦୁରୀ । ଗୋପନୀୟତା ଠିକ୍ ରହିଲା, କାମ ବି ଠିକ୍ ହେଲା, ଉଦ୍ଦେଶ୍ୟ ବି ଗୋଳମାଳ ହେଲା ନି ।' କହିଲେ ଭାନୁପ୍ରକାଶ ।

'ଘଟଣା ଯାହା ଘଟିଗଲା ସେଥିରୁ କଂସର ଉଦ୍ଦେଶ୍ୟ ମୋଟାମୋଟି ବୁଝି ହଉଛି', କହିଲେ ସତ୍ୟକାମ, 'ସେ ବସୁଦେବଙ୍କୁ ବନ୍ଦୀକରି ରଖିବାକୁ ଚାହେଁ । କିନ୍ତୁ କାହିଁକି ? କେତେଦିନ ?'

'କାହିଁକିର ଉତ୍ତର ସହଜ', କହିଲେ ଭାନୁପ୍ରକାଶ, 'ବସୁଦେବ ସୁର ଗୋଷ୍ଠୀର ମୁଖ୍ୟ । ତାଙ୍କୁ ସମସ୍ତେ ରାଜାଙ୍କ ପରି ସମ୍ମାନ ଦିଅନ୍ତି, ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି ବି । ସୁର ଗୋଷ୍ଠୀ ଯାଦବମାନଙ୍କ ଭିତରେ ସବୁଠାରୁ ବଡ଼ ଗୋଷ୍ଠୀ, ଆଉ ସବୁଠାରୁ ଶକ୍ତିଶାଳୀ ଗୋଷ୍ଠୀ ବି । ଏହି ଗୋଷ୍ଠୀର ଲୋକମାନେ ମଥୁରା ଛଡ଼ା ଆର୍ଯ୍ୟାବର୍ତ୍ତର ଅନେକ ଆଡ଼େ ରାଜ୍ୟ ଜୟ କରି ରାଜତ୍ୱ କରୁଛନ୍ତି ଓ ବିଭିନ୍ନ ଆଡ଼େ ବିଭିନ୍ନ ରାଜପରିବାରରେ ଏମାନଙ୍କର ବୈବାହିକ ସମ୍ପର୍କ ଅଛି । ଏ ସମସ୍ତଙ୍କର ବସୁଦେବ ଜଣେ ସର୍ବମାନ୍ୟ ବ୍ୟକ୍ତି । କଂସର ବିଚାର ସିଧା ବିଚାର । ସେ ପ୍ରଥମେ ବସୁଦେବଙ୍କ ସହିତ ଦେବକୀଙ୍କର ବିଭାଘର ଠିକ୍ କଲା । ଅର୍ଥାତ୍ ବୈବାହିକ ସମ୍ପର୍କ ହେଲେ ତା ପ୍ରତି ବସୁଦେବ ଓ ସୁର ଗୋଷ୍ଠୀର ଶତ୍ରୁତା କମିଯିବ । କିନ୍ତୁ ଏତିକିରେ ବୋଧେ ତା'ର ବିଶ୍ୱାସ ହେଲା ନାହିଁ । ଦ୍ୱିତୀୟରେ ସେ ବସୁଦେବଙ୍କୁ ବନ୍ଦୀ କଲା । ବିଚାର, ବସୁଦେବ ବନ୍ଦୀ ହେଲେ ସୁର ଗୋଷ୍ଠୀର ମନବଳ ଭାଙ୍ଗିଯିବ । ସାଧାରଣ ଭାବରେ ସେମାନେ ଭୟଭୀତ ହୋଇ ପଡ଼ିବେ ଓ କଂସ ବିରୁଦ୍ଧରେ କିଛି କରିବାକୁ ଭାବିବା ଆଗରୁ ତିନିଥର ଚିନ୍ତା କରିବେ ।'

'କିନ୍ତୁ କେତେଦିନ ସେ ବସୁଦେବଙ୍କୁ ବନ୍ଦୀ କରି ରଖିପାରିବ ? ପୁଣି ସାଙ୍ଗରେ ଦେବକୀ ଅଛନ୍ତି ।' ସତ୍ୟକାମ ତାଙ୍କ ଆଗ ପ୍ରଶ୍ନକୁ ଆଉଥରେ ପଚାରିଲେ ।

ଭାନୁପ୍ରକାଶ ଅରିନ୍ଦମକୁ ଚାହିଁଲେ, କହିଲେ, 'ଅରିନ୍ଦମ, ତୁମେ ତ ଆଜି ସକାଳେ ପ୍ରଦ୍ୟୋତଙ୍କୁ ଭେଟିଚ ବୋଲି କହୁଥିଲ । ତୁମେ ସତ୍ୟକାମଙ୍କର ଏ ପ୍ରଶ୍ନର ଉତ୍ତର ଦିଅ ।'

ଅରିନ୍ଦମ କହିଲା, 'ହଁ, ମୁଁ ଆଜି ସକାଳେ ପ୍ରଦ୍ୟୋତଙ୍କୁ ଏ ପ୍ରଶ୍ନ ପଚାରିଥିଲି, ସେ କହିଲେ ଯେତେଦିନ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ଜନ୍ମ ନ ହୋଇଛି ।'

'ସେ ତ ଖୁବ୍ କମରେ ଦଶବର୍ଷ' କହିଲେ ସତ୍ୟକାମ ।

'ହଁ, ଖୁବ୍ କମରେ ଦଶବର୍ଷ ବା ଆହୁରି ଅନେକ ବର୍ଷ ଯାଇପାରେ, କିଏ କହିବ । କହିଲେ ଭାନୁପ୍ରକାଶ, 'ପାଞ୍ଚମାସ ଆଠମାସ, କି ବର୍ଷେ ଦି ବର୍ଷ ବନ୍ଦୀ କରି ଲାଭ ନାହିଁ । କୌଣସି ବିଚକ୍ଷଣ ଲୋକ ତା କରିବ ନାହିଁ । ସେଥିରେ ଶତ୍ରୁତା କମିବ ନାହିଁ, ବଢ଼ିବ । କଂସର ଏତେ ଆୟୋଜନ ବର୍ଷେ ଦି ବର୍ଷ ପାଇଁ ନୁହେଁ । ଏପରି ଗୋଟାଏ ସମୟ ପାଇଁ ଯାହା ଭିତରେ ସେ ସୁର ଗୋଷ୍ଠୀର ମେରୁଦଣ୍ଡ ଭାଙ୍ଗିଦେଇ ପାରିବ । ଏ ବର୍ଷେ ଦି ବର୍ଷ ନୁହେଁ, ତା ହୋଇଥିଲେ ସେ ପ୍ରଥମ କି ଦ୍ୱିତୀୟ ଗର୍ଭର ସନ୍ତାନ କଥା କହିଥାନ୍ତା । ନାଁ, ତା ନୁହେଁ । ଅଷ୍ଟମ ଗର୍ଭ । ଅନ୍ୟୂନ ଦଶ ବର୍ଷ ବା ବହୁତ ବେଶୀ ଅରିନ୍ଦମ, ପ୍ରଦ୍ୟୋତଙ୍କ ସାଙ୍ଗରେ ଆଉ କଅଣ କଥା ହେଲା ?'

'ନାଇଁ, ପ୍ରଦ୍ୟୋତଙ୍କ କଥା ଶୁଣି ମୋର ରାଗ ହେଲା ।' କହିଲା ଅରିନ୍ଦମ, 'କହିଲି, ଏ ତ ବହୁତ ଦିନ, ଦି ଜଣ ନିର୍ଦ୍ଦୋଷ ଲୋକଙ୍କୁ ଏପରି ଭାବରେ ବନ୍ଦୀ କରି ରଖିବା ଅନ୍ୟାୟ । ପ୍ରଦ୍ୟୋତ ଦି ହାତ ଯୋଡ଼ି ଖାଲି କହିଲେ - ଏ ତ କଂସଙ୍କର ଇଚ୍ଛା । ମୁଁ ଆଦେଶ ପାଳନ କରୁଛି ।'

'ଠିକ୍ କଥା', ଭାନୁପ୍ରକାଶ କହିଲେ, 'ଏ କଂସଙ୍କର ଇଚ୍ଛା, କଂସଙ୍କର ଆଦେଶ । କିନ୍ତୁ ମଜା ଦେଖନ୍ତୁ । ନିର୍ଦ୍ଦେଶ କଂସଙ୍କର ନୁହେଁ । ନିର୍ଦ୍ଦେଶ ଶୂନ୍ୟବାଣୀର । କଂସ ଖାଲି ସେ ନିର୍ଦ୍ଦେଶଟା ପାଳନ କରୁଛି ।'

'ହଁ, ଶୂନ୍ୟବାଣୀ', ସୌରଦେବ କହିଲେ, 'ସେ ତ ଆଉ ଗୋଟାଏ ରହସ୍ୟ । କି ଶୂନ୍ୟବାଣୀ, କିଏ କହିଲା, କୋଉଠୁ ଆସିଲା, କେମିତି ଆସିଲା, ଠିକ୍ ସେତିକିବେଳେ କେମିତି ଶୁଣାଗଲା, ଆଗରୁ କାହିଁକି ହେଲା ନାହିଁ, ଏସବୁ ପ୍ରଶ୍ନ ତ ଅଛି । ପୁଣି ଶୂନ୍ୟବାଣୀ ଗଲା କୁଆଡ଼େ ? ପୁଣି ଆଉ ହବ କି ନାହିଁ ?'

ଭାନୁପ୍ରକାଶ ହସିଲେ - 'ଶୂନ୍ୟ ବାଣୀ ଶୂନ୍ୟରେ ମିଶିଗଲା । ସେ ତ ଦେବର୍ଷି ନାରଦଙ୍କର ଶୂନ୍ୟବାଣୀ, ଅନ୍ତତଃ କଂସ ସେଇଆ ହିଁ କହିଲା । ମନେହେଉଛି ଦେବର୍ଷି ନାରଦ ଅପେକ୍ଷା କରିଥିଲେ । କଂସ ପାଇଁ ଶୂନ୍ୟବାଣୀ କରି ଅନ୍ୟ କେଉଁଠିକି ଚାଲିଗଲେ, ଅନ୍ୟ କାହାପାଇଁ ଶୂନ୍ୟବାଣୀ କରିବା ପାଇଁ ।' ସମସ୍ତେ ହସି ଉଠିଲେ ।

ଭାନୁପ୍ରକାଶ ପୁଣି କହିଲେ, 'ହସ ଠିକ୍ । ଏ ଶୂନ୍ୟବାଣୀ ପଛରେ କିଛି ଯୁକ୍ତି ନାହିଁ । କିନ୍ତୁ ଗୁରୁତର କଥା ହେଲା ଏ ଶୂନ୍ୟବାଣୀକୁ ସମସ୍ତେ ବିଶ୍ୱାସ କରୁଛନ୍ତି ।

...ଅରିନ୍ଦମ, ବାପା ବି ?'

'ହଁ', ଅରିନ୍ଦମ କହିଲା ।

'ମୋର ବିଶ୍ୱାସ, ଗୁରୁଦେବ ଶୁଣିଲେ ସେ ବି ବିଶ୍ୱାସ କରିବେ', କହିଲେ ଭାନୁପ୍ରକାଶ - 'କହିବେ ଏ ପ୍ରାରବ୍ଧ । ଏହିପରି ହବାର କଥା ।'

'ମୋର ତ ବିଶ୍ୱାସ ହେଉଛି', କହିଲେ ଦେବଭାଗ ।

'ମୋର ବି ଓ ବୃନ୍ଦାବତୀଙ୍କର ବି', କହିଲେ ଗୋପା ।

'ମୁଁ ବି ବିଶ୍ୱାସ କରୁଛି', କହିଲେ ନନ୍ଦ, 'ଯଶୋଦା ପ୍ରଭୃତିଙ୍କର ବି ବିଶ୍ୱାସ ଏ କଥା ଘଟିବ । ଅଷ୍ଟମ ଗର୍ଭରେ ତ୍ରାଣକର୍ତ୍ତା ଆସିବେ ।'

'ସୌରଦେବ ଆପଣ ? ସତ୍ୟକାମ ତୁମେ ? ଅରିନ୍ଦମ ତୁମେ ? ମୋର ମନେ ହେଉଛି ତୁମେ ସମସ୍ତେ ଅଧା ଅଧା ବିଶ୍ୱାସ କରୁଛ ।' କହିଲେ ଭାନୁପ୍ରକାଶ, 'ବୋଧହୁଏ ଏକମାତ୍ର ଭାନୁପ୍ରିୟ ଅନ୍ୟପ୍ରକାର ଭାବୁଛନ୍ତି ।'

'ଆପଣ କ'ଣ ବିଶ୍ୱାସ କରୁ ନାହାନ୍ତି ?' ପଚାରିଲା ଅରିନ୍ଦମ ।

ଭାନୁପ୍ରକାଶ ଗମ୍ଭୀର ହୋଇଗଲେ । କହିଲେ - 'କଥା ତା ନୁହେଁ । କିଛି କଥା ଘଟିଯାଇଛି ଯାହାକୁ ଆମେ ଇଚ୍ଛାକଲେ ବି ଅନ୍ୟପ୍ରକାର କରିପାରିବା ନାହିଁ । ସମସ୍ତେ ବା ପ୍ରାୟ ଅଧିକାଂଶ ଏହାକୁ ସ୍ୱତଃସିଦ୍ଧ ବୋଲି ଧରି ନେଇଛନ୍ତି । ଏହାର ପ୍ରଭାବ ସାଙ୍ଗେ ସାଙ୍ଗେ ନ ହେଲେ ବି ବେଶ କିଛିଦିନ ପରେ ଆମେ ବୁଝିପାରିବା ଏ ବିଷୟରେ ମୋର ସନ୍ଦେହ ନାହିଁ । କଥା ହେଲା ଆମେ ସେହି ଦିନକୁ କିପରି ଅପେକ୍ଷା କରିବା, ଆ ଭିତରେ କ'ଣ କରିପାରିବା ? ତା'ଛଡ଼ା ଆଉ ଗୋଟାଏ ବିଚାର ଅଛି । ଏ ଅଷ୍ଟମ ଗର୍ଭ କେବେ ? ଆସିବ କି ? କିଛି ନିଶ୍ଚୟତା ଅଛି କି ? ଯଦି ଏହା ଭିତରେ କିଛି ଭଲମନ୍ଦ ହେଇଗଲା ?' ଭାନୁପ୍ରକାଶ ଟିକେ ରହିଗଲେ ଓ ହସିଲେ, 'ସୌରଦେବ, ଭାବୁଛନ୍ତି, ଏ ଅଷ୍ଟମ ଗର୍ଭ କଥାଟା କେତେ ଚାଲାକି କଥା ?

ସମସ୍ତେ ଚୁପ କରିଗଲେ । ବାହାରେ ଚଢ଼େଇମାନେ ରାବୁଥାନ୍ତି, ଗାଈମାନେ ହମ୍ବାରଡ଼ି ଦେଉଥାନ୍ତି, ଆସ୍ତେ ଆସ୍ତେ ପବନ ବହୁଥାଏ । ଚାରିପାଖରେ ଛାଇ ଓ ଉଷୁମ ଉଷୁମ ଭାବ । ଭାନୁପ୍ରକାଶ କହିଲେ, 'ନନ୍ଦ, ଉଗ୍ରସେନଙ୍କ କୋଠିର କିଛି ଖବର ଆସିଲା ?' 'ହଁ', ନନ୍ଦ କହିଲେ, 'ସେ ପାଖକୁ ଗୋପାଳମାନେ ଯାଇ ନାହାନ୍ତି । କିନ୍ତୁ ସେ ବାଟେ ଯେଉଁ ଗୋପାଳୁଣୀମାନେ ମଥୁରାକୁ ଦୁଧ ଦହି ବିକିବାକୁ ଯାଇଥିଲେ ସେମାନେ ଫେରି ଆସିଲେଣି ।' 'କଅଣ ଖବର ?' ଭାନୁପ୍ରକାଶ ପଚାରିଲେ ।

'ତୁମେ ଯାହା କହୁଥିଲ ।' କହିଲେ ନନ୍ଦ, 'ଆଗେ ହତା ବାହାରେ ବିଶେଷ କେହି ଲୋକବାକ ରହୁ ନ ଥିଲେ । ଯାହା ହେଉଥିଲା ସବୁ ସେହି ହତା ଭିତରେ । ଆଜି ହତା ବାହାରେ ସୈନ୍ୟ ଜଗିଛନ୍ତି । ସେହି ବାଟ ଦେଇ ଯେଉଁମାନେ ଯାଉଛନ୍ତି ବା ସେ ଘାଟ ଦେଇ ପାର ଉତ୍ତାର ହେଉଛନ୍ତି, ଏପରିକି ଯମୁନା ଦେବୀଙ୍କ ମନ୍ଦିରକୁ ଯେଉଁମାନେ ଆସୁଛନ୍ତି ସମସ୍ତଙ୍କ ଉପରେ ନଜର ରଖିଛନ୍ତି । ଗୋପାଳୁଣୀ କେଇଜଣ ଟିକେ ଆଗ୍ରହରେ ହତା ଫାଟକ ପାଖକୁ ଚାଲିଗଲେ । ସାଙ୍ଗେ ସାଙ୍ଗେ ଦଶଜଣ ସୈନ୍ୟ ଦଉଡ଼ି ଆସିଲେ – ଏଠି କ'ଣ କରୁଛ ? ଯାଅ, ଯାଅ– ପାଟି କଲେ ।'

'ଭିତରେ କ'ଣ ହେଉଛି କିଛି ବୁଝିପାରିଲେ କି ?' ଭାନୁପ୍ରକାଶ ପଚାରିଲେ ।

'ନାଁ', ନନ୍ଦ କହିଲେ, 'ସୈନ୍ୟମାନଙ୍କ ପାଟିରେ ସେମାନେ ଦୌଡ଼ି ପଳେଇ ଆସିଲେ । ତେବେ ମୁଁ ତାଙ୍କୁ କହିଥିଲି ଭିତରେ କ'ଣ ହେଉଛି ଲକ୍ଷ୍ୟ କରିବ ।'

'କଲେ କି ?' ଭାନୁପ୍ରକାଶ ପଚାରିଲେ ।

'ଠିକ୍ ତା ନୁହେଁ । କିନ୍ତୁ ଗୋଟାଏ ମଜାକଥା ହେଲା', ନନ୍ଦ କହିଲେ ।

'କଅଣ ?'

'ଏମାନେ ଦୌଡ଼ି ପଳେଇ ଆସୁଥିଲେ । ଦି ତିନି ଜଣ ସୈନିକ ଡାକିଲେ – ଶୁଣ, ଶୁଣ, ଦୌଡ଼ି ପଳଉଛ କାହିଁକି ? ଏମାନେ ଗଲେ । ସେମାନେ କହିଲେ – ଦେଖ, ତୁମେ ତ ଦୁଧ ଦହି ବିକୁଛ । ଆମକୁ ଦଉନା । ସେନାପତି କହିଛନ୍ତି ଯେମିତି ହତା ପାଖକୁ କେହି ନ ଆସନ୍ତି, ସେଇଯୋଗୁ ଆମେ ପାଟି କଲୁ । ଆମକୁ ଦିଅ । ଏମାନଙ୍କ ଭିତରୁ ଜଣେ ସାହସ କରି ପଚାରିଲା – ମୂଲ ? ସେମାନେ କହିଲେ – ହଁ ପାଇବ । ସେନାପତି ଆସନ୍ତୁ ।'

'ଏମାନେ ଦୁଧ ଦହି ଦେଲେ କି ?' ଭାନୁପ୍ରକାଶ ପଚାରିଲେ ।

'ହଁ ଦେଲେ । ମଥୁରାରୁ ଫେରି ଆସିବା ବେଳେ ମୂଲ ବି ଆଣିଛନ୍ତି ।'

'ଗୋପାଳୁଣୀମାନେ ତ ବେଶ୍ ଚାଲାକ', ହସିଲେ ଭାନୁପ୍ରକାଶ, 'କିନ୍ତୁ ଖବର କିଛି ପାଇଲେ କି ?'

'ହଁ, କିଛି' କହିଲେ ନନ୍ଦ, 'ଯେମିତି, ପ୍ରଥମେ, ହତା ବାହାରେ ଯେଉଁ ସୈନ୍ୟମାନେ ଅଛନ୍ତି ସେମାନେ ସେଠି କିଛିଦିନ ରହିବେ ।'

'ହତା ଭିତରେ ବି ସୈନ୍ୟମାନେ ଥିବେ ?' ପଚାରିଲେ ଭାନୁପ୍ରକାଶ ।

'ହଁ, ଅଛନ୍ତି । ତେବେ ଗୋପାଳୁଣୀମାନେ ସେମାନଙ୍କୁ ଦେଖି ନାହାନ୍ତି । ଯାହା କଥାବାର୍ତ୍ତାରୁ ବୁଝିଲେ ।'


Digitized by srujanika@gmail.com

'ତାପର ?' ଭାନୁପ୍ରକାଶ ପଚାରିଲେ

'ସେ ସୈନ୍ୟମାନେ ସମସ୍ତେ ମଥୁରାର ଲୋକ । ଜଣେ ଦି ଜଣ ବି ମୁହଁ ଚିହ୍ନା । ସେମାନଙ୍କର କଥାବାର୍ତ୍ତାରୁ ଏମାନଙ୍କର ଯାହା ମନେହେଲା, ସେମାନେ ବିଶେଷ ଖୁସି ନୁହନ୍ତି । ଜଣେ ତ କହି ପକାଇଲା, କେବେ ଦେବକୀର ପିଲା ହେବ ସେଥିପାଇଁ ଆଜିଠଉଁ ଏମାନଙ୍କୁ ବନ୍ଦୀକରି ରଖିବା କ'ଣ ଠିକ୍ ହେଲା ।'

'ହଁ, ସୈନ୍ୟମାନେ ସେମିତି କହନ୍ତି', କହିଲେ ଭାନୁପ୍ରକାଶ । 'ମୁଁ ବି ମୋ' ସୂତ୍ରରୁ କିଛି ଖବର ପାଇଛି । ଗୋପାଳୁଣୀମାନେ ଠିକ୍ କହୁଛନ୍ତି । ସୈନ୍ୟମାନେ ସେଠି କିଛିଦିନ ରହିବେ । ଆଉ ସେ ବାଟେ ଯିବା ଆସିବା ବାଟ ବି ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇ ପାରେ ।' ସେ ଟିକେ ରହିଗଲେ । ତାପରେ କହିଲେ – 'ଆଜି ସକାଳେ ସେନାପତି ପ୍ରଦ୍ୟୋତ ଦେବକୀ ବସୁଦେବଙ୍କ ପାଖକୁ ଯାଇଥିଲା ।'

'କାହିଁକି ?' ସୌରଦେବ ପଚାରିଲେ ।

'ସେ କଥା ମୁଁ ଜାଣେ ନା', କହିଲେ ଭାନୁପ୍ରକାଶ, 'ତେବେ ମୋର ମନେହେଉଛି ଗତ କାଲିର ଘଟଣା ପରେ କଂସ ବୋଧହୁଏ ଜାଣିବା ପାଇଁ ଚାହୁଁଥିଲା ଦେବକୀ ବସୁଦେବଙ୍କର ମନୋଭାବ କଅଣ ।'

'ନାଁ, ଆଉ କିଛି ନୂଆ ଢଙ୍ଗର ଅତ୍ୟାଚାର ?' ସତ୍ୟକାମ ପଚାରିଲେ ।

'ତା ବି ସମ୍ଭବ', ଭାନୁପ୍ରକାଶ କହିଲେ, 'ଏ କିଛିଦିନ କଂସ ଉଭୟ ଥଣ୍ଡା ଓ ଗରମ ଚିକିତ୍ସା କରିବ । ଏ ଖାଲି ଦେବକୀ ବସୁଦେବ କଥା ନୁହେଁ । ଏ ସମଗ୍ର ଯାଦବ ଜାତିର କଥା । ଜାତିର ଜଣେ ମୁଖ୍ୟ ଲୋକକୁ ସେ ବନ୍ଦୀ କରି ରଖିଛି । ଯେପରି ଭାବରେ ତାଙ୍କୁ ବନ୍ଦୀ କରାଗଲା, ଯେଉଁ ଢଙ୍ଗରେ ହେଲା, ଯେତେ ଚାଲାକି ଭାବରେ ହେଲା ତାକୁ ସମସ୍ତେ ବିଶ୍ୱାସ କରିବେ ନାହିଁ କଂସ ସେକଥା ଜାଣେ । ସେଥିପାଇଁ ସେ ଏବେ କିଛିଦିନ ସାବଧାନ ରହିବ । ନିଜର ଭଲ ମଣିଷପଣିଆ ଦେଖେଇବାକୁ ଚାହିଁବ । ତା ସହିତ ନିଜର ପ୍ରତିପତ୍ତି ମଧ୍ୟ ଜାହିର କରିବ । ସୌରଦେବ, ଆଜି ସକାଳେ କଂସ ଯାଦବ ମୁଖିଆମାନଙ୍କର ଗୋଟାଏ ସଭା ଡାକିଥିଲା । ହେଲା କି ?'

'ହୋଇଥିବ, ମୁଁ ଯାଇନି ।' କହିଲେ ସୌରଦେବ ।

'ହଁ, ସକାଳେ ମୁଁ ପ୍ରଦ୍ୟୋତଙ୍କ ସହିତ ଦେଖା କଲାବେଳେ ସେ ସଭାକୁ ବାହାରିଥିଲେ ।' କହିଲା ଅରିନ୍ଦମ ।

'ସଭାର ଖବର ମୁଁ ପାଇଛି', କହିଲେ ଭାନୁପ୍ରକାଶ, 'ଅନେକ ମୁଖିଆ ଆସି ନ ଥିଲେ । କଂସ ବ୍ୟସ୍ତ ନୁହେଁ । ସେ ପୁଣି ଥରେ ସଭା ଡାକିବ । ସେ ବର୍ତ୍ତମାନ


Digitized by srujanika@gmail.com

ଦାନ, ଭେଦ ଦଣ୍ଡ ସବୁ ନୀତିର ଆରମ୍ଭ କରିବ । ସେ ସାବଧାନ ଅଛି ।'

'ଯାହା ମୁଁ ବୁଝୁଛି', ସତ୍ୟକାମ କହିଲେ, 'ଅନେକଗୁଡ଼ିଏ ଘଟଣା ଏକା ସାଙ୍ଗରେ ବା ପରେ ପରେ ଘଟିଛି । ଆଉ ଏ ସବୁର ମୁଖ୍ୟ ଆଧାର ଦେବକୀ ବସୁଦେବଙ୍କର ବିଭାଘର ।'

'କିନ୍ତୁ ମୂଳ ଆପଣ ଯା କହୁଥିଲେ ।' କହିଲେ ଭାନୁପ୍ରିୟ, 'କଂସର ଜରାସନ୍ଧ ସହିତ ଦେଖା ହେବା ଦିନଠାରୁ ।'

'ତା ଠିକ୍', କହିଲେ ଭାନୁପ୍ରକାଶ, 'କିନ୍ତୁ କଂସ ଯେ ଆରମ୍ଭରୁ ଭଲ ଥିଲା ତା ନୁହେଁ । ଜରାସନ୍ଧ ସହିତ ଦେଖା ହେବା ପରଠାରୁ, ବିଶେଷ କରି ଜରାସନ୍ଧର ଝିଅମାନଙ୍କୁ ବିଭା ହେବା ପରେ ପରେ କିନ୍ତୁ ତା ଚରିତ୍ରର ନୂଆ ନୂଆ ଦିଗ ଖୋଲିଗଲା । ଲୋକମାନଙ୍କୁ ଭୟଭୀତ କରି, ଅତ୍ୟାଚାର କରି, ଦରକାର ହେଲେ ନିଷ୍ଠୁର ଭାବରେ ହତ୍ୟା କରି, ନିଜର ସ୍ୱାର୍ଥ ପାଇଁ, ସଂପୂର୍ଣ୍ଣ ଅଧର୍ମ ଅନୀତିରେ ରାଜ୍ୟ ଶାସନ କରିବାର ଯେଉଁ ମନୋଭାବ, ସେଟା ଜରାସନ୍ଧ ପାଖରୁ କଂସ ପାଖକୁ ଚାଲି ଆସିଲା । ତେଣୁ କଂସର ପ୍ରଥମ କାମ ହେଲା ନିଜର ସରଳ, ସ୍ନେହୀ ପିତାଙ୍କୁ ଧକ୍କା ମାରି ବାହାର କରିଦେଇ ନିଜେ ରାଜା ହେବା । ଦ୍ୱିତୀୟ କାମ ହେଲା ଯାଦବମାନଙ୍କୁ ଛିନଛତ୍ର କରି, ଚିପିଚାପି, ସମ୍ପୂର୍ଣ୍ଣ ଭାବରେ ନିଜର ଅଧୀନରେ ରଖିବା । ସେଥିପାଇଁ କଂସ ଯେ କୌଣସି କାମ କରିବାକୁ ପ୍ରସ୍ତୁତ ଓ କରୁଛି ବି । ଦେବକୀ ବସୁଦେବ ଯୋଜନା ଏହିପରି ଗୋଟିଏ କାମ । ସାରା ରାଜ୍ୟରେ କଂସ ଭୟ ଖେଳେଇ ଦେଇଛି । ରାଜ୍ୟର ସ୍ୱାର୍ଥ ବୋଲି କିଛି ନାହିଁ । ତା'ର ନିଜର ସ୍ୱାର୍ଥ ହିଁ ଏକମାତ୍ର ବିଚାର ।'

'ଆଉ ଗୋଟାଏ କଥା ମୁଁ ଭାବୁଛି ଭାନୁପ୍ରକାଶ ।' କହିଲେ ସତ୍ୟକାମ, 'ସେ ଶୂନ୍ୟବାଣୀ ! ମତେ ବଡ଼ ଅଦ୍ଭୁତ ଅଦ୍ଭୁତ ଲାଗୁଛି । ପ୍ରଥମ କଥା ଲୋକମାନଙ୍କୁ ଧାରଣା ଦିଆହେଲା ଯେ ଶୂନ୍ୟବାଣୀ ଶୂନ୍ୟରୁ ଆସିଲା – ଦୈବବାଣୀ, ଆକାଶରୁ ଆସିଲା, ଦେବତାମାନଙ୍କର ବାଣୀ । କିନ୍ତୁ ଏଇଟା କ'ଣ ସମ୍ଭବ ? ଏ ଗୋଟାଏ ଖାଲି କହିବାର କଥା । ନା ବିଶ୍ୱାସ ହେଉନି । ତାପରେ ଶୂନ୍ୟବାଣୀରେ ଯେଉଁକଥା କୁହାଗଲା, ଦେବକୀର ସନ୍ତାନ ହାତରେ କଂସର ମୃତ୍ୟୁ, ଏ ଅଦ୍ଭୁତ ଭବିଷ୍ୟତ ବାଣୀ, ଏ କଥାର ଭିତ୍ତି କେଉଁଠି ? ଏ ବି ପୂରା ଉପର ଠାଉରିଆ । ତା' ସହିତ ଯେଉଁ ପାଖ କଥାଟା କହିଲା – ଦେବକୀର ଅଷ୍ଟମ ଗର୍ଭର ସନ୍ତାନ । ଦେଖ, ଏକରୁ ସାତ କୌଣସି ଗର୍ଭ ନୁହେଁ, ଅଷ୍ଟମ ! ଏ ଅଷ୍ଟମଟା କେବେ, ହବ କି ନାହିଁ, କିଏ ନିଶ୍ଚିନ୍ତ କରିବ ?' ସତ୍ୟକାମ ଟିକିଏ ରହିଗଲେ । ପୁଣି କହିଲେ, 'ମୋର ମନେହେଉଛି ଏ ବଡ଼

ଗୋଳମାଳିଆ କଥା, ଯୁକ୍ତିଯୁକ୍ତ ନୁହେଁ, କୌଶଳ କରି କୁହାଯାଇଛି ।'

'ହଁ', ଭାନୁପ୍ରକାଶ କହିଲେ, 'ବାସ୍ତବିକ ଏ ଗୋଟାଏ ଗୋଳମାଳିଆ କଥା । ସହଜେ ବିଶ୍ୱାସ କରି ହେବନି, କି ଅବିଶ୍ୱାସ ବି କରିହେବନି । କଂସ ଏକଥା ଜାଣେ ଓ ଜାଣିକରି ଗୋଟାଏ ଗୋଳମାଳିଆ ଅବସ୍ଥାରେ କଥାଟାକୁ ଛାଡ଼ି ଦେଇଛି ଯେପରି କିଛି ଲୋକ ଅବିଶ୍ୱାସ କଲେ ବି କିଛି ଲୋକ ନିଶ୍ଚୟ ବିଶ୍ୱାସ କରିବେ ।'

'ଆଉ ଗୋଟାଏ କଥା ଭାନୁପ୍ରକାଶ,' ସତ୍ୟକାମ ପୁଣି କହିଲେ, 'ଏ ଶୂନ୍ୟବାଣୀର ମୂଳ କେଉଁଠି ? ଆସିଲା କେଉଁଠୁ ? ଯଦି ଆକୁ ଗୋଟାଏ ଦୈବବାଣୀ ବୋଲି ଧରିନେବା, ତା ହେଲେ ଭାବିବା ଦରକାର ନାହିଁ । ଦୈବବାଣୀ ଦୈବବାଣୀ । ସେ ଶୂନ୍ୟରୁ ତ ହେବ । କିନ୍ତୁ ଏ ଶୂନ୍ୟବାଣୀଟା ଠିକ୍ ସେଇଆ କି ?'

'ମୋର ତ ମନେହେଉଛି, ଏ ଠିକ୍ ସେଇଆ ନୁହେଁ । ଏ ଶୂନ୍ୟବାଣୀଟାକୁ କୌଶଳରେ ତିଆରି କରାହୋଇଛି ।' ଭାନୁପ୍ରକାଶ କହିଲେ ଓ ଗୋପାଙ୍କୁ ଚାହିଁଲେ - 'ଗୋପା କିଛି କହିବ ?'

'ମୁଁ ଭାବୁଛି ସେ ତାନ୍ତ୍ରିକମାନଙ୍କର କିଛି ହାତ ଅଛି ।' ଗୋପା କହିଲେ ।

'ତାନ୍ତ୍ରିକ ?' ସତ୍ୟକାମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ ।

'ହଁ, କଂସ ପାଖେ ପାଖେ ସେମାନେ ଛାଇପରି ରହିଥିଲେ । ଗୋପା ସେମାନଙ୍କୁ ତ ବାରମ୍ବାର ଦେଖୁଥିବେ ।' କହିଲେ ଭାନୁପ୍ରକାଶ ।

'ହଁ', ଗୋପା କହିଲେ, 'କଂସଙ୍କର ଶୋଇବା ଘର ପାଖ ଘରେ ସେମାନେ ରହୁଥିଲେ । କାହା ସାଙ୍ଗରେ ମିଶୁ ନ ଥିଲେ । ଘର ଭିତରେ ପ୍ରାୟ ସବୁବେଳେ ରହୁଥିଲେ । କ'ଣ କରୁଥିଲେ କେଜାଣି ? ପ୍ରଥମେ ପ୍ରଥମେ ନଅର ଭିତରର ସ୍ତ୍ରୀ ଲୋକମାନେ ତାଙ୍କ ବିଷୟରେ କଥାବାର୍ତ୍ତା ହେଉଥିଲେ, କ'ଣ କରୁଛନ୍ତି ଉଣ୍ଡିକରି ଦେଖୁଥିଲେ । କିନ୍ତୁ ଆସ୍ତେ ଆସ୍ତେ ସେସବୁ କମିଗଲା । କଂସ ବି ବିରକ୍ତ ହେଲେ ।'

ଅରିନ୍ଦମ କହିଲା, 'ଗତ କାଲି ତ ସେମାନେ ଦେବକୀ ବସୁଦେବଙ୍କ ସାଙ୍ଗରେ ଯିବାପାଇଁ ପଛ ରଥରେ ବସିଥିଲେ । ଏ ଗୋଳମାଳ ବେଳେ ଓହ୍ଲାଇଗଲେ ।'

'ଶୁଣ ।' ସତ୍ୟକାମ କହିଲେ, 'ତାନ୍ତ୍ରିକ କାହିଁକି କହୁଛ ?'

'ଆମେ ଜାଣୁନା', ଗୋପା କହିଲେ, 'ତାଙ୍କ ଚେହେରା ଓ ପୋଷାକପତ୍ରରୁ ଆମେ ସେଇଆ ଭାବୁଥିଲୁ ।'

ସତ୍ୟକାମ କହିଲେ, 'ହିମାଳୟର ଉତ୍ତର ପାଖରେ ଗୋଟାଏ ଗୋଷ୍ଠୀର ଲୋକ ଅଛନ୍ତି ମୁଁ ଜାଣେ । ସେମାନଙ୍କୁ ବାହାରୁ ଦେଖିଲେ ତାନ୍ତ୍ରିକ ପରି ମନେହେବ । କିନ୍ତୁ ସେମାନେ ତାନ୍ତ୍ରିକ ନୁହନ୍ତି । ଏମାନେ ବୋଧହୁଏ ସେଇ ଗୋଷ୍ଠୀର ଲୋକ ହେବେ ।


Digitized by srujanika@gmail.com

ସେମାନେ ଯନ୍ତ୍ରମନ୍ତ୍ର ଓ ନାନା କଳାକୌଶଳ କଥା ଜାଣନ୍ତି । ଅନେକ ସମୟରେ ତଳ ଅଞ୍ଚଳକୁ ଓହ୍ଲେଇ ଆସନ୍ତି ଓ ଆର୍ଯ୍ୟାବର୍ତ୍ତର ରାଜାମାନଙ୍କ ପାଖରେ କାମ କରନ୍ତି ।'

'ତା ହୋଇପାରେ', ଭାନୁପ୍ରକାଶ କହିଲେ, 'ଆମ ଖବର ଏମାନେ କଂସ ପାଖରେ ବେଶ୍ କିଛିଦିନ ହେଲା ଅଛନ୍ତି । ଗୋପା, ସେମାନଙ୍କ କାମ ଦାମ ବିଷୟରେ କିଛି ଖବର ପାଇଛ କି ?

'ନା, ବିଶେଷ କିଛି ନୁହେଁ', ଗୋପା କହିଲେ । 'ସେମାନେ ପ୍ରାୟ ଦିନ ରାତି ସେହି ଘର ଭିତରେ କଅଣ କାମଦାମ କରୁଥିଲେ । ହଁ, ଗୋଟାଏ ଦିନ କଥା ମନେପଡୁଛି । ସେଦିନ କଂସ ସେ ଦିହିଁଙ୍କି ସାଙ୍ଗରେ ନେଇ ଦକ୍ଷିଣ ଜଙ୍ଗଲ ଭିତରକୁ ଯାଇଥିଲେ । ସନ୍ଧ୍ୟାକୁ ଫେରିଲେ । ସାରାଦିନ ଜଙ୍ଗଲ ଭିତରେ କଅଣ ସବୁ ହେଲା । ସାଙ୍ଗରେ ଥିବା ଲୋକମାନେ ବହୁତ ଡରି ଯାଇଥିଲେ । କହୁଥିଲେ କ'ଣ କ'ଣ ସବୁ ହେଲା, ଭୟଙ୍କର ଭୟଙ୍କର ଶବ୍ଦ ସବୁ ଜଙ୍ଗଲ ଭିତରୁ ଆସୁଥିଲା । ଦିନେ ଦିନେ ବେଶୀ ରାତି ହୋଇଗଲେ ସେମାନଙ୍କ ଘରୁ କେତେ ପ୍ରକାର ଶବ୍ଦ ଆସେ । ଯେପରି କିଏ ନାଚୁଛି, କିଏ ଗୀତ ଗାଉଛି, କେଉଁମାନେ କଥାବାର୍ତ୍ତା କରୁଛନ୍ତି । ନଅରର ବିଶେଷ କରି ସ୍ତ୍ରୀଲୋକମାନେ ସେମାନଙ୍କ ଠାରୁ ଦୂରେଇ ଦୂରେଇ ରହୁଥିଲେ ।'

'ଗତ କାଲି ଦେବକୀ ବସୁଦେବଙ୍କ ସାଙ୍ଗରେ ଆଉ ଗୋଟାଏ ରଥରେ ସେମାନେ କୁଆଡ଼େ ଯାଉଥିଲେ ଜାଣିଚ ?' ପଚାରିଲେ ଭାନୁପ୍ରକାଶ ।

'ନାଁ ଜାଣେନା', କହିଲେ ଗୋପା, 'ଆଜି ସକାଳେ ନଅର ଭିତରେ ସବୁ କଥାବାର୍ତ୍ତା ହେଉଥିଲେ ସେ ଦୁହେଁ ଆଉ ବେଶୀଦିନ ରହିବେନି । ତାଙ୍କ ରାଜ୍ୟକୁ ଶୀଘ୍ର ଫେରିଯିବେ ।'

'ମୋର ମନେହେଉଛି ଏ ଶୂନ୍ୟବାଣୀର କାରବାର ସହିତ ଏ ଦୁଇ ତାନ୍ତ୍ରିକଙ୍କର କିଛି ସମ୍ପର୍କ ଅଛି । ନଚେତ ସେମାନଙ୍କର ବିଷୟରେ କଂସ ଏତେ ସାବଧାନ ସତର୍କ କାହିଁକି ?' କହିଲେ ସୌରଦେବ ।

'ତା ଅସମ୍ଭବ ନୁହେଁ', କହିଲେ ଭାନୁପ୍ରକାଶ । 'ସେମାନେ ହୁଏତ ଏପରି କିଛି ଯନ୍ତ୍ରର ବ୍ୟବହାର ଜାଣନ୍ତି ଯେ ଲୋକ କଥା ନ କହିଲେ ବି ସେଥିରୁ କଥା ବାହାରିବ ।'

'ବା ଏ ହୁଏତ ଯାଦୁକରର କାରବାର ବି ହୋଇପାରେ । ଯାଦୁକରମାନେ ତ ଶୂନ୍ୟରୁ କଥା କାଢ଼ନ୍ତି ।' କହିଲେ ସତ୍ୟକାମ ।

'ରାକ୍ଷସମାନେ ଏସବୁ କାମ କରନ୍ତି ବୋଲି ଆମେ ଶୁଣିଛୁ', କହିଲେ ଗୋପା, 'ବଡ଼ ମାୟାବୀ ସେମାନେ । ଶୂନ୍ୟରେ ଉଡ଼ି ପାରନ୍ତି, ଦରକାର ହେଲେ ଶୂନ୍ୟରେ

ମିଶିଯାଆନ୍ତି । ବେଶ ବଦଳେଇ ପାରନ୍ତି । କେତେ କଥା ଶୁଣାଯାଏ ।'

'କଂସର ତ ରାକ୍ଷସମାନଙ୍କ ସାଙ୍ଗରେ ଭଲ ସମ୍ପର୍କ', କହିଲେ ସୌରଦେବ ।

'ଜରାସନ୍ଧର ବି', ଯୋଗ କଲେ ସତ୍ୟକାମ ।

ଭାନୁପ୍ରକାଶ ଭାନୁପ୍ରିୟଙ୍କୁ ଚାହିଁଲେ, କହିଲେ – 'ଭାନୁପ୍ରିୟ, ତୁମେ ତ ଏକ ସମୟରେ ଦକ୍ଷିଣ ଜଙ୍ଗଲର ରାକ୍ଷସମାନଙ୍କ ବିଷୟରେ ଅନୁସନ୍ଧାନ କରିଥିଲ । ତୁମର ମତ କ'ଣ ?'

'ଦକ୍ଷିଣ ଜଙ୍ଗଲର ଭିତରକୁ ଭିତରକୁ ଅନେକ ରାକ୍ଷସ ଅଛନ୍ତି । ସମସ୍ତେ ଯେ ମାୟାବୀ, କଳା କୌଶଳ ସବୁ ଜାଣନ୍ତି ତା ନୁହେଁ । ସେମାନେ ନାଗ, ନିଷାଦଙ୍କ ପରି, ଜଙ୍ଗଲରେ ରହି ଜଙ୍ଗଲର ଆଦବ କାଇଦା ମାନି ଚଳନ୍ତି । କିନ୍ତୁ ସେମାନଙ୍କ ଭିତରେ କିଛି ବେଶ୍ ଚାଲାକ ଚତୁର ଅଛନ୍ତି, ନାନା କଳାକୌଶଳ ଜାଣନ୍ତି, ଦିନକୁ ରାତି, ରାତିକୁ ଦିନ କରି ପାରନ୍ତି । ସେଇମାନେ ହିଁ ମାୟାବୀ । ସେଇମାନଙ୍କ ବିଷୟରେ ନାନା କଥା ଶୁଣାଯାଏ ।' ଭାନୁପ୍ରିୟ ଟିକେ ଚୂପ୍ କରିଗଲେ । ପୁଣି କହିଲେ, 'ଏଇ ଯେପରି ଆପଣମାନେ ଲଙ୍କାର ରାବଣ କଥା ଶୁଣିଥିବେ ଯାହା ସହିତ ଅଯୋଧ୍ୟାର ଶ୍ରୀରାମଚନ୍ଦ୍ର ଯୁଦ୍ଧ କରିଥିଲେ । ସେ ତ ଗୋଟାଏ ଉଡ଼ନ୍ତା ରଥରେ ବସି ସବୁଆଡ଼କୁ ଯିବା ଆସିବା କରୁଥିଲା ।' ଭାନୁପ୍ରିୟ କହିଲେ ।

'ଭାନୁପ୍ରକାଶ, ମୋର ମନେ ହେଉଛି ଏ ଦୁଇଜଣ ତାନ୍ତ୍ରିକ ଫାନ୍ତ୍ରିକ ନୁହନ୍ତି । ଏମାନଙ୍କୁ ତନ୍ତ୍ରବିଦ୍ୟା ହୁଏତ ଜଣାଥିବ', କହିଲେ ସୌରଦେବ, 'କିନ୍ତୁ ଏ ଦୁଇଜଣ ରାକ୍ଷସ ଜାତିର ଲୋକ । ଅତ୍ୟନ୍ତ ଚାଲାକ ଚତୁର, ମାୟା ବିଦ୍ୟାରେ ପାରଙ୍ଗମ । କଂସ ତ ରାକ୍ଷସମାନଙ୍କୁ ଜାଣେ । ଏମାନଙ୍କୁ ଆଣି ତା କାମରେ ଲଗେଇଛି । ଏ ଦୈବବାଣୀ ଫୈବବାଣୀ ମିଛ କଥା । ଏସବୁ ସେମାନଙ୍କର କୀର୍ତ୍ତି ।'

ସୌରଦେବଙ୍କ କଥା ଶୁଣି ସମସ୍ତେ ଚୁପ ହୋଇ ରହିଲେ । ଭାନୁପ୍ରକାଶ ବି କିଛି ଉତ୍ତର ଦେଲେନି । କିଛି ସମୟ ପରେ କହିଲେ, 'ସୌରଦେବ, ଆପଣଙ୍କ କଥାରେ ଯୁକ୍ତି ଅଛି । ମୁଁ ବି ଭାବୁଛି ସେମିତି କିଛି ଘଟିଛି । ଏ ଦୈବବାଣୀ କଥା ସତ ନୁହେଁ । ଏ କଂସର କୌଶଳ । ଯେମିତି ଲୋକମାନେ ବିଶ୍ୱାସ କରିବେ ।'

'ଏ ଖାଲି ଦୈବବାଣୀ କଥା ନୁହେଁ', କହିଲେ ସତ୍ୟକାମ, 'ଯାହା ମନେହେଉଛି ଏ ପୁରାଟା ହିଁ ଅତ୍ୟନ୍ତ କୌଶଳରେ ଗୋଟାଏ ଯୋଜନା ଭାବରେ କରାଯାଇଛି ଯେପରି ସାଧାରଣ ଲୋକମାନେ ଭୁଲ ତ୍ରୁଟି ଦେଖି ପାରିବେ ନାହିଁ । ଭାବିବେ ସବୁ ଠିକ୍ ।'

'ମୋର ମତ ବି ସେଇଆ', କହିଲେ ଭାନୁପ୍ରକାଶ, 'ବିଭାଘର ଚିନ୍ତାଠାରୁ


Digitized by srujanika@gmail.com

ଆରମ୍ଭ କରି ଦେବକୀ ବସୁଦେବଙ୍କୁ ବନ୍ଦୀ କରି ରଖିବାର ଯୋଜନା ଅତ୍ୟନ୍ତ ଚତୁରତାର ସହିତ କରାଯାଇଛି । ମଝିରେ ଶୂନ୍ୟବାଣୀକି ପୂରେଇ ଦିଆଯାଇଛି ଯେମିତି ସମସ୍ତ ଘଟଣାଟା ସମ୍ପୂର୍ଣ୍ଣ ବିଶ୍ୱାସଯୋଗ୍ୟ ହେବ । ବର୍ତ୍ତମାନ କିଏ କୁଆଡ଼େ ଯିବ, କିଏ କ'ଣ କରିବ, କୋଉଠି କ'ଣ ହେବ ସେ ବଡ଼ କଥା ନୁହେଁ । ବଡ଼ କଥା ଆମେ କ'ଣ କରିବା ?' ଭାନୁପ୍ରକାଶ ଚୁପ କରିଗଲେ । ଅନ୍ୟମାନେ ବି ଚୁପ, ଭାନୁପ୍ରକାଶ ପୁଣି କହିଲେ, 'ବର୍ତ୍ତମାନ ଆମ ଆଗରେ ଗୋଟିଏ ଘଟଣା - ଦେବକୀ ଓ ବସୁଦେବ ଉଗ୍ରସେନଙ୍କ କୋଠୀରେ ବନ୍ଦୀ ହୋଇ ରହିଲେ । କଂସର ଯାହା ଯୋଜନା ମନେହେଉଛି ଦୀର୍ଘ ଦିନ ସେମାନେ ବନ୍ଦୀ ହୋଇ ରହିବେ । ଆମେ ସେମାନଙ୍କୁ ମୁକୁଳେଇ ପାରିବା କି ?'

'ନାଁ', ସୌରଦେବ କହିଲେ, 'ସେଇଟା ସମ୍ଭବ ନୁହେଁ । କଂସ ନିଜେ ଇଚ୍ଛା ନ କଲେ ସେ କଥା ହେବନି ।'

'ଠିକ୍ । ମୁଁ ସେଇକଥା କହୁଛି । ଆପଣମାନେ ଭାବନ୍ତୁ ଆମେ କ'ଣ କରିପାରିବା । ଆମକୁ ଦୀର୍ଘଦିନ ପାଇଁ ଯୋଜନା କରିବାକୁ ପଡ଼ିବ ।'

ଅରିନ୍ଦମର ମନେଅଛି ସେଦିନ ବହୁତ ସମୟ ଧରି ଆଲୋଚନା ଚାଲିଲା, ପ୍ରାୟ ପାଖାପାଖି ସନ୍ଧ୍ୟା ହେବା ପର୍ଯ୍ୟନ୍ତ । ଆଗଦିନ ଯାହା ଘଟିଯାଇଥିଲା ସେଥିରେ ସମସ୍ତେ ଚିନ୍ତିତ, କ୍ଷୁବ୍ଧ, ଉତ୍ତେଜିତ ବି । କଂସ କିଛି ଗୋଳମାଳ କରିପାରେ ସେକଥା ସମସ୍ତେ ଭାବିଥିଲେ । ଦେବକୀ ବସୁଦେବଙ୍କର ବିଭାଘରରେ କଂସର ଉଦ୍ଦେଶ୍ୟ ଯେ ସାଧୁ ନୁହେଁ ସେ ସନ୍ଦେହ ସମସ୍ତଙ୍କର ଥିଲା । କିନ୍ତୁ କଂସର ଏ ଯେ ତାତ୍‌କାଳିକ ନିଷ୍ପତ୍ତି ନୁହେଁ ସେ ବିଷୟରେ ସମସ୍ତେ ଏକମତ ହେଲେ । ଅନେକ ଦିନରୁ କଂସ ସେଥିପାଇଁ ପ୍ରସ୍ତୁତ ହେଉଥିଲା ଓ ସେଥିପାଇଁ ଉଗ୍ରସେନଙ୍କର ପୁରୁଣା କୋଠୀର ମରାମତି ଚାଲିଥିଲା । ଏକଥା ଅନେକ ଦେଖିଥିଲେ । କିନ୍ତୁ ସେହି ଘରଟା ଯେ ଭବିଷ୍ୟତରେ ଦେବକୀ ବସୁଦେବଙ୍କର ବନ୍ଦୀଘର ହେବ ଏ କଥା କେହି ଭାବି ନ ଥିଲେ । ସେହିପରି ଶୂନ୍ୟବାଣୀ । ଶୂନ୍ୟବାଣୀ କେମିତି ହେବ, କେତେବେଳେ ଆସିବ, କ'ଣ କୁହାଯିବ, ଏସବୁ ଆଗରୁ ଟିକିନିଖି ପ୍ରସ୍ତୁତ ନ ହେଲେ ଠିକ୍ ସମୟରେ ଶୂନ୍ୟବାଣୀ ହେବା ସମ୍ଭବ ନୁହେଁ । ଶୂନ୍ୟବାଣୀଟା ଦୈବବାଣୀ ହୋଇଗଲା, ଆଉ ସମସ୍ତେ ଆଶ୍ଚର୍ଯ୍ୟ ହେଲେ କେତେ ସମ୍ପୂର୍ଣ୍ଣ ଓ ତ୍ରୁଟିହୀନ ଭାବରେ ସେ କାମଟା ସମ୍ଭବ ହେଲା । ଭାନୁପ୍ରକାଶ ତ ପ୍ରଶଂସା କଲେ, କହିଲେ ଯାହା ହେଲା ଏ ଖୁବ୍ ପୋଖତ ବୁଦ୍ଧିର କାମ । କଂସର ଏକା ସାଙ୍ଗରେ ତିନିଟା କାମ ହୋଇଗଲା । ପ୍ରଥମେ ସେ ଯାଦବମାନଙ୍କୁ ଜଣେଇ ଦେଲା ଯେ ସେହିଁ ସର୍ବେସର୍ବା, ଅନ୍ୟମାନେ ସାବଧାନ

ରହନ୍ତୁ । ଦ୍ୱିତୀୟରେ, ନିଜର ମୃତ୍ୟୁ କଥା କହି ସାଧାରଣ ଲୋକର ସହାନୁଭୂତି ନିଜ ଆଡ଼କୁ ଟାଣି ଆଣିଲା । ତୃତୀୟରେ, ନିଜର ମୃତ୍ୟୁ ସମୟଟାକୁ ଆପାତତଃ ନିଶ୍ଚିତ କରିବା ସାଙ୍ଗେ ସାଙ୍ଗେ ଅନିଶ୍ଚିତ ବି କରିଦେଲା ।

ସେଦିନ ଆଲୋଚନା ସରିବା ବେଳକୁ ଭାନୁପ୍ରକାଶଙ୍କର ଆରମ୍ଭର ବିଷାଦ ଭାବ ଅନେକ କଟି ଯାଇଥିଲା । ଅନ୍ୟମାନଙ୍କର ବି ଉତ୍ତେଜିତ ମନୋଭାବ ଶାନ୍ତ ହୋଇ ଆସିଥିଲା । କ'ଣ କରାଯାଇ ପାରିବ ସେ ବିଷୟରେ ସମସ୍ତେ ଚିନ୍ତା କଲେ । ଠିକ୍ ହେଲା ନିର୍ଦ୍ଦିଷ୍ଟ ଭାବରେ କିଛି କରିବାର ନ ଥିଲେ ମଧ୍ୟ ଆଗ ପରି ସଜାଗ ରହିବାକୁ ପଡ଼ିବ ଓ ଲୋକମାନଙ୍କୁ କଂସର ଅନ୍ୟାୟ, ଅନୀତି ଓ ଅଧର୍ମ ସମ୍ପର୍କରେ ବାରମ୍ବାର ସଚେତ କରିବାକୁ ପଡ଼ିବ । କଂସର ଅତ୍ୟାଚାର ଯେ ବହୁତ ବେଶୀ ବଢ଼ିଯିବ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଲୋକମାନେ ସଚେତ ହେଲେ ନିଶ୍ଚୟ କିଛି କିଛି ପ୍ରତିରୋଧ ହୋଇପାରିବ । ଠିକ୍ ହେଲା ସତ୍ୟକାମ ଗିରିବ୍ରଜରେ ତାଙ୍କ ଆଶ୍ରମକୁ ଫେରିଯିବେ, କିନ୍ତୁ ମଥୁରାରେ ଗୋଟିଏ ଛୋଟ ଆଶ୍ରମ ଆରମ୍ଭ କରନ୍ତୁ ଯେଉଁଠି ତରୁଣ ମାନଙ୍କୁ ଶିକ୍ଷା ଦିଆଯାଇପାରିବ । ସ୍ଥିର ହେଲା ଗୋପରେ ସେ ଆଶ୍ରମ ହବ ଓ ନନ୍ଦ ସତ୍ୟକାମଙ୍କୁ ସବୁପ୍ରକାର ସାହାଯ୍ୟ ଦେବେ । ଏକଥା ବି ସ୍ଥିର ହେଲା ଯେ ଆଶ୍ରମକୁ ଆଶୀର୍ବାଦ ଦେଇ ଉଦ୍‌ଘାଟନ କରିବା ପାଇଁ ବ୍ୟାସଦେବଙ୍କୁ ଅନୁରୋଧ କରାଯିବ । ମଥୁରା ଭିତରେ ସ୍ଥିର ହେଲା ସୌରଦେବଙ୍କ ତତ୍ତ୍ୱାବଧାନରେ ଗୋଟିଏ ପାଠଶାଳା ଆରମ୍ଭ ହେବ ଯେଉଁଠି ବେଦ ଓ ଅନ୍ୟାନ୍ୟ ଶାସ୍ତ୍ର ପଢ଼ାହେବ । ଦରକାର ହେଲେ ସେଥିପାଇଁ ସୌରଦେବ କଂସର ଅନୁମତି ଆଣିବେ । ସୌରଦେବ, ଅରିନ୍ଦମ ଓ ତାଙ୍କର ବନ୍ଧୁମାନେ ଶିକ୍ଷା ଦାନ କରିବେ ଓ ଅରିନ୍ଦମର ବାପାଙ୍କୁ ଅନୁରୋଧ କରାଯିବ ପାଠଶାଳାକୁ ସାହାଯ୍ୟ କରିବା ପାଇଁ । ଏହା ବାହାରେ ଅରିନ୍ଦମ ଓ ତା'ର ବନ୍ଧୁମାନେ ବର୍ତ୍ତମାନ ଯେପରି ମଥୁରାରେ ଲୋକମାନଙ୍କ ସହିତ ସମ୍ପର୍କ ରଖିଛନ୍ତି ଓ ସେମାନଙ୍କ ପାଇଁ କାର୍ଯ୍ୟ କରୁଛନ୍ତି ସେହିପରି କରିବେ । ଗୋପା କଂସର ନଅରର ଭିତରେ ଆଉ କିଛିଦିନ ରହିବେ । ଗୋପରେ ଆଶ୍ରମ ଆରମ୍ଭ ହେବା ପରେ ଆଶ୍ରମକୁ ଆସି ସାହାଯ୍ୟ କରିବେ ଓ ବର୍ତ୍ତମାନ ପରି କଂସର ରାଣୀ ଓ ନଅରର ଅନ୍ୟ ଅନ୍ତେବାସିନୀଙ୍କ ସହିତ ସମ୍ପର୍କ ରଖିବେ । ଭାନୁପ୍ରିୟ ମଗଧର କଥା ବୁଝାବୁଝି କରିବେ । କିନ୍ତୁ ଭାନୁପ୍ରକାଶ ବର୍ତ୍ତମାନ ପରି ଗୋପରେ ରହିବେ କିନ୍ତୁ ମଥୁରାର ପୂର୍ଣ୍ଣ ଦାୟିତ୍ୱରେ ରହିବେ ।

ଆଲୋଚନାର ଶେଷ ଆଡ଼କୁ ସୌରଦେବ କହିଥିଲେ, 'ଭାନୁପ୍ରକାଶ ଯଦି ସବୁ ଠିକଠାକ ଚାଲେ ଏ ଅନ୍ତତଃ ଦଶବର୍ଷର ଯୋଜନା । ଭାନୁପ୍ରକାଶ ଉତ୍ତର ଦେଇଥିଲେ - ହଁ, ଦଶବର୍ଷ । ଯଦି କଂସର ଆୟୋଜିତ ଦୈବବାଣୀ ସତ ହୁଏ ତା

ହେଲେ ମଥୁରାର ଲୋକମାନେ ଅନ୍ତତଃ ଦଶ ବର୍ଷ ପରେ କଂସର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଆଶା କରିବେ । ଗୁରୁଦେବ ସାହସ ଦେଇଛନ୍ତି, କହିଛନ୍ତି ତାହାହିଁ ଘଟିବ । ଯାହା କଷ୍ଟ ହେଉ ସେହିଦିନ ପାଇଁ ଆମକୁ କାର୍ଯ୍ୟ କରିବାକୁ ପଡ଼ିବ ଓ ଅପେକ୍ଷା କରିବାକୁ ପଡ଼ିବ ।

ସନ୍ଧ୍ୟା ଆସି ଯାଇଥିଲା । ସୌରଦେବ ଓ ଗୋପା ମଥୁରା ଫେରିଗଲେ । ସେମାନଙ୍କ ସାଙ୍ଗରେ ଦେବଭାଗ ଓ ବୃନ୍ଦାବତୀ ବି । ସତ୍ୟକାମ, ଭାନୁପ୍ରିୟ ଓ ଭାନୁପ୍ରକାଶ ସେମାନଙ୍କର ସନ୍ଧ୍ୟା ଆହ୍ନିକ କରିବାକୁ ଉଠିଗଲେ । ନନ୍ଦ ଗାଈମାନଙ୍କ କଥା ବୁଝିବା ପାଇଁ ଓ ଯଶୋଦା ଘର କାମ ଦେଖିବା ପାଇଁ ଚାଲିଗଲେ । ଭାନୁପ୍ରକାଶ ଯିବା ଆଗରୁ ଅରିନ୍ଦମକୁ ଅପେକ୍ଷା କରିବାକୁ କହିଯାଇଥିଲେ । ସେହି ବିସ୍ତୀର୍ଣ୍ଣ ବାରନ୍ଦାରେ, ସନ୍ଧ୍ୟାର ଜାକି ହୋଇ ଆସୁଥିବା ଅନ୍ଧାର ଭିତରେ, ଯେତେବେଳେ ଚାରିପାଖରେ କଳ କୋଳାହଳ ଶାନ୍ତ ହୋଇ ଆସୁଛି, ଅରିନ୍ଦମ ଏକାକୀ ବସିରହିଲା । ତା ଆଗ ଦିନ ଘଟଣାସବୁ ଗୋଟାଏ ପରେ ଗୋଟାଏ ଭିଡ଼ କରି ତା ମନକୁ ଘେରି ଗଲେ । ସକାଳର ଭୋଜି, ଶହ ଶହ ଲୋକଙ୍କର ଯିବା ଆସିବା, ହୋ ହୋ, ବିଭାଘରର ଆୟୋଜନ, ବିଭାଘର, ବରକନ୍ୟା ବିଦା ହବାର ଘଟଣାସବୁ, ଆଉ ସଭା ଶେଷକୁ ସେହି ଅଦ୍ଭୁତ ଶୂନ୍ୟବାଣୀ ଓ ଦେବକୀ ବସୁଦେବଙ୍କର ଦୁର୍ଭାଗ୍ୟ । ପଶାପାଲି ପରି ଘଟଣାସବୁ ତା ମନ ଭିତରେ ମେଲିଗଲା । ସତେ ଯେପରି କିଏ ଛକ କାଟିଲା ପରି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଘଟଣାସବୁ ସଜାଡ଼ିକରି ଥୋଇ ଦେଇଛି । ଗୋଟାଏ ଦିନ ଭିତରେ ଏତେ ଘଟଣା ! ପୂରା ଆକାଶ ବଦଳିଗଲା ! ସକାଳର ଖୋଲା ପବନ, ଆନନ୍ଦ, ଆଲୋକ ସନ୍ଧ୍ୟାର ଅନ୍ଧାର ଭିତରେ ବୁଡ଼ିଗଲା । ତାପର ରାତି, ଗଭୀର ରାତ୍ରି, କେବେ ପୁଣି ସକାଳ ହେବ କିଏ ଜାଣେ !

ଯେଉଁ ଗୋଟିଏ ଘଟଣା ଅରିନ୍ଦମ ମନରେ ବାରମ୍ବାର ଧକ୍କା ଦେଉଥିଲା ସେ ସେଇ ଶୂନ୍ୟବାଣୀ, ଯାହାକୁ ଦୈବବାଣୀ ବୋଲି କୁହାଯାଉଛି । ଦୈବବାଣୀ ତ, ଭବିଷ୍ୟତ ବାଣୀ ! କଂସର ଭବିଷ୍ୟତ । କଂସ ନିଜେ ନିଜର ଭବିଷ୍ୟତ ସ୍ଥିର କରି ଏପରି ଆୟୋଜନ କରି ଘୋଷଣା କଲା ? କାହିଁକି ? ଆବଶ୍ୟକ କ'ଣ ଥିଲା ? ବନ୍ଧୁମାନେ କହୁଛନ୍ତି ଏ ଏପରି ଗୋଟାଏ ଘଟଣା ଯାହାକୁ ବିଶ୍ୱାସ କରି ହେବନି କି ଅବିଶ୍ୱାସ କରି ହେବନି । ବାପା ତ ସମ୍ପୂର୍ଣ୍ଣ ବିଶ୍ୱାସ କରିଛନ୍ତି । ତାଙ୍କ ମତରେ ଏ ଦେବତାଙ୍କ ଘୋଷଣା, କଂସ ପାଇଁ ନୁହେଁ, କଂସ ଜରିଆରେ କରାଯାଇଛି, କଂସ ଉପଲକ୍ଷ୍ୟ । ଏ ସେହି ପରମ ପୁରୁଷଙ୍କ ବିଷୟରେ, ଯେ ଦେବକୀର ଅଷ୍ଟମ ଗର୍ଭରେ ଜନ୍ମ ନେବେ, ଦେଶରେ ଧର୍ମର ପ୍ରତିଷ୍ଠା କରିବେ, ତାଙ୍କୁଇ ଅପେକ୍ଷା କର ।

ଭାନୁପ୍ରକାଶ ବିଶ୍ୱାସ ଅବିଶ୍ୱାସର କଥା କହିଲେ ବି, ଅରିନ୍ଦମର ମନେହେଲା, ସେ ଏହାହିଁ ବିଶ୍ୱାସ କରନ୍ତି । କିଏ ଏହି ପରମ ପୁରୁଷ ! ସନ୍ଧ୍ୟାର ଅନ୍ଧକାର ଗାଢ଼ ହୋଇ ଆସିଲାଣି । ପାଖରେ ଦୂରରେ କିଛି କିଛି ଲୋକ ଯିବା ଆସିବା କରୁଛନ୍ତି । ଆଲୁଅ ଦିଶୁଛି, କଥା ଶୁଭୁଛି । ଦୂର ବିଷ୍ଣୁ ମନ୍ଦିରରୁ ସନ୍ଧ୍ୟା ଘଣ୍ଟର ଧ୍ୱନି ଭାସି ଆସୁଛି । ସେହି ଘନାୟମାନ ଅନ୍ଧକାର ଭିତରେ ଅରିନ୍ଦମ ଚୁପ ହୋଇ ବସି ରହିଲା ।

ସେଦିନ ରାତିରେ ସେ ଆଉ ମଥୁରା ଫେରି ନ ଥିଲା । ନନ୍ଦଙ୍କ ଘରେ ରହିଥିଲା । ପରିବେଶ, ନନ୍ଦ ଓ ଯଶୋଦାଙ୍କର ସ୍ନେହ, ଭାନୁପ୍ରକାଶଙ୍କର ସାହଚର୍ଯ୍ୟ ଏସବୁ ମିଶି ଶୀତଳ ପ୍ରଲେପ ପରି ତା ମନର ପୀଡ଼ା ଓ ଉତ୍ତେଜନାକୁ ଶାନ୍ତ କରିଥିଲା । ସେଦିନ ବହୁତ ରାତି ପର୍ଯ୍ୟନ୍ତ ଆହୁରି ଅନେକ କଥାବାର୍ତ୍ତା ହୋଇଥିଲା । ଗୋଟିଏ ଦିନର ଘଟଣାରେ ମଥୁରାର ଯେ ଅନେକ ପରିବର୍ତ୍ତନ ହୋଇଗଲା ସେ ବିଷୟରେ ସମସ୍ତେ ଏକମତ ହେଲେ । କଂସ ବିରୁଦ୍ଧରେ ଯେଉଁ ମନୋଭାବ ଥିଲା ସେ ହୁଏତ ରହିବ । କିନ୍ତୁ ସେ କମିଯିବ ଓ କଂସର ଏକଛତ୍ର ଶାସନ ପାଇଁ ସ୍ପଷ୍ଟ ରାସ୍ତା ଖୋଲିଯିବ, ଭାନୁପ୍ରକାଶ କହିଥିଲେ । ଆଜି ଏତେ ବର୍ଷ ପରେ, ଅରିନ୍ଦମର ମନେ ହେଲା, ଭାନୁପ୍ରକାଶ ଠିକ୍ କଥା କହିଥିଲେ । ସାଙ୍ଗେ ସାଙ୍ଗେ ଯାହା ବୁଝି ହେଉ ନ ଥିଲା, ଆଜି ଏତେ ବର୍ଷର ବ୍ୟବଧାନରେ ମନେହେଉଛି ସେଇଟାହିଁ ସତ୍ୟ । କଂସ ବିରୁଦ୍ଧରେ ଯାହା କିଛି ମନୋଭାବ ଥିଲା ସେ ପାଉଁଶର ନିଆଁ ପରି ତଳକୁ ଚାଲିଗଲା, ଓ ସାରା ମଥୁରାରେ ଯାହା ଦିଗ୍‌ବିଜୟୀ ସେନା ପରି ମାଡ଼ି ଚାଲିଲା ସେ ଅଦମ୍ୟ ଅତ୍ୟାଚାର, ସ୍ୱାର୍ଥ ଓ ଏକଛତ୍ର ଶାସନ । ଦେବକୀ ବସୁଦେବ ତ ବନ୍ଦୀହୋଇ ରହିଲେ, ଅନ୍ୟ କେହି ମୁଖିଆ, କେହି ଯଦି ସାମାନ୍ୟ ପ୍ରତିବାଦ କଲେ, ସେମାନଙ୍କୁ ନିଷ୍ଠୁର ଭାବରେ ବନ୍ଦୀ କରାଗଲା । ମଥୁରାର ଜନଜୀବନ ଝଡ଼ା ପତ୍ର ପରି ବିପର୍ଯ୍ୟସ୍ତ ହୋଇଗଲା ।

ସ୍ୱାଭାବିକ ଭାବରେ ବର୍ଷକ ପରେ ଉଗ୍ରସେନଙ୍କର ସେହି କୋଠିର ବନ୍ଦୀଶାଳାରେ ଦେବକୀଙ୍କର ପ୍ରଥମ ପୁତ୍ର ସନ୍ତାନ ଜନ୍ମ ହେଲା ଓ ସେ ଖବର ଆନନ୍ଦର ଲହରୀ ପରି ସାରା ମଥୁରାରେ ଖେଳିଗଲା । ସମସ୍ତଙ୍କର ପ୍ରାର୍ଥନା ବସୁଦେବ ଦେବକୀଙ୍କର ଏହି ପ୍ରଥମ ସନ୍ତାନର କଂସ କୌଣସି କ୍ଷତି ନ କରୁ । ଅରିନ୍ଦମର ମନେଅଛି ସେ ଯେତେବେଳେ ସକାଳୁ ସକାଳୁ ଏ ଖବର ପାଇଲା ସେ ପ୍ରଥମେ ବାପାଙ୍କୁ ଏ ଖବର ଦେଇଥିଲା । ବାପା ପୂଜା ଘରେ ତାଙ୍କର ସକାଳର ପୂଜା ଆରମ୍ଭ କରୁଥିଲେ । ସେ ଶୁଣିଲେ । କିଛି କହିଲେ ନାହିଁ । ଆଖିବୁଜି କିଛି ମୁହୂର୍ତ୍ତ ଚୁପ ହୋଇ ବସି ରହିଲେ । ଯେତେବେଳେ ଆଖି ଖୋଲିଲେ ଅରିନ୍ଦମ ଦେଖିଲା ତାଙ୍କର ଦି ଆଖି

ଗଭୀର ବେଦନାରେ ପୂରି ଯାଇଛି । ସେ ଅରିନ୍ଦମକୁ ଚାହିଁଲେ, ଖାଲି କହିଲେ – 'ଅରିନ୍ଦମ, ଏ ଆରମ୍ଭ । ଶିଶୁଟିର ଦୁର୍ଭାଗ୍ୟ ।' ବାପା ମୁହଁ ବୁଲେଇ ଦେଲେ । ପୂଜାରେ ମନ ଦେଲେ । ଅରିନ୍ଦମ ଘର ବାହାରକୁ ଚାଲି ଆସିଲା । ବାହାରକୁ ଆସି ସେ ଆଶ୍ଚର୍ଯ୍ୟ ହୋଇଗଲା । ତାଙ୍କ ଘର ସାମ୍ନାରେ କିଛି ବାଟ ଛାଡ଼ି ଯମୁନା ନଈର ବନ୍ଧ । ଘର ପାଖ ଦେଇ ସହର ଭିତରକୁ ରାସ୍ତା । ସେ ଦେଖିଲା ଯମୁନା ବନ୍ଧ ଆଡୁ ଏକା ଏକା ଭାନୁପ୍ରକାଶ ଆସୁଛନ୍ତି । ସେ ଘର ପିଣ୍ଡାରୁ ତଳକୁ ଓହ୍ଲେଇ ଆସିଲା । ଭାନୁପ୍ରକାଶ ଘର ପାଖକୁ ଲାଗି ଆସିଲେଣି, କହିଲେ – 'ଘରକୁ ଚାଲ ।' ଭାନୁପ୍ରକାଶଙ୍କ ପଛେ ପଛେ ସେ ଘରକୁ ଉଠି ଆସିଲା । ଉଭୟ ବସିବା ଘରେ ବସିଲେ ।

ଭାନୁପ୍ରକାଶ ଅରିନ୍ଦମର ଘରକୁ ଅନେକଥର ଆଗରୁ ଆସିଛନ୍ତି । କିନ୍ତୁ ସେ ଆଗରୁ ଖବର ଦେଇ ଆସନ୍ତି ଓ ଏତେ ସକାଳୁ ସେ କେବେ ଆସି ନ ଥିଲେ । ଅରିନ୍ଦମ କହିଲା, 'ଆପଣ ଖୁବ୍ କ୍ଳାନ୍ତ ଦିଶୁଛନ୍ତି । ଆପଣ କ'ଣ ଏବେ ଗୋପରୁ ଆସିଲେ ? କିଛି କ୍ଷୀର ଆଣିବି ? ବା ଅନ୍ୟ କିଛି ଖାଇବାକୁ ?' ଭାନୁପ୍ରକାଶ କିଛି କହିଲେ ନାହିଁ, ଚୁପଚାପ ବସି ରହିଲେ । କିଛି ସମୟ ପରେ କହିଲେ, 'ନାଁ । ଶୁଣ । କିଛି ସମୟ ଆଗରୁ କଂସ ଦେବକୀର ଛୁଆଟାକୁ ପିଟି ମାରି ଦେଇଛି ।'

'ମାରି ଦେଇଛି ?' ଅରିନ୍ଦମ ପାଟିରୁ ଆସ୍ତେ ଆସ୍ତେ କଥା ବାହାରିଲା ।

'ହଁ, ପଥରରେ ଛେଚି ମାରି ଦେଇଛି ।'

ଭାନୁପ୍ରକାଶ ପୁଣି କିଛି ସମୟ ଚୁପ ରହିଲେ । ଅରିନ୍ଦମ ଲକ୍ଷ୍ୟ କଲା ତାଙ୍କର ଦି ଆଖିରୁ ଯେମିତି ଦି ଟୋପା ଲୁହ ବହି ଆସୁଛି ।

ସେ ପୁଣି କଥା କହିଲେ – ସ୍ୱରରେ ଗଭୀର ବେଦନା, 'ହଁ, ମାରିଦେଲା । ମୁଁ କାଲି ରାତି ସାରା ଉଗ୍ରସେନଙ୍କର କୋଠି ପାଖରେ ହିଁ ଥିଲି । ପାହାନ୍ତା ପହରକୁ ଦେବକୀର ପିଲା ଜନ୍ମହେଲା । ସକାଳୁ ଖବର ପାଇ କଂସ ଆସିଛି । ସାଙ୍ଗରେ ପ୍ରଦ୍ୟୋତ ବି ଥିଲା । ଶୁଣିଲି ଉଭୟ ଦେବକୀ ଓ ବସୁଦେବ ଖୁବ୍ ନିଉଛାଳି ହୋଇ କଂସକୁ କହିଥିଲେ । କହିଲେ ଅଷ୍ଟମ ଗର୍ଭର ପିଲାଟା ସିନା ତୁମର ଶତ୍ରୁ, ଏ ନିର୍ଦ୍ଦୋଷ ପିଲାଟାକୁ କାହିଁ ମାରିବ । ପ୍ରଦ୍ୟେତ ବି କୁଆଡ଼େ କଂସକୁ ଅନୁରୋଧ କଲା ଛୁଆଟାକୁ ନ ମାରିବା ପାଇଁ । କଂସ କିଛି ଶୁଣିଲା ନାହିଁ । ପ୍ରଦ୍ୟୋତ ଉପରେ ପାଟି କଲା । ହୋ ହୋ ହୋଇ ହସିଲା, କହିଲା, ତୋର ସବୁ ପିଲା ମୋର ଶତ୍ରୁ । ତାପରେ ଛୁଆଟାକୁ ଟେକି ପଥର ଉପରେ କଚାଡ଼ି ଦେଲା ।'

ଅରିନ୍ଦମର ବାପାଙ୍କ କହିବା କଥାଟା ମନେ ପଡ଼ିଲା । ବାପା କଅଣ ଧ୍ୟାନରେ

ଏହିପରି ହେବ ବୋଲି ଦେଖିପାରି ଥିଲେ ! ସେ ଭାନୁପ୍ରକାଶଙ୍କୁ ସେ କଥା କହିଲା । ଭାନୁପ୍ରକାଶ କେବଳ ହୁଁ ମାରିଲେ, କହିଲେ 'ସମ୍ଭବ' । ତାପରେ ସେ ଉଠି ଛିଡ଼ା ହେଲେ, କହିଲେ, 'ଅରିନ୍ଦମ, ଆସ, ବନ୍ଧଆଡ଼େ ଟିକେ ବୁଲି ଆସିବା ।' ଉଭୟ ବନ୍ଧଆଡ଼େ ଗଲେ ।

ଦୁଇ କୂଳର ଘଞ୍ଚ ବୃକ୍ଷଲତା ଭିତର ଦେଇ ପୂର୍ଣ୍ଣଗର୍ଭା ଯମୁନା ବହି ଚାଲିଥାଏ । ଚାରିଆଡ଼େ ସବୁଜ ଶ୍ୟାମଳିମାର ପ୍ରଲେପ, ନଦୀର କଳକଳ ଧ୍ୱନି ଓ ସକାଳର ପକ୍ଷୀମାନଙ୍କର ଶବ୍ଦ । ଲୋକ କୋଳାହଳ ଆରମ୍ଭ ହୋଇ ନାହିଁ, ଚାରିଆଡ଼ ଚୁପଚାପ । ଏକ ଅନନୁଭୂତ ଶାନ୍ତିର ଆସ୍ୱାଦରେ ଅରିନ୍ଦମର ମନ ପ୍ରାଣ ପୂରିଗଲା । ସେ ଭାନୁପ୍ରକାଶଙ୍କୁ ଚାହିଁଲା । ତା'ର ମନେହେଲା ଭାନୁପ୍ରକାଶଙ୍କର ମନରେ ମଧ ସେହି ଶାନ୍ତିର ସ୍ପର୍ଶ । ତାଙ୍କର ବିଷଣ୍ଣତା କମି ଆସିଲାଣି । ଉଭୟ ଘାଟରୁ କିଛି ଛାଡ଼ି, ନଈକୁ ମୁହଁ କରି କୂଳରେ ବସିଲେ । ଭାନୁପ୍ରକାଶ କହିଲେ, 'ହଁ ମୁଁ, ସନ୍ଧ୍ୟା ପରେ ପରେ ଖବର ପାଇଲି ଦେବକୀଙ୍କର କଷ୍ଟ ଆରମ୍ଭ ହେଲାଣି, ପାହାନ୍ତା ବେଳକୁ ପିଲା ହୋଇଯାଇ ପାରେ । ମୁଁ ପ୍ରଥମେ ଟିକିଏ ସନ୍ଦେହ କଲି, ଏ ଠିକ୍ ଖବର ତ । ବାହାରର ରକ୍ଷୀମାନେ ତ ଏସବୁ କଥା ଠିକ୍ ବୁଝନ୍ତିନି । କିନ୍ତୁ ଯେ ଖବର ଆଣିଥିଲା ସେ କହିଲା, ନାଁ, ଏ କୋଠିର ଭିତର ଖବର । ମୋର ଖିଆଲ ହେଲା ଦେବକୀର କଥା ବୁଝିବା ପାଇଁ କୋଠି ଭିତରେ ପ୍ରଦ୍ୟୋତର ସ୍ତ୍ରୀ ଅଛି । ସେ ନିଶ୍ଚୟ କଂସକୁ ଖବର ଦେଇଥିବ । ଖବର ଠିକ୍ । ମୁଁ ରାତି ଖିଆପିଆ କାମ ଶୀଘ୍ର ସାରିଦେଲି ଓ କୋଠି ପାଖକୁ ଚାଲିଗଲି । ସେଠି ଆମ ଲୋକ ଅଛନ୍ତି । ରହିବାକୁ ଅସୁବିଧା ହେଲାନି ।'

ଭାନୁପ୍ରକାଶ ଟିକେ ଚୁପ କରିଗଲେ । ତାପରେ ପୁଣି କହିଲେ, 'ଘଟିକା ପରେ ଘଟିକା କଟିଗଲା । ଶେଷ ରାତିକି ଖବର ଆସିଲା ଯେ କୌଣସି ମୁହୂର୍ତ୍ତରେ ଦେବକୀଙ୍କର ପିଲା ହୋଇପାରେ । ହେଲା ବି । ଠିକ୍ ପାହାନ୍ତା ପହରକୁ, ପୁଅ । ମୋର କିଛି କିଛି ଆଶା ଥିଲା ବୋଧହୁଏ କଂସ ଏଇ ସାଙ୍ଗେ ସାଙ୍ଗେ ଜନ୍ମ ହୋଇଥିବା ପିଲାଟାର କିଛି କ୍ଷତି କରିବନି । ନାଁ, ମୋର ଭୁଲ । କଂସ କଂସ । ସକାଳ ହବା ସାଙ୍ଗେ ସାଙ୍ଗେ କଂସ ପ୍ରଦ୍ୟୋତକୁ ସାଙ୍ଗରେ ନେଇ କୋଠିରେ ପହଞ୍ଚିଗଲା । ତାପରେ ତ ଯାହାହେଲା ତୁମେ ଜାଣିଛ ।' ଭାନୁପ୍ରକାଶ ଚୁପ କରିଗଲେ । ନୀରବରେ ପୂର୍ଣ୍ଣଗର୍ଭା ଯମୁନାକୁ ଚାହିଁ ରହିଲେ ।

କିଛି ସମୟ କଟିଗଲା । ଜଣେ ଅଧେ ଲୋକ ଗାଧୋଇବା ଘାଟକୁ ଆସିବାକୁ ଆରମ୍ଭ କଲେଣି । ଅରିନ୍ଦମ କହିଲା, 'ଆପଣଙ୍କୁ ଖୁବ୍ ବାଧିଛି, ନା ?' କିଛି ସମୟ

ଭାନୁପ୍ରକାଶ କିଛି ଉତ୍ତର ଦେଲେ ନାହିଁ । ତାପରେ ଆସ୍ତେ ଆସ୍ତେ କହିଲେ, 'ହଁ । ବିନା କାରଣରେ, ଥଣ୍ଡା ରକ୍ତରେ, ଖେଳଣା ପରି ଗୋଟାଏ ଟିକି ଛୁଆ, ପୁଣି ସାଙ୍ଗେ ସାଙ୍ଗେ ଜନ୍ମ ହୋଇଥିବା ଛୁଆଟାକୁ ମାରି ଦେବା ପରି ଜଘନ୍ୟ କାମ ଆଉ କ'ଣ ଅଛି ? ମଣିଷ କେତେ ତଳକୁ ଚାଲିଗଲେ ସେ କାମ କରେ । ପଶୁ ଠଉଁ ଆଉ ପ୍ରଭେଦ କେଉଁଠି ରହିଲା ?'

'କଂସ କଅଣ ମଣିଷ, ସେ ତ ପଶୁଠଉଁ ହୀନ', କହିଲା ଅରିନ୍ଦମ ।

'ନାଁ, ସେ ମଣିଷ', କହିଲେ ଭାନୁପ୍ରକାଶ, 'ସେ ରାଜା । ଧନ ସମ୍ପତ୍ତି କ୍ଷମତା ସବୁ ତା'ର । ତାର କାର୍ଯ୍ୟ ପ୍ରଜାଙ୍କୁ ରକ୍ଷା କରିବା । ପ୍ରଜାଙ୍କର ଭଲ ମନ୍ଦର ଦାୟିତ୍ୱ ନେବା । ସେ ଯଦି ତା ନ କରେ ? ରକ୍ଷକ ନ ହୋଇ ସେ ଯଦି ଘାତକ ହୁଏ, ଆମେ କଅଣ କରିବା ? ଆଜି କଂସ ଦେବକୀର ପ୍ରଥମ ଛୁଆଟାକୁ ହତ୍ୟା କଲା । କାଲି ଦ୍ୱିତୀୟ, ତୃତୀୟ, ଚତୁର୍ଥ ସମସ୍ତଙ୍କୁ ମାରିବ । ଆମେ କିଛି କରିପାରିବା ନାହିଁ । ଗୁରୁଦେବ କହୁଛନ୍ତି ଏହା ଅବଧାରିତ । ତୁମ ବାପାଙ୍କର ବି ସେହି ମତ । ଏହାହିଁ ମୋ ଦୁଃଖ ।'

ଦେବକୀଙ୍କର ପ୍ରଥମ ସନ୍ତାନର ଜନ୍ମ ଓ କଂସର ନାରକୀୟ କାର୍ଯ୍ୟ ସାରା ମଥୁରାରେ ବ୍ୟାପିଗଲା । ଯେ ଶୁଣିଲା ଦୁଃଖିତ ହେଲା ଓ କଂସ ବିରୁଦ୍ଧରେ ଗୋଟାଏ ରୁଦ୍ଧ କ୍ରୋଧର ମନୋଭାବ ଦାବାନଳ ପରି ଖେଳିଗଲା । ଅରିନ୍ଦମର ଖବର, କଂସ ଶୁଣିଲା, ଲୋକଙ୍କର ମନୋଭାବକୁ କୌଣସି ଗୁରୁତ୍ୱ ଦେଲା ନାହିଁ । ଘୋଷଣା କରିଦେଲା ବସୁଦେବ ଦେବକୀ ସହ ଚୁକ୍ତି ଅନୁଯାୟୀ କାର୍ଯ୍ୟ ହୋଇଛି । ଦେବକୀ ନିଜର ପ୍ରାଣ ରକ୍ଷା କରିବା ପାଇଁ ନିଜର ସନ୍ତାନକୁ ବଳି ଦେଇଛି, ମଥୁରାରେ କେହି ବି ରାଜାଙ୍କ ବିରୁଦ୍ଧରେ କିଛି କାର୍ଯ୍ୟ କଲେ କଠିନ ଦଣ୍ଡ ଦିଆଯିବ । ଏ ଖାଲି ଘୋଷଣା ନୁହେଁ । ଯେ କୌଣସି ବିରୋଧ ଭାବକୁ ମୁହାଁ ମୁହିଁ ହେବାପାଇଁ କଂସ ପ୍ରସ୍ତୁତ ଅଛି ଏହା ଜଣେଇ ଦେବା ପାଇଁ ସାରା ମଥୁରାରେ ସୈନ୍ୟ ସଂଖ୍ୟା, ବିଶେଷ କରି ରାକ୍ଷସ ସୈନ୍ୟଙ୍କ ସଂଖ୍ୟା ବଢ଼େଇ ଦିଆଗଲା । ଏହି ସମୟରେ ଅରିନ୍ଦମର ପ୍ରଦ୍ୟୋତ ସହିତ ଦେଖା ହୋଇଥିଲା । ପ୍ରଦ୍ୟୋତ ଆଗ ପରି ଧୀର, ସ୍ଥିର, ଅରିନ୍ଦମ ସହିତ ଭଲ ବ୍ୟବହାର କଲା । କିନ୍ତୁ ସ୍ପଷ୍ଟ ଜଣେଇ ଦେଲା ଯାହା ଘଟୁଛି ସେ ସବୁ ଜାଣେ । ସେ ଯେ ସବୁକଥାକୁ ସମର୍ଥନ କରେ ତା ନୁହେଁ, କିନ୍ତୁ ତା ମତାମତ ମୂଲ୍ୟହୀନ, ସେ ରାଜ ଆଜ୍ଞା ପାଳନ କରୁଛି । ସେନାପତି ଭାବରେ ମଥୁରାରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ତା'ର ଦାୟିତ୍ୱ ଓ ସେ ରାଜାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟ କରିବାକୁ ଦେବନାହିଁ । ତେଣୁ ଅରିନ୍ଦମ, ତା'ର ସାଙ୍ଗମାନେ, ଆଉ ଯେଉଁମାନେ ଅଛନ୍ତି ସମସ୍ତେ, ସାବଧାନ

ରହନ୍ତୁ । ଏହି ଘଟଣାର କିଛିଦିନ ପରେ କଂସ ମଥୁରାର ଦାୟିତ୍ୱ ପ୍ରଦ୍ୟୋତଙ୍କ ଉପରେ ଦେଇ ରାଜ୍ୟ ଜୟ କରିବାକୁ ବାହାରକୁ ଚାଲିଗଲା ।

ସେଦିନ ସକାଳେ ଅନେକ ସମୟ ଭାନୁପ୍ରକାଶ ଓ ଅରିନ୍ଦମ ଯମୁନା କୂଳରେ ବସି ରହିଥିଲେ । ଯମୁନା କୂଳରେ ଓ ପରେ ଘରକୁ ଫେରିବା ବାଟରେ ଯେତେ ଲୋକଙ୍କ ସାଙ୍ଗରେ ଦେଖା ହେଲା ସମସ୍ତଙ୍କ ମୁହଁରେ ଗୋଟିଏ କଥା, 'ଆହା ହା, ଚଣ୍ଡାଳ ଛୁଆଟାକୁ ମାରି ପକେଇଲା ।' ସେମାନେ ଘରକୁ ଫେରିବା ପରେ ଭାନୁପ୍ରକାଶ ଆଉ ଗୋପକୁ ଫେରିଗଲେ ନାହିଁ । କହିଲେ, 'ଅରିନ୍ଦମ, ମୁଁ ଆଜି ଏଇଠି ରହିବି' ଓ ରହିଲେ ବି । ବାପାଙ୍କର ପୂଜା ସରି ଯାଇଥିଲା । ସେ ବାପାଙ୍କ ସାଙ୍ଗରେ ଅନେକ ସମୟ ଧରି କଥାବାର୍ତ୍ତା କଲେ, ଓ ପରେ ଯେତେବେଳେ ଅରିନ୍ଦମ ପାଖକୁ ଫେରି ଆସିଲେ ଅରିନ୍ଦମ ଦେଖିଲା ତାଙ୍କର ମୁହଁ ପ୍ରସନ୍ନ ହୋଇଯାଇଛି, ଆଖିର ଦ୍ୟୁତି ଫେରି ଆସିଛି ଓ ସ୍ୱାଭାବିକ ଭାବରେ ସେ ଆଗର ସେହି ଆତ୍ମବିଶ୍ୱାସୀ ଭାନୁପ୍ରକାଶ । କହିଲେ, 'ଅରିନ୍ଦମ, ଗୋପା ଆସିବେ । ମୁଁ ତାଙ୍କୁ ଏଇଠାକୁ ଆସିବାକୁ କହିଛି । ସେ ଏଇଠି ଖାଇବେ, ତାଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କର ।' ଗୋପା ଏକା ନୁହେଁ, ସାଙ୍ଗରେ ବୃନ୍ଦାବତୀଙ୍କୁ ନେଇକରି ଆସିଥିଲେ । ସମସ୍ତେ ଖାଇଲେ । ଖାଇସାରି ଗୋପା ଓ ଭାନୁପ୍ରକାଶ ଅନେକ ସମୟ କଥାବାର୍ତ୍ତା ହେଲେ ଓ ସନ୍ଧ୍ୟା ଆଗରୁ ଉଭୟ ଗୋପା ଓ ବୃନ୍ଦାବତୀ ରାଜ ନଅରକୁ ଫେରିଗଲେ ।

....ଏସବୁ ଆଠ ନ ବର୍ଷ ତଳର କଥା, ଅରିନ୍ଦମ ମନେ ପକେଇବାକୁ ଚେଷ୍ଟା କଲା । କଂସ ଯେପରି ଭାବରେ ଦେବକୀଙ୍କର ପ୍ରଥମ ସନ୍ତାନଟିକୁ ପ୍ରାଣରେ ମାରିଦେଲା ସେ କଥା ମଥୁରାରେ ସମସ୍ତେ ନାପସନ୍ଦ କଲେ । କିନ୍ତୁ କାହାର କିଛି କରିବାର ନ ଥିଲା । ସମସ୍ତେ ଦୁଃଖ କଲେ, ସ୍ତ୍ରୀ ଲୋକମାନେ କଂସକୁ ଅଭିଶାପ ଦେଲେ । କିନ୍ତୁ ସମସ୍ତେ ଚୁପ ରହିଲେ । ଏ ଘଟଣା ସେତିକିରେ ବନ୍ଦ ହୋଇ ରହିଲା ନାହିଁ । ପରବର୍ତ୍ତୀ ବର୍ଷମାନଙ୍କରେ ଏହି ନାରକୀୟ କାର୍ଯ୍ୟର ପୁନରାବୃତ୍ତି ହୋଇ ଚାଲିଲା । ଆଶ୍ଚର୍ଯ୍ୟ, ପ୍ରତିବର୍ଷ ଠିକ୍ ସମୟରେ ଦେବକୀଙ୍କର ସନ୍ତାନ ଜନ୍ମ ହେଲା ଓ ପ୍ରତିବର୍ଷ ବନ୍ଦୀଶାଳାକୁ ଯାଇ କଂସ ନବଜାତ ସନ୍ତାନଙ୍କୁ ହତ୍ୟା କଲା ଓ ପ୍ରତିବର୍ଷ ମଥୁରାର ଲୋକମାନଙ୍କର ରାଗ, କ୍ରୋଧ ଓ ଅସହାୟତା ନିଜ ଭିତରେ ସୀମିତ ହୋଇ ରହିଲା । ଏହି ଦୀର୍ଘ ସମୟ ଭିତରେ ଯାହା ଅରିନ୍ଦମକୁ ଆଶା ଓ ସାହସ ଆଣିଦେଲା ସେ ଭାନୁପ୍ରକାଶଙ୍କର ଧୈର୍ଯ୍ୟ, ଦମ୍ଭ ଓ ଗଭୀର ଆତ୍ମବିଶ୍ୱାସ । ସେ ପ୍ରାୟ ଅନେକ ସମୟରେ କୁରୁକ୍ଷେତ୍ର ଗୁରୁଦେବଙ୍କ ପାଖକୁ ଯାଉଥାନ୍ତି ଓ ଥରେ ଦି'ଥର ସେ ଅରିନ୍ଦମକୁ ସାଙ୍ଗରେ ନେଇ ଯାଇଛନ୍ତି । ବ୍ୟାସଦେବଙ୍କୁ ଭେଟିବା, ତାଙ୍କ ସହିତ ଆଳାପ କରିବା


Digitized by srujanika@gmail.com

ଓ ତାଙ୍କର ସାନ୍ନିଧ ଲାଭ କରିବା ଅରିନ୍ଦମ ପକ୍ଷରେ ଅଦ୍ଭୁତ ଅଭିଜ୍ଞତା । ସତେ ଯେପରି କୌଣସି ଅଦ୍ୱିତୀୟ ଦେବତାତ୍ମାର ସାନ୍ନିଧ । ମଥୁରା ଭିତରେ ଯେମିତି ଆଗରୁ ସ୍ଥିର କରାଯାଇଥିଲା ସବୁ କାମ ସେମିତି ଚାଲୁ ରହିଲା । ଅରିନ୍ଦମ ଓ ତା'ର ସାଙ୍ଗମାନେ ଲୋକମାନଙ୍କ ସହିତ ସମ୍ପର୍କ ରଖିଲେ ଓ ସେମାନଙ୍କୁ ସବୁ ବିଷୟରେ ସଚେତ କଲେ । ସୌରଦେବ ଗୋପା ପ୍ରତ୍ୟେକ ନିଜ ନିଜ କାମରେ ବ୍ୟସ୍ତ ରହିଲେ । ବଡ଼ କଥା ହେଲା ସତ୍ୟକାମଙ୍କ ସହଯୋଗରେ ଭାନୁପ୍ରକାଶ ଗୋପରେ ଯେଉଁ ଆଶ୍ରମ ଆରମ୍ଭ କଲେ, ସେହି ଆଶ୍ରମ ହିଁ ଏହି ଦୀର୍ଘ ସମୟ ଧରି ତରୁଣମାନଙ୍କୁ ବେଦ ଅଧ୍ୟୟନ, ଧର୍ମ ଓ ନୀତି ବିଷୟରେ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ପ୍ରାଣବନ୍ତ କଲା ଓ କଂସ ବିରୁଦ୍ଧରେ ପ୍ରତିରୋଧର ଅନ୍ତଃସ୍ରୋତ ସଂଜୀବୀତ କରି ରଖିପାରିଲା ।

ଅରିନ୍ଦମର ଭାନୁପ୍ରକାଶଙ୍କର ନିଷ୍ପତ୍ତି ମନେ ପଡ଼ିଲା - ଆମକୁ ଅଷ୍ଟମ ଗର୍ଭପାଇଁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ...

ଆଜି ସେହି ଦିନ । ବାହାରେ ସକାଳର ଉଜ୍ଜ୍ୱଳ ଆଲୋକ । ଅରିନ୍ଦମ ଘର ଭିତରୁ ସକାଳର ଉଜ୍ଜ୍ୱଳତାକୁ ବାହାରି ଆସିଲା । ତା'ର ମନେହେଲା ମହାଶୂନ୍ୟର ଗର୍ଭରୁ ସେହି ଅଶରୀରୀ ପୁରୁଷର ବାଣୀ ଧ୍ୱନିତ ହେଉଛି - 'ବେଦାହମେତଂ ପୁରୁଷଂ ମହାନ୍ତ...'। ସେ ହାତଯୋଡ଼ି ନମସ୍କାର କଲା ।


Digitized by srujanika@gmail.com

# ଦିନ

ଅରିନ୍ଦମ ଘର ଭିତରୁ ବାହାରକୁ ଆସିଲା । ପରିଷ୍କାର ସକାଳ। ଆକାଶରେ ତିନି ଚାରିଟା ବାଦଲ ଭାସି ବୁଲୁଛି । ଗତ ସାତ ଆଠ ଦିନ ଧରି, ଶ୍ରାବଣ ପୂର୍ଣ୍ଣିମା ପାଖରୁ, ପ୍ରାୟ ସବୁଦିନେ, ସକାଳ ସକାଳ ସଫା ରହିଲେ ବି ଦିନ ଶେଷ ବେଳକୁ ବେଶ ମେଘ ହେଉଥିଲା । ଆଜି ସକାଳୁ ମେଘ ନାହିଁ, ମନେ ହେଉଛି ପଛକୁ ମେଘ ଆସିପାରେ । ସେ ଚାରିଆଡ଼କୁ ଚାହିଁଲା । ଚାରିପାଖର ଗଛ ବୃକ୍ଷରେ ନୀଳ ସବୁଜର ସମାରୋହ । ସବୁ ଗଛବୃକ୍ଷ ଗାଧୋଇଲା ପରି ପରିଷ୍କାର ପରିଚ୍ଛନ୍ନ । ଚଢ଼େଇମାନେ ଉଡି ଆସିଲେଣି, ଘର ଚାଳରେ, ପିଣ୍ଡାରେ, ଚାରି ପାଖରେ ସେଇମାନଙ୍କର ମେଳି, ଚାରିପାଖରେ ସେଇମାନଙ୍କର ରାବ । ଅରିନ୍ଦମ ବାହାରେ କିଛି ସମୟ ଛିଡ଼ା ହୋଇ ରହିଲା । ଲୋକମାନେ ଯମୁନାକୁ ଯିବାକୁ ଆରମ୍ଭ କଲେଣି । ବାପା ତାଙ୍କର ସବୁଦିନିଆ ପୂଜା ଆରମ୍ଭ କଲେଣି । ଠାକୁରଘରୁ ତାଙ୍କର ସ୍ତୋତ୍ର ପାଠ ଶୁଣାଯାଉଛି । ଶାନ୍ତ ସଂଯତ ସକାଳ, ଚାରିପାଖରେ ଗୋଟାଏ ଖୁସି ଖୁସି ଭାବ । ତାର ମନେ ହେଲା ତାର ମନଟା ବି ସେହି ଖୁସି ଖୁସି ଭାବରେ ପୂରି ଯାଉଛି । ସେ ଆକାଶକୁ ଚାହିଁଲା । ଚାରିଆଡ଼କୁ ଚାହିଁଲା । ସବୁଆଡେ ଆନନ୍ଦ । ଦୁଃଖ ନାହିଁ, ଶୋକ ନାହିଁ । ଆଜି ସେହି ଜନ୍ମ, ଯାହାକୁ ସେମାନେ ଅପେକ୍ଷା କରି ରହିଛନ୍ତି । ତାର ମନେ ପଡିଲା ଦେବପ୍ରିୟ ଆସିବ । ସେ ଆଉ ଅପେକ୍ଷା କଲା ନାହିଁ । ନିଜର କାମଦାମ ସାରିବାକୁ ଚାଲିଗଲା ।

ଦେବପ୍ରିୟ ପ୍ରସ୍ତୁତ ହୋଇ ଆସିଥିଲା । ଅରିନ୍ଦମ ବି ପ୍ରସ୍ତୁତ ହେଲା । ତା ମନରେ ଯଥେଷ୍ଟ ଉଦ୍‌ବେଗ । ଘଟଣା କଅଣ ହେବ, କେଉଁ ମୋଡ ନେବ ଏତେ ଆଗରୁ ଭାବି ହେଉନି । ଗତ ତିନି ଦିନ ହେବ ଭାନୁପ୍ରକାଶ ବିଭିନ୍ନ ପ୍ରକାର ଆୟୋଜନ କରୁଛନ୍ତି । ଏସବୁ ଅତ୍ୟନ୍ତ ଗୋପନୀୟ ଆୟୋଜନ, ଅରିନ୍ଦମ ଜାଣେ । ବଂଧୁ ଦେବପ୍ରିୟକୁ ବି ଏସବୁ କହିବା ସମ୍ଭବ ନୁହେଁ । ଗତ ସଂଧ୍ୟାରେ ଭାନୁପ୍ରକାଶ ଆସିଥିଲେ । ଜଣେଇ ଦେଇଗଲେ ସବୁ ଆୟୋଜନ ଠିକଠାକ ଚାଲିଛି, କିନ୍ତୁ ସାବଧାନ, କେହି ଯେମିତି କିଛି ନ ଜାଣେ । ବାପାଙ୍କୁ ବି ଅରିନ୍ଦମ କିଛି କହିବନି । ସେ ନିଜେ ଯାହା ବୁଝୁଛନ୍ତି ବୁଝନ୍ତୁ । ଅରିନ୍ଦମ ଜାଣେ ଏ ଆୟୋଜନର ସବୁଠାରୁ


Digitized by srujanika@gmail.com

ବଡ଼ ଅସୁବିଧା ହେଉଛି ପାଗ ଓ ଯମୁନା ପାରିହେବା । ବର୍ତ୍ତମାନ ପାଗ ଭଲ ଅଛି, ଆକାଶରେ ମେଘ ନାହିଁ । କିନ୍ତୁ ବର୍ଷାଦିନ । ଯେ କୌଣସି ମୁହୂର୍ତ୍ତରେ ପାଗ ବଦଳି ଯାଇପାରେ । ସଂଧ୍ୟାର ଥଣ୍ଡା ଆସିବା ସାଙ୍ଗେ ସାଙ୍ଗେ ପ୍ରାୟ ବର୍ଷା ହୁଏ । ଗତ କିଛିଦିନ ହେବ ତାହାହିଁ ହେଉଛି । ସଂଧ୍ୟା ପରେ ପରେ ବର୍ଷା । ଖୁବ୍ ଜୋରରେ ନ ହେଲେ ବି ଜୋରରେ ହେଉଛି ଓ ବହୁତ ରାତି ପର୍ଯ୍ୟନ୍ତ ଚାଲୁଛି । ତା ସାଙ୍ଗରେ ଘଡ଼ଘଡ଼ି ଚଡ଼ଚଡ଼ି ଓ ପବନ । ବର୍ଷା ଦିନ ଯୋଗୁଁ ଯମୁନାରେ ତ ପୂରା ପାଣି । ବର୍ଷାରେ ତୋଡ ଆହୁରି ବଢ଼ି ଯାଇଛି । ସେଥିରେ ଗୋଟାଏ ସଦ୍ୟ-ଜନ୍ମିତ ଛୁଆଟାକୁ ଧରି ଅଂଧାରରେ ବର୍ଷାରେ ପବନରେ ଯମୁନା ପାରିହେବା ଖୁବ୍ ସହଜ ନୁହେଁ । ତା'ପରେ ସେ ପାଖର ଗୋପ ଘାଟରୁ ସେଇ ବର୍ଷା ପବନରେ ବଣ ଭିତରେ ନନ୍ଦଙ୍କ ଘରକୁ ଯାଇ ଆଉ ଗୋଟାଏ ଟିକି ଛୁଆକୁ ଆଣି, ତାକୁ ଠିକ୍ ଭାବରେ ଯମୁନାରେ ପାରି କରେଇବା କମ କଥା ନୁହେଁ । ଯେ କୌଣସି ମୁହୂର୍ତ୍ତରେ ଯେ କୌଣସି ସ୍ଥାନରେ ଗୋଳମାଳ ହୋଇଯାଇ ପାରେ । ଏ ଲମ୍ବା ଯୋଜନା ତ ଆପାତତଃ ମନେ ହେଉଛି ଠିକ୍, ନିର୍ଭୁଲ । କିନ୍ତୁ କୌଣସି ଗୋଟାଏ ସାମାନ୍ୟ ତ୍ରୁଟିରେ ବି ଏ ପୂରା ଯୋଜନା ଭଣ୍ଡୁର ହୋଇଯିବ । ଆଉ ସେତେବେଳେ ଭୁଲ୍‌ଟାକୁ ବି ସଜାଡିବାକୁ ସମୟ ନ ଥିବ । ଏ ଗୋଟାଏ ଧରୁ ଧରୁ ଖସିଯିବା ପରି କଥା । ଅରିନ୍ଦମକୁ ବହୁତ ବ୍ୟସ୍ତ ଲାଗିଲା । ପୁଣି ଅନ୍ୟ କଥା ବି ଅଛି । ଦେବକୀଙ୍କର ଯେତେବେଳେ ଛୁଆ ଜନ୍ମ ହେବ, ଯଶୋଦାଙ୍କର ଠିକ୍ ସେତିକିବେଳେ ଛୁଆ ଜନ୍ମ ହେବା ଦରକାର । ଏ ତ ସଂପୂର୍ଣ୍ଣ କାକତାଳୀୟ ବ୍ୟାପାର । କେମିତି ହେବ କେଜାଣି ? ପୁଣି ପିଲା ଜନ୍ମହେବା ସାଙ୍ଗେ ସାଙ୍ଗେ କାନ୍ଦନ୍ତି, କିନ୍ତୁ ଏଠି ଉଭୟ ଦେବକୀ ଓ ଯଶୋଦାଙ୍କ ପାଖରେ, ଛୁଆ ଯେମିତି ନ କାନ୍ଦିବେ ତାର ବନ୍ଦୋବସ୍ତ କରିବାକୁ ହେବ । ତା'ଛଡ଼ା ଦେବକୀ ସିନା ସଜ୍ଞାନରେ ନିଜ ଛୁଆଟାକୁ ଛାଡିଦେବେ, ତା ନ ହେଲେ କଂସ ଛୁଆଟାକୁ ମାରି ଦେବ... ଯଶୋଦା.... ଯଶୋଦା ତ ଛାଡିବେନି । ସେ ତ କିଛି ଜାଣିବା କଥା ନୁହେଁ । କେମିତି ହବ ? ପୁଣି ଉଗ୍ରସେନଙ୍କ କୋଠିରୁ ଯମୁନା ଡେଇଁ ଗୋପରେ ନନ୍ଦଙ୍କ ଘର, ସେଠୁ ଉଗ୍ରସେନଙ୍କ କୋଠି, ଏ କମ ରାସ୍ତା ନୁହେଁ । ମଝିରେ ପୁଣି ବଣ ବୁଦା ବି ଅଛି । ବିଶେଷ କରି ଗୋଟାଏ ଛୋଟ ଛୁଆକୁ ଧରି ମେଘ ଅଂଧାର ରାତିରେ ଚୁପଚୁପ ଯିବା, ଓ ଚୁପଚୁପ ଆସିବା, କେହି ଜାଣିବେ ନାହିଁ, କେହି ଜାଣି ବି ପାରିବେ ନାହିଁ- ଅରିନ୍ଦମ ଭାବିଲା ଏ କଅଣ ସମ୍ଭବ ? ବାଧା ଦେବା ତ ଦୂରର କଥା, କେହି ଆଦୌ ଜାଣି ପାରିବେ ନାହିଁ, ଅଥଚ ଗୋଟାଏ ଛୁଆ ଯିବ ଆଉ ଗୋଟାଏ ଛୁଆ ଆସିବ । ଜାଣିଲେ ସବୁ ଶେଷ – ଭାନୁପ୍ରକାଶ ହୁଏତ ଏଠି କଅଣ

ବନ୍ଦୋବସ୍ତ କରିଛନ୍ତି । କିନ୍ତୁ ସେଠି ? ଗୋପରେ ? ସୈନ୍ୟମାନେ ସିନା ନାହାନ୍ତି, କିନ୍ତୁ ଅନ୍ୟାନ୍ୟ ଲୋକ ଅଛନ୍ତି, ଯଶୋଦା ନିଜେ ଅଛନ୍ତି । ଚାରି ପାଞ୍ଚ ଜଣ ଲୋକଙ୍କ ଛଡ଼ା ଏ ବନ୍ଦୋବସ୍ତ କଥା ଆଉ କେହି ଜାଣିବେ ନାହିଁ, ଟିକେ ହେଲେ ବି ଜାଣି ପାରିବେ ନାହିଁ, ଠିକ୍ ସମୟ ମୁତାବକ କାମ ହେବ, ନିର୍ଦ୍ଦିଷ୍ଟ ସମୟ ଭିତରେ, ପାଣି ପାଗ ଠିକ୍ ଥିବ, ଗତ ଆଠ ନଅ ବର୍ଷ ଧରି କଂସର ଲୋକମାନେ ଯେତେ ଯାହା ସତର୍କ ରହିଛନ୍ତି ସେସବୁକୁ ଟପି ଏ ଆୟୋଜନ ଠିକ୍‌ଠାକ ହେବ – ଅରିନ୍ଦମର ମୁଣ୍ଡ ଗୋଳମାଳ ହୋଇଗଲା, ଏ ତ ମଣିଷର ଆୟୋଜନ ନୁହେଁ, ଭଗବାନଙ୍କ ଆୟୋଜନ ...।

'ହଁ, ଭଗବାନଙ୍କ ଆୟୋଜନ', କହିଥିଲେ ଭାନୁପ୍ରକାଶ – 'ଯେଉଁ ଆୟୋଜନରେ ସାରା ବିଶ୍ୱ ଶୃଙ୍ଖଳିତ ହୋଇ ଚାଲିଛି, ଯେଉଁ ଆୟୋଜନରେ ମଣିଷ ଜୀବନର ବୃଦ୍ଧି ଓ କ୍ଷୟ, ଏ ସେହି ଆୟୋଜନ । ଆମେ କଅଣ ସେହି ବିଶ୍ୱନିୟନ୍ତାଙ୍କର ସବୁ କଥା ବୁଝିପାରିବା ଅରିନ୍ଦମ ?' ସେ ପଚାରିଥିଲେ । ଅରିନ୍ଦମ ଅନେକ ଥର ଭାବିଛି, ଭାନୁପ୍ରକାଶ ଠିକ୍ କଥା କହୁଛନ୍ତି । ଆମ ପଛରେ ଗୋଟାଏ ଅଦୃଶ୍ୟ ଶକ୍ତିର ନିର୍ଦ୍ଦେଶ ଅଛି, ସାହସ ଅଛି, ଏ କଥା ନ ଭାବିଲେ ତ ଆମେ କିଛି କାମ କରି ପାରିବା ନାହିଁ । ଏଇ ଭାନୁପ୍ରକାଶଙ୍କ କଥା ଧରାଯାଉ । କେତେ କାମ ସେ କରୁଛନ୍ତି ! ମଥୁରାରେ, ମଗଧରେ, ଆଉ କେତେ କେତେ ଜାଗାରେ । ନିରଳସ, ନିଷ୍ପାପର, ନିର୍ଭୀକ । ନିଜର କିଛି ସ୍ୱାର୍ଥ ନାହିଁ, ଏକମାତ୍ର ଉଦ୍ଦେଶ୍ୟ ମଣିଷ କିପରି ମଣିଷ ପରି ବଂଚିରହୁ, ଅତ୍ୟାଚାରୀର ଅତ୍ୟାଚାର ସଂପର୍କରେ ସଚେତ ହେଉ, ତାର ପ୍ରତିବାଦ କରୁ, ଭୟହୀନ ହେଉ । ଦିନେ ସେ ତାଙ୍କୁ ପଚାରିଥିଲା ଆପଣ ଏ ସବୁ କାମ କରିବାପାଇଁ ଏତେ ଶକ୍ତି କେଉଁଠୁ ପାଆନ୍ତି । ସେ କେବଳ ଅଳ୍ପ ହସି ଚୁପ ରହିଥିଲେ । ଆଉ ଦିନେ ସେ ଉତ୍ତର ଦେଇଥିଲେ – ମୋର ବିଶ୍ୱାସରୁ, ଗୁରୁଦେବଙ୍କ ଆଶୀର୍ବାଦରୁ ।

ଆଜି ଦିନଟା ଗୋଟାଏ ଅଦ୍ୱିତୀୟ ଦିନ, ଅରିନ୍ଦମ ମନେ ମନେ ଭାବିଲା । ଏହି ଦିନକୁ ଖାଲି ସେ ଓ ଭାନୁପ୍ରକାଶ ନୁହନ୍ତି, ଆହୁରି ବହୁ ବହୁ ଲୋକେ ଗତ ଦଶ ବର୍ଷ ଧରି ଅପେକ୍ଷା କରି ରହିଛନ୍ତି । ଏ ଦିନଟା ଆସିବ କି ନ ଆସିବ, ଦେବକୀ ବସୁଦେବଙ୍କର ବିଭାଘର ଦିନ ଶୂନ୍ୟବାଣୀର ସତ୍ୟତା କେତେ, କଂସ ନିଜେ ସେ ଶୂନ୍ୟବାଣୀରେ ବିଶ୍ୱାସ କରେ କି ନା, ଏପରି ଗୋଟାଏ ଅଦ୍ଭୁତ ଶୂନ୍ୟବାଣୀକୁ ସ୍ୱତଃସିଦ୍ଧ ବୋଲି ଧରି ନେଇ ଏତେ ବର୍ଷ ହେଲା ଦେବକୀ ବସୁଦେବଙ୍କୁ ବନ୍ଦୀ କରି ତାଙ୍କୁ ଯେପରି ଭାବରେ ନିର୍ଯ୍ୟାତନା ଦିଆଯାଉଛି, ସେ କେତେଦୂର ଠିକ୍ । କଂସର

ଅତ୍ୟାଚାରର ଶେଷ କେବେ, ଓ ଦେବକୀର ଜନ୍ମିତ ପିଲାଙ୍କୁ ସେ କେତେଦିନ ଧରି ଏହିପରି ନିଷ୍ଠୁର ଭାବରେ ହତ୍ୟାକରିବ । ଏହିପରି ଅନେକ ପ୍ରଶ୍ନ ଓ ଆହୁରି ଅନେକ ସେହି ନିର୍ଦ୍ଦିଷ୍ଟ ଦିନଠାରୁ ଆଜି ପର୍ଯ୍ୟନ୍ତ ମଥୁରାର ଲୋକମାନେ ବାରମ୍ବାର କୁହାକୋହି ହେଉଛନ୍ତି ଓ ଭାବୁଛନ୍ତି । ଏସବୁ କେବଳ ପ୍ରଶ୍ନ, କୌଣସି ପ୍ରଶ୍ନର ସଠିକ୍ ଉତ୍ତର ନାହିଁ । ତାଙ୍କ ନିଜ ଭିତରେ ବି, ଭାନୁପ୍ରକାଶ ଓ ଅନ୍ୟମାନେ ଏସବୁ କଥା ବାରମ୍ବାର ଆଲୋଚନା କରିଛନ୍ତି, କିନ୍ତୁ କେବଳ ଆଲୋଚନା ଓ ବିଚାର । ସବୁ ଭିତରେ ଆଜି ଦିନକୁ ଅପେକ୍ଷା ।

ହଁ, ଆଜି ଦିନକୁ । ଆଜି ସବୁ ଅପେକ୍ଷାର ଶେଷ, ସବୁ ପ୍ରକାର ପ୍ରସ୍ତୁତିର ଶେଷ । ଆଜି ରାତିରେ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ଜନ୍ମ ହେବ । ଅନ୍ତତଃ ତାହାହିଁ ଖବର । ଦେବକୀଙ୍କର ବେଦନା ଆରମ୍ଭ ହୋଇଗଲାଣି । ଆଶା କରାଯାଉଛି ମଧ୍ୟରାତ୍ରି ବେଳକୁ ସନ୍ତାନ ଜନ୍ମ ହେବ । ଅରିନ୍ଦମର ଚିନ୍ତାଧାରା ବ୍ୟାହତ ହେଲା । ଏ କି ଅଦ୍ଭୁତ ସନ୍ତାନ, ଯାହା ପାଇ ଗୋଟାଏ ଜାତି ଗତ ଦଶ ବର୍ଷ ହେଲା ଅପେକ୍ଷା କରି ରହିଛି । ଗୋଟାଏ ଜାତି କାହିଁକି ? ସେ ବ୍ୟାସଦେବଙ୍କ କଥା ଭାବିଲା, ବାପାଙ୍କ କଥା ଭାବିଲା - ସାରା ଆର୍ଯ୍ୟାବର୍ତ୍ତ । ତାର ଜନ୍ମ ପରେ ପରେ ଅତ୍ୟାଚାର ଶେଷ ହେବ, ଅଧର୍ମର ଶେଷ ହେବ ! ଆଶ୍ଚର୍ଯ୍ୟ ବିଚାର ! ଏପରିକି ଏଇ ଗୋଟାଏ ପିଲାର ଜନ୍ମର ଗୌରବରେ ଆଗର ଜନ୍ମିତ ପିଲାମାନଙ୍କୁ ଯେପରି ପୈଶାଚିକ ଭାବରେ ହତ୍ୟା କରାଗଲା ଲୋକମାନେ ତାକୁ ଭୁଲିଯିବାକୁ ପ୍ରସ୍ତୁତ । ଭୁଲିଗଲେଣି ବି । ଗତ ଦୁଇ ତିନି ଦିନ ଧରି ମଥୁରାରେ କେବଳ ଗୋଟିଏ ବିଷୟରେ ଆଲୋଚନା, ବିଚାର । ସେ ଏହି ଅଷ୍ଟମ ଗର୍ଭ । ଗତ ଦୁଇଦିନ ଧରି ସେ ଓ ଦେବପ୍ରିୟ ମଥୁରାର ବିଭିନ୍ନ ମହଲାକୁ ଯାଇଛନ୍ତି । ବିଭିନ୍ନ ଲୋକମାନଙ୍କ ସହିତ ଦେଖାହୋଇଛି । ସବୁଆଡ଼େ ଦେବକୀଙ୍କର ଅଷ୍ଟମ ଗର୍ଭ ବିଷୟରେ ଆଲୋଚନା । ଯେପରି ସେଇ ଗୋଟିଏ ରହସ୍ୟ ସାରା ମଥୁରାକୁ ଘୋଡ଼େଇ କରି ରଖିଛି । ଅରିନ୍ଦମ ଭାବି ଆଶ୍ଚର୍ଯ୍ୟ ହୋଇଛି । ଗୋଟାଏ ମତ ନୁହେଁ, ବିଭିନ୍ନ ପ୍ରକାର ମତ, କେଉଁଠି ବିଶ୍ୱାସ ତ କେଉଁଠି ସଂପୂର୍ଣ୍ଣ ଅବିଶ୍ୱାସ । କେଉଁଠି ନିଃସ୍ପୃହତା ତ କେଉଁଠି ସଂପୂର୍ଣ୍ଣ ଉପେକ୍ଷାର ମନୋଭାବ । ସେ ଜାଣେ ଆଜି ଶେଷ ଦିନ ହେଲେ ବି, ଆଜି ଆଲୋଚନାର ଶେଷ ହେବ ନାହିଁ । ଆଜି ସେ ଶିଶୁଟି ଯଦି କଂସ ହାତରୁ ବଂଚିଯାଏ, ତେବେ ଆଲୋଚନା ସେମିତି ଚାଲିବ । ଲୋକେ ସେମିତି କହିବେ ଓ ବିଚାର କରିବେ ।

ଅରିନ୍ଦମ ଓ ଦେବପ୍ରିୟ ସକାଳର କାମଦାମ ସାରି ପ୍ରସ୍ତୁତ ହୋଇ ପ୍ରଥମେ ସ୍ଥିର କଲେ ଅନିକେତ ଘରକୁ ଯିବେ । ଅନିକେତର ଘର ମଥୁରାର ପୂର୍ବ ଅଂଚଳରେ,


Digitized by srujanika@gmail.com

ମଥୁରାର ଗୋଟାଏ ପୁରୁଣା ମହଲା କୁହାଯାଇପାରେ । ଆଉ ଅନିକେତ ପୂର୍ବ ପରିଚିତ ବି । ଅନେକ ଥର ସେମାନେ ଭେଟିଛନ୍ତି, ଅନେକ ବିଷୟରେ ସେମାନଙ୍କର ବିଚାର ଆଲୋଚନା ବି ହୋଇଛି । କିନ୍ତୁ ସବୁବେଳେ ଅରିନ୍ଦମର ମନେହୁଏ ଅନିକେତର କଥାଗୁଡା କେମିତି ଆଡବାଗିଆ ଆଡ଼ବାଗିଆ । ତାର କୌଣସି କଥାରେ ବିଶ୍ୱାସ ନାହିଁ । ଯୁକ୍ତିତର୍କ ତ ଦୂରର କଥା, ଗୋଟାଏ ଘଟଣା ଆଖି ଆଗରେ ଘଟିଯାଉଛି ତାକୁ ମଧ୍ୟ ସେ ମାନିବାକୁ ପ୍ରସ୍ତୁତ ନୁହେଁ । ଏଇ ଦେବକୀ ବସୁଦେବଙ୍କର ବିଭାଘର କଥା – ବାହାଘର ଫାହାଘର ହବନି, ଭଡ଼ା ଖବର । ବାହାଘର ଯେତେବେଳେ ଠିକ୍ ହୋଇଗଲା, ଦିନ ଠିକ୍ ହେଲା, ବାହାଘର ହଉଛି ସମସ୍ତେ ଜାଣିଲେ, ସେ କିନ୍ତୁ ମାନିବାକୁ ରାଜି ନୁହେଁ । ପଚାରିଲେ କହେ, କି ହୋ କି ବାହାଘର, ଏ ଗୋଟାଏ ଶୂନ ଫଟକା, ବିଶ୍ୱାସ ନାହିଁ । ବାହାଘର ଦିନର ସେ ଶୂନ୍ୟବାଣୀ ସେଇଆ । କି ହୋ କି ଶୂନ୍ୟବାଣୀ, କୋଉଠୁ ଆସିଲା, ଦେଖିଛ, କିଏ କହିଲା, ମୂଳରୁ ମାଇପ ନାହିଁ ନା ପୁଅ ନା ଗୋପାଳିଆ । ଆରେ ଯା ଯା, ଶୂନ୍ୟରୁ କଥା ଆସେ, ଯେତେ ଗାଲୁଆ ଏମିତି କଥା କହନ୍ତି ।

ଦେବପ୍ରିୟ ସେଇକଥା କହିଲା – 'ଅରିନ୍ଦମ, ଅନିକେତ ପାଖକୁ ଯାଇଁ ଲାଭ କଅଣ ? ସମୟ ନଷ୍ଟ । ସେ ତ ସବୁଆଡ଼େ କହି ବୁଲୁଚି ଏ ଫାଲ୍‌ତୁ ଲୋକଙ୍କ କାମ । ଆରେ ଦେବକୀ ତ ବିଭା ହେଲା, ତାର ପିଲାଟାଏ ହବ । ଆଉ ଏ ଆଠ ପିଲାଟାରେ ନାଖ ମରିଛି । ସେ ଦେଶଦଶ ଉଦ୍ଧାର କରି ପକେଇବ। ଯେତେ ଫାଲ୍‌ତୁ କଥା । ଯା ଯା...'

ଅରିନ୍ଦମ ଟିକେ ଭାବିଲା, କହିଲା, 'ତୁ ହୁଏତ ଠିକ୍ କଥା କହୁଛୁ ଦେବପ୍ରିୟ । ଅନିକେତ ଘୁଂଚିବାକୁ ଚାହେଁ ନା, ତାର ବହୁତ କଥାରେ ବିଶ୍ୱାସ ନାହିଁ । ଏ ସେମିତି । କିନ୍ତୁ ସେ ବୁଦ୍ଧିମାନ । ଅନେକ ଲୋକ ତା ପାଖକୁ ଆସନ୍ତି । ତା କଥା ମାନନ୍ତି । ଭାନୁପ୍ରକାଶ ବାରମ୍ବାର କହିଯାଇଛନ୍ତି ଆଜି ମଥୁରାରେ ବୁଲାବୁଲି କରି କିଏ କଅଣ ଭାବୁଛନ୍ତି ଜାଣିବା ଦରକାର । ଆମେ ଅନିକେତ ଠାରୁ ଆରମ୍ଭ କରିବା ।'

ଅରିନ୍ଦମ ଓ ଦେବପ୍ରିୟ ଅନିକେତ ଘରେ ପହଞ୍ଚିଲା ବେଳକୁ ତା ଘରର ପ୍ରଶସ୍ତ ବାରଣ୍ଡାରେ ଗୋଟିଏ ଛୋଟକାଟିଆ ସଭା ବସିଥିଲା । ଅନିକେତ ନିଜେ, ତାର କିଛି ସାଙ୍ଗ ପାଖ ପଡ଼ୋଶୀ, ଓ ଆଉ କିଛି ଲୋକ ଯାହାଙ୍କୁ ଅରିନ୍ଦମ ଆଗରୁ ଦେଖି ନ ଥିଲା । କୌଣସି ଗୋଟିଏ ବିଷୟରେ ଆସିଥିବା ଲୋକମାନେ ଉତ୍ତେଜିତ ହୋଇ କଥା କହୁଥାନ୍ତି । କିଛି ଲୋକ ଏକା ସାଙ୍ଗରେ ବି କଥା କହୁଥାନ୍ତି । ଅରିନ୍ଦମ ଭାବିଲା ପାଖକୁ ଯିବ କି ନାହିଁ । ମନେ ହେଉଛି ସମସ୍ତେ ସେଠି ବେଶ ଉତ୍ତେଜିତ, ସେ ସେଠି


Digitized by srujanika@gmail.com

କଅଣ କହିବ । ଭାବୁଥିଲା ଫେରିଯିବକି ? ଅନିକେତ ଦେଖିପାରି ପାଟି କଲା – 'ଆରେ, ଆରେ ଅରିନ୍ଦମ, ଦେବପ୍ରିୟ, ଆସ, ଆସ...ତୁମ କଥା ଶୁଣିବା ।'

ଉଭୟ ଅନିକେତ ଘରର ବାରଣ୍ଡା ଉପରକୁ ଉଠିଗଲେ । ଅନିକେତ ନିଜ ପାଖରେ ଜାଗା କରିଦେଲା । କହିଲା.. 'ବସ' । ଉଭୟ ବସିଲେ ।

ଅନିକେତ କହିଲା, 'ଅରିନ୍ଦମ ଶୁଣ, ଆଜି ସକାଳର ଖବର ଦେବକୀର ରାତିକି ପିଲା ହୋଇପାରେ । ତୁମେ ବି ଖବର ପାଇଥିବ ?'

ଅରିନ୍ଦମ 'ହଁ' କଲା ।

ଅନିକେତ ପୁଣି କହିଲା, 'ଦେବକୀର ସବୁ ଆଗ ପିଲାମାନଙ୍କୁ ତ କଂସ ଜନ୍ମ ହେଉ ହେଉ ଶେଷ କରିଦେଇଛି । ଏ ପିଲାଟାର କଅଣ ହେବ କେଜାଣି ? ଏ ପିଲାଟା ପୁଣି, ଏମାନେ ଯାହା କହୁଛନ୍ତି, ସବୁଠୁ ବିପଜ୍ଜନକ ।'

'ଏଇ ପିଲାଟା ହିଁ କଂସକୁ ମାରିବ'.... ସଭା ଭିତରୁ କିଏ ଜଣେ କହିଲା ।

ଅନିକେତ ହୋ ହୋ ହୋଇ ହସିଲା । କହିଲା, 'ଏଇ କଥାଟାହିଁ ଆମେ କଥାବାର୍ତ୍ତା କରୁଛୁ । ଗୋଟା କୁଆଡ଼େ କୁଆଡର ଶୂନ୍ୟବାଣୀ କହିଦେଲା 'କଂସକୁ ମାରିବ', ଆଉ ଆମେ ବେଦବାକ୍ୟ ପରି ସେଇଟାକୁ ମାନିନେଲେ । କିରେ କେମିତି ମାରିବ ? ପିଲାଟା ବଂଚି ବଡ଼ ହେଲା ପରେ ସିନା ସେ କଥା ଉଠିବ । ପିଲାଟା ବଂଚୁ ଆଗେ ।'

'ନିଶ୍ଚୟ ବଂଚିବ । ସେ ସାଧାରଣ ପିଲା ନୁହେଁ', ସାମନାରୁ କିଏ କହିଲା ।

ଅନିକେତ ଚିହିଁକି ଉଠିଲା... 'ସାଧାରଣ ପିଲା ନୁହେଁ ! କି ପିଲା ତା ହେଲେ ? ତାର ଚାରିଟା ହାତ, ଦିଇଟା ମୁଣ୍ଡ ? ନାଁ ଆଉ କ'ଣ ?'

'ନାଁ, କଂସ ତାକୁ ମାରି ପାରିବ ନାହିଁ'... ବଂଧୁ ପୁଣି କହିଲେ । ଅନିକେତର ଯୁକ୍ତିପ୍ରିୟ ମନ ତେଜି ଉଠିଲା – 'କାହିଁକି ମାରି ପାରିବ ନାହିଁ ? ଆଉ ଆଉ ପିଲାଙ୍କୁ ଯଦି ମାରି ପାରିଛି, ଆକୁ ବି ମାରିଦବ । ଅସୁବିଧା କୋଉଠି ?'

ଅରିନ୍ଦମ କହିଲା, 'ଅନିକେତ, କଥା ତା ନୁହେଁ । କଂସ ଏ ପିଲାଟାକୁ ସହଜରେ ମାରି ଦେଇ ପାରିବ, ଓ ମାରିଦବା ଖୁବ୍ ସମ୍ଭବ । ଶୂନ୍ୟବାଣୀ କଥାଟାହିଁ ଯଦି ସତ ହୁଏ, ଦେବକୀର ଅନ୍ୟାନ୍ୟ ପିଲାମାନେ କଂସର ଶତ୍ରୁ ନୁହନ୍ତି । ଏଇ ପିଲାଟାହିଁ ଶତ୍ରୁ । ସେ ସେମାନଙ୍କୁ ଅଯଥା ମାଇଲା । ଆମେ ଯେମିତି ଖବର ପାଇଲେ ସେ ନିଶ୍ଚୟ ଖବର ପାଇ ସାରିବଣି – ଆଜି ଦେବକୀର ପିଲା ହେବ, ଅଷ୍ଟମ ଗର୍ଭ । ସେ କଅଣ ଚୁପଚାପ ଘରେ ଶୋଇବ ? ନିଶ୍ଚୟ କିଛି କରିବ ?'

'ମୁଁ ସେଇକଥା ହିଁ କହୁଛି,' ଅନିକେତ କହିଲା, 'ଅନ୍ୟ ପିଲା ଯେମିତି ଏ


Digitized by srujanika@gmail.com

ସେମିତି । ମାରିବାରେ ଅସୁବିଧା କଅଣ ? ପୁଣି କଂସ ପାଇଁ...' ଅନିକେତ ହସିଲା, 'ତେବେ ଆମ ବଂଧୁ ଅୟସ୍କାନ୍ତ ଯେ କହୁଛନ୍ତି - ମାରି ପାରିବ ନାହିଁ, ତା ମାନେ କଅଣ ? କଂସ ନିଶ୍ଚୟ ନାହିରେ ତେଲ ଦେଇ ଶୋଇବନି....'

ଅରିନ୍ଦମ ପୁଣି କହିଲା, 'ଅନିକେତ, ଅୟସ୍କାନ୍ତ ଯାହା କହିଲା ଯୁକ୍ତିର କଥା ନୁହେଁ, ବିଶ୍ୱାସର କଥା । ଶୂନ୍ୟବାଣୀକି ଯଦି ବିଶ୍ୱାସ ନ କରିବ, ତେବେ ଶୂନ୍ୟବାଣୀରେ ଯାହା କୁହାଗଲା ତାକୁ ବି ବିଶ୍ୱାସ କରିବା ଦରକାର ନାହିଁ' ।

'ଠିକ୍, ଠିକ୍, ମୁଁ ସେଇଆ କହୁଛି', କହିଲା ଅନିକେତ, 'ଏ କୋଉଠିକା ଶୂନ୍ୟବାଣୀ, କି ପ୍ରକାର ଶୂନ୍ୟବାଣୀ ? କିଏ କହିଲା, କିଛି ଠିକଣା ନାହିଁ । ଶୁଣୁ ଶୁଣୁ ଦିଟା ଲୋକଙ୍କୁ ବିନା କାରଣରେ କଂସ ବନ୍ଦୀ କରି ପକେଇଲା । ତା ପରେ ପରେ ଟିକି ପିଲାଗୁଡ଼ାଙ୍କୁ ମାରି ପକେଇଲା । ଆଉ ଆମେ ସବୁ ଏମିତି ଯେ ଆମେ ଏତେ ବର୍ଷ ଧରି ଧରିନେଇଛୁ ଯେ ଦେବକୀର ଅଷ୍ଟମ ଗର୍ଭରେ ଭଗବାନ ଜନ୍ମ ହେବେ, କଂସକୁ ମାରିବେ, ଆଉ ଆମ ସମସ୍ତଙ୍କୁ ଉଦ୍ଧାର କରିବେ ।' ସେ ପୁଣି ହୋ ହୋ ହୋଇ ହସିଲା । ସେଠି ବସିଥିବା ଲୋକଙ୍କ ଭିତରୁ ବି ଆଉ କେତେକ ହସିଲେ ଓ ତାଳି ମାରିଲେ ।

ଜଣେ କହିଲେ, 'ଅତି ସହଜରେ ତ ତ୍ରାଣକର୍ତ୍ତା ଆସୁଛନ୍ତି ଅନିକେତ, ବେଶ୍ ହିସାବ କରି, ସେ ଖୁବ୍ ସାବଧାନ ଲୋକ ତ !'

ଅନିକେତ ଗମ୍ଭୀର ହୋଇଗଲା । କହିଲା, 'ଅରିନ୍ଦମ, ମୋତେ ଭୁଲ ବୁଝନା । ଅଷ୍ଟମ ଗର୍ଭ ତତ୍ତ୍ୱରେ ମୋର ଯାହା ମତ ଏଠି ଯେତେ ବସିଛନ୍ତି ସମସ୍ତେ ଯେ ସେଇଆ ଭାବୁଛନ୍ତି ତା ନୁହେଁ । କିନ୍ତୁ ମୋର ମତ ସ୍ପଷ୍ଟ । ଏ ଅଷ୍ଟମ ଗର୍ଭ କଥା ଓ ତା ସହିତ ମିଶେଇ ଆଉ ଯେତେ କଥା କୁହାଯାଉଛି ସେସବୁ ଖାଲି ବକବାକ । ସେ ସବୁକଥାର ମୂଳ କିଛି ନାହିଁ । କଂସ ଯେ କାହିଁକି ସେ ସବୁକୁ ଏପରି ଭାବରେ ପ୍ରଚାର କଲା, ତାର କାରଣ ସେହି ହିଁ ଜାଣିଥିବ । ଅନ୍ତତଃ ମୁଁ କିଛି ସଙ୍ଗତ କାରଣ ଦେଖୁନି । ଦେବକୀର ପିଲା ହବା ତ ହବାକଥା । ପିଲା ତ ହେଲା, ଦିଇଟା ହେଉ କି ପାଞ୍ଚଟା ହେଉ । ସେଥିରେ ଗୋଟିଏ ନିର୍ଦ୍ଦିଷ୍ଟ ଗର୍ଭକୁ ଗୁରୁତ୍ୱ ଦେବାର ମାନେ ମୁଁ ବୁଝୁନି । ତା ସାଙ୍ଗରେ କୁହାଗଲା ସେଇ ପିଲାଟା କଂସକୁ ମାରିଦବ । କିଏ ଜାଣିଲା, କେମିତି ଜାଣିଲା, ଏ ତ ଭବିଷ୍ୟତ କଥା ।'

'ଏ ତ ଦୈବବାଣୀ'.... ବସିଥିବା ଲୋକଙ୍କ ଭିତରୁ କିଏ କହିଲା । 'ହଁ, ହଁ, ଦୈବବାଣୀ ! ମୁଁ ସେହିକଥା କହୁଛି ।' ଅନିକେତ ଛିଗୁଲେଇଲା ପରି କହିଲା, 'ଠିକ୍ ସେତିକି ବେଳେ ଦୈବବାଣୀଟା ହବାର ଥିଲା । ହଉ ହେଲା ହେଲା । ଏ ତ

ଗୋଟାଏ ପାଖ, କଂସର ପ୍ରଚାର । ଆର ପାଖରେ ଆମେ ମଥୁରାର ଲୋକମାନେ କଅଣ କଲୁ ? ଆମେ ସାଙ୍ଗେ ସାଙ୍ଗେ ପ୍ରଚାର କରିଦେଲୁ ଦେବକୀର ଅଷ୍ଟମ ଗର୍ଭରେ ଯେ ଆସୁଛନ୍ତି ସେ ଆମ ସମସ୍ତଙ୍କୁ ଉଦ୍ଧାର କରିବେ - ତ୍ରାଣକର୍ତ୍ତା !'

ଅନିକେତ ଅରିନ୍ଦମ ଆଡ଼କୁ ବୁଲି ପଡିଲା, କହିଲା, 'ଅରିନ୍ଦମ, ତୁମେ କୁହ, ମୁଁ ଠିକ୍ କହୁଛି ନାଁ ଭୁଲ୍ କହୁଛି ।'

ଅରିନ୍ଦମ କହିଲା, 'ନାଁ, ଠିକ୍ ।'

ଅନିକେତ କହିଲା, 'ମୁଁ ଗୋଟାଏ କଥା ବୁଝି ପାରୁନାହିଁ । ଏ ତ୍ରାଣକର୍ତ୍ତା ତତ୍ତ୍ୱଟା ଆସିଲା କୋଉଠୁ ? ନିଶ୍ଚୟ ତ୍ରାଣକର୍ତ୍ତା ନିଜେ ଏ କଥା ପ୍ରଚାର କରି ନାହାନ୍ତି । ଅନ୍ୟ କେହି ଅତ୍ୟନ୍ତ ବୁଦ୍ଧିମାନ ଲୋକେ ଏ କଥା ଚଲେଇ ଦେଇଛନ୍ତି । କିନ୍ତୁ କାହିଁକି ? କି ଲାଭ ? ଅରିନ୍ଦମ, କଅଣ ଭାବୁଛ ? ପୃଥିବୀରେ ଏପରି ଭାବରେ ତ୍ରାଣକର୍ତ୍ତା ଆସିବା ସମ୍ଭବ କି ? ଆସିଛନ୍ତି କି ?'

'ଆସିଛନ୍ତି କି ନାହିଁ ମୁଁ ଜାଣେ ନା । ଆସିବା ସମ୍ଭବ କି ନୁହେଁ ମୁଁ କହି ପାରିବି ନାହିଁ ।' କହିଲା ଅରିନ୍ଦମ, 'ତେବେ ଗୋଟାଏ କଥା ଅନିକେତ, ଯାହା ମୁଁ ଆଗରୁ କହିଥିଲି, ଏ ଏପରି ଗୋଟାଏ ବିଷୟ ଯାହା ବିଷୟରେ ଆମେ ଆଲୋଚନା କରି ବା ଯୁକ୍ତିତର୍କ କରି କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିବା ନାହିଁ । ଏ ବିଷୟରେ ମୁଁ ଭାବେ ପ୍ରତ୍ୟେକ ଲୋକକୁ ତାର ବିଶ୍ୱାସ ଓ ଅନୁଭବ ଉପରେ ଛାଡି ଦେବା ଉଚିତ । ମୁଁ ବି ଜଣକ କଥା କହିବି । ଜଣେ ମୋ ବାପା, ତୁମେ ଜାଣ । ସେ କ୍ୱଚିତ ବାହାରକୁ ଯାଆନ୍ତି । ଅଧିକାଂଶ ସମୟ ନିଜର ପୂଜା କର୍ମାଦିରେ ବ୍ୟସ୍ତ ଥାଆନ୍ତି । କିନ୍ତୁ ସେ ଯାହା ବିଶ୍ୱାସ କରନ୍ତି ସେଥିରେ ହଳଚଳ ନାହିଁ, ଅଟଳ । ସେହିପରି ଆଉ ଜଣେ, ବ୍ୟାସଦେବ । ଆରେ ବାବା ! ତାଙ୍କର ବିଶ୍ୱାସ ଆଗରେ ତୁମେ କଥା କହି ପାରିବ ନାହିଁ । ତାଙ୍କର ବିଶ୍ୱାସ ବିଶ୍ୱାସ ନୁହେଁ, ସିଦ୍ଧାନ୍ତ । ମନେହେବ ତାଙ୍କର କଥାରେ ଅତୀତ, ବର୍ତ୍ତମାନ, ଭବିଷ୍ୟତ ସବୁ ଖୋଲି ଯାଉଛି ।'

'ସେମାନଙ୍କର ଏ ବିଷୟରେ ମତ କଅଣ ?' ଅନିକେତ ପଚାରିଲା । ଅରିନ୍ଦମ ହସିଲା, କହିଲା, 'ବାପା ଓ ବ୍ୟାସଦେବ ଉଭୟ ଭାବନ୍ତି ଦେବକୀର ଅଷ୍ଟମ ଗର୍ଭରେ ତ୍ରାଣକର୍ତ୍ତା ଆସିବେ ।'

ଅନିକେତ ଚୁପ ରହିଲା, କିଛି ସମୟ ପରେ କହିଲା, 'ବ୍ୟାସଦେବ ଓ ବାପାଙ୍କର ମତ ଉପରେ କିଛି କହିବା ମୋର ଧୃଷ୍ଟତା । କିନ୍ତୁ ଅରିନ୍ଦମ, ମୋର ଦୃଢ଼ ବିଶ୍ୱାସ ଏ ତ୍ରାଣକର୍ତ୍ତା ଫ୍ରାଣକର୍ତ୍ତା ବାଜେ କଥା । କେବଳ ପ୍ରଚାର, ଅତୀତରେ ଏପରି କେବେ ଘଟିନାହିଁ କି ଭବିଷ୍ୟତରେ ହେବ ନାହିଁ ।'


Digitized by srujanika@gmail.com

ଅରିନ୍ଦମ ଅନିକେତ ସାମନାରେ ବସିଥିବା ଦଶ ବାର ଜଣ ଲୋକଙ୍କୁ ଚାହିଁଲା । ଏ କଥା ଠିକ୍ ଅନିକେତର ମତ ସ୍ପଷ୍ଟ । ସେ ତ୍ରାଣକର୍ତ୍ତା ତତ୍ତ୍ୱରେ ବିଶ୍ୱାସ କରେ ନା, ଓ କେବେ କେଉଁଠି ତ୍ରାଣକର୍ତ୍ତା ଆସିଥିଲେ ବା ଭବିଷ୍ୟତରେ ଆସିବେ ଏ ବିଶ୍ୱାସ ତାର ନାହିଁ । କିନ୍ତୁ ଏ ସାମନାରେ ଯେତେ ଲୋକ ବସିଛନ୍ତି ଏ ସମସ୍ତଙ୍କର କଅଣ ସେହି ଏକା ମତ । ତାର ମନେ ହେଲା ବୋଧହୁଏ ବିଶ୍ୱାସ କରିବାଟା ଏତେ ସହଜ ନୁହେଁ, ଓ ଏହି ନିର୍ଦ୍ଦିଷ୍ଟ ଘଟଣାରେ ଅବିଶ୍ୱାସଟାହିଁ ସହଜ । ସେ ଅନିକେତକୁ କହିଲା, 'କିନ୍ତୁ ଅନିକେତ, ଆଜି ରାତିରେ ଦେବକୀର ପିଲା ହେବ, ଏଇଟା ତ ଠିକ୍ ?' 'ହଁ, ଠିକ୍', ଅନିକେତ କହିଲା, 'କିନ୍ତୁ ସେ ଯେଉଁ ପିଲାଟା ଜନ୍ମ ହେବ, ତା'ର ଭାଗ୍ୟରେ ଯାହା ଥାଉ, ସେ ଯେ ଜଣେ ତ୍ରାଣକର୍ତ୍ତା ହେବ ଏ ଗୋଟାଏ ଟାଣି ଘୋଷାରି ବିଶ୍ୱାସ କରିବା କଥା ହେଲା । ଆଚ୍ଛା ଅରିନ୍ଦମ, ତୁମେ ବିଶ୍ୱାସ କର କି ?' ଅରିନ୍ଦମ ଟିକେ ଚୁପ କରିଗଲା । ତା'ପର କହିଲା, 'ହଁ, କିଛି କିଛି...' । 'ତା' ସମ୍ଭବ', ଅନିକେତ କହିଲା, 'ତୁମ ବାପାଙ୍କର ପ୍ରଭାବ ତୁମ ଉପରେ ଅଛି । କିନ୍ତୁ ଭାଇ, ମୋର ଆଦୌ ବିଶ୍ୱାସ ନାହିଁ । ଏଠି ଆମର ଯେତେ ବଂଧୁ ବସିଛନ୍ତି କାହାର ବିଶ୍ୱାସ ନାହିଁ । ଏଠି ତୁମେ ଆସିବା ଆଗରୁ ଆମେ ସେହି କଥା ଆଲୋଚନା କରୁଥିଲୁ । ଆମର ଯେତେ ଦୁଃଖ କଷ୍ଟ, କଂସର ଯେତେ ଅତ୍ୟାଚାର, ସେସବୁ ଜଣେ ତ୍ରାଣକର୍ତ୍ତା ଆସି ସମାଧାନ କରିଦେବ, ବା ଭଗବାନ ତ୍ରାଣକର୍ତ୍ତା ଭାବରେ ଆସି ମୀମାଂସା କରିଦେବେ, ଏଇଟା ଭାବିଲା ବେଳକୁ କେମିତି କେମିତି ଲାଗୁଛି । ମୋ ବିଦ୍ୟାବୁଦ୍ଧିରେ ମୁଁ ଗ୍ରହଣ କରି ପାରୁନି ।'

ଅରିନ୍ଦମ ଓ ଦେବପ୍ରିୟ ଉଠି ଛିଡ଼ା ହେଲେ । ସକାଳ ଆଗେଇ ଗଲାଣି । ଅରିନ୍ଦମ କହିଲା, 'ଅନିକେତ, ତୁମେମାନେ ସବୁ ବସ । ଆମର ଆଉ କେତେ ଆଡ଼କୁ ଯିବାର ଅଛି, ଆମେ ଯାଉ । ଆଜି ରାତିରେ କଅଣ ଘଟୁଛି ଘଟୁ । କାଲି ଦେଖା ହେଲେ ଏ ବିଷୟରେ ପୁଣି ଆଲୋଚନା କରିବା ।' ସେମାନେ ଅନିକେତର ବାରନ୍ଦା ଉପରୁ ତଳକୁ ଓହ୍ଲେଇ ଆସିଲେ । ଭାବିଲେ କୁଆଡ଼େ ଯିବେ । ଦେବପ୍ରିୟ କହିଲା, 'ଚାଲ୍, ଅଂଶୁମାନ ପାଖକୁ ଯିବା ।' ଅରିନ୍ଦମ ଟିକିଏ ଭାବିଲା, କହିଲା, 'ତା ଘର ଦ୍ୱିତୀୟ ମହଲାରେ । ସେ ବି ଅନିକେତ ପରି । ତା ଘରେ ସବୁବେଳେ କିଛି କିଛି ଲୋକ ଆସି ପହଞ୍ଚନ୍ତି ।'

'କିନ୍ତୁ ସେ ଅନିକେତ ପରି ଏତେ ଅବିଶ୍ୱାସୀ ନୁହେଁ,' କହିଲା ଦେବପ୍ରିୟ ।

'ଅନିକେତକୁ ଦୋଷ ଦେଇ ହେବନି', କହିଲା ଅରିନ୍ଦମ, 'ତା ମତ ସ୍ପଷ୍ଟ । ସେ ବିଶ୍ୱାସ କରେ ନା । ତାକୁ ବୁଝିବାରେ ଭୁଲ ହେବନି । କିନ୍ତୁ ଅଂଶୁମାନକୁ

ବୁଝିବାରେ ମୁସ୍କିଲ । ତାର କୌଣସି ବିଷୟରେ କିଛି ନିର୍ଦ୍ଦିଷ୍ଟ ମତ ନାହିଁ । ସେ କୌଣସି ବିଷୟକୁ କିଛି ଗୁରୁତ୍ୱ ଦିଏନା । ସବୁ ଉପର ଠାଉରିଆ, ସବୁ ବିଷୟରେ ସନ୍ଦେହ, ସବୁ ବିଷୟରେ ହେୟ ଜ୍ଞାନ ।'

'ତା ହେଲେ ତା ପାଖକୁ ଯିବା କାହିଁକି ?' କହିଲା ଦେବପ୍ରିୟ, 'ଆଉ କୋଉଠିକି ଯିବା ।'

'ନାଁ, ତା ପାଖକୁ ଯିବା ।' କହିଲା ଅରିନ୍ଦମ, 'ସେ ଯେପରି ଭାବରେ କଥା କହୁ, ମଣିଷଟା ଭଲ, ସିଧାସିଧା, ଆଉ ସେ କଂସର ବିରୋଧୀ, ତା ପାଖରୁ ଖବର ବି ମିଳିବ ।'

ଉଭୟ ବଂଧୁ ମଥୁରାର ଗଳି ରାସ୍ତା ଭିତରେ ପଶି ଅଂଶୁମାନ ଘର ଆଡକୁ ଚାଲିଲେ । ବେଶୀ ବାଟ ଯିବାକୁ ହେଲା ନି । କିଛି ବାଟ ଯିବା ପରେ ରାସ୍ତା ପ୍ରଶସ୍ତ ହୋଇଗଲା, ଗହଳି ବି ବଢିଗଲା – ଅଂଶୁମାନ ଘର ।

ଅଂଶୁମାନର ଘର ଅନିକେତର ଘରଠାରୁ ବିଶେଷ ପ୍ରଭେଦ ନୁହେଁ । ପ୍ରଶସ୍ତ ଘର, ପ୍ରଶସ୍ତ ବାରନ୍ଦା । ତାର ବାପା ବି ଅନିକେତର ବାପାଙ୍କ ପରି ରାଜ ଦରବାରରେ ଉଚ୍ଚପଦର କର୍ମଚାରୀ, ଓ ସାଧାରଣ ଭାବରେ ଉଭୟ କଂସର ବିଶ୍ୱସ୍ତ ଲୋକ । ଅରିନ୍ଦମର ମନେ ଅଛି କଂସ ଜରାସନ୍ଧ ଘରୁ ବିଭା ହୋଇ ଫେରିଲା ପରେ ଯେଉଁ କେତେକ ଯାଦବ-ମୁଖ୍ୟମାନେ ବେଶ୍ ଖୋଲାଖୋଲି ପ୍ରତିବାଦ କରିଥିଲେ, ବିଭାଘରକୁ ନାପସନ୍ଦ କରି ଉଗ୍ରସେନଙ୍କୁ ଯାଇଁ କହିଥିଲେ ଏ ଦିହେଁ ସେମାନଙ୍କ ଭିତରେ ଥିଲେ । ପରେ କଂସ ଉଗ୍ରସେନଙ୍କୁ ବାହାର କରି ନିଜେ ରାଜା ହେଲା ବେଳେ ମଧ୍ୟ ଏମାନେ ସରବ ପ୍ରତିବାଦ କରିଥିଲେ । ଅରିନ୍ଦମ ସେତେବେଳେ ଭାବିଥିଲା କଂସ ହୁଏତ ଏମାନଙ୍କର କିଛି କ୍ଷତି କରିପାରେ । ନାଁ କଂସ କିଛି କ୍ଷତି କଲା ନାହିଁ, ଓ ଆଶ୍ଚର୍ଯ୍ୟ କଥା, ଏମାନେ ପରେ କଂସର ବିଶ୍ୱସ୍ତ ହୋଇ ରାଜ ଦରବାରରେ ବେଶ୍ ଉଚ୍ଚ ଆସନ ପାଇପାରି ଥିଲେ । ତେବେ ଅନିକେତ ବା ଅଂଶୁମାନ ଯେ ସେମାନଙ୍କର ବାପାମାନଙ୍କ ପରି ଠିକ୍ ତା ନୁହେଁ । ବାପାମାନେ କଂସର ବିଶ୍ୱସ୍ତ କର୍ମଚାରୀ ହେଲେ ବି ଏମାନେ ଯେ କଂସର ସବୁ କାମକୁ ପସନ୍ଦ କରୁଥିଲେ ତା ନୁହେଁ । ଏମାନେ ଯୁକ୍ତିପ୍ରିୟ, ବାପାମାନଙ୍କ ସାଙ୍ଗରେ ଏମାନେ ଯୁକ୍ତିତର୍କ କରିବା ଅରିନ୍ଦମ ଦେଖିଛି, ନିଜର ମତାମତ ପ୍ରତି ସେମାନଙ୍କର ଯଥେଷ୍ଟ ସମ୍ମାନ । ସେଇକଥା ଅରିନ୍ଦମ ଦେବପ୍ରିୟକୁ କହିଲା – 'ଦେବପ୍ରିୟ, ତୁ ତ ଅନିକେତକୁ ଦେଖିଲୁ । ସେ ସବୁଦିନେ ସେମିତି । ଅଂଶୁମାନ ବି ସେଇଆ । ତେବେ ଉଭୟଙ୍କୁ ଯାହା ମୁଁ କହୁଥିଲି, ଅନେକ ଲୋକ ମାନନ୍ତି । ଅନିକେତ ତ ସ୍ପଷ୍ଟ କହିଲା


Digitized by srujanika@gmail.com

ଶୂନ୍ୟବାଣୀର ଘୋଷଣା ଅର୍ଥହୀନ, ଦେବକୀର ଅଷ୍ଟମ ଗର୍ଭରେ ଗୋଟାଏ କିଛି ହେବ ଏ ବିଶ୍ୱାସ ତାର ନାହିଁ । ଅଂଶୁମାନର ମତାମତ ସାମାନ୍ୟ ଅଲଗା । ହୁଏତ ଦେବକୀର ଅଷ୍ଟମ ଗର୍ଭରେ ତ୍ରାଣକର୍ତ୍ତା ଆସିପାରେ ଏକଥା ମାନିବାକୁ ତାର ଆପତ୍ତି ନାହିଁ । କିନ୍ତୁ ଏ ତ୍ରାଣକର୍ତ୍ତା ବିଷୟରେ ସେ ସଂପୂର୍ଣ୍ଣ ନିଃସ୍ପୃହ । ତାର ବିଶ୍ୱାସ ସେ ଯାହା ହେଉ ଏହା ଦ୍ୱାରା କିଛି ହେବ ନାହିଁ । ସେଥିପାଇଁ ହଇହଲ୍ଲା ଦରକାର ନାହିଁ। କଅଣଟା ହେଇଯିବ ? ଏଟା ଖାଲି ପ୍ରଚାର । କିଛି ହେବ ନାହିଁ ।'

ସେମାନେ ଅଂଶୁମାନର ଘର ପାଖକୁ ଆସି ଯାଇଥିଲେ । ଅନିକେତର ବାରନ୍ଦା ପରି ଅଂଶୁମାନର ବାରନ୍ଦାରେ ବି ଗୋଟିଏ ଛୋଟକାଟର ସଭା । ଅଳ୍ପ କିଛି ଲୋକ ଜାକିଜୁକି ହୋଇ ବସିଛନ୍ତି, ଆଉ ଗୋଟାଏ କେଉଁ ବିଷୟରେ ବେଶ୍ ଉତ୍ତେଜିତ ଆଲୋଚନା ଚାଲିଛି । ସେମାନେ ପାଖ ହେଲାରୁ ଆଲୋଚନାର ଖଣ୍ଡ ଖଣ୍ଡ ଅଂଶ ଅରିନ୍ଦମର କାନରେ ବାଜିଲା । ମନେ ହେଉଛି ଦେବକୀର ସେଇ ଅଷ୍ଟମ ଗର୍ଭ ବିଷୟରେ ଆଲୋଚନା । ଉଭୟ ଅଂଶୁମାନର ଘର ବାରନ୍ଦା ଉପରକୁ ଉଠିଗଲେ ।

ଅରିନ୍ଦମ ଓ ଦେବପ୍ରିୟକୁ ଦେଖି ଅଂଶୁମାନ ଖୁସି ହେଲା । କହିଲା, 'ଆସ, ଆସ, ବସ, ଆମ ସାଙ୍ଗରେ ଯୋଗ ଦିଅ । ଆଜି ଗୋଟାଏ ବଡ଼ ଦିନ । ଏହି ଦିନକୁ ତ ମଥୁରାଯାକ ସମସ୍ତେ ଅପେକ୍ଷା କରି ରହିଛନ୍ତି । କଅଣ କହୁଛ ଅରିନ୍ଦମ ?' ଅରିନ୍ଦମ ହସିଲା । କହିଲା, 'କୋଉ କଥା କହୁଛ? ଏଇ ଦେବକୀଙ୍କର ଅଷ୍ଟମ ଗର୍ଭ କଥା ତ ?'

'ଆଉ କୋଉ କଥା ଆଜି ?' କହିଲା, ଅଂଶୁମାନ, 'ମତେ ତ ଆଶ୍ଚର୍ଯ୍ୟ ଲାଗୁଛି ଏଇ ଛକ କାଟିଲା ପରି କେମିତି ଅଷ୍ଟମ ଗର୍ଭ ଆସି ପହଞ୍ଚିଗଲା । ଏଇତ କାଲି ପରି ଲାଗୁଛି, ମନେ ନାହିଁ ତୁମର ? ଦେବକୀ ବସୁଦେବ ବିଭାଘର, ଶୂନ୍ୟବାଣୀ, ଆଉ ଯେତେ ଯେତେ ବ୍ୟାପାର । ସତେ, ଦେଖୁ ଦେଖୁ ଆଠ ନଅବର୍ଷ ଚାଲିଗଲାଣି । ଆଶ୍ଚର୍ଯ୍ୟ !'

'ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?' କହିଲା ଅରିନ୍ଦମ, 'ସମୟ ତ ସେମିତି ଯାଏ । ଆଶ୍ଚର୍ଯ୍ୟ କଥା ଏଇ ଯା କହିଲ, ଛକ କାଟିଲା ପରି କଥା । ଠିକ୍ ବର୍ଷକୁ ବର୍ଷ ପିଲା, ଆଠ ବର୍ଷ ପରେ ଅଷ୍ଟମ ଗର୍ଭ, ହିସାବ କଲାପରି, ଧୂଳି ମଳି ନାହିଁ । କିଏ ଯେମିତି ଆଗରୁ ବନ୍ଦୋବସ୍ତ କରି ରଖିଛି, ଆଉ ସେମିତି ଘଟୁଛି ।'

ଅଂଶୁମାନ ଟିକେ ଭାବିଲା, କହିଲା, 'ହଁ, ବାହାରୁ ଦେଖିଲେ ସେଇଆ ତ ମନେହେବ । ହିସାବ କରି ଯେମିତି, ପାଦକୁ ପାଦ । କିନ୍ତୁ ଆର କଥାଟା ?'

'ଆର କଥା ?' ଅରିନ୍ଦମ ପଚାରିଲା ।


Digitized by srujanika@gmail.com

'ଏଇ ବର୍ଷକୁ ବର୍ଷ ପିଲାଗୁଡ଼ାଙ୍କୁ ମାରି ପକେଇବା? ଏ ବି କଅଣ ହିସାବ ଭିତରେ ଆସିବ?' କହିଲା ଅଂଶୁମାନ ।

'କାହିଁକି ନୁହେଁ?' କହିଲା ଅରିନ୍ଦମ, 'ଦେବକୀ ବସୁଦେବ ବିଭାଘର, ଶୂନ୍ୟବାଣୀ, ତା'ପରେ ଯାହା ଯାହା ଘଟିଲା ଏସବୁ ଯଦି ହିସାବ ଭିତରକୁ ଆସିବ, ପିଲାଙ୍କୁ ମାରି ପକେଇବା ବି ହିସାବର କଥା, ଏ ଆଗରୁ ବନ୍ଦୋବସ୍ତ ହୋଇଛି ।'

'ଆଗରୁ ବନ୍ଦୋବସ୍ତ?' କହିଲା ଅଂଶୁମାନ, 'କାହାର ? କଂସର ?'

'ନାଁ, ନାଁ, କଂସ ନୁହେଁ?', କହିଲା ଅରିନ୍ଦମ, ଓ ଉପରକୁ ହାତ ଦେଖେଇଲା, 'କଂସ ଠାରୁ ବଡ଼ ଶକ୍ତି ।'

ଅଂଶୁମାନ ହୋ ହୋ ହୋଇ ହସିଲା । କହିଲା, 'ହେ...ହେ.. ମୁଁ ଜାଣେ ଅରିନ୍ଦମ, ତୁମେ ଏ କଥା କହିବ । ତୁମ ବାପା ଏକଥା କହିଲେ ତାଙ୍କୁ ଏ କଥା ମାନିବ । ତୁମକୁ ନୁହେଁ । କି ହୋ, ଉପର କଅଣ ? ଉପର ଗୋଟା କିଛି ଅଛି କି ? ଦେବକୀ ବସୁଦେବଙ୍କର ବିଭାଘର ହେଲା, ଠିକ୍ । ସେମାନଙ୍କର ବର୍ଷକୁ ବର୍ଷ ପିଲା ହେଲା, ଠିକ୍ । ସେ ପିଲା ଗୁଡ଼ାଙ୍କୁ ଯେ କଂସ ମାରି ପକେଇଲା ସେ'ଟା କଂସର ବଦମାସି । ଆଠ ବର୍ଷ ପରେ ଅଷ୍ଟମ ଗର୍ଭ ହେଲା ଓ ପିଲା ହବ । ସେ ବି ଠିକ୍ । କଂସ ଏ ପିଲାଟାକୁ କଅଣ କରିବ ସେ ଆଉ ଗୋଟାଏ କଥା । କିନ୍ତୁ ଏ ପିଲାଟା ଭଗବାନଙ୍କ ଅବତାର, ମଥୁରାର ତ୍ରାଣକର୍ତ୍ତା, ଏ ସବୁ କଥା ଯେ ପ୍ରଚାର ହେଉଛି ସେଟା ଭୁଲ୍ । ଆଗ ସାତଟା ପିଲା ଯଦି ଭଗବାନଙ୍କ ଅବତାର ନୁହନ୍ତି, ଏ ବି କାହାର ଅବତାର ନୁହେଁ, ଏ ପିଲାଟା ପିଲା। ମଥୁରାରେ ଯେମିତି ଶହ ଶହ ପିଲା ଜନ୍ମ ହେଉଛନ୍ତି ଏ ସେମିତି ଆଉ ଗୋଟାଏ ପିଲା, ଜନ୍ମ ହେବ। ମୋର ତ ଧାରଣା କଂସ ଆଗ ପରି ଏଟାକୁ ବି ଶେଷ କରିଦବ । ସେ ଯାହା ହେଉ, ଏ ପିଲାଟା ଆଉ ଗୋଟାଏ କଅଣ ହୋଇଯିବ ଭାବିବା ବେଠିକଣା କଥା । କିଛି ହବନି । ଆମର ଏ ବିଷୟରେ ଆଲୋଚନା କରିବା ବି ମୂଲ୍ୟହୀନ ।'

'ଆଲୋଚନା ସିନା ମୂଲ୍ୟହୀନ, ବିଶ୍ୱାସ ?' କହିଲା ଅରିନ୍ଦମ ।

'ବିଶ୍ୱାସ? ବିଶ୍ୱାସ କୋଉଠି ପାଇଁ?' ପଚାରିଲା ଅଂଶୁମାନ ।

'ବିଶ୍ୱାସ ଦି ପ୍ରକାର ହୋଇପାରେ । ପ୍ରଥମ କଥା ଯିଏ ଜନ୍ମହେବ ସେ ତ୍ରାଣକର୍ତ୍ତା । ଦ୍ୱିତୀୟ କଥା ଯିଏ ଜନ୍ମ ହେବ ସେ ତ୍ରାଣକର୍ତ୍ତା ପରି କାର୍ଯ୍ୟ କରିବ । ଆମ ସମସ୍ତଙ୍କୁ ଏ କଂସ ହାତରୁ ରକ୍ଷା କରି ପାରିବ ।' କହିଲ ଅରିନ୍ଦମ।

ଅଂଶୁମାନ କିଛି ସମୟ ଭାବିଲା । ତା ସାମନାରେ ବସିଥିବା ବଂଧୁମାନଙ୍କୁ ଚାହିଁଲା । ପଚାରିଲା – 'ତୁମେମାନେ କଅଣ କହୁଛ ?ଏ ତ ଆଚ୍ଛା ଗୋଳମାଳିଆ


Digitized by srujanika@gmail.com

ଅବସ୍ଥା ।' କେହି କିଛି କହିଲେ ନି । କିନ୍ତୁ ଅରିନ୍ଦମର ମନେ ହେଲା, ବସିଥିବା ବନ୍ଧୁମାନେ କେବଳ ଭଦ୍ରତା ଖାତିରରେ କିଛି କହୁ ନାହାନ୍ତି । ସେମାନେ ତା'ର ଓ ଅଂଶୁମାନର ମତାମତ ଶୁଣିବାକୁ ବେଶି ଆଗ୍ରହୀ ।

ସେ କହିଲା, 'ଅଂଶୁମାନ, ତୁମେ କଅଣ ସତରେ ଏ ଗୋଟାଏ ଗୋଳମାଳିଆ ଅବସ୍ଥା ବୋଲି ଭାବୁଛ ?'

'ନାଁ, ଠିକ୍ ତା ନୁହେଁ । ଗୋଳମାଳିଆ ନ ହେଉ । କିନ୍ତୁ ନିଶ୍ଚୟ ଦିଇଟା ଅବସ୍ଥା' କହିଲା ଅଂଶୁମାନ, 'ପ୍ରଥମ କଥା ଆଜି ଦେବକୀର ଯେଉଁ ଅଷ୍ଟମ ଗର୍ଭ ପିଲାଟା ଜନ୍ମ ହେବ ସେ ତ୍ରାଣକର୍ତ୍ତା କି ନୁହେଁ ? କଥା ହେଲା ସେ କଅଣ ତ୍ରାଣ କରିବ ? କାହାକୁ ତ୍ରାଣ କରିବ ? କେମିତି ତ୍ରାଣ କରିବ ? ଏ ସବୁ ପ୍ରଶ୍ନର ସିଧା ଉତ୍ତର ନାହିଁ । ଆମେ ଖାଲି ଭାବୁଛେ ବା ଆମକୁ କୁହାଯାଉଛି । ତେବେ ଏ ବିଷୟରେ ମୋର କିଛି ଆପତ୍ତି ନାହିଁ । ଯେଉଁ ପିଲାଟା ଜନ୍ମ ହେବ ସେ ତ୍ରାଣ କର୍ତ୍ତା - ମୁଁ ମାନିବାକୁ ରାଜି ଅଛି । ଗତ ବର୍ଷ ବର୍ଷ ଧରି, ସେହି ଶୂନ୍ୟବାଣୀ ଦିନଠୁଁ, ସେ କଥା ଶୁଣି ଶୁଣି ଆମ ମନରେ ଲାଖି ଗଲାଣି, ସେ ସହଜେ ଯିବ ନି । ମୁଁ ଜାଣେ ତୁମେ ଏହାକୁ ବିଶ୍ୱାସ କରିବ, କାରଣ ଏ ଯୁକ୍ତିତର୍କର କଥା ନୁହେଁ । ହେଲା । କିନ୍ତୁ ମୁଁ ଭାବୁଛି ଏ ଗୋଟାଏ ଅଭ୍ୟାସର କଥା, ଶୁଣି ଶୁଣି ଏମିତି ଗୋଟାଏ ବିଶ୍ୱାସ ଆମ ଅଭ୍ୟାସରେ ପଡିଯାଇଛି । ଠିକ୍ ଅଛି, ଏ ପିଲାଟା ତ୍ରାଣ କର୍ତ୍ତା । କିନ୍ତୁ ତା ପରେ ? ସେଇଟାହିଁ ଗୋଳମାଳିଆ ଅବସ୍ଥା । ସେ କଅଣ କରିବ ବା କରିପାରିବ ସେଟା ଭବିଷ୍ୟତ । କେହି ସଠିକ କହିପାରିବେ ନାହିଁ, ଅଲଗା ଅଲଗା ଲୋକେ ଅଲଗା ଅଲଗା କଥା କହିବେ । ମୋର ମନେ ହେଉଛି କିଛି ହେବନି । କଅଣ ଗୋଟାଏ ହୋଇଯିବ ଆମର ଏ ଧାରଣାଟା ଭୁଲ । ସେଇ ଯୋଗୁ ମୁଁ ଆଲୋଚନା ଅର୍ଥହୀନ ବୋଲି କହୁଥିଲି ।'

ବସିଥିବା ବନ୍ଧୁମାନଙ୍କ ଭିତରୁ ଜଣେ କହିଲେ, 'ଅଂଶୁମାନ, ତୁମ କଥା ହୁଏତ ଠିକ୍ । ଯୁକ୍ତିତର୍କର କଥା । କିନ୍ତୁ ଅନେକ ସମୟରେ ଆମେ ଅଲୌକିକ କଥା ତ ହବାର ଶୁଣୁ । ଏ କାହିଁକି ସେମିତି ହବନି ?'

'ହଁ, ଅଲୌକିକ କଥା ।' ଅଂଶୁମାନ କହିଲା, 'କିନ୍ତୁ ଅଲୌକିକ କଥା ଉପରେ କଅଣ ଆମେ ବିଚାର କରି ପାରିବା ? ଅଲୌକିକ କଥା ସେମିତି ଅଲୌକିକ ରହିଯାଏ । ଦେବକୀର ଅଷ୍ଟମ ଗର୍ଭ ଗୋଟାଏ ଅଲୌକିକ ଜନ୍ମ ହୋଇପାରେ, କିନ୍ତୁ ମୋର ମନେ ହେଉଛି ଆମର କାହାରି ବିଶେଷ ଲାଭ ହେବନି ।'

ଅଂଶୁମାନ ଘରେ ଆଲୋଚନା ଆଉ କିଛି ସମୟ ଚାଲିଲା । ସମସ୍ତେ ଏକମତ


Digitized by srujanika@gmail.com

ହେଲେ ଯେ ଦେବକୀର ଅଷ୍ଟମ ଗର୍ଭ ପିଲାଟାର ହୁଏତ କିଛି ବିଶେଷତ୍ୱ ଅଛି ବା ହବ । କିନ୍ତୁ ପ୍ରଥମ କଥା ସେ କଂସ ହାତରୁ ବଂଚିବା ଦରକାର । କଂସ ଠିକ୍ ଖବର ପାଇବ । ସେ ଅନ୍ୟ ପିଲାମାନଙ୍କୁ ଯାହା କରିଛି ଯାକୁ ଯେ ନ କରିବ କିଏ କହିବ । ସେ ପିଲାଟାକୁ ଖୁବ୍ ସମ୍ଭବ ଶେଷ କରିଦବ । ବଡ଼ କଥା ପିଲାଟା କେମିତି ବଂଚି ରହୁ । ସେ କଅଣ କରି ପାରିବ ନ ପାରିବ ପଛ କଥା । ହୁଏତ କିଛି ନ କରିପାରେ । ସେ କଥା ଆଜିଠୁଁ ଭାବି ଲାଭ ନାହିଁ ।

ଅଂଶୁମାନ ପାଖରୁ ଉଠି ଅରିନ୍ଦମ ଓ ଦେବପ୍ରିୟ ଠିକ୍ କଲେ, ଅନୁଦାର ଘରକୁ ଯିବେ । ଅନୁଦାର ଅନିକେତ ଓ ଅଂଶୁମାନ ପରି ଧନୀ ଘରର ପିଲା ନୁହଁ, ସାଧାରଣ ଗୃହସ୍ଥ ଘରର ପିଲା । ତା ବାପା କଂସର ଜଣେ ସୈନିକ, ଓ କଂସ ସାଙ୍ଗରେ ସେ ଅଧିକାଂଶ ସମୟ ମଥୁରା ବାହାରକୁ ରାଜ୍ୟ ଜୟରେ ଯାଆନ୍ତି । ଅନୁଦାରର ମା ଓ ଦୁଇ ଭାଇ ଭଉଣୀ । ସେ ପ୍ରାୟ ଘରେ ରହେ ଓ ଘର କଥା ବୁଝେ । ଅନିକେତ ଓ ଅଂଶୁମାନ ପରି ସେ ସମାନ ବୁଦ୍ଧିମାନ । କିନ୍ତୁ ବଡ଼ କଥା ଖୁବ୍ ହସ ଖୁସିଆ ମିଜାଜର, ଓ ଅରିନ୍ଦମର ବାପାଙ୍କର ଜଣେ ବଡ଼ ଭକ୍ତ, ଓ ଅରିନ୍ଦମକୁ ବହୁତ ପସନ୍ଦ କରେ ।

ଅନୁଦାରର ଘରେ ପହଞ୍ଚିବାକୁ ବେଶି ସମୟ ଲାଗିଲାନି । ତା'ଘରେ ଅନିକେତ ବା ଅଂଶୁମାନ ଘର ପରି କେହି ସାଙ୍ଗ ସାଥି ନାହାନ୍ତି ବା ଛୋଟକାଟିଆ ସଭା ସମିତି କିଛି ନାହିଁ । ଘର ସାମନା ଶୂନଶାନ, ଘର କବାଟ ଅଧା ମେଲା । ସେମାନେ ଯାଇଁ ଦୁଆର ମୁହଁରେ ଛିଡ଼ା ହେଲେ । ଅନୁଦାରର ମା ବାହାରି ଆସୁଥିଲେ । ଅରିନ୍ଦମ ଓ ଦେବପ୍ରିୟକୁ ଦେଖି ଖୁବ୍ ଖୁସି ହେଲେ, କହିଲେ, 'ଆରେ, ଆରେ, ଆସ, ଆସ, ଏତେ ସକାଳୁ ? ବସ, ଅନୁଦାର ଏଇ ବାହାରକୁ ଯାଇଛି- କ୍ଷୀର ପାଇଁ। ସାଙ୍ଗେ ସାଙ୍ଗେ ଆସିବ ।' ଉଭୟ ବଂଧୁ ବସିଲେ, ଅନୁଦାରର ମା ପୁଣି କହିଲେ, 'ଅରିନ୍ଦମ, ତୁମ ବାପା କେମିତି ଅଛନ୍ତି ?'

'ଭଲ' ଅରିନ୍ଦମ କହିଲା ।

'ତୁମ ବାପାଙ୍କର ତ ସବୁବେଳେ ପୂଜା । ସେ ଭଲ ତ ପୂଜା ଭଲ । ଆମେ ତ ଘରେ ଯେତେବେଳେ ଠାକୁରଙ୍କୁ ପୂଜା କରୁ ତାଙ୍କରି କଥା ହିଁ ଭାବୁ । ପୂଣ୍ୟବାନ ଲୋକ', ସେ ହାତ ଯୋଡି ନମସ୍କାର କଲେ - 'ତାଙ୍କରି ପରି ଲୋକ ଅଛନ୍ତି ବୋଲି ମଥୁରାରେ ଧର୍ମକର୍ମ ଅଛି । ମଥୁରାରେ ଆମେ ସବୁ ବଂଚିକରି ଅଛୁ । ନ ହେଲେ କଂସ ଯା କଲାଣି । ସେ ଜନ୍ମ ହେଲା ବେଳେ ତାକୁ ସମସ୍ତେ ରାକ୍ଷସ ପିଲା ବୋଲି କହୁଥିଲେ । ସେ ବର୍ତ୍ତମାନ ଯାହା ହେଲାଣି ରାକ୍ଷସକୁ ବଳି ଗଲାଣି । ମା ଦୁର୍ଗା ସହାୟ । ମୁଁ ତ ଏ ଟୋକାଟାକୁ କହୁଛି ସାବଧାନ ରହ, ସମୟ ଭଲ ନୁହେଁ । ସେ


Digitized by srujanika@gmail.com

କଅଣ ମୋ କଥା ଶୁଣୁଛି । ତା ବାପ ପରି । କୋଉ କଥାକୁ ଡର ନାହିଁ.... ଆରେ ରୁହ ରୁହ, ତୁମେ ସକାଳୁ ଆସିଛ । ମୁଁ ତମକୁ ଦି ବାଟି ଗରମ କ୍ଷୀର ଦିଏ ।'

'ନାଇଁ, ନାଇଁ, ମାଉସୀ, ଆମେ ଖାଇକରି ଆସିଛୁ । ଥାଉ...' ଅରିନ୍ଦମ ବ୍ୟସ୍ତ ହେଲା ।

'ହଁ, କଅଣ ବା ଆମେ ଦେଇ ପାରିବୁ । ଟିକିଏ କ୍ଷୀର...' ମା ପାଟିକରି ଡାକିଲେ... 'ମନି, ମନି, ଅରିନ୍ଦମ ଭାଇ ହେରିକା ଆସିଛନ୍ତି । ଦି ବାଟି କ୍ଷୀର ଆଣ୍ ।'

'ମାଉସୀ, ଆପଣ ଜାଣିଥିବେ ଆଜି ରାତିକି ବୋଧହୁଏ ଦେବକୀଙ୍କର ପିଲା ଜନ୍ମ ହେବ ।' ଅରିନ୍ଦମ କହିଲା ।

'ହଁ, ଲୋକେ କହୁଛନ୍ତି, ଶୁଣିଛି', ଅନୁଦାରର ମା କହିଲେ, 'କିନ୍ତୁ କଅଣ ହେବ ପୁଅ । ସେ ଚଣ୍ଡାଳ କଅଣ ରଖିଦେବ । ଲୋକେ କହୁଛନ୍ତି ଏ ପୁଅଟା କୁଆଡ଼େ କଂସକୁ ମାରିବ । ସେ କଥା କିଏ କହିବ ? ଛୁଆ ବଂଚିଲେ ତ । ତୁ କହିଲୁ ପୁଅ, ସେ ମାଆଟାର କି ଦୁଃଖ, ଜନ୍ମ ହେବା ସାଙ୍ଗେ ସାଙ୍ଗେ ଗୋଟା ପରେ ଗୋଟା ଛୁଆକୁ ସେ ଚଣ୍ଡାଳ ଛେଚି ଦଉଛି । ମା ଦୁର୍ଗା ମା ଦୁର୍ଗା ।' ମା ପୁଣି ଯୋଡ଼ ହାତରେ ନମସ୍କାର କଲେ ।

'ଦୈବବାଣୀ ହୋଇଥିଲା ମାଉସୀ, ଏ ଛୁଆ ହାତରେ କଂସ ମରିବ', ଅରିନ୍ଦମ କହିଲା ।

'କେଜାଣି ପୁଅ', ମା କହିଲେ, 'ଏ ତ କହୁଥିଲେ କଂସକୁ ମାରିବା ସହଜ ନୁହେଁ । ଅନୁଦାର ସେମିତି । କଂସକୁ କେହି ମାରିବା କଥା ଉଠିଲେ ସେ ହସି ହସି ଉଡେଇ ଦଉଛି । ଯାହାହେବ ।' ସେ ଚୁପ କରିଗଲେ, ଓ ବାହାରକୁ ଅନେଇ କହିଉଠିଲେ 'ଆରେ, ଆରେ, ହେଇତ ଅନୁଦାର ଆସିଲାଣି ।' କହୁ କହୁ ଅନୁଦାର ଦି ହାତରେ ଦିଟା ମୁଣିରେ କ୍ଷୀର ଓ ପରିବାପତ୍ର ଝୁଲେଇ ପାହାଚ ଦେଇ ପିଣ୍ଡା ଉପରକୁ ଉଠି ଆସିଲା ।'

ଅନୁଦାର ଅରିନ୍ଦମ ଓ ଦେବପ୍ରିୟକୁ ଦେଖି ଖୁସି ହୋଇ ପାଟିଟାଏ କଲା, 'ହେ, ହେ, କେତେବେଳୁ ଆସିଲଣି । ଆସ, ଆସ, ଦେଖୁଚ ମୋ ଅବସ୍ଥା । ଏ କଂସ ରାଜତ୍ୱରେ ଏ ସବୁ ନ କଲେ ଖାଇବାକୁ ମିଳିବନି ?' ମା'ଙ୍କୁ ପାଟିକଲା, 'ହେ ମା, ଏ ଦି ଅଭାଗା କଅଣ ସେମିତି ଶୁଖିଲା ଶୁଖିଲା... ?' ମା ଭିତରୁ ପାଟି କଲେ, 'ନାଁ, ନାଁ, କ୍ଷୀର ନଉଚି ।'

ଅରିନ୍ଦମ ପ୍ରଥମେ କହିଲା, 'ଅନୁଦାର, ଦେବକୀ ଖବର ଶୁଣିଛୁ ତ ?'

'ହଁ, ଶୁଣିଛି ।' ଅନୁଦାର କହିଲା, 'ସାରା ମଥୁରାରେ ତ ଯୁଆଡ଼େ ଗଲେ

ସେଇ ଖବର । ମୁଁ ବଜାରକୁ ଯାଇଥିଲି । ସେଠି ସମସ୍ତେ କଥାବାର୍ତ୍ତା କରୁଛନ୍ତି । ରାସ୍ତାରେ ଯାହା ସାଙ୍ଗରେ ଦେଖା ହେଲା ସେଇ କଥା । ତୁ ବି ଶୁଣି ଶୁଣି ଆସୁଥିବୁ ?'

'ହଁ', ଅରିନ୍ଦମ କହିଲା, 'ଆମେ ଏଠିକି ଆସିବା ଆଗରୁ ଅନିକେତ ଆଉ ଅଂଶୁମାନ ଘରକୁ ଯାଇଥିଲୁ । ଉଭୟ ଜାଗାରେ କିଛି କିଛି ସାଙ୍ଗ ଆସି ଜମିଛନ୍ତି, ଆଉ ସେହି କଥା ।'

'ସାରା ମଥୁରାଟା କଅଣ ପାଗଳା ହୋଇଗଲାଣି ଅରିନ୍ଦମ । ମତେ କହିଲୁ ଏ କଥାଟା ଏତେ ବ୍ୟାପିଲା କେମିତି ? ଦେବକୀର ପିଲାଟାଏ ତ ହବ । ଗତ ସାତ ବର୍ଷ ହେଲା ବର୍ଷକୁ ବର୍ଷ ହଉଛନ୍ତି । ଆଉ ଏ ପିଲାଟାଠେଇଁ ଏତେ ଯଖ ମରିଛି କଅଣ ? ଯେମିତି ଯମୁନା ମାଡି ଆସିବ । ପୃଥିବୀ ଉଚ୍ଛନ୍ନ ହୋଇଯିବ ।'

'କଥା ତା ନୁହେଁ ।' କହିଲା ଅରିନ୍ଦମ, 'କଂସ ରାଜତ୍ୱରେ,କଂସର ଅତ୍ୟାଚାରରେ ଲୋକେ ବ୍ୟତିବ୍ୟସ୍ତ ହୋଇ ଉଠିଲେଣି । ସେଇଠୁ କେମିତି ଉଦ୍ଧାର ମିଳିବ ସେଇଟା ହିଁ ବଡ଼ କଥା । ବଢ଼ିରେ କୁଟାଖିଏ ପାଇଲେ ଲୋକ ଯେମିତି ଆଶ୍ରା କରେ ଏ ସେମିତି କଥା । ଗୋଟାଏ ଶୂନ୍ୟବାଣୀ ହୋଇଥିଲା । ପରେ ସେଟା ଗୁଜବ ପରି ବ୍ୟାପୀ ଯାଇଛି । ଲୋକେ ଭାବୁଛନ୍ତି ଦେବକୀର ଅଷ୍ଟମ ଗର୍ଭରେ ଯେଉଁ ପିଲାଟା ଜନ୍ମ ହେବ ସେଇ ବୋଧହୁଏ ଏ କଂସ-ବିପଦରୁ ରକ୍ଷା କରିବ । ଆଜି ସେହି ଦିନଟାତ, ତେଣୁ ଏତେ କଥାବାର୍ତ୍ତା, ଆଲୋଚନା ।'

'ତୋ କଥା ଠିକ୍', କହିଲା ଅନୁଦାର, 'ମୁଁ ମାନୁଛି । ଏ କଂସ-ବିପଦଟା ହିଁ ବଡ଼ ବିପଦ । ସେଇ ବିପଦଟା କେମିତି ଯିବ ସେଟା ସମସ୍ତଙ୍କର ଚିନ୍ତା । ଆମ ଭିତରର ଲୋକ ହୋଇ ସେ ଯେ କେମିତି ଏଡ଼େ ଦୁଷ୍ଟ ପ୍ରକୃତିର ହେଲା ମୁଁ ଭାବି ପାରୁ ନାହିଁ । ବାପା ତା ପାଇଁ ଯୁଦ୍ଧ କରନ୍ତି, ଜୀବନ ପାଣି ପରି କରି ଦେଇଛନ୍ତି, କେତେବେଳେ କଅଣ ହେବ ଠିକଣା ନାହିଁ । କିନ୍ତୁ ତାଙ୍କର କଅଣ ତା ପାଇଁ ସମ୍ମାନ ଅଛି । ଯେତେବେଳେ କହନ୍ତି ତା ବିରୁଦ୍ଧରେ କହନ୍ତି । ଥରେ ମୁଁ ପଚାରିଥିଲି ବାପା ତୁମେ ଏ ବଦମାସ ଲୋକଟା ପାଖରେ କେମିତି କାମ କରୁଛ । ସେ ଖାଲି ହସିଥିଲେ, କହିଥିଲେ ଉପାୟ ନାହିଁ, ତୁମେ ସବୁ ଚଳିବ କେମିତି । ଏ ବୋଧେ କଂସ ପାଖରେ ଯେତେ ମଥୁରାର ଲୋକ ସୈନ୍ୟ କାମ କରୁଛନ୍ତି ସମସ୍ତଙ୍କର ମତ ।'

'ସମସ୍ତେ ହୁଏତ ନୁହନ୍ତି', କହିଲା ଅରିନ୍ଦମ, 'ଅନେକ । ତେବେ କେହି କିଛି କହିବେ ନାହିଁ, ବା କହିବାକୁ ଚାହାଁନ୍ତି ନାହିଁ । ଖାଲି ସୈନ୍ୟସାମନ୍ତ ନୁହନ୍ତି, ସାଧାରଣ ଲୋକ ବି । ସମସ୍ତେ ଜାଣୁଛନ୍ତି କଂସଟା କେଡ଼େ ବଦମାସ । କିନ୍ତୁ ସମସ୍ତେ ଚୁପ ।'

'କାହିଁକି ?' ଅନୁଦାର କହିଲା, 'ମୁଁ ବି ସେ କଥା ଅନେକ ସମୟରେ ଭାବେ । ମଥୁରାର ଲୋକମାନେ କଅଣ ଏତେ ହୀନବଳ ?'

'ହୀନବଳ କି ନାଁ ମୁଁ ଜାଣେନା', କହିଲା ଅରିନ୍ଦମ, 'କିନ୍ତୁ ଗୋଟିଏ କଥା ମୁଁ ଦେଖୁଛି । ସମସ୍ତଙ୍କ ମୁହଁରେ ଯେମିତି ତୁଣ୍ଡି ବନ୍ଧା ହୋଇଛି ।'

'କାରଣ ?' ପଚାରିଲା ଅନୁଦାର ।

'ଭୟ...ପ୍ରଚଣ୍ଡ ଭୟ...' କହିଲା ଅରିନ୍ଦମ ।

'କଂସର ଭୟ ?' କହିଲା ଅନୁଦାର ।

'ହଁ, କଂସର ଭୟ ତ ନିଶ୍ଚୟ', କହିଲା ଅରିନ୍ଦମ, 'କିନ୍ତୁ ଭୟଟା ଏବେ ଖାଲି କଂସ ପାଖରେ ବାନ୍ଧି ହୋଇ ରହିନି, ଏ ସାରା ରାଜ୍ୟକୁ ଗ୍ରାସ କରି ଗଲାଣି । କଂସ ଠାରେ ଆମେ ସେହି ଭୟଟାକୁ ଦେଖୁଛେ ।'

'ମୁଁ ବୁଝିଲି ତୁ କଅଣ କହିବାକୁ ଚାହୁଁଛୁ' କହିଲା ଅନୁଦାର, 'ଯଦି କଂସକୁ ଶେଷ କରି ଦିଆଯାଏ ତା ହେଲେ ଏ ଭୟଟା ବି ଯିବ ।'

ଅରିନ୍ଦମ ହସିଲା । କହିଲା, 'କିଏ ଶେଷ କରିବ ? ତୁ, ମୁଁ, ଆଉ କିଏ ? ସେଇ କଥା ତ ପଡିଛି । ଦେବକୀଙ୍କର ଅଷ୍ଟମ ଗର୍ଭ କଥା ଲୋକେ ସେଇଯୋଗୁ ତ ଗପୁଛନ୍ତି । କିଛି ନ ହେଲେ ବି ସେଇ ଯେଉଁ ଶୂନ୍ୟବାଣୀ ସେଇଟା ହିଁ ଲୋକଙ୍କ ମୁଣ୍ଡରେ ଚାପି ବସିଛି ।'

'ହଁ, ଶୂନ୍ୟବାଣୀ... ସେଇଟାକୁ ଲୋକେ ଦୈବବାଣୀ ବୋଲି କହୁଛନ୍ତି ?', କହିଲା ଅନୁଦାର, 'ମୋର ତ ମନେହୁଏ ସେଟା ଗୋଟା ପୂରା ଗାଲୁକଥା । ମୂର୍ଖ ଲୋକଙ୍କୁ ଭୁଲେଇବା ପାଇଁ ଏ ଗୋଟା ଅତି ଚାଲାଖିଆ କୌଶଳ... ତୁ କଅଣ ଭାବୁଛୁ ?'

'ଦେଖ, ମୁଁ କଅଣ ଭାବୁଛି କହିବା ସହଜ ନୁହେଁ । ମୁଁ କଅଣ ନ ଭାବୁଛି କହିବା ସହଜ ।' କହିଲା ଅରିନ୍ଦମ ।

'କଅଣ ସେଟା ?' ପଚାରିଲା ଅନୁଦାର ।

'ଏଇଟା କଂସର ଚାଲାକିଆ କୌଶଳ କଥା ନୁହେଁ ମୁଁ ଅନ୍ତତଃ ସେ କଥା ଭାବୁନି ।'

'ରହ, ରହ'.. ଅନୁଦାର ପାଟି କଲା । 'ତୁ ତ ଆମ ଉତ୍ତମ ପଣ୍ଡିତଙ୍କୁ ଟପିଗଲୁ । ଏତେ ବୁଲେଇ ବଙ୍କେଇ କଅଣ କହୁଛୁ ? ତା ମାନେ ତୁ ସେ ଠକାମି ଶୂନ୍ୟବାଣୀରେ ବିଶ୍ୱାସ କରୁ । ଗୋଟାଏ କିଏ ଶୂନ୍ୟରୁ କହିଲା ପରି କହିଦେଲା - ସାବଧାନ, ଏଇଆ ଏଇଆ ଘଟିବ । ବାସ୍, ବେଦବାକ୍ୟ ! ସର୍ବଜ୍ଞ ପୁରୁଷ

କହିଦେଲା । କେମିତି କହୁଛୁ ବିଶ୍ୱାସ କର ?'

'ଦେଖ, ଅନୁଦାର' ଅରିନ୍ଦମ କହିଲା, 'ଏ ଯୋଉ କଥାଟା କହିଲୁ... 'ବେଦବାକ୍ୟ'... ବେଦକୁ ଯେ ଉଦ୍ଧାର କରିଛନ୍ତି, ବେଦବ୍ୟାସ..., ସେ ଭାବନ୍ତି ଏ ଶୂନ୍ୟବାଣୀ ସତ, ତାହାହିଁ ଘଟିବ ।'

'ତୁମ ବାପା ?' ଅନୁଦାର ପଚାରିଲା ।

'ତାଙ୍କର ବି ସେହି ମତ', କହିଲା ଅରିନ୍ଦମ , 'ସେ ଆଜି ନୁହେଁ । ସେଇ ଯେବେ ଶୂନ୍ୟବାଣୀ ହେଲା, ଆଠ ବର୍ଷ ତଳେ । ଆମେ ସବୁ ତ ବ୍ୟସ୍ତ ହୋଇ ଉଠିଲୁ । ଶୂନ୍ୟବାଣୀ ଯେତେ ନୁହେଁ ବଦମାସି କରି ବସୁଦେବ ଦେବକୀଙ୍କି ବନ୍ଦୀ କରିଦେଲା, ସେଇଟା ହିଁ ଆମକୁ ବେଶି ବ୍ୟସ୍ତ କଲା । ବାପା ହିଁ ଏକମାତ୍ର ଲୋକ ଆମକୁ ସାନ୍ତ୍ୱନା ଦେଇଥିଲେ । କହିଥିଲେ ଯାହା ଘଟିବାର ଥିଲା ଘଟିଛି, ଭବିଷ୍ୟତରେ ମଧ୍ୟ ସେମିତି ଘଟିବ । ତୁମ୍ଭେମାନେ ସ୍ଥିର ହୁଅ, ଧୈର୍ଯ୍ୟ ଧର । ସମୟ ଆସିଲେ ସବୁ ମୀମାଂସା ହେବ ।'

ଅନୁଦାର କିଛି ସମୟ କଅଣ ଭାବିଲା । ତାପର ହୋ ହୋ ହୋଇ ହସି ଉଠିଲା । ତାପର କହିଲା, 'ବୁଝିଲୁ ଅରିନ୍ଦମ, ବ୍ୟାସଦେବ ଓ ବାପାଙ୍କ ଉପରେ କଥା କହିବାକୁ ମୁଁ କିଏ ? ତୁ ଭାବୁଛୁ କି ମୁଁ ଅନ୍ୟ କଥା ଭାବୁଛି ? ନାଁ ନାଁ, ଏତେ ଦିନ ପରେ ମୁଁ ବି ତୁମ ବାପା ହେରିକାଙ୍କ ପରି ଟିକେ ଟିକେ ଭାବିବାକୁ ଆରମ୍ଭ କଲିଣି । ଆମେ କେତେ ବୁଝୁ ? ସେମାନେ ଜ୍ଞାନୀ ଲୋକ, ସେମାନେ ହୁଏତ ଠିକ୍ ବୁଝିଛନ୍ତି । କିନ୍ତୁ ଜାଣିଲୁ ଏ ପୂରା କଥାଟା ମତେ ବଡ଼ ମଜା ଲାଗୁଛି । ଧଡ଼ାଧଡ ଦେବକୀ ବସୁଦେବ ବିଭାଘର ହୋଇଗଲା । ଧଡାଧଡ ଦିହିଁଙ୍କି କଂସ ବନ୍ଦୀ କରି ପକେଇଲା । ମଝିରେ ଗୋଟାଏ ଶୂନ୍ୟବାଣୀ ପଶିଗଲା । ତାପରେ ପ୍ରତିଦିନ ସୂର୍ଯ୍ୟ ଉଠିଲା ପରି ବର୍ଷକୁ ବର୍ଷ ଛୁଆ, ଆଉ ଜଗି ବସିଲା ପରି ବର୍ଷକୁ ବର୍ଷ କଂସ ତାଙ୍କୁ ଶେଷ କରିଦେଲା । ବର୍ତ୍ତମାନ ତ୍ରାଣକର୍ତ୍ତା ଜନ୍ମ ହେବେ । ସେଥିପାଇଁ ମଥୁରାଯାକ ବିରାଟ ହଇହଲ୍ଲା । ସତେ ଅରିନ୍ଦମ, ତୁ ଯଦି ସବୁକଥା ଏକାଠି ଭାବିବୁ, ଏତେ ବର୍ଷ ଚାଲିଗଲାଣି ସିନା, ଏ ସବୁ ମନେ ହେବ ଗୋଟାଏ ବିରାଟ ନାଟକ । ଆମର ସବୁ ମଥୁରାରେ ଯେମିତି ନାଟକ ହୁଏ । ଭାବିଲେ ସବୁ ସତ, ପୁଣି ଭାବିଲେ ସବୁ ମିଛ । ତ୍ରାଣକର୍ତ୍ତା ଆସୁଛନ୍ତି, ଆସନ୍ତୁ, ମଜା ହବ ।'

ଅରିନ୍ଦମ ଅନୁଦାରକୁ ଚାହିଁ ଫେଁ କିନା ହସି ପକେଇଲା - 'ସତେ ଅନୁଦାର, ତତେ ପାରି ହବ ନି । କିରେ ମଜା କଥା କଅଣ ? ଦେବକୀ ବସୁଦେବଙ୍କୁ କଂସ ଗଲା ଆଠ ନଅ ବର୍ଷ ହେଲା ଉଗ୍ରସେନଙ୍କର ସେଇ ପୁରୁଣା କୋଠିରେ ଚୋର

ଡକେଇତଙ୍କ ପରି ବନ୍ଦୀ କରି ରଖିଛି । ସେମାନଙ୍କର କି କଷ୍ଟ ଭାବିଲୁ ।'

'କଷ୍ଟ ? କଷ୍ଟ କଅଣ ?' ଅନୁଦାର କହିଲା, 'ଖାଇ ପିଇ ଆରାମରେ ଅଛନ୍ତି । ବର୍ଷକୁ ବର୍ଷ ପିଲା ଜନ୍ମ କରୁଛନ୍ତି । ହଁ, ବାହାରକୁ ଆସି ପାରୁ ନାହାନ୍ତି । ବାହାରକୁ ଆସି କରନ୍ତେ କଅଣ ? ସେମାନଙ୍କର ଘରେ ତ ଟଙ୍କା ପଇସାର ଅଭାବ ନାହିଁ । ଯେଉଁମାନେ ଅଛନ୍ତି ସେମାନେ ଘର କଥା ବୁଝୁଛନ୍ତି । ଭଲରେ ଅଛନ୍ତି । ହଁ, ତୁ କହିବୁ କଂସ ପିଲାଗୁଡ଼ାକୁ ମାରି ପକଉଛି । ମୁଁ ତ ଭାବୁଛି ମାରି ପକେଇ ଭଲ କରୁଛି । କଂସ ଚାଲାକ ଲୋକ । ସେ ଦେଖିଲା ଏ ପିଲାଗୁଡ଼ା ବଡ଼ ଜଂଜାଳ । ବସୁଦେବ ଦେବକୀଙ୍କୁ ତ ନିଶ୍ଚୟ । ସେମାନଙ୍କ ପାଖରେ ଏଗୁଡ଼ା ଲଟର ପଟର ହେବେ । କଂସକୁ ବି । କିଛି କଅଣ ଘଟିଲେ ମଥୁରାଯାକ ସମସ୍ତେ ହୋ ହୋ ହେବେ । ତେଣୁ ସାଫ୍ କରିଦିଅ । ବାସ୍, ସବୁଆଡ଼ୁ ସୁବିଧା । ଏଇଟାକୁ କଅଣ କରିବ କେଜାଣି ? ତୁମେ ସବୁ ତ ତ୍ରାଣକର୍ତ୍ତା ତ୍ରାଣକର୍ତ୍ତା କହି ପାଟିଗୋଳ ଆରମ୍ଭ କରି ଦେଲଣି । ମୋର ମନେ ହେଉଛି ଏଇଟା ବଂଚିଯିବ । ଏ ହସ୍ତିନାପୁରର ଭୀଷ୍ମଦେବଙ୍କ କଥା । ତାଙ୍କ ଆଗରୁ ତ ସାତଟା ପିଲାଙ୍କୁ ତାଙ୍କ ମା ପାଣିରେ ବୁଡ଼େଇ ମାରି ଦେଇଥିଲେ । ଏ ମଥୁରାର ଭୀଷ୍ମଦେବ ଆସୁଛନ୍ତି, ବୁଝିଲୁ । ମୁଁ ଯୋଉ ନାଟକ କଥା କହୁଥିଲି, ଏ ସେଇ ନାଟକର ଆଉ ଗୋଟାଏ ଦୃଶ୍ୟ ଆରମ୍ଭ ହେବ – ବଢ଼ିଆ ଦୃଶ୍ୟ !' ଅରିନ୍ଦମ ଦି ହାତରେ ତାଳି ମାରିଲା, କହିଲା, 'ଅନୁଦାର ବଢ଼ିଆ । ତୋ କଥାରେ ମଳିଧୂଳି ନାହିଁ । ଆରେ, ନାଟକରେ ତ ସବୁ ଛାଇ ମଣିଷ, ଏ ଯେ ଜିଅନ୍ତା ମଣିଷ ଗୁଡ଼ା । ଏ କଅଣ ଏକା କଥା ?'

'ପୂରା ଏକା କଥା ?' କହିଲା ଅନୁଦାର, 'ଭାରି ମଜା । ଯଦି ଯାହା କିଛି ଘଟିଗଲାଣି ସେଥିରେ ଆମର କିଛି କରିବାର ନ ଥିଲା, ଏଣିକି ଯାହା କିଛି ଘଟିବ ଆମର କଅଣ କରିବାର ଅଛି ? ସେ କଥା କଂସ ବୁଝୁ, ଦେବକୀ ବସୁଦେବ ବୁଝନ୍ତୁ, ଆଉ ଯୋଉ ପିଲାଟା ଜନ୍ମ ହେବ, ତମ ତ୍ରାଣକର୍ତ୍ତା, ସେ ବୁଝୁ । ଆମେ ଆମ ମଜାଟା କାହିଁକି ଛାଡ଼ିବା । ସେ ଯଦି ସତରେ ତ୍ରାଣକର୍ତ୍ତା ହୁଏ, ତୁମେ ସବୁ ଯାହା କହୁଛ, ଭଲ ହେଲା, ଆମେ ଦେଖିବା ତା କଦର କେତେ । ବହୁତ ମଜା ହେବ, ଅରିନ୍ଦମ । କଂସ ଆଉ ସେ ତ୍ରାଣକର୍ତ୍ତା ପିଲା ଦିହେଁ ଦିହିଁଙ୍କଠେଇଁ ଲାଗିଯିବେ । ଦେଖାଯାଉ, କିଏ କାହାକୁ ଖତମ କରୁଛି । ବହୁତ ମଜା ।'

ଅନୁଦାରର ମା ଜଳଖିଆ ଆଣି ପହଞ୍ଚିଥିଲେ । ଅରିନ୍ଦମ ଓ ଦେବପ୍ରିୟ ଯେତେ ମନା କଲେ ବି ଅନୁଦାର ଓ ମା ଆଦୌ ଶୁଣିଲେ ନାହିଁ । କହିଲେ ଖାଇବାକୁ ହବ । ଅନୁଦାରର ଭଉଣୀ ବି ଆସି ପହଞ୍ଚିଲା । କହିଲା, 'ଅରିନ୍ଦମ ଭାଇ, ତୁମେ ଏ ବାବାଜି


Digitized by srujanika@gmail.com

କେବେଠଉଁ ହେଲ ମ ? ଖାଅ, ଖାଅ' । ଅନୁଦାର କହିଲା, 'କିରେ, ଦେବକୀର ତ ରାତିକି ପିଲା ହେବ । ତୁ ଏ ସଖାଲୁ ଉପାସ କରୁଛୁ କାହିଁକି ?' ଅନୁଦାରର ମା କହିଲେ, 'ବୁଝିଲ ଅରି, ଏ ଅନୁଟା ସେମିତି, ଦେବକୀ କଥା ଉଠିଲେ ହସି ଉଡେଇ ଦଉଛି ।' ଅନୁଦାରର ମୁହଁ ଗମ୍ଭୀର ହୋଇଗଲା, କହିଲା, 'ତା ନୁହେଁ ମା । ଦେବକୀର କଷ୍ଟ ଆଜି ନୁହେଁ । ଗଲା ଆଠ ନଅ ବର୍ଷ ହେଲା ତାର କଷ୍ଟ ଚାଲିଛି । ସେଇ ବାହାଘର ଦିନଠୁଁ । ଆଉ କେତେବର୍ଷ ତାକୁ କଷ୍ଟ ଭୋଗିବାକୁ ହବ କିଏ ଜାଣିଛି ? ଏ ଚଣ୍ଡାଳ ଥିଲା ପର୍ଯ୍ୟନ୍ତ ଭୋଗିବାକୁ ହେବ । ଆମେ କଅଣ କରି ପାରିବା ? କିଛି ନା । ଖାଲି ଦେଖି ଦୁଃଖ ପାଇବା କଥା । ସେଇଯୋଗୁଁ ମୁଁ ହସେ ।'

ତିନି ବଂଧୁ ବସି ଖାଇଲେ, ଖାଉ ଖାଉ ଅରିନ୍ଦମ କହିଲା, 'ଅନୁଦାର, ତୁ ଆମ ସାଙ୍ଗରେ ଚାଲ ।'

'କୁଆଡ଼େ ତୁମେ ଯିବ ?' ଅନୁଦାର ପଚାରିଲା ।

'ଅନୁରାଗ ପାଖକୁ', କହିଲା ଅରିନ୍ଦମ ।

'ଓ ହୋ', ଅନୁଦାର କହିଲା, 'ଅନୁରାଗ... ତାର ତ ପୃଥିବୀର କୌଣସି ବିଷୟରେ ଆଗ୍ରହ ନାହିଁ । ତା' ସାଙ୍ଗରେ କଅଣ କଥା କହିବୁ ? ଆଉ ତୁମ ତ୍ରାଣକର୍ତ୍ତା ? ତୁ ଯଦି ସେ କଥା କହିବୁ, ସେ ତତେ ପଚାରିବ କିଏରେ ସେଟା ? ବଂଚିଛି ନା ମଲାଣି ?' ଅରିନ୍ଦମ ହସିଲା, କହିଲା, 'ସେଇ ଯୋଗୁ ତା ସହିତ ଦେଖାକରିବା । ଅନୁରାଗକୁ ମୁଁ ଜାଣେ, ତା ବିଷୟରେ ତୁ ଯାହା କହିଲୁ ଠିକ୍ । ତେବେ ତା ଦୁଃଖ କଥାଟା ବି ଭାବ । ପିଲାଦିନରୁ ବାପା ଚାଲିଗଲେ। ଘରେ ଚାରି ଭାଇ ଭଉଣୀ ଓ ବିଧବା ମା । ଏ ସମସ୍ତଙ୍କ କଥା ତାକୁ ବୁଝିବାକୁ ହେଲା । ଏ କମ ଜଂଜାଳ ନୁହେଁ । ସମସ୍ତଙ୍କ କଥା ବୁଝୁ ବୁଝୁ ସେ ନିଜ କଥା ଭୁଲିଗଲା । ଆଉ ସେ ଭାବିବ ବା କଅଣ, ଅନ୍ୟ କଥାରେ ଆଗ୍ରହ ବା କଅଣ ରହିବ ?'

ଦେବପ୍ରିୟ କହିଲା, 'ଅନୁରାଗର ଘର ଆମ ଘର ପାଖରେ । ତାକୁ ଦିନେ କେବେ ମୁଁ କାହା ପାଖରେ ହାତ ପାତି ଛିଡ଼ା ହେବା ଦେଖିନି । ସବୁବେଳେ ଏକଶିଂଘିଆ ।'

'ମୁଁ ସେଇଆହିଁ କହୁଛି', କହିଲା ଅନୁଦାର, 'ତାର ଦେବକୀ ବସୁଦେବ ହଉ, କି ତାଙ୍କର ପିଲାମାନଙ୍କ କଥା ହେଉ, କାହା ବିଷୟରେ କିଛି ଆଗ୍ରହ ଥିବ ବୋଲି ମୁଁ ଭାବୁନି ।'

'ଠିକ୍ ଅଛି', ଅରିନ୍ଦମ କହିଲା, 'ତ୍ରାଣକର୍ତ୍ତା ବିଷୟରେ ସେ ବି ଗୋଟାଏ ମତ, ଚାଲ ଯିବା ।'

'ମୁଁ ଯିବି କି ?' ଅନୁଦାର ପଚାରିଲା ।

'ହଁ, ଚାଲ ।'

ତିନିବଂଧୁ ବାହାରିଲେ । ଟିକିଏ ବୁଲି ଯିବାକୁ ପଡିଲା । ଅନୁରାଗ ଘରେ ଥିଲା । ଡାକୁ ଡାକୁ ବାହାରି ଆସିଲା । ଏ ତିନିଙ୍କି ଦେଖି ସେ ଟିକିଏ ଆଶ୍ଚର୍ଯ୍ୟ ହେଲା, ଖୁସି ବି ହେଲା । କହିଲା, 'ଆସ, ଆସ, ଏ ନିଶ୍ଚୟ ଅରିନ୍ଦମର ଯୋଗାଡ଼ । ସେ ତମ ଦିହିଁଙ୍କି ସାଙ୍ଗରେ ଆଣିଛି । ବହୁତ ଦିନ ହେଲା ତୁମ କଥା ଅରିନ୍ଦମ ମୁଁ ଭାବୁଥିଲି । ଘର ଜଂଜାଳ ତ ଲାଗି ରହିଛି । କୁଆଡ଼େ ଯାଇ ହଉନି । ଯା ହଉ ତୁମେ ଆଜି ଆସିଲ । ଆସ । ବାପା କେମିତି ଅଛନ୍ତି ? ସେ ଜ୍ଞାନୀ ଲୋକ । ତାଙ୍କରି ପରି ଲୋକଙ୍କ ପୁଣ୍ୟରେ ତ ମଥୁରା ବଂଚି ରହିଛି ।'

'ବାପା ଭଲ ଅଛନ୍ତି', ଅରିନ୍ଦମ କହିଲା, 'ସେ ମଝିରେ ମଝିରେ ତୁମ କଥା ପଚାରନ୍ତି । ସେ ତ ପ୍ରାୟ ଘରୁ ବାହାରନ୍ତି ନାହିଁ । ସବୁବେଳେ ତାଙ୍କ ପୂଜାପୂଜିରେ ବ୍ୟସ୍ତ ଥାଆନ୍ତି ।'

'ସେଇଟା ହିଁ ଠିକ୍ କାମ । କୁଆଡ଼େ ନ ଯିବାହିଁ ଭଲ । ଯୁଆଡ଼େ ଯିବ ଖାଲି ଦୁଃଖ କଷ୍ଟ । ଚାରିପାଖରେ ଘଟଣାସବୁ ଘଟୁଛି ଯାହାକୁ ତୁମେ ଦେଖି ପାରିବ ନାହିଁ କି ସହି ପାରିବ ନାହିଁ ।' କହିଲା ଅନୁରାଗ ।

'କଂସ ରାଜା ନା ! ଘଟଣା ସବୁ ନ ଘଟି ଯିବ କୁଆଡ଼େ ।' କହିଲା ଅନୁଦାର ।

'ନାହିଁ, ମଥୁରା ସବୁଦିନେ ଏମିତି ନ ଥିଲା, ଅନୁଦାର । ଏବେ ଏବେ ଗତ କିଛି ବର୍ଷ ହେଲା ଅବସ୍ଥା ବହୁତ ଖରାପ ହୋଇଗଲାଣି । ରାଜା ଗୋଟା ଅଛି । କିନ୍ତୁ ଶାସନ ବୋଲି କିଛି ନାହିଁ । ସେଇ ଗୋଟାଏ ଲୋକର ଇଚ୍ଛା ଅନିଚ୍ଛା ହିଁ ଶାସନ । ଆଉ ଇଚ୍ଛାଟା କଅଣ ? ସ୍ୱାର୍ଥ - ଖାଲି ସ୍ୱାର୍ଥ ।'

'ଦେଖ ଅନୁରାଗ, ସବୁଆଡ଼େ ଏକଥା କହି ବୁଲନା । ସମୟ ଭଲ ନୁହେଁ । ଅସୁବିଧା ହେଲେ ପିଠିରେ ପଡିବାକୁ କେହି ନାହିଁ ।' କହିଲା ଅରିନ୍ଦମ ।

'ମୁଁ ଜାଣେ', କହିଲା ଅନୁରାଗ, 'ଆଜି କାଲି କିଛି କହିବା ବିପଜ୍ଜନକ । କାନ୍ଥବାଡର ବି କାନ ଅଛି । କିନ୍ତୁ ମନର କ୍ରୋଧ ବଂଧୁମାନଙ୍କୁ ନ କହିଲେ କାହାକୁ କହିବି ? ତୁମେ କୁହ ଅରିନ୍ଦମ, ଆମେ ଯେ ସାଧାରଣ ଲୋକ ନିଜର ପରିବାର ଚଳେଇବା ପାଇଁ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରୁଛୁ, କାହାରି ଭଲମନ୍ଦରେ ନ ଥାଉ, କୌଣସି ଘଟଣାରେ ମୁଣ୍ଡ ପୂରେଇବାକୁ ଚାହୁଁନା, ଆମର ସ୍ଥିତି ଅଛି ?'

'ନାଁ ନାହିଁ', କହିଲା ଅରିନ୍ଦମ ।

'ଭାବିଲ, ରାଜାଙ୍କ ମର୍ଜିର ତ ଆରମ୍ଭ ନାହିଁ କି ଶେଷ ନାହିଁ । ତାକୁ ଡରି ଡରି ଚଳିବାକୁ ହେଉଛି । ତା ଛଡ଼ା ଏହି ଯେଉଁ ଫଙ୍ଗାକୁ ଫଂଙ୍ଗା ସୈନ୍ୟସାମନ୍ତ ଦିନ ନାହିଁ ରାତି ନାହିଁ, ମହଲା ମହଲା ଘୂରି ବୁଲୁଛନ୍ତି, ସାମାନ୍ୟ ସାମାନ୍ୟ କଥାରେ ଅପମାନ କରୁଛନ୍ତି, ଝିଅ ବୋହୂଙ୍କ ଉପରେ ନଜର ପକଉଛନ୍ତି, ତାଙ୍କୁ କଅଣ କହିବ ?' କହିଲା ଅନୁରାଗ ।

'ଏ ଠିକ କଥା, ସବୁ ମହଲାରେ ସମାନ ଅବସ୍ଥା । ଆମେ ସମସ୍ତେ ଭୋଗୁଛୁ ।' କହିଲା ଅନୁଦାର, 'ମନରେ ଶାନ୍ତି ନାହିଁ ।'

'ମନରେ ତ ଶାନ୍ତି ଆସିବା କଥା ନୁହେଁ ।' କହିଲା ଅରିନ୍ଦମ, 'ରାଜା ଯଦି ଅସାଧୁ ହବ, ପ୍ରଜାଙ୍କର ରକ୍ଷାକର୍ତ୍ତା ନ ହୋଇ ଶତ୍ରୁ ହେବ, ଆମେ ଆଉ କାହା ଉପରେ ନିର୍ଭର କରିବା ? ସେଇ ଯୋଗୁ ତ ଦେବକୀର ଯେଉଁ ପିଲାଟା ଆଜି ଜନ୍ମ ହେବ ତା କଥା ସବୁଆଡ଼େ ପଡିଛି । ସମସ୍ତଙ୍କର ଧାରଣା ସେ ଦେଶକୁ ରକ୍ଷା କରିବ ।'

ଅନୁରାଗ ସାଙ୍ଗେ ସାଙ୍ଗେ କିଛି ଉତ୍ତର ଦେଲା ନାହିଁ । ଅନୁଦାର ଓ ଦେବପ୍ରିୟଙ୍କୁ ଚାହିଁଲା, କହିଲା, 'ତୁମର ବି ସେଇ ଧାରଣା ବୋଧେ ?'

'ନାଁ ନାଁ', ଅନୁଦାର ତରବର ହୋଇ କହିଲା, 'ଆମର ସେ ଧାରଣା ନୁହେଁ । ଅନ୍ତତଃ ମୋର ସେ ଧାରଣା ନାହିଁ । ଅରିନ୍ଦମ ଓ ଦେବପ୍ରିୟର ବି ଠିକ୍ ସେହି ଧାରଣା ନାହିଁ ବୋଲି ମୁଁ ଭାବୁଛି । ତେବେ ମଥୁରାର ବହୁତ ଲୋକଙ୍କର ସେଇ ଧାରଣା ବୋଲି ମୁଁ ଜାଣେ ।'

ଅନୁରାଗ ଅନୁଦାରକୁ ନିର୍ଦ୍ଦିଷ୍ଟ ଭାବରେ ଚାହିଁଲା, କହିଲା, 'ଅନୁଦାର, ମଥୁରାର ଲୋକଙ୍କ କଥା ଛାଡ । ଅରିନ୍ଦମ ଓ ଦେବପ୍ରିୟ କଥା ବି ଛାଡ । ତୁ ନିଜେ କଅଣ ଭାବୁଛୁ କହିଲୁ ।'

ଅନୁଦାର ହସିଲା । କହିଲା, 'ମୁଁ ନିଜେ କଅଣ ଭାବେ ତୁ ଜାଣିଛୁ । ମୁଁ ଅରିନ୍ଦମକୁ ସେ କଥା କହି ସାରିଛି । ଦେବକୀର ଏ ପିଲାଟା ତ୍ରାଣକର୍ତ୍ତା ହେବ, ହେଉ । ପ୍ରଚଣ୍ଡ ମଜା ହବ ।'

ଅନୁରାଗ ଅରିନ୍ଦମକୁ ଚାହିଁଲା, କହିଲା, 'ଅରିନ୍ଦମ, ଅନୁଦାର କହୁଛି ପ୍ରଚଣ୍ଡ ମଜା ହବ । କଅଣ ମଜା ହବ ମୁଁ ଜାଣେ ନା । ମଜା ହୋଇପାରେ । ମୋର କିନ୍ତୁ ଭାଇ କୌଣସି ଆଗ୍ରହ ନାହିଁ । ଦେବକୀର ଏହି ପିଲାଟା ତ୍ରାଣକର୍ତ୍ତା ହେଉ କି ଯୋଉ କର୍ତ୍ତା ହେଉ, ଜନ୍ମ ହେଉ କି ଜମା ଜନ୍ମ ନ ହେଉ, ମୋର ସାମାନ୍ୟ ଆଗ୍ରହ ନାହିଁ । ଏ ଗୋଟାଏ ଏମିତି ଫାଙ୍କା କଥା ସତେ ଅରିନ୍ଦମ, ମତେ କାବା ଲାଗୁଛି । ଆମେ ସମସ୍ତେ ଧରି ନେଇଛୁ ଗୋଟାଏ କିଏ ତ୍ରାଣକର୍ତ୍ତା ଆସିବ, ସେ ବଡ଼ ହେବ, ଆଉ

କଂସକୁ ମାରିବ । ବାସ୍, ଧନ୍ୟ, ଧନ୍ୟ ! ଆମେ ନିଜକୁ ନିଜେ ରକ୍ଷା କରି ପାରିବା ନାହିଁ । ସେ କ୍ଷମତା ଆମର ନାହିଁ । ଗୋଟାଏ ତ୍ରାଣକର୍ତ୍ତା କିଏ ଆକାଶରୁ ଗଳିବ । ସେଇ ସମସ୍ତଙ୍କୁ ଉଦ୍ଧାର କରିବ । ମତେ କହିବାକୁ ଲାଜ ଲାଗୁଛି । ଏମିତି ଗୋଟାଏ ଜାତି ପୃଥିବୀରେ ବଂଚି ରହି ଲାଭ କଅଣ ?'

ଅରିନ୍ଦମ କହିଲା, 'ଅନୁରାଗ ତୋ ରାଗ ମୁଁ ବୁଝୁଛି । ତୋ ରାଗ ଆମ ସମସ୍ତଙ୍କ ରାଗ । ଲୋକ ଯେତେବେଳେ କିଛି କରି ପାରେନା, ସେ ଭାବେ ବାହାରୁ କିଏ ଗୋଟା ଆସି ତାକୁ ସାହାଯ୍ୟ କରିବ । ଏ ସେହି ଅବସ୍ଥା । କଳେ ବଳେ କୌଶଳେ କଂସ ମଥୁରାର ରାଜଗାଦିଟା ନେଇଗଲା । ତା'ପରେ ରାଜତ୍ୱଟା କେମିତି ରଖାଯିବ ସେଥିପାଇଁ ଯାବତୀୟ ସତ ମିଛର କାରବାର ।' ସେ ଟିକେ ରହିଗଲା । ଭାନୁପ୍ରକାଶଙ୍କ କଥା ମନେ ପଡିଲା । ପୁଣି କହିଲା – 'ବୁଝିଲୁ, ସତ ମିଛକୁ ବଂଚେଇ ରଖିବା ପାଇଁ ଆହୁରି ଆହୁରି ସତ ମିଛ ଦରକାର । କଂସ ବର୍ତ୍ତମାନ ସେହି କାମ କରୁଛି । ଯାହା ସବୁ ଅତ୍ୟାଚାରୀ, ଅସାଧୁ ଶାସକମାନେ କରନ୍ତି । କଥା ହେଲା କଂସକୁ ବିରୋଧ କରି ଆମେ ବି ସତମିଛ କରିବା ନା ସିଧା ସିଧା ଛିଡ଼ାହେବା ?'

'ନାଁ, ସିଧା ସିଧା ଛିଡ଼ାହେବା କଥା ତ', କହିଲା ଅନୁରାଗ, 'କିନ୍ତୁ ଆମେ କଅଣ ତାହା ପାରିବା ? ମଥୁରାର ଲୋକମାନେ ତା ପାରିବେ ?'

'ମଥୁରାର ଲୋକମାନେ ?' – ଅନୁଦାର ହା ହା ହୋଇ ହସିଲା, 'କିରେ ମାର ନା ନା ମୁଁ ମଲିଣି । ଏଇ ହେଲା ମଥୁରାର ଲୋକ । କଂସ ମହାନ ରାଜା, ମହାନ୍ ଯୋଦ୍ଧା, ମହାନ୍ ବ୍ୟକ୍ତି ! ବାପରେ ବାପ ! ସେ ଯାହା କହୁଛି, ଯାହା କରୁଛି ସବୁ ମଥୁରାର ଭଲ ପାଇଁ । ତା ବିରୁଦ୍ଧରେ କିଏ କହିବ ? ତୁମେ ଆମେ, ନା ଏହି ମଥୁରାର ଯଦୁବଂଶତିଳକ ମୁଖିଆମାନେ, ଯିଏ ସବୁ ଆରାମରେ ଅଛନ୍ତି ?'

'ଅନୁଦାର ଭୁଲ୍ କହୁନି, ଅରିନ୍ଦମ ।' କହିଲା ଅନୁରାଗ, 'ଦି'ଟା ନିର୍ଦ୍ଦୋଷ ଲୋକଙ୍କୁ ଫାଙ୍କା କଥାରେ ବନ୍ଦୀ ଘରେ ଭର୍ତ୍ତି କରିଦେଲା । କେହିତ କିଛି କହିଲେ ନି । ଟିକି ଟିକି ଛୁଆଗୁଡ଼ାଙ୍କୁ କୋଉଠି କିଛି କାରଣ ନ ଥାଇ ଅତି ନୃଶଂସ ଭାବରେ ମାରି ପକେଇଲା, କାହିଁ କେହିତ ଉଁ ଚୁଁ ହେଲେ ନି । ଆଜି ସେ ଛୁଆଟାକୁ ନିଶ୍ଚୟ ମାରି ପକେଇବ । କଅଣ ହବ ? କିଛି ନାହିଁ । ଆଉ ଆମମାନଙ୍କ କଥା ଛାଡ । ଦିନରାତି ଡରି ଡରି ଜୀବନ ଗଲା ।'

'ଅନୁରାଗ, ତୋ କଥା ଠିକ୍ ଓ ଭୁଲ୍', କହିଲା ଅରିନ୍ଦମ , 'ଠିକ୍ କାହିଁକି ନା ତୁ ଅବସ୍ଥାକୁ ଠିକ୍ ବୁଝିଛୁ । ଭୁଲ୍ କାହିଁକି ନା ତୁ ଏ ଅବସ୍ଥାର ମୁହାଁମୁହିଁ ହେବାକୁ ଚାହୁଁନୁ ।' ଭାବୁନୁ ଯେ ଏ ଅବସ୍ଥା ଆମେ ଟପି ଯାଇପାରିବା ।'


Digitized by srujanika@gmail.com

'ହଁ, ହୁଏତ ଆମେ ଟପିଯାଇ ପାରିବା ।' କହିଲା ଅନୁରାଗ, 'କିନ୍ତୁ କେମିତି ଓ କାହିଁକି ? ଲାଭ କଅଣ ? ମୁଁ ସେଇଥିପାଇଁ କୌଣସି କଥାରେ ଆଗ୍ରହୀ ହେବାକୁ ଚାହୁଁନି । ମୁଁ ଏକ ସମୟରେ ସବୁ କଥାରେ ଆଗ୍ରହୀ ଥିଲି । କିନ୍ତୁ ପରେ ଦେଖିଲି ସେଇଟା ମୋ ଭୁଲ୍ । ମୁଁ ଯେତେ ଆଗ୍ରହୀ ହେଲେ ବି, ସବୁ ଘଟଣାରେ ଯେତେ ମୁଣ୍ଡ ପୂରେଇଲେ ବି, କିଛି ଲାଭ ନାହିଁ । ମୋ ଆଗ୍ରହରେ କୌଣସି ଘଟଣା କେବେ ବଦଳି ଯାଇନି । ଯେମିତି ଘଟିବା କଥା ଘଟିଛି । ଆସ୍ତେ ଆସ୍ତେ ମୋ ମନ ସବୁ କଥାରୁ ଛାଡିଗଲା । ଯାହା ଘଟିବାର କଥା ଘଟୁ । ତୁମ ତ୍ରାଣକର୍ତ୍ତା ଆସୁ ବା ନ ଆସୁ ମୁଁ କାହିଁକି ବ୍ୟସ୍ତ ହେବି କହ ।'

ଅରିନ୍ଦମ କିଛି ସମୟ ଭାବିଲା, ତା'ପରେ କହିଲା, 'ଅନୁରାଗ, ଏ ଖାଲି ତ୍ରାଣକର୍ତ୍ତା କଥା ନୁହେଁ । ଆଜି ତ୍ରାଣକର୍ତ୍ତା କଥା ଉଠୁଛି । କାଲି ତ୍ରାଣକର୍ତ୍ତା କଥା ଉଠିପାରେ ନ ଉଠି ପାରେ ବି । କଥା ହେଉଛି ତ୍ରାଣକର୍ତ୍ତାଟା ଆରମ୍ଭ ନୁହେଁ, ଶେଷ । କହିପାର, ଘଟଣାର ପରିଣତି । ଆଉ କିଛି ବାଟ ନ ପାଇଲେ ଲୋକେ ତ୍ରାଣକର୍ତ୍ତା କଥା କହିବାକୁ ଆରମ୍ଭ କରନ୍ତି । ଆଜି ମଥୁରାରେ ସେଇକଥା ଘଟିଛି । ଶେଷ ପର୍ଯ୍ୟନ୍ତ କଅଣ ହେବ ମୁଁ ଜାଣେନା । ହୁଏତ ଶେଷ ପର୍ଯ୍ୟନ୍ତ କିଛି ହେବନି । ଏ ତ୍ରାଣକର୍ତ୍ତା କଥାଟା କେବଳ କଥା ଓ ଆଶାରେ ହିଁ ରହିଯିବ । ଆଜି ସଖାଲୁ ଦେବପ୍ରିୟ ଓ ମୁଁ ବିଭିନ୍ନ ଆଡ଼େ ବୁଲି ବୁଲି ଆସିଲୁଣି । ସବୁଆଡ଼େ ଅଲଗା ଅଲଗା କଥା । ଏଇ ଯେପରି ତୁମେ – ତୁମର ଆଗ୍ରହ ନାହିଁ, ତ୍ରାଣକର୍ତ୍ତା ଆସୁ କି ନ ଆସୁ । ବା ଏଇ ଅନୁଦାର – ତା ପାଖରେ ଏସବୁ କଥାର କିଛି ଗୁରୁତ୍ୱ ନାହିଁ, ତ୍ରାଣକର୍ତ୍ତା କଥାଟାହିଁ ଗୋଟାଏ ବିରାଟ ମଜାର କଥା । ଆମେ ଅଂଶୁମାନ ଓ ଅନିକେତ ପ୍ରଭୃତିଙ୍କ ମତାମତ ବି ଶୁଣି ଆସିଲୁ । ଅଂଶୁମାନ ସଂପୂର୍ଣ୍ଣ ନିଃସ୍ପୃହ, ତ୍ରାଣକର୍ତ୍ତା ଦ୍ୱାରା କିଛି ହୋଇପାରିବ ଏ ବିଶ୍ୱାସ ତା'ର ନାହିଁ । ଆଉ ଅନିକେତର ତ ତ୍ରାଣକର୍ତ୍ତାରେ ହିଁ ବିଶ୍ୱାସ ନାହିଁ । ତା ମତରେ ସେଟା ନିତାନ୍ତ ଫାଙ୍କା କଥା, ବାଜେ କଥା । ଏମିତି ଆହୁରି ଆହୁରି କଥା ବି ବାହାରିବ ।'

'ହଁ, ବାହାରିବ ।' କହିଲା ଅନୁରାଗ, 'ତ୍ରାଣକର୍ତ୍ତାଙ୍କୁ ଛାଡିଦିଅ । କିଛି ଲୋକ ବାହାରିବେ ଯିଏକି ସଂପୂର୍ଣ୍ଣ ଭାବରେ କଂସ ସପକ୍ଷରେ । ତୁମେ ଯାହା କୁହ କଂସ ଠିକ୍ ଲୋକ, ମଥୁରା ପାଇଁ ଏକଦମ୍ ଠିକଣା । ଯାହା ସେ କରିଛି ବା କରୁଛି ସବୁ ଠିକ୍ । ଆଉ କିଛି ଅଛନ୍ତି ଯେ କି ସଂପୂର୍ଣ୍ଣ ବିପକ୍ଷରେ । କଂସ ଅତ୍ୟାଚାରୀ, ଲମ୍ପଟ, ଅସାଧୁ, ଅଧର୍ମ । ମଥୁରାକୁ ରକ୍ଷା କରିବାକୁ ହେଲେ କଂସକୁ ଶେଷ କରିଦେବାକୁ ହବ । କଅଣ ମୁଁ ଭୁଲ୍ କହିଲି ଅରିନ୍ଦମ ?'


Digitized by srujanika@gmail.com

'ନାଁ, ଶହେରୁ ଶହେ ଠିକ୍', କହିଲା ଅନୁଦାର, 'କି ହୋ ବାହାରିବ କଅଣ ? ବାହାରି କରି ଅଛି । ଆମ ଚାରିଜଣଙ୍କୁ ଦେଖ । ଆମେ କୁଆଡ଼େ ? ସପକ୍ଷ ନା ବିପକ୍ଷ ?'

ଅରିନ୍ଦମ ହସିଲା, କହିଲା, 'ତୋ ପାଇଁ ତ ଅନୁଦାର, ସବୁ ଭୟଙ୍କର ମଜା । ଆଗେ କହ, ତୋର ଏ ମଜାଟା କଂସ ସପକ୍ଷରେ ନା ବିପକ୍ଷରେ ? ଦେଖ, ଭାବିକରି କହ, ସାବଧାନ ।'

ସମସ୍ତେ ହସି ଉଠିଲେ ।

ଅନୁରାଗ କହିଲା, 'ସେସବୁ ଥାଉ, ବହୁତ ସମୟ ଗପସପ ହେଲଣି । ଆସ କିଛି ଖାଇବ ।' ପରେ ଅନ୍ୟ କଥା ।

ଦେବପ୍ରିୟ ଚିହିଙ୍କି ଉଠିଲା - 'ଆରେ ବାପ୍ । ପୁଣି ଖାଇବା ?'

'ଖାଇ ଖାଇ କରି ମରଣ', କହିଲା ଅନୁଦାର ।

'ଚୁପ କର', ଅନୁରାଗ କହିଲା, 'ମରଣ ଭଲ, ତା ହେଲେ ଏ କୁତ୍ସିତ ଅବସ୍ଥାରୁ ଉଦ୍ଧାର ପାଇଯିବା ।'

'ଏତେ ସହଜରେ ଉଦ୍ଧାର ପାଇବା ସମ୍ଭବ ନୁହେଁରେ ବାବୁ,' କହିଲା ଅନୁଦାର, 'କଂସ ତ ବର୍ତ୍ତମାନ ତୁମ ବେକକୁ ଧରିଛି । ତୁମେ ମରିଗଲେ ତୁମେ କଅଣ ଭାବିଛ ସେ ଛାଡିଦବ ? ଭୂତ ହୋଇ ଗୋଡେଇବ ।'

'କିରେ ଭୂତ ହବୁ କଅଣ ? ଆମେ ତ ସବୁ ଭୂତ ହୋଇଗଲେଣି ।' କହିଲା ଅରିନ୍ଦମ, 'କଂସ ହାତରୁ ଖସିବା କି ନାହିଁ ପଛ କଥା, ବର୍ତ୍ତମାନ ଅନୁରାଗ ହାତରୁ ଖସିବାର ଉପାୟ ନାହିଁ । ଚାଲ, ଚାଲ, ଭିତରକୁ ଚାଲ ।'

ସମସ୍ତେ ଘର ଭିତରକୁ ଗଲେ । ଅନୁରାଗ ଘରର ଭିତର ବାରଣ୍ଡାରେ ତା ସ୍ତ୍ରୀ ଚାରିବଂଧୁଙ୍କ ପାଇଁ ଏକାଠି ଖାଇବାର ବନ୍ଦୋବସ୍ତ କରିଛନ୍ତି । ଦେବପ୍ରିୟ ପୁଣି ଥରେ ଚିହିଙ୍କି ଉଠିଲା, 'ଆରେ ଏସବୁ କଅଣ ? ଆମେ ସବୁ ଏତେ ଖାଇବା ?' ଅନୁଦାର ଉତ୍ତର ଦେଲା, 'ନାଁ, ଭୂତମାନେ ଖାଇବେ ।'

ଅନୁରାଗ କିଛି ସଂକୋଚରେ କହିଲା, 'କେତେ ? ଆମେ ସବୁ କୋଉ ଏକାଠି ହୋଇ ପାରୁଛେ । ଆଜି ଏକାଠି ହୋଇଛେ । ସେହି ଯୋଗୁ ।'

'କେତେବେଳ ହେଲାଣି ଦେଖୁଛ', ଅରିନ୍ଦମ କହିଲା, 'ଆସ, ଖାଇଦିଅ । ତା ହେଲେ ଘରକୁ ନ ଫେରି ଆଉ କୁଆଡ଼କୁ ଯାଇ ପାରିବା ।'

ଚାରି ବଂଧୁ ଖାଇ ବସିଲେ ।

ଅନୁରାଗ ପଚାରିଲା, 'ଅରିନ୍ଦମ, ତୁମେ ଆଉ ଦେବପ୍ରିୟ ବୋଧେ ଆଜି


Digitized by srujanika@gmail.com

ଅନେକ ଆଡ଼େ ବୁଲାବୁଲି କରି ଆସିଲଣି ? ଏ କଅଣ ଖାଲି ଆଜିର ଘଟଣା ବିଷୟରେ ଜାଣିବା ପାଇଁ ?'

'ହଁ, ପ୍ରାୟ ସେଇଆ', ଅରିନ୍ଦମ କହିଲା, 'ଆମେ ସକାଳୁ ଭାବିଲୁ ଆଜି ଗୋଟାଏ ଏତେ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିବାକୁ ଯାଉଛି । ଅନ୍ତତଃ ଏ ଘଟଣା ଗୁରୁତ୍ୱପୂର୍ଣ୍ଣ ବୋଲି ଯଥେଷ୍ଟ ପ୍ରଚାର ହୋଇଛି । ଏ ବିଷୟରେ ଲୋକଙ୍କ ମତାମତ କଅଣ ?'

'ଲାଭ ?' ଅନୁରାଗ ପଚାରିଲା ।

'ନାଁ, ସେମିତି ଦେଖିଲେ ଲାଭ କିଛି ନାହିଁ । ଏ ଗୋଟାଏ ସାଧାରଣ ଆଗ୍ରହ, କୌତୂହଳ । କିନ୍ତୁ ଲାଭ ବି କିଛି ଅଛି । ଯେଉଁମାନେ ଜାଣନ୍ତି , ବୁଝନ୍ତି, ବୁଦ୍ଧିମାନ, ସେମାନଙ୍କର ମତାମତରୁ ବା ସେମାନଙ୍କର ଆଲୋଚନାରୁ ଜାତିର ଚରିତ୍ର ଓ ଶକ୍ତି ବୁଝିହେବ,' କହିଲା ଅରିନ୍ଦମ, 'ଓ ଯେ କୌଣସି ଘଟଣାକୁ ସେଇ ଘଟଣା ଭିତରେ ଆମେ ବାନ୍ଧି ନ ରଖି ବାହାର କଥା ସାଙ୍ଗରେ ବିଚାର କରି ପାରିବା ।'

'ତୋ କଥାଗୁଡ଼ାକ ଅରିନ୍ଦମ, ବି ବେଶ ଗୁରୁତ୍ୱପୂର୍ଣ୍ଣ', କହିଲା ଅନୁଦାର, 'ତେବେ ଯୋଡିଏ ଭୁଲ୍ ଅଛି । ପ୍ରଥମ ହେଲା ତୁ ଧରି ନେଇଛୁ ଏ ଯାଦବମାନଙ୍କର ବିଦ୍ୟାବୁଦ୍ଧି ଅଛି ଓ ବିଚାର କରିବା କ୍ଷମତା ଅଛି । ଭୁଲ୍ । ଦ୍ୱିତୀୟ ହେଲା ସେମାନଙ୍କର ମତାମତ ଯାହା ହେଉ ଘଟଣାକୁ ବଦଳେଇବା କ୍ଷମତା କାହାରି ନାହିଁ । ଖାଲି କଥା, କଥା !'

ଅରିନ୍ଦମ ହସିଲା, 'କହିଲା, ନାହିଁ, ଅନୁଦାର, ମୁଁ ଏତେ ହତାଶ ନୁହେଁ । ତୋ କଥା ସାଧାରଣ ଭାବରେ ସତ ହେଲେ ବି କିଛି କିଛି ଯାଦବଙ୍କର ବିଦ୍ୟାବୁଦ୍ଧି ଅଛି, ବିଚାରବୁଦ୍ଧି ଅଛି । ଯେତେବେଳେ ସବୁଆଡ଼ ଅଂଧାର ହୋଇଯାଏ, ସମସ୍ତେ ହତାଶ ହୋଇଯାଅନ୍ତି, ସେଇମାନେ ଆଲୁଅ ଦେଖାନ୍ତି । ଏ ଯାଦବ ଜାତି କଥା ଧ । ତା ନ ହୋଇଥିଲେ ଏ ଯାଦବ ଜାତିଟା ବଂଚି ନ ଥାନ୍ତା, ଆମେ ବସି ଆଲୋଚନା କରୁ ନ ଥାନ୍ତେ । କଂସ ଯୋଉ ଢଙ୍ଗ ଧରିଲାଣି, ଏ ଯାଦବଗୁଡ଼ାଙ୍କୁ ଶେଷ କରିବାକୁ ତାକୁ କେତେ ସମୟ ଲାଗିବ ? ଆମେ ଯେ ବଂଚି ରହିଛୁ, କେମିତି ? ଆମର କଅଣ ଅଛି ? ଧନବଳ ନାଁ ସୈନ୍ୟବଳ ? ଅଛି ହାରି ନ ଯିବାର ଦମ୍ଭ, ସାହସ ।' ଅରିନ୍ଦମ ଚୁପ କରିଗଲା । ସେ ମନେ ମନେ ଆଶ୍ଚର୍ଯ୍ୟ ହେଲା ଏତେ କଥା ସେ କହିପାରୁଛି କେମିତି । ତା ଜରିଆରେ ଯେପରି ଭାନୁପ୍ରକାଶ କହୁଛନ୍ତି । ଭାନୁପ୍ରକାଶଙ୍କ ଶିକ୍ଷା ତା ଜୀବନ ସହିତ ଓତଃପ୍ରୋତ ଭାବରେ ମିଶିଯାଇଛି । ସେ ପୁଣି କହିଲା, 'ଦିଇଟା କଥା ଦେଖ । ପ୍ରଥମ, ବସୁଦେବ ଓ ଦେବକୀ । ଗତ ଏତେ ବର୍ଷ ହେଲା କି ଅକଥନୀୟ ଯନ୍ତ୍ରଣା ତାଙ୍କୁ ଦିଆ ନ ଯାଉଛି । ବନ୍ଦୀ କରି ରଖାଯାଇଛି । ଟିକେ ହେଲେ କୁଆଡ଼େ

ଯିବାର ଉପାୟ ନାହିଁ । ତା ଠଉଁ ବଡ଼ କଥା ହେଲା ତାଙ୍କ ଆଖି ସାମନାରୁ ଛୁଆଗୁଡ଼ାଙ୍କୁ ନେଇ ମାରି ଦିଆଯାଉଛି । ଭଗବାନ ଏ ପ୍ରକାର ଯନ୍ତ୍ରଣା ଯେପରି ଆଉ କାହାକୁ ନ ଦିଅନ୍ତି ! କିନ୍ତୁ ସେ ଅଛନ୍ତି । ତାଙ୍କର ଧୈର୍ଯ୍ୟ ଓ ଦମ୍ଭ ଯେ ଖାଲି ତାଙ୍କୁ ବଂଚେଇ ରଖିଛି ତା' ନୁହେଁ, ଆମ ସମସ୍ତଙ୍କୁ ବଂଚେଇ ରଖିଛି । ଦ୍ୱିତୀୟରେ, କଂସର ଘୋଷଣା କଥା ଭାବ । ସେ ନିଜେ ନିଜର ମୃତ୍ୟୁ ଘୋଷଣା କରିଦେଲା । କାହିଁକି ? କଅଣ ଦରକାର ଥିଲା ? ଏ କଅଣ ଖାଲି ତା'ପାଇଁ ଲୋକଙ୍କର ସହାନୁଭୂତି ଆଣିବା ପାଇଁ? ତାର ମତଲବ ଯାହା ଥାଉ, ତା ମନ ଭିତରେ ଯାଦବମାନଙ୍କ ପ୍ରତି ଗୋଟାଏ ଭୟ ରହିଛି ଏଥିରେ ତ ଭୁଲ୍ ନାହିଁ। ଏ ଭୟର ମୂଳ କେଉଁଠି ? ସେ ବୁଝୁଛି ସେ ଯାହା କରୁଛି ସେ ଅନ୍ୟାୟ, ଅସାଧୁ, ଅଧର୍ମ । ଏଇଟା ହିଁ ତା ଭୟର ମୂଳ । ଏଇଟା ହିଁ ଆମର ଶକ୍ତି ।' ଅରିନ୍ଦମ ପୁଣି ଚୁପ କରିଗଲା ଓ ବଂଧୁମାନଙ୍କୁ ଚାହିଁ ହସିଲା । କହିଲା, 'ଦେଖ, ମୁଁ ଏସବୁ କହୁଛି ବୋଲି କିଛି ଭାବନା, କଂସ ଯିବ, ଆଜି ନ ହେଲେ କାଲି । ଆଉ ଏଇ ଦେବକୀର ଅଷ୍ଟମ ଗର୍ଭରୁ ହିଁ ସେ ଯିବାଟା ଆରମ୍ଭ ।'

'ତା ହେଲେ ଖାଲି ଏ ଅଷ୍ଟମ ଗର୍ଭ କଥା କାହିଁକି ? ଏ ତ ଭଗବାନଙ୍କର ଦୟା ।' କହିଲା ଅନୁରାଗ ।

'ହଁ, ଭଗବାନଙ୍କ ଦୟା', କହିଲା ଅରିନ୍ଦମ, 'ତୁ ମୋ ମନର କଥା ଛଡ଼େଇ ନେଲୁ ଅନୁରାଗ । ଦେବକୀର ଅଷ୍ଟମ ଗର୍ଭ ଆମ ସମସ୍ତଙ୍କର ଧୈର୍ଯ୍ୟ, ଦମ୍ଭ, ସାହସର ଗର୍ଭ ।'

ଖିଆ ସରିଯାଇ ଥିଲା । ସମସ୍ତେ ଉଠିଲେ । ମୁହଁ ଧୁଆଧୋଇ କଲେ । ଅନୁଦାର ପାଟି କରି କହିଲା, 'ଭାଉଜ, ତୁମେ ଅଛ ବୋଲି ଆଜି ଏ ବଢ଼ିଆ ବଢ଼ିଆ ଖାଇବାକୁ ମିଳିଲା । ଏ ଅନୁରାଗଟା ମହା କଂଜୁସ । ବହୁତ ଧନ୍ୟବାଦ ।'

ଅନୁରାଗ କହିଲା, 'ଠିକ୍ ଠିକ୍ । ସେ ଅଛନ୍ତି ବୋଲି ମୁଁ ବି ଖାଇବାକୁ ପାଉଛି । କିନ୍ତୁ ସେଥିପାଇଁ, ବୁଝିଲୁ, ମତେ ବେଶ୍ ପରିଶ୍ରମ କରିବାକୁ ପଡ଼େ ।'

ଅନୁରାଗର ସ୍ତ୍ରୀ ସୁହାସିନୀ କିଛି କହିଲେ ନି । ହସି କରି ଚାଲିଗଲେ ।

ଦି ପହର ଟପି ଯାଇଥିଲା । ଆକାଶରେ ମେଘ ଥିଲେ ବି, ବର୍ଷା ନ ଥିଲା । ଦିନଟା ମୋଟାମୋଟି ପରିଷ୍କାର ଓ ଉଜ୍ଜ୍ୱଳ ଥିଲା । ଅନୁରାଗ କହିଲା, 'ଅରିନ୍ଦମ, ତୁମେ ତ ବୁଲି ବୁଲି ଲୋକଙ୍କର ମତାମତ ସଂଗ୍ରହ କରୁଛ । ମୁଁ ଭାବୁଛି ତୁମର ମଂଜୁନାଥ ପାଖକୁ ଯିବା ଦରକାର ।' ଅନୁଦାର କହିଲା, 'ହା...ହା....ଖାଲି ମଂଜୁନାଥ କାହିଁକି ? ଜୟଦେବ ପାଖକୁ ବି ଯିବା ଦରକାର । ତା ହେଲେ ଆଜିର ପରିଶ୍ରମର ମୁଣ୍ଡି ମରିବ ।'

ଅରିନ୍ଦମ କହିଲା, 'ଦେଖ ଏ ଯେଉଁ ଦୁଇଜଣଙ୍କ କଥା କହୁଛ ସେମାନଙ୍କ ପାଖକୁ ଯିବାରେ ଆମର ଆପତ୍ତି ନାହିଁ । ତେବେ ସେମାନଙ୍କ ପାଖରୁ ଆମେ ଅଧିକା କଅଣ ପାଇବା ? ସେମାନଙ୍କ ମତାମତ ତ ଜଣାଶୁଣା । ଜଣେ କଂସର ଘୋର ବିରୋଧୀ, ଆଉ ଜଣେ କଂସର ସପକ୍ଷବାଦୀ, କଂସ ତା ପାଇଁ ଦେବତାପରି ।'

'ତା ଠିକ୍ । କିନ୍ତୁ ଆଜି ଯେତେବେଳେ ନିର୍ଦ୍ଦିଷ୍ଟ ଭାବରେ କିଛି ଘଟଣା ଘଟିବାକୁ ଯାଉଛି, ସେମାନେ ନିର୍ଦ୍ଦିଷ୍ଟ ଭାବରେ ସେମାନଙ୍କର କଥା କହନ୍ତୁ', କହିଲା ଅନୁରାଗ ।

ଅରିନ୍ଦମ ଟିକେ ଭାବିଲା। କହିଲା, 'ଠିକ୍ ଅଛି । କିନ୍ତୁ ଅନୁଦାର, ଅନୁରାଗ ତୁମେ ଉଭୟ ଆମ ସାଙ୍ଗରେ ଯିବ । ସମୟ ବେଶି ନାହିଁ । ସଂଧ୍ୟା ସଂଧ୍ୟା ଆମକୁ ଫେରିବାକୁ ହେବ ।'

'ସମୟ ବହୁତ ଅଛି । ଚାଲ', ଅନୁରାଗ କହିଲା । ସେମାନେ ଯେଉଁ ମହଲାରେ ଥିଲେ ସେଠାରୁ ମଂଜୁନାଥ ଓ ଜୟଦେବ ରହୁଥିବା ମହଲା ବେଶ୍ ଦୂର, ମଥୁରାର ପଶ୍ଚିମ ଅଂଚଳରେ, ପୁରୁଣା ବସତି ଅଂଚଳ । ଅରିନ୍ଦମ ସେ ଅଂଚଳ ସହିତ ପରିଚିତ । ସେହି ଅଂଚଳକୁ ଯାଇଛି । କିନ୍ତୁ ସେ ଅନ୍ୟ କାରଣରୁ, ବିଶେଷ କରି ସୌରଦେବଙ୍କ ପାଖକୁ । ଭାବିଲା ଆଜି ହୁଏତ ସୌରଦେବ ଘରେ ଥାଇ ପାରନ୍ତି । ସେ ଆକାଶକୁ ଚାହିଁଲା । ତାର ଖିଆଲ ହେଲା ନାଁ ସେ ଘରେ ନ ଥିବେ । ଆଜିକାର ଯୋଜନା ଅନୁଯାୟୀ ସେ ଗୋପ ଚାଲିଯିବେଣି ।

ସେମାନେ ଯାଉଁ ଯାଉଁ ଅରିନ୍ଦମ ଅନୁରାଗକୁ ଚାହିଁଲା, କହିଲ. 'ଅନୁରାଗ, ମୁଁ ଉଭୟ ମଂଜୁନାଥ ଓ ଜୟଦେବଙ୍କୁ ଜାଣେ । ମଂଜୁନାଥକୁ ମତେ ଭଲ ଲାଗେନା । ସେ ଯେମିତି ପାଣି ଛଡ଼େଇଲା ପରି କଂସକୁ ଟେକାଟେକି କରେ ତାକୁ ସହ୍ୟ କରି ହେବନି । ତା ଆଖିରେ କଂସ ଦେବତା । ସେ ଯାହା କରେ ସବୁ ଠିକ୍ ।'

'କଂସ ପାଖରୁ ଟଙ୍କା ପଇସା ପାଏ ବୋଧେ ।' କହିଲା ଅନୁଦାର । 'ହେଇଥିବ', କହିଲା ଅରିନ୍ଦମ, 'କଂସ ମଥୁରାର ବହୁ ଲୋକଙ୍କୁ ଟଙ୍କା ପଇସା ଦେଇ ପୋଷି କରି ରଖିଛି । ଏ ସେମିତି ଜଣେ ହେଇଥିବ ।'

'ଟଙ୍କା ପଇସା କଥା ତ ବୁଝି ହଉଛି ।' କହିଲା ଅନୁରାଗ, 'କିନ୍ତୁ କିଛି ଲୋକଙ୍କର ପ୍ରକୃତି ବି ସେଇଆ । ଯାହା ହାତରେ କ୍ଷମତା ରହିଲା ତାକୁ ଖୋସାମଦ୍ କରିବା । ଏ ମଂଜୁନାଥ ମୋର ମନେହୁଏ ସେହିପରି ଲୋକ ।'

'ଏମିତି କିଛି ଲୋକ ସବୁଆଡ଼େ ସବୁ ସମୟରେ ରହିବେ ଅନୁରାଗ ।' କହିଲା ଅରିନ୍ଦମ । 'ମଥୁରାରେ ତ ମୋ ଜାଣିବାରେ ସେହିପରି ଅନେକ ଲୋକ


Digitized by srujanika@gmail.com

ଅଛନ୍ତି । ଏ ଖାଲି କ୍ଷମତା କଥା ନୁହେଁ । ଖୋସାମତ କରିବା ଗୋଟାଏ ପ୍ରବୃତ୍ତି । କିଛି ଉଦ୍ଦେଶ୍ୟ ନ ଥାଇ ମଧ୍ୟ ଲୋକ ଖୋସାମତି କରେ ।'

'ଲାଭର ମତଲବ ବି ଅଛି', କହିଲା ଅନୁଦାର ।

'ତା ତ ନିଶ୍ଚୟ ରହିବ', କହିଲା ଅରିନ୍ଦମ, 'ଖୋସାମତି କିଏ ଭଲ ନ ପାଏ ? ଆଉ କଂସ ପରି ଲୋକ ତ ଖୋସାମତି ଖୋଜି ବୁଲୁଛି ।'

'ଦେବକୀର ଛୁଆଟାକୁ କଂସ ମାରି ଦେଲାପରେ କିଛି ଲୋକ ତ ଖୁସି ହୋଇ କଂସକୁ ଟେକାଟେକି କରି କହି ବୁଲୁଥିଲେ । ମୁଁ ଶୁଣିଛି ଏ ମଂଜୁନାଥ ତା ଭିତରୁ ଜଣେ।' କହିଲା ଦେବପ୍ରିୟ, 'ଲୋକଟାର କଥାବାର୍ତ୍ତା କିନ୍ତୁ ବେଶ୍ ଚିକ୍କଣ' ।

ସେମାନେ ମଂଜୁନାଥ ଘରେ ପହଞ୍ଚିଲା ବେଳକୁ ସେ ଦି ପହର ଖିଆପିଆ ସାରି ନିଜ ଘର ପିଣ୍ଡାରେ ବସି କାହା ସାଙ୍ଗରେ ଗପସପ କରୁଥିଲା । ଏମାନଙ୍କୁ ଦେଖି ଉଠି ଛିଡାହେଲା – 'ଆରେ, ଆରେ, ଅଦିନ ମାଇଁ ! ତୁମେ ସବୁ ଏତେବେଳେ କୁଆଡ଼େ ?' ଅରିନ୍ଦମ ଟିକେ ବୁଲେଇ କରି କହିଲା – 'ନାଇଁ, ଆମେ ଏ ପାଖକୁ ଗୋଟାଏ ଘରୋଇ ସଭାକୁ ଆସିଥିଲୁ । ତୁମ ସାଙ୍ଗରେ ଅନେକ ଦିନ ହେଲା ଦେଖା ହୋଇନି । ଭାବିଲୁ ଦେଖାକରି ଯିବା ।'

"ଖୁବ୍ ଭଲ କଲ । ଆସ ଆସ, ଅରିନ୍ଦମ, ମୁଁ ତୁମ କଥା ଭାବୁଥିଲି । ଆସ ।' କହିଲା ମଂଜୁନାଥ ।

ସେମାନେ ସମସ୍ତେ ପିଣ୍ଡା ଉପରକୁ ଉଠି ବିଛାହୋଇଥିବା ସପରେ ବସିଲେ । ମଂଜୁନାଥ ପ୍ରଥମେ କଥା ଉଠେଇଲା – 'ଅରିନ୍ଦମ, ତୁମେ ତ ମଥୁରାର ବହୁତ ଆଡକୁ ଯାଅ । ବହୁତ ଲୋକଙ୍କ ସହିତ ଚିହ୍ନା ପରିଚୟ । ମୁଁ ଶୁଣୁଛି ଆଜି କୁଆଡ଼େ ଦେବକୀର ପିଲା ହବ । ସତ କି ?'

"ମୁଁ ବି ସେଇକଥା ଶୁଣୁଚି', କହିଲା ଅରିନ୍ଦମ, 'ତେବେ ତାଳ ପାଚିଲେ କାଉର କି ଯାଏ । ଏ ସେଇକଥା । ସେ ଛୁଆଟା କଂସ ହାତରୁ ବଂଚିଲେ ତ ।'

ମଂଜୁନାଥ ସାଙ୍ଗେ ସାଙ୍ଗେ କିଛି ନ କହି କଅଣ ଭାବିଲା। ତା'ପରେ କହିଲା, 'ଅରିନ୍ଦମ, ତୁମେ ଯାହା କହୁଚ ଠିକ୍ । ସେ ଦେବକୀର ଅନ୍ୟ ଛୁଆଗୁଡ଼ାକ ମାରିଛି, ଆଜିର ଏ ଛୁଆଟାକୁ ଯେ ଛାଡିଦେବ ତାର କିଛି ସମ୍ଭାବନା ନାହିଁ । ଏ ଛୁଆଟାକୁ ବି ମାରିଦେବ । କିନ୍ତୁ... ' ମଂଜୁନାଥ ଟିକେ ରହିଗଲା, ଓ ପୁଣି କହିଲା, 'ତେବେ ଆଉ ଗୋଟାଏ ପାଖ କଥା ଅଛି । କଂସ ଯେ ଛୁଆଗୁଡ଼ାକୁ ଏପରି ନିଷ୍ଠୁର ଭାବରେ ମାରି ଦଉଛି, କାହିଁକି ? ତା ପ୍ରକୃତି ତ ଏତେ ନିଷ୍ଠୁର ନୁହେଁ । ତାର ଦୟାମାୟା ଅଛି। ମଥୁରା ଲୋକେ କିପରି ଭଲରେ ରହିବେ ତାର ସବୁବେଳେ ସେଇ ଚିନ୍ତା ।'

ଅନୁଦାର କଅଣ କହିବାକୁ ଯାଉଥିଲା, ଅନୁରାଗ ତାର ହାତରେ ହାତ ଦେଇ ତାକୁ ବନ୍ଦ କରିଦେଲା ଓ ନିଜେ କହିଲା, 'ମଂଜୁନାଥ, କଂସର ଦୟାମାୟା ଅଛି କଥାଟା ଯେ କହିଲ, ତୁମେ ଯାହା ଭାବ, ସହଜେ ବିଶ୍ୱାସ ହେଉନାହିଁ ।' 'ନା, ସହଜେ ବିଶ୍ୱାସ ନ ହେବା କଥା ।' କହିଲା ମଂଜୁନାଥ ।' 'କିନ୍ତୁ ବିଶ୍ୱାସ କର ସେଇଟାହିଁ ସତ । ମଥୁରାର ଲୋକଙ୍କର କେମିତି ଆହୁରି ଭଲ ଆହୁରି ଭଲ ହେବ, ମଥୁରା କେମିତି ସାରା ଆର୍ଯ୍ୟାବର୍ତ୍ତରେ ଶ୍ରେଷ୍ଠ ରାଜ୍ୟ ହୋଇ ବାହାରିବ ସେ ସେକଥା ସବୁବେଳେ କହେ । ସେଇଯୋଗୁଁ ସେ ରାଜ୍ୟ ଜୟ କରିବାକୁ ଯାଏ, ସମ୍ରାଟ ଜରାସନ୍ଧଙ୍କ ସାଙ୍ଗରେ ତାର ବଂଧୁତ୍ୱ ସେଇଯୋଗୁଁ । ଏପରିକି ମୁଁ ଶୁଣିଲି ହସ୍ତିନାପୁରର ଭୀଷ୍ମ ବି ତା ସହିତ ବଂଧୁତା କରିବାକୁ ଚାହାନ୍ତି ।'

ଅରିନ୍ଦମ କହିଲା, 'ମଂଜୁନାଥ, ଏସବୁ ତ ଗହନ ରାଜନୀତି କଥା । ଆମେ ବା କଅଣ ବୁଝିବା । ତେବେ ଗୋଟାଏ କଥା ମୁଁ କହେ, ତୁମେ ବି ଦେଖୁଥିବ, ମଥୁରାରେ କେହି ଭଲରେ ନାହାନ୍ତି । ନାଁ ନାଁ, ମୋତେ ଭୁଲ ବୁଝନା । ମଥୁରାର ଲୋକମାନେ ଯେ କଂସ ଯୋଗୁଁ ଭଲରେ ନାହାନ୍ତି ସେକଥା ମୁଁ କହୁନି । କିନ୍ତୁ ସେମାନେ ଭଲରେ ନାହାନ୍ତି । କାରଣ ଯାହା ହେଉ । ଯୁଆଡ଼େ ଯିବ ସବୁଆଡ଼େ ଖାଲି ଗୋଟାଏ ଭୀତତ୍ରସ୍ତ ଭାବ – ଭୟ, ସବୁ କଥାରେ ଭୟ । କେହି ଖୋଲାଖୋଲି ମନକଥା କହିବାକୁ ଚାହାନ୍ତି ନାହିଁ । କାଲେ କଅଣ ଘଟିଯିବ, ଏମିତି ଗୋଟାଏ ଅନିଶ୍ଚିତ ଭାବ । କଂସ ରାଜା । ଲୋକଙ୍କ ମନରୁ ଏ ଭୟଟା ବାହାର କରିବା କଅଣ ତା'ର କାମ ନୁହେଁ ?

'ହଁ, ନିଶ୍ଚୟ', କହିଲା ମଂଜୁନାଥ, 'ଏତେ ସୈନ୍ୟବଳ, ଅପର୍ଯ୍ୟାପ୍ତ ଟଙ୍କା ପଇସା, ପ୍ରବଳ କ୍ଷମତା ଏସବୁ ଥାଉ ଥାଉ ଯଦି ଲୋକଙ୍କ ମନରୁ ଭୟ ନ ଛାଡ଼ିଲା, ତା ହେଲେ ଏ କି ରାଜା । ଠିକ୍ କଥା ଅରିନ୍ଦମ ।'

'ସୈନ୍ୟ, ଅର୍ଥ, କ୍ଷମତା ବଡ଼ କଥା ନୁହେଁ ମଂଜୁନାଥ । ବଡ଼ କଥା ହେଲା ଏସବୁ କିପରି ବ୍ୟବହାର ହେଉଛି ।' କହିଲା ଅରିନ୍ଦମ, 'କଂସ ପ୍ରଥମ ରାଜା ନୁହେଁ, କି ଶେଷ ରାଜା ବି ନୁହେଁ । ଆମର ଏହି ଦେଶରେ ବହୁ ବହୁ ପ୍ରସିଦ୍ଧ ରାଜା ଆସିଛନ୍ତି ଯାଇଛନ୍ତି । ତୁମେ ହସ୍ତିନାର ଭୀଷ୍ମଙ୍କ କଥା କହୁଥିଲ, ପାଞ୍ଚାଳର ଦ୍ରୁପଦଙ୍କ କଥା ଭାବ । ଏମାନଙ୍କର ଅଖଣ୍ଡ କ୍ଷମତା, ସମ୍ରାଟ ଜରାସନ୍ଧଙ୍କର ବି ଅଖଣ୍ଡ କ୍ଷମତା । କିନ୍ତୁ ଲୋକେ ଭୀଷ୍ମ ବା ଦ୍ରୁପଦଙ୍କୁ ସ୍ନେହ କରନ୍ତି, ସମ୍ମାନ କରନ୍ତି, ସେମାନଙ୍କୁ ନିଜ ଲୋକ ବୋଲି ଭାବନ୍ତି । କିନ୍ତୁ ସମ୍ରାଟ ଜରାସନ୍ଧଙ୍କୁ ତା ଭାବନ୍ତି ନାହିଁ । କାହିଁକି ? ଆମର କଂସଙ୍କ ପ୍ରତି ଶ୍ରଦ୍ଧା ଅଛି, ସମ୍ମାନ ଅଛି । ସେ ତରୁଣ ଲୋକ, ଆମର ଇଚ୍ଛା ସେ


Digitized by srujanika@gmail.com

ଆର୍ଯ୍ୟାବର୍ତ୍ତର ଜଣେ ପ୍ରସିଦ୍ଧ ରାଜା ହୁଅନ୍ତୁ । କିନ୍ତୁ ସମ୍ରାଟ ଜରାସନ୍ଧଙ୍କ ପରି ନୁହେଁ, ଭୀଷ୍ମ ବା ଦ୍ରୁପଦଙ୍କ ପରି । ଟିକେ ନୀତି, ନିଷ୍ଠା, ଧର୍ମ ରହୁ ।'

ଅନୁଦାର କହି ଉଠିଲା, 'ଆରେ ମଂଜୁନାଥ, ଛାଡ, ଛାଡ । ତୁମେ ଅରିନ୍ଦମ କଥା ଶୁଣ ନା । ତାର ସବୁଦିନେ ସେମିତି କଥା । ବାପର ପୁଅ ତ । ନୀତି, ନିଷ୍ଠା, ଧର୍ମ - ଏ ସବୁଥିରେ କ'ଣ ରାଜ୍ୟ ଚାଲେ ? ଏ ପୁରୁଣା କଥା ହୋଇଗଲାଣି । ବର୍ତ୍ତମାନ ଅଚଳନ୍ତି । ଆଉ ସମ୍ରାଟ ଜରାସନ୍ଧଙ୍କ କଥାରେ କଂସ ଚାଲିବ ନାହିଁ, ଚାଲିବ ଭୀଷ୍ମ ଓ ଦ୍ରୁପଦଙ୍କ କଥାରେ ? ଆରେ, ଆରେ, ଏ ତ ଘର ଭିତରେ କଳି ଉର୍ତ୍ତି କରିବା କଥା । କି ହୋ, ସମ୍ରାଟ ଜରାସନ୍ଧ କଂସର ଶଶୁର । ସେ ତାଙ୍କ କଥା ଶୁଣିବନି କ'ଣ ତମ ଆମ କଥା ଶୁଣିବ । ଅରିନ୍ଦମ ତ ବିଭା ହୋଇନି । ସେ ଶଶୁରର ମହତ୍ତ୍ୱ କଅଣ ବୁଝିବ ?'

ମଂଜୁନାଥ କହିଲା, 'ନାଇଁ ଅନୁଦାର, ଅରିନ୍ଦମ ଖରାପ କଥା କହୁନି । ମୁଁ ବି ଅନେକ ସମୟରେ ସେଇ କଥା ଭାବେ । କଂସର ଯାହା ଯୋଗ୍ୟତା ଅଛି ସେ ଯେ ଆର୍ଯ୍ୟାବର୍ତ୍ତର ଜଣେ ପ୍ରସିଦ୍ଧ ରାଜା ହୋଇପାରିବ ନିଶ୍ଚୟ । ମୋର ସନ୍ଦେହ ସେ ଠିକ୍ ଉପଦେଶ ପାଉନି । କିଛି ଲୋକ ତା ପାଖରେ ରହି, କାନରେ କହି, ଏ ଆଡୁ ସେ ଆଡୁ ଖରାପ କଥା କରିବାକୁ ଶିଖଉଛନ୍ତି । ମୁଁ ଜାଣେ କଂସ ଏତେ ଖରାପ ନୁହେଁ । ତାର ଇଚ୍ଛା ମଥୁରାର ଭଲ ହେଉ, ମଥୁରାର ଲୋକେ ଭଲରେ ରହନ୍ତୁ ।'

ଅରିନ୍ଦମ ଉଠି ଛିଡ଼ା ହେଲା । କହିଲା, 'ମଂଜୁନାଥ, ଆମେ ଯାଉ, ବହୁତ ସମୟ ହେଲାଣି । ଅନ୍ୟ କାମ ଅଛି । ଆଜି ଗୋଟାଏ ବଡ଼ ଘଟଣା ଘଟିବାକୁ ଯାଉଛି । ସେଇଟା ଆମ ସମସ୍ତଙ୍କୁ ବିଚଳିତ କରୁଛି । ଦେବକୀଙ୍କର ସବୁ ଛୁଆଯାକ ତ ଗଲେ, ଅନ୍ତତଃ ଏଇ ଛୁଆଟା ବଂଚି ରହୁ । ଆଉ ଛୁଆ ହବ କି ନାହିଁ କିଏ ଜାଣେ । ଭାବି ଦେଖ, ଯଦି କିଛି କରି ପାର । କଂସ ସାଙ୍ଗରେ ତ ତୁମର ସଂପର୍କ ଅଛି ।'

ସେମାନେ ସମସ୍ତେ ପିଣ୍ଡା ତଳକୁ ଓହ୍ଲାଇ ଆସିଲେ । ଓହ୍ଲାଉ ଓହ୍ଲାଉ ମଂଜୁନାଥ ପଚାରିଲା, 'ଅରିନ୍ଦମ, ତୁମେ ପ୍ରଦ୍ୟୋତକୁ ଜାଣ ତ ?'

'ଜାଣେ ?' ଅରିନ୍ଦମ କହିଲା ।

'ତାକୁ କିଛି କହିବକି ? କଂସ ତା କଥା ବହୁତ ଶୁଣେ ।' କହିଲା ମଂଜୁନାଥ । 'ନାଁ', ଅରିନ୍ଦମ ସଂକ୍ଷେପରେ ଉତ୍ତର ଦେଲା, 'ଦେଖ, ତୁମେ ଯଦି କିଛି କରି ପାରିବ କର । ଆଜି ଦେବକୀଙ୍କର ଛୁଆଟାକୁ ଛାଡିଦେଲେ ଖୁବ୍ ଭଲ ହୁଅନ୍ତା ।'

ବାଟରେ ଯାଉଁ ଯାଉଁ ଅନୁଦାର କହିଲା, 'ଅରିନ୍ଦମ, ଆଜି ତ ମଂଜୁନାଥ କିଛି


Digitized by srujanika@gmail.com

ଅଲଗା ଢଙ୍ଗରେ କଥା କହିଲା ।'

'କିଛି ଅଲଗା ନାହିଁ', କହିଲା ଅରିନ୍ଦମ, 'ଟିକିଏ ବେଶି ସାବଧାନରେ କହିଲା । ଆମେ ଚାରିଜଣ ଥିଲେ ନା ସେହି ଯୋଗୁଁ । ସେ ଜାଣେ ଆମ୍ଭେମାନେ କେହି କଂସକୁ ପସନ୍ଦ କରୁ ନା । ତା'ଛଡ଼ା ଆଜି ଦେବକୀର ଛୁଆଟାର କଅଣ ହେବ ସେ ବିଷୟରେ ସେ ନିଶ୍ଚିତ ନୁହେଁ । ଯଦି ଛୁଆଟା କୌଣସି ଉପାୟରେ ରହିଯାଏ, ତା ପରେ ? ଏହି ଛୁଆଟା କଂସକୁ ମାରିବ ବୋଲି ତ ଶୂନ୍ୟବାଣୀ ହୋଇଥିଲା । ସେଇଠୁ ତ ସବୁ ଗୋଳମାଳର ଆରମ୍ଭ ।'

'ସତେ ଅରିନ୍ଦମ, ଛୁଆଟା ଯଦି ରହିଯାଏ କଅଣ ହେବ ?' କହିଲା ଅନୁରାଗ । 'କଂସ ମରିବ', କହିଲା ଅରିନ୍ଦମ, 'ଆଜି ନ ହେଲେ କାଲି । ମରିବ ନିଶ୍ଚିତ । ଶୂନ୍ୟବାଣୀର ବନ୍ଦୋବସ୍ତ କରି କଂସ ନିଜେ ନିଜର ଫାଶରେ ପଡିଯାଇଛି ।'

ଦେବପ୍ରିୟ କହିଲା, 'ଜୟଦେବ ପାଖକୁ ଯିବା ।'

'ହଁ, ଚାଲ', ଅରିନ୍ଦମ କହିଲା ।

ସମସ୍ତେ ଜୟଦେବ ମହଲାକୁ ପଶିଲେ ।

ଜୟଦେବ ଘର ମଥୁରାର ଗୋଟିଏ ସ୍ୱଚ୍ଛଳ ଅଞ୍ଚଳରେ । ରାସ୍ତାଗୁଡ଼ିକ ଚୌଡ଼ା ଚୌଡ଼ା, ପରିଷ୍କାର, ପ୍ରତ୍ୟେକ ଘର ସାଙ୍ଗରେ ଲାଗି ଲାଗି ଛୋଟ ବଡ଼ ବଗିଚା । ଘରଗୁଡ଼ିକ ମଧ୍ୟ ସୁନ୍ଦର, ସୁନ୍ଦର । ଦେଖିଲେ ମନେ ହେବ ଏ ମଥୁରାର ଗୋଟିଏ ବିଶିଷ୍ଟ ଅଞ୍ଚଳ, ବା ଏ ଅଞ୍ଚଳରେ ବିଶିଷ୍ଟ ଲୋକମାନେ ରହନ୍ତି । ବେଶୀ ବାଟ ଯିବାକୁ ପଡିଲାନି । ଗୋଟିଏ ମଝିଲା ଗଢ଼ଣର ଘରର ସାମନା ବଗିଚାରେ ଜୟଦେବ କଅଣ କାମ କରୁଥିଲା । ଏମାନଙ୍କୁ ଦେଖି ଖୁସିରେ ବଗିଚାର ଫାଟକ ଖୋଲି ବାହାରକୁ ବାହାରି ଆସିଲା । କହିଲା, "ଆରେ ଆରେ, ଆସ, ଆସ, ଏ ଦି ପହରେ କୁଆଡ଼େ ?'

'କୁଆଡ଼େ ମାନେ', କହିଲା ଅନୁଦାର 'ତୁମ ଆଡ଼େ ।'

'ଚୁପ ଚୁପ', କହିଲା ଜୟଦେବ । 'ମୁଁ ବୁଝି ପାରୁଛି ଅରିନ୍ଦମ ତୁମ ସମସ୍ତଙ୍କୁ ସାଙ୍ଗରେ ଧରି ଆସିଛି । ନିଶ୍ଚୟ ଗୋଟାଏ କିଛି ମତଲବ ଅଛି ।'

'କଂସ ରାଜ୍ୟରେ ମତଲବ ନ ଥାଇ କିଛି କାମ ହୁଏକି ?' ପଚାରିଲା ଅନୁରାଗ ।

'ନାଁ, ହୁଏନା', କହିଲା ଜୟଦେବ, 'କିନ୍ତୁ ତୁମେ ନିଶ୍ଚୟ କଂସର ମତଲବ ବିଷୟରେ ମତେ କହିବାକୁ ଆସିନା ।

'ଭୁଲ୍' 'କହିଲା ଅରିନ୍ଦମ, 'ଆମେ କଂସର ମତଲବ ବିଷୟରେ ହିଁ ତୁମକୁ


Digitized by srujanika@gmail.com

କହିବାକୁ ଆସିଛୁ । ଦେବକୀ ବିଷୟରେ କିଛି ଶୁଣିନା ?'

'ଶୁଣିଛି', କହିଲା ଜୟଦେବ, 'ଆଜି ରାତିକି ଦେବକୀର ପିଲା ହୋଇପାରେ । ଏଇଟା ହିଁ, ମୋର ମନେ ହେଉଛି, ତା'ର ପ୍ରସିଦ୍ଧ ଅଷ୍ଟମ ଗର୍ଭ ।'

'ହଁ, ଅଷ୍ଟମ ଗର୍ଭ', କହିଲା ଅନୁରାଗ, 'ଯେଉଁଥି ପାଇଁ ଏ ମୂର୍ଖ ଯଦୁବଂଶୀୟମାନେ ଅପେକ୍ଷା କରି ରହିଛନ୍ତି ।'

ଜୟଦେବ ହୋ ହୋ ହୋଇ ହସି ଉଠିଲା, କହିଲା, 'ଦେବକୀର ଅଷ୍ଟମ ଗର୍ଭ ପାଇଁ ହେଉ କି ନ ହେଉ, ଯଦୁବଂଶୀୟ ଗୁଡ଼ା ଯେ ମୂର୍ଖ ସେ ବିଷୟରେ ମୋର ସନ୍ଦେହ ନାହିଁ । ତା ନ ହୋଇଥିଲେ କଂସ ପରି ଗୋଟାଏ ଭୟଙ୍କର ବଦମାସ ଲୋକ ମଥୁରାର ରାଜା ହୋଇ ନ ଥାନ୍ତା, କି ଆମେ ତାକୁ ମୁଣ୍ଡିଆ ମାରୁ ନ ଥାନ୍ତୁ । ଆସ, ଆସ, ଭିତରକୁ ଆସ, ଏଠି ଛିଡ଼ା ହୋଇ ଗପିବା ନିରାପଦ ନୁହେଁ ।' ସମସ୍ତେ ଜୟଦେବ ଘର ଭିତରକୁ ଗଲେ ।

ଜୟଦେବର ଘର ଭିତରଟା ବି ବାହାର ପରି ସୁନ୍ଦର ଓ ପ୍ରଶସ୍ତ । ବିଶେଷ କରି ଯେଉଁ ଘରେ ସେମାନେ ବସିଲେ ତାର ସଜାସଜି ବେଶ୍ ଭଲ, ଆଖି ଟାଣି ନେଲା ପରି, ଓ ବସିବା ପାଇଁ ସୁନ୍ଦର ଆସ୍ଥାନ । ସେମାନେ ଆରାମରେ ବସିଲେ । ଅନୁଦାର କହିଲା, "ଅରିନ୍ଦମ, ଆଉ କୁଆଡ଼େ ଯିବାର ଅଛି କି ?"

'ନାଁ, ଏଇଠୁ ଫେରିବା ।' ଅରିନ୍ଦମ କହିଲା ।

'ତା ହେଲେ ଏଇଠି କିଛି ସମୟ ବସାଯାଉ ।' ଅନୁଦାର କହିଲା, 'ଜୟଦେବ, ଆମେ ତ ଅନୁରାଗ ଘରେ ପ୍ରଚୁର ଖାଇକରି ଆସିଛୁ । ଏଠି କଅଣ କରିବା ?'

'ଏଠି ପିଇବା, ଆଉ କଂସର ଶ୍ରାଦ୍ଧ କରିବା ।' କହିଲା ଜୟଦେବ । 'ବଢ଼ିଆ', କହିଲା ଅନୁଦାର, ସେ ଅରିନ୍ଦମକୁ ଚାହିଁଲା, 'ଅରିନ୍ଦମ ଠିକ୍ କି ? ଆଜି କଂସର ଶ୍ରାଦ୍ଧ ?'

'ହବା ଉଚିତ ତ', ଅରିନ୍ଦମ ଅଣ୍ଟରେ କହିଲା ।

'ଉଚିତ କଅଣ ?', ଜୟଦେବ ତେଜି ଉଠିଲା, 'ସେ ଲୋକଟା ଯେତେ ଶୀଘ୍ର ଯାଏ ସେତେ ମଂଗଳ । ଆମ ଦୁର୍ଭାଗ୍ୟ ଯେ ସେ ଆଜି ପର୍ଯ୍ୟନ୍ତ ଅଛି ।'

'ଅଛି ମାନେ', କହିଲା ଅନୁରାଗ, 'ଦେଖ, ଆଜି ରାତିରେ କଅଣ ହେଉଛି ।'

ସମସ୍ତେ କିଛି ସମୟ ଚୁପ କରିଗଲେ ।

'ସତେ ଅରିନ୍ଦମ !' କହିଲା ଜୟଦେବ, 'ଆଜି ରାତିରେ କଅଣ ହେବ ?'

'କହିବା ସହଜ ନୁହେଁ', ଅରିନ୍ଦମ ସାବଧାନରେ କହିଲା, 'ଗୋଟାଏ ଆଉ

ଦେଖିଲେ ଆଗ ଛୁଆମାନଙ୍କର ଯେଉଁ ଅବସ୍ଥା ହୋଇଥିଲା ଏ ଛୁଆଟାର ବି ସେହି ଅବସ୍ଥା ହେବ । କଂସ ମାରିଦବ । ମୋର ଯାହା ଖବର କଂସ ସେଥିପାଇଁ ପ୍ରସ୍ତୁତ ହୋଇ ରହିଛି । ମଥୁରାର ମହଲା ମହଲାରେ ସୈନ୍ୟ ଭର୍ତ୍ତି ହୋଇ ଗଲେଣି, ଯେମିତି କୋଉଠି କିଛି ଗୋଳମାଳ ନ ହୁଏ । କିନ୍ତୁ ସେଇଆ ହବ କି ? ତା ହେଲେ ଏ ଦୈବବାଣୀ ?'

'କି ଦୈବବାଣୀ ?' ଜୟଦେବର ବିରକ୍ତି ଯାଇ ନ ଥିଲା । କହିଲା 'ଏ ଦୈବବାଣୀ କଂସର ଗୋଟାଏ ବିରାଟ ଠକାମୀ । ଏଇଟା କଅଣ ବୁଝିବାକୁ ବାକି ଅଛି । ଆମେ ମଥୁରାର ଲୋକମାନେ ମଲାଙ୍କ ପରି ଅଛୁ । ଯାହା ଆମେ କରିବା କଥା ନ କରି ଭାବୁଛୁ ଦୈବବାଣୀ କରିଦେବ । କରୁ, ମୁଁ ତ ସବୁଠୁ ବେଶୀ ଖୁସି ହେବି ।'

'ଜୟଦେବ ଯାହା କହୁଛି ଭୁଲ୍ କହୁନି', କହିଲା ଅନୁରାଗ, 'ଦେବକୀର ପିଲା ହେଲେ କଅଣ ହେବ ? ସେ ରକ୍ଷାକର୍ତ୍ତା ହେବ କିନା ? ଏ ଗୁଡ଼ା ତୁଚ୍ଛା କଥା । ଯା ହବାର ହଉ । ମୁଣ୍ଡ ଖରାପ କରିବା ଦରକାର ନାହିଁ । ବଡ଼ କଥା ହେଲା ଆମର ଏ ଯଦୁବଂଶ ଆର୍ଯ୍ୟାବର୍ତ୍ତର ଗୋଟାଏ ପୁରୁଣା ବଂଶ, ଆମର ମାନ ସମ୍ମାନ ଅଛି । ଅନ୍ୟ ବଂଶମାନେ ଆମକୁ ମାନନ୍ତି, ଇର୍ଷା କରନ୍ତି । ସେଠି ଗୋଟାଏ ଲୋକ ଆସି ସାରା ଜାତିଟାକୁ ଲଣ୍ଡଭଣ୍ଡ କରିଦେଲା । ଆଉ ଆମେ ସମସ୍ତେ ହାତଗୋଡ଼ ଜାକି ଧାର୍ମିକ ଲୋକପରି ବସି ରହିଲେ । ଏଇଟା ହିଁ ଦୁଃଖର କଥା ।'

ଅରିନ୍ଦମ ହସିଲା । କହିଲା, 'ଆମେ ବସି ରହିଚେ କି ? ଆମେ ଯେ ସେ ବିଷୟରେ ଆଲୋଚନା କରୁଛେ, ମତାମତ ଦେଇପାରୁଛେ, ଏଇଟା ହିଁ କ'ଣ ଆମର ପ୍ରତିବାଦ ନୁହେଁ ?'

'ହଁ, ପ୍ରତିବାଦ ନିଶ୍ଚୟ', କହିଲା ଅନୁରାଗ, 'କିନ୍ତୁ ଏ ପ୍ରତିବାଦ ଆଉ ଟିକିଏ ଜୋରଦାର ହେଲେ ଭଲ ହୁଅନ୍ତା ।'

ଭାନୁପ୍ରକାଶଙ୍କ କଥା ଅରିନ୍ଦମର ମନେ ପଡିଲା । ସେ କହନ୍ତି ପ୍ରତିବାଦର ବିଭିନ୍ନ ବାଟ ଅଛି । ସମୟ ଓ ସ୍ଥାନକୁ ଦେଖି ପ୍ରତିବାଦର ରୂପ ଠିକ୍ କରାଯାଏ । କଂସର ରାଜତ୍ୱ ଦିନେ ଶେଷ ହେବ । କିନ୍ତୁ ସେ ସମୟ ଆସିନାହିଁ । ସେଥିପାଇଁ ଅପେକ୍ଷା କରିବାକୁ ହେବ ଓ ଲୋକଙ୍କୁ ପ୍ରସ୍ତୁତ ରଖିବାକୁ ହେବ । ଆଜି ରାତି ପାଇଁ ତାଙ୍କ ଯୋଜନା ଠିକ୍ ହୋଇଯାଇଛି ସେ ଜାଣେ । ହଠାତ୍ ତାର ମନେ ପଡିଲା ତାକୁ ସଂଧ୍ୟା ଆଗରୁ ଘରକୁ ଫେରିବାକୁ ହେବ । ସଂଧ୍ୟା ପରେ ତାର ଅନ୍ୟ କାମ । ଏତେ ବର୍ଷର ଅପେକ୍ଷାର ଆଜି ଶେଷ । ଭାନୁପ୍ରକାଶ ବାରମ୍ବାର ମନେ ପକାଇ ଦେଇଛନ୍ତି ସମୟର ଯେପରି ଏ ପାଖ ସେ ପାଖ ନ ହୁଏ । ସେ ଉଠି ଛିଡ଼ାହେଲା ।

ଅନୁଦାର ପାଟି କଲା, 'କିରେ, ଉଠି ଛିଡ଼ା ହେଲୁ କାହିଁକି ? ବସ୍, ବସ୍ । ଆଜି ଏତେଦିନ ପରେ ଏକାଠି ହେଇଛେ । ଟିକେ ବସ୍ ।'

'ନାଇଁ, ଅନ୍ୟ କାମ ଅଛି', କହିଲା ଅରିନ୍ଦମ ।

'ତା ତ ଥିବ, ମୁଁ ଜାଣେ ।' କହିଲା ଅନୁଦାର, 'ଆଜି ଯେମିତି ଦେବକୀର ଛୁଆ ହେଉନି ତୋର ଛୁଆ ହେଉଚି । ସାରା ମଥୁରାଟା ତୁ ମୁଣ୍ଡେଇଚୁ ଯେମିତି । ଆରେ ଦେବକୀର ଛୁଆ ହବ, ହଉ । ସେ କଂସକୁ ମାରିବ, ମାରୁ । ତା' ଠଉଁ ଆଉ ଅଧିକା ମଜା କଅଣ ହୋଇପାରେ ।'

'ଏ ଠିକ୍ କଥା', କହିଲା ଅନୁରାଗ, 'ସେ ଛୁଆଟା ହବ କି ନାହିଁ, କଂସ ତାକୁ ମାରିବ କି ନାହିଁ, ସେ କଂସକୁ ମାରିବ କି ନାହିଁ, ଏସବୁ ବିଷୟରେ ମୁଣ୍ଡ ପୂରେଇ କି ଲାଭ ଅଛି । ଜୟଦେବ..' ସେ ଏ ଆଡ଼େ ସେ ଆଡ଼େ ଚାହିଁଲା... 'ଜୟଦେବ, ମନ୍ଦାକିନୀ କାହିଁ ?'

ଅରିନ୍ଦମ ସାମାନ୍ୟ ଚମକି ଉଠିଲା । କହିଲା, 'ମନ୍ଦାକିନୀ.... ମନ୍ଦାକିନୀ କିଏ ?' 'ଆହା ହା...' ଅନୁଦାର କହି ଉଠିଲା,... 'ମନ୍ଦାକିନୀ କିଏ ଜମା ଜାଣିଛୁ କି ?'

'ଚୋପ୍', କହିଲା ଅରିନ୍ଦମ, 'ମନ୍ଦାକିନୀକୁ ମୁଁ ତୋ ଠଉଁ ବେଶି ଜାଣେ ।'

'ମୁଁ ତ ସେଇଆ କହୁଛି,' ଅନୁଦାର ଟିକେ ଆଖି ମାରି କହିଲା, 'ଦେଖ୍, ଶେଷ ପର୍ଯ୍ୟନ୍ତ ଏ ଦେବକୀ ବସୁଦେବ ଜଂଜାଳ ଯେମିତି ନ ହୁଏ ।'

'ତୁମେ ସବୁ ଚୁପ କର', ଜୟଦେବ କହିଲା, 'ଦେବକୀ ବସୁଦେବ ଜଂଜାଳ କଅଣ ? କିଛି ଜଂଜାଳ ନାହିଁ । ଜଂଜାଳ ନ ହେଲେ ଲୋକ ଚେତିବେ ନାହିଁ । ଆମେ ତ ପାରିଲେ ନାହିଁ କି ପାରିବା ନାହିଁ । ସେ ସଇତାନଟାକୁ ଯଦି ସେ ଛୁଆଟା ମାରି ପାରିବ ତା'ଠଉଁ ଆଉ ଭଲ ଖବର କଅଣ ଅଛି ।'... ସେ ଅରିନ୍ଦମ ଆଡକୁ ବୁଲି ପଡିଲା କହିଲା, 'ଅରିନ୍ଦମ, ତୁମେ ବହୁତ ଦିନ ହେଲା ଏ ପାଖକୁ ଆସିନା । ତୁମେ ଯେଉଁ ଫୁଲ ଗଛ ଗୁଡ଼ା ଆଣି ଦେଇଥିଲ ଦେଖ କି ସୁନ୍ଦର ଫୁଲ ହେଲାଣି । ମା ତୁମ କଥା ପଚାରୁ ଥିଲେ । ମନ୍ଦାକିନୀ ବି ଦି ତିନି ଥର ପଚାରୁଥିଲା – ଅରିନ୍ଦମ ଭାଇ କାହିଁକି ଆସୁ ନାହାନ୍ତି ।'

'ତା ତ ହବ', କହିଲା ଅନୁଦାର, 'ଅରିନ୍ଦମ ଭାଇଙ୍କ ବିଷୟରେ ମନ୍ଦାକିନୀ ଭଉଣୀ ପଚାରିବେନି ଆଉ କଅଣ ତୁମେ ଆମେ ପଚାରିବା ?... ଏଇ ଦେଖ... ଭଉଣୀ ଆସିଲେ... ଭାଇ ସାବଧାନ ।'

ସମସ୍ତେ ହସି ଉଠିଲେ ।


Digitized by srujanika@gmail.com

ଗୋଟିଏ ସୁସଜ୍ଜିତ ପାତ୍ରରେ ସୁନ୍ଦର ସୁନ୍ଦର ବାଟିରେ ସରବତ ନେଇ ହସ ହସ ମୁହଁରେ ମନ୍ଦାକିନୀ ଆସିଲା । କହିଲା, 'ଅନୁଦାର ଭାଇ, ଆଜି ସରବତ ଦେଖ କେମିତି ହେଇଛି । ତୁମ ପାଇଁ ମୁଁ ବହୁତ ଯତ୍ନରେ କରିଛି ।'

'ଚୁପ ଚୁପ... ମୋ ପାଇଁ କହନା । ଆଉ ଜଣଙ୍କ ପାଇଁ...'

'ହେଲା ହେଲା', ମନ୍ଦାକିନୀ କହିଲା, 'ତୁମ ସମସ୍ତଙ୍କ ପାଇଁ....' ।

ଜୟଦେବ ପାଟି କଲା, 'ଆରେ, ସରବତ ପିଅ । ବାଜେ କଥା କାହିଁକି ଗପୁଛ ।....ମନ୍ଦାକିନୀ, ବସ୍ ।'

ମନ୍ଦାକିନୀ ବସିଲା । ସମସ୍ତେ ହସ ହସ ମୁହଁରେ ସରବତ ବାଟି ସବୁ ଉଠେଇ ନେଲେ । ଅରିନ୍ଦମ ନିଜର ବାଟିକୁ ସାମାନ୍ୟ ଉପରକୁ ଟେକି କହିଲା - 'ସେଇ ତ୍ରାଣକର୍ତ୍ତା ପାଇଁ ।...'

ସମସ୍ତେ ଏକା ସାଙ୍ଗରେ କହିଲେ... 'ସେଇ ତ୍ରାଣକର୍ତ୍ତା ପାଇଁ...'

ମନ୍ଦାକିନୀ କହିଲା, 'ଅରିନ୍ଦମ ଭାଇ, ଗୋଟାଏ କଥା ପଚାରିବି ?'

'ଗୋଟାଏ କଥା କାହିଁକି ?' ଅନୁଦାର କହିଲା, 'ତିନିଟା କଥା ପଚାର । ତୋର ସେ ଦାବୀ ଅଛି ।'

'ନାଇଁ, ମୋର ତୁମମାନଙ୍କର ପରି ଏତେ ବୁଦ୍ଧି ନାହିଁ । ମୁଁ ଗୋଟାଏ କଥା ପଚାରୁଛି ।' ମନ୍ଦାକିନୀ କହିଲା ।

'ପଚାର', ଅରିନ୍ଦମ କହିଲା ।

'ଏ ତ୍ରାଣକର୍ତ୍ତା କିଏ ? କଅଣ ତ୍ରାଣ କରିବ ?'

ସମସ୍ତେ ଚୁପ କରିଗଲେ । ଜୟଦେବ କହିଲା, 'ଅନୁଦାର, ଭଡ଼ଭଡ଼ ହେଉଥିଲୁ । ବର୍ତ୍ତମାନ ଜବାବ ଦେ ।'

'ନାଁ, ସେ କାରବାର ମୋର ନୁହେଁ, ଅରିନ୍ଦମର', କହିଲା ଅନୁଦାର, 'ମୁଁ ତା' ତାମେଦାର, ଯା କହିବ ସଇ ।'

ଅରିନ୍ଦମ କହିଲା, 'ତୋର ଗୋଟାଏ ପ୍ରଶ୍ନ ନୁହେଁ, ମନ୍ଦାକିନୀ । ଦିଇଟା ପ୍ରଶ୍ନ । ମୁଁ ପ୍ରଥମ ପ୍ରଶ୍ନର ଆଗେ ଉତ୍ତର ଦିଏ । କେହି ନୁହେଁ । ଦ୍ୱିତୀୟ ପ୍ରଶ୍ନର ଉତ୍ତର, କିଛି ତ୍ରାଣ କରିବ ନାହିଁ ।'

'ହଉ...ହଉ..' କହିଲା ଅନୁଦାର ।

'ଏ ତ ଆଶ୍ଚର୍ଯ୍ୟ କଥା ।' କହିଲା ମନ୍ଦାକିନୀ, 'ତ୍ରାଣକର୍ତ୍ତା ଯଦି କେହି ନୁହେଁ, ସେ ଯଦି କିଛି ତ୍ରାଣ କରିବ ନାହିଁ, ତେବେ ତୁମେ ସମସ୍ତେ ତୁମର ସରବତକୁ ନୈବେଦ୍ୟ ପରି ତାଙ୍କୁ ଦେଲ କାହିଁକି ?'


Digitized by srujanika@gmail.com

ଅରିନ୍ଦମ ହସିଲା । କହିଲା, 'ତୋର ଉତ୍ତର ତୁ ନିଜେ ଦେଲୁ ମନ୍ଦାକିନୀ । ମୋ ପ୍ରଶ୍ନର ଉତ୍ତର ଦେ । ନୈବେଦ୍ୟ କାହାକୁ ଦିଆଯାଏ ?'

'ଦେବତାଙ୍କୁ', କହିଲା ମନ୍ଦାକିନୀ ।

'ଦେବତା କଅଣ ମଣିଷ ?' ଅରିନ୍ଦମ ପଚାରିଲା ।

'ଦେବତା କାହିଁକି ମଣିଷ ହେବେ । ଦେବତା ଦେବତା' କହିଲା ମନ୍ଦାକିନୀ ।

'ଦେବତାଙ୍କୁ କେବେ ଦେଖିଛୁ ?' ଅରିନ୍ଦମ ପୁଣି ପଚାରିଲା ।

'କେମିତି ଦେଖିବି ।' କହିଲା ମନ୍ଦାକିନୀ ।

'ଧରି ନିଅ । ଏ ବି ଜଣେ ଦେବତା, ଯାହାଙ୍କୁ ଆମେ ନୈବେଦ୍ୟ ଦେଲୁ ।' କହିଲା ଅରିନ୍ଦମ ।

ମନ୍ଦାକିନୀ ଚୁପ କରି କଅଣ କିଛି ଭାବିଲା । ସାମାନ୍ୟ ମୁଣ୍ଡ ହଲେଇଲା । ଅନ୍ୟ ସମସ୍ତେ ଚୁପ । କହିଲା... 'ହଁ, ତା ହବ... ହେଲେ ଏ କୋଉ ଦେବତା ...ବ୍ରହ୍ମା, ବିଷ୍ଣୁ...' 'ଦେବତାର ଗୋଟାଏ ନାଁ ଦରକାର କି ?' ଅରିନ୍ଦମ, ପଚାରିଲା । ମନ୍ଦାକିନୀ ପୁଣି କଅଣ ଭାବିଲା । କହିଲା, 'ନାଁ ଦରକାର ନାହିଁ.... କିନ୍ତୁ ଆମେ ତ ସବୁବେଳେ ଗୋଟାଏ ନାଁ ଭାବି ଆସିଛେ...'

'ହଁ, ଭାବି ଆସିଛେ', ଅରିନ୍ଦମ କହିଲା, 'କେବଳ ତୁମେ ନୁହେଁ ସମସ୍ତେ । ଖାଲି ଆଜି ନୁହେଁ, କୋଉ ପୁରାକାଳରୁ, ବେଦର ଆରମ୍ଭ ସମୟରୁ, ମୁନି ଋଷିମାନେ ଦେବତାମାନଙ୍କର ନାଁ ଧରି ପ୍ରାର୍ଥନା କରି ଆସିଛନ୍ତି । ଆମେ ଆଜି ତାହିଁ କରୁଛେ ।'

'ତା ହେଲେ...' ମନ୍ଦାକିନୀ କହିଲା ।

'ତା ହେଲେ କିଛି ନାହିଁ', ଅରିନ୍ଦମ କହିଲା, 'ଦେବତା ଶୂନ୍ୟ ଦେହୀ, ତାଙ୍କର ରୂପ ନାହିଁ, ଆକୃତି ନାହିଁ, ସ୍ଥିତି ନାହିଁ । ତାଙ୍କର ସବୁଆଡ଼େ ସ୍ଥିତି, ସବୁ ଆକୃତି । ଆମେ ସେହି ଶୂନ୍ୟଦେହୀ ଦେବତାଙ୍କୁ ନୈବେଦ୍ୟ ଦେଲୁ ।'

ଜୟଦେବ ବାଧା ଦେଲା - 'ଅରିନ୍ଦମ, ମୋତେ ଟିକିଏ ଗୋଳମାଳିଆ ଲାଗୁଛି । ଆମେ ଯଦି ଶୂନ୍ୟଦେହୀ ଦେବତାଙ୍କୁ ନୈବେଦ୍ୟ ଦେଲେ ତା ହେଲେ ତ୍ରାଣକର୍ତ୍ତା କଥା କାହିଁକି କହୁଛ ? ପୁଣି କହୁଛ ତ୍ରାଣକର୍ତ୍ତା କେହି ନୁହେଁ, କିଛି ତ୍ରାଣ କରିବ ନାହିଁ । ଏ କେମିତି କଥା ?'

ମନ୍ଦାକିନୀ ପୁଣି କହିଲା - 'ଅରିନ୍ଦମ ଭାଇ, ମୁଁ ସେହିକଥା ଭାବୁଛି । ଏ ଦେବତା ଓ ତ୍ରାଣକର୍ତ୍ତା ତା ହେଲେ ଅଲଗା ଅଲଗା ?'

ଅନୁଦାର କହିଲା - 'ଦେ ବାବା ମନ୍ଦାକିନୀକୁ ଉତ୍ତର ଦେ । ଦି'ଟା ବେଠିକଣା


Digitized by srujanika@gmail.com

ବସ୍ତୁକୁ ଆଣି ଭର୍ତ୍ତି କରିଛୁ ।'

ଅନୁରାଗ ଯୋଗ ଦେଲା - 'ମୁଁ ତ ସେହିକଥା କହୁଛି । ଏ ଗୁଡ଼ା ଖାଲି ବେଠିକଣା ନୁହେଁ, ବେଫିକର ବି । ଏଥିରେ ମୁଣ୍ଡ ପୂରେଇ ଲାଭ ନାହିଁ ।'

ଅରିନ୍ଦମ କହିଲା - 'ମନ୍ଦାକିନୀ, ଆଉ ଗୋଟାଏ ପ୍ରଶ୍ନର ଉତ୍ତର ଦେ । ତୁମେ ଦେବତାମାନଙ୍କୁ ଡାକ କାହିଁକି ?'

'ଆମ ଭଲ ମନ୍ଦରେ ଡାକୁ, ଆମ ଦୁଃଖ ଅସୁବିଧାରେ ଡାକୁ' କହିଲା, ମନ୍ଦାକିନୀ ।

'ଠିକ୍', କହିଲା ଅରିନ୍ଦମ, 'ଆମ ଦୁଃଖରେ, ଆମ ବିପଦରେ, ଆମେ ଠାକୁରଙ୍କୁ ଡାକୁ, ଦେବତାମାନଙ୍କର ସାହାଯ୍ୟ ପାଇଁ ପ୍ରାର୍ଥନା କରୁ ।'

'ହଁ', କହିଲା ମନ୍ଦାକିନୀ ।'

'ବର୍ତ୍ତମାନ ମଥୁରାର ବିପଦ କଅଣ ?' ପଚାରିଲା ଅରିନ୍ଦମ ।

ମନ୍ଦାକିନୀ ଚୁପ କରିଗଲା । ଅନୁଦାର ପାଟି କଲା - 'ହେ-ହେ,... ମନ୍ଦାକିନୀ... ବିପଦ ଗୋଟାଏ... କଂସ... ମହାରାଜା କଂସ ।'

'ଏ ଠିକ୍ କଥା, ମନ୍ଦାକିନୀ', କହିଲା ଅରିନ୍ଦମ, 'ବର୍ତ୍ତମାନ ମଥୁରାର ବିପଦ ଗୋଟାଏ । କଂସ, କଂସର ରାଜତ୍ୱ, କଂସର ଅତ୍ୟାଚାର । ଏ ଆଜି ନୁହେଁ । ଗତ ଦଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ଏ ଅବସ୍ଥା ଚାଲିଛି । ଏଥିରେ ଆମେ ସମସ୍ତେ ପେଷି ହୋଇ ଗଲେଣି । ଏଥିରୁ ଯେ ଆମକୁ ଉଦ୍ଧାର କରି ପାରିବ ସେ ଆମର ତ୍ରାଣକର୍ତ୍ତା । ସେ ଦେବତା ହେଉ ବା ଯେ କେହି ହେଉ ।'

ମନ୍ଦାକିନୀ ମନରୁ ତଥାପି ସନ୍ଦେହ ଯାଇ ନ ଥାଏ । କହିଲା.. 'ଏ ହେଲା... ଯିଏ ଆମକୁ ବିପଦରୁ ଉଦ୍ଧାର କରେ ସେ ତ୍ରାଣକର୍ତ୍ତା । ହେଲେ ଦେବକୀଙ୍କର ଯେଉଁ ପିଲାଟା ହବ, ଭାଇ ସବୁବେଳେ କହୁଛନ୍ତି ସେ ତ୍ରାଣକର୍ତ୍ତା । କେମିତି ? ସେ କଅଣ ତ୍ରାଣକର୍ତ୍ତା ?'

'ମୁଁ ଜାଣେ ନା', ଅରିନ୍ଦମ କହିଲା, 'ଖାଲି ଭାଇ ନୁହେଁ, ମଥୁରାର ବହୁତ ଲୋକଙ୍କର ସେଇ ବିଶ୍ୱାସ । ମୋ ବାପାଙ୍କର ସେଇ ବିଶ୍ୱାସ । ମହାନ୍ ଋଷି ବ୍ୟାସଦେବଙ୍କର ବି ସେଇ ବିଶ୍ୱାସ ।'

'ତୁମର ?' ମନ୍ଦାକିନୀ ତା କଥାରେ ଜୋର ଦେଲା ।

'ଠିକ୍ କହି ହେବନି', କହିଲା ଅରିନ୍ଦମ, 'ତେବେ ଦେବକୀର ଏଇ ଗର୍ଭ ପିଲାଟା ଯେ ତ୍ରାଣକର୍ତ୍ତା ହବ ସେ ଧାରଣା ପାଇଁ କଂସ ଦାୟୀ ।'

'କଂସ ?' ମନ୍ଦାକିନୀ ଆଶ୍ଚର୍ଯ୍ୟ ହେଲା ।

'ହଁ, ଦଶ ବର୍ଷ ତଳର ସେଇ ଶୂନ୍ୟବାଣୀର ଘୋଷଣା ଯେ ଦେବକୀର ଅଷ୍ଟମ ଗର୍ଭ ପିଲାଟା କଂସର ମୃତ୍ୟୁର କାରଣ ହବ, ସେଇଥିପାଇଁ ।' ଅରିନ୍ଦମ ଉଠି ଛିଡ଼ା ହେଲା । କହିଲା, 'ଜୟଦେବ ମନ୍ଦାକିନୀ, ତୁମେ ରୁହ । ପରେ ଦେଖା ହବ । ଆମେ ଯାଉ । ମନ୍ଦାକିନୀ, ତୁମେ ଯେଉଁ ତ୍ରାଣକର୍ତ୍ତା କଥା କହୁଥିଲ ମୁଁ ସେ ବିଷୟରେ କହେ। ବାସ୍ତବିକ ତ୍ରାଣକର୍ତ୍ତା ବାହାରୁ ଆସେ ନା, ଆମେ ଆମର ତ୍ରାଣକର୍ତ୍ତା, ଆମର ଦମ୍ଭ, ସାହସ, ଧୈର୍ଯ୍ୟ, ନିଷ୍ଠା ଏକମାତ୍ର ଆମକୁ ରକ୍ଷା କରି ପାରିବ । ଅତୀତରେ ଅନେକ ଅତ୍ୟାଚାରୀ ଶାସକ ଯାଇଛନ୍ତି । ଏ ଶାସକ ବି ଯିବ ।

ଚାରିବଂଧୁ ଜୟଦେବ ଓ ମନ୍ଦାକିନୀଙ୍କର ଘର ଭିତରୁ ବାହାରି ଆସିଲେ । ଆସିବା ସମୟରେ ଜୟଦେବ କହିଲା, 'ଅରିନ୍ଦମ ମାଙ୍କ ସାଙ୍ଗରେ ଦେଖା ହେଲାନି । ସେ ତୋତେ ଖୋଜୁଥିଲେ । ସେ ନାହାନ୍ତି । ତୁ ପରେ ଆସିବୁ ।'

ମନ୍ଦାକିନୀ ବି ଯୋଗ ଦେଲା - 'ହଁ, ଅରିନ୍ଦମ ଭାଇ, ଆସିବ ।' ଅରିନ୍ଦମ ସଂକ୍ଷେପରେ ଉତ୍ତର ଦେଲା 'ହଁ' ।

ଅନୁଦାର ଅରିନ୍ଦମ ପାଖକୁ ଲାଗି ଆସିଲା - 'ହଁ ! କାହା ନିମନ୍ତ୍ରଣରେ ହଁ ମାଇଲୁ ?'

'ଉଭୟଙ୍କର', ଅରିନ୍ଦମ ଉତ୍ତର ଦେଲା ।

ଅନୁରାଗ କହିଲା, 'ଅରିନ୍ଦମ, ଗୋଟାଏ କଥା ମୁଁ ଭାବୁଛି । ତୁ ତ ଏ କଂସ ବ୍ୟାପାରରେ ବୁଡ଼ିକରି ରହିଛୁ । କଂସ ସହିତ ତୋର ଭଲ ପରିଚୟ ଅଛି ଆମେ ଜାଣୁ । କିନ୍ତୁ କଂସ ଯୋଉ ଲୋକ, କ'ଣ ସେ ତୋ କଥା ସବୁ ଶୁଣୁଥିବ ? ସେ ହଇରାଣ ହରକତ କରୁ ନାହିଁ ତ ?'

'କରୁଛି', ଅରିନ୍ଦମ କହିଲା, 'କଂସ ପାଖରେ ଚିହ୍ନା ପରିଚୟର ମୂଲ୍ୟ କିଛି ନାହିଁ । ତେବେ ତାର ବି ଭୟ ଅଛି । ବାପାଙ୍କ ଭୟ ।'

ଅରିନ୍ଦମ ଟିକେ ଚୁପ ରହିଲା । ପୁଣି କହିଲା, 'ଅନୁରାଗ, ଆମେ ଯେଉଁ କାମରେ ପଶିଛେ ସେଥିରେ ବିପଦ ଅଛି, ଭୟ ବି ଅଛି । ବିଶେଷ କରି କଂସ ରାଜତ୍ୱରେ କିଛି ଠିକ୍ ନାହିଁ । କିନ୍ତୁ ଭୟ କଲେ ଚଳିବ କି ? ମଥୁରାରେ ତ ସମସ୍ତେ କଂସ ଭୟରେ ତଟସ୍ଥ ହୋଇ ରହିଛନ୍ତି । ଆମେ ଯଦି କିଛି ନ କରିବା, ସେମିତି ଭୟ କରିବା, ତେବେ ସାଧାରଣ ଲୋକଙ୍କୁ ସାହସ ଦେବ କିଏ ? ତା ଛଡ଼ା ମୁଁ ଯାହା କହିଲି କଂସର ନିଜର ବି ଭୟ ଅଛି । ଏହିପରି ଅତ୍ୟାଚାରୀ ଅବ୍ୟବସ୍ଥିତ ଲୋକଙ୍କର ସବୁବେଳେ ଗୋଟାଏ ନିଜର ଭୟ ଥାଏ । ସେ ବାପାଙ୍କୁ ଘାଣ୍ଟିବାକୁ ଚାହେଁ ନା । ବାପାଙ୍କର ପୂଜା ଅର୍ଚ୍ଚନାକୁ ସେ ଭୟ କରେ । ସେ ଗୋପକୁ ଯାଏ ନା ତୁମେ


Digitized by srujanika@gmail.com

ଜାଣିଥିବ । ତାର କାରଣ ବାପା । ଗୋଟାଏ କୋଉ ଘଟଣାରେ ବାପା କଂସକୁ ଗୋପକୁ ନ ଯିବାପାଇଁ ସାବଧାନ କରି ଦେଇଥିଲେ । ସେହି ଭୟରେ ସେ ଯାଏନା ।

'କଂସର ନିଜର ଭୟ ଅଛି ?' ଅନୁରାଗ ପଚାରିଲା ।

'ଅଛି', ଅରିନ୍ଦମ ଉତ୍ତର ଦେଲା, 'ଦଶ ବର୍ଷ ତଳର ଦେବକୀ ବସୁଦେବ ବିଭାଘର କଥା ମନେ ପକା । ଯେଉଁ ଶୂନ୍ୟବାଣୀ ହେଲା - ସେ ଶୂନ୍ୟବାଣୀ କଂସ କରେଇ ଥାଉ କି ସତ ହେଉ - କଅଣ କହିଲା ? ସେ ତ କଂସ ବିରୁଦ୍ଧରେ । ଯେ ଦେବକୀର ଅଷ୍ଟମ ଗର୍ଭର ପିଲା ହାତରେ କଂସର ମୃତ୍ୟୁ ହେବ । କଥାଟାକୁ ତ କଂସ ତୁଚ୍ଛ କରି ଉଡେଇ ଦେଇଥାନ୍ତା । କଲା କି ? ଗତ ସାତ ଆଠ ବର୍ଷ ହେଲା ଦେବକୀର ପିଲାଗୁଡ଼ାକୁ ଗୋଟାଏ ପରେ ଗୋଟାଏ ମାରି ପକଉଛି । ଏ ଛୁଆଟାକୁ ବି ମାରିବ । ଏ କଅଣ ସାହସୀ ଲୋକର କାମ ? କେତେ ଭୟାଳୁ ହେଲେ ଲୋକ ଏ କାମ କରେ, କୁହ ।'

ଅନୁରାଗ ଟିକେ ଭାବିଲା, କହିଲା 'ତା ସତ ।'

ଅନୁଦାର ପଚାରିଲା, 'ଅରିନ୍ଦମ, ଆଜି କଅଣ ସତରେ କଂସ ସେ ଛୁଆଟାକୁ ମାରିବ ?'

ଅରିନ୍ଦମ ହସିଲା, କହିଲା, 'ଯେଉଁ କାମଟା କଂସ ବର୍ଷ ବର୍ଷ ଧରି କରି ଆସିଛି ଆଜି ସେ କାମଟା ନ କରିବ ବୋଲି କାହିଁକି ଭାବୁଛୁ ? ଛାଡ... ଦେବକୀର ଛୁଆଟା ଆଗେ ଜନ୍ମ ହେଉ । କାଲି ସକାଳୁ ବୁଝାଯିବ କଅଣ ହେଲା । ତେବେ ଗୋଟାଏ କଥା କହେ । ଆଜି ରାତିଟା କଂସ ପାଇଁ ଭଲ ନୁହେଁ...' ଅନୁଦାର ଅନୁରାଗ ଉଭୟ ଏକା ସାଙ୍ଗରେ ପଚାରିଲେ, 'କିଏ କହୁଥିଲା.... ?'

'ବାପା', ଅରିନ୍ଦମ କହିଲା ।

କଥା କହୁ କହୁ ସେମାନେ ଆସି ଅନୁଦାର ଓ ଅନୁରାଗ ମହଲା ପାଖରେ ପହଞ୍ଚି ଯାଇଥିଲେ । ଉଭୟ ସେମାନଙ୍କର ଘର ଆଡ଼କୁ ଚାଲିଗଲେ । ଦେବପ୍ରିୟ ପଚାରିଲା, 'ଅରିନ୍ଦମ, ଆମେ କଅଣ ଘରକୁ ଫେରିବା ?'

'ନାଁ, ଅରିନ୍ଦମ କହିଲା, 'ଆମେ ମା ସୁରେଶ୍ୱରୀଙ୍କ ମନ୍ଦିର ପାଖ ଦେଇ ଯିବା । ସେଠି ଗୋପା ଅପେକ୍ଷା କରିଥିବେ ।'

'ସେ କଅଣ ଏତେବେଳେ ଆସି ପାରିବେ ? ଦିନ ସରି ଆସିଲାଣି ।' ଦେବପ୍ରିୟ କହିଲା । 'ହଁ, ସେ ଏହି ସମୟରେ ଆସିବେ ବୋଲି ଖବର ପଠେଇଛନ୍ତି ।' ଅରିନ୍ଦମ କହିଲା ।

ଉଭୟ ବାଟ ଭାଙ୍ଗି ମା ସୁରେଶ୍ୱରୀଙ୍କ ମନ୍ଦିର ଆଡକୁ ଚାଲିଲେ ।

ମା ସୁରେଶ୍ୱରୀଙ୍କ ମନ୍ଦିର ବେଶ କିଛି ବାଟ, ରାଜନଅରର ପଶ୍ଚିମ ପାଖରେ, ଓ ନଅରର ଅଧିକାଂଶ କାମରେ ମା'ଙ୍କର ପୂଜା ଅର୍ଚ୍ଚନା ହୋଇଥାଏ । ଯାଉ ଯାଉ ଦେବପ୍ରିୟ ପଚାରିଲା, 'ଅରିନ୍ଦମ, ଗୋପା କଅଣ ନଅରରେ ସବୁବେଳେ ରହୁଛନ୍ତି ?'

'ନାଁ', ଅରିନ୍ଦମ କହିଲା, 'ସେ ଦେବକୀର ବିଭାଘର ପର୍ଯ୍ୟନ୍ତ ପ୍ରାୟ ସବୁବେଳେ ରହୁଥିଲେ । ତା ପରେ ସେ ପ୍ରାୟ ଯିବା ଆସିବା କରନ୍ତି । ସେ ମଥୁରାରେ ଥିବା ସମୟରେ ଅନ୍ତଃପୁରରେ କଂସ ପରିବାର ଭିତରେ ପ୍ରାୟ ଯାଇଁ ରହନ୍ତି । କଂସର ରାଣୀମାନଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ । ଏବେ ସେ ଆସି ରହିବା ପାଇଁ ଭାନୁପ୍ରକାଶ କହିଥିଲେ । ସେଇଯୋଗୁ ସେ ଆସିଛନ୍ତି । ଦେବକୀର ପିଲା ଜନ୍ମହେବା ପରେ ସେ ବୋଧେ ଫେରିଯିବେ ।'

ଦୁଇବଂଧୁ ଆଉ କିଛି ବାଟ ଆଗେଇ ଗଲେ । ପ୍ରାୟ ସଂଧ୍ୟା ଆସିଗଲାଣି । ଆକାଶରେ ଚଢ଼େଇମାନେ ବସାକୁ ଫେରିବାର କଳରୋଳ ସହିତ ରାସ୍ତାରେ ଗାଈମାନେ ମଧ ଗୋଠକୁ ଫେରି ଆସିଲେଣି । କୋଉଠି କୋଉଠି ଘରମାନଙ୍କରେ ଦୀପ ଲାଗିଲାଣି । ଅରିନ୍ଦମ କହିଲା, 'ଦେବ, ଲୋକଙ୍କ କଥା ତ ସବୁ ଶୁଣିଲୁ । ତୋର ମତ କଅଣ ?'

ଦେବପ୍ରିୟ ହସିଲା, କହିଲା, 'ମୋର ମତ କଅଣ ? ତୋର ମତ ଯାହା ମୋ ମତ ବି ସେଇଆ । ଆଜିକାର ଘଟଣା ଗୋଟାଏ ସାଧାରଣ ପିଲା ଜନ୍ମ ହେବା ଘଟଣା ନୁହେଁ, ଯେଉଁଥିରେ ଭାବିବାର କିଛି ନ ଥାଏ । ଆଜିକାର ଘଟଣାକୁ ତ ଲୋକେ ଆଠ ଦଶ ବର୍ଷ ହେଲା ଅପେକ୍ଷା କରି ରହିଛନ୍ତି । ସେଥିପାଇଁ କଂସର ସେ ଶୂନ୍ୟବାଣୀ ନବରଙ୍ଗ ଦାୟୀ, ଓ ତାର ନିଜର ଢଙ୍ଗଢାଙ୍ଗ ବି ଦାୟୀ । ସେ କେମିତି ଯିବ ଲୋକେ ବ୍ୟସ୍ତ ହୋଇ ଉଠିଲେଣି ।' ଅରିନ୍ଦମ ବି ହସିଲା, କହିଲା, 'ଆମ ପ୍ରଚାର କଅଣ କମ ଦାୟୀ, ଦେବ ?'

'ନାଁ, ଆମ ପ୍ରଚାର ତ ନିଆଁରେ ଘିଅ ଢାଳିଲା ପରି ହୋଇଛି ।' କହିଲା ଦେବପ୍ରିୟ, 'କେତେ କେତେ କଥା ଲୋକେ ଭୁଲି ଯାଉଛନ୍ତି । କିନ୍ତୁ ସେ ଦେବକୀ ବସୁଦେବଙ୍କୁ କଂସ ବନ୍ଦୀ କରି ରଖିବା ଦିନ ଠଉଁ ଭାନୁପ୍ରକାଶ ଏମିତି ବନ୍ଦୋବସ୍ତ କରିଛନ୍ତି ଯେ ଲୋକଙ୍କର ଏ ଘଟଣାକୁ ଭୁଲିବାର ଉପାୟ ନାହିଁ । ତେବେ ଆଜି ଆମେ ବୁଲି ଏସବୁ କଥା ଶୁଣି ନ ଥିଲେ ମୋର ବି ଧାରଣା ନ ଥିଲା ଲୋକେ ଏତେ କଥା ଭାବୁଛନ୍ତି ।'

'କଂସ ସପକ୍ଷରେ ଓ ବିପକ୍ଷରେ ଲୋକେ ତ ସବୁଦିନେ ଥିଲେ, ଓ ଏବେ ବି ଅଛନ୍ତି,' କହିଲା ଅରିନ୍ଦମ, 'କହିପାରୁ ସପକ୍ଷ ଲୋକଙ୍କ ସଂଖ୍ୟା ବହୁତ କମିଯାଇଛି


Digitized by srujanika@gmail.com

ବା ସେମାନେ ଖୋଲାଖୋଲି କହିବାକୁ ଏତେ ସାହସ କରୁନାହାନ୍ତି । କିନ୍ତୁ ସେମାନେ ଅଛନ୍ତି । ଏଇ ଯେମିତି ମଂଜୁନାଥକୁ ଦେଖିଲୁ । ମଂଜୁନାଥ ଖରାପ ଲୋକ ନୁହେଁ । ଜଣେ ମୁଖିଆ ଭାବରେ ତାର ବି ବେଶ୍ ପ୍ରତିପତ୍ତି ଅଛି । ଲୋକେ ତାକୁ ମାନନ୍ତି । କିନ୍ତୁ ତାକୁ ବିଶ୍ୱାସ କରି ହେବନି । କଂସ ସାଙ୍ଗରେ ତାର ଭିତରିଆ ସଂପର୍କ। କଂସ ଠଉଁ ସେ ନାନା ସୁବିଧା ସୁଯୋଗ ପାଏ । ସେ ଜାଣେ ଆମେ ତା ପାଖକୁ ଗଲେ ବି ଆମେ ତାକୁ ବିଶ୍ୱାସ କରୁ ନା । ଦେଖିଲୁନି ସେ କେତେ ସାବଧାନରେ କଥା କହୁଥାଏ ।'

'କିନ୍ତୁ ମୋର ମନେ ହେଲା', ଦେବପ୍ରିୟ କହିଲା, 'ମଂଜୁନାଥ ତୋତେ ଭୟ କରେ ।'

'ତା ଠିକ୍ କହି ହବନି ।' କହିଲା ଅରିନ୍ଦମ, 'ମଂଜୁନାଥ ଯୋଉ ପ୍ରକାର ଲୋକ ସେ କେତେବେଳେ କଅଣ ଭାବେ କଅଣ କରେ ଜାଣିବା ମୁସ୍କିଲ । ଆଉ ଏ ପ୍ରକାର ଲୋକ ମଥୁରାରେ ଅନେକ ଅଛନ୍ତି । ସେମାନେ ରାଜ୍ୟର ଭଲ ମନ୍ଦ କଥା ଭାବନ୍ତିନି, ସବୁବେଳେ ନିଜର ଭଲ ମନ୍ଦ କଥା ଭାବନ୍ତି ।'

'ଆଚ୍ଛା ଅରିନ୍ଦମ, ଆମେ ଯେ ଆଜି ବୁଲାବୁଲି କରୁଛେ, ଏଇ ଦେବକୀର ନୂଆ ଛୁଆଟା କଥା କଥାବାର୍ତ୍ତା କରୁଛେ, ଏ କଥା ସେ ନିଶ୍ଚୟ କଂସ ପାଖରେ ପହଞ୍ଚେଇ ଦବ ।' କହିଲା ଦେବପ୍ରିୟ ।

'ତା ଦେଇପାରେ', କହିଲା ଅରିନ୍ଦମ, 'ବ୍ୟସ୍ତ ହନା । ଆଜି ଏସବୁ ବାହାର କଥା କଂସ ଶୁଣିବ ବୋଲି ମୁଁ ଭାବୁନି । ଆଜି ଦେବକୀର ଜନ୍ମ ହବା ଛୁଆଟା ଉପରେ ତା' ଆଖି । ମୁଁ ନିଶ୍ଚିତ ସେ ସେ ବିଷୟରେ ହିଁ ଯାହା କିଛି ବନ୍ଦୋବସ୍ତ କରୁଥିବ । ଏସବୁ କଥାକୁ, କିଏ କୁଆଡ଼େ ଗଲା, କଅଣ କହିଲା, ସେ ଗ୍ରାହ୍ୟ କରିବନି ।'

ଦେବପ୍ରିୟ ଟିକେ ଭାବିଲା । କହିଲା, 'ହଁ, ସେଇଆ ହୋଇପାରେ । କିନ୍ତୁ ଆଜି ଯେଉଁମାନଙ୍କୁ ଆମେ ଭେଟିଲେ ଜୟଦେବ ଛଡ଼ା ଅନ୍ୟମାନେ ମୋର ମନେହେଲା ଏପାଖ ସେପାଖ କଥା କହୁଛନ୍ତି ।'

'ନାଁ', ଅରିନ୍ଦମ କହିଲା, 'ସେମାନେ ସମସ୍ତେ ଭଲ ଲୋକ । ଅନିକେତ କହ, ଅଂଶୁମାନ କହ, ବା ଅନୁଦାର, ଅନୁରାଗ କେହି କଂସ ସପକ୍ଷରେ ନୁହନ୍ତି । ଅସୁବିଧା ସେମାନେ କଂସ ସପକ୍ଷରେ ବା ବିପକ୍ଷରେ, ସେଠି ନୁହେଁ । ସମସ୍ତେ କଂସ ବିପକ୍ଷରେ । ମଥୁରାର ବର୍ତ୍ତମାନ ଅବସ୍ଥାରେ କେହି ଖୁସି ନୁହନ୍ତି । ସମସ୍ତେ ଚାହାନ୍ତି ଏ ଅବସ୍ଥା ବଦଳୁ । କିନ୍ତୁ ନିଜେ କାମ କରି, ବା ଯେଉଁମାନେ କାମ କରୁଛନ୍ତି ସେମାନଙ୍କୁ ସାହାଯ୍ୟ କରି କିଛି କାମ କରିବାକୁ କେହି ପ୍ରସ୍ତୁତ ନୁହନ୍ତି । ଏଇଟା ହିଁ


Digitized by srujanika@gmail.com

ଅସୁବିଧା । ତେବେ ସମସ୍ତେ ଯେ ଆମେ ଯେମିତି ଭାବୁଛୁ ସେମିତି ଭାବିବେ ଏଇଟା କଅଣ ସମ୍ଭବ, କହ । ମୁଁ ତ ଭାବେ ସେମାନେ ଯେତିକି ଆମ ଆଡ଼େ ଅଛନ୍ତି ସେଥିପାଇଁ ଆମେ କୃତଜ୍ଞ ରହିବା ଉଚିତ୍ ।' ...ଅରିନ୍ଦମ ମନରେ ଭାନୁପ୍ରକାଶଙ୍କ କଥା ସବୁ ଗୁନ୍ଥି ହୋଇ ଆସିଲା । ସେ ପୁଣି କହିଲା, 'ସମୟ ଆଦୌ ଭଲ ନୁହେଁ, ଏ ଖାଲି ମଥୁରା ବା ମଗଧ କଥା ନୁହେଁ, ବା କଂସ ଓ ଜରାସନ୍ଧ କଥା ନୁହେଁ । ସମଗ୍ର ଆର୍ଯ୍ୟାବର୍ତ୍ତରେ ଅଧର୍ମ ବ୍ୟାପୀଗଲାଣି । ଗୁରୁଦେବ କହନ୍ତି ଅତୀତରେ ଯେବେ ଯେବେ ଅଧର୍ମ, ଅନ୍ୟାୟ, ଅନୀତି ଲୋକ ଚରିତ୍ରକୁ ନଷ୍ଟ କରିଛି, ରାଜାମାନଙ୍କୁ ଅତ୍ୟାଚାରୀ, ସ୍ୱେଚ୍ଛାଚାରୀ କରିଛି, ସେତେବେଳେ କୌଣସି ନା କୌଣସି ଶକ୍ତି ଅଧର୍ମର ପ୍ରତିବିଧାନ କରି ଧର୍ମ ପ୍ରତିଷ୍ଠା କରିଛି । ଆଜି ତାହାହିଁ ଘଟିବାକୁ ଯାଉଛି ଦେବ । ସେଇ ଶକ୍ତିର ଆବିର୍ଭାବ । ଆମେ ସବୁ ନିମିତ୍ତ ମାତ୍ର ।'

ଦେବପ୍ରିୟ ଅରିନ୍ଦମର ମୁହଁକୁ ଚାହିଁଲା । ତାର ମନେହେଲା ଅରିନ୍ଦମର ମୁହଁ ଯେପରି ଗୋଟାଏ ଉଜ୍ଜ୍ୱଳ ଆଲୋକରେ ଜଳି ଉଠିଛି । ଆଖି ଦିଇଟା ଏଠି ନାହିଁ, ଯେପରି କେଉଁ ଦୂରକୁ ଦୂରକୁ ପ୍ରସାରିତ ହୋଇ ଯାଇଛି । ସେ ସାମାନ୍ୟ ସଂକୁଚିତ ହୋଇ କହିଲା, 'ଏ ତ ଠିକ୍ କଥା, ତୋ କଥା ମୁଁ ବୁଝୁଛି । କିନ୍ତୁ ଯେଉଁମାନଙ୍କ ସାଙ୍ଗରେ ଆଜି ଆମେ କଥାବାର୍ତ୍ତା କଲେ ସେମାନେ କଅଣ ଏତେ କଥା ଭାବୁଛନ୍ତି ବୋଲି ତୁ ଭାବୁଛୁ ?'

'ନାଁ, ସେମାନେ ଭାବୁନାହାନ୍ତି', ଅରିନ୍ଦମ କହିଲା, 'କିନ୍ତୁ ସେମାନେ କଂସ କଥା ଭାବୁଛନ୍ତି ତ । କଂସ କଅଣ କଲା ନ କଲା ସେ କଥା ଭାବୁଛନ୍ତି, କହୁଛନ୍ତି । ତ୍ରାଣକର୍ତ୍ତା କଥା କହିଲାବେଳେ ସେମାନେ ତୁ ଯା କହିଲୁ, ଆର୍ଯ୍ୟ ସଭ୍ୟତା ବା ଆର୍ଯ୍ୟାବର୍ତ୍ତ କଥା ଭାବୁନାହାନ୍ତି ଠିକ୍ । ବା ଧର୍ମ ଅଧର୍ମ କଥା ବି ଭାବୁନାହାନ୍ତି । କିନ୍ତୁ ମଥୁରା କଥା ତ ଭାବୁଛନ୍ତି । କେମିତି ଏ କଂସ ଫାଶରୁ ବଂଚିବେ ସେ କଥା ତ ଭାବୁଛନ୍ତି । ସେଇଟା ହିଁ ବଡ଼ କଥା । ତୁ ଅନିକେତ, ଅଂଶୁମାନ, ଅନୁଦାର, ଅନୁରାଗ ସମସ୍ତଙ୍କ ପାଖରୁ ତ୍ରାଣକର୍ତ୍ତା ବିଷୟରେ ଅଲଗା ଅଲଗା କଥା ଶୁଣିଲୁ । ସେଇଟା ହିଁ ସ୍ୱାଭାବିକ । କିନ୍ତୁ କଥା ଯେତେ ଅଲଗା ଅଲଗା ହେଉ ମୂଳ ଗୋଟାଏ... ତ୍ରାଣକର୍ତ୍ତା'... ସେଇ ତ୍ରାଣକର୍ତ୍ତା କଥାଟା ସମସ୍ତଙ୍କ ମନରେ ରହିଛି । ମୁଁ ତ ଭାବୁଛି ସେତିକି ଯଥେଷ୍ଟ ।'

ମା ସୁରେଶ୍ୱରୀଙ୍କ ମନ୍ଦିର ପାଖ ହୋଇ ଆସିଲଣି । ମନ୍ଦିର ସାମନାରେ ଓ ଚାରିପାଖରେ ଦୀପ ସବୁ ଲାଗିଗଲାଣି । ସଂଧ୍ୟା ଆରତି ଆରମ୍ଭ ହେବ । ଦେବୀଙ୍କର ଦର୍ଶନପାଇଁ ଓ ସଂଧ୍ୟା ଆରତିରେ ଯୋଗ ଦେବାପାଇଁ ଭକ୍ତମାନେ ଆସିବାକୁ ଆରମ୍ଭ


Digitized by srujanika@gmail.com

କଲେଣି । ଦେବୀଙ୍କର ମନ୍ଦିର ରାଜଭବନର ପଶ୍ଚିମ ପାଖ ଦରଜାକୁ ଖୁବ୍ ପାଖ । ସଂଧ୍ୟାରେ ଦେବୀଙ୍କ ଦର୍ଶନ ପାଇଁ ରାଜଭବନର ସ୍ତ୍ରୀଲୋକମାନେ ପ୍ରାୟ ଆସନ୍ତି । କେହି କେହି କହନ୍ତି କେତେବେଳେ କେମିତି କଂସ ବି ଆସେ । ଅରିନ୍ଦମ ମନେ ମନେ ହସିଲା । ଏ ଭୁଲ୍ କଥା । କେବଳ ପ୍ରଚାର । ଜରାସନ୍ଧ ନିଜର ସ୍ୱାର୍ଥ ପାଇଁ ମହାକାଳେଶ୍ୱରଙ୍କର ପୂଜା କରେ । କଂସର ସେ ସବୁ ଲେଶମାତ୍ର ନାହିଁ । ସେ ପୂରାପୂରି ଅଧର୍ମ ।

ମନ୍ଦିର ପାଖରେ ଅରିନ୍ଦମ ମନ୍ଦିର ଚାରିପାଖକୁ ଭଲ କରି ଦେଖିନେଲା । ତିନି ଚାରିଜଣ ସୈନ୍ୟ ଅଛନ୍ତି । କିନ୍ତୁ ସେମାନେ ଦୂରରେ। ହଠାତ୍ ତାର ମନେ ହେଲା ମନ୍ଦିର ଭିତରକୁ ଯାଉଥିବା ଲୋକଙ୍କ ଭିତରେ ସେ ଯେମିତି ପ୍ରଦ୍ୟୋତକୁ ଦେଖିଲା । ସେ ଜାଣେ ପ୍ରଦ୍ୟୋତ ଦେବଦେବୀଙ୍କୁ ଦର୍ଶନ କରିବାକୁ ଯାଏ । କିନ୍ତୁ ଆଜି ଏତେବେଳେ ସେ ଏ ମନ୍ଦିରକୁ ଆସିଲା କାହିଁକି ? ତଥାପି ସେ ସାବଧାନ ହୋଇଗଲା । ଦେବପ୍ରିୟକୁ କହିଲା, 'ଦେବ, ତୁ ଏ ବାହାରେ ଥା । ମୁଁ ମନ୍ଦିର ଭିତରୁ ଆସେ । ଗୋପା ଭିତରେ ଥିବେ । ଆଉ ଯଦି କିଛି ଅସୁବିଧା ଦେଖୁ ମୋତେ ସାଙ୍ଗେ ସାଙ୍ଗେ ଖବର ଦେବୁ ।'

ଅରିନ୍ଦମ ମନ୍ଦିର ଭିତରକୁ ପଶିଲା । ତା ମୁଣ୍ଡରେ କଣ୍ଟା ପରି ସେହି କଥାଟା ଲାଗି ରହିଲା - ଏତେବେଳେ ଏଠି ପ୍ରଦ୍ୟୋତ କାହିଁକି ? ସେ ନିଜ ଇଚ୍ଛାରେ ଆସିଛି ନା କଂସର କିଛି ଉଦ୍ଦେଶ୍ୟ ଅଛି ? କି ଉଦ୍ଦେଶ୍ୟ ? ତାକୁ ବେଶି ସମୟ ଯିବାକୁ ହେଲା ନାହିଁ । ଦେଖିଲା ଗର୍ଭଗୃହକୁ ଯିବା ବାଟରେ ପ୍ରଶସ୍ତ ମଣ୍ଡପର ଗୋଟାଏ ପାଖକୁ ପ୍ରତ୍ୟେତ ଛିଡ଼ା ହୋଇଛି । ସେ ପ୍ରଥମେ ଭାବିଲା ବାଟ ଭାଙ୍ଗି ଚାଲିଯିବ କି ? ନାଁ, ସେଟା ଠିକ୍ ନୁହେଁ । ପ୍ରଦ୍ୟୋତ ନିଶ୍ଚୟ ସନ୍ଦେହ କରିବ । ସେ ଗର୍ଭଗୃହ ଆଡକୁ ଦର୍ଶନ କରିବାକୁ ଆସିଥିବା ଅନ୍ୟାନ୍ୟ ଲୋକମାନଙ୍କ ସାଙ୍ଗରେ ଆଗେଇ ଗଲା ।

ପ୍ରଦ୍ୟୋତ ପ୍ରଥମେ ଡାକିଲା - 'ଅରିନ୍ଦମ, ଆସ । ମୁଁ ତୁମକୁ ଅପେକ୍ଷା କରିଛି ।' ଅରିନ୍ଦମର ପ୍ରଦ୍ୟୋତଙ୍କ ପାଖକୁ ନ ଯାଇ ଉପାୟ ନ ଥିଲା । ପ୍ରଦ୍ୟେତ ଗୋଟାଏ କଣକୁ ଛିଡ଼ା ହୋଇଥିଲା । ଅରିନ୍ଦମ ପାଖକୁ ଗଲା ଓ ନମସ୍କାର କଲା ।

ପ୍ରଦ୍ୟୋତ ପଚାରିଲା - 'ତୁମେ କ'ଣ ସୁରେଶ୍ୱରୀଙ୍କ ମନ୍ଦିରକୁ ଆସ ?' 'କେତେବେଳେ କେମିତି ଆସେ', ଅରିନ୍ଦମ ଉତ୍ତର ଦେଲା, 'ଆଜି ଅଷ୍ଟମୀ । ଭଲ ଦିନ । ବାପା ସୁରେଶ୍ୱରୀଙ୍କ ମନ୍ଦିରରେ ଆସି ଦର୍ଶନ କରି ଯିବାକୁ କହିଥିଲେ'- ଅରିନ୍ଦମ ମିଛ କଥା କହିଦେଲା ।

'ବାପା ଭଲ ଅଛନ୍ତି ?' ପ୍ରଦ୍ୟୋତ ପଚାରିଲେ ।


Digitized by srujanika@gmail.com

'ହଁ,

ସେ ତ କୁଆଡ଼େ ବାହାରୁ ନ ଥିବେ ?'

'ନାଁ, ପ୍ରାୟ ନୁହେଁ । କେବଳ ଯମୁନାକୁ ଯାଆନ୍ତି । ଯମୁନା କୂଳରେ ବୁଲାବୁଲି କରନ୍ତି ।' ଅରିନ୍ଦମ କହିଲା, 'ଆଉ ଅଧିକାଂଶ ସମୟ ପୂଜା ଅର୍ଚ୍ଚନାରେ କଟାନ୍ତି ।'

ପ୍ରଦ୍ୟୋତ ଦି ହାତ ଯୋଡି ନମସ୍କାର କଲା । କହିଲା, 'ବାପାଙ୍କୁ ମୋ ପ୍ରଣାମ ଜଣେଇ ଦବ । ଧାର୍ମିକ ପୁରୁଷ । ସେ ଅଛନ୍ତି ବୋଲି ମଥୁରା ରହିଛି ।' ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ପ୍ରଦ୍ୟୋତ ହଠାତ୍ ଏ କଥା କହିବାର ମାନେ କଅଣ ? ସେ ଜାଣେ ପ୍ରଦ୍ୟୋତ କଂସର ସେନାପତି ସିନା କିନ୍ତୁ ସେ କଂସର ବ୍ୟବହାରରେ ଖୁସି ନୁହେଁ । ବିଶେଷ କରି କଂସ ଯେପରି ଭାବରେ ମଗଧର ସୈନ୍ୟମାନଙ୍କୁ ଓ ମଗଧର ଲୋକମାନଙ୍କୁ ପ୍ରାଧାନ୍ୟ ଦିଅନ୍ତି ସେଥିରେ ସେ ଅସୁଖୀ । କିନ୍ତୁ କଂସ ପାଇଁ ସେ କାମ କରିଛି ଓ କରୁଛି, ଓ କଂସର ଭଲମନ୍ଦ ସବୁ ଆଦେଶ ସେ ପାଳନ କରୁଛି । ସେ ପୁଣି ପଚାରିଲା, 'ବାପା କହୁଥିଲେ, ଆଜି ଦିନଟା ଭଲ ?'

'ହଁ', ଅରିନ୍ଦମର 'ହଁ' ନ କହି ଉପାୟ ନ ଥିଲା ।

'କାହିଁକି ?' ଆଜି ତ ସେମିତି କିଛି ପର୍ବପର୍ବାଣୀ ଦିନ ନୁହେଁ' । ପ୍ରଦ୍ୟୋତ କହିଲାଣି । 'ମୁଁ ଜାଣେ ନା'- ଅରିନ୍ଦମ ନିଜ ମିଛରେ ରଙ୍ଗ ଦେବାକୁ ଆରମ୍ଭ କଲା - 'ବାପା ମୋତେ ସକାଳୁ ଡାକି କହିଲେ, ଶୀଘ୍ର କାମଦାମ ସାରି ଦେ । ଆଉ ମଥୁରାର ମନ୍ଦିର ମାନଙ୍କରେ ଦେବଦେବୀଙ୍କୁ ଦର୍ଶନ କରି ଆ । ଆଜି ଦିନଟା ଖୁବ୍ ଭଲ ଦିନ । ମୁଁ ଡରି ଡରି ପଚାରିଲି ଭଲ କାହିଁକି ? ଆଜି କଅଣ ଗୋଟାଏ ବଡ଼ ପର୍ବ ?'

'ତା'ପର ? ବାପା କଅଣ କହିଲେ ?' ପ୍ରଦ୍ୟୋତ ପଚାରିଲା ।

ଅରିନ୍ଦମ ଦେଖିଲା ସେ ନିଜ ଫାନ୍ଦରେ ନିଜେ ପଡିଗଲାଣି । ସେ ବାପାଙ୍କ ପାଖରୁ ମନେ ମନେ କ୍ଷମା ମାଗିନେଇ କହିବାକୁ ଆରମ୍ଭ କଲା - 'ବାପା ତ ବେଶି କିଛି କହନ୍ତି ନାହିଁ । ସେ ଯାହା କହିବା କଥା ଅଳ୍ପରେ କହନ୍ତି । ସେ ଖାଲି କହିଲେ, ହଁ ଖୁବ୍ ବଡ଼ ପର୍ବ, ହଜାରରେ ଗୋଟାଏ, ଏମିତି ପର୍ବ କେବେ ନ ଥିଲା କି ହେବ ନାହିଁ । ଏ ପର୍ବ ମଥୁରାରେ ଘଟୁଛି । ଏ ଆମର ସୌଭାଗ୍ୟ' । ଅରିନ୍ଦମର ମନେ ହେଲା ଏ କଥା ସେ ଯେପରି କହୁନାହିଁ । ତା ପାଟି ଦେଇ ଆଉ କିଏ କହୁଛି । ସେ ଭୟ ପାଇ ଚୁପ କରିଗଲା । ପ୍ରଦ୍ୟୋତ କିଛି ସମୟ ଚୁପ ରହି କଅଣ ଭାବିଲା । ତା ପରେ କହିଲା, 'ବାପା ଯଦି ଏ କଥା କହିଲେ ଏ କଥାର କିଛି ଗୂଢ଼ ଅର୍ଥ ଅଛି ଅରିନ୍ଦମ । କି ପର୍ବ ? କଅଣ ଘଟିବ ? କିଏ କହିବ ? ବାପା ଜାଣିଥିବେ । ସେ

ସର୍ବଜ୍ଞ ଲୋକ । ଛାଡ, ମୁଁ ଏଠିକି ଅନ୍ୟ କାମରେ ଆସିଛି । ତୁମ ସାଙ୍ଗରେ ଦେଖା ହେଲା ଭଲ ହେଲା ।'

'କୁହ...' ଅରିନ୍ଦମ କହିଲା ।

'ମୁଁ ଖବର ପାଇଲି ତୁମେ ଆଜି ସହରରେ ତୁମର ଜଣେ ସାଙ୍ଗକ ସହିତ ବୁଲାବୁଲି କରୁଥିଲ । କାହିଁକି ?'

'କିଛି ନାହିଁ....', ଅରିନ୍ଦମ ମନେ ମନେ ସାବଧାନ ହୋଇଗଲା, 'ବାପା ଯାଇଁ ଦେବ ମନ୍ଦିରରେ ବୁଲି ଦର୍ଶନ କରିବାକୁ କହିଲେ । ମୁଁ ମୋ ସାଙ୍ଗ ଦେବପ୍ରିୟକୁ ଧରି ମନ୍ଦିରକୁ ଯାଇଥିଲି । ବାଟରେ କିଛି ବଂଧୁଙ୍କ ଘରକୁ ଆମେ ଗଲୁ । ସେଇ ଯୋଗୁ ସୁରେଶ୍ୱରୀଙ୍କ ମନ୍ଦିରକୁ ଆସିବାକୁ ଡେରି ହେଲା । ଆମେ ଏଠୁ ଘରକୁ ଫେରିଯିବୁ ।'
'ତୁମ ସାଙ୍ଗ କାହିଁ କି ?' ପ୍ରଦ୍ୟୋତ ପଚାରିଲା ।

'ବାହାରେ ଅଛି । ଡାକିବି ?.., ଅରିନ୍ଦମ କହିଲା ।

'ନାଁ, ନାଁ, ଦରକାର ନାହିଁ । ଦେବପ୍ରିୟକୁ ମୁଁ ଜାଣେ । ସେ ତୁମ ପରି ବୁଦ୍ଧିମାନ ଓ ନିର୍ଭରଯୋଗ୍ୟ । କିନ୍ତୁ ମଥୁରାରେ ସେସବୁ ଗୁଣର ଦରକାର ନାହିଁ ।' ପ୍ରଦ୍ୟୋତ ଆଉ କିଛି କହିଲା ନାହିଁ । ଚୁପ କରିଗଲା । ଅରିନ୍ଦମର ମନେ ହେଲା ତା' କଥାରେ ଯେପରି ବିଷାଦର ସ୍ୱର । ସେ କହିଲା, 'ଠିକ୍ ଅଛି ଅରିନ୍ଦମ । ତୁମେ ଯାଅ ।' ଅରିନ୍ଦମ ଗଲା ନାହିଁ । ତାର ମନେ ହେଲା ପ୍ରଦ୍ୟୋତ କାହିଁକି ଆସିଛି । ଠିକ୍ ବୁଝି ହେଲା ନାହିଁ । ସେ ଏପାଖ ସେପାଖ ହେଲା । ପ୍ରଦ୍ୟୋତ ତାକୁ ଚାହିଁ କହିଲା, 'ଅରିନ୍ଦମ, କଅଣ କହିବ କି ?'

ଅରିନ୍ଦମ ସଂକୋଚ କଲାପରି କହିଲା, 'ତୁମେ କିଛି ଭାବିବେ ନାହିଁ ତ ?'

'ଆରେ, ନାଁ, ନାଁ', ପ୍ରଦ୍ୟୋତ କହିଲା, 'ଭାବିବି କଅଣ ? କୁହ ।'

'ନାଇଁ,' ଅରିନ୍ଦମ କହିଲା, 'ମୁଁ ଆଉ ଦେବପ୍ରିୟ ବୁଲାବୁଲି କରୁ କରୁ ଗୋଟାଏ କଥା ଶୁଣିଲୁ...'

'କି କଥା ?' ପ୍ରଦ୍ୟୋତ ଉତ୍ସାହ ଦେଲେ ।

'ଆଜି ଦେବକୀଙ୍କର ପିଲା ଜନ୍ମ ହେବ ବୋଲି ସମସ୍ତେ କହୁଥିଲେ,' ଅରିନ୍ଦମ କହିଲା ।

'ହଁ, ମୋ ଖବର ବି ସେଇଆ', କହିଲା ପ୍ରଦ୍ୟୋତ, 'ହୋଇପାରେ' ।

'ଆଉ ଏ ପିଲାଟା ଦେବକୀଙ୍କର ଅଷ୍ଟମ ଗର୍ଭର ପିଲା', କହିଲା ଅରିନ୍ଦମ ।
'ସେ ହିସାବ ବି ଠିକ୍', ପ୍ରଦ୍ୟୋତ କହିଲା । ଟିକିଏ ରହିଗଲା ପୁଣି କହିଲା, 'ଅଷ୍ଟମ ଗର୍ଭ ହେଉ କି ଯୋଉ ଗର୍ଭ ହେଉ, ପ୍ରଭେଦ କଅଣ ? କଂସ ଯେମିତି ଆଗ

ପିଲାଗୁଡ଼ାଙ୍କୁ ମାରିଛି ଆକୁ ବି ସେମିତି ମାରିଦେବ ।'

'କିନ୍ତୁ ଶୂନ୍ୟବାଣୀ ଏଇ ଗର୍ଭରେ ପିଲାଟା କଂସକୁ ମାରିବ ବୋଲି କହିଥିଲା...' ସେ ସାହସ କରି ପଚାରିଦେଲା ।

ପ୍ରଦ୍ୟୋତ ହୋ ହୋ ହୋଇ ହସି ଉଠିଲା, କହିଲା, 'ଅରିନ୍ଦମ, ତୁମେ ଏବେ ବି ସେଇ ସାନ ପିଲାଟି ହେଇ ରହିଲ । କି ହୋ ଶୂନ୍ୟବାଣୀ ତ ଶୂନ୍ୟ ବାଣୀ । ସେ କେବେଠୁ ଶୂନ୍ୟରେ ମିଳେଇ ଗଲାଣି । ତୁମେ ଯାଅ, ବାପା ଘରେ ଅପେକ୍ଷା କରିଥିବେ । ଆଉ ଶୁଣ, କଂସର ଏସବୁ ବ୍ୟାପାରରେ ମୁଣ୍ଡ ପୂରାନା ।'

ଅରିନ୍ଦମ ନମସ୍କାର କରି ଗର୍ଭଗୃହ ଭିତରକୁ ଚାଲିଗଲା । ଦେବୀଙ୍କର ସଂଧ୍ୟା ଆଳତି ଆରମ୍ଭ ହେଲାଣି । ଗୋପା ସେଇଠି ଥିବେ । ତାର ମନେ ହେଲା ପ୍ରଦ୍ୟୋତ କଂସ ଉପରେ ବିରକ୍ତ ହେଲେ ବି କଂସର ଏକାନ୍ତ ଅନୁଗତ । ସେ କଂସ ବିରୁଦ୍ଧରେ କିଛି କାମ କରିବନି, ବା କେହି ବିରୁଦ୍ଧ କାମ କଲେ ସେ ତାକୁ ସହ୍ୟ କରିବ ନି । ତାଠାରୁ ଦୂରେଇ ରହିବା ଭଲ । ତାର ବାପାଙ୍କ କଥା ମନେ ପଡିଲା । ବାପା କହୁଥିଲେ ପ୍ରଦ୍ୟୋତ ଖରାପ ଲୋକ ନୁହେଁ, କିନ୍ତୁ କଂସ ପ୍ରତି ତାର ଏତେ ଦୁର୍ବଳତା ଭଲ ନୁହେଁ । ତାର ନିଜର କ୍ଷତି ହେବ । ଅରିନ୍ଦମ ପ୍ରଥମେ ଭାବିଥିଲା ପ୍ରଦ୍ୟୋତ ବୋଧହୁଏ ତାକୁ ନଜରରେ ରଖିଛି । କିନ୍ତୁ ନାଁ, ସେ ଲକ୍ଷ୍ୟ କଲା ପ୍ରଦ୍ୟୋତ ବାହାରକୁ ବାହାରି ଗଲା । ବାପାଙ୍କ ପ୍ରତି ସମ୍ମାନ ବା ଭୟ । ସେ ଯାହାହେଉ ପ୍ରଦ୍ୟୋତ ଯେ ବୁଦ୍ଧିମାନ ଏଥିରେ ସନ୍ଦେହ ନାହିଁ । ସେ ଓ ଦେବପ୍ରିୟ ସହରରେ ବୁଲାବୁଲି କରିବା ଖବର ସେ ସାଙ୍ଗେ ସାଙ୍ଗେ ପାଇଛି, ଓ ସେ ହିସାବ କରିଛି ସଂଧ୍ୟାରେ ସେ ହୁଏତ ସୁରେଶ୍ୱରୀଙ୍କ ମନ୍ଦିରକୁ ଆସିପାରେ, ଓ ନିଜେ ମନ୍ଦିରକୁ ବୋଧହୁଏ ସେଇଥିପାଇଁ ଆସିଛି । ସେ ଜାଣେ ପ୍ରଦ୍ୟୋତ ତାର କିଛି କ୍ଷତି କରିବ ନାହିଁ । କିନ୍ତୁ ତଥାପି ତା ଦେହରୁ ଗୋଟାଏ ଝାଳ ବହିଗଲା । ସେ ବାପାଙ୍କୁ ଆଉ ଥରେ ମନେ ମନେ ନମସ୍କାର କଲା । ସେ ମିଛ କଥାରେ ବାପାଙ୍କୁ ଯୋଡି ତାଙ୍କ ପ୍ରତି ଅକ୍ଷମଣୀୟ ଅପରାଧ କରିଛି । ସେ ଜାଣେ ବାପା ଯେଉଁ ଲୋକ ସେ ଶୁଣିଲେ ଖାଲି ହସିବେ କିଛି କହିବେ ନାହିଁ । ତଥାପି... ହଠାତ୍ ଗୋଟାଏ କଥା ଭାବି ସେ ମନ୍ଦିରର ଗହଳି ଭିତରେ ଚୁପ ହୋଇ ଛିଡା ହୋଇଗଲା । ସତେ ତ ! ପ୍ରଦ୍ୟୋତ ଯଦି ସେ ସଂଧ୍ୟାରେ ଏଇ ମନ୍ଦିରକୁ ଆସିପାରେ, ହିସାବ କରି ମନ୍ଦିରକୁ ଆସିଛି, ତା ହେଲେ ଖୁବ୍ ସମ୍ଭବ ସେ ପାଖ କଥାଟା ବି ଜାଣିଥିବ, ଯେ ସେ ଗୋପାଙ୍କୁ ଭେଟିବାକୁ ଆସିଛି । ଅରିନ୍ଦମ ବ୍ୟସ୍ତ ହୋଇ ଏପାଖୁ ସେପାଖୁ ଚାହିଁଲା, ନାଁ, ପ୍ରଦ୍ୟୋତ ଚାଲିଗଲାଣି । ତାର ମନେ ହେଲା ସେଇ ଗହଳି ଭିତରେ କିଛି ଦୂରରେ ଗୋପା ତାକୁ ଚାହିଁ ଛିଡ଼ା ହୋଇଛନ୍ତି । ତା

ମାନେ ପ୍ରଦ୍ୟୋତ ସେମାନଙ୍କ କଥା ସବୁ ଜାଣେ । ଏ ବାପା ନୁହନ୍ତି, ଭାନୁପ୍ରକାଶ । ସେ ଯେତେବେଳେ ପ୍ରଦ୍ୟୋତ କଥା କହିଛି ଭାନୁପ୍ରକାଶ ଏଡେଇ ଯାଇଛନ୍ତି । ସବୁବେଳେ ଗୋଟାଏ କଥା କହନ୍ତି, ପ୍ରଦ୍ୟୋତ ପାଇଁ ବ୍ୟସ୍ତ ହ'ନା, ସେ ଠିକ୍ ଅଛି । ଦେବୀଙ୍କ ଗର୍ଭଗୃହରେ ଗହଳି ହୋଇଥାଏ । ଅରିନ୍ଦମ ଓ ଗୋପା ଗର୍ଭଗୃହରୁ ବାହାରି ଆସି ବାହାର ମଣ୍ଡପର ଗୋଟାଏ କଣକୁ ଚାଲିଗଲେ । ଗୋପା ପ୍ରଥମେ ପଚାରିଲେ, 'ପ୍ରଦ୍ୟୋତ କଅଣ କହୁଥିଲେ ?'

'ନାଁ, କିଛି ନା', ଅରିନ୍ଦମ କହିଲା, 'ମୋତେ ପଚାରୁଥିଲା ମୁଁ କାହିଁକି ଆସିଛି । କିନ୍ତୁ ମୋତେ ଯାହା ଆଶ୍ଚର୍ଯ୍ୟ ଲାଗିଲା ସେ ଜାଣିଲା କେମିତି ମୁଁ ଏଠିକି ଆସିଚି ବୋଲି ।' 'ମୁଁ କହିଥିଲି', ଗୋପା ଶାନ୍ତ ଭାବରେ କହିଲେ ।

'ତୁମେ ?' ଅରିନ୍ଦମ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲା ।

'ହଁ,' ଗୋପା କହିଲେ, 'ତୁମେ ପ୍ରଦ୍ୟୋତଙ୍କୁ କେତେ ଜାଣିଛ ମୁଁ ଜାଣେନା । ସେ ଅଦ୍ଭୁତ ଲୋକ । ସେ କଂସର ଲୋକ । କଂସ ଯାହା ଆଦେଶ ଦବ ତାଙ୍କ ପାଇଁ ସେ ବେଦବାକ୍ୟ । କିନ୍ତୁ ସେ ଆମକୁ ସମର୍ଥନ କରନ୍ତି । ବହୁତ ଖବର ଆମେ ତାଙ୍କଠଉଁ ପାଉ । ତୁମେ ଜାଣନା ବୋଧେ ମଥୁରାରେ ଭାନୁପ୍ରକାଶଙ୍କର ପ୍ରଥମ ସଂପର୍କ ପ୍ରଦ୍ୟୋତ । ସେ ମଥୁରାରେ କାମ ଆରମ୍ଭ କରିବା ବେଳେ ପ୍ରଦ୍ୟୋତଙ୍କ ସହିତ ପ୍ରଥମ ସଂପର୍କ କରିଥିଲେ ।'

'ଆଶ୍ଚର୍ଯ୍ୟ', କହିଲା ଅରିନ୍ଦମ ।

'ହଁ', କହିଲେ ଗୋପା, 'କିନ୍ତୁ ସେ ଭାନୁପ୍ରକାଶଙ୍କ ସହିତ ଗୋଟାଏ ସର୍ତ୍ତ କରିଥିଲେ । କଂସର କୌଣସି ବ୍ୟକ୍ତିଗତ କ୍ଷତି ହେବା ସେ ଦେବେ ନାହିଁ । ଭାନୁପ୍ରକାଶ ସେ ସର୍ତ୍ତ ପୂରା ପାଳନ କରିଛନ୍ତି । କଂସର କୌଣସି ବ୍ୟକ୍ତିଗତ କ୍ଷତି ହେବା ସେ କେବେ ଦେଇନାହାନ୍ତି ।'

ଅରିନ୍ଦମ ହସିଲା, କହିଲା, 'କିଏ ଅଧିକ ଆଶ୍ଚର୍ଯ୍ୟ ମୁଁ ଭାବୁଛି - ଭାନୁପ୍ରକାଶ ନା ପ୍ରଦ୍ୟୋତ ?'

'ଉଭୟ', ଗୋପା କହିଲେ, 'ଭାନୁପ୍ରକାଶ ତାଙ୍କ ଢଙ୍ଗରେ, ପ୍ରଦ୍ୟୋତ ତାଙ୍କ ଢଙ୍ଗରେ । ଶୁଣ, ଭାନୁପ୍ରକାଶ ଖବର ପଠେଇଛନ୍ତି ।'

ଅରିନ୍ଦମ ସଂପୂର୍ଣ୍ଣ ସଜାଗ ହୋଇ ଉଠିଲା । କହିଲା, 'କୁହ' ।

'ଭାନୁପ୍ରକାଶଙ୍କର ହିସାବ ଆଜି ରାତି ଅଧ ବେଳକୁ ଦେବକୀଙ୍କର ପିଲା ହେବ । ଆଉ ପାଗ ଯାହା ସେତେବେଳକୁ ପ୍ରବଳ ବର୍ଷା ଘଡଘଡି ହେବାର ସମ୍ଭାବନା ରହିଛି ।' କହିଲେ ଗୋପା ।


Digitized by srujanika@gmail.com

'ସେପାଖ ଗୋପ ଖବର କଅଣ ?' ଅରିନ୍ଦମ ପଚାରିଲା ।

'ଗୋପର ସଠିକ୍ ଖବର ମୋ ପାଖରେ ନାହିଁ । ତେବେ ଭାନୁପ୍ରକାଶ କହନ୍ତି ସେ ଠିକ୍ ହବ, ସେହି ସମୟରେ ଯଶୋଦାଙ୍କର ବି ପିଲା ହବ ।'

'ଏ କେମିତି କଥା', ଅରିନ୍ଦମ କହିଲା, 'ସେ ବିଷୟରେ ଭାନୁପ୍ରକାଶ ଏତେ ନିଶ୍ଚିତ କେମିତି? ଏ ତ ତାଙ୍କ ହାତର କଥା ନୁହେଁ?'

'ତୁମେ ତ ଭାନୁପ୍ରକାଶଙ୍କୁ ଜାଣିଛ, ଅରିନ୍ଦମ । ସେ ଯେମିତି ସ୍ଥିର କରିବେ ସେ ଠିକ୍ ହେଉ କି ଭୁଲ୍ ହେଉ ତାଙ୍କ ପାଇଁ ଠିକ୍ । ସେ ଖାଲି କହିଲେ ସେ ଠିକ୍ ହେବ, ବ୍ୟସ୍ତ ହୁଅନା । ତଥାପି ମୁଁ କହିଥିଲି ଏ ତ କାକତାଳୀୟ ନ୍ୟାୟ । ସେ ହସିଥିଲେ, କହିଥିଲେ, କାକତାଳୀୟ ନ୍ୟାୟ ତ ଗୋଟାଏ ନ୍ୟାୟ । ସେମିତି ଘଟଣା ଘଟି ନ ଥିଲେ ଏ କଥାଟା ଆସିଥାନ୍ତା କୋଉଠୁ ? ସେ ହବ । କୌଣସି ସନ୍ଦେହ ନାହିଁ । ତୁମେ ପ୍ରସ୍ତୁତ ରୁହ ।'

'ଅନ୍ୟାନ୍ୟ ଖବର?' ଅରିନ୍ଦମ ପଚାରିଲା ।

'ହଁ', ଗୋପା କହିଲେ 'କଂସ ଖବର ମୁଁ ବୁଝୁଛି । ଭାନୁପ୍ରକାଶ କହିଛନ୍ତି ହାତରେ ଅନ୍ତତଃ ଗୋଟାଏ ଘଟିକା ରହିବା ଦରକାର । ମୁଁ ସେହି ବନ୍ଦୋବସ୍ତ କରିଛି । ସବୁ କାମ ସରିଲା ପରେ କଂସ ଖବର ପାଇବ।'

'ଉଆସରେ ଅନ୍ୟ କେହି ଏ କଥା ଜାଣନ୍ତି ?' ଅରିନ୍ଦମ କହିଲା ।

'ନାଁ', ଗୋପା କହିଲେ, 'ମୋତେ ଆଉ ଦି ତିନି ଜଣ ସାହାଯ୍ୟ କରନ୍ତି । କିନ୍ତୁ ସେମାନେ ଏସବୁ କଥା କିଛି ଜାଣନ୍ତି ନି । ମୁଁ କହିଛି ଦେବକୀର ପିଲା ହବା ସାଙ୍ଗେ ସାଙ୍ଗେ ତ ଏ ଲୋକଟା ପିଲାଗୁଡ଼ାଙ୍କୁ ମାରି ପକଉଛି । ଏଇଟା ବୋଧେ ଦେବକୀର ଶେଷ ପିଲା । ଏ ପିଲାଟା ଦେବକୀ ପାଖରେ ଅନ୍ତତଃ ଦୁଇ ତିନି ଘଟିକା ଥାଉ । ଦେବକୀ ତ ବନ୍ଦୀ ହୋଇ ରହିଛି । ଯିବ କୁଆଡ଼େ । ଆମେ କଂସକୁ ଡେରିରେ ଖବର ଦବା । କଂସ ପିଲାଗୁଡ଼ାଙ୍କୁ ଏମିତି ମାରି ପକେଇବା କଥା କେହି ପସନ୍ଦ କରନ୍ତି ନି । ଏମିତି କି ରାଣୀମାନେ ବି ନୁହନ୍ତି । ଜଣେ ରାଣୀ ତ କହିଲେ- ଆ-ଆହା...ବିଚରା ! ପିଲାଟା ତା ପାଖରେ ଅନ୍ତତଃ ଦି ତିନି ଘଟିକା ରହୁ । ମୋ କଥାରେ ସମସ୍ତେ ରାଜି । ମୁଁ ସବୁ କାମ ସରିବା ଖବର ପାଇବା ପରେ ହିଁ କଂସକୁ ଖବର ଦିଆଯିବ ।'

'ପ୍ରଦ୍ୟୋତ ?' ଅରିନ୍ଦମ ପଚାରିଲା ।

ଗୋପା ଟିକେ ରହିଗଲେ । କହିଲେ, 'ପ୍ରଦ୍ୟୋତ ବିଚକ୍ଷଣ ଲୋକ । ସେ କେତେ କଅଣ ଜାଣନ୍ତି ମୁଁ କହି ପାରିବିନି । ଭାନୁପ୍ରକାଶଙ୍କର ତାଙ୍କ ସହିତ ସଂପର୍କ

ଅଛି । କିନ୍ତୁ ସେ ସଂପର୍କ କେତେ ଦୂର, ତାକୁ କେତେ ବିଶ୍ୱାସ କରି ହବ ସେ କଥା ମୁଁ କହି ପାରିବିନି । ତେବେ ମନେ ହେଉଛି ଭାନୁପ୍ରକାଶ ତାଙ୍କ ବିଷୟରେ ଖୁବ୍ ବେଶୀ ଚିନ୍ତିତ ନୁହନ୍ତି । ମତେ ତାଙ୍କ ବିଷୟରେ କିଛି ନ ଭାବିବା ପାଇଁ କହିଛନ୍ତି । ପ୍ରଦ୍ୟୋତ ବି ଆଜି ଯିବା ସମୟରେ ତାଙ୍କ ଲୋକଙ୍କୁ କହି ଯାଇଛନ୍ତି, ସେ ଆଉ ରାତିରେ ଫେରିବେନି । ଯଦି କଂସ ଖୋଜନ୍ତି ସେମାନେ ତାଙ୍କୁ ଖବର ଦେବେ ।'
'ଅନ୍ୟାନ୍ୟ ବନ୍ଦୋବସ୍ତ ?' ଅରିନ୍ଦମ ପଚାରିଲା ।

'ମୁଁ ଯାହା ଶୁଣିଛି ସବୁ ବନ୍ଦୋବସ୍ତ ଠିକ୍ ଅଛି । ଭାନୁପ୍ରକାଶଙ୍କ କାମରେ ତ କେବେ ଫାଙ୍କ ନ ଥାଏ ଜାଣିଛ । ଆଉ ଏ କାମ ତ ଅତ୍ୟନ୍ତ ଗୁରୁତର କାମ ।' କହିଲେ ଗୋପା ।

'ଏସବୁ ହୁଏତ ଠିକ୍ ଅଛି', କହିଲା ଅରିନ୍ଦମ , 'କିନ୍ତୁ ମୁଁ ଆଉ ଗୋଟାଏ କଥା ଭାବୁଛି । ଯମୁନା ତ ଫୁଲି କରି ଅଛି । ଆଜି ପୁଣି ପ୍ରବଳ ବର୍ଷା ହେବାର ସମ୍ଭାବନା ଅଛି କହୁଛ । ରାତିକି ତ ପ୍ରାୟ ବର୍ଷା ହୁଏ । ଏମାନେ ଯମୁନା କେମିତି ପାରି ହେବେ । ପୁଣି ଦି ଥର, ଯିବେ ପୁଣି ଫେରିବେ ।'

'ମୋର ଯାହା ଖବର ଭାନୁପ୍ରକାଶ ନିଜେ ତାର ଦାୟିତ୍ୱ ନେଇଛନ୍ତି । ତାଙ୍କୁ ଭଲ ନାଉରୀ ରଖିବାକୁ କୁହାଯାଇଥିଲା । ସେ ରାଜି ହେଲେ ନି । କହିଲେ ଏ କଥା କାନରୁ ଦି କାନ ହେବା ଉଚିତ ନୁହେଁ । ସେ ଯମୁନାର ଉପର ମୁଣ୍ଡକୁ ଯାଇଁ କାହା ସାଙ୍ଗରେ କଅଣ କଥାବାର୍ତ୍ତା କରିଥିଲେ । ଆଜି ଯେଉଁ ନୌକା ଆସିଛି ସେ ସାଧାରଣ ନୌକା ନୁହେଁ, ମୁଁ ଶୁଣିଛି ସେ ସଂପୂର୍ଣ୍ଣ ଅଲଗା ବ୍ୟାପାର । ତା'ର ବନ୍ଦୋବସ୍ତ ବି ଅଲଗା । ଯେତେ ବର୍ଷା, ତୋଫାନ, ବଢ଼ି ହେଲେ ବି ସେ ଆରାମରେ ପାଣି ଉପରେ ଯିବ, ଆସିବ, କାହାର କିଛି କ୍ଷତି ହେବନି ।

ସଂଧ୍ୟା ଗଡି ଯାଇଥିଲା । ଦେବୀଙ୍କ ଆଳତି ସରି ଯାଇଥିଲା । ଗହଳି ବି ଆସ୍ତେ ଆସ୍ତେ କମି ଆସିଥିଲା । ଅରିନ୍ଦମ କହିଲା, 'ମୁଁ ଯାଏ, ବାହାରେ ଦେବପ୍ରିୟ ଅପେକ୍ଷା କରିଛି । ଆଜି ଦିନ ଯାକ ଆମେ ଦିହେଁ ମଥୁରାର ବିଭିନ୍ନ ଆଡ ବୁଲୁଥିଲୁ । ଆମେ ଦେଖିଲୁ ଲୋକେ ଠିକ୍ ଜାଣନ୍ତି, ସବୁ ଖବର ରଖିଛନ୍ତି । କିନ୍ତୁ ଆଜି ଦେବକୀର ଛୁଆଟା ଜନ୍ମ ହେଲେ ଯେ ଗୋଟାଏ କିଛି ସମାଧାନ ହୋଇପାରେ ଏ କଥା ଅନେକ ବିଶ୍ୱାସ କରନ୍ତି ନି । ସେ ଯାହାହେଉ, ମୁଁ ଯାଏ, ରାତିଯାକ କାମ ଅଛି ।'

'ହଁ ଯାଅ' । ଗୋପା କହିଲେ, 'ଭାନୁପ୍ରକାଶଙ୍କୁ କହିବ ମୁଁ ପ୍ରସ୍ତୁତ ଅଛି ।'

ଅରିନ୍ଦମ ବାହାରକୁ ଚାଲି ଆସିଲା । ବାହାରେ ଦେବପ୍ରିୟ ଅପେକ୍ଷା କରିଥିଲା । ଦୁଇ ବଂଧୁ ମନ୍ଦିର ଅଞ୍ଚଳ ଛାଡି ମୁଖ୍ୟ ରାସ୍ତାକୁ ଫେରି ଆସିଲେ । ଘରକୁ


Digitized by srujanika@gmail.com

ଫେରିବାକୁ ହେବ । ଫେରୁ ଫେରୁ ଦେବପ୍ରିୟ ପଚାରିଲା, 'ଗୋପାଙ୍କ ସାଙ୍ଗରେ ଦେଖାହେଲା ?'

'ହଁ, ହେଲା', ଅରିନ୍ଦମ କହିଲା, 'ଅନେକ କଥାବାର୍ତ୍ତା ବି ହେଲା' ।

'ମତେ ଆଶ୍ଚର୍ଯ୍ୟ ଲାଗେ କଂସ ପରି ଗୋଟାଏ ଦୁଷ୍ଟ ଲୋକର ନଅରରେ ସେ ଏକାକୀ କେମିତି ଅଛନ୍ତି ।' କହିଲା ଦେବପ୍ରିୟ ।

'ଗୋପାଙ୍କୁ ତୁ ଜାଣୁନା ଦେବପ୍ରିୟ', କହିଲା ଅରିନ୍ଦମ, 'ତାଙ୍କ ପରି ସାହସୀ ଓ ଏତେ ପ୍ରଖର ବୁଦ୍ଧିସଂପନ୍ନ ସ୍ତ୍ରୀ ଲୋକ ମୁଁ କ୍ୱଚିତ ଦେଖିଛି । ସେ ଭାନୁପ୍ରକାଶଙ୍କର କେବଳ ଅନ୍ତରଙ୍ଗ ନୁହନ୍ତି, ତାଙ୍କର ସହକର୍ମୀ ଓ ସହଯୋଗୀ ହେବାପାଇଁ ସଂପୂର୍ଣ୍ଣ ଯୋଗ୍ୟ । ଆଉ ସେ କଂସ ନଅରରେ ଖାଲି ରହି ନାହାନ୍ତି, ସେଠି ତାଙ୍କର ଯଥେଷ୍ଟ ପ୍ରଭାବ ପ୍ରତିପତ୍ତି । ବଡ଼ କଥା ହେଲା ଭାନୁପ୍ରକାଶଙ୍କର କାମ ପରି ତାଙ୍କ କାମ । ସେଥିରେ ଛୋଟ ବ୍ୟକ୍ତିଗତ ସ୍ୱାର୍ଥ କିଛି ନାହିଁ । ଗୋଟାଏ ଆଦର୍ଶର କାମ । କିଛିଦିନ ତାଙ୍କର ସଂପର୍କରେ ଆସିଲେ ତୁ ବୁଝିପାରିବୁ ।'

'ଗୋପାଙ୍କ କଥା ଭାବିଲେ ମତେ ଆଶ୍ଚର୍ଯ୍ୟ ଲାଗୁଛି ।' କହିଲା ଦେବପ୍ରିୟ, 'ସେ ମଥୁରା ଲୋକ ନୁହନ୍ତି । କିନ୍ତୁ ମଥୁରା ପାଇଁ ସେ ଯେ କୌଣସି ମଥୁରା ଲୋକ ଠାରୁ ବେଶି ବ୍ୟସ୍ତ । କୌଣସି ବିପଦକୁ ସେ ବିପଦ ବୋଲି ନଉ ନାହାନ୍ତି ।'

'ଭାନୁପ୍ରକାଶ କଅଣ ମଥୁରା ଲୋକ ନା ମଗଧର ଲୋକ ?' କହିଲା ଅରିନ୍ଦମ, 'ଏ ସବୁ ଭାନୁପ୍ରକାଶଙ୍କ ଶିକ୍ଷା । ଏଥିରେ ମୋହ ନାହିଁ କି ସ୍ୱାର୍ଥ ନାହିଁ । ଯାହା କହିଲି, ଗୋଟାଏ ଆଦର୍ଶର କଥା । ଏହିପରି କିଛି ଲୋକ ଅଛନ୍ତି ବୋଲି ତ ମଣିଷ ସଭ୍ୟତା ଆଗେଇ ଆଗେଇ ଚାଲିଛି । ଭାନୁପ୍ରକାଶ ଓ ଗୋପାଙ୍କ ପାଇଁ ମଥୁରା ନିମିତ୍ତ ମାତ୍ର । ଅନ୍ୟ ଯେ କୌଣସି ଜାଗାରେ ସମାନ ଅବସ୍ଥାରେ ସେମାନେ ସମାନ କାମ କରିବେ ।' ଅରିନ୍ଦମ ଚୁପ କରିଗଲା । ତାର ମନେହେଲା ଆଜି କଥା ଠିକ୍ ଅଛି । କିନ୍ତୁ କାଲି... କାଲି ଠାରୁ ଭାନୁପ୍ରକାଶ ଓ ଗୋପା କଅଣ କରିବେ ? ସେମାନେ ମଥୁରାରେ ରହିବେ କି ?

ଦେବପ୍ରିୟ ମନରେ ବି ସେହି ଚିନ୍ତା ଆସିଥିଲା । ସେ କହିଲା, 'ଅରିନ୍ଦମ, ମୁଁ ଆଉ ଗୋଟାଏ କଥା ଭାବୁଛି । ଆଜିର ଏ ଘଟଣା ପରେ ଭାନୁପ୍ରକାଶ ଓ ଗୋପା ବୋଧହୁଏ ମଥୁରାରେ ଆଉ ନ ରହି ପାରନ୍ତି ।'

'ମୁଁ ଜାଣେ ନା', ଅରିନ୍ଦମ କହିଲା, 'ଯାହା ଭାନୁପ୍ରକାଶ ଠିକ୍ କରିବେ ।'

ସଂଧ୍ୟା ଗଡ଼ି ଯାଇଥିଲା । ଉଭୟ ଅରିନ୍ଦମର ଘର ପାଖରେ ପହଞ୍ଚି ଯାଇଥିଲେ । ଦେବପ୍ରିୟ ରାସ୍ତା ଉପରେ ଛିଡ଼ା ହୋଇଗଲା । କହିଲା, 'ଅରିନ୍ଦମ, ବଡ଼


Digitized by srujanika@gmail.com

ଅସ୍ଥିର ଲାଗୁଛି । ଆଜି ରାତିରେ କଅଣ ହେବ? ତୁ କଅଣ ଭାବୁଛୁ? ଛୁଆଟା ବଞ୍ଚିବ ତ?'

ଅରିନ୍ଦମ ଚୁପ ହୋଇ କିଛି ସମୟ ଛିଡ଼ା ହେଲା । ଚାରିପାଖରେ ଅଂଧାର । କିଛି ଦୂରରେ ତା ନିଜ ଘର ଭିତରୁ ଚକଚକ ହୋଇ ଆଲୁଅ ଦିଶୁଥିଲା। ବାପାଙ୍କର ଉଦାତ୍ତ କଣ୍ଠରେ ଶ୍ଳୋକ ଶୁଭୁଥିଲା । ସେ କହିଲା, 'ହଁ ବଞ୍ଚିବ । ନିଶ୍ଚିତ । ଯେଉଁ ପିଲାକୁ ଆମେ ଦଶ ବର୍ଷ ହେଲା ଅପେକ୍ଷା କରି ରହିଛୁ ସେ କେବେ ମରି ପାରେନା । ଅସମ୍ଭବ ।'

ଦେବପ୍ରିୟ ଦି ହାତରେ ଅରିନ୍ଦମର ଦି ହାତକୁ ଚାପି ଧରିଲା । ତା' ଆଖି ସେଇ ଅଂଧାରରେ ଅପୂର୍ବ ଦୀପ୍ତିରେ ଜଳି ଉଠିଲା ।

ଟପ ଟପ ହୋଇ ବର୍ଷା ପଡିବାକୁ ଆରମ୍ଭ କଲାଣି । ମଝିରେ ମଝିରେ ବିଜୁଳି ମାରୁଛି । ଘଡ଼ଘଡ଼ି ବି। ଆକାଶରେ ମେଘ ଘୋଟି ରହିଛି । ଯେ କୌଣସି ମୁହୂର୍ତ୍ତରେ ଜୋରରେ ବର୍ଷା ଆରମ୍ଭ ହୋଇଯିବ । ଚାରିପାଖରେ ମେଘ ଅଂଧାର ସହିତ ରାତିର ଅଂଧାର ଘେରି ହୋଇ ରହିଛି । ଗୋଟାଏ ବିରାଟ ଅଂଧାରରେ ଘର ଦ୍ୱାର, ସାରା ମଥୁରା, ଯମୁନା, ଯମୁନା କୂଳର ଅରଣ୍ୟ, ଦୂରର ଗୋପ, ସବୁ ଏକାକାର ହୋଇଯାଇଛି । ଦେବପ୍ରିୟ ଅରିନ୍ଦମ ପାଖରୁ ବିଦାୟ ନେଇ ଘରକୁ ଚାଲିଗଲା । ଅରିନ୍ଦମ ସେହି ଅଂଧାରରେ ଛିଡ଼ା ହୋଇ ମୁହୂର୍ତ୍ତେ ଭାବିଲା । ଭାନୁପ୍ରକାଶଙ୍କ ନିର୍ଦ୍ଦେଶ ମନେ ପଡିଲା । ରାତି ଅଧ ବେଳକୁ ତାକୁ ଯମୁନା ଦେବୀଙ୍କ ମନ୍ଦିର ପାଖ ଯମୁନା ଘାଟରେ ପହଞ୍ଚିବାକୁ ହେବ । ବର୍ଷା ହେଉ କି ଝଡ଼ ହେଉ, ସେ ବାରମ୍ବାର କହିଛନ୍ତି , ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିବାକୁ ହେବ । ସାରା ଦିନ ବୁଲାବୁଲି କରି ଆସି ଅରିନ୍ଦମକୁ କିଛି କିଛି କ୍ଳାନ୍ତ ଲାଗୁଥିଲା, ସେ ଦେହରୁ କ୍ଳାନ୍ତି ଝାଡି ସିଧା ହୋଇ ଛିଡ଼ା ହେଲା । ଆଜି ରାତିରେ କ୍ଳାନ୍ତି ନାହିଁ କି କ୍ଲେଶ ନାହିଁ । ସେ ନିଜ ଘରର ପିଣ୍ଡା ଉପରକୁ ଉଠିଲା । ସାରା ଘର ଅଂଧାର । କିନ୍ତୁ ପୂଜା ଘରେ ଆଲୁଅ ଜଳୁଛି । ପୂଜା ଘରେ ବାପା ବସି ଧ୍ୟାନ କରୁଛନ୍ତି । ସେ ପୂଜା ଘର ଭିତରକୁ ଗଲା ।

ବାପାଙ୍କ ପୂଜା ଘରକୁ ଅରିନ୍ଦମ ଅନେକଥର ଆଗରୁ ଯାଇଛି । ସେ ଆଜିକା କଥା ନୁହେଁ । ସେ କେଉଁ ପିଲାଦିନରୁ ବୋଉ ଥିଲାବେଳେ ବାପାଙ୍କ ସାଙ୍ଗରେ ସେ ତାଙ୍କ ପୂଜା ଘରକୁ ଅନେକ ଥର ଯାଇଛି । ବାପା ପ୍ରାର୍ଥନା କରନ୍ତି । ସେ ତାଙ୍କ ସାଙ୍ଗରେ ବସି ପ୍ରାର୍ଥନା କରିଛି, ଶ୍ଳୋକ ବୋଲିଛି । ବାପା ଭୋଗ କଲାପରେ ଭୋଗ ବି ଖାଇଛି । ସେ ବେଦର ପ୍ରସିଦ୍ଧ ସୁକ୍ତ ସବୁ ବାପାଙ୍କଠାରୁ ଶିଖିଛି । ବାପା ଦେବତାମାନଙ୍କୁ ପ୍ରାର୍ଥନା କରନ୍ତି, ନାରାୟଣ, ଦେବୀ, ଶିବ ସମସ୍ତଙ୍କୁ ଅର୍ଚ୍ଚନା କରନ୍ତି ।


Digitized by srujanika@gmail.com

ସେ ବି ବାପାଙ୍କ ସାଙ୍ଗରେ ମିଶି ସମସ୍ତଙ୍କୁ ପ୍ରାର୍ଥନା କରେ, ସମସ୍ତଙ୍କୁ ଅର୍ଚ୍ଚନା କରେ । ଆଜି ମାତା ସୁରେଶ୍ୱରୀଙ୍କ ମନ୍ଦିରରେ ପୂଜାବେଳେ ପୂଜକ ଦେବୀ ସୁକ୍ତ ଗାଉଥିଲେ । ସେ ସୁକ୍ତର ଅଦ୍ଭୁତ ଅନୁଭବ । ଗୋପାଙ୍କ ସହିତ କଥାବାର୍ତ୍ତା ବେଳେ ତା ମନର ଗୋଟାଏ ଅଂଶ ଦେବୀ ସୁକ୍ତର ଅନୁଭବ ସହିତ ମିଶି ଯାଇଥିଲା । ଏବେ ବି ଦେବୀ ସୁକ୍ତର ପଂକ୍ତି ତା ମନକୁ ଆଛନ୍ନ କରି ରଖିଛି.... ମୁଁ ରୁଦ୍ରଗଣ ରୂପେ ଓ ବସୁଗଣ ରୂପେ ବିଚରଣ କରେ । ମୁଁ ଆଦିତ୍ୟସମୂହ ରୂପେ ଏବଂ ସକଳ ଦେବରୂପେ ବିଚରଣ କରେ । ମୁଁ ମିତ୍ର ଓ ବରୁଣ ଏହି ଉଭୟଙ୍କୁ ଧାରଣ କରେ । ମୁଁ ଇନ୍ଦ୍ର ଓ ଅଗ୍ନିକୁ ଧାରଣ କରେ । ମୁଁ ଅଶ୍ୱିନୀକୁମାର ଦ୍ୱୟକୁ ଧାରଣ କରେ....

ଏ ପୂଜା ଘର ତାର ବହୁ ପରିଚିତ । ତା ଜୀବନ ଅନୁଭବର ଗୋଟାଏ ଅଂଶ । ଆଜି କିନ୍ତୁ ପୂଜା ଘରକୁ ପଶି ସେ ସ୍ତବ୍ଧ ହୋଇଗଲା । ତାର ସବୁ ଅସ୍ଥିରତା, ସବୁ ଉଦ୍‌ବେଗ, ସବୁ ଜଂଜାଳ ମୁହୂର୍ତ୍ତକେ କୁଆଡ଼େ ଉଭେଇଗଲା । ବାହାରର ମେଘ ଅଂଧାର ରାତି, ପବନର ସୁଅ, ସହରର କୋଳାହଳ, ଦିନଯାକର ଯେତେ ଆଲୋଚନା ପ୍ରତି ଆଲୋଚନା, ନିଜର ପରିଚିତ ଜଗତ, କିଛି ରହିଲା ନାହିଁ । ସେ ଶୁଣିଲା ବାପା କହୁଛନ୍ତି 'ବସ୍' । ସେ ବସି ପଡିଲା । ବାପା ଅନୁଚ୍ଚସ୍ୱରରେ ସ୍ତବ ପାଠ କରୁଛନ୍ତି, ସେ ବୁଝିପାରିଲା । କିନ୍ତୁ ସେ ନିଜେ କେଉଁଠି ? ଏ କେଉଁ ରାଜ୍ୟ ? ଗୋଟାଏ ପ୍ରଚଣ୍ଡ ଆଲୋକ ତା ଚାରିପାଖରେ ଖେଳି ବୁଲୁଛି । ଏ କଅଣ ଶୂନ୍ୟ, ନା ମହାଶୂନ୍ୟ ! ଗୋଟାଏ ଗଭୀର ନୀରବତାରେ ସେ ତଲ୍ଲୀନ ହୋଇଯାଉଛି । ସେ ଶୁଣୁଛି ତାର ନିଜର ପ୍ରାର୍ଥନା.... ତୁମେ ତେଜ, ମୋତେ ତେଜସ୍ୱୀ କର । ତୁମେ ବୀର୍ଯ୍ୟ, ମୋତେ ବୀର୍ଯ୍ୟବାନ କର ।.... ତୁମେ ଅନ୍ୟାୟଦ୍ରୋହୀ, ମୋତେ ଅନ୍ୟାୟଦ୍ରୋହୀ କର । ତୁମେ ସହ୍ୟଶକ୍ତି, ମୋତେ ସହନଶୀଳ କର ।.... ସେ କେତେ ସମୟ ଏହିପରି ଅବସ୍ଥାରେ ଥିଲା ତାକୁ ଜଣାନାହିଁ । ତାର ମନେ ହେଲା ଯୁଗ ଯୁଗ ଧରି ସେ ଆଲୋକ ଓ ନୀରବତାର ସ୍ରୋତରେ ଭାସି ବୁଲୁଛି । ହଠାତ୍ ଶୁଣିଲା, ସେହି ସ୍ରୋତକୁ ଉଛଳ କରି ଅନ୍ତରୀକ୍ଷରୁ ବାପାଙ୍କର ସ୍ୱର – ସେ ସ୍ତବପାଠ କରୁଛନ୍ତି, ଦେବତାଙ୍କ ଭାଷାରେ–

ସହସ୍ର ଶୀର୍ଷଂ ଦେବଂ ବିଶ୍ୱାକ୍ଷଂ ବିଶ୍ୱଶମ୍ଭୁ କମ୍ ।
ବିଶ୍ୱଂ ନାରାୟଣଂ ଦେବମକ୍ଷରଂ ପରମଂ ପ୍ରଭୁମ ।
ବିଶ୍ୱତଃ ପରମଂ ନିତ୍ୟଂ ବିଶ୍ୱଂ ନାରାୟଣଂ ହରିମ୍ ।
ବିଶ୍ୱମେବେଦଂ ପୁରୁଷସ୍ତଦ୍ୱିଶ୍ୱମୁପଜୀବତି ॥

ଅରିନ୍ଦମର ମନେହେଲା ସେ ଏକ ବିରାଟ ବିପୁଳତାରେ ଭାସି ବୁଲୁଛି । ସେ


Digitized by srujanika@gmail.com

ଦର୍ଶନ କରୁଛି ସେଇ ପରମପ୍ରଭୁ ସ୍ୱୟଂ ପ୍ରକାଶ ନାରାୟଣଙ୍କୁ ଯାହାଙ୍କର ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ, ଯେ ନିଖିଳ ମଙ୍ଗଳର ନିଦାନ, ଜଗତାତ୍ମା, ସର୍ବଦେବ ସ୍ୱରୂପ, ବିକାରହୀନ ।.....

ବାପାଙ୍କର ଧ୍ୟାନ ସହିତ ଅରିନ୍ଦମର ଧ୍ୟାନ ମିଶିଗଲା । ସାରା ଘର ଅପୂର୍ବ ସୁଗନ୍ଧିରେ ପୂର୍ଣ୍ଣ । ଅରିନ୍ଦମର ମନେ ହେଲା ଯେପରି ଦେବତାମାନେ ମହାଶୂନ୍ୟରୁ ଓହ୍ଲାଇ ଆସି ତା ଚାରିପାଖରେ ଆତଯାତ ହେଉଛନ୍ତି । ଅନନ୍ତ ଚକ୍ଷୁ, ଅନନ୍ତ ମସ୍ତକ, ଅନନ୍ତ ଚରଣ ବିଶିଷ୍ଟ ପରମ ବ୍ରହ୍ମଙ୍କର ଚେତନା ତାର ସମଗ୍ର ସତ୍ତାକୁ ଆଚ୍ଛନ୍ନ କରି ରଖିଲା । ସେ କେତେ ସମୟ ଏହିପରି ଥିଲା ତାକୁ ଜଣା ନାହିଁ । ବାପାଙ୍କ ଡାକରେ ତାର ଧ୍ୟାନ ଭାଙ୍ଗିଗଲା । ସେ ଦେଖିଲା ବାପା ଉଠି ଛିଡ଼ା ହେଲେଣି । ସେ ବି ଉଠି ଛିଡ଼ା ହେଲା ଓ ବାପାଙ୍କ ପଛେ ପଛେ ପଦାକୁ ବାହାରି ଆସିଲା । ଅରିନ୍ଦମ ଦେଖିଲା ବାପା ତାକୁ ଚାହିଁଛନ୍ତି । ତାଙ୍କ ଆଖିରେ ଗଭୀର ଆନନ୍ଦ ଓ ତା ପ୍ରତି ଗଭୀର ସ୍ନେହ । ବାପା ଖାଲି କହିଲେ 'ତୁ ଯା, ଭାନୁପ୍ରକାଶ ତୋତେ ଅପେକ୍ଷା କରିଥିବ । ତୋର ଆଜି ପରମ ସୌଭାଗ୍ୟ । ତୁ ପରମ ବ୍ରହ୍ମଙ୍କର ଦର୍ଶନ କରିବୁ । ମୁଁ ଧନ୍ୟ ।'

ଅରିନ୍ଦମ ଅଭିଭୂତ ପରି ଛିଡ଼ା ହୋଇ ରହିଲା ।


Digitized by srujanika@gmail.com

# ରାତି

ଗୋପରେ ସାଧାରଣତଃ ସଂଧ୍ୟା ସମୟରେ ଗହଳ ଚହଳ ଲାଗେ । ଗୋପାଳ ଓ ଗାଈମାନେ ଗୋଠରୁ ଫେରି ଆସନ୍ତି । ଗୋପାଳୁଣୀମାନେ ଦୁଧ ଦହି ବିକି ମଥୁରାରୁ ଫେରନ୍ତି । ଦାଣ୍ଡରେ ଖେଳୁଥିବା ପିଲାମାନେ ଘରକୁ ଫେରନ୍ତି । ମନ୍ଦିର ମାନଙ୍କରେ ସଂଧ୍ୟା ଆଳତୀ ହୁଏ । ନନ୍ଦଙ୍କ ଘରକୁ ବୟସ୍କ ଲୋକମାନେ ସେହି ସମୟରେ ପ୍ରାୟ ଆସନ୍ତି । ଭଲମନ୍ଦ କଥାବାର୍ତ୍ତା ହୁଏ । କିନ୍ତୁ ଆଜିର ସଂଧ୍ୟା ସବୁଦିନ ସଂଧ୍ୟା ପରି ନୁହେଁ । ତାର ବଡ଼ କାରଣ ବର୍ଷା ଓ ପବନ । ଯମୁନାରେ ପାଣି ପୂରିଗଲାଣି, ଓ ଯମୁନା ମଝିରୁ ଝଟକା ଝଟକା ଥଣ୍ଡା ପବନ ବହି ଆସୁଛି । ସାରା ଦିନ ବର୍ଷା ନ ଥିଲା । କିନ୍ତୁ ସଂଧ୍ୟାବେଳୁ ବର୍ଷା ଆରମ୍ଭ ହୋଇଯାଇଛି ଓ କ୍ରମେ କ୍ରମେ ବର୍ଷା ବଢ଼ି ଚାଲିଛି । ଗୋପରେ ବହୁତ ଗଛବୃକ୍ଷ । ସଂଧ୍ୟା ହେଉ ହେଉ ଗଛବୃକ୍ଷର ଅଂଧାରରେ ଗୋପ ବୁଡ଼ିଯାଏ । କିନ୍ତୁ ଆଜି ଗଛବୃକ୍ଷର ଅଂଧାର ସହିତ ଆକାଶର ଅଂଧାର ଓ ମେଘ ଅଂଧାର ମିଶି ସଂଧ୍ୟାର ବହୁ ଆଗରୁ ଗୋପ ସାରା ଅଂଧାର ଜମାଟ ବାନ୍ଧି ବସିଛି । ଦାଣ୍ଡରେ ଗହଳ ଚହଳ ନାହିଁ । ଦାଣ୍ଡ ଶୂନଶାନ । ନନ୍ଦଙ୍କ ଘରକୁ ସବୁଦିନେ ଯେଉଁମାନେ ଆସନ୍ତି ସେମାନେ କେହି ଆସି ନାହାନ୍ତି । ଯେ ଯୁଆଡ଼େ ଯାଇଥିଲେ ସେମାନେ ନିଜ ନିଜ ଘରକୁ ଫେରି ଆସିଲେଣି । ଗାଈମାନେ ସବୁ ଗୁହାଳରେ ବଂଧା ହେଲେଣି । ସାହିର ଏ ମୁଣ୍ଡରୁ ସେ ମୁଣ୍ଡ ପ୍ରାୟ ଚୁପଚାପ । କେତେବେଳେ କେମିତି ଏ ଘରୁ ସେ ଘରୁ ଆଲୁଅ ଦିଶୁଛି, ଚୁପ୍‌ଚାପ କଥା ଶୁଭୁଛି, ବା କେତେବେଳେ କେମିତି କେଉଁ ଗୁହାଳରୁ ହମ୍ବାରଡ଼ି ଶୁଭୁଛି । ବାସ୍, ଲମ୍ବା ଶୂନଶାନ ଦାଣ୍ଡଟାକୁ ଥରେଇ ସୁ ସୁ କରି ପବନ ବହିଯାଉଛି, ଝିପଝିପ କରି ବର୍ଷା ପଡୁଛି, ଓ ଯମୁନା ସେ ପାଖରୁ ବାଘ ରଡ଼ି ପରି ଘଡ଼ଘଡ଼ିର ଶବ୍ଦ ଡେଇଁ ଡେଇଁ ଆସୁଛି ।

ଗୋପରେ ଗୋପାଳଙ୍କର ବସତି ବହୁତ ପୁରୁଣା । ଏମାନେ ମଥୁରାର ନିକଟରେ ଯମୁନାର ଏ ପାରି ସେପାରି ଥିଲେ ବି ଗୋପର ବସତି ମଥୁରାର ଅଧୀନ ନୁହେଁ । ଏମାନେ ମୋଟାମୋଟି ସ୍ୱାଧୀନ । ଯମୁନା କୂଳର ନିଘଞ୍ଚ ଅରଣ୍ୟ ସଫା କରି ଗୋପାଳମାନେ ନିଜର ବସତି କରିଛନ୍ତି । ନିଜେ ସ୍ୱାଧୀନ ଭାବରେ ରହନ୍ତି, ଓ ସ୍ୱାଧୀନ ଭାବରେ ନିଜର ବ୍ୟବସାୟ କରନ୍ତି । କନ୍ତୁ ମଥୁରା ସହିତ ସେମାନଙ୍କର ସଂପର୍କ ରହିଛି, ମଥୁରାର ଲୋକମାନଙ୍କ ସହିତ ମିଳିମିଶି ଚଳନ୍ତି, ମଥୁରାରେ ନିଜର ଦୁଧଦହି ପ୍ରଭୃତି ଯାଇଁ ବିକାବିକି କରନ୍ତି, ମଥୁରାର ରାଜାଙ୍କୁ ନିଜର ରାଜା ବୋଲି

ମାନନ୍ତି, ଓ ଭଲମନ୍ଦରେ ତାଙ୍କ ଉପରେ ନିର୍ଭର କରନ୍ତି । ନନ୍ଦ ସେମାନଙ୍କର ମୁଖ୍ୟ, ସିଧା ଲୋକ, ସାହସୀ ଲୋକ, ସ୍ନେହୀ ଲୋକ, ଧର୍ମକର୍ମରେ ବହୁତ ବିଶ୍ୱାସ ଓ ନିଜର ଗୋଷ୍ଠୀର ସ୍ୱାଧୀନତା ବିଷୟରେ ଯଥେଷ୍ଟ ସଚେତନ । ଶୁଣାଯାଏ, କଂସ ତାର ତରୁଣ ବୟସରେ ଯମୁନା ପାରି ହୋଇ ଗୋପର ଗୋପାଳ ବସ୍ତିକୁ ଆସି ନାନା ଉତ୍ପାତ କରୁଥିଲା । ନନ୍ଦ ଗୋପ ନିକଟରେ ଜଙ୍ଗଲରେ ଆଶ୍ରମ କରି ରହିଥିବା ଜଣେ ପ୍ରସିଦ୍ଧ ଋଷିଙ୍କୁ ପୂଜା ଅର୍ଚ୍ଚନା କରି ଅନୁନୟ ବିନୟ କରି କହିବାରୁ ସେ କଂସକୁ ଗୋପକୁ ନ ଆସିବା ପାଇଁ ଆଦେଶ ଦେଇଥିଲେ ଓ କହିଥିଲେ ଯଦି କଂସ ତାଙ୍କର ଆଦେଶ ନ ମାନି ଗୋପକୁ ଆସେ ତେବେ ମୂର୍ଦ୍ଧନା ଫାଟି ତାର ପ୍ରାଣ ଯିବ । ସେ ଯାହାହେଉ, କୁହାଯାଏ କଂସ ସେହି ଭୟରେ ନିଜେ ଗୋପକୁ ଆସେ ନା, ଓ ସେ ରାଜା ହେଲା ପରେ ବି, ଗୋପ ସହିତ ସାଧାରଣ ଶାସନର ସଂପର୍କ ରଖିବା ଛଡ଼ା, ଗୋପାଳମାନଙ୍କ ପ୍ରତି କୌଣସି ଅତ୍ୟାଚାର କରେ ନା । କିନ୍ତୁ କଂସ ଦୁଷ୍ଟ ଲୋକ । ସେଥିପାଇଁ ଗୋପାଳମାନେ ଓ ନନ୍ଦ ସେମାନଙ୍କ ଆଡୁ କଂସ ସହିତ କୌଣସି ବିରୁଦ୍ଧ କାମ କରନ୍ତି ନାହିଁ ଓ ସାଧାରଣ ଭାବରେ କଂସର ଆଦେଶ ସବୁ ମାନି ନିଅନ୍ତି ।

ଗୋପାଳମାନେ ଅଲଗା ଅଲଗା ପରିବାର ହେଲେ ବି ସମସ୍ତେ ମିଳିମିଶି ଗୋଟାଏ ପରିବାର ପରି ଚଳନ୍ତି । ଆଉ ନନ୍ଦଙ୍କୁ ଗୋଷ୍ଠୀ ମୁଖ୍ୟ ଭାବରେ ନୁହେଁ ପରିବାରର ମୁଖ୍ୟ ଭାବରେ ସମସ୍ତେ ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି, ଓ ତାଙ୍କର ସବୁକଥା ମାନି ଚଳନ୍ତି । ନନ୍ଦଙ୍କର ଉଗ୍ରସେନଙ୍କ ସହିତ ଭଲ ସଂପର୍କ ଥିଲା । ଉଗ୍ରସେନ ରାଜା ଥିବା ସମୟରେ ସେ ଅନେକ ଥର ନିଜର ହାରିଗୁହାରି ଶୁଣେଇବାକୁ ତାଙ୍କ ପାଖକୁ ଯାଉଥିଲେ । ଉଗ୍ରସେନ ବି ତାଙ୍କ କଥା ଶୁଣୁଥିଲେ । ସୁବିଧା ଅସୁବିଧାର ବନ୍ଦୋବସ୍ତ କରୁଥିଲେ ଓ ଗୋପର ଗୋପାଳମାନଙ୍କ ପ୍ରତି ତାଙ୍କର ଯଥେଷ୍ଟ ସହାନୁଭୂତି ଥିଲା । ଏପରିକି, କ୍ୱଚିତ ହେଲେ ବି, ଉଗ୍ରସେନ ନିଜେ ଗୋପକୁ ଆସିଛନ୍ତି ଓ ଗୋପାଳମାନଙ୍କର ଭଲମନ୍ଦ ବୁଝି ତାର ସାମାଧାନ କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ମଥୁରାରେ ନନ୍ଦଙ୍କର ସବୁଠୁ ଭଲ ସଂପର୍କ ଥିଲା ବସୁଦେବଙ୍କ ସହିତ । ବସୁଦେବ ସୁର ଗୋଷ୍ଠୀର ମୁଖ୍ୟ, ମଥୁରାର ଜଣେ ଅତ୍ୟନ୍ତ ଗଣ୍ୟମାନ୍ୟ ଲୋକ, ଓ ନନ୍ଦ ଜାଣିବାରେ, ଅତ୍ୟନ୍ତ ସ୍ନେହୀ । ନନ୍ଦ ପ୍ରାୟ ମଥୁରାରେ ବସୁଦେବଙ୍କ ଘରକୁ ଯାଆନ୍ତି । ବସୁଦେବ ମଧ୍ୟ ଗୋପରେ ନନ୍ଦଙ୍କୁ ଘରକୁ ଆସନ୍ତି, ଓ ବସୁଦେବଙ୍କ ସ୍ତ୍ରୀ ରୋହିଣୀ ଓ ନନ୍ଦଙ୍କ ସ୍ତ୍ରୀ ଯଶୋଦା ମଧ୍ୟ ପରସ୍ପରର ଯଥେଷ୍ଟ ଅନ୍ତରଙ୍ଗ । ନନ୍ଦ ଓ ବସୁଦେବ ଉଭୟଙ୍କର ବୟସ ଖୁବ୍ ପାଖାପାଖି ନ ହେଲେ ବି, ବିଶେଷ ତାରତମ୍ୟ ନ ଥିଲା, ଓ ସେ ତାରତମ୍ୟ ବି ସେମାନଙ୍କର ଅନ୍ତରଙ୍ଗତାରେ କୌଣସି ବାଧା ସୃଷ୍ଟି କରି ପାରି ନ ଥିଲା । ତେବେ


Digitized by srujanika@gmail.com

ଗୋଟାଏ ଦିଗରୁ ଉଭୟଙ୍କର ପ୍ରାୟ ସମାନ ଭାଗ୍ୟ ଥିଲା କହିଲେ ଚଳେ । ଉଭୟଙ୍କର ପିଲାପିଲି ନ ଥିଲେ । ଲୋକେ କହନ୍ତି, ଦିନେ ନନ୍ଦ, ବସୁଦେବ ଓ ଯଶୋଦା, ରୋହିଣୀ ମିଶି ନନ୍ଦଙ୍କର ସେହି ପୂର୍ବ ପରିଚିତ ଋଷିଙ୍କ ପାଖକୁ ଯାଇଥିଲେ । ଉଦ୍ଦେଶ୍ୟ, ଯଦି ଋଷିଙ୍କର ଆଶୀର୍ବାଦରେ ସେମାନଙ୍କର ପିଲାପିଲି ହବା ସମ୍ଭବ ହୁଏ । ଋଷି ଆଶୀର୍ବାଦ କରିଥିଲେ, କିନ୍ତୁ କହିଥିଲେ ତୁମମାନଙ୍କର ପିଲାପିଲି ହବାର ସମୟ ଆସିନାହିଁ । ଧୈର୍ଯ୍ୟ ଧର, ତୁମର ପିଲାମାନେ ବାପା ମାଙ୍କୁ ଧନ୍ୟ କରିବେ । ଏ ବହୁବର୍ଷ ତଳର କଥା । ତା ପରେ ନନ୍ଦ ବା ବସୁଦେବ ଆଉ ପିଲାପିଲିଙ୍କ ପାଇଁ ବ୍ୟସ୍ତ ହୋଇ ନାହାନ୍ତି । କିନ୍ତୁ ସେମାନଙ୍କର ଅନ୍ତରଙ୍ଗତା ଅତୁଟ ହୋଇ ରହିଥିଲା ।

କଂସ ଉଗ୍ରସେନଙ୍କୁ ରାଜଗାଦିରୁ ବାହାର କରି ନିଜେ ରାଜା ହେବା ପରେ ମଥୁରାର ଅବସ୍ଥା ଅନେକ ବଦଳି ଯାଇଥିଲା । ବିଶେଷ କରି କଂସର ଦୁଷ୍ଟ ପ୍ରକୃତି, ସେ ଜରାସନ୍ଧର ଦୁଇ ଝିଅଙ୍କୁ ବିଭା ହେବା, ମଥୁରାର ଦୈନନ୍ଦିନ କାର୍ଯ୍ୟରେ ଜରାସନ୍ଧର ହସ୍ତକ୍ଷେପ, ଓ ମଥୁରାରେ ମଗଧର ଲୋକଙ୍କର ଆଧିପତ୍ୟ, ଏସବୁ ମଥୁରାର ଯାଦବ ମୁଖିଆମାନେ ନାପସନ୍ଦ କରୁଥିଲେ । ସେମାନେ ସାଧାରଣ ଭାବରେ ସ୍ୱାଧୀନଚେତା ଥିଲେ । ଉଗ୍ରସେନ ରାଜା ଥିଲେ ବି ସେ ସମସ୍ତଙ୍କର ସାଙ୍ଗରେ ମିଳିମିଶି ନିଜ ଲୋକ ପରି ଚଳୁଥିଲେ । କଂସ ଆସିବା ସାଙ୍ଗେ ସାଙ୍ଗେ ସେସବୁ ବଦଳି ଗଲା, ଓ ସ୍ୱାଭାବିକ ଭାବରେ କଂସ ଓ ଯାଦବ ମୁଖିଆମାନଙ୍କ ଭିତରେ ଗୋଟାଏ ବେଶ୍ ଜୋରଦାର ବିରୁଦ୍ଧ ଭାବ ଗଢ଼ି ଉଠିଥିଲା । ଯାଦବମାନଙ୍କ ଭିତରେ ବସୁଦେବଙ୍କ ସ୍ଥାନ ଉଗ୍ରସେନଙ୍କ ପରେ ପରେ, ଓ ତାଙ୍କର ସୁରଗୋଷ୍ଠୀ ଯାହାର ସେ ମୁଖ୍ୟ, ଯାଦବମାନଙ୍କ ଭିତରେ ସବୁଠୁଁ ବଡ଼ ଗୋଷ୍ଠୀ । ତେଣୁ ସମସ୍ତେ ଆଶଙ୍କା କରୁଥିଲେ ଉଗ୍ରସେନଙ୍କୁ ରାଜଗାଦିରୁ ବାହାର କଲାପରେ ସେ ନିଶ୍ଚୟ ବସୁଦେବଙ୍କ ବିରୁଦ୍ଧରେ କିଛି କରିବ । ଏଇଟାହିଁ ସମସ୍ତେ ଭାବି ନେଇଥିଲେ । ନନ୍ଦ ବି । ସେତେବେଳେ ଭାନୁପ୍ରକାଶ ମଥୁରାକୁ ଆସିଲେଣି ମଥୁରାରେ ତାଙ୍କ କାମ ଆରମ୍ଭ କରିବା ପାଇଁ, ଓ ନନ୍ଦଙ୍କ ସହିତ ତାଙ୍କର ସଂପର୍କ ଘନିଷ୍ଠ ହେଉଥାଏ । ବସୁଦେବ ସରଳ ଶାନ୍ତଶିଷ୍ଟ ଲୋକ, ଧର୍ମଭୀରୁ । ସେ ବି ଆଶଙ୍କା କଲେ ତାଙ୍କର ଭଲ ମଣିଷ ପଣିଆର ସୁଯୋଗ ନେଇ କଂସ ବି ତାଙ୍କୁ ନିଶ୍ଚୟ ହଇରାଣ ହରକତ କରିବ । ସେ ନନ୍ଦ ଓ ଭାନୁପ୍ରକାଶଙ୍କ ସହିତ ଏ ବିଷୟରେ ଦୀର୍ଘ ଆଲୋଚନା କଲେ, ଓ ସ୍ଥିର ହେଲା ସେ ମଥୁରା ଛାଡି ଗୋପରେ ନନ୍ଦଙ୍କ ପାଖରେ ରହିବେ, କାରଣ କଂସ ଗୋପକୁ ଆସିବ ନାହିଁ । ସେଥିପାଇଁ ସବୁ ବନ୍ଦୋବସ୍ତ କରାଗଲା । କିନ୍ତୁ ତାର ଆବଶ୍ୟକ ହେଲାନାହିଁ । କାରଣ ନନ୍ଦ ଓ ବସୁଦେବଙ୍କର ଏହି ନିଷ୍ପତ୍ତି ପରେ ପରେ କଂସ ବସୁଦେବଙ୍କ ସହିତ ଦେବକୀଙ୍କର

ବିଭାଘର କଥା ଘୋଷଣା କଲା ।

ଏହା ପରେ ପରେ ଘଟଣା ଦ୍ରୁତ ଗତିରେ ଆଗେଇ ଯାଇଥିଲା । କଂସର ଘୋଷଣା ପଛରେ ଲୋକେ ନାନାପ୍ରକାର ଉଦ୍ଦେଶ୍ୟର ଆରୋପ କଲେ । କିନ୍ତୁ କଂସ ବିଚଳିତ ହେଲାନାହିଁ । ବିଭାଘରର ସବୁପ୍ରକାର ଆୟୋଜନ ଆଗେଇ ଚାଲିଲା, ଓ କଂସର ସଂପୂର୍ଣ୍ଣ ବିରୋଧୀ ମାନେ ବି ବିଶ୍ୱାସ କରିବାକୁ ଆରମ୍ଭ କଲେ ଯେ ନାହିଁ କଂସର ଉଦ୍ଦେଶ୍ୟ ବୋଧହୁଏ ସାଧୁ ଓ ସତ । ତା ପରର ଘଟଣାସବୁ ପ୍ରାୟ ଦଶବର୍ଷ ତଳେ ଘଟିଥିଲେ ବି ଏଇ କାଲି ଘଟିଲା ପରି ମନେହେଉଛି, କାରଣ ଘଟଣାର କ୍ଷତ ବର୍ଷ ଯିବା ସାଙ୍ଗେ ସାଙ୍ଗେ ନ କମି ବରଂ ବଢ଼ି ବଢ଼ି ଚାଲିଛି । ଦେବକୀ ବସୁଦେବଙ୍କର ବିଭାଘର ଘୋଷଣାର ଆକସ୍ମିକତାରେ ମଥୁରା ଯେମିତି ସ୍ତବ୍ଧ ହୋଇ ଯାଇଥିଲା, ଘଟଣା ଯେଉଁ ମୋଡ ନେଲା ତାର ଆକସ୍ମିକତାରେ ମଧ୍ୟ ମଥୁରା ସେହିପରି ସ୍ତବ୍ଧ ହୋଇଗଲା । କଂସ ଯେ କେତେ ଗହୀରରେ କାର୍ଯ୍ୟ କରୁଛି, ଓ କାର୍ଯ୍ୟ କରି ପାରୁଛି, ଏ କଥା ବୁଝିବାକୁ ବାକି ରହିଲା ନାହିଁ । ବସୁଦେବ ଓ ଦେବକୀଙ୍କ ପରି ଅତ୍ୟନ୍ତ ସାଧୁ ଓ ସତ୍ ପ୍ରକୃତିର ସ୍ୱାମୀ ସ୍ତ୍ରୀ ଗତ ଦଶବର୍ଷ ହେଲା ବନ୍ଦୀ ହୋଇ ରହିଛନ୍ତି । ତାଙ୍କର ପିଲାମାନଙ୍କୁ ରାଣ ପକେଇଲା ପରି ବର୍ଷକୁ ବର୍ଷ ମାରି ଦିଆଯାଉଛି, ମୁହଁ ଖୋଲିବାକୁ ବା ପ୍ରତିବାଦ କରିବାକୁ କେହି ନାହିଁ ବା କାହାରି ସାହସ ନାହିଁ । ସାରା ମଥୁରା ସ୍ତବ୍ଧ, ଭୀତତ୍ରସ୍ତ, ଅସହାୟ । କଂସର ନିରଙ୍କୁଶ ଅତ୍ୟାଚାରରେ ମନେ ହେଉଛି ସମଗ୍ର ଯାଦବ ଜାତିଟା ହିଁ ନିଶ୍ଚିହ୍ନ ହୋଇଯିବ । ସେଦିନ ସଂଧ୍ୟା ଗଡିଯିବା ପରେ, ବର୍ଷା ଓ ଅଂଧାରର ଦୁର୍ଯୋଗ ଭିତରେ, ଗୋପରେ, ନନ୍ଦଙ୍କ ଘରେ, ତିନି ଜଣ ଲୋକ ବସି ଏହି ଚିନ୍ତା କରୁଥିଲେ, ଓ କଅଣ କରାଯାଇ ପାରେ ସେ ବିଷୟରେ ଆଲୋଚନା କରୁଥିଲେ – ଭାନୁପ୍ରକାଶ, ସତ୍ୟକାମ ଓ ନନ୍ଦ ନିଜେ ।

ତିନି ଜଣଙ୍କର ମୁଖ ଗମ୍ଭୀର । ଗୋଟାଏ ଅନିଶ୍ଚିତ ଭବିଷ୍ୟତର ଚିନ୍ତା ତିନି ଜଣଙ୍କର ମନକୁ ଆଚ୍ଛନ୍ନ କରି ରଖିଥାଏ । ପ୍ରଥମେ ଭାନୁପ୍ରକାଶ କହିଲେ, 'ଦେଖ ନନ୍ଦ, କଅଣ ହେବ, ଏ କଥା ଭାବି ଆଉ ବ୍ୟସ୍ତ ହୁଅନା । ଭବିଷ୍ୟତ ଭବିଷ୍ୟତ, ଆମେ ଗୋଟାଏ ନିର୍ଦ୍ଦିଷ୍ଟ ଭାବରେ ବନ୍ଦୋବସ୍ତ କରିଛେ । ମୋର ବିଶ୍ୱାସ ସବୁ ଠିକ୍ ହୋଇଯିବ । ଗୁରୁଦେବ ବି ସେ କଥା ବାରମ୍ବାର କହିଛନ୍ତି ଯେ ବ୍ୟସ୍ତ ହୁଅନା, ସବୁ ଠିକ୍ ହୋଇଯିବ ।'

'ଗୁରୁଦେବଙ୍କ କଥା କେବେ ମିଛ ହୁଏନା', କହିଲେ ସତ୍ୟକାମ, 'ସେ ତ୍ରିକାଳଦର୍ଶୀ ବ୍ୟକ୍ତି । ସେ କହୁଛନ୍ତି ମାନେ ମୋର ବିଶ୍ୱାସ ନିଶ୍ଚୟ ହେବ ।'

'ମୋର ବି ସେହି ବିଶ୍ୱାସ', କହିଲେ ଭାନୁପ୍ରକାଶ, 'ତା'ଛଡ଼ା ଯେମିତି


Digitized by srujanika@gmail.com

ଯେମିତି ବନ୍ଦୋବସ୍ତ ହୋଇସାରିଛି ଆମକୁ କାମ ଠିକ୍ ସେମିତି ସେମିତି କରିବାକୁ ହେବ । ଆମେ ଏ ପାଖ ସେ ପାଖ କରି ପାରିବା ନାହିଁ । କଲେ ବହୁତ ଗୋଳମାଳ ହୋଇଯିବ । ହାତରେ ବି ଆଉ ବେଶୀ ସମୟ ନାହିଁ । ରାତି ଅଧ ହେଇ ଆସିଲା ।'

'ଏ ବର୍ଷା ଯେମିତି ଆରମ୍ଭ ହେଲାଣି, ତା' ସାଙ୍ଗରେ ପବନ, ଘଡ଼ଘଡ଼ି । ମୁଁ ତ ଭାବି ପାରୁନାହିଁ କଅଣ ହେବ ।' କହିଲେ ନନ୍ଦ, 'ଯମୁନାରେ ତ ପାଣି ଉଛୁଳି ଉଠିଲାଣି । ଯୋଉ ସୁଅ ସାପ ମୁଣ୍ଡ ତ ଚୁରି ହୋଇଯିବ । ପାରି ହବ କେମିତି ?'

'ଦେଖ', ଭାନୁପ୍ରକାଶ କହିଲେ, 'ବର୍ଷା ପବନ ହଉଛି ଏ ଭଲ । ଯେତେ ବେଶି ହେବ ସେତେ ଭଲ । ତା'ହେଲେ ବାହାରକୁ କେହି ବାହାରିବେ ନାହିଁ । ଆମ କାମ ବେଳେ ରାସ୍ତାରେ ଲୋକ ଏପାଖ ସେପାଖ ହେଲେ ତ ବହୁତ ଅସୁବିଧା ହୋଇଯିବ ।

'ମୁଁ ତ ଭାବୁଛି ଏ ଯେଉଁ ବର୍ଷା, ପବନ, ଘଡ଼ଘଡ଼ି ଏ ତ ଭଗବାନଙ୍କର ଆଶୀର୍ବାଦ', କହିଲେ ସତ୍ୟକାମ, 'ଭଗବାନ ଚାହାନ୍ତି ଆମ କାମ ସୁରୁଖୁରୁରେ ହେଇଯାଉ ।'

'ମୁଁ ବି ସେଇଆ ଭାବୁଛି ।' କହିଲେ ଭାନୁପ୍ରକାଶ , 'ଆମ ବୁଦ୍ଧିରେ ଯାହା ସମ୍ଭବ ଆମେ ସେମିତି ବନ୍ଦୋବସ୍ତ କରିଛେ । ବର୍ତ୍ତମାନ ଭଗବାନଙ୍କ ଉପରେ ଛାଡି ଦିଆଯାଉ । ତାଙ୍କରି ଦୟା । ମୁଁ ଭାବୁଛି ଏ ସବୁ ବିଷୟରେ ଆଉ ନ ଭାବି, କଅଣ କଅଣ ହେବ ସେ ବିଷୟରେ ଆଉ ଟିକିଏ ଭାବିନବା, ନନ୍ଦ... ?'

'କୁହ', ନନ୍ଦ କହିଲେ ।

'ପ୍ରଥମ କଥା', କହିଲେ ଭାନୁପ୍ରକାଶ, 'ଆମର ଆଜିର ଏ କାମ ବିଷୟରେ ତୁମେ ଆଉ କାହାକୁ କିଛି କହିଛ କି ?'

'ନାଁ', କହିଲେ ନନ୍ଦ, 'କାହାକୁ ମୁଁ କହିନି କି କିଏ କିଛି ଜାଣନ୍ତିନି ।'

'ଯଶୋଦା... ?' ....'ନାଁ'.....

'ସାଇ ପଡିଶାର କେହି... ?'

'ନାଁ, ସଂଧ୍ୟା ପରେ, ବିଶେଷ କରି ସଂଧ୍ୟା ପାଖାପାଖି ସମୟରେ, ସାହି ପଡିଶା ସ୍ତ୍ରୀଲୋକମାନେ ଆମ ଘରକୁ ଆସନ୍ତି, ଯଶୋଦା ରୋହିଣୀଙ୍କ ସହିତ ଗପସପ କରନ୍ତି । କିନ୍ତୁ ବେଶି ରାତି ପର୍ଯ୍ୟନ୍ତ କେହି ରହନ୍ତିନି । ଆଜି ତ ବର୍ଷା ପବନ...' କହିଲେ ନନ୍ଦ, 'ଆଜି କେହି ଆସି ନାହାନ୍ତି, କି ଆସିବେ ନି । ତା'ଛଡ଼ା ମୁଁ ସମସ୍ତଙ୍କୁ କହି ଦେଇଛି ଆଜି ଯଶୋଦାଙ୍କର ମାନସିକ, ସେ ଓପାସ କରିଛନ୍ତି, କେହି ନ ଆସିଲେ ଭଲ ।'


Digitized by srujanika@gmail.com

'ଭଲ', କହିଲେ ଭାନୁପ୍ରକାଶ, 'କିନ୍ତୁ ବଡ଼ କଥା ହେଲା ଯଶୋଦା କିଛି ଜାଣିବେନି ।'

'ନାଁ, ଜାଣିବେନି' କହିଲେ ନନ୍ଦ, 'ରୋହିଣୀଙ୍କୁ ମୁଁ ଆଭାସ ଦେଇଛି । ସେ ସତର୍କ ଅଛନ୍ତି ।'

'ଗୁହ...ଗୁହ...' କହିଲେ ସତ୍ୟକାମ, 'ରୋହିଣୀ... ରୋହିଣୀଙ୍କ ଉପରେ ନିର୍ଭର କରି ହବ ତ ?'

'ସଂପୂର୍ଣ୍ଣ...', କହିଲେ ନନ୍ଦ, 'ତା ଛଡ଼ା ରୋହିଣୀ ଆମର ସବୁକଥା ଜାଣନ୍ତିନି । ମୁଁ ଖାଲି କହିଛି ଆଜି ଯଶୋଦାଙ୍କର ପିଲା ହବା ସମୟରେ କିଛି ଘଟଣା ଘଟିପାରେ । ତାଙ୍କର ସାହାଯ୍ୟ ଦରକାର । ଆଉ ଏ ଅତ୍ୟନ୍ତ ଗୁପ୍ତ କଥା । ଯେମିତି ଏ କାନରୁ ସେ କାନ ନ ହୁଏ । ରୋହିଣୀ ବୁଦ୍ଧିମତୀ, ସେ ଠିକ୍ ବୁଝିଛନ୍ତି ଯେ କିଛି ଅତ୍ୟନ୍ତ ଗୁରୁତର ଘଟଣା ଘଟିବାକୁ ଯାଉଛି । ସେ ରାଜି...ନାଇଁ...ନାଇଁ... ତୁମେ କିଛି ଭାବନା । ତାଙ୍କ ଉପରେ ଶହେରୁ ଶହେ ନିର୍ଭର କରି ହେବ ।'

'ଏ ତ ଠିକ୍ ହେଲା ।' କହିଲେ ସତ୍ୟକାମ, 'ଶେଷ ପର୍ଯ୍ୟନ୍ତ ଯଶୋଦା କିଛି ଗୋଳମାଳ କରିବେ ନାହିଁ ତ... ? ତାଙ୍କର ଠିକ୍ ସମୟରେ ପିଲା ହବା ଦରକାର...'

'ହବ', ଭାନୁପ୍ରକାଶ ଦୃଢ଼ ଭାବରେ କହିଲେ, 'ଏ ଖାଲି ଆମ କଥା ନୁହେଁ । ଏ ଦୈବଯୋଗ । ଗୁରୁଦେବଙ୍କ କଥା କେଭେ ମିଛ ହବନି । ସେ ରାତି ଅଧ ସମୟ ଧରି ଦେଇଛନ୍ତି । ସେହି ରାତି ଅଧରେ ହିଁ ହବ । ଉଭୟ ଯଶୋଦା ଓ ଦେବକୀଙ୍କର... ସେ ବିଷୟରେ ମନରେ ସନ୍ଦେହ ରଖ ନା...'

'ତା ହୁଏତ ହବ', କହିଲେ ସତ୍ୟକାମ, 'କିନ୍ତୁ ଯଶୋଦା କିଛି ନ ଜାଣିବା କଥା'–

'ସେଇଟା ବି ମୋର ଚିନ୍ତା', କହିଲେ ଭାନୁପ୍ରକାଶ, 'ନନ୍ଦ... ?'

'ତୁମେ ଯେଉଁ ପାଚନ କଥା କହିଥିଲ ବନ୍ଦୋବସ୍ତ ହେଇ ରହିଛି ?' କହିଲେ ନନ୍ଦ, 'ମୁଁ ରୋହିଣୀଙ୍କୁ କହିଛି, ଆଉ ବୁଝେଇ ଦେଇଛି । ସେ ଯଶୋଦାଙ୍କ ପାଖେ ପାଖେ ଅଛନ୍ତି...'

'ଏକା ତ ?' ଭାନୁପ୍ରକାଶ ପଚାରିଲେ ।

'ହଁ, ଏକା' ନନ୍ଦ କହିଲେ, 'ସେ ଲକ୍ଷ୍ୟ ରଖିଛନ୍ତି । ଯଶୋଦାଙ୍କର କଷ୍ଟ ଆରମ୍ଭ ହେଲେ ସେ ସୁବିଧା ଦେଖି ପାଚନଟା ଖୁଆଇ ଦେବେ ।'

ଭାନୁପ୍ରକାଶ ହସିଲେ । କହିଲେ, 'ଏ ପାଚନଟା ମୋର ନୁହେଁ, ଗୁରୁଦେବଙ୍କର । ତାଙ୍କର ନିଜର ତିଆରି । ସେ କହନ୍ତି ପ୍ରସବ ହେବାର କିଛି ସମୟ

ଆଗରୁ ପୁଅଟିକୁ ଏ ପାଚନ ଖୋଇଦେଲେ ପିଲା ଜନ୍ମବେଳର କଷ୍ଟ କମିଯିବ, ଓ ଜନ୍ମ ପରେ ପରେ ମା ନିଦରେ ଶୋଇଯିବ । ଆମର ତ ସେତିକି ଦରକାର । ଯଶୋଦା ଯେମିତି ନିଜର ପିଲା ହବା କଥା ନ ଜାଣନ୍ତି ।'

'ମୁଁ ରୋହିଣୀଙ୍କୁ ସବୁ କଥା ବୁଝେଇ କହିଛି ।' କହିଲେ ନନ୍ଦ, 'ପ୍ରଥମ କଥା ବାହାରୁ ଯେମିତି କେହି ନ ଆସନ୍ତି ସେ ବିଷୟରେ ସେ ନଜର ରଖିବେ । ଦ୍ୱିତୀୟରେ, ସେ ଯଶୋଦାଙ୍କର ପ୍ରସବ ସମୟରେ ତାଙ୍କୁ ସାହାଯ୍ୟ କରିବେ । ସେ ଏକା ଏକା । ଆଉ କେହି ଆସିବେନି । ତୃତୀୟରେ, ପିଲା ଜନ୍ମ ହେଲା ପରେ ଯଶୋଦା ଯେତେବେଳେ ଶୋଇଥିବେ ସେ ପିଲାକୁ ଆମେ ନ ଆସିଲା ପର୍ଯ୍ୟନ୍ତ ଜଗି ରହିବେ ।' 'ଏତେଗୁଡ଼ା ଦାୟିତ୍ୱ ଏକା ସାଙ୍ଗରେ ?' କହିଲେ ସତ୍ୟକାମ । 'ରୋହିଣୀ ସବୁ ତୁଲେଇ ନେବେ', କହିଲେ ନନ୍ଦ, 'କିଛି ଭାବ ନା । ସେ ବର୍ତ୍ତମାନ ଯଶୋଦାଙ୍କ ପାଖରେ ଅଛନ୍ତି । ତାଙ୍କ ଦୁହିଁଙ୍କ ସଂପର୍କ ଖୁବ୍ ଭଲ । ସବୁ କଥାରେ ଯଶୋଦା ରୋହିଣୀଙ୍କ ଉପରେ ନିର୍ଭର କରନ୍ତି । ମୋର ମନେ ହେଉଛି, ରୋହିଣୀ ଯାହା ଖବର ଦେଇଥିଲେ, ଯଶୋଦାଙ୍କର ପ୍ରସବ ବେଦନା ଶୀଘ୍ର ଆରମ୍ଭ ହେଇଯିବ । ରୋହିଣୀ କହୁଥିଲେ ଯଶୋଦା ଖୁବ୍ ଡରି ଯାଇଛନ୍ତି ।'

'ତା ତ ହବ', କହିଲେ ଭାନୁପ୍ରକାଶ, 'ଡରିବାଟା ସ୍ୱାଭାବିକ । କିନ୍ତୁ ସେ ପାଚନଟା ଖାଇଦେଲେ କଷ୍ଟ ବହୁତ କମିଯିବ । ରୋହିଣୀ ବି ସାହସ ଦେଇପାରିବେ ।'

'ତା ସେ ଦେବେ', ନନ୍ଦ କହିଲେ, 'ସେ ଖୁବ୍ ସାହସୀ ସ୍ତ୍ରୀଲୋକ । ଆଉ ତାଙ୍କର ବ୍ୟବହାରିକ ଜ୍ଞାନ ବହୁତ ବେଶୀ । ତୁମେ ବୋଧେ ଜାଣି ନା ଯେତେବେଳେ ବସୁଦେବଙ୍କ ସହିତ ଦେବକୀଙ୍କର ବିବାହ ପ୍ରସ୍ତାବ ଆସିଲା, ବସୁଦେବ ଜମା ରାଜି ନ ଥିଲେ । ରୋହିଣୀ ହିଁ ତାଙ୍କୁ ବୁଝେଇ ରାଜି କରେଇଲେ ।'

'ଆଚ୍ଛା'... ସତ୍ୟକାମ ଆଶ୍ଚର୍ଯ୍ୟ ହେଲେ ।

'ହଁ....। ରୋହିଣୀ ଦି'ଟା କଥା କହିଥିଲେ', ନନ୍ଦ କହିଲେ, 'ପ୍ରଥମ କଥା, କଂସର ଏ ପ୍ରସ୍ତାବ ପଛରେ ନିଶ୍ଚୟ କିଛି ଉଦ୍ଦେଶ୍ୟ ଅଛି, ଆଉ ସେ କେବେହେଲେ ଭଲ ଉଦ୍ଦେଶ୍ୟ ନୁହେଁ । ବସୁଦେବ ସେଥିପାଇଁ ପ୍ରସ୍ତୁତ ରହିବା ଦରକାର । ଦ୍ୱିତୀୟ କଥା ସେ କହିଥିଲେ, କଂସ କଥା ବାଦ ଦେଲେ ବି, ଏ ବିଭାଘର ହେବା ଉଚିତ, କାରଣ ଯାଦବମାନଙ୍କର ଦିଇଟା ସବୁଠୁ ବଡ଼ ଗୋଷ୍ଠୀ ମଧ୍ୟରେ ସଂପର୍କ ହୋଇଯିବ । ଆଉ ବସୁଦେବଙ୍କର ସାମାଜିକ ଓ ରାଜନୈତିକ ପ୍ରତିପତ୍ତି ବହୁତ ବଢ଼ିଯିବ ।'

'ବସୁଦେବ ରାଜି ହେଲେ... ?' ପଚାରିଲେ ସତ୍ୟକାମ ।

'ହଁ, ରାଜିହେଲେ,' କହିଲେ ନନ୍ଦ, 'ଖାଲି ସେତିକି ନୁହେଁ । ବସୁଦେବଙ୍କ ପକ୍ଷରୁ ବିଭାଘରର ସବୁ ବନ୍ଦୋବସ୍ତ ରୋହିଣୀ କରେଇଲେ । ବସୁଦେବ ବନ୍ଦୀ ହେବା ପରେ ବି ପ୍ରଦ୍ୟୋତଙ୍କ ଜରିଆରେ ସେ ସେମାନଙ୍କ ସାଙ୍ଗରେ ସବୁବେଳେ ସଂପର୍କ ରଖିଥିଲେ । ସେମାନଙ୍କ ଛୁଆଗୁଡ଼ାକୁ କଂସ ଗୋଟାଏ ପରେ ଗୋଟାଏ ମାରି ପକେଇବା ବେଳେ ସେହିଁ ଏକମାତ୍ର ଯେ କି ବନ୍ଦୀଶାଳାକୁ ଯାଇଁ ସେମାନଙ୍କୁ ସାହସ ଓ ସାନ୍ତ୍ୱନା ଦେଉଥିଲେ...'

'ସେ ଏଠିକି କାହିଁକି ଆସିଲେ ?' ପଚାରିଲେ ସତ୍ୟକାମ ।

'ଦିଇଟା କାରଣ'..., ନନ୍ଦ କହିଲେ, 'ପ୍ରଥମ କାରଣ ସେ ଆମ ପରିବାର ସହିତ ଅତ୍ୟନ୍ତ ଘନିଷ୍ଠ ଥିଲେ । ବସୁଦେବ ଦେବକୀ ବନ୍ଦୀ ହେଲା ପରେ ମୁଁ ତାଙ୍କୁ ବାରମ୍ବାର ଏଠିକି ଚାଲି ଆସିବାକୁ କହୁଥିଲି । ସେ ତ ଆସିଲେ ନାହିଁ, ସେଠି ରହିଲେ, ପରେ ଯେତେବେଳେ ତାଙ୍କର ନିଜର ଗର୍ଭହେଲା...'। 'ଗର୍ଭ ହେଲା... ?' ସତ୍ୟକାମ ଆଶ୍ଚର୍ଯ୍ୟ ହେଲେ ।

'ହଁ । ଗର୍ଭ ହେଲା....' ନନ୍ଦ କହିବାକୁ ଆରମ୍ଭ କଲେ ।

'ଗୁହ ଗୁହ... ଗର୍ଭ କେମିତି ହେଲା ? ସେ କଅଣ ବସୁଦେବଙ୍କ ପାଖରେ ବନ୍ଦୀଶାଳାରେ ରହୁଥିଲେ... ?' ପଚାରିଲେ ସତ୍ୟକାମ ।

'ତା ମୁଁ କହି ପାରିବିନି...' କହିଲେ ନନ୍ଦ, 'ଯାହା ଶୁଣିଛି ବଡ଼ ରହସ୍ୟଜନକ ବ୍ୟାପାର । ରୋହିଣୀଙ୍କି ପଚାରିଲେ ସେ କିଛି କହନ୍ତି ନାହିଁ । ଖାଲି କହନ୍ତି ଦୈବ କୃପା । ମୁଁ ଜଣେ ଦି ଜଣ ଜାଣିବା ଶୁଣିବା ଲୋକଙ୍କୁ ପଚାରିଥିଲି । ସେମାନେ କହିଲେ ତା ସମ୍ଭବ । କିନ୍ତୁ କେମିତି ସମ୍ଭବ କେହି କିଛି କହି ପାରିଲେ ନାହିଁ । ମୁଁ ଗୋପ ସେ ପାଖରେ ଅରଣ୍ୟରେ ଆଶ୍ରମ କରିଥିବା ସେଇ ବିଖ୍ୟାତ ଋଷିଙ୍କୁ ପଚାରିଥିଲି, ଯିଏ କଂସକୁ ଗୋପ ନ ଆସିବା ପାଇଁ ଅଭିଶାପ ଦେଇଥିଲେ । ସେ କହିଲେ ଯୋଗ ବଳରେ ସମ୍ଭବ, ଗୋଟିଏ ଗର୍ଭରୁ ଆଉ ଗୋଟିଏ ଗର୍ଭକୁ ଭ୍ରୂଣ ସଂଚାଳିତ କରାଯାଇ ପାରିବ । କିନ୍ତୁ ସେଥିପାଇଁ ବ୍ୟକ୍ତି ଖୁବ୍ ନିଷ୍ଠାବାନ ହେବା ଦରକାର ଓ ଯୋଗନିଷ୍ଠ ବ୍ୟକ୍ତି ବା ଶକ୍ତି ଯଥେଷ୍ଟ ପାରଙ୍ଗମ ହେବା ଦରକାର । ସେ ପୁଣି କହିଥିଲେ ସେଥିପାଇଁ ଭଗବତ୍ କୃପା ଦରକାର ।'

'ମୋର ମନେହୁଏ ନନ୍ଦ ଠିକ୍ କହୁଛନ୍ତି', କହିଲେ ଭାନୁପ୍ରକାଶ । 'ଯୋଗର ଅଦ୍ଭୁତ ଶକ୍ତି । ଯୋଗ ଦ୍ୱାରା ଭ୍ରୂଣ ସଂଚାଳନ ସମ୍ଭବ । ମୁଁ କୁରୁକ୍ଷେତ୍ରରେ ଗୁରୁଦେବଙ୍କ ଆଶ୍ରମରେ ଥିବା ବେଳେ ସାଧକମାନେ ଏହି ବିଷୟରେ କଥାବାର୍ତ୍ତା ହେଉଥିବା ଶୁଣିଛି । ଗୁରୁଦେବ ନିଜେ ମଧ୍ୟ ଏହି ବିଷୟରେ କହୁଥିଲେ । ଏପରିକି ଯୋଗ


Digitized by srujanika@gmail.com

ଶକ୍ତିରେ ମରିଯାଇଥିବା ଲୋକଙ୍କୁ ମଧ୍ୟ ବଂଚେଇ ହେବ । ସେ ନିଜର ପିତା ପରାଶର, ପ୍ରପିତା ବଶିଷ୍ଠ, ଏପରିକି ଶଶୁର ଗର୍ବାକଙ୍କ କଥା ମଧ୍ୟ କହୁଥିଲେ । ସେ ପୁଣି କହୁଥିଲେ ଏପରି ସାଧକମାନଙ୍କ ସଂଖ୍ୟା ବହୁତ କମି ଆସିଲାଣି ।'

ଭାନୁପ୍ରକାଶ ଟିକେ ରହିଗଲେ । ତା'ପର କହିଲେ, 'ହଁ, ମୁଁ ବି ଭାବୁଛି ଏ ସମ୍ଭବ । ଯୋଗର ଯେଉଁ ଶକ୍ତି ମୁଁ ଗୁରୁଦେବଙ୍କ ଠାରେ ଦେଖିଛି ସେଥିରେ ଯୋଗ ଦ୍ୱାରା ଯେ କଅଣ ସମ୍ଭବ ନୁହେଁ ମୋତେ ଆଶ୍ଚର୍ଯ୍ୟ ଲାଗେ । ଠିକ୍ ଅଛି । ରୋହିଣୀଙ୍କର ଏ ଭ୍ରୂଣ କେଉଁଠୁ ଆସିଲା ? ଦେବକୀଙ୍କ ପାଖରୁ... ?'

ନନ୍ଦ କହିଲେ 'ହଁ, ଦେବକୀଙ୍କର ସପ୍ତମ ଗର୍ଭରୁ । ବାହାରକୁ ଜଣାଗଲା ଦେବକୀଙ୍କ ସପ୍ତମ ଗର୍ଭ ନଷ୍ଟ ହୋଇଯାଇଛି । କିନ୍ତୁ ବାସ୍ତବରେ ଦେବକୀଙ୍କ ସପ୍ତମ ଗର୍ଭର ପିଲା ରୋହିଣୀଙ୍କ ଗର୍ଭରେ ବଢ଼ିଲା ।'

'ତା'ପରେ ?' ସତ୍ୟକାମ ପଚାରିଲେ ।

'ହଁ, ରୋହିଣୀଙ୍କ ଗର୍ଭ କଥା ଜାଣିଲା ପରେ ମୁଁ ଯାଇଁ ଜବରଦସ୍ତ ରୋହିଣୀଙ୍କୁ ଏଠିକୁ ନେଇ ଆସିଲି । ପିଲା ଏଇଠି ହେଲା । ଚମତ୍କାର ପିଲା । କାଲି ଦେଖିବ ।' କହିଲେ ନନ୍ଦ ।

'ତା'ମାନେ ଦେବକୀଙ୍କର ସପ୍ତମ ଓ ଅଷ୍ଟମ ଗର୍ଭର ଦୁଇଟି ପିଲା ଏଠି ରହିବେ ।' କହିଲେ ସତ୍ୟକାମ ।

'ଦେଖାଯାଉ କଅଣ ହେଉଛି', କହିଲେ ନନ୍ଦ, 'ଯାହାର ସବୁ ବନ୍ଦୋବସ୍ତ ତାଙ୍କରି ଦୟା ।'

'ଏ ଠିକ୍ କଥା । ଭଗବାନଙ୍କ ନିର୍ଦ୍ଦେଶ', କହିଲେ ଭାନୁପ୍ରକାଶ, 'ଗୁରୁଦେବଙ୍କ ଆଶୀର୍ବାଦ । ମୋର ଦୃଢ଼ ବିଶ୍ୱାସ ସବୁ କାମ ଠିକ୍‌ରେ ହୋଇଯିବ ।'

ବାହାରେ ମେଘ ଜୋରରେ ଜୋରରେ ପଡିବାକୁ ଆରମ୍ଭ କଲାଣି । ପବନ, ଅଂଧାର, କେତେବେଳେ କେମିତି ବିଲୁଆର ଶବ୍ଦ ଓ କୁକୁରର ଡାକ ଭାସି ଆସୁଥାଏ । ଆହୁରି ଦୂରରୁ ଘୋସାରି ଘୋସାରି ହୋଇ ଅନ୍ୟାନ୍ୟ ନାଁ ନ ଜଣା ପଶୁମାନଙ୍କର ଶବ୍ଦ । ଘଡ଼ଘଡ଼ି, ବିଜୁଳି, ଫଡଫଡ ହୋଇ ପକ୍ଷୀମାନେ ଏ ଗଛରୁ ସେ ଗଛକୁ ଉଡି ଯାଉଛନ୍ତି । ପାଖ ପଡିଶା ଘରେ କୋଉଠି ପିଲାଟା କାନ୍ଦି ଉଠିଲା ।

'ସବୁଠୁ ବଡ଼ କଥା ନନ୍ଦ, ଏଠି ଯେମିତି କେହି କିଛି ନ ଜାଣନ୍ତି - ଯଶୋଦା ନୁହନ୍ତି, କି ପାଖ ପଡିଶା କେହି ନୁହନ୍ତି...।' କହିଲେ ଭାନୁପ୍ରକାଶ ।

'ନାଁ, ସେଥିପାଇଁ ମୁଁ ସତର୍କ ଅଛି', କହିଲେ ନନ୍ଦ, 'ଭିତରେ ଯଶୋଦାଙ୍କ ପାଖେ ପାଖେ ରୋହିଣୀ ରହିବେ । ବାହାରେ ମୁଁ ଅଛି । ବାସ୍, ସେତିକି ।'

'ତୁମେ ରୋହିଣୀଙ୍କୁ କୁହ, ଯଶୋଦାଙ୍କର ପ୍ରସବ କଷ୍ଟ ଆରମ୍ଭ ହେବା ସାଙ୍ଗେ ସାଙ୍ଗେ ସେ ପାଚନଟାକୁ ତାଙ୍କୁ ଦେଇଦେବେ ।' କହିଲେ ଭାନୁପ୍ରକାଶ, 'ଅଧରାତି ହେବା ପାଇଁ ଆଉ ପ୍ରାୟ ତିନି ଘଟିକା ସମୟ ଅଛି । ମୋର ବିଶ୍ୱାସ ଠିକ୍ ସମୟରେ ପ୍ରସବ ହୋଇଯିବ ।'

'ଭାନୁ, ଗୋପ କଥା ତ ଆମେ ବୁଝିଲେ । ସେ ପାଖ ଖବର କଅଣ ?' ପଚାରିଲେ ସତ୍ୟକାମ ।

ଭାନୁପ୍ରକାଶ ଟିକେ ରହିଗଲେ । ଦି ହାତ ଯୋଡି ମୁଣ୍ଡରେ ଲଗେଇଲେ । କହିଲେ, 'ଭଗବାନଙ୍କ ଦୟା, ଯାହା କରିବା କଥା ମୁଁ କରିଛି । ପ୍ରଥମେ କଂସ ନଅର କଥା କହେ । ସେଠି ଗୋପା ଅଛନ୍ତି । ଆମର ଅନ୍ୟ ଲୋକ ବି ଅଛନ୍ତି । କଂସ ଓ ତାର ଲୋକମାନଙ୍କୁ ବୁଝେଇ ଦିଆଯାଇଛି ଯେ ଆଜି ଦେବକୀଙ୍କର ଯେଉଁ ପିଲାଟା ହେବ, ସେହିଁ ଅସଲ ପିଲା । ତାରି ପାଇଁ ଯେତେ ଘୋଷଣା, ଆଲୋଚନା, ଅପେକ୍ଷା । ବସୁଦେବ ଓ ଦେବକୀ ବନ୍ଦୀଶାଳାରେ । ତାଙ୍କୁ ଥାକ ଥାକ କରି ରକ୍ଷୀମାନେ ଜଗି ରହିଛନ୍ତି । ଯେମିତି କୌଣସି କିଛି ଗୋଳମାଳ ନ ହୁଏ । ପିଲାଟା ଆଗ ଜନ୍ମ ହଉ । ତା'ପରେ ମାଛକୁ ଖେଳେଇଲା ପରି ତାକୁ ଆସ୍ତେ ଆସ୍ତେ ଖେଳେଇ ଧରି ହବ । ବ୍ୟସ୍ତ ହବା ଦରକାର ନାହିଁ । କଂସର ଏତେ ପ୍ରତାପ, ଏଡ଼େ ରାଜତ୍ୱ । ଲୋକେ ନ କହନ୍ତୁ ଗୋଟାଏ ଛୋଟ ପିଲାଟା ପାଇଁ, ଯେ କି ଏ ପର୍ଯ୍ୟନ୍ତ ଜନ୍ମ ହୋଇନି, କଂସ ଡରିହରି ଛାନିଆ ହୋଇଗଲାଣି । ସେ ଯାଇଁ ଆରାମରେ ଶୋଉ । ଠିକ୍ ସମୟରେ ଖବର ଦିଆଯିବ ।'

'ସେମିତି ହେଲା କି ?' ସତ୍ୟକାମ ପଚାରିଲେ ।

'ହଁ, ହୋଇଥିବ', ଭାନୁପ୍ରକାଶ କହିଲେ, 'ଗୋପାଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ । ସେ ଠିକ୍ ବନ୍ଦୋବସ୍ତ କରିଥିବେ । ତଥାପି ମୁଁ ତାଙ୍କୁ ସଂକେତ ଦେବା ପାଇଁ କହିଛି , ଯେମିତି ଆମେ ନିଶ୍ଚିତ ହେବୁ ।'

'କେମିତି ଦେବେ ?' ସତ୍ୟକାମ ପଚାରିଲେ ।

'ଟିକିଏ ଅସୁବିଧା ଅଛି । ତଥାପି ହବ । ରାଜପ୍ରାସାଦର ଗୋଟାଏ ଉଚ୍ଚା ଜାଗାରୁ ଦୀପ ଜାଳି ସେ ସଂକେତ ଦେବେ । ସେ ନିଜେ ଏ କାମ କରିବେ । ରାତି ଅଧ ହେବାର ଅନ୍ତତଃ ଗୋଟାଏ ଘଟିକା ଆଗରୁ ଆମର ଏ ସଂକେତ ଦରକାର । ମୁଁ କହି ଦେଇଛି । ଆମେ କିଛି ସମୟ ପରେ ଯମୁନା ଘାଟକୁ ଚାଲିଯିବା । ସେଇଠି ଏ ସଂକେତ ପାଇବା ସହଜ ହେବ । ଏ କାମସବୁ ସରିଲା ପରେ ଆମକୁ ବି ଦୀପ ଜାଳି ସଂକେତ ଦବାକୁ ହବ । ଗୋପା ଜାଣନ୍ତି, ସେ ଅପେକ୍ଷା କରିଥିବେ ।'


Digitized by srujanika@gmail.com

'ମୁଁ ଆଉ ଜଣଙ୍କ କଥା ଭାବୁଛି', କହିଲେ ନନ୍ଦ, 'ପ୍ରଦ୍ୟୋତ । ସେ ଅତ୍ୟନ୍ତ ଧୂର୍ତ୍ତ ।' 'ଧୂର୍ତ୍ତ ଠିକ୍', କହିଲେ ଭାନୁପ୍ରକାଶ, 'କିନ୍ତୁ ସେ ଆମକୁ କିଛି କିଛି ସମର୍ଥନ କରନ୍ତି ।'

'ସମର୍ଥନ କରନ୍ତି । ଆଶ୍ଚର୍ଯ୍ୟ ।' କହିଲେ ସତ୍ୟକାମ ।

'ହଁ', କହିଲେ ଭାନୁପ୍ରକାଶ, 'ତା'ର କାରଣ ଅରିନ୍ଦମର ବାପା । ତାଙ୍କୁ ପ୍ରଦ୍ୟୋତ ଖୁବ୍ ମାନନ୍ତି । ତାଙ୍କର ଯୋଗ ଶକ୍ତିକୁ ଡରନ୍ତି । ସେ ପ୍ରଦ୍ୟୋତଙ୍କୁ କହି ଦେଇଛନ୍ତି ଆମକୁ ହଇରାଣ ନ କରିବା ପାଇଁ । ତା'ଛଡ଼ା ପ୍ରଦ୍ୟୋତ କଂସପାଇଁ ସବୁ କାମ କଲେ ବି କଂସକୁ ବିଶ୍ୱାସ କରନ୍ତିନି । କଂସ ଯେମିତି ଗୋଟାଏ ପରେ ଗୋଟା ଦେବକୀର ଛୁଆଗୁଡ଼ାକୁ ମାରି ପକେଇଲା, ସେ ଜମା ପସନ୍ଦ କରୁ ନ ଥିଲେ । କଂସକୁ ବି ବାରମ୍ବାର ସେ ବାରଣ କରିଥିଲେ । ମୋର ମନେ ହେଉଛି ସେ ବୋଧେ ନିଜ ଘରକୁ ଚାଲିଗଲେଣି । ଆଜି ରାତିରେ ଆଉ ଫେରିବେନି ।'

'ଆମର ଏ ସବୁ ଯୋଜନା ବିଷୟରେ ପ୍ରଦ୍ୟୋତ କଅଣ କିଛି ଜାଣନ୍ତି ?' ପଚାରିଲେ ନନ୍ଦ । 'ନାଁ, ପ୍ରଦ୍ୟୋତ ଜାଣନ୍ତି ବୋଲି ମୋର ମନେ ହେଉନି', କହିଲେ ଭାନୁପ୍ରକାଶ, 'କିନ୍ତୁ ଯାହା କହିଲ ଧୂର୍ତ୍ତଲୋକ ତ । କିଛି ସନ୍ଦେହ କରିବା ଅସମ୍ଭବ ନୁହେଁ । କିନ୍ତୁ ଯାହା ହେଉ ତାଙ୍କଠାରୁ ମୁଁ ବିଶେଷ ବିରୋଧ ଆଶଙ୍କା କରୁନି । ମୋର ଯାହା ଖବର ଆଜି ରାତିରେ ତାଙ୍କର ଲୋକଙ୍କ ପ୍ରତି କିଛି ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ନାହିଁ । ଅନ୍ୟ ଦିନ ଯାହା ଆଜି ବି ସେଇଆ । ସାଧାରଣ ଭାବରେ ସବୁଦିନେ ରାତିରେ ଯେମିତି ଜଗାରଖା କରନ୍ତି ସେମିତି କରିବେ । ଯଦି କଂସ ରାତିରେ ନିହାତି ଖୋଜାଲୋଡ଼ା କରନ୍ତି ତେବେ ଖବର ଦେବେ । ବାସ୍ ସେତିକି ।'

'ତା'ମାନେ', କହିଲେ ନନ୍ଦ, 'ଆଜି ଯେ ଦେବକୀଙ୍କର ପିଲା ହେବ ଏ ଘଟଣାକୁ ସେ କୌଣସି ଗୁରୁତ୍ୱ ଦେଉ ନାହାନ୍ତି ।

'ନାଁ, ଅନ୍ତତଃ ବାହାରୁ ତାହାହିଁ ମନେ ହେଉଛି', କହିଲେ ଭାନୁପ୍ରକାଶ, 'ସେ ମନେ ମନେ କଅଣ ଭାବୁଥିବେ ସେ ଅନ୍ୟ କଥା ।'

'କିନ୍ତୁ ଦେବକୀଙ୍କର ଏ ଜନ୍ମ ହେବା ପିଲାଟା ଯେ ତାଙ୍କର ଅନ୍ୟ ଜନ୍ମିତ ପିଲାଙ୍କ ଠଉଁ ଅଲଗା, ବା ଅଲଗା ବୋଲି କୁହାଯାଉଛି, ଏ କଥା କଅଣ ସେ ଜାଣନ୍ତି ନାହିଁ ?' କହିଲେ ନନ୍ଦ ।

'ନିଶ୍ଚୟ ଜାଣିଥିବେ', କହିଲେ ଭାନୁପ୍ରକାଶ, 'କିନ୍ତୁ ସେ କଥା ତାଙ୍କ କାମରୁ ଜଣା ନ ଯିବା ପର୍ଯ୍ୟନ୍ତ ଆମେ କାହିଁକି ବ୍ୟସ୍ତ ହବା । ସେ ରାତିରେ ଜାଗା ଉପରେ ନ ରହି ନିଜ ଘରକୁ ଚାଲିଗଲେ । କାରଣ ଯାହାଥାଉ, ଯାଆନ୍ତୁ । ଆମ କାମ ସୁବିଧା


Digitized by srujanika@gmail.com

ହେଲା ।'

'ମୁଁ ଆଉ ଗୋଟାଏ କଥା ଭାବୁଛି ଭାନୁ', କହିଲେ ସତ୍ୟକାମ, 'ଏ ଏତେ ସିଧା ସିଧା କଥା ନୁହେଁ । ତୁମେ ସବୁ ଯାହା କହୁଛ ପ୍ରଦ୍ୟୋତ ଅତ୍ୟନ୍ତ ଚାଲାକ ଚତୁର ଲୋକ । ଆଜି ଦେବକୀର ପିଲା ହବ, ଯେଉଁ ପିଲାଟା ବିଷୟରେ ଯେତେ ଗୋଳମାଳିଆ କଥା, ଅଥଚ ସେ ଅଣଦେଖା କରି ଘରକୁ ରାତିରେ ଶୋଇବାକୁ ଚାଲିଯିବ, ଏ କେମିତି ଅଖାଡୁଆ ଲାଗୁଛି ।'

'ସତ୍ୟକାମଙ୍କ କଥା ଯୁକ୍ତିଯୁକ୍ତ ଭାନୁପ୍ରକାଶ', କହିଲେ ନନ୍ଦ, 'ମୁଁ ବି ସେମିତି ଭାବୁଥିଲି । ତୁମେ ଯାହା କହିଲ ଆମ କାମ ହୋଇଗଲେ ଗଲା, ଆମେ କାହିଁକି ବ୍ୟସ୍ତ ହବା, ଠିକ୍ । କିନ୍ତୁ କାର୍ଯ୍ୟ କାରଣର ସୂତ୍ର ନ ଜାଣିଲେ ଯଦି ଶେଷ ମୁହୂର୍ତ୍ତରେ ଗୋଳମାଳ ହେଇଯାଏ ? ତା ହେଲେ ?'

ଭାନୁପ୍ରକାଶ ଟିକେ ଭାବିଲେ, କହିଲେ 'ନାଇଁ ସତ୍ୟକାମଙ୍କ ଯୁକ୍ତି ଠିକ୍ । କିନ୍ତୁ ଆମେ କେମିତି ଜାଣିବା ?'

'ମୋର ମନେ ହେଉଛି, ଭାନୁ ।' କହିଲେ ସତ୍ୟକାମ, 'ଏ ଭୟ । ପ୍ରଦ୍ୟୋତଙ୍କୁ ବୋଧେ ଏ ସବୁରେ ମୁଣ୍ଡ ନ ପୂରେଇବା ପାଇଁ କୁହାଯାଇଛି, ଯେଉଁକଥା ଅମାନ୍ୟ କରିବାକୁ ତାଙ୍କର ସାହସ ନାହିଁ ?'

'ଭୟ...' ଆଶ୍ଚର୍ଯ୍ୟ ହୋଇ ଭାନୁପ୍ରକାଶ ସ୍ୱଗୋତକ୍ତି କଲାପରି କହିଲେ, 'ମଥୁରାରେ ପ୍ରଦ୍ୟୋତଙ୍କର ଭୟ ! ତାଙ୍କୁ ତ ସମସ୍ତେ ଭୟ କରନ୍ତି । କଂସର ଭୟ... ?'

'ନାଁ', ସତ୍ୟକାମ କହିଲେ, 'ମୁଁ ତା ଭାବୁନି । କଂସର ଭୟ ଶାରୀରିକ ଭୟ । ଏ ମାନସିକ ସ୍ତରର ଭୟ, ଯେଉଁ ଭୟକୁ ଆଡ଼େଇ ଦେଇ ହେବନି । ବାହାର ଭୟଟା ଅନୁଭବ କରିହୁଏ । କିନ୍ତୁ ଏ ଭୟଟା ...ଭିତରୁ ବାହାରେ ।'

'ମଥୁରାରେ ପ୍ରଦ୍ୟୋତଙ୍କର ଏତେ ଭୟ କାହାକୁ... ?' ଭାନୁପ୍ରକାଶ ଆଗ ପରି ସ୍ୱଗୋତୋକ୍ତି କଲାପରି କହିଲେ ।

'ମୁଁ ଜଣଙ୍କ କଥା ଭାବୁଛି... ?' କହିଲେ ସତ୍ୟକାମ, 'କିଛି ଆଗରୁ ତୁମେ ଅରିନ୍ଦମର ବାପାଙ୍କ କଥା କହୁଥିଲ ଯାହାଙ୍କ କଥା ପ୍ରଦ୍ୟୋତ ଶୁଣନ୍ତି ଓ ମାନନ୍ତି । ମୁଁ ତାଙ୍କ ବିଷୟରେ ଗୁରୁଦେବଙ୍କ ପାଖରୁ ଶୁଣିଛି । ଗୁରୁଦେବ ତାଙ୍କୁ ବହୁତ ସମ୍ମାନ କରନ୍ତି । ଗୁରୁଦେବ କହନ୍ତି ସେ ପ୍ରଚଣ୍ଡ ଯୋଗ ଶକ୍ତିର ଅଧିକାରୀ । ଅସମ୍ଭବକୁ ସମ୍ଭବ କରିବା କ୍ଷମତା ତାଙ୍କର ଅଛି । ସେ ଭୂତ ଭବିଷ୍ୟତ ଦେଖି ପାରନ୍ତି । କିନ୍ତୁ ସେ ଚୁପ୍‌ଚାପ ଲୋକ । ନିଜର ପୂଜା ଅର୍ଚ୍ଚନାରେ ବ୍ୟସ୍ତ ଥାଆନ୍ତି । ନିଜର ପ୍ରଚାର


Digitized by srujanika@gmail.com

କେବେହେଲେ କରନ୍ତି ନାହିଁ । ଯେ ଜାଣେ ସେ ଜାଣେ । ସେହି ଯୋଗୁଁ ଗୁରୁଦେବ ତାଙ୍କୁ ଖାଲି ସମ୍ମାନ ନୁହେଁ ଯଥେଷ୍ଟ ସ୍ନେହ ବି କରନ୍ତି । ସେ ନୁହେଁ ତ ?'

'ସମ୍ଭବ', ଭାନୁପ୍ରକାଶ କହିଲେ, 'ମୁଁ ତାଙ୍କୁ ଭଲ ଭାବରେ ଜାଣେ, ମୋର ଗୁରୁଦେବଙ୍କ ପ୍ରତି ଯେତିକି ସମ୍ମାନ ତାଙ୍କ ପ୍ରତି ସେତିକି ସମ୍ମାନ । ମୋର ମଥୁରା ଆସିବା କାରଣ ସେହି, ତାଙ୍କରି ଅନୁରୋଧ ବା ଆଦେଶ ଯାହା କହ । ଏସବୁ ଘଟଣା ଘଟିବାର ବହୁ ଆଗରୁ ସେ ମୋତେ ସୂଚନା ଦେଇଥିଲେ ଏସବୁ ଘଟିପାରେ, ସତର୍କ ରୁହ । ତାଙ୍କର ଅଦ୍ଭୁତ ଯୋଗ ଶକ୍ତି । ମୋର ତ ତାଙ୍କ ଆଗରେ ମୁହାଁମୁହିଁ ଛିଡ଼ା ହୋଇ କଥା କହିବାକୁ ଭୟ ଲାଗେ ।' 'ମୋର ମନେ ହୁଏ ସେହି', କହିଲେ ସତ୍ୟକାମ, 'ସେହି ହିଁ ପ୍ରଦ୍ୟୋତଙ୍କୁ ରାତିରେ ଘରକୁ ଚାଲିଯିବାକୁ କହିଛନ୍ତି, ଯାହାଙ୍କ କଥା ଅମାନ୍ୟ କରିବାକୁ ପ୍ରଦ୍ୟୋତଙ୍କର ସାହସ ନାହିଁ ।'

'ମୁଁ ଆଜି ସକାଳେ ଅରିନ୍ଦମର ଘରକୁ ଯାଇଥିଲି । ବାପା ଡକେଇଥିଲେ ।' କହିଲେ ଭାନୁପ୍ରକାଶ, 'ସେ ମୋତେ ଆଜିର ବନ୍ଦୋବସ୍ତ କଥା ପଚାରିଲେ । ମୁଁ କହିଲି । ସେ ସବୁ ଶୁଣି, ଅରିନ୍ଦମ ଓ ମୁଁ ବାହାରେ ଛିଡ଼ା ହୋଇଛୁ, ନିଜେ ପୂଜା ଘରକୁ ଚାଲିଗଲେ । କିଛି ସମୟ ପରେ ସେ ପୂଜା ଘରୁ ବାହାରି ଆସିଲେ । ତାଙ୍କ ମୁହଁ ଚାରିପାଖରେ ଗୋଟାଏ ଅଦ୍ଭୁତ ଆଲୋକର କୁଣ୍ଡଳୀ । ଆମ ଦିହିଁଙ୍କ ଭୟ ଲାଗିଲା । କହିଲେ - ଠିକ୍ ଅଛି, ସବୁ ଠିକ୍ ହୋଇଯିବ । ତୁମେ ଯେମିତି ବନ୍ଦୋବସ୍ତ କରିଛ ସେମିତି କର ।'

'ଭାନୁପ୍ରକାଶ', କହିଲେ ସତ୍ୟକାମ, 'ମୁଁ ଆଉ ଗୋଟାଏ କଥା ବି ଭାବୁଛି । ଦେବକୀଙ୍କର ସପ୍ତମ ଗର୍ଭର ଭ୍ରୂଣ ଯେ ରୋହିଣୀଙ୍କର ଗର୍ଭକୁ ଚାଲି ଆସିଲା, ଏଥିରେ ତାଙ୍କର କିଛି କରିବାର ନାହିଁ ତ ?'

ଭାନୁପ୍ରକାଶ କିଛି ଉତ୍ତର ଦେଲେ ନାହିଁ । କେବଳ ସତ୍ୟକାମଙ୍କ ମୁହଁକୁ ଚାହିଁଲେ, ଓ ପରେ ପରେ ନନ୍ଦଙ୍କୁ ଚାହିଁଲେ । ତିନି ବଂଧୁ ପରସ୍ପରକୁ ଚାହିଁ କିଛି ସମୟ ଚୁପ ହୋଇ ବସି ରହିଲେ । ବାହାରେ ବର୍ଷା, ପବନ, ଘଡ଼ଘଡ଼ିର ତାଣ୍ଡବ । ନନ୍ଦ କହିଲେ, 'ମୋର ଭୟ କଟିଗଲା ଭାନୁ । ମୋର ବିଶ୍ୱାସ ସବୁ ଠିକ୍ ସମୟରେ, ଠିକ୍ ହୋଇଯିବ ।'

ନନ୍ଦ ଉଠି ଘର ଭିତରକୁ ଯାଇଁ ଫେରି ଆସିଲେ । ପୁଣି ଆଲୋଚନା ଆରମ୍ଭ ହେଲା । 'ଅନ୍ୟ ବନ୍ଦୋବସ୍ତ କଥା କହେ', କହିଲେ ଭାନୁପ୍ରକାଶ, 'ବନ୍ଦୀଶାଳାରେ ଆମ ଲୋକ ଅଛନ୍ତି । ଆଉ ବନ୍ଦୀଶାଳାରୁ ଯମୁନା ଦେବୀଙ୍କ ମନ୍ଦିର ପାଖ ଯମୁନା ଘାଟ ପ୍ରାୟ ଲାଗିଛି । ବାଟ ବି ଅସୁବିଧା ନୁହେଁ । ମୋର ମନେ ହେଉଛି ବସୁଦେବ ଶୀଘ୍ର

ଓ ସହଜରେ ଆସି ପାରିବେ ।'

'କିନ୍ତୁ କେତେବେଳେ କଅଣ କରିବାକୁ ହେବ ବସୁଦେବ ଜାଣନ୍ତି ତ ?' ପଚାରିଲେ ନନ୍ଦ, 'ତାଙ୍କଠଉଁ ତ ଆରମ୍ଭ ଓ ସେ କେତେ ଚଟପଟ ଠିକ୍ ଭାବରେ ସବୁ କାମ କରି ପାରିବେ ତା ଉପରେ ସବୁ ନିର୍ଭର କରିବ ।'

'ଖାଲି କଅଣ ବସୁଦେବ' , କହିଲେ ସତ୍ୟକାମ, 'ଦେବକୀଙ୍କ କଥା ଭାବ । ସେ କେତେଦୂର ସହଯୋଗ କରି ପାରିବେ ତା' ଚିନ୍ତା କରିବା କଥା । ସେ ଯଦି ପିଲା ଜନ୍ମ କରି ଅଚେତ ହୋଇ ଶୋଇଶାଇ ପଡନ୍ତି ତା'ହେଲେ ଠିକ୍ ଅଛି, ବସୁଦେବ ସହଜରେ ଆସି ପାରିବେ । କିନ୍ତୁ ତାଙ୍କର ଯଦି ଚେତା ରହେ, ସେ କନ୍ଦାକଟା କରନ୍ତି, ତା' ହେଲେ... ?'

'ବସୁଦେବଙ୍କ ସାଙ୍ଗରେ ଦେବକୀଙ୍କି ବି କୁହାହୋଇଛି', କହିଲେ ଭାନୁପ୍ରକାଶ, 'ତାଙ୍କୁ ସବୁ କଥା ବୁଝେଇ ଦିଆଯାଇଛି । ତା'ଛଡ଼ା ଯେଉଁ ପାଚନ ଯଶୋଦାଙ୍କୁ ଦିଆଯାଇଛି, ସେହି ପାଚନ ଦେବକୀଙ୍କ ପାଇଁ ବି ପଠେଇ ଦିଆଯାଇଛି ଓ କେତେବେଳେ ଖାଇବେ ତା ବି କୁହାଯାଇଛି । ଏ ପାଖ ସେପାଖ ନ ହୋଇ ଚଟପଟ କାମ କରିବା ଅତ୍ୟନ୍ତ ଜରୁରୀ । ଏକଥା ସେମାନେ ଜାଣନ୍ତି । ସେମାନେ ଦାୟିତ୍ୱପୂର୍ଣ୍ଣ ଲୋକ । ମାଡ଼ ଖାଇଖାଇ ଶିଖି ଗଲେଣି । ଭାବୁଛି ଠିକ୍ ହବ ।'

'ଏକଥା ସବୁ କିଏ କହିଛି ? ତୁମେ... ?' କହିଲେ ସତ୍ୟକାମ, 'ତୁମେ କଅଣ ବନ୍ଦୀଶାଳା ଭିତରକୁ ଯାଇ ପାରିଲ ?'

'ନାଁ, ମୁଁ ନୁହେଁ', କହିଲେ ଭାନୁପ୍ରକାଶ, 'ଗୋପା ଓ ରୋହିଣୀ -ଅଲଗା ଅଲଗା ସମୟରେ ।'

'ଯିବା ପାଇଁ ଅନୁମତି ପାଇଲେ... ?' ପଚାରିଲେ ସତ୍ୟକାମ ।

'ଅନୁମତି ପାଇଁ ବନ୍ଦୋବସ୍ତ କରାଗଲା', କହିଲେ ଭାନୁପ୍ରକାଶ, 'ରୋହିଣୀଙ୍କ ପାଇଁ ବିଶେଷ ଅସୁବିଧା ହେଲାନାହିଁ । ସେ ତ ଆଗରୁ ଯିବା ଆସିବା କରୁଥିଲେ । ପ୍ରଦ୍ୟୋତଙ୍କୁ ସେ ଯାଇଁ କହିବା ସାଙ୍ଗେ ସାଙ୍ଗେ ସେ ରାଜି ହେଇଗଲେ । ଯିବାପାଇଁ ଅନୁମତି ଦେଇ ଦେଲେ । କିନ୍ତୁ ଗୋପାଙ୍କ ପାଇଁ ଟିକିଏ ଅସୁବିଧା ହେଲା ।'

'କିନ୍ତୁ ଗୋପାଙ୍କର ତ ପ୍ରଦ୍ୟୋତଙ୍କର ସହିତ ଭଲ ସଂପର୍କ ।' କହିଲେ ନନ୍ଦ, 'ମୁଁ ଯା ଶୁଣିଛି ଗୋପା ପ୍ରଦ୍ୟୋତଙ୍କର ଘରକୁ ଯିବା ଆସିବା କରନ୍ତି । ଗୋପାଙ୍କର କଂସର ରାଣୀମାନଙ୍କ ସହିତ ଖୁବ୍ ଭଲ ସଂପର୍କ । ପ୍ରଦ୍ୟୋତ ସେହି ଜରିଆରେ କଂସ ପାଖରୁ ତାଙ୍କର ଅନେକ କାମ କରେଇ ନେଇଛନ୍ତି । ତା ହେଲେ କଅଣ ହେଲା ?'

'ତା ଠିକ୍', କହିଲେ ଭାନୁପ୍ରକାଶ, 'ଗୋପାଙ୍କର ସମସ୍ତଙ୍କର ସାଙ୍ଗରେ ଭଲ

ସଂପର୍କ। କଂସ ନଅରରେ ଗୋପା ଖୁବ୍ ଜଣାଶୁଣା । ସେଇଟାହିଁ ଅସୁବିଧା ହେଲା । କଂସ ସନ୍ଦେହୀ ଲୋକ । ତା'ର ଇଛା ନୁହେଁ ଯେ ଦେବକୀ ସାଙ୍ଗରେ କେହି ସଂପର୍କ ରଖୁ । ରୋହିଣୀ ବସୁଦେବଙ୍କର ସ୍ତ୍ରୀ , ତେଣୁ ତାଙ୍କର ବିଶେଷ ଅସୁବିଧା ନ ଥିଲା । କନ୍ତୁ ଗୋପା ତ କିଛି ସଂପର୍କୀୟ ନୁହନ୍ତି । ସେ କାହିଁକି ଯିବେ ? ସେହିଯୋଗୁଁ ସେ କୁଂଥକୁଂଥ ହେଲେ । କାଳେ କଂସ ବିରକ୍ତ ହେବ ।'

'ତା ହେଲେ କେମିତି ହେଲା ?' ନନ୍ଦ ପଚାରିଲେ ।

'ନାଇଁ ହେଲା', କହିଲେ ଭାନୁପ୍ରକାଶ, 'ଗୋପାଙ୍କୁ ଟିକେ ଆଙ୍ଗୁଠି ବଙ୍କେଇବାକୁ ପଡିଲା । ରାଣୀମାନଙ୍କ ଜରିଆରେ କଂସକୁ ବୁଝେଇ ଦିଆଗଲା ଯେ ଦେବକୀଙ୍କର ଶୀଘ୍ର ପିଲା ହେବାର ଅଛି । ସେ କଂସକୁ ଖୁବ୍ ଡରି ଡରି ଅଛନ୍ତି । ପୁଣି ଏଇ ପିଲାଟା ଗୋଳମାଳିଆ ପିଲା । ଗୋପା କଂସର କେହି ସଂପର୍କୀୟ ନୁହନ୍ତି, ବାହାରର ଲୋକ, ସେ ଭଲ କହି ବୋଲି ପାରନ୍ତି । ଦେବକୀବି ତାଙ୍କୁ ବିଶ୍ୱାସ କରନ୍ତି । ସେ ଦେବକୀଙ୍କୁ କଂସ ସପକ୍ଷରେ ଭଲ ବୁଝେଇ ଦେଇ ପାରିବେ । ସେ ଯାଆନ୍ତୁ । ଏସବୁ ପରେ କଂସ ରାଜି ହେଲା । କିନ୍ତୁ କହିଲା ଗୋପା ଏକା ଯିବେ ନାହିଁ । ତାଙ୍କ ସାଙ୍ଗରେ କଂସର ଆଉ ଜଣେ ନିଜର ସ୍ତ୍ରୀ ଲୋକ ଯିବ ।'

ଉଭୟ ନନ୍ଦ ଓ ସତ୍ୟକାମ ହସି ଉଠିଲେ । ସତ୍ୟକାମ କହିଲେ, 'ଆଉ ଜଣେ ସ୍ତ୍ରୀ ଲୋକ ? ତା ହେଲେ ଗୋପାଙ୍କର ତ ଅସୁବିଧା ହେଇଥିବ ?'

'କିଛିନାଇଁ... କିଛିନାଇଁ..', କହିଲେ ଭାନୁପ୍ରକାଶ, 'କଂସ ଓ ପ୍ରଦ୍ୟୋତ ଏପର୍ଯ୍ୟନ୍ତ ବି ଗୋପାଙ୍କର ବୁଦ୍ଧିକୁ ଠିକ୍ କରି ବୁଝିନାହାନ୍ତି । ସେ ଆରାମରେ ଗଲେ । କଂସ ସପକ୍ଷରେ ଯାହା କହିବା କଥା କହିଲେ । ସେ କଥା ସେ ସ୍ତ୍ରୀଲୋକ କଂସକୁ ଜଣେଇ ଥିବ । ଆଉ ଦେବକୀଙ୍କି ଯାହା ବୁଝେଇବା କଥା ତା ବି ବୁଝେଇ ଦେଲେ । ରୋହିଣୀ ଓ ଗୋପା ଉଭୟ ଦେବକୀ ଓ ବସୁଦେବଙ୍କୁ ସବୁ କଥା ବୁଝେଇ ଦେଇଛନ୍ତି । ମୁଁ ଭାବୁଛି ସେମାନେ ଠିକ୍ ଠିକ୍ ଯୋଉ କାମ ଯେତେବେଳେ କରିବା କଥା କରିବେ ।'

'ବନ୍ଦୀଶାଳାରେ ରକ୍ଷୀଙ୍କ ଖବର କଅଣ ? ସବୁ ଠିକ୍ ଅଛି ତ ?' ନନ୍ଦ ପଚାରିଲେ ।

'ଅଛି', ଭାନୁପ୍ରକାଶ କହିଲେ, 'ପ୍ରଦ୍ୟୋତ ଗତ କିଛିଦିନ ତଳେ ରକ୍ଷୀଙ୍କ ସଂଖ୍ୟା ବଢ଼େଇ ଦେଇଥିଲେ । ଆଜି ସେମାନେ ବି ଅଛନ୍ତି । କିନ୍ତୁ ଆମର ଅସୁବିଧା ହେବ ବୋଲି ମୁଁ ଭାବୁନି । ଅଧିକାଂଶ ରକ୍ଷୀ ମଥୁରାର ଲୋକ, ସେମାନେ କଂସର କାମ କଲେ ବି, ମନେ ମନେ କଂସର ବିରୋଧୀ । ଆଉ ବର୍ଷ ବର୍ଷ ଧରି ଦି ଜଣ

ଶାନ୍ତ ଶିଷ୍ଟ ନିର୍ଦ୍ଦୋଷ ଲୋକଙ୍କୁ ଜଗି ଜଗି ସେମାନେ ବିରକ୍ତ ହୋଇ ଗଲେଣି । କାମଦାମ କିଛି ନାହିଁ, ଖାଲି ବସି ରହ । ଆଉ ବସି ବସି ସେମାନଙ୍କର ବି ନିଜ କାମ କରିବାକୁ ଆଗ୍ରହ ଭାଙ୍ଗିଗଲାଣି ।'

'ତାଙ୍କ ଭିତରେ ତମ ଲୋକ ନାହାନ୍ତି ?' ନନ୍ଦ କହିଲେ ।

'ଅଛନ୍ତି', କହିଲେ ଭାନୁ ପ୍ରକାଶ, 'ଅନ୍ୟାନ୍ୟ ରକ୍ଷୀମାନଙ୍କର ଯେଉଁ ବିରକ୍ତି ଓ ମାନସିକ ଅବସ୍ଥା ଏମାନଙ୍କୁ ବହୁତ ସୁବିଧା ହୋଇଛି । ଏମାନେ ଯାହା କହୁଛନ୍ତି ସେମାନେ ମାନି ନଉଛନ୍ତି । ବିଶେଷ କରି ତାଙ୍କ ଭିତରେ ମୋର ଜଣେ ଅତ୍ୟନ୍ତ ବିଶ୍ୱସ୍ତ ଲୋକ ଅଛି, ଆଉ ଚାଲାକ ଚତୁର ବି... ସୁରଥ...'। 'ସୁରଥ.... ?' ସତ୍ୟକାମ ମନେ ପକେଇଲା ପରି କହିଲେ, 'ସୁରଥ... ନାଁ ଶୁଣିଲା ପରି ମନେ ହେଉଛି... ବେଶ୍ ଦକ୍ଷ ଲୋକ । ମଗଧ ଲୋକ ବୋଧେ ?'

'ହଁ, ମଗଧ ଗିରିବ୍ରଜର ଲୋକ', କହିଲେ ଭାନୁପ୍ରକାଶ, 'ଅତ୍ୟନ୍ତ ଦକ୍ଷ। ବଡ଼ କଥା ମୋର ଅତ୍ୟନ୍ତ ବିଶ୍ୱସ୍ତ । ସେ ଠିକ୍ ତମ ଆମ ପରି । ତା' ଉପରେ ସଂପୂର୍ଣ୍ଣ ନିର୍ଭର କରି ହେବ । ମୋର ଅନେକ କାମ କରିଛି ।'

'ସେ କଅଣ ବନ୍ଦୀଶାଳାରେ ଅଛି ?' କହିଲେ ସତ୍ୟକାମ ।

'ହଁ, ଖାଲି ରକ୍ଷୀ ନୁହେଁ, ରକ୍ଷୀଙ୍କର ମୁଖ୍ୟ' କହିଲେ ଭାନୁପ୍ରକାଶ, 'ତା କାମ ଦାମରେ ପ୍ରଦ୍ୟୋତ ବହୁତ ଖୁସି । ସେ ତାକୁ ନିଜ ପାଖରେ ରଖିଥିଲେ । ଏବେ ତାକୁ ସେ ବନ୍ଦୀଶାଳାର ଦାୟିତ୍ୱରେ ରଖିଛନ୍ତି । ସେ ଅଛି ବୋଲି ତ ସେ ଆଜି ରାତିରେ ନିଧଡ଼କ ନିଜ ଘରକୁ ଚାଲିଗଲେ । ସୁରଥକୁ କଂସ ବି ଜାଣେ ଆଉ ବିଶ୍ୱାସ କରେ ।'

ସତ୍ୟକାମ ହସି ଉଠିଲେ । ନନ୍ଦ ବି ।

ନନ୍ଦ କହିଲେ, 'ବୁଝିଲ ଭାନୁ, ମୋର ବଳି ବାମନ କଥା ମନେ ପଡୁଛି । ବଳି କହିଲେ ତୁମ ତୃତୀୟ ପାଦ କାହିଁ ? ବାମନ ତୃତୀୟ ପାଦ ଦେଖେଇ ଦେଲେ । ବାମନ କହିଲେ ତୁମର ତୃତୀୟ ସ୍ଥାନ କାହିଁ ? ଏ ସେମିତି କଥା ।' ଭାନୁପ୍ରକାଶ ହସିଲେ । କହିଲେ, 'ବଳି କିଏ ବାମନ କିଏ ମୁଁ ଜାଣେ ନା । କିନ୍ତୁ ଆଜି ସେହି ବଳିବାମନ କଥା ହିଁ ଘଟିବ ।'

ସତ୍ୟକାମ ଟିକେ କୁଂଥ କୁଂଥ ହେଲେ । କହିଲେ, 'ଭାନୁପ୍ରକାଶ, ଏ ସୁରଥ ଚାଲାକ ଚତୁର ବୋଲି କହୁଛ । ଟିକେ ଖୁବ୍ ବେଶୀ ଚାଲାକ ଚତୁର ହୋଇଯିବ ନି ତ ? ତା ହେଲେ ତ ସବୁ ବୁଡିଯିବ ।'

ଭାନୁପ୍ରକାଶ ଟିକେ ଗମ୍ଭୀର ହୋଇଗଲେ । କହିଲେ, 'ମୁଁ ସେ କଥା ଭାବିଛି । ଆକସ୍ମିକ ଘଟଣାକୁ ଆଗରୁ କହି ହବନି । ମୁଁ ଦୀର୍ଘଦିନ ଏଇ କାମ କଲିଣି । ମୋର


Digitized by srujanika@gmail.com

ଲୋକ ଚିହ୍ନିବାରେ କେବେ ଭୁଲ୍ ହେଇନି । ମୁଁ ସୁରଥକୁ ଅନେକ ଜାଗାରେ ପରୀକ୍ଷା କରିଛି । ଆଜି ପର୍ଯ୍ୟନ୍ତ ତା ବିରୁଦ୍ଧରେ ମୋର କହିବାର କିଛି ନାହିଁ । ନାଇଁ, ଆମକୁ ବିଶ୍ୱାସ କରିବାକୁ ହେବ, ଆଉ ମୋ ମନ କହୁଛି ଏ ଠିକ୍ ଅଛି ।'

'ସୁରଥ କଅଣ ଆମର ଯାହାଯାହା ହେବ ସବୁକଥା ଜାଣେ ?' ପଚାରିଲେ ନନ୍ଦ ।

'ନାଁ ?' କହିଲେ ଭାନୁପ୍ରକାଶ, 'ତାର ଯେତିକି କରିବାର କଥା ମୁଁ ତାକୁ ସେତିକି ବୁଝେଇ ଦେଇଛି । ଆମ ଯୋଜନାର ସବୁ କଥା ସେ ଜାଣେନା । ଆଜି ତାକୁ ଗୋଟିଏ କାମର ଦାୟିତ୍ୱ ଦିଆଯାଇଛି । ଆଉ ସେ ସେ ଗୋଟିଏ କାମ ହିଁ କରିବ । ରାତି ଅଧ ବେଳକୁ ସେ ଦେଖିବ ଯେମିତି ବନ୍ଦୀଶାଳାରେ ସବୁ ରକ୍ଷୀ ଦୁଇ ତିନି ଘଟିକା ଶୋଇ ଯାଆନ୍ତି, ଆଉ ବନ୍ଦୀଶାଳାର ଯିବା ଆସିବା କବାଟ ସବୁ ଖୋଲା ରହେ ।'

'ଆଉ ସେ ନିଜେ ?' ସତ୍ୟକାମ ପଚାରିଲେ ।

'ସେ ନିଜେ ତ ଚେଇଁ ରହିବ', ଭାନୁପ୍ରକାଶ କହିଲେ, 'କବାଟ ଓ ଫାଟକସବୁ ଖୋଲିବା ଓ ବନ୍ଦ କରିବା ଦାୟିତ୍ୱ ତାର । ତା'ଛଡ଼ା ସେହି ସମୟରେ ସେ ସବୁଆଡ଼େ ନଜର ରଖିବ ଯେମିତି ଆଉ କେହି କୌଣସି ସଂଧାନ ନ ପାଏ । ମୁଁ ତାକୁ ଏକଥା ବି କହିଛି ଯେ ସେ ନିଜେ କଅଣ ଘଟୁଛି ନ ଜାଣିବା ଭଲ । ସେ ଠିକ୍ ସବୁ କରିବ ।'

'ସେ କେମିତି କଅଣ ବନ୍ଦୋବସ୍ତ କରିଛି କିଛି ଜାଣିଛ ?' ସତ୍ୟକାମ ପଚାରିଲେ ।

'ହଁ, ମୋ ସାଙ୍ଗରେ ସେ କଥାବାର୍ତ୍ତା କରିଛି । ଠିକ୍ ହୋଇଛି ଆଜି ରକ୍ଷୀମାନଙ୍କର ଗୋଟାଏ ବଡ଼ ଭୋଜିର ବନ୍ଦୋବସ୍ତ ହେବ, ଆଉ ସେ ଭୋଜିରେ ସୁରଥ ଗୋଟାଏ ନିର୍ଦ୍ଦିଷ୍ଟ ମସଲାର ବ୍ୟବହାର କରିବ । ସେ ମସଲା ଖୁବ୍ ସ୍ୱାଦୁକର ସମସ୍ତେ ଜାଣନ୍ତି । କିନ୍ତୁ ସେ ମସଲାର ଆଉ ଗୋଟିଏ ଗୁଣ ବି ଅଛି । ଯାହା ଖୁବ୍ କମ୍ ଲୋକେ ଜାଣନ୍ତି । ସେ ନିଦ ମସଲା । ସେ ମସଲା ପଡିଥିବା ଖାଦ୍ୟ ଖାଇବା ପରେ ପରେ ଖାଇବା ଲୋକ ନିଶ୍ଚୟ ତିନି ଚାରି ଘଟିକା ଗାଢ ନିଦରେ ଶୋଇବ । ଆମ ପାଇଁ ସେତିକି ସମୟ ଯଥେଷ୍ଟ ।'

'ହଁ', ନନ୍ଦ କହିଲେ, 'ପିଲା ଜନ୍ମ ହେବ । ପିଲାକୁ ବସୁଦେବ ଗୋପକୁ ନେଇ ଆସିବେ ପୁଣି ଫେରିବେ । ମଝିରେ ଯମୁନା ନଈ ପାରିହେବେ । ସବୁ ଚୁପ୍‌ଚାପ୍ ହେଇ ରହିବ । ଜଣାଯିବ ଯେମିତି କିଛି ଘଟଣା ଘଟିନି । ପିଲାଟା ଜନ୍ମ

ହେଲା । ବାସ୍, ସେତିକି । ହଁ ଦୁଇ ତିନି ଘଟିକା ଯଥେଷ୍ଟ ।’

‘ଆଜି ତ ସଂଧ୍ୟାବେଳୁ ବର୍ଷା ଚାଲିଛି ।’ କହିଲେ ସତ୍ୟକାମ, ‘ମନେ ହେଉଛି ବର୍ଷା ଆହୁରି ବଢ଼ିବ । ଏଥିରେ ସେ ରକ୍ଷୀମାନେ ବାହାରେ କୋଉଠି ରୋଷେଇବାସ କରିବେ ? ଭୋଜି ପାଇଁ ଜାଗା କାହିଁ ?’

‘ଅଛି’, କହିଲେ ଭାନୁପ୍ରକାଶ, ‘ଉଗ୍ରସେନଙ୍କର ସେ ପୁରୁଣା ଘରଟା ତ ବଡ଼ । ତା’ଛଡ଼ା ସେ ଘରର ପଛ ପାଖରେ ରକ୍ଷୀମାନେ ବସାଉଠା କରିବା ପାଇଁ ଗୋଟାଏ ବଡ଼ ମଣ୍ଡପ କରାଯାଇଛି । ସେଇଠି । ସେ ବି ଆମ ପାଇଁ ଭଲ । ବସୁଦେବ ସିଧା ସିଧା ମୁଖ୍ୟ ଫାଟକ ବାଟେ ବାହାରକୁ ବାହାରି ଆସିବେ । ସେମାନେ ସବୁ ପଛ ପାଖରେ ରହିବେ । ସେଇଠି ଭୋଜି ହେରିକା ।’

‘ଅନ୍ୟ ଅସୁବିଧା ପ୍ରଭୃତି ବି ଅଛି ଭାନୁ’, କହିଲେ ସତ୍ୟକାମ, ‘ବର୍ଷା ଚାଲିଛି । ସେ ପିଲାଟାକୁ ଘୋଡ଼େଇଘାଡ଼େଇ ଆଣିବାକୁ ପଡିବ । ସେମିତି ଯଶୋଦାଙ୍କ ଛୁଆଟାକୁ ବି ଘୋଡ଼େଇଘାଡେଇ ନେବାକୁ ହେବ । ତା ଛଡ଼ା ସେ ବର୍ଷା ପବନ ଭିତରେ ଯମୁନା ପାରିହବାକୁ ହବ, ଦି ଥର ।

‘ସେ ଝୁଙ୍କି ତ ନବାକୁ ହବ, ସତ୍ୟକାମ’ । କହିଲେ ଭାନୁପ୍ରକାଶ, ‘ଉପାୟ ନାହିଁ । ବନ୍ଦୋବସ୍ତ ତ କରାହୋଇଛି । କିନ୍ତୁ ସୁବିଧା ବି ହେଲା । କେହି ପଦାକୁ ବାହାରିବେ ନାହିଁ । ଆମର ବଡ଼ ସମସ୍ୟା ବର୍ଷା ପବନ ନୁହେଁ । ବଡ଼ ସମସ୍ୟା ରକ୍ଷୀ । ସେମାନେ କେହି ଯେପରି କିଛି ନ ଜାଣନ୍ତି ।’

‘ରକ୍ଷୀଙ୍କ ଭିତରେ ଆମ ଲୋକ ତ ଅଛନ୍ତି ।’ କହିଲେ ସତ୍ୟକାମ ।

‘ହଁ’, କହିଲେ ଭାନୁପ୍ରକାଶ, ‘ଅଛନ୍ତି । ସୁରଥ ବି ସାବଧାନ ଅଛି । କିନ୍ତୁ କହି ହବନି । ଦେଖାଯାଉ । ଭଗବାନଙ୍କ ଦୟା ।’

ଭାନୁପ୍ରକାଶ ନନ୍ଦଙ୍କୁ ଚାହିଁଲେ । ତାଙ୍କର ମନେ ହେଲା ସେ ଯେପରି କଅଣ ଭାବୁଛନ୍ତି । ତାଙ୍କର ମୁହଁ ଶୁଖିଯାଇଛି । ସେ ଟିକିଏ ରହିଯାଇଁ ନନ୍ଦଙ୍କୁ ପଚାରିଲେ, ‘ନନ୍ଦ, କଅଣ ଭାବୁଛ ? ତୁମ ମୁହଁ ଶୁଖିଯାଇଛି କାହିଁକି ? କୁହ ।’ ନନ୍ଦ ସାମାନ୍ୟ ସଂକୁଚିତ ହେଲା ପରି ହେଲେ, କହିଲେ, ‘ନାଇଁ, ନାଇଁ, କିଛି ନାହିଁ ।’

ଭାନୁପ୍ରକାଶ କହିଲେ, ‘ନାହିଁ, କୁହ, ଏ ଗୁରୁତର ସମସ୍ୟା, ଆମେ ସବୁ କଥା ଜାଣିବା ଦରକାର । ଯଶୋଦାଙ୍କର କିଛି ଅସୁବିଧା ହେଇଚି ?

‘ନାଁ, ନନ୍ଦ କହିଲେ, ‘ସେସବୁ କିଛି ନୁହେଁ । ମୁଁ ଭାଗ୍ୟର ବିଡ଼ମ୍ବନା କଥା ଭାବୁଛି । ବହୁ ବର୍ଷ ପରେ ଯଶୋଦାଙ୍କର ପିଲା ହେବାକୁ ଯାଉଛି । ଅଥଚ ସେ ପିଲାଟା ନଷ୍ଟ ହେଇଯିବ ।’

'କିଏ କହିଲା ନଷ୍ଟ ହେଇଯିବ ? ଯଶୋଦାଙ୍କର ପିଲା ଯଶୋଦାଙ୍କର ହେଇ ରହିବ ।' କହିଲେ ଭାନୁପ୍ରକାଶ ।

ନନ୍ଦ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ... 'ତା ମାନେ... ? ଆମର ଏତେ ସବୁ ଆୟୋଜନ... ?

"ଆୟୋଜନ ଠିକ୍ ଅଛି', କହିଲେ ଭାନୁପ୍ରକାଶ, 'ମା ପାଖରେ ଗୋଟାଏ ଛୁଆ ରହିବ । ମା ଜାଣିବ ତାର ଛୁଆ...'

'ତା ଠିକ୍', କହିଲେ ନନ୍ଦ, 'କିନ୍ତୁ ସେ ତ ଆଉ ଯଶୋଦାଙ୍କର ଛୁଆ ନୁହେଁ ।' 'ଭୁଲ୍', କହିଲେ ଭାନୁପ୍ରକାଶ, 'ସେଟା ତୁମେ ଭାବୁଛ ।' ଯଶୋଦା ତ ଜାଣି ପାରିବେ ନାହିଁ, ଭାବିବେ କେମିତି ? ଯେଉଁ ଛୁଆ ଆସିବ ସେ ତାଙ୍କରି ଛୁଆ । ତା'ଛଡ଼ା ମା ପିଲାର ସଂପର୍କ ପାଇଁ ପିଲାଟା କଅଣ ମା ପେଟରୁ ଜନ୍ମ ହେଇଥିବା ଦରକାର ?' ଭାନୁପ୍ରକାଶ ଟିକେ ରହିଗଲେ । ତାଙ୍କର ଆଖି ଦିଟା ଜଳି ଉଠିଲା । କହିଲେ, 'ଜାଣିଛ ନନ୍ଦ, ଗୁରୁଦେବ କଅଣ କହୁଥିଲେ ? ଗୁରୁଦେବ କହୁଥିଲେ, ଆଜି ଯେଉଁ ପିଲାଟି ଯଶୋଦାଙ୍କ ପାଖକୁ ଆସିବ ସେ ଅସାଧାରଣ ପିଲା। ଆଜିଠୁଁ ହଜାର ହଜାର ବର୍ଷ ପରେ ବି ଲୋକେ ଏହି ପିଲା ମା ଭାବରେ ଯଶୋଦାଙ୍କ କଥା କହିବେ ।'

ନନ୍ଦ ହସିଲେ, କହିଲେ, 'ହେଲା, କିନ୍ତୁ ଆଜି ଯଶୋଦାଙ୍କର ଜନ୍ମିତ ପିଲାଟା ତ ମରିବ ।'

'ହଁ ମରିବ' । ଭାନୁପ୍ରକାଶଙ୍କ ସ୍ୱର କେଉଁ ଦୂରକୁ ଚାଲିଗଲା । 'କଂସ ନିମିତ୍ତ, ଏହାହିଁ ବିଧିର ବିଧାନ । ଏ ଖାଲି ମରିବା କଥା ନୁହେଁ, ଏ ବଳି । ଏ ବଳି ଦେଲେ ହିଁ ଯେଉଁ ଶକ୍ତି ଆସିବା କଥା ସେ ଆସିବ । ଜାଣ, ଗୁରୁଦେବ ପୁଣି କଅଣ କହନ୍ତି ? ସେ କହନ୍ତି ଯଶୋଦାଙ୍କ ଗର୍ଭର ଏ ପିଲା ପୁଅ ନୁହେଁ, ଝିଅ । ଦେବୀ ଦୁର୍ଗା ନିଜେ ଜନ୍ମ ହେଉଛନ୍ତି ।'

ନନ୍ଦ ଓ ସତ୍ୟକାମ ଉଭୟ ଚମକି ପଡିଲେ । ନନ୍ଦ କହିଲେ, 'ଏ କି କଥା । ମା ଦୁର୍ଗା... !'

'ହଁ, ଗୁରୁଦେବ ସେଇଆହିଁ କହିଲେ' । ଭାନୁପ୍ରକାଶ କହିଲେ ।

ସତ୍ୟକାମ କହିଲେ, 'ଭାନୁ, ନନ୍ଦ, ଏସବୁ ଆଲୋଚନା ଥାଉ । ଯାହା ହବାର ଠିକ୍ ହୋଇଛି ସେ ଖାଲି ଆମର ଆୟୋଜନ ନୁହେଁ । ଆମଠୁଁ ଯେ ବେଶି ଜାଣନ୍ତି, ବୁଝନ୍ତି, ସେମାନଙ୍କର ଆୟୋଜନ, ସେଇମାନଙ୍କର ନିର୍ଦ୍ଦେଶ । ଆମର ଦେଖିବା କଥା ଯେପରି କୌଣସି ଠିଁ କିଛି ତ୍ରୁଟି ନ ହୁଏ । ନନ୍ଦ, ତୁମର ଚିନ୍ତା ସବୁ ଛାଡିଦିଅ । ପରେ ସେସବୁ ଭାବିବା, ସମୟ ଆଉ ବେଶି ନାହିଁ । ଭାନୁ, ତୁମେ ଯମୁନା ପାରି ହବା କଥା

କହି ନା...।'

'ହଁ, ଏ ବର୍ଷା ପବନରେ ସେ ବନ୍ଦୋବସ୍ତ ତ ପକ୍କା ହେବା ଦରକାର', କହିଲେ ନନ୍ଦ ।

'ମୁଁ ଭାବୁଛି ତ ପକ୍କା ହେଇଛି' । କହିଲେ ଭାନୁପ୍ରକାଶ, 'ମୋର ଦି ଜଣ ଅତ୍ୟନ୍ତ ପରିଚିତ ନାଉରି ସେମାନଙ୍କର ନୌକା ନେଇ ଆସିଛନ୍ତି, ଓ ଏଇ ପାଖ ଘାଟରେ ଅପେକ୍ଷା କରି ରହିଛନ୍ତି । ମୁଁ ଗଲେ ନୌକା ନେଇ ସେ ପାଖକୁ ଯିବି । ବସୁଦେବ ସେହି ନୌକାରେ ଆସିବେ ଓ ସେହି ନୌକାରେ ଫେରିବେ ।'

'ତୁମେ... ?' ପଚାରିଲେ ନନ୍ଦ ।

'ମୁଁ ବସୁଦେବଙ୍କ ପାଖେ ପାଖେ ଥିବି', କହିଲେ ଭାନୁପ୍ରକାଶ, 'ମୁଁ ତାଙ୍କ ସାଙ୍ଗରେ ଆସିବି, ତାଙ୍କ ସାଙ୍ଗରେ ଫେରିବି । ଶେଷରେ ତାଙ୍କୁ ବନ୍ଦୀଶାଳାରେ ଛାଡି ମୁଁ ଗୋପ ଫେରିଆସିବି । ଆଉ ଆମ କାମ ସରିଲା ପରେ ନାଉରିମାନେ ରାତାରାତି ନୌକା ନେଇ ତାଙ୍କ ଯାଗାକୁ ଫେରିଯିବେ ।' 'ଏ ବର୍ଷା ପବନ... ?' ନନ୍ଦ ସ୍ୱଗୋତକ୍ତି କଲାପରି କହିଲେ ।

'ସେମାନେ ଅଭ୍ୟସ୍ତ । ଯମୁନାର ଉପର ମୁଣ୍ଡରେ ନଈ କୂଳରେ ସେମାନଙ୍କର ଗାଁ । ବହୁ ବର୍ଷ ଧରି ସେମାନେ ନୌକା ଚଳଉଛନ୍ତି । ଖାଲି ନଈ ପାରଉତାର ନୁହେଁ । ନଈର ଉପର ତଳ ସବୁଆଡ଼କୁ ସେମାନେ ଯାତ୍ରୀ ଓ ମାଲପତ୍ର ନେଇ ଯିବା ଆସିବା କରନ୍ତି । ଯମୁନାର ବର୍ଷା, ପବନ, ଲହରୀ ସେମାନେ ସବୁ ଜାଣନ୍ତି ।' କହିଲେ ଭାନୁପ୍ରକାଶ, 'ତା'ଛଡ଼ା ଆଉ ଗୋଟାଏ କଥା, ଏ ସାଧାରଣ ନୌକା ନୁହେଁ । ଏଥିରେ ଯନ୍ତ୍ର ଅଛି । ବର୍ଷା, ପାଣି ପବନରେ ଏ ନୌକାର କିଛି ହବନି ।

'କିନ୍ତୁ ଆଉ କଥାଟା, ଭାନୁ' ପଚାରିଲେ ସତ୍ୟକାମ, 'ତୁମେ ବନ୍ଦୋବସ୍ତ କରିଛ । ମୋର ବିଶ୍ୱାସ କିଛି ଅସୁବିଧା ହବନି । ହେଲେ ସେମାନେ ତ ସବୁ ଦେଖିବେ, ଜାଣିବେ । ତାପରେ .... ?'

'ହଁ, ସେ ଗୋଟାଏ ବଡ଼ ଝୁଙ୍କି', କହିଲେ ଭାନୁପ୍ରକାଶ, 'ତେବେ ସେ ଝୁଙ୍କି ନବାକୁ ପଡିବ । ଖାଲି ଏ ଦୁଇ ନାଉରି ନୁହନ୍ତି, ସୁରଥ ବି । ଏ ନାଉରି ଦିଜଣ ସବୁ ଦେଖିବେ ଠିକ୍, କେତେ ବୁଝିବେ ମୁଁ କହି ପାରୁନି । କିନ୍ତୁ ଦେଖିବାଟା ହିଁ କମ ବିପଦ ନୁହେଁ । ସୁରଥ ପାଇଁ ତ ଆହୁରି ବେଶି । ସେ ସବୁ ଦେଖିବ । ଜାଣିବ, ନିଜେ କରିବ । ତେବେ ବିଶ୍ୱାସ ତ କରିବାକୁ ହେବ...'

ଭାନୁପ୍ରକାଶ ଚୁପ କରିଗଲେ, କଅଣ ଭାବିଲେ, କହିଲେ, 'ମୁଁ ଗୁରୁଦେବଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିଥିଲି । ତାଙ୍କୁ ସୁରଥ କଥା, ଏ ନାଉରିମାନଙ୍କ

କଥା କହିଛି...'

'ଗୁରୁଦେବ କ'ଣ କହିଲେ ?' ପଚାରିଲେ ସତ୍ୟକାମ ।

'ଗୁରୁଦେବ ସବୁଦିନେ ଯେମିତି କହନ୍ତି, ପ୍ରଥମେ ସେମିତି କହିଲେ – ସାହସ ଦେଲେ, ଦମ୍ଭ ଦେଲେ, କହିଲେ ସବୁ ଠିକ୍ ହୋଇଯିବ...' କହିଲେ ଭାନୁପ୍ରକାଶ ।

'ତାପର... ?' ସତ୍ୟକାମ ପଚାରିଲେ ।

'ତା'ପର ଗୁରୁଦେବ କହିଲେ ତୁମେ ସ୍ତମ୍ଭନ ବିଦ୍ୟା ବ୍ୟବହାର କର ।' କହିଲେ ଭାନୁପ୍ରକାଶ ।

ସତ୍ୟକାମ ସାମାନ୍ୟ ହସିଲେ । କହିଲେ, 'ମୁଁ ସେଇକଥା ଭାବୁଥିଲି । ମୁଁ ଜାଣେ ଗୁରୁଦେବ ତୁମକୁ ସ୍ତମ୍ଭନ ବିଦ୍ୟା ଶିକ୍ଷା ଦେଇଛନ୍ତି । ଆଜି ବୋଧେ ସେଇ ବିଦ୍ୟା ପ୍ରୟୋଗ କରିବାକୁ ପ୍ରଶସ୍ତ କ୍ଷେତ୍ର ।'

'ସ୍ତମ୍ଭନ ବିଦ୍ୟା କ'ଣ ?' ନନ୍ଦ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

'ଭାନୁ, ନନ୍ଦଙ୍କୁ କୁହ', ସତ୍ୟକାମ କହିଲେ ।

'ଏ ଗୋଟାଏ ଗୋପନ ବିଦ୍ୟା, ନନ୍ଦ', କହିଲେ ଭାନୁପ୍ରକାଶ, 'ଏ ବିଦ୍ୟା ଜାଣିବାକୁ ହେଲେ ଅନେକ କଥା ମାନି ଚଳିବାକୁ ହୁଏ । ମୁଁ ମଗଧରେ କାମ ଆରମ୍ଭ କରିବା ବେଳେ ଗୁରୁଦେବ ମତେ ଏ ବିଦ୍ୟା ଶିଖେଇଥିଲେ । କହିଥିଲେ ଦରକାର ବେଳେ କାମରେ ଆସିବ ।'

'କିନ୍ତୁ ସ୍ତମ୍ଭନ ବିଦ୍ୟା କ'ଣ ?' ନନ୍ଦ ପୁଣି ପଚାରିଲେ ।

'ଏ ବିଦ୍ୟାର ଅନେକ ସ୍ତର ଅଛି । ସବୁ କଥା କହି ହବନି । ତେବେ ଏତିକି କହିଲେ ବୁଝିବ ଏ ବିଦ୍ୟା ଜାଣିଥିବା ଲୋକ ଅନ୍ୟ ଲୋକର ମନର କଥା ଜାଣି ପାରିବ, ଓ ଅନ୍ୟର ମନକୁ ନିଜ ଇଚ୍ଛା ଅନୁସାରେ ଚଳେଇ ପାରିବ ।'

'ଏ ତ ଗୋଳମାଳ କଥା', କହିଲେ ନନ୍ଦ, 'ଲୋକେ ତ ମନ୍ଦ ଉଦ୍ଦେଶ୍ୟରେ ଏ ବିଦ୍ୟା ବ୍ୟବହାର କରି ପାରିବେ ।'

'ପାରିବେ ।' କହିଲେ ଭାନୁପ୍ରକାଶ, 'କିନ୍ତୁ ସେ କ୍ଷେତ୍ରରେ ଏ ବିଦ୍ୟାର ସଂପୂର୍ଣ୍ଣ ଫଳ ଆସିବନି, ଓ ବ୍ୟବହାର କରୁଥିବା ଲୋକର କ୍ଷତି ହବ । ମୁଁ କ୍ୱଚିତ ଏ ବିଦ୍ୟା ବ୍ୟବହାର କରିଛି, ଓ ଖୁବ୍ ସାବଧାନରେ କରିଛି । ତା'ଛଡ଼ା ଖୁବ୍ ଟାଣୁଆ ଲୋକର ମନ ଉପରେ ଏ ବିଦ୍ୟା କାମ ନ କରିପାରେ ।' 'ଏଠି କେମିତି ବ୍ୟବହାର ହବ ?' ନନ୍ଦ କହିଲେ ।

'ସହଜ', ଭାନୁପ୍ରକାଶ କହିଲେ, 'ମୁଁ ଦି ନାଉରିଙ୍କ ମନକୁ ସ୍ତମ୍ଭନ କରିଦେଇ ପାରିବି । ଏପରିକି ସବୁ କାମ ସରିଗଲା ପରେ ସୁରଥ ମନକୁ ବି ସ୍ତମ୍ଭନ କରିଦେଇ


Digitized by srujanika@gmail.com

ହବ । ତା ହେଲେ ସେମାନେ ଯାହା ଯାହା କରିଥିବେ ଓ ଦେଖିଥିବେ ସବୁ ଭୁଲିଯିବେ ।'

'ଏ ଭଲ' । ନନ୍ଦ କହିଲେ, 'ଏ ଖାଲି କଂସ କଥା ନୁହେଁ । ଅନ୍ୟ ଲୋକେ ବି ନ ଜାଣିବା ଦରକାର । ମୁଁ ଯଶୋଦାଙ୍କ କଥା ଭାବୁଛି । ସେ ଯେମିତି କେମିତି କିଛି ନ ଜାଣନ୍ତି ।'

'ନାଁ, ତୁମେ କିଛି ବ୍ୟସ୍ତ ହୁଅନା ନନ୍ଦ', କହିଲେ ଭାନୁପ୍ରକାଶ । 'କେହି କିଛି ଜାଣି ପାରିବେ ନାହିଁ । ଯଶୋଦା ତ ନିଶ୍ଚୟ ନୁହେଁ । ମୁଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କାମ ସରିବା ପର୍ଯ୍ୟନ୍ତ ଦେଖିବି । ତୁମେ ନିଶ୍ଚିତ ରୁହ । ସବୁ ଠିକ୍ ହୋଇଯିବ ।'

ଭାନୁପ୍ରକାଶ କହୁ କହୁ ହଠାତ୍ ଚୁପ ହୋଇଗଲେ ଓ ନନ୍ଦଙ୍କୁ ଚାହିଁଲେ । ନନ୍ଦ ତଳକୁ ମୁହଁ ପୋତି କହୁଥିଲେ । ଭାନୁପ୍ରକାଶଙ୍କ କଥା ହଠାତ୍ ବନ୍ଦ ହୋଇଯିବାରୁ ସେ ମୁହଁ ଟେକି ଭାନୁପ୍ରକାଶଙ୍କୁ ଚାହିଁଲେ । ନନ୍ଦ କାନ୍ଦୁଥିଲେ କି ? ତାଙ୍କ ମୁହଁ ଶୁଖିଯାଇଛି । ଭାନୁପ୍ରକାଶ କିଛି ସମୟ ନନ୍ଦଙ୍କ ମୁହଁକୁ ଚାହିଁ ରହିଲେ । ଉଭୟ ଚୁପ । ତା ପରେ ଆସ୍ତେ ଆସ୍ତେ ସେ କହିଲେ, 'ନନ୍ଦ, ଯଶୋଦା ସିନା ଜାଣି ପାରିବେ ନାହିଁ । କିନ୍ତୁ ଆଉ ଜଣେ... ? ମୁଁ ତ ତାଙ୍କୁ କିଛି କରି ପାରିବି ନାହିଁ...' ଭାନୁପ୍ରକାଶଙ୍କ ସ୍ୱରରେ ଗଭୀର ବିଷର୍ଣ୍ଣତା । ସେ ଚୁପ କରିଗଲେ ।

'କାହା କଥା କହୁଛ.. ?' ନନ୍ଦ ଆସ୍ତେ ଆସ୍ତେ ପଚାରିଲେ ।

'ମୁଁ ନନ୍ଦଙ୍କ କଥା କହୁଛି', ଭାନୁପ୍ରକାଶଙ୍କ ସ୍ୱରରେ ସମାନ ବିଷଣ୍ଣତା 'ଯଶୋଦା ଜାଣି ପାରିବେ ନାହିଁ । ତେଣୁ ତାଙ୍କର ଦୁଃଖ ନାହିଁ । କିନ୍ତୁ ଯେ ସବୁ ଜାଣିବେ, ଶୁଣିବେ, ଦେଖିବେ, ଜାଣି ଜାଣି ନିଜ ଛୁଆଟାକୁ ହାଣ ମୁହଁକୁ ଛାଡ଼ିଦେବେ, ତାଙ୍କୁ ମୁଁ କଅଣ କହିବି, କଅଣ ବୁଝେଇବି ? ବର୍ଷ ବର୍ଷ ଧରି କେତେ ବର୍ଷ ମୁଁ ଜାଣେ ନା, ଏଇ ସତଟାକୁ ଯେ ମନ ଭିତରେ ମାଡିମକଚି ରଖିବେ, କେହି ଜାଣିବେ ନି, କାହାକୁ କହି ପରିବେ ନି... ?'

'ଥାଉ, ଥାଉ, ଭାନୁ...' ନନ୍ଦ କହିଲେ । ତାଙ୍କ ସ୍ୱର ସ୍ପଷ୍ଟ ହୋଇ ଆସିଲାଣି । 'ତୁମେ ଯାହା କହିଲ ଠିକ୍ । ମୋ ମନରେ ବହୁତ ଦୁଃଖ, ବହୁତ ବର୍ଷ ପରେ ଛୁଆଟା ହେବ । ଆଉ ସେ ଛୁଆଟାର ଏଇ ଅବସ୍ଥା । ମୁଁ ପୁରୁଷ ଲୋକ । ମୁଁ ସହିଯାଇ ପାରିବି । କିନ୍ତୁ ମୁଁ ଯଶୋଦାଙ୍କ କଥା ଭାବୁଛି । ସେ ଯଦି ସାମାନ୍ୟ ଜାଣିବେ..।'

'ହଁ, ସେ ଜାଣିବେ । କିନ୍ତୁ ଏବେ ନୁହେଁ, ବହୁତ ବର୍ଷ ପରେ । ଯେତେବେଳେ ସତ କଥାଟା ତାଙ୍କୁ ଜାଣିବାକୁ ହେବ ।' ଭାନୁପ୍ରକାଶଙ୍କ ସ୍ୱରରେ କେଉଁ ସୁଦୂରର କଥା ଉଠି ଆସିଲା, "ସେତେବେଳେ ଯଶୋଦାଙ୍କ ଦୁଃଖ କେବଳ

ତାଙ୍କର ଦୁଃଖ ହୋଇ ନ ଥିବ । ସବୁ ମା'ଙ୍କର ଦୁଃଖ ହୋଇଯିବ । ଆଉ ଲୋକେ ଯଶୋଦାମାଙ୍କୁ ସବୁଦିନେ ମନେ ରଖିବେ ।

'ନନ୍ଦ', ସତ୍ୟକାମ କହିଲେ, 'ଭାନୁ ଯାହା କହୁଛନ୍ତି ଠିକ୍ । ଆମେ ତୁମ ଦୁଃଖ ନେଇ ପାରିବୁନି । କେହି ନେଇ ପାରିବେନି । ତୁମ ଦୁଃଖକୁ ନିଆଁ ପରି ମନ ଭିତରେ ପୂରେଇ ତୁମକୁ ରଖିବାକୁ ପଡିବ । କିନ୍ତୁ ଗୋଟାଏ କଥା ତୁମକୁ ମୁଁ ମନେ ପକେଇ ଦିଏ, ତୁମେ ବି ଜାଣିଛ, ଆଜି ଯାହା ସବୁ ଘଟୁଛି ଆମେ ଚାହୁଁଛୁ ବୋଲି ହଉନି । ଏ ସବୁ ବିଧି ନିର୍ଦ୍ଦିଷ୍ଟ । ଆମେ ମାନୁ କି ନ ମାନୁ । ଯେଉଁ ଯୋଗୁଁ ଆମେ ଏକାଠି ହୋଇଛେ, ଆମ ସାଙ୍ଗରେ ଗୁରୁଦେବ ଅଛନ୍ତି, ଅରିନ୍ଦମର ବାପା ବି ଅଛନ୍ତି । ସମୟ ସୁଅରେ ଏମିତି ଘଟଣା କେବେ କେବେ ଘଟେ, ସେହି ସେହି ଘଟଣାର ପ୍ରଭାବ କୋଉ କୋଉ ଦୂର ଦୂର ଭବିଷ୍ୟତକୁ ଲାଗିଯାଏ । ଆଜି ସେମିତି ଗୋଟାଏ ଘଟଣା ଘଟିବାକୁ ଯାଉଛି, ଆଉ ସବୁ ତୁଚ୍ଛ । ତୁମେ ସ୍ଥିର ହୁଅ...' ସେ ଭାନୁପ୍ରକାଶଙ୍କୁ ଚାହିଁଲେ, 'ଭାନୁ କଅଣ କହୁଛ ? ଆମେ ପ୍ରସ୍ତୁତ ହବା କି ?'

ଭାନୁପ୍ରକାଶ ବୋଧେ କିଛି ଶୁଣୁ ନ ଥିଲେ । ସେ ସତ୍ୟକାମ ଓ ନନ୍ଦ ଉଭୟଙ୍କୁ ଚାହିଁଥିଲେ, କିନ୍ତୁ ବୋଧେ କିଛି ଦେଖୁ ନ ଥିଲେ । ତାଙ୍କର ଦୃଷ୍ଟି ଉଭୟଙ୍କୁ ଅତିକ୍ରମ କରି କେଉଁ ଦୂର ଅତୀତକୁ ପ୍ରସାରିତ ହୋଇ ଯାଇଥିଲା । ସବୁ ଧୂଆଁଳିଆ ଧୂଆଁଳିଆ, ଖଣ୍ଡ ଖଣ୍ଡ ହୋଇ ଆଖି ଆଗରେ ଭାସି ଉଠିଲା । ସମ୍ରାଟ ଶାନ୍ତନୁଙ୍କ ସ୍ତ୍ରୀ ଗଙ୍ଗା ପିଲା ଜନ୍ମ ହେବା ସାଙ୍ଗେ ସାଙ୍ଗେ ନିଜ ପିଲାଙ୍କୁ ହତ୍ୟା କଲେ । କାହିଁକି ? ଏ କି ପ୍ରକାରର ନିଷ୍ଠୁରତା ? କି ପ୍ରକାରର ମୋହ ? ସମ୍ରାଟ ବାଧା ଦେବାରୁ ଅଷ୍ଟମ ସନ୍ତାନ ବଂଚିଗଲା । କିନ୍ତୁ ସ୍ତ୍ରୀ ଗଙ୍ଗା ସ୍ୱାମୀଙ୍କୁ ପରିତ୍ୟାଗ କଲେ । ଏ କଅଣ ବିଧିର ନିର୍ଦ୍ଦେଶ ? ଏହିପରି ହେବାର ଥିଲା ? ଅଷ୍ଟମ ସନ୍ତାନ ଭୀଷ୍ମ - ଆର୍ଯ୍ୟାବର୍ତ୍ତର ଅନ୍ୟତମ ଶ୍ରେଷ୍ଠ ପୁରୁଷ, ଶ୍ରେଷ୍ଠ ଯୋଦ୍ଧା । ଗୁରୁଦେବ ବ୍ୟାସଦେବଙ୍କ କଥା । ନଦୀ ଗର୍ଭରେ ସାମୟିକ ଉତ୍ତେଜନାର ସେ ସନ୍ତାନ । ଜନ୍ମ ହେବା ସାଙ୍ଗେ ସାଙ୍ଗେ କୁମାରୀ ମାତାଙ୍କ ପାଖରୁ ତାଙ୍କୁ ଅଲଗା କରି ଦିଆଗଲା । ଅଲଗା ମାତାଙ୍କ ପାଖରେ ସେ ବଢ଼ି ଉଠିଲେ । ସେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଜ୍ଞାନୀ, ଶ୍ରେଷ୍ଠ ସାଧକ, ମହାନ ଋଷି । ଭାନୁପ୍ରକାଶଙ୍କ ଆଖି ବୁଜି ହୋଇ ଆସିଲା । ତାଙ୍କ ଆଖି ଆଗରେ ଯାହା ନାଚି ଉଠିଲା ସେ ନିଜ କଥା, ନିଜ ଜୀବନ କଥା । ଅଂଧକାର ଆକାଶରେ ସପ୍ତର୍ଷି ପରି ବିଛାଡି ହୋଇ ପଡିଲା । ଗଂଗା କୂଳର ଛୋଟ ଗାଁ, ମନେ ଅଛି । ବାପ ମା'ଙ୍କର ସେ ପରିଣତ ବୟସର ସନ୍ତାନ, ତା ବି ମନେଅଛି । କିନ୍ତୁ ସେମାନେ କେମିତି କଅଣ, କିଛି ମନେ ନାହିଁ । ଥରେ ସେ ଗୁରୁଦେବଙ୍କୁ ପଚାରିଥିଲେ - ଆପଣ ମୋର ଏତେ କମ ବୟସରେ କାହିଁକି

ମୋତେ ବାପମାଙ୍କ ଠାରୁ ଅଲଗା କରି ଆପଣଙ୍କ ପାଖକୁ ନେଇ ଆସିଲେ । କାହିଁକି ? ତାଙ୍କ ମନରେ ତ ବହୁତ କଷ୍ଟ ହୋଇଥିବ ? ହଁ ହୋଇଥିବ, ଗୁରୁଦେବ କହିଥିଲେ । ସେ ବୁଝେଇ ଦେଇ ଥିଲେ, ଏ କାହା ମନରେ କଷ୍ଟ ହେବା ନ ହେବା କଥା ନୁହେଁ । ଭାନୁପ୍ରକାଶ କ'ଣ କରିବେ ସେ କଥା ଆଗରୁ ନିର୍ଦ୍ଦିଷ୍ଟ ହୋଇ ରହିଛି । ସେଇଥିପାଇଁ ସେ ତାଙ୍କୁ ବାପାମାଙ୍କ ଠାରୁ ଅଲଗା କରିଦେଲେ । ଏ ଗଂଗା କୂଳର ଗାଁ କଥା ନୁହେଁ । ଏ ସମଗ୍ର ଆର୍ଯ୍ୟାବର୍ତ୍ତର କଥା । ତାଙ୍କର କାର୍ଯ୍ୟର ଫଳ ଯୁଗ ଯୁଗ ଧରି ମଣିଷ ଜାତିକୁ ପ୍ରଭାବିତ କରିବ । ଭାନୁପ୍ରକାଶ ଆଉ ଭାବି ପାରିଲେ ନାହିଁ । ଗୁରୁଦେବ ସବୁଦିନେ ଏହିପରି ରହସ୍ୟମୟ କଥା କହନ୍ତି । ଏ କି ରହସ୍ୟ ! ତାଙ୍କର କାର୍ଯ୍ୟର ଫଳ ସାରା ଆର୍ଯ୍ୟାବର୍ତ୍ତକୁ ପ୍ରଭାବିତ କରିବ । ଯୁଗ ଯୁଗ ଧରି ରହିବ ! ତାଙ୍କର ମୁଣ୍ଡ ଘୂରିବାକୁ ଆରମ୍ଭ କଲା । ଆଖିବୁଜି ହୋଇ ଆସିଲା । ତାଙ୍କର ମନେହେଲା ଯେପରି ସେ ବିରାଟ ଶୂନ୍ୟରେ ଭାସି ଭାସି ବୁଲୁଛନ୍ତି । ଯେପରି ସବୁ ଅନିଶ୍ଚିତ, ଅସ୍ଥିର...

'ଭାନୁ...' ସତ୍ୟକାମଙ୍କ ଡାକରେ ତାଙ୍କର ମୋହାଚ୍ଛନ ଭାବ କଟିଗଲା । 'ଭାନୁ', ସତ୍ୟକାମ କହୁଥାନ୍ତି, 'କ୍ଲାନ୍ତ ଲାଗୁଛି ?'

'ନାଁ, ନାଁ... ।' ଭାନୁପ୍ରକାଶଙ୍କର ସଂପୂର୍ଣ୍ଣ ଚେତା ଫେରି ଆସିଲା । ବାହାରେ ବର୍ଷା ପବନ ଜୋରରେ ଚାଲିଛି । ସେ ଦେଖିଲେ ଉଭୟ ନନ୍ଦ ଓ ସତ୍ୟକାମ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁରହିଛନ୍ତି । 'ନାଁ...ନାଁ...କିଛି ନୁହଁ..' ସେ ସାମାନ୍ୟ ସଂକୁଚିତ ହୋଇ କହିଲେ, 'ମୁଁ ଗୁରୁଦେବଙ୍କ କଥା ଭାବୁଥିଲି । ତାଙ୍କର ସେଇ କଥା ଯାହା ସେ ବାରମ୍ବାର କହନ୍ତି । ଯେ ମଣିଷ ଜୀବନରେ ଅନେକ କଥା ଘଟେ ଯାହାର ମୂଳ ସୂତ୍ର ଆମେ ବୁଝି ପାରିବା ନାହିଁ, କିନ୍ତୁ ସେ ସବୁକୁ ସାହସ ଓ ଦମ୍ଭର ସହିତ ଗ୍ରହଣ କରିନେବା ଉଚିତ୍ ।'

'ମୁଁ ବି ଗୁରୁଦେବଙ୍କ କଥା ଭାବୁଛି', କହିଲେ ସତ୍ୟକାମ, 'ସେ ଆମ ପାଖରେ ନାହାନ୍ତି ସତ, କିନ୍ତୁ ତାଙ୍କର ଆଶୀର୍ବାଦ ଆମକୁ ଘେରି ରହିଛି ।' 'ରହିଛି ତ', କହିଲେ, ଭାନୁପ୍ରକାଶ, 'ସେ ଦୂରରେ ଅଛନ୍ତି, କିନ୍ତୁ ସେ ଦୂରଦ୍ରଷ୍ଟା । ଏହିପରି ସବୁ ଘଟିବ ବୋଲି ମୋତେ ସେ ବହୁ ଆଗରୁ ସାବଧାନ କରି ଦେଇଥିଲେ ।'

'ଭାନୁ, ତୁମେ ମୋତେ କିଛି ଆଗରୁ ଯାହା କହିଲ ମୁଁ ସେଇକଥା ଭାବୁଛି' କହିଲେ ନନ୍ଦ, 'ଯଶୋଦା ଓ ମୋ ଭିତରେ ନିଶ୍ଚୟ ପ୍ରଭେଦ ଅଛି । ଯଶୋଦା କିଛି ଜାଣି ପାରିବେ ନାହିଁ, ତେଣୁ ଦୁଃଖ ହେବନି, ସେଇଟା ହିଁ ତାଙ୍କ ପାଇଁ ଆଶୀର୍ବାଦ । ମୁଁ ସବୁ ଜାଣିବି, ମୋର ନିଶ୍ଚୟ ଦୁଃଖ ହେବ । କିନ୍ତୁ ସେଇଟାହିଁ ମୋ ପାଇଁ ଆଶୀର୍ବାଦ । ତୁମେ ଭାବ, କିଏ ମୋ ପୁଅ ହୋଇ ରହିବ ? ମୁଁ କାହାର ବାପା

ହେବି ? ତୁମେ ତ ସମସ୍ତେ କହୁଛ ସେ ଅସାଧାରଣ ପୁରୁଷ, ଦେବତାତ୍ମା । ମୋର ଭାଗ୍ୟ ଯେ ମୁଁ ତାର ପାଖେ ପାଖେ ରହିବି । ଏଇ ତ ମୋ ଆଶୀର୍ବାଦ ।'

ଭାନୁପ୍ରକାଶ ନନ୍ଦଙ୍କର ଦି ହାତକୁ ଚାପି ଧରିଲେ, କହିଲେ, 'ନନ୍ଦ, ଆମେ ଯାହା ସମ୍ଭବ କରିବାକୁ ଚେଷ୍ଟା କରୁଛୁ । କିନ୍ତୁ ତୁମେ ଆମ ମଥାମଣି । ଆମର ତ ବିପଦ କିଛି ନାହିଁ । ସବୁ ବିପଦ ତୁମର । ତୁମର ସାହସ ହିଁ ଆମର ସାହସ, ତୁମର ଦମ୍ଭହିଁ ଆମର ଦମ୍ଭ ।... ସମୟ ହୋଇ ଆସିଲାଣି । ଆଉ ଟିକିଏ ବସ । ମୁଁ ଆଜିକାର ବନ୍ଦୋବସ୍ତ କଥା ସବୁ କହିଦିଏ ।'

ସମସ୍ତେ ସ୍ଥିର ହୋଇ ବସିଲେ । ଭାନୁପ୍ରକାଶ କିଛି ସମୟ ଭାବିନେଲେ । ତାପର କହିଲେ, 'ଶୁଣ, ସମୟ ଜାଣିଛ ରାତି ଅଧ । ଟିକିଏ ଆଗରୁ ହୋଇପାରେ କି ଟିକିଏ ପରେ ହୋଇପାରେ। ମୋଟାମୋଟି ଅଧ ରାତି ଧରିନିଅ । ଆମର ସମସ୍ୟା ସେଠି ନୁହଁ । ଦିଟା ଅଲଗା ଅଲଗା ଜାଗାରେ ଦୁଇଟି ପିଲା ହେବେ । ପିଲା ଦୁଇଟି ଜନ୍ମ ହେବାରେ ଆମର ହାତ ନାହିଁ, କି କାହାର ହାତ ନାହିଁ । ଦୁଇ ଜଣ ସ୍ତ୍ରୀ ଲୋକଙ୍କର ଅଲଗା ଅଲଗା ଦେହର ଅବସ୍ଥା ଘେନି ପିଲା ହେବେ । ଗୋଟାଏ ସମୟରେ ହୋଇପାରେ ନ ହୋଇପାରେ ବି। ଗୋଟାଏ ସମୟରେ ହିଁ ହେବ ଏହି ବିଶ୍ୱାସରେ ହିଁ ଆମର ସବୁ ବନ୍ଦୋବସ୍ତ । ଅନିଶ୍ଚିତତା ରହିଛି । କିନ୍ତୁ ଏ ଅନିଶ୍ଚିତତାକୁ ମାନି ଠିକ୍ ସମୟରେ ଠିକ୍ ବନ୍ଦୋବସ୍ତ ହେବା ଦରକାର । ତାହାହିଁ ସମସ୍ୟା ।' ସେ ଟିକିଏ ରହିଗଲେ । ଉଭୟ ସତ୍ୟକାମ ଓ ନନ୍ଦ ଚୁପଚାପ ତାଙ୍କ କଥା ଶୁଣୁଥାନ୍ତି । ତାପର ଭାନୁପ୍ରକାଶ ପୁଣି କହିଲେ, 'ଆମେ ଏଠି ତିନି ଜଣ । ଯମୁନା ଘାଟରେ ଆଉ ଦି ଜଣ ଆସିବେ – ସୌରଦେବ ଓ ଅରିନ୍ଦମ । ସେମାନେ ବୋଧହୁଏ ଆସି ଯାଇଥିବେ । ତା'ଛଡ଼ା କଂସ ରାଜ ନଅର ଭିତରେ ଗୋପା...'

'ସୁରଥ ଓ ସେ ଦିଜଣ ନାଉରି... ?' ନନ୍ଦ ପଚାରିଲେ ।

'ମୁଁ ସେମାନଙ୍କ କଥା ରଖୁନି' କହିଲେ ଭାନୁପ୍ରକାଶ, 'କାରଣ ସେମାନେ ଆମକୁ ସାହାଯ୍ୟ କରିବେ । ଆଉ ଜଣେ ବି ଏଠି ଅଛନ୍ତି – ରୋହିଣୀ ।' ଆଉ ଗୋଟାଏ କାରଣ ବି ଅଛି । ଏଇ ଘଟଣା ପରେ ସେମାନେ ସବୁ ଭୁଲିଯିବେ । ସେ ବନ୍ଦୋବସ୍ତ ମୁଁ କରିବି ।'

'ରୋହିଣୀ ବି ?' ନନ୍ଦ କହିଲେ ।

'ନାଁ', ଭାନୁପ୍ରକାଶ କହିଲେ, 'ସେ ଅଲଗା, ସେ ଆରମ୍ଭରୁ ଅଛନ୍ତି । ସେ ଆମେ ଯେମିତି ସେମିତି । ଯେଉଁ ଗୋପନୀୟ କଥା ପରିବାରରେ ନନ୍ଦ ଏକା ଜାଣୁଛନ୍ତି, ରୋହିଣୀ ମଧ୍ୟ ଜାଣି ରଖିବା ଭଲ, ଭବିଷ୍ୟତ ପାଇଁ ଆବଶ୍ୟକ । ନାଇଁ

ରୋହିଣୀ ଠିକ୍ ଅଛନ୍ତି...'

ଭାନୁପ୍ରକାଶ ତାଙ୍କର ପୂର୍ବ କଥାକୁ ଫେରିଗଲେ - 'ହଁ ଶୁଣ । ବନ୍ଦୋବସ୍ତଟା ଆମେ ପୁଣି ଥରେ ଭାବି ନବା । ଏଠି ଘର ଭିତରେ ଯଶୋଦାଙ୍କ ପାଖରେ ରୋହିଣୀ ରହିବେ । ସେ ଠିକ୍ ସମୟରେ ଯଶୋଦାଙ୍କୁ ପାଚନ ଦେବେ । ପିଲା ହେଲା ପରେ ଯଶୋଦା ଯେତେବେଳେ ଅଚେତ ହୋଇ ଶୋଇଯିବେ ସେ ପିଲାକୁ ଜଗି ରହିବେ ଆଉ ଅପେକ୍ଷା କରିବେ । ଦେବକୀଙ୍କ ପିଲାକୁ ବସୁଦେବ ଆଣିବା ପରେ ସେ ନନ୍ଦଙ୍କ ହାତରୁ ସେ ପିଲାକୁ ନେଇ ଯଶୋଦାଙ୍କ ପାଖରେ ଶୁଆଇ ଦେବେ ଓ ଯଶୋଦାଙ୍କ ଛୁଆକୁ ଆଣି ବସୁଦେବଙ୍କୁ ଦେବା ପାଇଁ ନନ୍ଦଙ୍କୁ ଦେବେ । ବାସ୍, ତାଙ୍କ କାମ ସରିଲା । ତା ପରେ ସେ ଯଶୋଦାଙ୍କ ପାଖରେ ରହିବେ, ଓ ତାଙ୍କର ଚେତା ଆସିଲା ପର୍ଯ୍ୟନ୍ତ ଅପେକ୍ଷା କରିବେ ଓ ଛୁଆକୁ ଜଗିବେ । ହେଲା ? ନନ୍ଦ, ତୁମେ ରୋହିଣୀଙ୍କି ପ୍ରତ୍ୟେକ କାମ ବୁଝେଇ ଦବ, ନାଁ ମୁଁ କହିବି ?' 'ମୁଁ ବୁଝେଇଦେବି ।' ନନ୍ଦ କହିଲେ ।

'ଠିକ୍ ଅଛି', କହିଲେ ଭାନୁପ୍ରକାଶ, 'ଦ୍ୱିତୀୟ, ନନ୍ଦ ତୁମେ । ରୋହିଣୀ ଘର ଭିତରେ, ତୁମେ ବାହାରେ ରହିବ । ତୁମର ପ୍ରଥମ କାମ ହେଲା ତୁମେ ଦେଖିବ ଯେପରି ସାଇ ପଡିଶାରୁ ତୁମ ଘରକୁ ରାତିରେ କେହି ନ ଆସନ୍ତି । ଜଣେ ହେଲେ ବି ନୁହେଁ । ଯେ ଆସିବେ ସକାଳକୁ ଆସିବେ । ଦ୍ୱିତୀୟରେ, ତୁମେ ବସୁଦେବଙ୍କ ହାତରୁ ଛୁଆକୁ ନେଇ ରୋହିଣୀଙ୍କି ଦେବ, ଓ ରୋହିଣୀଙ୍କ ପାଖରୁ ଛୁଆକୁ ଆଣି ବସୁଦେବଙ୍କୁ ଦେବ । ତୁମେ ନିଜେ ଘର ଭିତରକୁ ଯିବ ନାହିଁ । ବାସ୍, ବସୁଦେବ ଫେରିଗଲା ପରେ ରୋହିଣୀ ଭିତରେ ଓ ତୁମେ ବାହାରେ ଜଗି ରହିବ, ଛୁଆ ଉଠି ନ କାନ୍ଦିଲା ପର୍ଯ୍ୟନ୍ତ ବା ଯଶୋଦା ନ ଉଠିଲା ପର୍ଯ୍ୟନ୍ତ ।'

'ଗୋଟାଏ କଥା', ସତ୍ୟକାମ କହିଲେ, 'ଛୁଆମାନେ ଜନ୍ମ ହେବା ପରେ ତ କାନ୍ଦିବେ । ତା ହେଲେ... ?'

ଭାନୁପ୍ରକାଶ ଅଳ୍ପ ହସିଲେ, କହିଲେ, 'ହଁ, ସେଇଟା ସ୍ୱାଭାବିକ । ମୁଁ ତାର ବନ୍ଦୋବସ୍ତ କରିଛି । ଏଠି ରୋହିଣୀଙ୍କି ଓ ସେଠି ବନ୍ଦୀଶାଳାରେ ବସୁଦେବଙ୍କୁ ମନ୍ତୁରା ପାଣି ଦିଆଯାଇଛି । ଛୁଆ ଜନ୍ମ ହେବା ସାଙ୍ଗେ ସାଙ୍ଗେ ସେମାନେ ସେ ପାଣି ଛୁଆଙ୍କ ଉପରେ ଛିଞ୍ଚି ଦେବେ । ବାସ୍, ଛୁଆମାନଙ୍କର ତିନି ଚାରି ଘଟିକା କୌଣସି ସୋର ଶବ୍ଦ ହେବ ନାହିଁ ।'

'ମୋ କାମ କୁହ', ସତ୍ୟକାମ କହିଲେ ।

'ନନ୍ଦଙ୍କ ଘର ଓ ଯମୁନା ଘାଟ ଭିତରେ ତୁମ କାମ । ତୁମେ ଘାଟରୁ


Digitized by srujanika@gmail.com

ବସୁଦେବଙ୍କ ସାଙ୍ଗରେ ନନ୍ଦଙ୍କ ଘରକୁ ଆସିବ, ପୁଣି ନନ୍ଦଙ୍କ ଘରୁ ତାଙ୍କ ସାଙ୍ଗରେ ଘାଟକୁ ଫେରିଯିବ ।'

'ଏ ତ ବେଶି ବାଟ ନୁହେଁ', କହିଲେ ସତ୍ୟକାମ ।

'ନାଁ, ନୁହେଁ' ଭାନୁପ୍ରକାଶ କହିଲେ, 'କିନ୍ତୁ ଜଗିବା ଦରକାର । ଜଙ୍ଗଲିଆ ବାଟ । ତା'ଛଡ଼ା ଏ ସବୁଦିନିଆ ଚଲାବାଟ ନୁହେଁ, ଅନ୍ୟ ବାଟ । ବସୁଦେବ ଏ ବାଟକୁ ଜାଣିଥିବେ ବୋଲି ମୁଁ ଭାବୁନି । ବର୍ଷା ପବନ ହେଲେ ବି ରାତିବିକାଳି ଜନ୍ତୁଜୁନ୍ତା ବାହାରିବା କିଛି ବିଚିତ୍ର ନୁହେଁ । ମୋର ବିଶ୍ୱାସ ରାତି, ବର୍ଷା, ପୁଣି ଅଚିହ୍ନା ବାଟ, ବାହାର ଲୋକ କେହି ଆସିବେନି । ତଥାପି ନଜର ରଖିବା ଦରକାର, ସତର୍କ ରହିବା ଦରକାର ।

'ଠିକ୍ ହେଲା । ଏ ତ ଗଲା ଏ ପାଖ, ସେ ପାଖ ?' କହିଲେ ସତ୍ୟକାମ ।

'ସେ ପାଖ ?' କହିଲେ ଭାନୁପ୍ରକାଶ, 'ବନ୍ଦୀଶାଳାରୁ ଆରମ୍ଭ କରେ । ବନ୍ଦୀଶାଳାରେ ସୁରଥ । ତାର ନିର୍ଦ୍ଧାରିତ ସମୟ ବି ରାତି ଅଧ । ପ୍ରଥମେ ସେ ପ୍ରାୟ ସଂଧ୍ୟା ବେଳୁ ସବୁ ରକ୍ଷୀଙ୍କ ପାଇଁ ଭୋଜିର ବନ୍ଦୋବସ୍ତ କରିବ । କାରଣ ସେନାପତି ପ୍ରଦ୍ୟୋତ ଖବର ଦେଇଛନ୍ତି ଆଜି ଯଦି ଦେବକୀଙ୍କର ପିଲା ହୋଇଯାଏ କାଲିଠାରୁ ହୁଏତ ବନ୍ଦୀଶାଳା ବନ୍ଦ ହୋଇଯାଇ ପାରେ । ତେଣୁ ଆଜି ହୁଏତ ସେମାନଙ୍କର ବନ୍ଦୀଶାଳାରେ ଶେଷ ଦିନ । ତେଣୁ ଭୋଜି ।'

ସତ୍ୟକାମ ହସିଲେ, କହିଲେ 'ଏ ତ ବଢ଼ିଆ କାରଣ, ପ୍ରଦ୍ୟୋତ ଭାବିଲେ କେମିତି ? ଏ କଅଣ ସତରେ ବନ୍ଦ ହେବ ?'

ଭାନୁପ୍ରକାଶ ହସିଲେ, କହିଲେ, 'ସେ ଅଲଗା କଥା । ବନ୍ଦ ତ ହେବ ନିଶ୍ଚୟ । ଆଜି କି କାଲି ମୁଁ କହି ପାରିବିନି । କିନ୍ତୁ ପିଲାଟା ତ ଆଜି ହେବ । ଆଉ ସମସ୍ତେ ଜାଣନ୍ତି ଏଇ ପିଲାଟା ଉପରେ ସବୁ ନାଟ । ଆଉ ପ୍ରଦ୍ୟୋତଙ୍କ ପାଖରୁ ଯେତେବେଳେ ଖବରଟା ଆସିଛି ବୋଲି କୁହାଗଲା ସମସ୍ତେ ବିଶ୍ୱାସ କଲେ । ଭୋଜିଟା ହେବ ବଡ଼ କଥା । ବାହାର ଖର୍ଚ୍ଚରେ ଭୋଜି । କାରଣ ବିଷୟରେ ଏତେ ମୁଣ୍ଡ ଖେଳେଇ ଲାଭ କଅଣ ? ....ମୁଁ ଖବର ପାଇଛି ସୁରଥ ଠିକ୍ ସମୟରେ ଭୋଜି ଆରମ୍ଭ କରିଛି । ଭୋଜି ପ୍ରାୟ ସରି ଆସିଲାଣି । ବିଶ୍ୱାସ ଆଉ ଅର୍ଦ୍ଧ ଘଟିକା ଭିତରେ ସମସ୍ତେ ଶୋଇଯିବେ ।'

'ତା ହେଲେ ପ୍ରଦ୍ୟୋତ ଏ ଭୋଜି କଥା ଜାଣନ୍ତି ?' ନନ୍ଦ ପଚାରିଲେ । 'ଜାଣିଥିବେ, ମୁଁ ଜାଣେ ନା ।' କହିଲେ ଭାନୁପ୍ରକାଶ, 'ସେ ଜାଣନ୍ତୁ ନ ଜାଣନ୍ତୁ ସେ ଘରକୁ ଚାଲି ଗଲେଣି । ସେ ନିଜେ ତ ଏସବୁ ବ୍ୟାପାରରେ ବିରକ୍ତ । ତା'ଛଡ଼ା

ଅରିନ୍ଦମର ବାପା ତାଙ୍କୁ କହିଲେ ଘରକୁ ଯା । ସେ ବାପାଙ୍କ କଥା ବେଦବାକ୍ୟ ପରି ମାନନ୍ତି ।'

'କିନ୍ତୁ ତୁମେ କହିଲ ସେ ଖବର ପଠେଇ ଥିଲେ ?' ନନ୍ଦ କହିଲେ ।

'ହଁ, ପଠେଇ ଥିଲେ । ସନ୍ଦେହ କରିବାର କଅଣ ଅଛି ?' ଭାନୁପ୍ରକାଶ କହିଲେ ।

'ନାଁ...ନାଁ... କିଛି ନାହିଁ', ନନ୍ଦ କହିଲେ ।

ତିନି ବଂଧୁ ପରସ୍ପରକୁ ଚାହିଁ ହସି ଉଠିଲେ ।

'ଛାଡ ସେ ସବୁ', ଭାନୁପ୍ରକାଶ କହିଲେ, 'ଆମର ମତଲବ ଅଲଗା । ବଡ଼ କଥା ସେମାନେ ଠିକ୍ ସମୟରେ ଶୋଇ ରହିବା ଦରକାର ।'

'ସୁରଥଙ୍କ ସାଙ୍ଗରେ ତ ଅନ୍ୟ କିଛି ଲୋକ ଅଛନ୍ତି ।' କହିଲେ ସତ୍ୟକାମ ।

'ହଁ, ଅଛନ୍ତି ।' କହିଲେ ଭାନୁପ୍ରକାଶ, 'ସେମାନେ ସୁରଥ କଥା ମାନନ୍ତି ଓ ସୁରଥକୁ ସାହାଯ୍ୟ କରନ୍ତି । ସେମାନେ ବିଶେଷ କିଛି ଜାଣନ୍ତିନି । ସେମାନେ ବି ଶୋଇଯିବେ । ଏକମାତ୍ର ସୁରଥ ଚେଇଁଥିବ ଓ ଆମକୁ ଅପେକ୍ଷା କରିଥିବ ।'

'ଭଲ ହେଲା', କହିଲେ ସତ୍ୟକାମ 'ତା'ପର କୁହ..'

'ତାପର ଆମ ହାତରେ ନାହିଁ – ଦୈବୀଯୋଗ । ପିଲା ଜନ୍ମ ହେବ... ଜନ୍ମ ହେବା ପରେ ଆମ କାମ ପୁଣି ଥରେ ଆରମ୍ଭ ହେବ...' କହିଲେ ଭାନୁପ୍ରକାଶ, 'ପ୍ରଥମ କଥା ପିଲା କାନ୍ଦିବ ନାହିଁ । ତାର ବନ୍ଦୋବସ୍ତ । ତା ପର, ଛୁଆକୁ ଗୋଟାଏ ପେଟିକାରେ ଘୋଡେଇ ଘାଡେଇ ଆଣିବାର ବନ୍ଦୋବସ୍ତ । ବସୁଦେବ ତ ଆଣିବେ, କିନ୍ତୁ ସୁରଥ ତାଙ୍କୁ ସାହାଯ୍ୟ କରିବ । ତାପର ମୁଖ୍ୟ ଫାଟକ ବା ବାହାରିବା ବାଟ । ବସୁଦେବ ଆସି ଫେରିବା ପର୍ଯ୍ୟନ୍ତ, ବାଟ ଖୋଲା ରହିବ । ଘର ଭିତରୁ ବାଟ ବେଶି ବାଟ ନୁହେଁ । ତଥାପି ସାବଧାନ ରହିବାକୁ ହେବ । ମୁଁ ଭାବୁଛି ଅସୁବିଧା ହେବନି । କାରଣ ଭୋଜି ଘର ପଛରେ, ଆଉ ସମସ୍ତେ ସେଠି ଶୋଇଥିବେ । ଫାଟକ ବାହାରେ ମୁଁ ଥିବି । ଆଉ ସୌରଦେବ ଓ ଅରିନ୍ଦମ ବି ଥିବେ ।'

'ସେମାନେ ଆସି ଯାଇଥିବେ ?' ନନ୍ଦ ପଚାରିଲେ ।

'ହଁ, ନିଶ୍ଚୟ ଆସିଥିବେ । ସେମାନଙ୍କୁ କିଛି ଆଗରୁ ସେପାଖ ଘାଟକୁ ଆସିବାକୁ କୁହାଯାଇଛି । ଭୁଲ୍ ହେବନି ।'

'ଆଚ୍ଛା, ଦେବକୀ... ?' ସତ୍ୟକାମ ପଚାରିଲେ ।

'ଦେବକୀଙ୍କ ବିଷୟରେ ମୁଁ ପ୍ରଥମେ ଭାବୁଥିଲି ତାଙ୍କୁ ଶୁଏଇ ପକେଇବା । ପରେ ଭାବିଲି ଦରକାର ନାହିଁ । ଯା' ହେଲେ ବି ସେ ସବୁ ଜାଣନ୍ତି ଓ ଜାଣିବେ ।


Digitized by srujanika@gmail.com

ସେ ଚେଇଁ ରହିବେ ।'

'ଆଚ୍ଛା, ଫାଟକ ବାହାରେ ଯଦି ଅନ୍ୟ କେହି ଥିବେ... ?' ନନ୍ଦ ପଚାରିଲେ ।

'ନାଁ, କେହି ନ ଥିବେ', ଭାନୁପ୍ରକାଶ କହିଲେ, 'ବନ୍ଦୀଶାଳା ଘର ପାଖକୁ କେହି ବାହାର ଲୋକ ଯାଆନ୍ତି ନାହିଁ । ଆଉ ଏ ତ ସହଜେ ବର୍ଷା ଅଂଧାର ରାତି । ନାଁ, କେହି ନ ଥିବେ । ସେହି ରକ୍ଷୀମାନଙ୍କ ଭିତରୁ କେହି କେହି କେତେବେଳେ କେମିତି ବାହାରକୁ ଆସନ୍ତି । କିନ୍ତୁ ଆଜି ମୁଁ ବିଶେଷ କରି ସୁରଥକୁ ସାବଧାନ କରି ଦେଇଛି, ଯେମିତି ଜଣେ ହେଲେ ବି ବାହାରେ ନ ରହେ । ନାଁ, ଭୋଜିର ଲୋଭ, କେହି ନ ଥିବେ ।'

'ତା'ମାନେ, ତୁମେ ତିନ୍, ଆଉ ବସୁଦେବ । ସୁରଥ ନୌକା ପାଖକୁ ଆସିବ କି ?'

ନନ୍ଦ ପଚାରିଲେ ।

'ନାଁ, ସେ ଭିତରେ ଫାଟକ ପାଖରେ ରହିବ । ବସୁଦେବ ଫେରିବା ସାଙ୍ଗେ ସାଙ୍ଗେ ସେ ତାଙ୍କୁ ନେଇ ଘରେ ଛାଡ଼ିବ ।' କହିଲେ ଭାନୁପ୍ରକାଶ ।

'କିହୋ ନନ୍ଦ', ସତ୍ୟକାମ କହିଲେ, 'ତିନ୍ ଆଉ ବସୁଦେବ ଏଇ ଚାରି କଅଣ କହୁଛ ? ବସୁଦେବ ଏକ ନୁହେଁ, ଦୁଇ, ଯାହାକୁ ତୁମେ ଛାଡ଼ିଗଲ ସେ ବି ଜଣେ ଲୋକ ।'

ଭାନୁପ୍ରକାଶ ହସିଲେ, କହିଲେ, 'ହଁ ସେ ଜଣେ ଲୋକ ନୁହେଁ, ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଲୋକ । ତା'ରି ପାଇଁ ତ ସବୁ । ନାଇଁ ଆମେ ଚାରି ନୁହଁ ଆମେ ପାଞ୍ଚ ନୌକା ପାଖକୁ ଆସିବୁ । ସୌରଦେବ ଓ ଅରିନ୍ଦମ ସେ ପାଖ ଘାଟରେ ରହିଯିବେ । ବସୁଦେବ, ମୁଁ, ଆଉ ସେ ଛୁଆ ନୌକାରେ ପାରି ହବୁ । ଏ ପାଖ ଘାଟରେ ତ ସତ୍ୟକାମ ଥିବେ । ସେ ଆମ ସାଙ୍ଗରେ ମିଶିବେ । ନୌକା ଆଉ ନାଉରି ଘାଟରେ ରହିବେ । ଆମେ ନନ୍ଦଙ୍କ ଘରକୁ, ନନ୍ଦଙ୍କ ପାଖକୁ ଆସିବୁ । ତାପର ଯାହା ହବ ତୁମେ ଜାଣ ।'

'ତୁମେ ତ ଫେରିବ... ?' ନନ୍ଦ ପଚାରିଲେ ।

'ହଁ, ଏଠିକା କାମ ସରିଲା ପରେ ଯଶୋଦାଙ୍କ ଛୁଆକୁ ନେଇ ଆମେ ଫେରିଯିବୁ । ଆମେ ତିନିହେଁ । ଏ ଘାଟରେ ସତ୍ୟକାମ ରହିଯିବେ । ବସୁଦେବ, ମୁଁ, ଆଉ ସେ ଛୁଆ ପାରି ହବୁ । ସେ ପାଖରେ ସୌରଦେବ ଓ ଅରିନ୍ଦମ ଆମ ସାଙ୍ଗରେ ମିଶିବେ । ଆମେ ସମସ୍ତେ ବନ୍ଦୀଶାଳା ଫାଟକ ପାଖକୁ ଫେରିବୁ । ବସୁଦେବ ଛୁଆକୁ ନେଇ ଭିତରକୁ ଯିବେ । ସୁରଥ ଥିବ ।'


Digitized by srujanika@gmail.com

'ତୁମେ ସେଠି ଅପେକ୍ଷା କରିବ ନା ସାଙ୍ଗେ ସାଙ୍ଗେ ଫେରିବ ?' ନନ୍ଦ ପଚାରିଲେ । 'ନାଁ, ଶେଷ କାମ କରିବାକୁ ହେବ । ଏ କାମ ସବୁ ସରିଲା ପରେ, ଓ ବସୁଦେବ ବନ୍ଦୀଶାଳାକୁ ଫେରିଗଲା ପରେ, ଆମକୁ ଗୋପାଙ୍କ ପାଖକୁ ସଂକେତ ପଠେଇବାକୁ ପଡିବ ।'

'କିନ୍ତୁ ତା'ପରେ ତ ଫେରିବ, ନା ସେଠି ପାଖରେ କେଉଁଠି, କଂସ ବନ୍ଦୀଶାଳାକୁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବ ?' ନନ୍ଦ କହିଲେ ।

'ନାଁ, ଆମେ ପାଖଆଖରେ ରହିବା ଠିକ୍ ହେବନି । ଖବର ଠିକ୍ ସମୟରେ ଜଣାଯିବ । କିନ୍ତୁ ଆମେ ଏ ଘଟଣାରେ ଅଛୁ ବା ଗୋଟାଏ କିଛି ଘଟିଛି ଏ ସନ୍ଦେହ ଯେମିତି କାହା ମନକୁ ନ ଆସେ। ସୌରଦେବ ଓ ଅରିନ୍ଦମ ମୋ ସାଙ୍ଗରେ ଘାଟ ପର୍ଯ୍ୟନ୍ତ ଆସିବେ, ତାପରେ ସେମାନେ ତାଙ୍କ ଘରକୁ ଫେରିଯିବେ । ମୁଁ ଏକା ନୌକାରେ ଏ ପାଖକୁ ଫେରିବି । ଘାଟ ପାଖରୁ ସତ୍ୟକାମ ଓ ମୁଁ ସାଙ୍ଗ ହୋଇ ଘରକୁ ଫେରିବୁ । ଦି ନାଉରି ନୌକା ନେଇ ଚାଲିଯିବେ ।'

'ପ୍ରାୟ ପାହାନ୍ତା ପହର ହୋଇଯାଇପାରେ..' ନନ୍ଦ କହିଲେ ।

'ତା ହୋଇପାରେ' । ଭାନୁପ୍ରକାଶ କହିଲେ, 'ବସୁଦେବ ତାଙ୍କ ଛୁଆକୁ ଏଠି ଛାଡି, ଯଶୋଦାଙ୍କ ଛୁଆକୁ ନେଇ ନିରାପଦରେ ବନ୍ଦୀଶାଳାକୁ ଫେରିଗଲେ ଆମ ଦାୟିତ୍ୱ ସଇଲା । ଯେତେ ରାତି ହେଉ..' ଭାନୁପ୍ରକାଶ କହିବା ବନ୍ଦ କରି ତୀକ୍ଷ୍ଣ ଦୃଷ୍ଟିରେ ନନ୍ଦଙ୍କ ମୁହଁକୁ ଚାହିଁଲେ, 'ନନ୍ଦ, ତୁମ ମୁହଁ ଶୁଖିଯାଇଛି । ପୁଣି କଅଣ ହେଲା ?'

'ନାଁ...ନାଁ... କିଛି ନାହିଁ ତ..' ନନ୍ଦ କଥା ବୁଲେଇ ଦେବାକୁ ଚାହିଁଲେ ।

'ହଁ, ଅଛି... ?' ଭାନୁପ୍ରକାଶ ହସିଲେ, 'ମୁଁ ଜାଣେ ତୁମ ମୁହଁ କାହିଁକି ଶୁଖିଯାଇଛି । ତୁମେ ଯଶୋଦାଙ୍କ ଛୁଆ କଥା ଭାବୁଛ ।'

ନନ୍ଦ କିଛି କହିଲେ ନାହିଁ । ଭାନୁପ୍ରକାଶଙ୍କ ମୁହଁ ଗମ୍ଭୀର ହୋଇଗଲା । ସେ କହିଲେ, 'ନନ୍ଦ, ଶୁଣ, ଆଜି ଯାହା ଘଟିବ ସେ ସାଧାରଣ କଥା ନୁହେଁ, ଅସାଧାରଣ ବି ନୁହେଁ । ଅତ୍ୟନ୍ତ ଅସାଧାରଣ । ଦେଶରେ ଯେତେବେଳେ ଦୁର୍ନୀତି, ଅଧର୍ମ, ମିଥ୍ୟାଚାରର ଜୁଆର ମାଡି ଆସେ ତାକୁ ରୋକିବା ପାଇଁ କୌଣସି ନା କୌଣସି ଶକ୍ତିର ଆବିର୍ଭାବ ଘଟେ । ଏହାକୁହିଁ ଆମେ ଦେବତାର ଆବିର୍ଭାବ ବୋଲି କହୁ । ଆଜି ସେହିପରି ଘଟଣା ଘଟିବାକୁ ଯାଉଛି । ଆମେ ଯେ ଏହା ସହିତ ଜଡ଼ିତ ହୋଇ ପଡିଛେ ସେ ଆମର ମହାଭାଗ୍ୟ । ଆଜି ଆମେ ନ ଥିଲେ ଆଉ କେହି ଏ କାମ କରିଥାନ୍ତା । ତୁମେ ବୃଥା କଥାରେ ଦୁଃଖିତ ହୁଅନା । ଆଜି ତୁମେ ଯାହା ପାଇଁ ଦୁଃଖ କରୁଛ ସେ

ସାଂସାରିକ ଅର୍ଥରେ ତୁମର ସନ୍ତାନ । କିନ୍ତୁ ସେ ଆଜି ପର୍ଯ୍ୟନ୍ତ କେଉଁଠି ଥିଲା ? ଆଉ ଆଜି ସେ ଜନ୍ମ ହେବାକୁ ଯାଉଛି ଯେତେବେଳେ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ଜନ୍ମ ହେବ । ଏ କଅଣ କେବଳ ଗୋଟାଏ ଆକସ୍ମିକ ଘଟଣା ନା ଏହା ପଛରେ କିଛି ଗୂଢ଼ ଉଦ୍ଦେଶ୍ୟ ଅଛି ? ଭାବିଛ ?'

'ମୁଁ ଏତେ କଥା ଭାବିନି ଭାନୁ ।' ନନ୍ଦ ଆସ୍ତେ ଆସ୍ତେ କହିଲେ ।

'ଭାବ', ଭାନୁପ୍ରକାଶ କହିଲେ, 'ମନ ପରିଷ୍କାର ହୋଇଯିବ । ମଣିଷ ଜୀବନ ଆମେ ଯେତିକି ଦେଖୁଛେ ସେତିକି ନୁହେଁ । ତା ବାହାରେ ବହୁତ ପରିସୀମା ଅଛି ଯାହାକୁ ଆମେ ଦେଖୁନା, କିନ୍ତୁ ଅନୁଭବ କରୁ, ଉପଲବ୍ଧି କରୁ । ସେସବୁ ଆମେ ଦେଖୁଥିବା ବସ୍ତୁ ପରି ସମାନ ଗୁରୁତ୍ୱପୂର୍ଣ୍ଣ । ବ୍ୟାସଦେବଙ୍କ କଥା ଭାବ, ସେ ଆର୍ଯ୍ୟ ଜଗତର ଶ୍ରେଷ୍ଠ ଜ୍ଞାନୀ । କାହିଁକି ନା ସେ ଏସବୁ କଥା ଦେଖନ୍ତି, ବୁଝନ୍ତି । ସେ କଅଣ କହିଥିଲେ ମନେ ପକାଅ । ସେ କହିଥିଲେ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ଓ ଯଶୋଦାଙ୍କର ସନ୍ତାନ ଉଭୟ ଦେବ-ସ୍ୱରୂପ ।'

'ଏ ଠିକ୍ କଥା, ନନ୍ଦ', କହିଲେ ସତ୍ୟକାମ, 'ଗୁରୁଦେବ ଏତେ କଥା ଦେଖି ପାରନ୍ତି ଯେ ସେ କେବେ ବୁଝେଇ ସୁଝେଇ କଥାଟାକୁ ସଜେଇ କରି କହନ୍ତି ନାହିଁ । କଥାର ନିର୍ଯ୍ୟାସଟାହିଁ କହି ଦିଅନ୍ତି । ସେଇଯୋଗୁ ତାଙ୍କର କଥା ଏତେ ରହସ୍ୟମୟ ମନେହୁଏ ।'

'ନନ୍ଦ, ତୁମେ ବ୍ୟସ୍ତ ହୁଅନା', କହିଲେ ଭାନୁପ୍ରକାଶ, 'ଆଜି ଆମେ ଆମର କାମର କଥା କେବଳ ଆଲୋଚନା କରୁଛେ । କାମ ଆରମ୍ଭ ହୋଇନି । ତୁମେ ମନରୁ ସବୁ କଥା ଝାଡିଦିଅ । ବହୁ ସଂଯୋଗ ଉପରେ ଆମେ ନିର୍ଭର କରି ରହିଛେ । ବହୁ ଦାୟିତ୍ୱପୂର୍ଣ୍ଣ କାମ । ଟିକିଏ ଭୁଲ୍ ହେଲେ ସବୁ ଗୋଳମାଳ ହୋଇଯିବ ।'

'ନାଇଁ, କିଛି ଭାବ ନା । ମୁଁ ଠିକ୍ ଅଛି', ନନ୍ଦ କହିଲେ ।

'ମୁଁ ଆଉ ଗୋଟାଏ କଥା ବି ଭାବୁଛି,' ଭାନୁପ୍ରକାଶ କହିଲେ, 'ଯଶୋଦାଙ୍କର ଯେଉଁ ଛୁଆଟାକୁ ଆମେ ଦେବକୀଙ୍କ ପାଖରେ ଛାଡିବା କଂସ ତାକୁ ଦେବକୀଙ୍କର ଛୁଆ ଭାବି ଆଗ ଛୁଆମାନଙ୍କ ପରି ନିଶ୍ଚୟ ମାରିଦେବାକୁ ଚେଷ୍ଟା କରିବ । କିନ୍ତୁ ମାରି ପାରିବ କି ?'

'ମାନେ ?' ସତ୍ୟକାମ କହିଲେ । ନନ୍ଦ ବି ପଚାରିଲା ପରି ଆଖିରେ ଚାହିଁଲେ । 'ମୁଁ ଠିକ୍ ବୁଝେଇ ପାରିବି ନାହିଁ ।' ଭାନୁପ୍ରକାଶ କହିଲେ, 'କିନ୍ତୁ ମୋର ମନ କହୁଛି ଗୋଳମାଳ ହବ । ଦେବକୀଙ୍କର ମୂଳ ଛୁଆଟା ଯଦି କଂସ ହାତରୁ ଖସିଯିବ ଏ ଛୁଆଟା ବି ଖସିଯିବ । ମୂଳ ଛୁଆଟା ଗୋପରେ ବଢ଼ିବ, ଏ ଛୁଆର କଅଣ


Digitized by srujanika@gmail.com

ହେବ ମୁଁ କହି ପାରିବି ନାହିଁ । କିନ୍ତୁ ମୋର ବାରମ୍ୱାର ମନେ ହେଉଛି, କିଛି ଗୋଟାଏ ହେବ । ଏ ଏତେ ସହଜ ନୁହେଁ' ।

'ଗୋଟାଏ ରାତି ତ..' ସତ୍ୟକାମ କହିଲେ ।

'ଗୋଟାଏ ରାତି ବି ନୁହେଁ । ଗୋଟାଏ ରାତିର ଅଧେ । ସକାଳକୁ ଜଣାଯିବ ।' ନନ୍ଦ ଉଠି ଛିଡା ହେଲେ, କହିଲେ, 'ସଂଧ୍ୟା ଗଡ଼ିଗଲାଣି । ରାତି ଅଧାଅଧି ହବାକୁ ବେଶି ସମୟ ନାହିଁ । ତୁମେ ସବୁ ଖିଆପିଆ କରିବ କି ?' 'ନାଁ', ଭାନୁପ୍ରକାଶ କହିଲେ, 'ଖାଇବା କଥା ସକାଳକୁ ବୁଝିବା, ଆଜି ଆମର ମାନସିକ, ଖାଇବା ବନ୍ଦ ।'

ଉଭୟ ସତ୍ୟକାମ ଓ ଭାନୁପ୍ରକାଶ ଉଠି ଛିଡ଼ା ହେଲେ । ନନ୍ଦ 'ମୁଁ ବୁଝିଆସେ' କହି ଘର ଭିତରକୁ ଚାଲିଗଲେ ଓ କିଛି ସମୟ ପରେ ଫେରି ଆସିଲେ । କହିଲେ, 'ରୋହିଣୀଙ୍କୁ ଯାହା ଯାହା କୁହାଯାଇଥିଲା ସେ ଠିକ୍ ଠିକ୍ ସେମିତି କରିଛନ୍ତି । ଯଶୋଦାଙ୍କର ଗର୍ଭ କଷ୍ଟ ଆରମ୍ଭ ହେଲାଣି ।'

'ହଁ, ସମୟ ଆସିଗଲା । ମୋର ମନେ ହେଉଛି ଦେବକୀଙ୍କର ଗର୍ଭକଷ୍ଟ ବି ଆରମ୍ଭ ହୋଇଥିବ ।' କହିଲେ ଭାନୁପ୍ରକାଶ ।

ସେମାନେ ବସିଥିବା ଘରେ ଉଜ୍ୱଳ ହୋଇ ଦୀପ ଶିଖା ଜଳୁଥାଏ । ବାହାରେ ଅଂଧାର, ବର୍ଷା, ପବନ, ଘଡ଼ଘଡ଼ି । ବାରମ୍ୱାର ବିଜୁଳି ମାରୁଥାଏ । ଆଉ ସେହି ବର୍ଷାରେ ବି ଗୋପ ଚାରିପାଖ ଜଙ୍ଗଲରୁ ବହୁ ବିଚିତ୍ର ବିଚିତ୍ର ଜନ୍ତୁମାନଙ୍କର ଶବ୍ଦ ଭାସି ଆସୁଥାଏ ।

'ଯମୁନାର ପାଣି ବି ବଢ଼ିଯାଇଥିବ' କହିଲେ ସତ୍ୟକାମ । 'ହଁ', କହିଲେ ଭାନୁପ୍ରକାଶ, 'ତେବେ ଆମ ନାଉରିମାନେ ବେଶ ପୋଖତ ।'

ଅଧରାତି ପ୍ରାୟ ହେଇ ଆସିଲାଣି । ଭିତରୁ ଖବର ଆସିଲା ଯଶୋଦାଙ୍କର ଖୁବ୍ ଶୀଘ୍ର ପିଲାପିଲି ହୋଇଯିବ । ଆଉ ଅପେକ୍ଷା କରିବା ଠିକ୍ ହବନି । ନିର୍ଦ୍ଧାରିତ ସମୟ ଆସିଗଲା । ଭାନୁ ପ୍ରକାଶ ମନେ ମନେ ନିଜର ଇଷ୍ଟଦେବତାଙ୍କୁ ପ୍ରଣାମ କଲେ, ଗୁରୁଦେବଙ୍କୁ ସ୍ମରଣ କଲେ । ତାଙ୍କର ମନେ ହେଲା ଯେପରି ନିଜର ମନ ଭିତରୁ ନିଃଶବ୍ଦରେ ଆଶ୍ୱାସନା ବାଣୀ ଉଠି ଆସୁଚି - ଠିକ୍ ହୋଇଯିବ ସବୁ ଠିକ୍ ହେବ... ଯାଅ, କାମ ଆରମ୍ଭ କର । ସେ ନନ୍ଦଙ୍କୁ ଚାହିଁଲେ, ନନ୍ଦଙ୍କ ମୁହଁ ପ୍ରଶାନ୍ତ, ଆଖିରେ ଆଶ୍ୱାସନାର ଧାରା । ନନ୍ଦ କହିଲେ, 'ଭାନୁ, ଯେଉଁମାନେ ଜନ୍ମ ହେବେ ସେମାନେ ନିଜକୁ ରକ୍ଷା କରନ୍ତୁ, ଆମେ ନିମିତ୍ତ ।' ଭାନୁପ୍ରକାଶ ଦି ହାତ ଯୋଡି ସେହି ଅଦୃଶ୍ୟ ଶକ୍ତିକୁ ପ୍ରଣାମ କଲେ, ନିଜକୁ ଚମଡ଼ାର ବର୍ଷାତିରେ ପୂରା ଘୋଡ଼େଇ ଦେଲେ, ଓ

ଘର ଭିତରୁ ପଦାକୁ ବାହାରି ଆସିଲେ । ତାଙ୍କ ପଛେ ପଛେ ସତ୍ୟକାମ, ସେ ବି ବର୍ଷାତିରେ ନିଜକୁ ଘୋଡ଼େଇ ନେଇଛନ୍ତି । ହାତରେ ଘୋଡ଼ାଘୋଡ଼ି ହୋଇଥିବା ଆଲୋକର ପାତ୍ର । ଉଭୟ ନନ୍ଦଙ୍କ ଘରକୁ ଛାଡ଼ି ଘାଟ ଆଡକୁ ଆଗେଇଲେ । ଭାନୁପ୍ରକାଶ ସତ୍ୟକାମଙ୍କୁ ଚାହିଁଲେ – 'ଆଉ ଗୋଟାଏ ବର୍ଷାତି ଦରକାର ହୋଇପାରେ' କହିଲେ । 'ଆଣିଛି', ସତ୍ୟକାମ ଜଣେଇ ଦେଲେ, ଓ କହିଲେ 'ଆଲୋକଟାକୁ ବି ଠିକ୍ କରି ଘୋଡ଼େଇ ଦେଇଛି । ବର୍ଷା ପବନରେ ଯେମିତି ଲିଭି ନ ଯାଏ ।' 'ଯେତିକି ଆଲୋକ ଆସୁଛି ଠିକ୍ ହେବ ।' ଭାନୁପ୍ରକାଶ କହିଲେ, 'ମୁଁ ତ ଭାବୁଥିଲି ଆଦୌ ଆଲୁଅ ନବାନି । ପୂରା ଅଂଧାରରେ ଯିବା । ବାହାର ଲୋକଙ୍କୁ ସାମାନ୍ୟ କିଛି ଧାରଣା ଦେବାହିଁ ବିପଜ୍ଜନକ ।'

ସତ୍ୟକାମ କହିଲେ, 'ମୁଁ ବି ସେମିତି ଭାବୁଥିଲି । ପରେ ଭାବିଲି ନାଇଁ ଗୋଟେ ଛୋଟ ଆଲୁଅ ଥାଉ । ଯୋଉ ବାଟରେ ଆମେ ଯିବା ବା ବସୁଦେବ ଆସିବେ, ସେଟା ସାଧାରଣ ଚଲା ବାଟ ନୁହେଁ । ତା'ହେଲେ ମୋଟାମୋଟି ସଫା ଥାଆନ୍ତା । ଏଟା ଗୋଟା ଜଙ୍ଗଲ ବାଟ । ପତରା ଜଙ୍ଗଲ ତ ଅଛି । ତା'ଛଡ଼ା କିଛି କିଛି ବଡ଼ ବଡ଼ ଝଙ୍କା ଗଛ ବି ଅଛି । ଚଲା ବାଟଟା ବୁଲାଣି ପଡିଥାନ୍ତା । ଏ ବାଟ ତୁମେ ଯେ ବାଛିଛ ଠିକ୍ ବାଛିଛ । ସମୟ କମ ଲାଗିବ । ଆମର ଯିବା ଆସିବା ବି କେହି ଜାଣି ପାରିବେ ନାହିଁ । ଆମେ ବାଟଟାକୁ ଦିନରେ ଦେଖାଦେଖି କରି ନେଇଛେ ! ଆମ ପାଇଁ ଚଳିଯିବ । କିନ୍ତୁ ବସୁଦେବଙ୍କୁ ଟିକେ ଅସୁବିଧା ହୋଇପାରେ ।'

'ଦେଖିବା', ଭାନୁପ୍ରକାଶ କହିଲେ, 'ଠିକ୍ ଅଛି । ଆଲୁଅଟା ଥାଉ ।' 'ଗୋଟା ବାଡି ନେଇଯିବା କି ?' ସତ୍ୟକାମ ପଚାରିଲେ । 'ବାଡ଼ି ?' ଭାନୁପ୍ରକାଶ ଟିକିଏ ଭାବିଲେ, 'ହଉ ଗୋଟାଏ ବାଡି ଆଣ', ସେ ନନ୍ଦଙ୍କ ଆଡକୁ ବୁଲି ଚାହିଁଲେ – 'ନନ୍ଦ... ?' 'ଦଉଛି', ନନ୍ଦ କହିଲେ, ଓ ସାଙ୍ଗେ ସାଙ୍ଗେ ଗୋଟାଏ ଗାଈ ଅଡେଇବା ଦମ୍ଭ ବାଡି ଆଣି ସତ୍ୟକାମଙ୍କ ହାତକୁ ବଢ଼େଇ ଦେଲେ, ଓ ପଚାରିଲେ, 'ବଇଁଶୀ ଆଣିଛ ?'

ସତ୍ୟକାମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ, 'ବଇଁଶୀ... ! ନାଁ ତ । ବଇଁଶୀ କଅଣ ହେବ ?' । 'ମୁଁ ଆଣିଛି', ଭାନୁପ୍ରକାଶ କହିଲେ । ସେ ନିଜ ଅଣ୍ଟାରେ ହାତ ବୁଲେଇ ଆଣିଲେ – ଗାଈ ଜଗୁଆଳ ବଂଶୀ – 'ହଁ, ଅଛି । ଏ ବର୍ଷା ପବନରେ ତ ପାଟି କରି ହବନି । ପାଟି କରିବା ବି ନିରାପଦ ନୁହେଁ । ବଇଁଶୀ ଜରିଆରେ ଆମେ ଆସିଲୁ ବୋଲି ଜଣେଇ ଦେଇ ହେବ । ନାଉରିଆଙ୍କୁ, ସୁରଥଙ୍କୁ, ସୌରଦେବ ଓ ଅରିନ୍ଦମ

ସମସ୍ତଙ୍କୁ କୁହାହୋଇଛି । ସେମାନେ ଜାଣନ୍ତି ।'

ସତ୍ୟକାମ ଖୁସି ହେଲେ, କହିଲେ, 'ଭଲ ହେଲା । ମୁଁ ବି ଭାବୁଥିଲି ଏ ବର୍ଷା ଅଂଧାରରେ କେମିତି ଭେଟିବା । ଏ ନିଶ୍ଚୟ ନନ୍ଦଙ୍କ ଚିନ୍ତା ।'

'ହଁ', ଭାନୁପ୍ରକାଶ କହିଲେ, 'ଗାଈ ଜଗୁଆଳ ପିଲାମାନେ ଜଙ୍ଗଲ ଭିତରେ ଗାଈ ନେଲାବେଳେ ବଂଶୀ ବ୍ୟବହାର କରନ୍ତି । ଏ ଭାରି ସୁବିଧା । ନନ୍ଦ ହିଁ କହିଲେ ଏ ବର୍ଷା ଅଂଧାରରେ ଆମେ ପାଖରେ ଗୋଟାଏ ବଂଶୀ ରଖିଲେ ସୁବିଧା ହେବ, ଓ ସେ ତାଙ୍କର ଗାଈ ଜଗୁଆଳ ବଂଶୀ ଗୋଟାଏ ଆଣି ଦେଲେ ।'

ଭାନୁପ୍ରକାଶ ଟିକେ ରହିଗଲେ, ଓ ତା'ପରେ କହିଲେ, 'ମୁଁ ଆଉ ଗୋଟାଏ କଥା ବି ଭାବୁଥିଲି । ଏତେ ଝିନ୍‌ଝଟ ଭିତରକୁ ପଶିବା କଅଣ ଦରକାର ? ବସୁଦେବ ଘାଟରେ ରହନ୍ତେ । ଆମେ ତାଙ୍କ ଛୁଆଟାକୁ ନନ୍ଦଙ୍କ ଘରକୁ ଆଣି, ବଦଳେଇ ଦେଇ, ପୁଣି ଫେରେଇ ଦେଇ ଆସନ୍ତୁ । ଏପରିକି ବସୁଦେବ ଯମୁନା ଡେଇଁ ଏ ପାଖକୁ ନ ଆସିଲେ ବି ଚଳନ୍ତା । ସେ ନିଜେ ନନ୍ଦଙ୍କ ଘରକୁ ଆସିବେ, କଅଣ ଦରକାର ? ଆମେ ତ ସହଜରେ କରିଦେଇ ପାରନ୍ତେ । ଛୁଆଟା ବଦଳା ହେବ, ଏତିକି ତ ?'

'ହଁ...ହଁ...ତା ହୁଅନ୍ତା ଯେ...' ସତ୍ୟକାମ ଥା ଥା ମା ମା ହୋଇ କହିଲେ ।

'ନାଇଁ... ସେ କଥା ମୁଁ ଭାବୁଥିଲି..', କହିଲେ ଭାନୁପ୍ରକାଶ, 'ସତ କହିଲେ ମୋର ସାହସ ହେଲାନି । ଏ ଗୋଟାଏ ସାଧାରଣ ଘଟଣା ନୁହେଁ । ଏହା ସହିତ ବହୁ ବର୍ଷ ଧରି ବହୁତ ଲୋକ ଜଡ଼ିତ ହୋଇ ରହିଛନ୍ତି । ଏହାଛଡ଼ା ଗୁରୁଦେବ ଯାହା କହନ୍ତି, ଏ ଘଟଣା ସହିତ ଦେବତାମାନଙ୍କର ବି ସଂପର୍କ ରହିଛି । ଗୁରୁଦେବ ନିଜେ ବି ବର୍ଷ ବର୍ଷ ଧରି ଏ ସଂପର୍କରେ ଖବର ରଖିଛନ୍ତି ଓ ରଖୁଛନ୍ତି, ଓ କେତେବେଳେ କଅଣ କରିବାକୁ ହେବ ନିର୍ଦ୍ଦେଶ ଦେଉଛନ୍ତି ଓ କହୁଛନ୍ତି । ଏଠି ଅରିନ୍ଦମର ବାପା ବି ସବୁ ଖବର ଜାଣନ୍ତି ଓ ଟିକିନିଖି ଖବର ରଖନ୍ତି । ମୁଁ ସେଇଯୋଗୁ ଭାବିଲି ଏ ବସୁଦେବଙ୍କ କାମ, ସେ ନିଜେ ସବୁ କରିବା ଭଲ । ଗୁରୁଦେବ ଓ ଅରିନ୍ଦମର ବାପା ବି ସେଇଆ ଚାହାନ୍ତି - ବସୁଦେବ ନିଜ କାମ ନିଜେ କରନ୍ତୁ । ଆମେ ସବୁ ତାଙ୍କୁ କେବଳ ସାହାଯ୍ୟ କରିବା, ଆଉ କିଛି ନୁହେଁ । ଏ କାମ ଖାଲି ଆଜି କାଲି ଭିତରେ ବାନ୍ଧି ହୋଇ ରହିବ ନାହିଁ । ଗୁରୁଦେବ ତ କହନ୍ତି ଆଜିଠୁଁ ଶହ ଶହ ହଜାର ହଜାର ବର୍ଷ ପରେ ବି ଲୋକେ ଏ ବିଷୟରେ ଭାବିବେ, ଆଲୋଚନା କରିବେ, ମନେ ପକେଇବେ । ସେଇଯୋଗୁଁ ମୁଁ ଅନ୍ୟ ପ୍ରକାର ଭାବିଲେ ବି, ପଛେଇ ଗଲି, ଏ ଠିକ୍ ଅଛି ।'

'ଏ ତ ଛକକଟା ହେଲାପରି ଘଟଣା ।' କହିଲେ ସତ୍ୟକାମ, 'କା ପରେ କିଏ

ହେବ । ମୋ ମତରେ ସେମିତି ହେବା ଭଲ, ଏ ପାଖ ସେପାଖ ନ ହେବା ଉଚିତ୍ । ତା ହେଲେ ଠିକ୍ ସମୟରେ ଆମେ କାମ ସାରିଦେଇ ପାରିବା । ଆଉ ଗୋଟା କଥା... ଭାନୁ, ତୁମେ ସେତେବେଳେ ନନ୍ଦଙ୍କୁ ଯେଉଁ ଦୁଃଖ କଥା କହୁଥିଲ ସେ କଥା ମୁଁ ଭାବୁଥିଲି । ସେ ତ ହବ, ଆମେ କଅଣ କରି ପାରିବା ? ନନ୍ଦ ତ ସବୁ ଜାଣିବେ । ଏ ଦୁଃଖ ତ ତାଙ୍କୁ ସହିବାକୁ ପଡିବ ।'

'ନନ୍ଦଙ୍କ କଥାର ତ ତୁଳନା ନାହିଁ', କହିଲେ ଭାନୁପ୍ରକାଶ, 'ବସୁଦେବଙ୍କର ଛୁଆକୁ ତ ଜୋର କରି ତାଙ୍କ ପାଖରୁ ଛଡ଼େଇ ନିଆଯାଉଛି । ନନ୍ଦ ତ ଜାଣି ଜାଣି ନିଜ ଛୁଆକୁ ନିର୍ଘାତ ମୃତ୍ୟୁ ହାତକୁ ଠେଲି ଦେଉଛନ୍ତି । କହିପାର ମାରି ଦଉଛନ୍ତି । ଏହାଠୁ ଆଉ ଅଧିକା କଷ୍ଟ କଅଣ ଥାଇପାରେ । ଆଉ ଯେ ଛୁଆଟା ଆସିବ ସେ ଯେ କେତେଦିନ ରହିବ, କଅଣ ହେବ, କିଏ କହି ପାରିବ ? ମୁଁ ଗୁରୁଦେବଙ୍କୁ କହିଥିଲି । ତାଙ୍କର ସେହି ସବୁଦିନିଆ ଉତ୍ତର - ଏହାହିଁ ଘଟିବ । ନନ୍ଦ ପଶାପାଲିର ଗୋଟି ପରି । ତାପର ସେ ହସିଥିଲେ ଓ କହିଥିଲେ - ତୁମେ ବ୍ୟସ୍ତ ହୁଅନା, ନନ୍ଦଙ୍କ ଦୁଃଖ କଟିଯିବ । ହେଲା ଯେ, ମନର ଦୁଃଖ କୁଆଡେ ଯିବ ?'

'ମୋର ତ ମନେହୁଏ ନନ୍ଦ ଖୁବ୍ ଦମ୍ଭ ଲୋକ' । କହିଲେ ସତ୍ୟକାମ ।

'ଦମ୍ଭ ମାନେ ?' କହିଲେ ଭାନୁପ୍ରକାଶ, 'ତାଙ୍କ କାମର ଯେମିତି ତୁଳନା ନାହିଁ, ତାଙ୍କ ଦମ୍ଭର ବି ସେମିତି ତୁଳନା ନାହିଁ । ସେ ଦମ୍ଭ ଧରି ଅଛନ୍ତି ବୋଲି ତ ଆମେ ଯେତେ ଯାହା କାମ କରି ପାରୁଛେ । ଏଇ ସାଙ୍ଗେ ସାଙ୍ଗେ ଗୋଡ଼ ପାଖରେ ଦେଖ, ଆମେ ଯେଉଁ ବାଟରେ ଯାଉଛେ ସେଠି ଜଙ୍ଗଲ ଅଛି ?'

ସତ୍ୟକାମ ନିଜ ଯିବା ବାଟକୁ ଓ ଦି ପାଖକୁ ଚାହିଁଲେ । କହିଲେ, 'ସତେ ତ, ଆମ ଯିବା ବାଟଟା ତ ସଫା । କିନ୍ତୁ ଦି ପାଖରେ ତ ଜଙ୍ଗଲ । ଏ କଥା ମୁଁ ଲକ୍ଷ୍ୟ କରିନି ।'

ଭାନୁପ୍ରକାଶ ହସିଲେ, କହିଲେ, 'ବାଟଟା କଅଣ ଛାଁ ଛାଁ ସଫା ହୁଏ । ଦି ଦିନ ତଳୁ ନନ୍ଦ ବାଟଟାକୁ ସଫା କରେଇ ରଖିଛନ୍ତି । ଜାଣ, ସେ ନିଜେ ଆସି ସଫା କରିଛନ୍ତି, ନିଜେ ଏକା ଏକା । ମୁଁ ଯେତେବେଳେ ପଚାରିଲି, କହିଲେ - ବସୁଦେବଙ୍କ କଥା ନୁହେଁ ଆମ କଥା, ତୁମେ ସବୁ ଯିବା ଆସିବା କରିବ, ଜଙ୍ଗଲ ବାଟ, ସଫା ଥାଉ । କେତେବେଳେ କଅଣ ସୁବିଧା ଅସୁବିଧା ଅଛି ।'

'ଆଶ୍ଚର୍ଯ୍ୟ...' ସତ୍ୟକାମ କହିଲେ ।

'ହଁ, ନନ୍ଦ ସେମିତିଆ ଲୋକ । ଚୁପଚାପ, କିନ୍ତୁ କାମ ପକ୍କା । ମୁଁ ତାଙ୍କୁ ସେତେବେଳେ ତାଙ୍କର ମନ କଷ୍ଟ କଥା ଯାହା କହୁଥିଲି ସେ ତାଙ୍କୁ ଦମ୍ଭ ଦବା ପାଇଁ


Digitized by srujanika@gmail.com

ନୁହେଁ, ନିଜେ ଦମ୍ଭ ପାଇବା ପାଇଁ ।'

ବାଟ ପ୍ରାୟ ସରି ଆସିଲାଣି । ଯମୁନା ବି ପାଖେଇ ଆସିଲାଣି । ନଈର ସୁଅ ଓ ଲହଡ଼ୀର ଶବ୍ଦ ସ୍ପଷ୍ଟ ଶୁଣା ଯାଉଥାଏ । ବର୍ଷା ପବନ କମି ଆସିଥାଏ । ସେମାନେ ଯାଇ ବାଟ ମୁଣ୍ଡକୁ ନଈ କୂଳରେ ଗୋଟାଏ ଗଛ ତଳେ ଛିଡ଼ା ହେଲେ । ସତ୍ୟକାମ ଏ ପାଖ ସେପାଖ ଚାହିଁଲେ, କହିଲେ, 'ନୌକା କାହିଁ ?'

'ଆସିବ', ଭାନୁପ୍ରକାଶ କହିଲେ, ଓ ଅଣ୍ଟାରୁ ବଂଶୀ କାଢି ତିନିଥର ଫୁଙ୍କି ଦେଲେ ।

ସତ୍ୟକାମ ଦେଖିଲେ ଅଂଧାର ଭିତରୁ ଦି ଜଣ ଦୀର୍ଘ ବଳିଷ୍ଠ ଲୋକ ଛାଇ ପରି ବାହାରି ଆସି ଭାନୁପ୍ରକାଶଙ୍କୁ ମୁଣ୍ଡିଆ ମାରିଲେ ।

ଭାନୁପ୍ରକାଶ ଚିହ୍ନା କରେଇ ଦେଲେ – 'ଏଇ ଦି ଜଣ ନାଉରି, କୁରୁକ୍ଷେତ୍ରରୁ ଆସିଛନ୍ତି – ସୁର, ବୀର ।'

ସେ ସେମାନଙ୍କୁ ଚାହିଁଲେ – 'ତୁମ ନୌକା ?'

'ଏଇ ସେ ପାଖରେ ଅଛି', ସୁର କହିଲା ।

ଭାନୁପ୍ରକାଶ ଓ ସତ୍ୟକାମ ଚାହିଁଲେ । ସେହି ଅଂଧାର ଭିତରେ ବି ବୁଝିହେଉଥାଏ । ଅଳ୍ପ ଦୂରରେ କୂଳକୁ ଲାଗି ନୌକା ବଂଧା ହୋଇଛି । ଉଭୟ ନାଉରିଙ୍କ ସହିତ ନୌକା ପାଖକୁ ଗଲେ ।

ସତ୍ୟକାମ ଧରିଥିବା ଆଲୁଅର ଘୋଡ଼ା ହୋଇଥିବା କିଛି ଅଂଶ ଖୋଲିଦେଲେ । ଆଲୁଅର ଗୋଟାଏ ଉଜ୍ଜ୍ୱଳ ଧାରା ନୌକା ଉପରେ ବିଛାଡ଼ି ହୋଇ ପଡିଲା । ହଁ, ଭଲ ନୌକା । ଛୋଟ ନୁହେଁ, ବଡ଼ ବି ନୁହେଁ, ମଝାମଝି । ଆଠ ଦଶ ଜଣ ଲୋକ ଯିବା ପାଇଁ ପ୍ରଶସ୍ତ । ପୂରା ଖୋଲା ନୁହେଁ । ମଝିରେ କିଛି ଅଂଶ ଉପରେ ଛାମୁଡିଆ ପରି କରାଯାଇଛି । ବର୍ଷା ପାଣି ପଡିବ ନାହିଁ, ପବନ ବି କମ ବାଜିବ । ମନେ ହେଉଛି ନୂଆ । ସତ୍ୟକାମ ଖୁସି ହେଲେ । 'ଭାନୁ', ସତ୍ୟକାମ କହିଲେ, 'ଏ ନୌକା ନୂଆ ନୌକା ପରି ମନେହେଉଛି । ଦମ୍ଭ ପରି ବି ଲାଗୁଛି । ନାଉରିମାନେ ପୋଖତ ବୋଲି ତ ତୁମେ କହୁଥିଲ, ଭାବୁଛି ଅସୁବିଧା ହେବନି । ହେଲେ ନଈ କଥା ତ, ପାଣି ଭର୍ତ୍ତି, ପୁଣି ଏ ବର୍ଷା ପବନ...'

'ହଁ, ନୌକା ନୂଆ, ଯନ୍ତ୍ର ବି ଲାଗିଛି, ଦମ୍ଭ ବି । ଆଉ ଏ ଦି ନାଉରି ଯାକ ବି ପୋଖତ, ସେମାନେ ବହୁବର୍ଷ ଧରି ନୌକା ବାହୁଛନ୍ତି', କହିଲେ ଭାନୁପ୍ରକାଶ, 'ଯମୁନା ସେମାନଙ୍କର ଅତ୍ୟନ୍ତ ପରିଚିତ, ଯମୁନାରେ କେତେବେଳେ କେତେ ପାଣି ଆସିଲା, ସୁଅ କୁଆଡ଼େ ଗଲା, ଲହଡୀ କୁଆଡ଼େ ଯାଉଛି, ସବୁ ସେମାନଙ୍କୁ ନିଜ ହାତ

ଆଙ୍ଗୁଠି ପରି ଜଣା । ଗୁରୁଦେବ ସେମାନଙ୍କୁ ନିଜେ ବାଛିଚନ୍ତି । ମୁଁ ବି ସେମାନଙ୍କୁ ଭଲ ଭାବରେ ଜାଣେ ।'

ସେ ଦୁଇ ନାଉରିଙ୍କ ଆଡକୁ ଚାହିଁଲେ, କହିଲେ, 'ସୁର, ବୀର, ମୋର ବଂଧୁ ପଚାରୁଛନ୍ତି ତୁମେ ଏ ବର୍ଷା ପବନରେ ପାର ଉତ୍ତାର କରି ପାରିବ ତ? ନଈରେ ତ ପାଣି ଭର୍ତ୍ତି, ପ୍ରବଳ ସୁଅ ।'

ସୁର ଦି ହାତ ଯୋଡି ମୁଣ୍ଡରେ ଲଗେଇଲା, 'ଆଜ୍ଞା ପ୍ରଭୁ, ଯମୁନା ଆମର ଘର । ମା'ଙ୍କ ଦୟାରୁ ଆମେ ଖାଇପିଇ ବଂଚିଛୁ । ସବୁ ମା'ଙ୍କର ଦୟା । ବାବାଙ୍କର ଆଶୀର୍ବାଦ ଥିଲେ, ଆପଣଙ୍କ ଆଶୀର୍ବାଦ ଥିଲେ, ଆଉ ମା'ଙ୍କର ଦୟା ଥିଲେ ଆମେ ନିଶ୍ଚୟ ପାରିବୁ । ଏ ପାଣି ପବନ ତ ଆମର ଦେହସୁଆ ।'

ଭାନୁପ୍ରକାଶ ହସିଲେ, କହିଲେ, 'ମୁଁ ଜାଣେ ସୁର । ସେହି ଯୋଗୁ ତ ଗୁରୁଦେବ ତୁମ ଦିହିଁଙ୍କି ଏଠିକି ଆଣିବାକୁ କହିଥିଲେ ।'

'ଆଜ୍ଞା... ଆଜ୍ଞା'..., ଦି ନାଉରି ସେମାନଙ୍କର ଦି ହାତକୁ ପୁଣି ଥରେ ମୁଣ୍ଡରେ ଲଗେଇଲେ ।

ଭାନୁପ୍ରକାଶ ଚାରିପାଖକୁ ଦେଖିନେଲେ । ନଈ କୂଳେ କୂଳେ ଯେତେଦୂର ବୁଝିହୁଏ ସବୁ ଚୁପ୍‌ଚାପ । ଅଂଧାର ପାଖ ଗଛବୃକ୍ଷ ଉପରେ ଘୋଡ଼େଇ ହୋଇ ରହିଛି । ନଈ ପାଣିର ଶବ୍ଦ, ନଈରେ ବର୍ଷା ପଡିବାର ଶବ୍ଦ, ପବନରେ ସୁସୁ ଶବ୍ଦ । ଭାନୁପ୍ରକାଶଙ୍କର ହଠାତ୍ ମନେ ହେଲା ଯେପରି ନଈ ମଝିରେ ଗୋଟାଏ ତୀବ୍ର ଆଲୋକର ଜ୍ୟୋତି ଉଜ୍ଜ୍ୱଳ ହୋଇ ଉଠିଲା । ସେ ଚମକି ପଡି ଚାହିଁଲେ । ନାଁ , କିଛି ନାହିଁ, ଅଂଧାର, ବର୍ଷା, ପବନ । ସେ ସତ୍ୟକାମଙ୍କୁ ଚାହିଁଲେ, କହିଲେ, 'ସତ୍ୟକାମ, ମୁଁ ଆସେ..' ।

'ହଁ, ଆସ', ସତ୍ୟକାମ କହିଲେ, 'ମୁଁ ଏଇଠି ଅପେକ୍ଷା କରିଛି ।' ସେ ଆସ୍ତେ ଆସ୍ତେ କହିଲେ, 'ଦୁର୍ଗା...ଦୁର୍ଗା... ।'

ଭାନୁପ୍ରକାଶ ନାଉରିଙ୍କ ସାଙ୍ଗରେ ନୌକା ଭିତରକୁ ଓହ୍ଲେଇ ଗଲେ । ସତ୍ୟକାମ ଲକ୍ଷ୍ୟ କଲେ ନାଉରିମାନେ କୂଳେ କୂଳେ ନୌକାକୁ କିଛିବାଟ ନଈ ଉପର ଆଡକୁ ନେଇଗଲେ । ତା'ପର ଆର କୂଳ ଲକ୍ଷ୍ୟ କରି ନୌକା ନଈ ମଝିକୁ ବୁଲିଗଲା ।

ନୌକା ପ୍ରଥମେ ଏପାଖ ସେପାଖ ହୋଇ ତା'ପର ସ୍ଥିର ହୋଇଗଲା, ଓ ତୀର ବେଗରେ ନଈ ମଝିକୁ ଭାସି ଚାଲିଲା । ଚକଚକ ବିଜୁଳି ମାରୁଥାଏ । ସୁର ହାଲ ଧରିଥାଏ, ବୀର ଆହୁଲା ମାରୁଥାଏ । ନଈର ସୁଅର ଶବ୍ଦ ସାଙ୍ଗରେ ଆହୁଲାର ଝପଝପ


Digitized by srujanika@gmail.com

ଶବ୍ଦ । ଭାନୁପ୍ରକାଶଙ୍କର ମନେହେଲା ନଈ ମଝିରେ ଯେଉଁ ଆଲୋକର ଜ୍ୟୋତି ସେ କିଛି ସମୟ ଆଗରୁ ଦେଖିଥିଲେ ବୋଲି ଭାବିଲେ ସେହି ଜ୍ୟୋତି ତାଙ୍କୁ ଚାରିପାଖରୁ ଯେପରି ଘେରି ଗଲାଣି, ଆଉ ସେ ଜ୍ୟୋତିର ସମୁଦ୍ରରେ ଭାସି ଭାସି ବୁଲୁଛନ୍ତି । ତାଙ୍କର ସ୍ଥିତି କେଉଁଠି - ଶୂନ୍ୟରେ, ମହାଶୂନ୍ୟରେ । ନାଁ ତା ତ ନୁହେଁ । କେବଳ ଜ୍ୟୋତି ଜ୍ୟୋତି - ଅପୂର୍ବ, ଅଦ୍ଭୁତ ଜ୍ୟୋତି, ଜ୍ୟୋତିର ସ୍ରୋତରେ ତାଙ୍କର ସତ୍ତା ତଲ୍ଲୀନ ହୋଇ ଯାଇଛି । ଏ କଅଣ ? ବିରାଟ ସମୁଦ୍ର, ବିରାଟ ଜଳୋଚ୍ଛ୍ୱାସ, ବିରାଟ ବିପୁଳ ଆକାଶ, ସୀମାହୀନ ଦିଗନ୍ତରେ ବିରାଟ, ବିପୁଳ ଶୁଭ୍ରତା । ଏମାନେ କିଏ ? ଦୀର୍ଘ, ଉଜ୍ଜ୍ୱଳ ପୁରୁଷ, ଅସଂଖ୍ୟ, ଅସଂଖ୍ୟ । ବିରାଟ କ୍ଷୀରାବ୍ଧିକୁ ସେମାନେ ମନ୍ଥନ କରୁଛନ୍ତି - ନୀରବରେ, ନିଃଶବ୍ଦରେ, କେବଳ ଝପଝପ ଶବ୍ଦ, କେବଳ ଚକଚକ କରି ଜ୍ୟୋତିର ଚକ୍ର । ଭାନୁପ୍ରକାଶଙ୍କର ଦେହ ଅବଶ ହୋଇ ଆସିଲା, ତାଙ୍କର ଅନୁଭବ ଆଚ୍ଛନ୍ନ ହୋଇଗଲା । ତାଙ୍କର ମନେହେଲା ସେ ସ୍ଥିର ନୁହନ୍ତି । ସେ ତୀବ୍ର ବେଗରେ ସେହି ବିରାଟ ସମୁଦ୍ରରେ ଭାସି ବୁଲୁଛନ୍ତି । ତାଙ୍କର ସ୍ଥିତି ନାହିଁ, ଦିଗଦିଗନ୍ତ ନାହିଁ । ସେହି ଶୂନ୍ୟ, ମହାଶୂନ୍ୟରେ ତାଙ୍କର ସତ୍ତା ଲୀନ ହୋଇ ଯାଇଛି । 'ଗୁରୁଦେବ... 'ଗୁରୁଦେବ...' ସେ ନୀରବରେ ପ୍ରାର୍ଥନା କଲେ... 'ଗୁରୁଦେବ... ଗୁରୁଦେବ ।' ଜ୍ୟୋତିର ବଳୟ ସ୍ଥିର ହେଲା, ଉଜ୍ଜ୍ୱଳ ପୁରୁଷମାନଙ୍କର ମନ୍ଥନ ସ୍ଥିର ହୋଇ ଆସିଲା, ବିରାଟ ଜଳୋଚ୍ଛ୍ୱସ ସ୍ଥିର ହେଲା । ଭାନୁପ୍ରକାଶ ଶୁଣିଲେ ବହୁତ ଦୂରରୁ ଗୁରୁଦେବଙ୍କର ସ୍ନେହସିକ୍ତ ଗମ୍ଭୀର ସ୍ୱର ଭାସି ଆସୁଛି- 'ହଁ, ମନ୍ଥନ.... ସାଗର ମନ୍ଥନ.... ଜ୍ୟୋତି.... ଜୀବନର ଜ୍ୟୋତି'- ଗୁରୁଦେବଙ୍କ ସ୍ୱର ପାଖକୁ ଲାଗି ଆସିଲା । ଭାନୁପ୍ରକାଶଙ୍କର ମନେହେଲା ଗୁରୁଦେବ ଯେପରି ପାଖରେ ବସେଇ ଉପଦେଶ ଦିଅନ୍ତି ସେମିତି, ଧୀରେ ଧୀରେ, ସେମିତି ସ୍ନେହସିକ୍ତ କଣ୍ଠରେ - 'ତୁମେ ତାହାହିଁ ଦେଖିଲ ଭାନୁପ୍ରକାଶ, ଏ କେବଳ ଅତୀତର ନୁହେଁ, ବର୍ତ୍ତମାନର ବି, ଭବିଷ୍ୟତର ବି, ଯୁଗ ଯୁଗ ଧରି ଚାଲିଛି । ନିଷ୍କାଶିତ ହେବ ଅମୃତ, ବିଷ । ତୁମେ ଉଭୟକୁ ଗ୍ରହଣ କର ।' ଗୁରୁଦେବଙ୍କ ସ୍ୱର ଦୂରକୁ ଦୂରକୁ ଚାଲିଗଲା ।

'ଆଜ୍ଞା, ପ୍ରଭୁ, କୂଳ ଆସିଗଲା ।'

ଭାନୁପ୍ରକାଶଙ୍କ ଧ୍ୟାନ ଭାଙ୍ଗିଗଲା ।

ନାଉରିମାନେ ନୌକା କୂଳକୁ ନେଇ ଭିଡିଦେଲେ । ସେ ଅଂଧାରରେ ବି ଭାନୁପ୍ରକାଶ ବୁଝିପାରିଲେ ଘାଟ ଠାରୁ ସାମାନ୍ୟ ଦୂରରେ କିଏ ଦି ଜଣ ଛିଡ଼ା ହୋଇଛନ୍ତି । ନିଶ୍ଚୟ ସୌରଦେବ ଓ ଅରିନ୍ଦମ ।

ଭାନୁପ୍ରକାଶ ନାଉରି ଦି ଜଣଙ୍କୁ ଚାହିଁଲେ, କହିଲେ, 'ନୌକାକୁ ଠିକ୍ ଘାଟରେ

ନ ରଖି, ଘାଟ ସେ ପାଖକୁ ଟିକିଏ ଦୂରରେ ରଖ । ଯେମିତି ସାଙ୍ଗେ ସାଙ୍ଗେ କାହା ନଜରରେ ପଡିବନି । ଆଉ ଅପେକ୍ଷା କର । ମୋ ଠାରୁ ବଇଁଶୀ ଶବ୍ଦ ଶୁଣିଲେ ନୌକାକୁ ଘାଟକୁ ନେଇ ଆସିବ ।'

'ଆଜ୍ଞା, ଆପଣ ଓହ୍ଲେଇ ଯାଆନ୍ତୁ...' ସୁର କହିଲା ।

ଭାନୁପ୍ରକାଶ ନୌକାରୁ ଓହ୍ଲେଇ ଘାଟ ଉପରକୁ ଉଠିଲେ ।

ନାଉରି ଦି ଜଣ ନୌକାକୁ ସାମାନ୍ୟ ତଳ ଆଡକୁ ଭିଡ଼ିନେଲେ ।

ହଁ, ସୌରଦେବ ଓ ଅରିନ୍ଦମ । ଉଭୟ ବର୍ଷାତି ପିନ୍ଧି ଚୁପ୍‌ଚାପ ଛିଡ଼ା ହୋଇଥିଲେ । ସେମାନଙ୍କ ହାତରେ ଗୋଟାଏ ଛୋଟ ଘୋଡା ହୋଇଥିବା ଆଲୁଅ, ଓ ଗୋଟାଏ ବାଡି ବି ।

ଭାନୁପ୍ରକାଶ ସେମାନଙ୍କ ପାଖକୁ ଲାଗିଗଲେ, ପଚାରିଲେ, 'ସୌର ଦେବ, ଏଠିକା ଖବର କଅଣ ?'

'ଖବର ଠିକ୍ ଅଛି...', କହିଲେ ସୌରଦେବ, 'ଆମେ ଘାଟକୁ ଆସିବା ଆଗରୁ ବନ୍ଦୀଶାଳା ପାଖକୁ ଯାଇଥିଲୁ । ମୁଖ୍ୟ ଫାଟକ ପାଖକୁ ନୁହେଁ। ସେଇ ଡାହାଣ ପାଖର ଚୋରା ଫାଟକ ପାଖକୁ, ଯୋଉ ଫାଟକ କଥା ତୁମେ କହିଥିଲ । ସେ ପାଖ ପୂରା ଶୂନଶାନ । ସୁରଥ ସେହି ବାଟେ ବାହାରକୁ ଆସିଥିଲା । ସେ ଦ୍ୱାରଟା ଛୋଟ କିନ୍ତୁ ଭଲ । ମନେ ହେଲା ଯଥେଷ୍ଟ ନିରାପଦ । ସୁରଥ କହୁଥିଲା ସେହି ଦ୍ୱାରବାଟେ ବସୁଦେବ ଆସିବା ଠିକ୍ ହେବ ।'

'ରକ୍ଷୀମାନଙ୍କ ଖବର କଅଣ ? କିଛି ସେ କହୁଥିଲା ?' ଭାନୁପ୍ରକାଶ ପଚାରିଲେ । 'ହଁ, ଭୋଜି ସରିଯାଇଛି, ସମସ୍ତେ ଖାଇ ସାରିଛନ୍ତି । ପ୍ରାୟ ସମସ୍ତେ ଶୋଇଗଲେଣି...'

'ଦେବକୀଙ୍କ ବିଷୟରେ... ?'

'କିଛି ନିର୍ଦ୍ଦିଷ୍ଟ ଖବର ନାହିଁ । ସୁରଥ ବସୁଦେବଙ୍କୁ ଦେଖା କରିଥିଲା । ବସୁଦେବ କହିଛନ୍ତି ଦେବକୀଙ୍କର ଗର୍ଭ କଷ୍ଟ ଆରମ୍ଭ ହେଲେ ସେ ସାଙ୍ଗେ ସାଙ୍ଗେ ଖବର ଦେବେ । ସେ ସୁରଥକୁ ଆଖପାଖରେ ରହିବାକୁ କହିଛନ୍ତି ।'

'ଆମେ ଆସିବା ବେଳକୁ ଯଶୋଦାଙ୍କର ଗର୍ଭକଷ୍ଟ ଆରମ୍ଭ ହେଉଥିଲା ।' କହିଲେ ଭାନୁପ୍ରକାଶ, 'ଦେବକୀଙ୍କର ଯଦି ଆରମ୍ଭ ନ ହୋଇଛି ଶୀଘ୍ର ହେବ । ମୋର ବିଶ୍ୱାସ ପ୍ରାୟ ଏକା ସମୟରେ ଦିହିଁଙ୍କର ଛୁଆ ହେବ । ସାମାନ୍ୟ ଆଗପଛ ହୋଇପାରେ ।'

ସୌରଦେବ ସାମାନ୍ୟ ହସିଲେ, କହିଲେ, 'ଦିହିଁଙ୍କର ଏକା ସମୟରେ ପିଲା


Digitized by srujanika@gmail.com

ହେବା ଉପରେ ତ ଆମର ସବୁ ଯୋଜନା ନିର୍ଭର କରୁଛି ।'

'ହବ', ଭାନୁପ୍ରକାଶ କହିଲେ, 'ଯେଉଁ ପାଚନ ଦିଆଯାଇଛି ସେ ଖାଲି ପାଚନ ନୁହେଁ, ଗୁରୁଦେବଙ୍କର ମନ୍ତ୍ରପୂତ ପାଚନ । ସେ ଅର୍ଦ୍ଧରାତ୍ରି ସମୟ ଠିକ୍ କରି ଦେଇଛନ୍ତି । ସେହି ଅର୍ଦ୍ଧରାତ୍ରିରେ ହିଁ ଉଭୟଙ୍କର ପିଲା ହେବ । ଆମେ ଆଉ ଏଠି ରହିବାନି । ବନ୍ଦୀଶାଳା ପାଖୁ ଯିବା । ସୁରଥ ଅପେକ୍ଷା କରିଥିବ ।'

ଏମାନେ ବନ୍ଦୀଶାଳାର ଡାହାଣ ପାଖର ସେଇ ଚୋରା ଦରଜା ପାଖରେ ପହଞ୍ଚିଲା ବେଳକୁ ସୁରଥ ଦରଜା ବାହାରକୁ ଆସି ଅପେକ୍ଷା କରିଥିଲା । ସେ ଭାନୁପ୍ରକାଶଙ୍କୁ ଦେଖି ସାଙ୍ଗେ ସାଙ୍ଗେ ସାଷ୍ଟାଙ୍ଗ ହୋଇ ପ୍ରଣାମ କଲା । କହିଲା, 'ଆପଣ ଯେମିତି କହିଥିଲେ, ମୁଁ ବଡ଼ ଫାଟକଟା ଆଉ ଖୋଲିଲି ନାହିଁ । ଏଇ ଚୋର ଦରଜା ଭଲ ହେବ । ବସୁଦେବ ଏଇ ବାଟେ ଯିବା ଆସିବା କରିବା ସୁବିଧା ।'

ଭାନୁପ୍ରକାଶ ଦରଜାର ଚାରିପାଖ ଦେଖିଲେ, ଭିତର ବାହାର ଦେଖିଲେ, କହିଲେ, 'ନାଇଁ, ଏ ଭଲ ହେଲା । ଯିବା ଆସିବା ସୁବିଧା ହେବ, କେହି ବୁଝିପାରିବେ ନାହିଁ । ମୁଖ୍ୟ ଫାଟକ ଖୋଲିବା ବନ୍ଦ କରିବା ଅସୁବିଧା । ସେ ସେମିତି ବନ୍ଦ ଥାଉ । ମତେ କୁହ ଏ ଦରଜା ପାଖରୁ ବସୁଦେବ ଦେବକୀଙ୍କର ରହିବା ଘର କେତେ ବାଟ ?'

'କମ ବାଟ' । ସୁରଥ କହିଲେ, 'ମୁଖ୍ୟ ଫାଟକଟା ବରଂ ଟିକିଏ ବୁଲାଣି ପଡିଥାନ୍ତା । ତା'ଛଡ଼ା ଖୋଲାରେ ଖୋଲାରେ ଯିବାକୁ ହୋଇଥାନ୍ତା । ଏ ବାଟ କମ, ଗଳି ବାଟ, ଚୁପଚାପ ଯାଇହେବ, କେହି ଜାଣି ପାରିବେ ନାହିଁ । ଆଉ ବର୍ତ୍ତମାନ ତ ସେ ପାଖରେ ସମସ୍ତେ ଶୋଇଛନ୍ତି ।'

ଭାନୁପ୍ରକାଶ ହସିଲେ, 'ମସଲା କାମ କଲା ତା ହେଲେ ?'

'ଆଜ୍ଞା', ସୁରଥ କହିଲା, 'କାମ ! ଖାଲି ଶୋଇବା କାମ ନୁହେଁ । ତରକାରି ପତ୍ର ଏମିତି ସ୍ୱାଦୁକର ହେଲା ଯେ ସମସ୍ତେ ଚାଟିଚୁଟି ଖାଇଦେଲେ । 'ଭଲ', ଭାନୁପ୍ରକାଶ କହିଲେ, 'ସମସ୍ତେ ଅନ୍ତତଃ ତିନି ଘଟିକା ଶୋଇବେ । ଆମ କାମ ହୋଇଯିବ । ତୁମେ ଏକା ଚେଇଁଛ ନା ଆଉ କିଏ ଅଛି ?'

'ନାଁ, ମୁଁ ଏକା', ସୁରଥ କହିଲା, 'ଆପଣ ମୁଁ ଏକା ଏକା ଚେଇଁ ରହିବା କଥା କହିଥିଲେ । ମୁଁ ଆମ ଲୋକଙ୍କୁ ବି ଖୋଇ ଦେଇଛି ।'

'ସମସ୍ତେ ଶୋଇଛନ୍ତି ? ସମସ୍ତଙ୍କୁ ଦେଖିଛ ?' ଭାନୁପ୍ରକାଶ ପଚାରିଲେ, 'ଆଜି ଆଉ ନୂଆ ରକ୍ଷୀ କେହି ଆସି ନାହାନ୍ତି ତ ?'

'ନାଁ', ସୁରଥ କହିଲା, 'ଆସିବାର ଥିଲା । ପ୍ରଦ୍ୟୋତ ମନା କରିଦେଲେ ।

କହିଲେ ବନ୍ଦୀଘରେ ତ ବହୁତ ରକ୍ଷୀ ଅଛନ୍ତି । ଆଉ ଅଧିକା ଯାଇଁ କରିବେ କଅଣ ? ଏ କଥା ବି କହିଛନ୍ତି ଯଦି ରାତିରେ ପିଲା ହୁଏ, ସେହି ରାତିରେ କଂସଙ୍କୁ ବିଛଣାରୁ ଉଠେଇ ଖବର ଦବା ଦରକାର ନାହିଁ । ସକାଳେ କଂସଙ୍କୁ ଖବର ଦେବ, ତାଙ୍କୁ ବି ଖବର ଦେବ ।'

'ପ୍ରଦ୍ୟୋତ ରାଜ ନଅରରେ ଅଛନ୍ତି ନା ଘରକୁ ଚାଲି ଗଲେଣି ?' ଭାନୁପ୍ରକାଶ ପଚାରିଲେ ।

'ମୁଁ ଜାଣେନା', ସୁରଥ କହିଲା, 'ବୋଧେ ଘରକୁ ଚାଲି ଯାଇଛନ୍ତି । ଆଜି ଦିନରେ ଏଠିକି ଆସିଥିଲେ, ଆଉ ଆସି ନାହାନ୍ତି ।'

'ହେଲା, ବର୍ତ୍ତମାନ ଘର ଭିତର ଖବର କୁହ', ଭାନୁପ୍ରକାଶ କହିଲେ ।

'ମୁଁ ଏଠିକି ଆସିବା ଆଗରୁ ବସୁଦେବଙ୍କୁ ଦେଖା କରିଥିଲି', ସୁରଥ କହିଲା, 'ସେ ଆପଣଙ୍କ ପାଚନ ଦେବକୀଙ୍କୁ ଠିକ୍ ସମୟରେ ଖାଇବାକୁ ଦେଇଛନ୍ତି । ତାଙ୍କ କଥାରୁ ମନେ ହେଲା ଦେବକୀଙ୍କର ଗର୍ଭ କଷ୍ଟ ବୋଧହୁଏ ଆରମ୍ଭ ହୋଇଯାଇଛି...' ସେ ଟିକିଏ ରହିଗଲା, 'ବସୁଦେବ ବୋଧେ ଭୟ କରୁଛନ୍ତି....'

'ଭୟ ? କାହିଁକି ?' ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହେଲେ, 'କଅଣ କଅଣ କରିବାକୁ ହବ ତାଙ୍କୁ ତ ସବୁକଥା ବୁଝେଇ ଦିଆଯାଇଛି ।'

'ଗୋଟାଏ କଥା କହିବି ?' ସୁରଥ ନିବେଦନ କଲା ।

'ଆରେ କୁହ । କଅଣ ହେଇଛି ?' ଭାନୁପ୍ରକାଶ ବିରକ୍ତ ହେଲେ ।

ସୁରଥ ଟିକେ ରହିଗଲା । ତାପର କହିଲା, 'ବସୁଦେବ ବିଶ୍ୱାସ କରି ପାରୁ ନାହାନ୍ତି । ସେ ଡରୁଛନ୍ତି ସବୁ ଗୋଳମାଳ ହେଇଯିବ ।'

'କିନ୍ତୁ କାହିଁକି ? ସବୁ ତ ଠିକ୍ ଅଛି ।' ଭାନୁପ୍ରକାଶ ବିବ୍ରତ ଭାବରେ କହିଲେ । 'ମୁଁ ତାର ଉତ୍ତର ଦେଉଛି, ଭାନୁ', ସୌରଦେବ କହିଲେ, 'ଏ କେତେବର୍ଷ ହେଲା ଭାବ,ପ୍ରାୟ ଆଠ ଦଶ ବର୍ଷ ହେଲା, ସେ ବନ୍ଦୀ ଅଛନ୍ତି । ପ୍ରତି ବର୍ଷ ତାଙ୍କ ଆଖି ଆଗରେ ପିଲାଗୁଡ଼ାଙ୍କୁ ମାରି ଦିଆଯାଉଛି । ସେ ନିଜେ ତ କିଛି କରି ପାରୁ ନାହାନ୍ତି, ଆଉ କେହି ବି କିଛି କରି ପାରୁ ନାହାନ୍ତି । ଏ ଅବସ୍ଥାରେ ତାଙ୍କର ମନର ଦମ୍ଭ ରହିବ ତ ? ଏ ଯେ ଗୋଟାଏ ଅଲଗା ପ୍ରକାର ହେବ ସେ କାହିଁକି ଭାବିବେ ? ସେ ଯେ ତୁମ ଯୋଗାଡ଼ ଯନ୍ତ୍ର ମାନି ନେଇ ସେମିତି କରିବାକୁ ରାଜି ହୋଇଛନ୍ତି ଏ ତ ମତେ ଆଶ୍ଚର୍ଯ୍ୟ ଲାଗୁଛି ।'

ଭାନୁପ୍ରକାଶ ଚୁପ ହୋଇ କଅଣ ଭାବିଲେ, ତାପରେ କହିଲେ, 'ମୋ ମନରେ


Digitized by srujanika@gmail.com

ବି ସେମିତି କିଛି ସନ୍ଦେହ ଥିଲା ସୌରଦେବ । କିନ୍ତୁ ମୁଁ ସେ ସନ୍ଦେହକୁ ବିଶେଷ ଗୁରୁତ୍ୱ ଦେଇ ନ ଥିଲି । ମୁଁ ଅନ୍ୟ କଥା ଭାବୁଥିଲି । ଯେ ଦୁଃଖ କଷ୍ଟ ଭିତରେ ରହି ତାଙ୍କ ମନ ଟାଣ ହୋଇଯାଇ ଥିବ । କିନ୍ତୁ ବର୍ତ୍ତମାନ ତ ସେସବୁ କଥା ଭାବିଲେ ଚଳିବନି । ସେ ଯଦି ପଛେଇ ଯାଆନ୍ତି ତା ହେଲେ ତ ସବୁ ଗୋଳମାଳ ହୋଇଯିବ....'

'ନାଁ, ସେ ପଛେଇ ଯିବେ ବୋଲି ମୁଁ ଭାବୁନି । ସୁରଥ... ?'

'ନା, ଆଜ୍ଞା, ମୋର ସେମିତି ମନେହେଲା ବୋଲି ମୁଁ ଆପଣଙ୍କୁ କହିଲି ।' ସୁରଥ କହିଲା 'ଆପଣମାନେ ଏଇଠି ରହନ୍ତୁ । ମୁଁ ଦେଖି ଆସେ କଅଣ ହେଲା ।'

ସୁରଥ ସାଙ୍ଗେ ସାଙ୍ଗେ ଭିତରକୁ ଚାଲିଗଲା । ଭାନୁପ୍ରକାଶ, ସୌରଦେବ ଓ ଅରିନ୍ଦମ ଦରଜା ବାହାରେ ହତା ପାଚିରିକୁ ଲାଗି ଛିଡ଼ା ହୋଇ ରହିଲେ । ଚାରିଆଡ଼େ ଆଗ ପରି ଅଂଧାର । ବର୍ଷା କମି ଯାଇଥିଲେ ବି ମନେ ହେଉଛି ଯେ କୌଣସି ସମୟରେ ଜୋରରେ ଆରମ୍ଭ ହୋଇଯାଇ ପାରେ । ବେଶ୍ ଥଣ୍ଡା ପବନ ଦେଉଥାଏ । ବାରମ୍ବାର ବିଜୁଳି ମାରୁଥାଏ । ଘଡ଼ଘଡ଼ି ବି ।

ଭାନୁପ୍ରକାଶ କହିଲେ, 'ତୁମେ ଠିକ୍ କହିଛ ସୌରଦେବ । କିନ୍ତୁ ମୁଁ ଭାବୁଛି ବସୁଦେବ ଏତେ ଦୁର୍ବଳ ହେବେନି । ଏ ଖାଲି ତାଙ୍କ ପିଲା କଥା ନୁହେଁ । ଏ ପିଲା ଉପରେ ମଥୁରା ତ ମଥୁରା, ସାରା ଆର୍ଯ୍ୟାବର୍ତ୍ତ ନିର୍ଭର କରି ରହିଛି । ତା ନ ହେଲେ ଗୁରୁଦେବ ଓ ମୁନି ଋଷିମାନେ ଏତେ ଆଗ୍ରହୀ ହୁଅନ୍ତେ ନାହିଁ । ବସୁଦେବ ଏ କଥା ଜାଣନ୍ତି । ମୁଁ ତାଙ୍କୁ ଖବର ପଠେଇଛି ସେ ନିଜ କଥା ଭୁଲି ଯାଆନ୍ତୁ । ସେ ଗୋଟାଏ ଯୁଗ ସନ୍ଧି ଉପରେ ଛିଡ଼ା ହୋଇଛନ୍ତି । ଏ ଯୁଗ ସନ୍ଧିର କାର୍ଯ୍ୟ... ନାଁ...ନାଁ... ଏ ଠିକ୍ ହୋଇଯିବ... ?'

'ମୁଁ ବି ସେଇଆ ଭାବୁଛି', କହିଲେ ସୌରଦେବ, 'ସୁରଥ ତା ହିସାବରେ ଯା ବୁଝିଲା ସେଇଆ କହିଲା ।'

'ବାପା କହୁଥିଲେ । ବସୁଦେବ ଖୁବ୍ ଦମ୍ଭ ଲୋକ, ଦେବକୀ ବି, କଂସର ଅତ୍ୟାଚାର ତାଙ୍କର କିଛି କରି ପାରିବନି', ଅରିନ୍ଦମ କହିଲା ।

ଗୋଟାଏ ବିଜୁଳି ଚମକି ଉଠି ମୁହୂର୍ତ୍ତକ ପାଇଁ ଚାରିପାଖ ହାଲୋକ ହୋଇଗଲା । ସେହି ଆଲୁଅରେ ସେମାନେ ଦେଖିଲେ ସୁରଥ ଫେରି ଆସୁଛି । ସୁରଥ ପାଖକୁ ଲାଗି ଆସିଲା । କହିଲା, 'ହଁ, ବସୁଦେବ ଖବର ଦେଲେ ଦେବକୀଙ୍କର ଗର୍ଭକଷ୍ଟ ଆରମ୍ଭ ହେଲାଣି । ଖୁବ୍ ଶୀଘ୍ର ପିଲା ହୋଇଯିବ ।' ଭାନୁପ୍ରକାଶ ସ୍ୱସ୍ତିର ନିଃଶ୍ୱାସ ପକେଇଲେ, କହିଲେ, 'ସୁରଥ, ଶୁଣ, ତୁମେ ଅନ୍ୟାନ୍ୟ ବନ୍ଦୋବସ୍ତ କରିଛ

ତ ? ପିଲାକୁ ଆଣିବା ପାଇଁ ?'

'ମୁଁ ଗୋଟାଏ ଟାଣ, ଚଉଡ଼ା ପେଟିକା ବସୁଦେବଙ୍କୁ ଦେଇ ଆସିଛି ।' ସୁରଥ କହିଲା ।

'ବେଶି ବଡ଼ ହେଲେ ଅସୁବିଧା ।' କହିଲେ ଭାନୁପ୍ରକାଶ ।

'ନାଇଁ, ବଡ଼ ନୁହେଁ କି ଛୋଟ ନୁହେଁ, ମଝି ମଝିକିଆ । ଛୁଆକୁ ରଖି ବସୁଦେବ ଯେମିତି ସୁବିଧାରେ ମୁଣ୍ଡେଇ ଆସି ପାରିବେ ?' କହିଲା ସୁରଥ, 'ତା ଭିତରେ ବି ଆପଣ ଯେମିତି କହିଥିଲେ ଛୁଆ ଭଲରେ ଶୋଇବା ପାଇଁ ଗୋଟାଏ ଲୁଗାକୁ ସଜେଇ ସାଜେଇ ଦେଇଛି । ଆଉ ଛୁଆକୁ ଯେମିତି ଥଣ୍ଡା ଲାଗିବନି ଓ ବର୍ଷା ପାଣି ପଡିବନି ସେଥିପାଇଁ ଭଲ କରି ଘୋଡ଼େଇ ଘାଡ଼େଇ ଦବାର ବି ବନ୍ଦୋବସ୍ତ କରି ଦେଇଛି, ଖାଲି ଆଲୁଅର ବନ୍ଦୋବସ୍ତ ହେଇନି ।'

'ଭଲ ହେଲା', କହିଲେ ଭାନୁପ୍ରକାଶ, 'ଆଲୁଅ ପାଇଁ ବ୍ୟସ୍ତ ହୁଅନା, ଆଲୁଅ ଆମର ଅଛି । ଏଠି ଆଉ ରୁହନା । ସାଙ୍ଗେ ସାଙ୍ଗେ ତୁମେ ବସୁଦେବଙ୍କ ପାଖକୁ ଫେରିଯା । ପାଖରେ ରହିଥିବ । ଦେବକୀଙ୍କର ଯେ କୌଣସି ସମୟରେ ଛୁଆ ହୋଇପାରେ । ବସୁଦେବ ଯେମିତି ନ ଭାବିବେ ସେ ଏକା । ତାଙ୍କୁ କହିଛ ଆମେ ସବୁ ଆସିଛୁ ?'

'ଆଜ୍ଞା', କହିଲେ ସୁରଥ ।

'ବାସ୍ । ତାଙ୍କୁ ମନେ ପକେଇ ଦବ । କହିବ ମୁଁ କହିଛି । ସବୁ କାମ ଯେମିତି ଠିକ୍ ଠିକ କରନ୍ତି । ବଡ଼ କଥା ହେଲା ଛୁଆ ଯେମିତି ନ କାନ୍ଦେ । ଆଉ ଦେବକୀ ବ୍ୟସ୍ତ ନ ହୋଇ, କନ୍ଦାକଟା ନ କରି, ଚୁପଚାପ୍ ଶୋଇବେ । ବସୁଦେବ ଛୁଆକୁ ଭଲ କରି ଘୋଡ଼େଇଘାଡ଼େଇ ଆଣିବେ । ତୁମେ ବସୁଦେବ ଓ ଛୁଆକୁ ଆଣି ମୋ ପାଖରେ ସାବଧାନରେ ପହଞ୍ଚେଇ ଦିଅ, ଯାଅ ।' ଭାନୁପ୍ରକାଶ ଚାରିପାଖକୁ ଚାହିଁଲେ... 'ଆଉ କେହି କୁଆଡ଼େ ନାହାନ୍ତି ତ ?'

'ନାଁ', ସୁରଥ କହିଲା, ଓ ସାଙ୍ଗେ ସାଙ୍ଗେ ହତା ଭିତରକୁ ଫେରିଗଲା । କେତେ ସମୟ ଗଲା । ଭାନୁପ୍ରକାଶଙ୍କର ମନେ ହେଲା ସେ ଯେପରି ଯୁଗ ଯୁଗ ଧରି ଅପେକ୍ଷା କରି ରହିଛନ୍ତି । କେତେ ସୂର୍ଯ୍ୟ ଚନ୍ଦ୍ର ପୂର୍ବରେ ଉଠି ପଶ୍ଚିମରେ ଅସ୍ତ ଗଲେଣି । କେତେ ଅଣଚାଶ ପବନ ପୃଥିବୀକୁ କଂପମାନ କରି ବହିଯାଇ ପୁଣି ସ୍ଥିର ହୋଇଗଲାଣି । କେତେ ବିଦ୍ୟୁତ କେତେ ବଜ୍ର, ଆସୁଛି ଯାଉଛି । ଏ କାହାର ଶବ୍ଦ ? କିଏ କହୁଛି... ଅପେକ୍ଷା କର... ଅପେକ୍ଷା କର ! ଏ କାହାର ଜ୍ୟୋତି ? ଆକାଶ,


Digitized by srujanika@gmail.com

ପୃଥିବୀ, ଦିଗନ୍ତ ପୂରି ଯାଇଛି ! ମହା ଆଲୋକ ! ମହା ଉଚ୍ଛ୍ୱାସ ! ମହାନ ସଂଗୀତର ଧ୍ୱନି ! କାହାର ଥଣ୍ଡା ହାତର ସ୍ପର୍ଶରେ ଭାନୁପ୍ରକାଶଙ୍କର ଚେତା ଫେରି ଆସିଲା । ସେ ଶୁଣିଲେ ସୌରଦେବ ଉତ୍ତେଜିତ ହୋଇ କହୁଛନ୍ତି..., 'ଭାନୁ ଦେଖ, ଦେଖ, ସେମାନେ ଆସୁଛନ୍ତି'...। ଚକଚକ କରି ବିଜୁଳି ଚମକି ଉଠିଲା । ସେହି ଆଲୋକରେ ସେମାନେ ଦେଖିଲେ ହତା ଭିତରୁ ଦି ଜଣ ଲୋକ ଆସୁଛନ୍ତି । ଆସିଗଲେଣି । ଜଣଙ୍କ ମୁଣ୍ଡରେ ଉଚ୍ଚା ହୋଇ ଗୋଟିଏ ପେଟିକା ।

ଏକା ସମୟରେ ତିନି ଜଣଙ୍କର ତିନି ଯୋଡା ହାତ ମୁଣ୍ଡ ଉପରକୁ ଉଠିଗଲା। ଏକା ସମୟରେ ତିନିଜଣଯାକ ଉଚ୍ଚାରଣ କଲେ... 'ଦୁର୍ଗା...ଦୁର୍ଗା' ।

ସେମାନେ ପାଖକୁ ଆସିଗଲେ । ଦରଜା ଦେଇ ବସୁଦେବ ଓ ସୁରଥ ବାହାରକୁ ବାହାରି ଆସିଲେ । ଭାନୁପ୍ରକାଶ ପଚାରିଲେ, 'ବସୁଦେବ ସବୁ ଠିକ୍ ତ ?' 'ହଁ', ବସୁଦେବ କହିଲେ, 'ଦେବକୀ ବହୁତ ବ୍ୟସ୍ତ ହେଉଥିଲେ । ସେ ଠିକ୍ ଅଛି । ଚାଲ ।'

ଭାନୁପ୍ରକାଶ ସୁରଥକୁ ଚାହିଁଲେ, କହିଲେ, 'ସୁରଥ, ତୁମେ ଦରଜା ବନ୍ଦ କରି ଭିତର ପାଖରେ ରୁହ । ଯଦି ପାରିବ ଦେବକୀଙ୍କ ଉପରେ ନଜର ରଖ । କିନ୍ତୁ ପାଖରେ ରୁହ । ଆମେ, ମୁଁ ଭାବୁଛି, ଗୋଟାଏ ଘଟିକା ଭିତରେ ଫେରି ଆସିବୁ । ଆମେ ଆସିଲା ପରେ ମୁଁ ଦରଜାରେ ତିନିଥର ଆଘାତ କରି ସଂକେତ ଦେବି ।' ସେ ବସୁଦେବଙ୍କ ଆଡକୁ ବୁଲିପଡି କହିଲେ, 'ବସୁଦେବ ଆସ, ସାବଧାନ ।'

ସେମାନେ ଆଗ ପଛ ହୋଇ ଘାଟ ଆଡକୁ ଚାଲିଲେ । ଆଗେ ଆଗେ ଭାନୁପ୍ରକାଶ । ତାଙ୍କ ପଛରେ ବସୁଦେବ । ମୁଣ୍ଡରେ ପେଟିକା । ପେଟିକା ଭିତରେ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ । ତାଙ୍କ ପଛରେ ସୌରଦେବ, ହାତରେ ଆଲୁଅ । ସଭାପଛରେ ଅରିନ୍ଦମ, ହାତରେ ବାଡି । ଭାନୁପ୍ରକାଶ ପଚାରିଲେ, 'ବସୁଦେବ ଛୁଆକୁ ଭଲ କରି ଘୋଡ଼ାଘୋଡ଼ି କରି ଦେଇଛ ତ ?'

'ହଁ', ବସୁଦେବ କହିଲେ ।

'ଛୁଆ କନ୍ଦାକନ୍ଦି କଲା ନାହିଁ ତ ?'

'ନାଁ' ।

'ଉତ୍ତମ', ଭାନୁପ୍ରକାଶ କହିଲେ, 'ସାବଧାନରେ ଆସ ।'

ବର୍ଷା ଟପ ଟପ ପଡୁଥାଏ, ପବନ ବହୁଥାଏ । ଚାରିପାଖରେ, ନଈ ଉପରେ, ସେମାନେ ଛାଡି ଆସିଥିବା ବନ୍ଦୀଶାଳା, ପାଖ ଯମୁନା ଦେବୀଙ୍କ ମନ୍ଦିର, ସବୁଆଡ଼େ


Digitized by srujanika@gmail.com

ନିରନ୍ଧ୍ର ଅଂଧକାର । ସାବଧାନରେ ବାଟ ଦେଖି, ସୌରଦେବଙ୍କ ଅଳ୍ପ ଆଲୁଅରେ ପାଦ ଜଗି ଜଗି ସେମାନେ ନିର୍ବିଘ୍ନରେ ଘାଟରେ ପହଞ୍ଚିଗଲେ । ସେହି ଥଣ୍ଡା ପବନରେ ବି ଭାନୁପ୍ରକାଶଙ୍କ ଦେହରୁ ଝାଳ ବହିଗଲା । ଭଗବାନଙ୍କର ଅସୀମ ଦୟା । ରାସ୍ତା ଭଲ ନୁହେଁ, ବନ୍ଦୀଶାଳାରୁ ଘାଟକୁ ଆବଡ଼ାଖାବଡ଼ା ବାଟ । ଲଗାଣ ବର୍ଷାରେ ଚାରିଆଡ଼େ ଅନାବନା ଗଛ ଭର୍ତ୍ତି ହୋଇଗଲାଣି । ରାସ୍ତାରେ କାଦୁଅ, ରାସ୍ତା ଖସଡ଼ା, ତା ଉପରେ ଅଂଧାର, ଯାହା ଆଲୁଅ ଅଛି ସେ ନା'କୁ ଆଲୁଅ । ପ୍ରତ୍ୟେକ ମୁହୂର୍ତ୍ତରେ ଭାନୁପ୍ରକାଶଙ୍କର ଭୟ ହେଉଥିଲା ବସୁଦେବ ଝୁଣ୍ଟି ପଡ଼ିବେକି ? ବସୁଦେବ ଝୁଣ୍ଟି ପଡ଼ିଲେ, ପଡ଼ିଗଲେ, ବା ତାଙ୍କର କିଛି କ୍ଷତି ହେଲେ ସେଥିପାଇଁ ଭାନୁପ୍ରକାଶ ଚିନ୍ତା କରୁ ନ ଥିଲେ । ସେ ଭାବୁଥିଲେ ସଦ୍ୟ ଜନ୍ମ ହୋଇଥିବା ସେହି ମହା ମୂଲ୍ୟବାନ ଛୁଆ କଥା, ଯାହାକୁ ବସୁଦେବ ପେଟିକା ଭିତରେ ମୁଣ୍ଡେଇ କରି ଧରିଛନ୍ତି । ତାଙ୍କ ସମସ୍ତଙ୍କର କ୍ଷତି ହେଲେ କିଛି ଯାଏ ଆସେ ନା, କିନ୍ତୁ ତା'ର ଯେମିତି କିଛି କ୍ଷତି ନ ହୁଏ । ତାହାହିଁ ଚିନ୍ତା । ବିଶେଷ କରି ଏ ପାଖ ରାସ୍ତା ପାଇଁ ତାଙ୍କର ଭୟ ଥିଲା । ଏ ପାଖ ବାଟ ପଡିଗଲାଣି, ଯିବା ଆସିବା ନାହିଁ, ଛୋଟ ବଡ଼ ଅନାବନା ଗଛ, କାଦୁଅ ବାଲି ପଥର, ତା ଉପରେ ଛୋଟ ଛୋଟ ବିଷାକ୍ତ ଜନ୍ତୁଜୁନ୍ତା, ସାପ, ବିଛା, ଭର୍ତ୍ତି ହେଇଛନ୍ତି । ସେ ପାଖ ରାସ୍ତା ପାଇଁ ଭୟ ନାହିଁ । ରାସ୍ତା ସଫା କରି ଦିଆଯାଇଛି, ଅଂଧାରରେ ବିନା ଆଲୁଅରେ ବି ଜଣେ ଯାଇ ପାରିବ । ତା'ଛଡ଼ା, ଏପରି ଅବସ୍ଥା ବା ଏପରି ଜରୁରୀ କାମ ପାଇଁ ବସୁଦେବ ଅଭ୍ୟସ୍ତ ନୁହନ୍ତି । ରାଜ ପରିବାର ପରି ତାଙ୍କ ପରିବାର, ସେ ଆୟାସରେ ବଢ଼ିଛନ୍ତି । ତା' ଉପରେ ଗତ ଆଠ ଦଶ ବର୍ଷ ହେଲା ବନ୍ଦୀଶାଳାରେ ରହି ରହି, ନିଜ ଆଖି ଆଗରେ ନିଜ ଛୁଆଗୁଡ଼ାଙ୍କୁ ମାରି ପକା ହେଉଛି ଦେଖି ଦେଖି, ଜୀବନ ପ୍ରତି ତାଙ୍କର ଆଗ୍ରହ କମିଗଲାଣି । ଏ ଖାଲି ମାନସିକ ନୁହେଁ, ଶାରୀରିକ ବି, ସେ ପ୍ରାୟ ଶାରୀରିକ ଅକ୍ଷମ ହୋଇଗଲେଣି । ତେଣୁ ଯେତେବେଳେ ପ୍ରଥମେ ତାଙ୍କର ଜନ୍ମ ହେବା ଛୁଆ ପାଇଁ ଏହିପରି ଗୋଟାଏ ବନ୍ଦୋବସ୍ତ କରାଯାଉଛି ଏକଥା କୁହାଗଲା, ସେ କୌଣସି ଆଗ୍ରହ ଦେଖେଇଲେ ନାହିଁ । ଖାଲି କହିଲେ, ଦେଖ ସବୁ ଛୁଅ ତ ଗଲେଣି, ଆଉ ପୁଣି ଛୁଆ ହବ କି ନାହିଁ ମୁଁ ଜାଣେନା, କେବେ ହବ ତା ବି ମୁଁ ଜାଣେନା, ଆଉ ସେ ଛୁଆ କଂସ ହାତରୁ ବଂଚିବ କି ନାହିଁ କିଏ କହିବ ? ଆଉ ମତେ କାହିଁକି ସେ ଜଂଜାଳରେ ପୂରଉଛ । ଆମେ ତ ଦରମଲା ହେଇ ପଡିଛୁ, ବରଂ ମରିଯିବା ଭଲ । ଯେତେ କହିଲେ ବି ସେ ଆଗ୍ରହ ଦେଖେଇଲେ ନାହିଁ । କେବଳ ଗୋଟିଏ କଥା, ନା । ଆମକୁ ଏ ସବୁ ଭିତରେ ପୂରା ନା, ତୁମେ

ଯାହା କରୁଛ କର । କଂସ ଆଠଟା ପିଲା କଥା କହିଥିଲା । ସାତଟା ପିଲା ତ ଗଲେଣି । ଆଉ ଗୋଟାଏ ଯିବ, ଯାଉ । ତା ପରେ ଯଦି ଭଗବାନଙ୍କ ଦୟାରୁ ଆମକୁ ଛାଡ଼ିଦିଏ ଆମେ ବଂଚିଯିବୁ । ତା ନ ହେଲେ ଆମେ ଏଇଠି ମରିବୁ, ଏଇ ବନ୍ଦୀ ଶାଳାରେ । ସେ ଭଲ, କଂସ ସାଙ୍ଗରେ ଆମେ ଲଢ଼ି ପାରିବୁନି । ବସୁଦେବଙ୍କୁ ଯେତେ ଯାହା କୁହାଗଲା ସେ କାହାରି କଥା ଶୁଣିଲେନି । ବିଜୁଳି ପରି ସେଇକଥା ସବୁ ଭାନୁପ୍ରକାଶଙ୍କ ମୁଣ୍ଡରେ ଖେଳି ଯାଉଥାଏ । ଅରିନ୍ଦମର ବାପା, ଯାହାଙ୍କୁ ବସୁଦେବ ସବୁଦିନେ ସମ୍ମାନ କରନ୍ତି, ସେ ଖବର ପଠେଇଲେ । ତା ବି ହେଲାନି । ଶେଷକୁ ଗୁରୁଦେବ ନିଜେ ଆସିଲେ । କଂସ ନ ଥିଲା । ରାଜ୍ୟ ଅଭିଯାନରେ ବାହାରକୁ ଯାଇଥିଲା । ପ୍ରଦ୍ୟୋତର ଅନୁମତି ନେଇ ବସୁଦେବଙ୍କୁ ଭେଟିଲେ । ତାଙ୍କରି ବୁଝାବୁଝିରେ ବସୁଦେବ ରାଜି ହେଲେ, ଏସବୁ ବନ୍ଦୋବସ୍ତ କରାଗଲା । ତେବେ ତା'ପରେ ବସୁଦେବ ଆଉ ଏପାଖ ସେପାଖ ହୋଇନାହାନ୍ତି । ଯାହା ଯେତେବେଳେ କୁହାଯାଇଛି କରିଛନ୍ତି । ଏ ଏକମାତ୍ର ଗୁରୁଦେବଙ୍କ ଯୋଗୁଁ ସମ୍ଭବ ହେଲା । ଭାନୁପ୍ରକାଶ ଗୁରୁଦେବ ବ୍ୟାସଙ୍କୁ ସ୍ମରଣ କରି ଦି ହାତ ଯୋଡ଼ି ମୁଣ୍ଡରେ ଲଗେଇଲେ ।

ସେମାନେ ଘାଟରେ ପହଞ୍ଚି ଯାଇଥିଲେ । ସୁର ବୀର ବି ନୌକା ଆଣି ଘାଟରେ ଲଗେଇ ଦେଇଥିଲେ । ଭାନୁପ୍ରକାଶ ବସୁଦେବଙ୍କୁ କହିଲେ, 'ବସୁଦେବ, ସାବଧାନରେ ଓହ୍ଲା, ପାହାଚ ଭଙ୍ଗା, ଘାଟ ବି ଖସଡ଼ା, ଧରିବି କି ?'

'ନାଁ, ଥାଉ', ବସୁଦେବ କହିଲେ, 'ମୁଁ ସାବଧାନରେ ଓହ୍ଲଉଛି । ତୁମେ ଖାଲି ଆଲୁଅଟା ଦେଖା ।' ସେ ଟିକିଏ ରହିଗଲେ, କହିଲେ, 'ଆଚ୍ଛା, ମୋତେ ଧରିବା ଦରକାର ନାହିଁ । ବରଂ ମୋ ମୁଣ୍ଡ ଉପରେ ପେଟିକା ଦେହରେ ହାତ ପକେଇଥାଅ ।'

ବସୁଦେବ ଗୋଡ଼ ଚିପି ଚିପି ଘାଟ ତଳକୁ ଓହ୍ଲେଇଲେ । ଭାନୁପ୍ରକାଶ ବି ସୌରଦେବ ଓ ଅରିନ୍ଦମଙ୍କୁ ଫେରିଆସିବା ପର୍ଯ୍ୟନ୍ତ ଘାଟରେ ଅପେକ୍ଷା କରିବାକୁ କହି, ବସୁଦେବଙ୍କ ପାଖେ ପାଖେ, ସେ ମୁଣ୍ଡେଇ ଥିବା ପେଟିକା ଟାଣ କରି ଧରି, ସାବଧାନରେ, ଆସ୍ତେ ଆସ୍ତେ, ତଳକୁ ଓହ୍ଲେଇଲେ ।

ଉଭୟ ଭାନୁପ୍ରକାଶ ଓ ବସୁଦେବ ନୌକାର ଚାଳ ତଳେ ଯାଇ ପାଖାପାଖି ବସିଲେ । ବସୁଦେବ ମୁଣ୍ଡ ଉପରୁ ପେଟିକାଟି କାଢ଼ି ନିଜ କୋଳ ଉପରେ ରଖିଲେ । ନୌକା ଛାଡ଼ିଦେଲା ।

ବସୁଦେବଙ୍କ ଅନୁରୋଧରେ ଭାନୁପ୍ରକାଶ ଯେତେବେଳେ ସେ ମୁଣ୍ଡେଇ ଥିବା

ପେଟିକାକୁ ଧଇଲେ, ତାଙ୍କର ମନେ ହେଲା ତାଙ୍କର ସାରା ଦେହରେ ଯେପରି ବିଦ୍ୟୁତ ଖେଳିଗଲା । ତାଙ୍କର ଦେହ କଂପି ଉଠିଲା । ସେ ଅନୁଭବ କଲେ ତାଙ୍କର ଚାରିପାଖରେ ଅପୂର୍ବ ସୁଗନ୍ଧି । ମୁହୂର୍ତ୍ତକରେ ତାଙ୍କର ମନ ପ୍ରାଣ ସବୁ ବଂଧନରୁ ମୁକ୍ତ ହୋଇ ଯେପରି କେଉଁ ଅନ୍ତରୀକ୍ଷର ମହାନ୍ ଜ୍ୟୋତିରେ ଲୀନ ହୋଇଗଲା । ଜ୍ୟୋତି, ଜ୍ୟୋତି, ଜ୍ୟୋତିର ଜ୍ୟୋତି, ଜ୍ୟୋତିର ଚକ୍ର, ଜ୍ୟୋତିର ବଳୟ । ଭାନୁପ୍ରକାଶଙ୍କର ଦେହ ଅବଶ ହୋଇଗଲା, ମନ ଆଚ୍ଛନ୍ନ ହୋଇଗଲା । ତାଙ୍କର ମନେ ହେଲା ସେ ଅନନ୍ତ କାଳ ଧରି ଭାସି ବୁଲୁଛନ୍ତି । କିଏ ? କ୍ଷୀରାବ୍ଧି ସାଗରରେ କାହାର ଏ ଅନନ୍ତ ଶୟନ - ଅଚିନ୍ତ୍ୟ, ଅବ୍ୟକ୍ତ, ଅରୂପ, ଅପୂର୍ବ ! କିଏ ଏ ବିରାଟ ପୁରୁଷ - ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ, ଅନନ୍ତ ଚରଣ, ବ୍ରହ୍ମାଣ୍ଡରେ ସର୍ବୋତଭାବେ ପରିବ୍ୟାପ୍ତ, ବିକଶିତ ଶ୍ୱେତପଦ୍ମ ପରି ଯାହାର ନୟନ, ମେଘପରି ଯାହାର ବର୍ଣ୍ଣ, ଯାହାର ବସ୍ତ୍ର ବିଦ୍ୟୁତ୍ ପରି ଉଜ୍ଜ୍ୱଳ... ସମ୍ମୁଖରେ ସହସ୍ର ସୂର୍ଯ୍ୟର ଜ୍ୟୋତି, ପ୍ରଜ୍ୱଳିତ ଅଗ୍ନିର ଉତ୍ତାପ - ଭୂମି ନାହିଁ, ଜଳ ନାହିଁ, ବାୟୁ ନାହିଁ, ଆକାଶ ବି ନାହିଁ - ଅଦ୍ୱିତୀୟ, ଭାଷାଭାବ ଶୂନ୍ୟ... ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ, ସର୍ବଦେବ ସ୍ୱରୂପ, ବିକାରହୀନ, ସ୍ୱୟଂପ୍ରକାଶ...ଭାନୁପ୍ରକାଶଙ୍କର ଆଖି ବୁଜି ହୋଇ ଆସିଲା... କିଏ ଏ ? ଅନେକ ମୁଖ, ଅନେକ ନେତ୍ର, ଦିବ୍ୟ ଭୂଷଣରେ ବିଭୂଷିତ, ଦିବ୍ୟ ମାଳା ପରିହିତ, ଦିବ୍ୟ ବସ୍ତ୍ର ପରିହିତ, ଦିବ୍ୟ ଗନ୍ଧ ଅନୁଲେପିତ.. ସେ ମନେ ମନେ ଉଚ୍ଚାରଣ କଲେ - ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ...

ଭାନୁପ୍ରକାଶ ଶୁଣିପାରିଲେ ବସୁଦେବ କହୁଛନ୍ତି - 'ଭାନୁପ୍ରକାଶ, ଉଠ, କୂଳ ହେଲା ।' ଭାନୁପ୍ରକାଶଙ୍କର ଆଚ୍ଛନ୍ନ ଭାବ କଟିଗଲା । ହଁ, ନୌକା ଯମୁନା ପାରି ହୋଇ ଗଲାଣି । ସେମାନେ ଗୋପ କୂଳରେ ଲାଗିଗଲେଣି । ଆଗ ପରି ଅଂଧାର । ବର୍ଷା ଟପ ଟପ ପଡୁଛି । କୂଳ ଉପରେ ସତ୍ୟକାମ ଛିଡ଼ା ହୋଇଛନ୍ତି । ସେ ଧରିଥିବା ଆଲୋକରୁ ଗୋଟାଏ କ୍ଷୀଣ ରେଖା କୂଳ ଟପି ନୌକା ଆଡକୁ ଲମ୍ବି ଆସିଛି । ବସୁଦେବ ଉଠି ଛିଡ଼ା ହେଲେ, ପେଟିକାକୁ ଟେକି ନେଇ ମୁଣ୍ଡ ଉପରେ ଧଇଲେ, ଭାନୁପ୍ରକାଶ ବି ତାଙ୍କ ପାଖେ ପାଖେ ଉଠି ଛିଡ଼ା ହେଲେ । ପେଟିକାକୁ ଟାଣ କରି ଧଇଲେ । ଉଭୟ ସାବଧାନରେ ନଈର ଢାଲୁ ଟପି କୂଳ ଉପରକୁ ଉଠିଗଲେ ।

ସତ୍ୟକାମ ଆଗେଇ ଆସିଲେ । ହାତ ଯୋଡ଼ି ବସୁଦେବ ଓ ବସୁଦେବଙ୍କ ସହିତ ସଦ୍ୟଜନ୍ମିତ ଶିଶୁ ଉଭୟଙ୍କୁ ନମସ୍କାର କଲେ । ବସୁଦେବ ମୃଦୁ ହସିଲେ, କହିଲେ, 'ସତ୍ୟକାମ, କାହାକୁ ନମସ୍କାର କଲ ?'

‘ଉଭୟଙ୍କୁ ।’ ସତ୍ୟକାମ କହିଲେ, ‘ତୁମକୁ ଓ ତୁମ ସନ୍ତାନଙ୍କୁ । ଆଜି ଜୀବନ ପବିତ୍ର ହୋଇଗଲା ।’

ଭାନୁପ୍ରକାଶ କହିଲେ, ‘ସତ୍ୟକାମ, ତୁମେ ଆ ଭିତରେ ନନ୍ଦଙ୍କ ପାଖରୁ କିଛି ଖବର ପାଇଛ କି ?’

‘ନାଁ’, ସତ୍ୟକାମ କହିଲେ, ‘ମୁଁ ଭାବୁଛି ସବୁ ଠିକ୍ ଥିବ ।’

‘ଠିକ୍ ଅଛି ।’ ଭାନୁପ୍ରକାଶ କହିଲେ, ‘ଆମେ ସାଙ୍ଗେ ସାଙ୍ଗେ ଯିବା । ସତ୍ୟକାମ, ତୁମେ ଆଗେ ଆଗେ ଆଲୁଅ ଦେଖେଇ ଚାଲ, ମଝିରେ ବସୁଦେବ, ମୁଁ ପଛରେ ଅଛି ।’ ସେ ବସୁଦେବଙ୍କୁ ଚାହିଁଲେ, ‘ବସୁଦେବ, ସେ ପାଖ ମଥୁରା ଘାଟ ରାସ୍ତା ଠଉଁ ଏ ରାସ୍ତା ଭଲ । ଏ ରାସ୍ତା ଦି ଦିନ ତଳେ ସଫା କରାହୋଇଛି । ଅଂଧାରରେ ବି ତୁମର କିଛି ଅସୁବିଧା ହବନି ।’ ସେ ଦୁଇ ନାଉରିଙ୍କ ଆଡକୁ ବୁଲି ପଡିଲେ, ‘କହିଲେ, ‘ସୁର, ବୀର ଏଇଠି ଅପେକ୍ଷା କର । ଆମେ ସାଙ୍ଗେ ସାଙ୍ଗେ ଫେରିବୁ ।’

ଭାନୁପ୍ରକାଶ ଚାରିପାଖକୁ ଚାହିଁଲେ । ଭାବିଲେ ସେମାନେ କିଛି ଆଗରୁ ନନ୍ଦଙ୍କ ଘରୁ ଘାଟକୁ ଆସିଲାବେଳେ ତ କିଛି ଲାଗୁ ନ ଥିଲା । ବର୍ତ୍ତମାନ କେମିତି ଅନ୍ୟପ୍ରକାର ଲାଗୁଛି । ମୁଣ୍ଡଟା ସେତେବେଳେ ଭାରୀ ଭାରୀ ଲାଗୁଥିଲା, ବର୍ତ୍ତମାନ ମୁଣ୍ଡଟା ହାଲ୍‌କା । ସବୁ ଭଲ ଲାଗୁଛି । ଅଂଧାରଟା ବି ଯେମିତି ଆଗ ଅଂଧାର ପରି ନାହିଁ । ସବୁଆଡ଼ ଉଜ୍ୱଳ ହୋଇଗଲାଣି । ଚାରିପାଖରେ ଯେମିତି ପିଲାମାନେ ନାଚିକୁଦି ଡେଇଁ ବୁଲୁଛନ୍ତି, ହୋ ହୋ ହଉଛନ୍ତି । ସେ ବି ସେମିତି ପିଲାମାନଙ୍କ ସାଙ୍ଗରେ ପାଟି କରୁଛନ୍ତି, ଡେଉଁଛନ୍ତି । ଗୋଟାଏ ପ୍ରଚଣ୍ଡ ଖୁସିରେ ଯେମିତି ତାଙ୍କ ମନଟା ପୂରିଗଲାଣି । ସେ ମୁହୂର୍ତ୍ତେ ଚୂପ ହୋଇ ଛିଡ଼ା ହେଲେ । ବୁଝିପାରିଲେ ନାହିଁ ଏତେ ଖୁସି ଖୁସି କାହିଁକି ଲାଗୁଛି । ସେ ବସୁଦେବଙ୍କୁ ଚାହିଁଲେ । ସେ ମୁଣ୍ଡେଇ ଥିବା ପେଟିକାକୁ ଚାହିଁଲେ । ତାଙ୍କର ମନେହେଲା ପେଟିକା ଭିତରଟା ଗୋଟାଏ ଅପୂର୍ବ ଜ୍ୟୋତିରେ ଉଜ୍ୱଳ ହୋଇ ଉଠିଛି । ସେ ମନେ ମନେ ଭୟ ପାଇଗଲେ । କହିଲେ, ‘ସତ୍ୟକାମ ଚାଲ, ବସୁଦେବ ଆସ ।’

ତିନିହେଁ ଆଗପଛ ହୋଇ ସେଇ ଜଙ୍ଗଲ ବାଟ ଦେଇ ନନ୍ଦଙ୍କ ଘର ଆଡ଼କୁ ଆଗେଇ ଗଲେ । ସମସ୍ତେ ଚୁପ୍‌ଚାପ । ବର୍ଷା କମିଯାଇଛି । କିନ୍ତୁ ପବନ ଜୋରରେ ଜୋରରେ ଦେଉଛି । ଚାରିପାଖରେ ଆଗପରି ନିରନ୍ଧ୍ର ଅଂଧକାର । କେବଳ ସତ୍ୟକାମ ପଚାରିଲେ, ‘ଗୋପାଙ୍କୁ କଅଣ ଏବେ ଖବର ଦିଆଯିବ ?’ ‘ନାଁ, ଆମର ସବୁ

କାମଦାମ ସରିବା ପରେ, ଆମେ ବସୁଦେବଙ୍କୁ ବନ୍ଦୀଶାଳାରେ ଛାଡି ଫେରି ଆସିବା ପରେ ଖବର ଦେବା ।' କହିଲେ ଭାନୁପ୍ରକାଶ ।

'ତୁମେ ଗଲାପରେ', ସତ୍ୟକାମ କହିଲେ, 'ନଈ ସେ ପାଖ କୂଳରୁ ଦପଦପ ହୋଇ ଗୋଟାଏ ଆଲୁଅ ସଂକେତ ଆସୁଥିଲା ।'

'ହଁ, ସେ ଆମ ସଂକେତ' କହିଲେ ଭାନୁପ୍ରକାଶ, 'ବନ୍ଦୀଶାଳାର ଛାତ ଉପରୁ ସୁରଥ ସେ ସଂକେତ ରାଜନଅର ଆଡ଼କୁ ଗୋପାଙ୍କ ପାଖକୁ ପଠଉଥିଲା । ଦେବକୀଙ୍କର ପିଲାହେଲା, ସବୁ ଠିକ୍ ଅଛି – ସେଇ ସଂକେତ । ବସୁଦେବ ବନ୍ଦୀଶାଳାକୁ ଫେରିଗଲା ପରେ, ଆଉ ଗୋଟାଏ ସଂକେତ ଯିବ, ଯେ ଯମୁନା ଯୋଜନା ଶେଷହେଲା ।'

'କଂସ କଅଣ ସାଙ୍ଗେ ସାଙ୍ଗେ ଖବର ପାଇବ ?' ବସୁଦେବ ହଠାତ୍ ପଚାରିଲେ । 'ନାଁ', ଭାନୁପ୍ରକାଶ କହିଲେ, 'କଂସ ପାହାନ୍ତାକୁ ଖବର ପାଇବ । ସେଇ ବନ୍ଦୋବସ୍ତ ହୋଇଛି ।'

'ଆମ ଆଲୁଅ ସଂକେତ ଅନ୍ୟ କେହି ବି ଦେଖିପାରିବେ ?' ସତ୍ୟକାମ ତାଙ୍କର ଆଗ ପ୍ରଶ୍ନକୁ ଦୋହରେଇଲେ ।

'ହଁ, ପାରିବେ', ଭାନୁପ୍ରକାଶ କହିଲେ, 'କିନ୍ତୁ କଅଣ ବୁଝିବେ ? ବର୍ଷା ଅଂଧାର ରାତି, ଘନଘନ ବିଜୁଳି ମାରୁଛି । ଘଡ଼ଘଡ଼ି ମାରୁଛି । ଭାବିବେ ଏ ନିଶ୍ଚୟ ଭୌତିକ ବ୍ୟାପାର । ଡାହାଣୀ ଆଲୁଅ ବା, ସେମିତି କିଛି । ତେବେ ତୁମେ ଯାହା କହୁଛ ଠିକ୍ । ଏ ଝୁଙ୍କି ତ ନବାକୁ ପଡିବ ।'

'କଂସର ଲୋକ ଯଦି କେହି କିଛି ସନ୍ଦେହ କରନ୍ତି ?' ସତ୍ୟକାମ ପୁଣି ପଚାରିଲେ । 'ହଁ, ମୁଁ ସେ କଥା ଭାବିଛି ।' କହିଲେ ଭାନୁପ୍ରକାଶ, 'କିନ୍ତୁ କଂସର ଲୋକଙ୍କ ଭିତରେ, ମୁଁ ଯାହା ଜାଣେ, ଏତେ ବୁଦ୍ଧିଆ ଲୋକ କେହି ଅଛି ବୋଲି ମନେ ହେଉନି ଯେ ଏ ବର୍ଷା ଅଂଧାର ରାତିରେ ଆଲୁଅ ସଂକେତ ଦେଖିବ, ଆଉ ସନ୍ଦେହ କରି କଅଣ କରିବ । ନାଁ, କଂସ ପାଇଁ ଉପରେ ପଡି ଏ କାମ କରିବାକୁ କେହି ଅଛି ବୋଲି ମୁଁ ଭାବୁନି ।' ସେ ଟିକେ ରହିଗଲେ.... 'ହଁ ଜଣେ ଲୋକ ଏ କାମ କରିପାରେ – ପ୍ରଦ୍ୟୋତ । କିନ୍ତୁ ସେ ଘରକୁ ଚାଲିଗଲାଣି । ଏ ରାତିରେ ଆଉ ଫେରିବନି ।'

'ପ୍ରଦ୍ୟୋତ ସଂଧ୍ୟା ବେଳେ ଆସିଥିଲା'... ବସୁଦେବ ଆସ୍ତେ ଆସ୍ତେ କହିଲେ ।

ଭାନୁପ୍ରକାଶ ଚମକି ଉଠିଲେ, 'ପ୍ରଦ୍ୟୋତ ଆସିଥିଲା ? ସଂଧ୍ୟାରେ ?' 'ହଁ, ସଂଧ୍ୟାର ଟିକେ ଆଗରୁ', ବସୁଦେବ କହିଲେ ।

'କ'ଣ କହିଲା ?' ଭାନୁପ୍ରକାଶ ପଚାରିଲେ ।

'ସେ ଆମେ ରହୁଥିବା ଘର ଭିତରକୁ ଆସିଲା । ମତେ ଓ ଦେବକୀ ଆମ ଉଭୟଙ୍କୁ ଚାହିଁଲା । ମତେ ପଚାରିଲା - ପିଲା କେତେବେଳେ ହେବ ? ମୁଁ କହିଲି - ସେ କଥା ମୁଁ କେମିତି କହିବି । ସେ କ'ଣ କା'ର ହାତର କଥା । ଆଉ କିଛି ପଚାରିଲା ନାହିଁ। ଘର ଚାରିପାଖକୁ ଆଉ ଥରେ ଆଖି ପକେଇ ଦେଖିନେଲା । ତା'ପର ଘର ଭିତରୁ ବାହାରି ଯାଇଁ, ଘର ବାହାରେ ଥିବା ରକ୍ଷୀଙ୍କ ସାଙ୍ଗରେ କଅଣ କଥାବାର୍ତ୍ତା କଲା, ଓ ଦି ଜଣ ରକ୍ଷୀଙ୍କୁ ସାଙ୍ଗରେ ନେଇ ଏପାଖ ସେପାଖ କ'ଣ ବୁଲି ଦେଖିଲା । ତା'ପର ଚାଲିଗଲା ।'

'ରକ୍ଷୀଙ୍କ ସାଙ୍ଗରେ କଅଣ କଥାବାର୍ତ୍ତା ହେଲା ଶୁଣି ନା ?'

'ନାଁ, ଟିକିଏ ଦୂରରେ କ'ଣ କଥାବାର୍ତ୍ତା ହେଉଥାଏ । ବୁଝି ହେଉ ନ ଥାଏ । ତେବେ ମୋର ମନେ ହେଉଛି ଆଉ ଅଧିକା ରକ୍ଷୀ ଆସିବା କଥା ବୋଧେ ସେ କଥାବାର୍ତ୍ତା ହେଉଥାଏ ।'

'ଆସିଲେ କି ?' ଭାନୁପ୍ରକାଶ ପଚାରିଲେ ।

'ନାଁ, ଆମେ ଆସିବା ପର୍ଯ୍ୟନ୍ତ କେହି ଆସି ନ ଥିଲେ', ବସୁଦେବ କହିଲେ ।

'ନାଁ, କେହି ଆସିବେନି', କହିଲେ ଭାନୁପ୍ରକାଶ, 'ଅନ୍ତତଃ ଆଜି ରାତିରେ ଆଉ କେହି ଆସିବେନି । ସେ ସାଙ୍ଗେ ସାଙ୍ଗେ ଫେରିଯାଇଥିବ ?'

'ହଁ, ଫେରିଗଲା ।' କହିଲେ ବସୁଦେବ, 'କିନ୍ତୁ ସେ ଯିବା ଆଗରୁ ଆମ ଘରକୁ ଆଉ ଥରେ ଆସିଲା ଓ ଗୋଟାଏ ଅଦ୍ଭୁତ କାମ କଲା ।'

'ଅଦ୍ଭୁତ ! କ'ଣ ?' ପଚାରିଲେ ଭାନୁପ୍ରକାଶ ।

'ସେ ନିଜେ ଦେହରେ ପକେଇଥିବା ଚଦରଟା ମୋତେ ଦେଲା । କହିଲା - ରଖିଥା, ଦରକାରରେ ଆସି ପାରେ ।' କହିଲେ ବସୁଦେବ ।

'ତା ନିଜ ଚଦର ?' ଭାନୁପ୍ରକାଶ ଆଶ୍ଚର୍ଯ୍ୟ ହେଲେ ।

'ହଁ ଚଦର ।' ବସୁଦେବ କହିଲେ, 'ଭଲ ହେଲା । ଥଣ୍ଡା ଲାଗୁଥିଲା । ମୁଁ ଦେବକୀଙ୍କି ଘୋଡ଼େଇ ଦେଇଛି ।'

ଭାନୁପ୍ରକାଶ ଆଉ କିଛି ପଚାରିଲେ ନାହିଁ, ଦୂରରୁ ନନ୍ଦଙ୍କ ଘରର ଆଲୁଅ ଦିଶିଲା । ନନ୍ଦ ଏକାକୀ ଘର ବାରଣ୍ଡାରେ ଛିଡ଼ା ହୋଇଥାନ୍ତି । ଏମାନଙ୍କୁ ଦେଖି ସେ


Digitized by srujanika@gmail.com

ପିଣ୍ଡା ତଳକୁ ଓହ୍ଲେଇ ଆସି ବସୁଦେବଙ୍କୁ ନମସ୍କାର କଲେ । ଭାନୁପ୍ରକାଶ ପଚାରିଲେ, 'ନନ୍ଦ ଠିକ୍ ତ ?'

'ହଁ', ନନ୍ଦ କହିଲେ, 'ଯଶୋଦାଙ୍କର ଗୋଟିଏ ଝିଅ ହୋଇଛି..'

'ଝିଅ ?' ବସୁଦେବ ସାମାନ୍ୟ ଚମକି ପଡିଲେ ।

'ହଁ, ଗୁରୁଦେବ କହିଥିଲେ ଝିଅ ହେବ ।' କହିଲେ ଭାନୁପ୍ରକାଶ ।

'କଂସ ଗୋଳମାଳ କରିବ ନାହିଁ ତ ?' ସତ୍ୟକାମ କହିଲେ ।

ଭାନୁପ୍ରକାଶ ସାମାନ୍ୟ ହସିଲେ । କହିଲେ, 'ଗୋଳମାଳ କଲେ ବି ଭଲ ଆଡକୁ କରିବ। ସେ ତ ପୁଅ ପାଇଁ ଅପେକ୍ଷା କରିଛି । ଝିଅକୁ ଛାଡିଦେଇ ପାରେ ।' ବସୁଦେବ ଭାନୁପ୍ରକାଶଙ୍କ ଆଡକୁ ବୁଲି ପଡିଲେ, କହିଲେ, 'ଦୁର୍ଗା...ଦୁର୍ଗା.... ଭାନୁପ୍ରକାଶ ତୁମ ତୁଣ୍ଡ ସୁତୁଣ୍ଡ ହେଉ... ଚଣ୍ଡାଳ ଝିଅଟାକୁ ଛାଡିଦେଉ...' ଭାନୁପ୍ରକାଶ କଅଣ କହିବାକୁ ଭାବି ସାଙ୍ଗେ ସାଙ୍ଗେ କହି ପାରିଲେ ନାହିଁ । ଗଭୀର ଦୁଃଖରେ ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା । ତା'ପରେ ସେ କହିଲେ, 'ବସୁଦେବ, ବ୍ୟସ୍ତ ହୁଅନା । ଯାହା ଘଟିବାର ତା' ଘଟିବ । କଂସର ଆଉ ବେଶିଦିନ ନାହିଁ । ତାର ଶେଷ ଆରମ୍ଭ ହେଲା । ମନ ଦମ୍ଭ କର... ତୁମେ ଆଉ ଡେରି କରନା, କାମ ସାର । ଆମ ହାତରେ ବେଶି ସମୟ ନାହିଁ।' ସେ ନନ୍ଦଙ୍କ ଆଡକୁ ବୁଲି ପଡିଲେ, 'ନନ୍ଦ, ଯଶୋଦା ଶୋଇଛନ୍ତି ?'

'ହଁ', ନନ୍ଦ କହିଲେ ।

'ପାଖରେ ରୋହିଣୀ ଅଛନ୍ତି ତ ?' ଭାନୁପ୍ରକାଶ ପୁଣି ପଚାରିଲେ ।

'ହଁ', ନନ୍ଦ ଉତ୍ତର ଦେଲେ ।

'ତୁମେ ତା ହେଲେ ବସୁଦେବଙ୍କ ପାଖରୁ ଛୁଆକୁ ସାବଧାନରେ ନିଅ, ଆଉ ଯଶୋଦାଙ୍କ ପାଖରୁ ଝିଅକୁ ନେଇ ଆସ ।' ଭାନୁପ୍ରକାଶ କହିଲେ । ବସୁଦେବ ସେ ପର୍ଯ୍ୟନ୍ତ ମୁଣ୍ଡେଇ କରି ଧରିଥିବା ପେଟିକାକୁ ମୁଣ୍ଡ ଉପରୁ ତଳକୁ ନେଇ ଆସିଲେ । ନନ୍ଦ ପେଟିକା ଭିତରୁ ସଦ୍ୟ ଜନ୍ମିତ ଶିଶୁଟିକୁ ଅତ୍ୟନ୍ତ ସାବଧାନରେ ନିଜ ଦି ହାତରେ ଟେକିନେଲେ । ଭାନୁପ୍ରକାଶ କହିଲେ, 'ନନ୍ଦ, ତୁମେ ଛୁଆକୁ ରୋହିଣୀଙ୍କୁ ଦେଇଦେବ । ଦେଖିବ ସେ ଯେମିତି ଠିକ୍ ଜାଗାରେ ଯଶୋଦାଙ୍କ ପାଖରେ ଶୁଏ । ଯଶୋଦା ଉଠିଲା ପରେ ତାଙ୍କ ମନରେ ଯେମିତି ସାମାନ୍ୟ ସନ୍ଦେହ ନ ହୁଏ,... ଯାଅ... ।'

'ନନ୍ଦ ଛୁଆକୁ ନେଇ ଘର ଭିତରକୁ ଚାଲିଗଲେ ।


Digitized by srujanika@gmail.com

ଭାନୁପ୍ରକାଶ ବସୁଦେବଙ୍କୁ ଚାହିଁଲେ । ବସୁଦେବ ହାତରେ ପେଟିକା ଧରି ଚୁପଚାପ ଛିଡ଼ା ହୋଇଛନ୍ତି । ସେହି ସ୍ୱଳ୍ପ ଆଲୋକରେ ବି ଭାନୁପ୍ରକାଶଙ୍କର ମନେ ହେଲା ବସୁଦେବଙ୍କର ଆଖିରୁ ଯେପରି ଧାର ଧାର ହୋଇ ଲୁହ ବହି ଯାଉଛି । ଭାନୁପ୍ରକାଶ ମୃଦୁ ସ୍ୱରରେ ଡାକିଲେ... 'ବସୁଦେବ ।' ବସୁଦେବ ପ୍ରଥମେ କିଛି ଉତ୍ତର ଦେଲେ ନାହିଁ । ପରେ ସେହି ମୃଦୁ ସ୍ୱରରେ କହିଲେ, 'ମୁଁ ଠିକ୍ ଅଛି, ଭାନୁ ।'

ଭାନୁପ୍ରକାଶ ନିଜ ମନ ଭିତରେ ଗୋଟାଏ କଥା ବାରମ୍ବାର ଆବୃତ୍ତି କରୁଥାନ୍ତି ... 'ଭାଗ୍ୟବାନ'... ଭାଗ୍ୟବାନ...'

ନନ୍ଦ ଘର ଭିତରୁ ବାହାରି ଆସିଲେ । ଦି ହାତରେ ଗୋଟିଏ ସଫା ଲୁଗାରେ ଘୋଡ଼ାଘୋଡ଼ି ହୋଇଥିବା ଶିଶୁକନ୍ୟା । ଉଭୟ ଭାନୁପ୍ରକାଶ ଓ ସତ୍ୟକାମ ବସୁଦେବଙ୍କ ପାଖରେ ଯାଇଁ ଛିଡ଼ା ହେଲେ । ନନ୍ଦ ଶିଶୁଟିକୁ ଆଣି ବସୁଦେବଙ୍କର ପେଟିକା ଭିତରେ ସାବଧାନରେ ଶୋଇଦେଲେ । ବସୁଦେବ ପେଟିକାକୁ ପୁଣି ମୁଣ୍ଡ ଉପରକୁ ଉଠେଇ ନେଲେ ଓ ପିଣ୍ଡା ତଳକୁ ଓହ୍ଲେଇ ଆସିଲେ । ତାଙ୍କ ପଛେ ପଛେ ଭାନୁପ୍ରକାଶ ଓ ସତ୍ୟକାମ ଓ ଆଗ ପରି ଆଗପଛ ହୋଇ, ନୀରବରେ ସେମାନେ ଘାଟ ଆଡ଼କୁ ଯିବାକୁ ଆରମ୍ଭ କଲେ । ପବନ ଦେଉଥାଏ, ବର୍ଷା ଟପଟପ ପଡୁଥାଏ । ଚାରିଆଡ଼ ନୀରବ, ନିସ୍ତବ୍ଧ । ହଠାତ୍ ପାଖ ଜଙ୍ଗଲ ଭିତରୁ ଗୋଟାଏ ରାତି ଜଗା ପକ୍ଷୀ କଳକଳ କରି ଡାକି ଉଠିଲା । ସେମାନେ ଘାଟରେ ପହଞ୍ଚିଲା ବେଳକୁ ସୁର ଓ ବୀର ପ୍ରସ୍ତୁତ ହୋଇ ରହିଥିଲେ । ସତ୍ୟକାମ ଘାଟରେ ରହିଲେ । ବସୁଦେବ ଓ ଭାନୁପ୍ରକାଶ ନୌକାରେ ଉଠିଗଲେ । ନୌକା ଛାଡିଦେଲା ।

ଭାନୁପ୍ରକାଶ ଯଶୋଦାଙ୍କର ଶିଶୁ କନ୍ୟାଟିର କଥା ଭାବୁଥିଲେ । ନନ୍ଦ କନ୍ୟାଟିକୁ ବସୁଦେବଙ୍କୁ ଦେବା ସମୟରେ ତାକୁ ଦେଖି ଭାନୁପ୍ରକାଶ ଚମକି ଯାଇଥିଲେ । ତାଙ୍କର ମନେ ହୋଇଥିଲା ଶିଶୁଟି ସାଧାରଣ ଶିଶୁ ନୁହେଁ । ତା ଦେହ ସୁନା ପରି ଦାଉ ଦାଉ ହୋଇ ଜଳୁଥାଏ, ମୁହଁରେ ହସ, ଯେପରି ସେ ସବୁ ଦେଖୁଛି, ଜାଣୁଛି, ବୁଝୁଛି । ବସୁଦେବ ନୌକାରେ ଚୁପଚାପ ବସିଥାନ୍ତି । ତାଙ୍କ ପାଖରେ ପେଟିକା ଭିତରେ କୋମଳ ଶଯ୍ୟାରେ ସେହି ଅସାଧାରଣ ଶିଶୁଟି । ମୁହଁଟି ଈଷତ୍ ହାସ୍ୟମୟ, ନିର୍ମଳ ପୂର୍ଣ୍ଣଚନ୍ଦ୍ର ପରି, ଉତ୍ତମ ସ୍ୱର୍ଣ୍ଣପ୍ରଭା ପରି, ଜ୍ୟୋତିର୍ମୟ । ଭାନୁପ୍ରକାଶ ଶିଶୁଟି ଉପରୁ ଆଖି ଫେରେଇ ପାରିଲେ ନାହିଁ । ତାଙ୍କ ମନରେ ସେହି ପ୍ରାଚୀନ ଶ୍ଲୋକଟି ବୁଦ୍ବୁଦ ପରି ଉଠି ଆସିଲା – 'ରଜତ ଗିରି ପ୍ରକାଶା ଚନ୍ଦ୍ରମୌଳୀ ପରେଶୀ/ ମଣିମୟ ମୁକୁଟାଢ୍ୟାଂ ସ୍ମିତହାସା ସୁକେଶୀ / କନକ ଖଚିତ ବାସା ରତ୍ନ ଗୈବେୟ

ହାରାଂ / ପରିହିତ ଗଳଦେଶେ ଦୀପ୍ତ ନକ୍ଷତ୍ରମାଳା ।' ତାଙ୍କର ବାହ୍ୟଜ୍ଞାନ ଲୋପ ପାଇଗଲା । ସେ ଦେଖିଲେ ଆଗରେ ଗୁରୁଦେବ । ହାତରେ ବରାଭୟ ମୁଦ୍ରା, ମୁଖରେ ସ୍ମିତ ହସ, ତାଙ୍କ ମନରୁ ମୁହୂର୍ତ୍ତକରେ ସବୁ ସନ୍ଦେହ, ସବୁ ଭୟ ନିଶ୍ଚିହ୍ନ ହୋଇଗଲା । ତାଙ୍କର ମନେ ହେଲା ଗୁରୁଦେବ ଋଗବେଦର ସେହି ପ୍ରସିଦ୍ଧ ସୂକ୍ତ ଉଚ୍ଚାରଣ କରୁଛନ୍ତି । ସେ ଗୁରୁଦେବଙ୍କ ସହିତ ଏକାତ୍ମ ହୋଇ ସେହି ସୂକ୍ତ ଧ୍ୟାନ କରିବାକୁ ଆରମ୍ଭ କଲେ - ମୁଁ ରୁଦ୍ରଗଣ ରୂପରେ ଓ ବାସୁଗଣ ରୂପରେ ବିଚରଣ କରେ; ମୁଁ ଆଦିତ୍ୟ ସମୂହ ରୂପରେ ଏବଂ ସକଳ ଦେବ ରୂପରେ ବିଚରଣ କରେ; ମୁଁ ମିତ୍ର ଓ ବରୁଣ ଏହି ଉଭୟଙ୍କୁ ଧାରଣ କରିଛି; ମୁଁ ଇନ୍ଦ୍ର ଓ ଅଗ୍ନିକୁ ଧାରଣ କରିଛି; ମୁଁ ଅଶ୍ୱିନୀକୁମାର ଦ୍ୱୟଙ୍କୁ ଧାରଣ କରିଛି ।....ମୁଁ ଈଶ୍ୱର, ଧନସମୂହର ପ୍ରଦାନ କାରିଣୀ, ପରମ ବ୍ରହ୍ମ ଜ୍ଞାନବତୀ ଓ ଯଜ୍ଞାର୍ହଗଣମାନଙ୍କ ମଧ୍ୟରେ ଶ୍ରେଷ୍ଠା....

ନୌକା ନିର୍ବିଘ୍ନରେ କୂଳରେ ଲାଗିଲା । ବସୁଦେବ ପାଖରେ ଥିବା ପେଟିକା ଉଠେଇ ନେଲେ ଓ ଓହ୍ଲାଇଯିବା ପାଇଁ ଉଠି ଛିଡ଼ାହେଲେ । ଭାନୁପ୍ରକାଶଙ୍କର ଧ୍ୟାନ ବି ଭାଙ୍ଗିଗଲା । ସେ ଅନୁଭବ କଲେ ଯେପରି ତାଙ୍କ ଚାରିପାଖରେ ଗୋଟାଏ ଅପୂର୍ବ ସୁଗନ୍ଧି ଲାଗି ରହିଛି, ଆଉ ପ୍ରାଣ ପୂରିଗଲା ପରି ଶିଶୁ କନ୍ୟାଟିର ହସହସ ମୁହଁ, ଓ ଦାଉ ଦାଉ ଜଳୁଥିବା ତାର ଦେହର ଜ୍ୟୋତିରେ ସେ ନିଜେ ଯେପରି ଜ୍ୟୋତିଷ୍ମାନ ହୋଇ ଉଠିଛନ୍ତି । ସେ ବସୁଦେବଙ୍କ ପଛେ ପଛେ ନୌକାରୁ କୂଳକୁ ଓହ୍ଲେଇ ଗଲେ । କୂଳରେ ସୌରଦେବ ଓ ଅରିନ୍ଦମ ଅପେକ୍ଷା କରି ଛିଡ଼ା ହୋଇଥିଲେ, ଆଗେଇ ଆସିଲେ ।

ସମସ୍ତେ ବନ୍ଦୀଶାଳା ଘର ଆଡ଼କୁ ଫେରି ଚାଲିଲେ । ଆଗେ ଆଗେ ମୁଣ୍ଡରେ ପେଟିକା ଓ ପେଟିକାରେ ଶିଶୁକନ୍ୟାକୁ ଧରି ବସୁଦେବ। ପଛେ ପଛେ ଅନ୍ୟ ସମସ୍ତେ । ଯିବା ସମୟର ଟାଣ ଟାଣ ଭାବ ଓ ଚାପା ଉତ୍ତେଜନା ଆଉ ନାହିଁ । କାମ ସଂପୂର୍ଣ୍ଣ ନ ସରିଲେ ମଧ୍ୟ, ସରିଗଲା, ଏହି ମନୋଭାବ । ଢ଼ିଲା, ଢ଼ିଲା, ହାଲ୍‌କା ହାଲ୍‌କା । ବର୍ଷା ଛାଡ଼ିଯାଇ ଥାଏ । ପବନ ବି କମିଯାଇ ଥାଏ । ଖାଲି ଆଗ ପରି ଅଂଧାର । କିନ୍ତୁ ଭାନୁପ୍ରକାଶଙ୍କର ମନେହେଲା ଅଂଧାରଟା ବି ସଫା ହୋଇଗଲାଣି । ଚାରିପାଖ ଦେଖିହେଉଛି, ବୁଝିହେଉଛି । ବସୁଦେବ ଆଗେଇ ଗଲେଣି । ସାମାନ୍ୟ ପଛରେ ଅନ୍ୟମାନେ ।

ଭାନୁପ୍ରକାଶ କହିଲେ, 'ଯଶୋଦାଙ୍କର ପୁଅ ନୁହେଁ, ଝିଅ ।'

ସୌରଦେବ ଓ ଅରିନ୍ଦମ ଉଭୟ ସାମାନ୍ୟ ଚମକି ଉଠିଲେ । 'ଝିଅ ! ତା

ହେଲେ ତ ଅସୁବିଧା ହେବ...' ସୌରଦେବ କହିଲେ ।

'ଅସୁବିଧା କଅଣ ?' ଭାନୁପ୍ରକାଶ କହିଲେ, 'ପୁଅ ଝିଅ ତ କାହାର ହାତର କଥା ନୁହେଁ । ତେବେ ମୁଁ ଜାଣିଥିଲି ଯଶୋଦାଙ୍କର ଝିଅ ହେବ ।'

'ଜାଣିଥିଲ.. ?' ସୌରଦେବ ଆଶ୍ଚର୍ଯ୍ୟ ହେଲେ ।

'ହଁ, ଗୁରୁଦେବ କହିଥିଲେ', କହିଲେ ଭାନୁପ୍ରକାଶ, 'ମୁଁ ତୁମ୍ଭମାନଙ୍କୁ କହି ନ ଥିଲି । ଗୁରୁଦେବ ଖାଲି ଝିଅ ହେବ ଏ କଥା କହି ନ ଥିଲେ । କହିଥିଲେ ଏ ଝିଅ ଗୋଟିଏ ଅସାଧାରଣ ଝିଅ । କଂସ ତାର କିଛି କରି ପାରିବ ନାହିଁ ।' 'ଏ ତ ଆଶ୍ଚର୍ଯ୍ୟ କଥା...' ସୌରଦେବ ରହି ରହି କହିଲେ, 'ମନେ ହେଉଛି ଏ ମଣିଷର କଥା ନୁହେଁ, ଦେବତାର କୂଟ ।'

'ସେ କଥା ମୁଁ କହି ପାରିବିନି ।' କହିଲେ ଭାନୁପ୍ରକାଶ, 'ତେବେ ମୋର ମନେ ହେଉଛି ଗୁରୁଦେବ ସେହିପରି କଥା କହୁଥିଲେ । କହୁଥିଲେ ଏ ଖାଲି ଆ'ର ପିଲା ତା'ର ପିଲା କଥା ନୁହେଁ । ଏଥିରେ ଦେବତାମାନଙ୍କର ସଂଯୋଗ ରହିଛି । ମୁଁ ସେତେବେଳେ ଗୁରୁଦେବଙ୍କ କଥା ବୁଝି ପାରି ନ ଥିଲି । ବର୍ତ୍ତମାନ ବି ବୁଝି ପାରୁ ନାହିଁ । କି ସଂଯୋଗ, କେମିତି ସଂଯୋଗ, କାହିଁକି ? ତେବେ ମୁଁ ମୋର ନିଜର ଗୋଟାଏ ଅଭିଜ୍ଞତା କହେ । ନନ୍ଦ ଯେତେବେଳେ ଶିଶୁ କନ୍ୟାଟିକୁ ଆଣି ବସୁଦେବଙ୍କର ପେଟିକା ଭିତରେ ଶୋଇ ଦେଲେ ମୁଁ ଦେଖିଥିଲି । ଆଶ୍ଚର୍ଯ୍ୟ ! ଛୁଆଟା ଗୋଟାଏ ସାଧାରଣ ସାଙ୍ଗେ ସାଙ୍ଗେ ଜନ୍ମ ହୋଇଥିବା ଛୁଆ ନୁହେଁ । ଛୁଆଟା ଯେମିତି ଖଣ୍ଡେ ନିଆଁଖଣ୍ଡ, ଦାଉ ଦାଉ ହୋଇ ଜଳୁଥାଏ । ମୁଁ ତ ଡରିଗଲି ।'

ସୌରଦେବ ବା ଅରିନ୍ଦମ କେହି କିଛି କହିଲେନି । ସେମାନେ ବନ୍ଦୀଶାଳାର ପ୍ରାୟ ପାଖାପାଖି ହୋଇଗଲେଣି । ବସୁଦେବ ବେଶ୍ କିଛି ବାଟ ଆଗରେ, ସୌରଦେବ ବସୁଦେବଙ୍କ ଆଡ଼କୁ ଚାହିଁଲେ । ପଚାରିଲେ, 'ବସୁଦେବ କିଛି କହିଲେନି ?' 'ନାଁ, ସେ ସଂପୂର୍ଣ୍ଣ ଚୁପ', କହିଲେ ଭାନୁପ୍ରକାଶ, 'ଗଲାବେଳେ ସେ କିଛି କଥାବାର୍ତ୍ତା କରୁଥିଲେ । ଆସିଲାବେଳେ କିଛି ନାହିଁ । ପ୍ରାୟ ଚୁପଚାପ । ତେବେ ମୋର ମନେ ହେଉଛି ସେ ଦିଇଟା କଥା ଭାବୁଛନ୍ତି । ପ୍ରଥମ କଥା ତାଙ୍କ ମନଟା ହାଲ୍‌କା ହୋଇଯାଇଛି । ଯା ହଉ ତାଙ୍କ ଛୁଆଟା ନିର୍ବିଘ୍ନରେ ରହିଲା । କଂସ ତାର କିଛି କରିପାରିବନି । ସେ ହିସାବରେ ସେ ଖୁସି । କିନ୍ତୁ ଦ୍ୱିତୀୟ କଥା ମୁଁ ଭାବୁଛି ତାଙ୍କୁ କଷ୍ଟ ହଉଛି । ଏ ଛୁଆଟା କଥା । କଂସ ଖବର ପାଇବ । ଆସିବ, ପୁଅ ହେଉ କି ଝିଅ ହେଉ ସେ କଅଣ ଆକୁ ରଖିଦେବ। ନିଶ୍ଚୟ ମାରି ଦବ ।'

'ହଁ, ନିଶ୍ଚୟ,' ସୌରଦେବ କହିଲେ, 'ଆମେ କଅଣ କରି ପାରିବା ?'

'ଆମେ କିଛି କରିପାରିବା ନାହିଁ', କହିଲେ ଭାନୁପ୍ରକାଶ, 'ଯାହା କରିବା କଥା ଆମେ କରିଦେଲେ । ବଡ଼ କଥା ଆମ କାମର ବିନ୍ଦୁବିସର୍ଗ ଯେମିତି କଂସ କାନକୁ ନ ଯାଏ । ସେ ଯେଉଁ ଦେବତାର କୂଟ କହୁଛ, ସେ ଦେବତାର କୂଟରେ ଯଦି କିଛି ହେଲେ ହେବ ।'

ସୌରଦେବ ହସିଲେ, କହିଲେ, 'ଦେବତାର କୂଟର କଅଣ କିଛି ଅର୍ଥ ଅଛି, ଭାନୁ ? ସେ ଖାଲି କହିବା କଥା ।'

'ମୁଁ ଜାଣେ ନା', ଭାନୁପ୍ରକାଶ କହିଲେ, 'ପୃଥିବୀରେ ବହୁ ଘଟଣା ଘଟୁଛି । ଆମେ କଅଣ ସବୁ କଥାର ଅର୍ଥ ବୁଝି ପାରୁଛେ । ତେବେ ଗୋଟାଏ କଥା ମୁଁ ଭାବୁଛି । ଆମେ ଗଲାବେଳେ ମୁଁ ବସୁଦେବଙ୍କର ପେଟିକାକୁ ଛୁଇଁଦେଲି, ଆରେ ବାପ୍, ମୋ ଦେହସାରା ଯେମିତି ବିଜୁଳି ଖେଳିଗଲା । ସେମିତି ଆସିଲାବେଳେ ନନ୍ଦଙ୍କ ଛୁଆଟା ଯେମିତି ନିଆଁଖଣ୍ଡ ।'

ସୌରଦେବ ଟିକିଏ ରହିଗଲେ, କହିଲେ, 'ତା ମାନେ ଭାନୁ, ତୁମେ କହିବାକୁ ଚାହଁ ଏ ଗୋଟାଏ ଅଲୌକିକ ଘଟଣା ।'

'ଅଲୌକିକ କି କଅଣ ମୁଁ କହି ପାରିବିନି ।' କହିଲେ ଭାନୁପ୍ରକାଶ, 'କିନ୍ତୁ ନିଶ୍ଚୟ ସାଧାରଣ କଥାଠାରୁ ଅଲଗା । ଗୁରୁଦେବ ତ କହୁଥିଲେ ଅସାଧାରଣ ଘଟଣା, ଆଉ ଭବିଷ୍ୟତରେ ଏହାର ପ୍ରଭାବ ମଧ୍ୟ ଅସାଧାରଣ ହେବ ।'

'ମୋର ମନେହେଉଛି ବାପାଙ୍କର ବି ସେହି ଧାରଣା', କହିଲା ଅରିନ୍ଦମ ।

'ବାପା କଅଣ କହିଛନ୍ତି ?' ପଚାରିଲେ ଭାନୁପ୍ରକାଶ ।

'ନାଁ, ବାପା ତ ସେମିତି ଖୋଲାଖୋଲି କହନ୍ତି ନି ।' କହିଲା ଅରିନ୍ଦମ, 'ତେବେ ତାଙ୍କ କଥାରୁ ମୁଁ ଯେତିକି ବୁଝିଛି ତାଙ୍କର ବି ସେହି ଧାରଣା । ଏ ଘଟଣା କେବଳ ଅସାଧାରଣ ନୁହେଁ, ଅଲୌକିକ ବି । ଆଉ ଏ ଘଟଣା ଯୋଗୁଁ ଭବିଷ୍ୟତ ବି ବଦଳି ଯିବ ।'

ସେମାନେ ସମସ୍ତେ ଯାଇଁ ବନ୍ଦୀଶାଳାର ଚୋରା ଦୁଆର ପାଖରେ ପହଞ୍ଚି ଯାଇଥିଲେ । ସୁରଥ ଦୁଆରକୁ ଆଉଜେଇ ଦେଇ ବାହାରେ ଅପେକ୍ଷା କରିଥିଲା । ଏମାନଙ୍କୁ ଦେଖି ସାଙ୍ଗେ ସାଙ୍ଗେ ଦୁଆର ଖୋଲିଦେଲା, ଓ ବସୁଦେବ ଶିଶୁକନ୍ୟାର ପେଟିକାଟି ମୁଣ୍ଡେଇ ଧରି ଭିତରକୁ ପଶିଗଲେ । ଭାନୁପ୍ରକାଶ ସୁରଥକୁ ଡାକି କହିଲେ, 'ସୁରଥ ଶୁଣ, ତୁମେ ବସୁଦେବଙ୍କ ସାଙ୍ଗରେ ଯାଇଁ ତାଙ୍କୁ ତାଙ୍କ ଜାଗାରେ ଛାଡିଦେବ ।

ତୁମେ ତାଙ୍କ ପାଖରେ ରହିବନି । ତୁମର ଦ୍ୱିତୀୟ କାମ ହେଉଛି, ମୁଁ ଯା କହିଥିଲି । ସାଙ୍ଗେ ସାଙ୍ଗେ ଆଲୁଅର ସଂକେତ ଦେଇଦେବ । ତା ପର ଏଠିକି ଚାଲି ଆସିବ । ଆମେ ଅପେକ୍ଷା କରିଛୁ ।' ବସୁଦେବ ଓ ସୁରଥ ସେହି ଅଂଧାର ଭିତରେ ଭିତରକୁ ଚାଲିଗଲେ । ବେଶୀ ସମୟ ଅପେକ୍ଷା କରିବାକୁ ହେଲା ନାହିଁ । ସୁରଥ ଶୀଘ୍ର ଫେରି ଆସିଲା । କହିଲା, 'ବସୁଦେବଙ୍କୁ ତାଙ୍କ ଘରେ ଛାଡିଦେଇ ମୁଁ କୋଠା ଉପରୁ ଆଲୁଅର ସଂକେତ ଦେଇ ଦେଲି ।' 'ଭଲ କଲ', କହିଲେ ଭାନୁପ୍ରକାଶ, 'ତୁମେ ସଂକେତ ଦେଲା ପରେ ଆଉ କୋଉଠୁ କିଛି ସଂକେତ ଆସିଲା କି ?'

'ହଁ, ରାଜ ନଅର ଆଡୁ ଆସିଲା । ସେଆଡୁ ଅଂଧାର ଭିତରୁ ଦପ ଦପ ହୋଇ ଗୋଟାଏ ଆଲୁଅ ଜଳି ଉଠିଲା ।'

'ଠିକ୍ ଅଛି', କହିଲେ ଭାନୁପ୍ରକାଶ, 'ଆଚ୍ଛା ଶୁଣ, ତୁମେ ବସୁଦେବଙ୍କୁ ତାଙ୍କ ଘରେ ଛାଡିଲା ବେଳେ ଦେବକୀଙ୍କି ଦେଖିଲ କି ?'

'ନାଁ, ମୁଁ ଘର ଭିତରକୁ ଯାଇନି', କହିଲା ସୁରଥ, 'ତେବେ ଦେବକୀ ବୋଧେ ଚେଇଁଥିଲେ, ଆଉ ଅପେକ୍ଷା କରିଥିଲେ । କାହିଁକି ନା ବସୁଦେବ ଫେରିବା କଥା ସେ ବୁଝିପାରିଥିଲେ । ମୁଁ ଭିତରୁ ତାଙ୍କ ପାଟି ଶୁଣିଲି । ସେ ପଚାରୁଥିଲେ ଆସିଲ କି ?'

'ରକ୍ଷୀମାନଙ୍କ ପାଖକୁ ଯାଇ ନା ବୋଧେ ?' ଭାନୁପ୍ରକାଶ ପଚାରିଲେ ।

'ହଁ, ଆପଣମାନେ ଆସିବା ଆଗରୁ ଯାଇଥିଲି । କେହି ଉଠି ନାହାନ୍ତି ?' କହିଲା ସୁରଥ ।

ଭାନୁପ୍ରକାଶ ଏ ପାଖ ସେପାଖ ଚାହିଁଲେ । କେହି କୁଆଡ଼େ ନାହାନ୍ତି । ଅଂଧାର ଭିତରେ ହତା ପାଚିରି, ପାଖ ଗଛ ସବୁ ଛାଇ ପରି ଦିଶୁଛି । ସବୁଆଡ଼ ଚୁପଚୁପ । କେବଳ କିଛି ଦୂରରୁ ଯମୁନାର ସ୍ରୋତର ଶବ୍ଦ । ସୌରଦେବ ଓ ଅରିନ୍ଦମ ପାଖରେ ଛିଡ଼ା ହୋଇଛନ୍ତି । ଭାନୁପ୍ରକାଶ ସେମାନଙ୍କ ପାଖରୁ ସେହି ଅଂଧାର ଭିତରେ ଟିକିଏ ଦୂରକୁ ଦୂରେଇ ଗଲେ । ଡାକିଲେ 'ସୁରଥ, ମୋ ସାଙ୍ଗରେ ଆସ ।' ସୁରଥ ତାଙ୍କ ସାଙ୍ଗେ ସାଙ୍ଗେ ଗଲା ।

ଅରିନ୍ଦମ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା, କହିଲା, 'ଅଂଧାରରେ ଭାନୁପ୍ରକାଶ ସୁରଥକୁ ନେଇ କୁଆଡ଼େ ଗଲେ ?'

ସୌରଦେବ ହସିଲେ, କହିଲେ, 'ସେମାନେ ଫେରି ଆସନ୍ତୁ । ଭାନୁ କହିବେ ଯେ' । ବେଶୀ ସମୟ ନୁହେଁ । କିଛି ସମୟ ପରେ ଭାନୁପ୍ରକାଶ ଓ ସୁରଥ ଅଂଧାର

ଭିତରୁ ଫେରି ଆସିଲେ । ଅରିନ୍ଦମ ଆଶ୍ଚର୍ଯ୍ୟ ହୋଇ ଦେଖିଲା ଭାନୁପ୍ରକାଶଙ୍କର ଦି ଆଖି ଅଙ୍ଗାର ଖଣ୍ଡ ପରି ଜଳୁଛି । ସୁରଥ ଚୁପ, ଭାନୁପ୍ରକାଶ ସୁରଥକୁ କହିଲେ, 'ସୁରଥ ତୁମେ ଯା', ଦେଖ, ରକ୍ଷୀମାନଙ୍କର କଅଣ ହେଲା । କାଲି ସକାଳେ ଖବର ପଠେଇବ, ସାବଧାନ ରହିବ ।'

'ଆଜ୍ଞା', ସୁରଥ ସାଙ୍ଗେ ସାଙ୍ଗେ ହତା ଭିତରକୁ ପଶିଗଲା ଓ କବାଟ ଭିତରୁ ବନ୍ଦ କରିଦେଲା ।

ଭାନୁପ୍ରକାଶ ହସି ସୌରଦେବ ଓ ଅରିନ୍ଦମକୁ ଚାହିଁଲେ, କହିଲେ, 'ସ୍ତମ୍ଭନ କରିଦେଲି । ଆଜି ରାତିର ଘଟଣାସବୁ ସେ ପୂରା ଭୁଲିଗଲା ।'

'ସେ ଦି ଜଣ ନାଉରି ?' ସୌରଦେବ ପଚାରିଲେ । 'ହଁ, ଏଠୁ ଫେରିଲା ପରେ,' ଭାନୁପ୍ରକାଶ କହିଲେ । ତିନିହେଁ ଘାଟ କୂଳକୁ ନୌକା ପାଖକୁ ଫେରି ଆସିଲେ । ଭାନୁପ୍ରକାଶ କହିଲେ, 'ସୌରଦେବ, ମୁଁ ଭାବୁଛି କାଲି ସକାଳେ ଯଶୋଦାଙ୍କର ଶିଶୁ କନ୍ୟାକୁ ଦେଖି କଂସର ମନର ଅବସ୍ଥା କଅଣ ହେବ । ସେ ତ ଦେବକୀଙ୍କର କନ୍ୟା ବୋଲି ନିଶ୍ଚୟ ଭାବିବ । କିନ୍ତୁ ତା ଘୋଷଣାରେ ଦେବକୀଙ୍କର ଅଷ୍ଟମ ଗର୍ଭ ତ କନ୍ୟା ନୁହେଁ, ପୁତ୍ର, ଓ ସେହି ହିଁ ତାର ଶତ୍ରୁ ।'

'ସେ କନ୍ୟା କି ପୁତ୍ର ଯାହା ହେଉ', କହିଲେ ସୌରଦେବ । 'ସେ ଅନ୍ୟମାନଙ୍କୁ ଯେମିତି ଶେଷ କରିଛି ଆକୁ ବି ସେମିତି ଶେଷ କରିଦେବ ।'

'କହି ହେଉନି', ଭାନୁପ୍ରକାଶ କହିଲେ, ଗୁରୁଦେବଙ୍କର ମତ ତ ଏ ଗୋଟିଏ ଅସାଧାରଣ କନ୍ୟା, ଆକୁ କ୍ଷତି କରିବା କ୍ଷମତା କଂସର ନାହିଁ । ଦେଖାଯାଉ କଅଣ ହେଉଛି । ସକାଳକୁ ଜଣାଯିବ ।'

"ଆମେ ଗୋପ ଯିବା କି ?' ସୌରଦେବ ପଚାରିଲେ ।

'ହଁ, ଆସ' ଭାନୁପ୍ରକାଶ କହିଲେ, 'ଦେବକୀଙ୍କର ସନ୍ତାନକୁ ଦେଖି ଆସିବ । ସେ ବି ଅଦ୍ଭୁତ ଶିଶୁ, ତା'ରି ପାଇଁ ତ ସବୁ କାମ, ସବୁ ଆୟୋଜନ । ମୁଁ ଗୁରୁଦେବଙ୍କୁ ପଚାରିଥିଲି । ଖାଲି କହିଥିଲେ - ସେ ଶିଶୁର କେହି କିଛି କରି ପାରିବେ ନାହିଁ । ବାସ୍, ସେତିକି । ଆଉ କିଛି କହିଲେ ନାହିଁ ।'

'ବାପା ବି ସେମିତି', ଅରିନ୍ଦମ କହିଲା, 'ମୁଁ ଯେତେବେଳେ ପଚାରେ ସେ ଏ ଶିଶୁ ବିଷୟରେ କିଛି କହିବାକୁ ନାରାଜ, ଆଉ ଯଦି ବା କହନ୍ତି ସେ ଗୋଟିଏ କଥା - ଏ ଶିଶୁ ମଣିଷର ଭାଗ୍ୟ ବଦଳେଇ ଦେବ ।'

'ଏ ଆଶ୍ଚର୍ଯ୍ୟ କଥା', ସୌରଦେବ କହିଲେ, 'ଗୁରୁଦେବ ବ୍ୟାସ ଓ ଅରିନ୍ଦମର

ବାପା ଏମାନେ ଜ୍ଞାନୀ ଲୋକ । ଏମାନେ ନିଶ୍ଚୟ କିଛି କଥା ଜାଣିଛନ୍ତି ବା ବୁଝିଛନ୍ତି, ଯାହାକି ଆମେ ଜାଣୁନା ବା ବୁଝି ପାରିବା ନାହିଁ ।'

'ମୁଁ ବି ସେଇଆ ଭାବୁଛି', କହିଲେ ଭାନୁପ୍ରକାଶ, 'ସବୁ କଥା ଆମେ ବୁଝିପାରିବା ସମ୍ଭବ ନୁହେଁ । ସେ ଛୁଆଟି ଶୋଇଥିବା ପେଟିକା ଧରୁ ଧରୁ ମୋ ଦେହସାରା ଯେମିତି ବିଜୁଳି ଖେଳିଗଲା । ଆଉ ସେ ଛୁଆଟାକୁ ଦେଖୁ ଦେଖୁ ମୋର ବାହ୍ୟ ଜ୍ଞାନ ଚାଲିଗଲା । ମୁଁ ସବୁକଥା କହି ପାରିବି ନାହିଁ । ହଁ, ତୁମେ ଦିହେଁ ଚାଲ । ସେ ଛୁଆକୁ ଦେଖିବା ଦରକାର । ତା ଦେହର ରଂଗ ବି ସାଧାରଣ ରଂଗ ପରି ନୁହେଁ, ମେଘ ପରି – ମେଘବର୍ଣ୍ଣ । ଆଉ ତା ମୁହଁରେ ହସ – ସେ ବି ସାଧାରଣ ଶିଶୁର ହସ ନୁହେଁ । ତୁମେ ଦେଖିଲେ ବୁଝିବ । ମୋର ତ ମନେହେଲା ସକାଳର ସୂର୍ଯ୍ୟ ଆଲୁଅ ପରି ମୋ ଚାରି ପାଖରେ ଘେରିଗଲା ।'

ସେଇଆ ଠିକ୍ ହେଲା । ଭାନୁପ୍ରକାଶଙ୍କ ସାଙ୍ଗରେ ସୌରଦେବ ଓ ଅରିନ୍ଦମ ଗୋପ ଯିବେ । ସୁର ଓ ବୀରର ନୌକାକୁ ସେମାନେ ପାରିହେବା ପରେ ଭାନୁପ୍ରକାଶ ଛାଡିଦେବେ । ସୌରଦେବ ଓ ଅରିନ୍ଦମ ସକାଳେ ଘାଟ ଡଂଗାରେ ପାରି ହୋଇ ଏ ପାଖକୁ ଆସିବେ । ବର୍ଷା ବନ୍ଦ ହୋଇଯାଇଛି । ପବନ ନାହିଁ । କିନ୍ତୁ ଅଂଧାର ଅଛି । ବୋଧହୁଏ ରାତି ଶେଷ ହୋଇଆସିଲାଣି । ସେମାନେ ସମସ୍ତେ ନୌକାକୁ ଉଠିଗଲେ ।

ସତ୍ୟକାମ ଗୋପ ଘାଟରେ ଅପେକ୍ଷା କରିଥିଲେ । ନୌକାରୁ ଓହ୍ଲେଇ ସୌରଦେବ ଓ ଅରିନ୍ଦମ ଘାଟ ଉପରକୁ ଉଠିଲେ । ଭାନୁପ୍ରକାଶ ସୁର ଓ ବୀର ସହିତ ବନ୍ଦୋବସ୍ତ କରି, ସେମାନଙ୍କୁ ଓ ନୌକାକୁ ଛାଡିଦେଲେ । ସୁରକୁ କହିଲେ, 'ସୁର ଦେଖ, ସକାଳ ହେବା ଆଗରୁ ତୁମେ ଯେମିତି ମଥୁରା ରାଜ୍ୟର ସୀମା ଛାଡି ବାହାରକୁ ଚାଲି ଯାଇଥିବ ।'

'ଆଜ୍ଞା...' ସେମାନେ ସାଙ୍ଗେ ସାଙ୍ଗେ ନୌକା ଛାଡିଦେଲେ ।

ଭାନୁପ୍ରକାଶ ଉପରକୁ ଉଠିଗଲେ । ଘାଟ ଉପରେ ସତ୍ୟକାମ, ସୌରଦେବ, ଅରିନ୍ଦମ । ସେ ସତ୍ୟକାମଙ୍କୁ ଚାହିଁଲେ, କହିଲେ, 'ସତ୍ୟକାମ ତୁମେ ମନେ ମନେ ବ୍ୟସ୍ତ ହେଉଥିବ । ନାହିଁ, ସବୁ ଭଲରେ ଭଲରେ ହେଲା । ଗୁରୁଦେବଙ୍କ ଆଶୀର୍ବାଦ । ବସୁଦେବ ନିର୍ବିଘ୍ନରେ ଶିଶୁ-କନ୍ୟାକୁ ନେଇ ଦେବକୀଙ୍କ ପାଖକୁ ଫେରିଯାଇଛନ୍ତି । ଆମେ ଆସିବା ପର୍ଯ୍ୟନ୍ତ ରକ୍ଷୀମାନେ ଉଠି ନ ଥିଲେ । ଏବେ ଉଠିବେ । ଗୋପାଙ୍କ ପାଖକୁ ବି ସଂକେତ ପଠେଇ ଦିଆହୋଇଛି ।' 'ସୁରଥ? ସୁରଥ ଉପରେ ନିର୍ଭର

କରିହେଲା ?' ପଚାରିଲେ ସତ୍ୟକାମ । 'ସଂପୂର୍ଣ୍ଣ', କହିଲେ ଭାନୁପ୍ରକାଶ, 'ତଥାପି ମୁଁ ତାକୁ ସ୍ତମ୍ଭନ କରି ଦେଇଛି । ଭୟର କିଛି ନାହିଁ' ।

'ଏ ଦି ନାଉରି ?' ସତ୍ୟକାମ ପଚାରିଲେ ।

'ଏମାନଙ୍କୁ ବି କରିଦେଇ ଆସିଲି', କହିଲେ ଭାନୁପ୍ରକାଶ ।

'ତାହେଲେ ଚାଲ, ନନ୍ଦ ଅପେକ୍ଷା କରିଥିବେ ।' ସତ୍ୟକାମ କହିଲେ । ନନ୍ଦ ଘର ବାହାରେ ଅପେକ୍ଷା କରିଥିଲେ । ଚାରିଆଡ଼ ଶୂନଶାନ, କୁଆଡ଼େ ସୋରଶବ୍ଦ ନାହିଁ । ଏମାନଙ୍କୁ ଦେଖି ନନ୍ଦ ପିଣ୍ଡା ତଳକୁ ଓହ୍ଲେଇ ଆସିଲେ । କହିଲେ, 'ସମସ୍ତେ ଶୋଇ ପଡିଛନ୍ତି । ସେ ଛୁଆ ବି ।'

'ଭଲ ହେଲା', ଭାନୁପ୍ରକାଶ କହିଲେ, 'ସୌରଦେବ ଓ ଅରିନ୍ଦମ ଆସିଛନ୍ତି । ସେମାନେ ଶିଶୁକୁ ଦେଖି ସକାଳେ ଫେରିବେ ।'

'ଆସ, ଘରକୁ ଆସ', ନନ୍ଦ କହିଲେ ।

ସେମାନେ ସମସ୍ତେ ପିଣ୍ଡା ଉପରକୁ ଉଠିଲେ ।

ଘର ଭିତରେ ଯଶୋଦା ଶୋଇଛନ୍ତି, ରୋହିଣୀ ଶୋଇଛନ୍ତି, ସେ ଶିଶୁ ବି ଶୋଇଛି । ଆଉ କେହି ନାହିଁ । ସେମାନେ ଗୋଡ଼ ଚିପି ଚିପି ଆସ୍ତେ ଆସ୍ତେ ଘର ଭିତରକୁ ଗଲେ, ଓ ଶିଶୁପାଖରୁ ଟିକିଏ ଛାଡି ଚୁପଚାପ ଛିଡ଼ା ହୋଇରହିଲେ । ବାସ୍ତବିକ, ଭାନୁପ୍ରକାଶ ଯାହା କହୁଥିଲେ – ଅଦ୍ଭୁତ ଶିଶୁ । ସୌରଦେବଙ୍କ ଆଖିରେ ପଲକ ପଡିଲା ନାହିଁ । ଅରିନ୍ଦମର ବି । ଦେହର ରଙ୍ଗ ମେଘବର୍ଣ୍ଣ, ସାରା ଦେହ ଅତ୍ୟନ୍ତ ସୁଗଠିତ, ଅତ୍ୟନ୍ତ କମନୀୟ, ଦେହରୁ ଏକ ଅପୂର୍ବ ଜ୍ୟୋତି ନିର୍ଗତ ହେଉଛି ଓ ଘର ସାରା ଏକ ଅପୂର୍ବ ସୁଗନ୍ଧିରେ ପୂର୍ଣ୍ଣ । ଅରିନ୍ଦମର ମନେ ହେଲା ଏ ଶିଶୁକୁ ଖାଲି ଦେଖି ଦେବାହିଁ ଯଥେଷ୍ଟ । ଏ ଦେଖିବା ନୁହେଁ, ଦର୍ଶନ । ଦେଖିବା ସାଙ୍ଗେ ସାଙ୍ଗେ ଗୋଟାଏ ଅପୂର୍ବ ଆନନ୍ଦରେ ମନ ପ୍ରାଣ ପୂର୍ଣ୍ଣ ହୋଇଯାଉଛି ।

ନନ୍ଦ ବାହାରକୁ ଯିବା ପାଇଁ ଇଙ୍ଗିତ କଲେ । ସମସ୍ତେ ବାହାରକୁ ବାହାରି ଆସିଲେ ଓ ନନ୍ଦଙ୍କ ବାହାର ଘରେ ବସିଲେ ।

ଭାନୁପ୍ରକାଶ କହିଲେ, 'ସୌରଦେବ କଅଣ ଦେଖିଲ ?'

'ଅଦ୍ଭୁତ' ।

'ଅରିନ୍ଦମ ?' ସୌରଦେବ କହିଲେ ।

'ଅଦ୍ଭୁତ, ଏ ଶିଶୁ ପାଖରେ କଂସ କି ତୁଚ୍ଛ', ଅରିନ୍ଦମ କହିଲା ।

'ଖାଲି କଂସ ନୁହେଁ, ଆମେ ସମସ୍ତେ', କହିଲେ ଭାନୁପ୍ରକାଶ, 'ମୋର ତ


Digitized by srujanika@gmail.com

ମନେ ହୁଏ ଆମେ ଅଯଥା ଆ କଲୁ ତା କଲୁ ବୋଲି ଭାବୁଛୁ। ଯାହା ହବା କଥା ଏ ଶିଶୁ ନିଜେ ହିଁ କରିଛି । ଆମେ ନିମିତ୍ତ ।'

ସୌରଦେବ ନନ୍ଦଙ୍କୁ ଚାହିଁ ମୃଦୁ ସ୍ୱରରେ କହିଲେ, 'ନନ୍ଦ, ତୁମେ ଓ ଯଶୋଦା ଭାଗ୍ୟବାନ । ଏହି ଶିଶୁକୁ ପାଳନ କରିବ ।'

'କିନ୍ତୁ କଂସ ଯେଉଁ ଦୁଷ୍ଟ, ଅତ୍ୟାଚାରୀ, କ'ଣ କରିବ କିଏ ଜାଣେ? ପ୍ରଥମେ, ପାହାନ୍ତାକୁ ତ ସେ ଝିଅଟାକୁ ମାରିଦେବ...' ନନ୍ଦ କହିଲେ ।

'ତୁମେ ଜମା ବ୍ୟସ୍ତ ହୁଅନା', କହିଲେ ଭାନୁପ୍ରକାଶ, 'କଂସର କ୍ଷମତା ନାହିଁ ଏ ଶିଶୁ କିମ୍ବା ସେ ଶିଶୁ କାହାକୁ ହେଲେ କ୍ଷତି କରି ପାରିବ । ଏ ଶିଶୁକୁ ତ ଦେଖୁଛ । ସେ ଶିଶୁକୁ ମୁଁ ଦେଖିଛି । ସେ ବି ଅଦ୍ଭୁତ - ସମାନ ତେଜୀୟାନ । ତୁମେ ଦେଖ, କାଲି ସକାଳକୁ କିଛି ଅଲୌକିକ କଥା ଘଟିପାରେ । କଂସର ରାଜତ୍ୱ ସରିଗଲା ।

'ମୋର ବି ସେହିପରି ମନେ ହେଉଛି', କହିଲେ ସୌରଦେବ, 'ସବୁ ଅତ୍ୟାଚାରୀ ଶାସକଙ୍କର ଯାହା ହୁଏ କଂସର ତାହାହିଁ ହବ ।'

'କଂସର ପରାମର୍ଶଦାତା ଜରାସନ୍ଧର ବି...' କହିଲେ ସତ୍ୟକାମ ।

'ହଁ, ଜରାସନ୍ଧର ବି' କହିଲେ ଭାନୁପ୍ରକାଶ, 'ଗୁରୁଦେବ ସେଇ କଥାହିଁ କହନ୍ତି । ଯେ ଦେଶରେ ଅଧର୍ମ ପୂରିଗଲେ ଧର୍ମର ପ୍ରତିଷ୍ଠା ହେବ ହିଁ ହେବ । ଦେବକୀଙ୍କର ଏ ଶିଶୁ, ଯଶୋଦାଙ୍କର ସେ ଶିଶୁ, ଉଭୟ ଧର୍ମ ।'

ନନ୍ଦ ଉଠି ବାହାରକୁ ଯାଇଁ ସାଙ୍ଗେ ସାଙ୍ଗେ ଫେରି ଆସିଲେ, କହିଲେ, 'ରାତି ସରି ଆସିଲାଣି । ମେଘ ଭାଙ୍ଗିଯାଇଁ ପାହାନ୍ତିଆ ତରା ଉଠିଲାଣି । ଏ ରାତିଟା ଅଦ୍ଭୁତ ରାତି, ସାରା ରାତି ତୁମ୍ଭେମାନେ ଚେଇଁ ରହିଲ ।'

ଭାନୁପ୍ରକାଶ ହସିଲେ, କହିଲେ, 'ହଁ, ଏ ରାତିଟା ଚେଇଁ ରହିବାର ରାତି । ସବୁଦିନେ ମନେ ପକେଇବାର ରାତି ।'

ବଡ଼ି ଭୋରୁ ସୌରଦେବ ଓ ଅରିନ୍ଦମ ଘାଟ ଡଂଗାରେ ଯମୁନା ପାରିହୋଇ ମଥୁରା ଫେରି ଆସିଲେ । ସୌରଦେବ ଘାଟ ପାଖରୁ ତାଙ୍କ ଘର ରାସ୍ତାରେ ଭାଙ୍ଗିଗଲେ । କହିଦେଇ ଗଲେ ଅରିନ୍ଦମ ଯଦି ଖବର ପାଏ ତାଙ୍କୁ ଖବର ଦବାକୁ । ଅରିନ୍ଦମ ଏକା ଏକା ଘରକୁ ଫେରିଲା । ଚାରିଆଡ଼ ଫର୍ଚ୍ଚା ହୋଇଗଲାଣି । ବର୍ଷା ନାହିଁ । ଅଳ୍ପ ଅଳ୍ପ ପବନ ଦଉଛି । ଗଛ ବୃକ୍ଷର ଡାଳ ଅଳ୍ପ ଅଳ୍ପ ହଲୁଛି । ଚାରିଆଡ଼ ଶାନ୍ତ, ଚୁପଚାପ । ସେ ନିଜ ଘରର ପିଣ୍ଡା ଉପରକୁ ଉଠିଲା । ଠାକୁର ଘରୁ ଆଲୁଅ ଦିଶୁଛି । ବାପା ପୂଜାରେ ବସିଲେଣି । ସେ ମୁହୂର୍ତ୍ତେ ଛିଡ଼ାହେଲା । ଶୁଣିଲା ବାପାଙ୍କର


Digitized by srujanika@gmail.com

ଉଦାତ୍ତ କଣ୍ଠରେ ଶ୍ଳୋକ ଭାସି ଆସୁଛି :

ମଧୁ ବାତା ଋତାୟେତେ ମଧୁ କ୍ଷରନ୍ତି ସିନ୍ଧବଃ ।
ମାଧ୍ଵୀର୍ନ ସନ୍ତୋଷଧୀଃ ॥
ମଧୁ ନକ୍ତମୁତୋୟସୋ ମଧୁମତ୍ ପାର୍ଥିବଂ ରଜଃ ।
ମଧୁ ଦ୍ୟୌରସ୍ତୁ ନଃ ପିତା ॥....

ସେ ବି ହାତ ଯୋଡି ମୁଣ୍ଡରେ ଲଗାଇ ପ୍ରଣାମ କଲା ।

□□□


Digitized by srujanika@gmail.com

